# ଶ୍ରୀଶ୍ରୀ ଚୈତନ୍ୟ ଚରିତାମୃତ ।

## ମଧ୍ୟଲୀଳା ।

# ଶ୍ରୀଶ୍ରୀଚୈତନ୍ୟଚରିତାମୃତ ।



ପୂଜନୀୟ ଶ୍ରୀଯୁକ୍ତ କୃଷ୍ଣଦାସ କବିରାଜ ଗୋସ୍ୱାମୀ ବିରଚିତ

ମଧ୍ୟଲୀଳା ।

(ଶ୍ଲୋକମାନଙ୍କର ପ୍ରସିଦ୍ଧ ଟୀକା, ପୂଜ୍ୟପାଦ

ଶ୍ରୀଯୁକ୍ତ ବିଶ୍ୱନାଥ ଚକ୍ରବର୍ତ୍ତୀ କୃତ ପୟାରମାନଙ୍କର ସଂସ୍କୃତ ଟୀକା ଏବଂ

ବାବାଜୀ ଶ୍ରୀ ପଦ୍ମଚରଣ ଦାସଙ୍କ କୃତ ଓଡ଼ିଆ ଅନୁବାଦ ଓ

ସଜ୍ଜନତୋଷିଣୀ ନାମ୍ନୀ ବିସ୍ତୃତ ତାତ୍ପର୍ଯ୍ୟ ବ୍ୟାଖ୍ୟା

ସମ୍ବଳିତ ।)



ଶ୍ରୀ ମଧୁସୂଦନ ଦାସଙ୍କଦ୍ୱାରା

ପ୍ରକାଶିତ ।



ପ୍ରଥମ ସଂସ୍କରଣ ।



ଶ୍ରୀଶ୍ରୀଚୈତନ୍ୟଚରିତାମୃତ ।

# ମଧ୍ୟଲୀଳା ସୂଚୀପତ୍ର ।

| ବିଷୟ | ପୃଷ୍ଠା । |
| --- | --- |
|  |  |



ଭ୍ରମ ପୂରଣ ।

# ଶ୍ରୀଶ୍ରୀଚୈତନ୍ୟଚରିତାମୃତ—ମଧ୍ୟଲୀଳା ପ୍ରଥମ ପରିଚ୍ଛେଦ ।

ବଂଶଧାଷ, ଜନନ୍ୟାଦେଶବାର୍ଷାଣ୍ୟେବ ନୀଳାଚଳସ୍ଥିତିରିଛପ୍ରଃଗୁଣ୍ଡ ଲୁଚସ୍ତବ ପ୍ରତ୍ୟବ-ଗମନେନ ବଂଶଛବତ୍ରସର ଅଦ୍ୱୈତାଦିମିଲନଂ ଉଚ୍ୟତେ, ଷଡ୍ବର୍ଷ ଗମନାଗମନେନାପି ନୀଳାଚଳେଽପି ତତ୍ରତ୍ୟସ୍ୟ ଅବସ୍ଥିତିଶ୍ଚୋକ୍ତା । ୪୬ ପଦ୍ୟ । ବ, ଚ,

ଶେଷବଚ, ଗମନାଗମନେନ ଷଡ୍ବର୍ଷଂ ପ୍ରେମପ୍ରାଚୁର୍ଯ୍ୟେଣାପି ଷଡ୍ବର୍ଷମିତି ଦ୍ୱାଦଶବର୍ଷାଣି ତତ ଏକାଦଶୋଷ୍ଟାଦଶ ଦ୍ୱାଦଶବର୍ଷାଣି । ୪୭ ପଦ୍ୟ । ବ, ଚ,

କୌମାରଂ ତଦ୍ଗତଲାବଣ୍ୟଂ ପରମରସିକତ୍ୱେନ ତସ୍ୟାପି ସମ୍ଭୋଗେଚ୍ଛୋତ୍ପାଦକତ୍ୱାତ୍ ଦୁଷ୍ଟବାନ୍ ଶ୍ରେଷ୍ଠବାନ୍ କୌମାରାବସ୍ଥାୟାଂ ମଧ୍ୟେ ଯୌବନଭାବମିତି ଭାବଃ । ବ୍ରୁତେ ଚରଚରିତେନେତି ନରଃପରିଣତୋ; ତାସ୍ତାସ୍ତାଗପ୍ରାଃ । ସା ନାନାବସ୍ଥାନ୍ତରପ୍ରାପ୍ତା । ୬ଷ୍ଠ ଶ୍ଲୋକ । ବ, ଚ,

ଅନ୍ତର୍ମଧ୍ୟେ ଖେଳତେତାର୍ଥାତ୍ ଲୁଷ୍ଟସ୍ୟ ଯନ୍ମଧୁରମୃଦ୍ରଲାଃ ପଞ୍ଚମଂ ସ୍ୱରବିଶେଷସ୍ତତ୍କୁଶେ, ତଦ୍ବଶିଷ୍ଟାସ୍ୱ ଅବ "ଅଯୃମୁଦଯୃତ ମୁଦ୍ରାଭଞ୍ଜନଃପଦ୍ମନୀନାଂ" ଇତି ବଦଦ୍ବିଶେଷଣ ମର୍ଯ୍ୟାଦୟା ଲୁଷ୍ଟସ୍ୟ ବିଶେଷଲାଭସ୍ତେନ ନ ନ୍ୟୂନପଦତା । ୭ମ ଶ୍ଲୋକ । ବ, ଚ,

ପ୍ରିୟଃସୋଽୟମିତ୍ୟବ ତତ୍ଶବ୍ଦଃପ୍ରସିଦ୍ଧ ପରାମର୍ଶଃ ପ୍ରସିଦ୍ଧସ୍ତୁ ଶ୍ରୀରାଧାଂ ପ୍ରତି ବୃନ୍ଦାବନୀୟ ତତ୍ତ୍ୱଭାବ ଇତି ତଦେବାହ ସେଇ ଭାବ ଇତ । ତତ୍ତ୍ୱଭାବବାନ୍ ଶ୍ରୀକୃଷ୍ଣ ଇତ୍ୟର୍ଥଃ । ୬୩ ପଦ୍ୟ । ବ, ଚ, ।

ତେ ତବ ଲୀଳାରସ ପରମଳୋଦ୍ଗାରବନ୍ୟା ପରୀତା ପତି ଯା ମାଧୁରୀ କ୍ଷୌଣୀ-ବିଲସିତ ତବାସ୍ୱାଦଃ ସମାତୋବେଷ୍ଟିତଃ ସନ୍ ବଜ୍ରାର କଳୟକୁର୍ବିତ୍ୟନ୍ୱୟଃ । ଯତ୍ର ଲୀଳାରସସ୍ୟ ପରିମଳଂ ସୌଗନ୍ଧ୍ୟଂ ତଦୁଦ୍ଗାରଣୀ ତତ୍ର ପ୍ରକାଶନଶୀଳା ଯା ବନ୍ୟା ବନସମୂହସ୍ତେନ ପରୀତା ବ୍ୟାପ୍ତା । ମାଧୁରୀ ମଥୁରାତନ୍ନିକଟସ୍ଥା ମଥୁରାବ ବ୍ରଜଭୂମିଃ । ଅସ୍ମାଭିଃ କାମୁଜାବଣ୍ଠନ୍ତୁଲାଷ୍ଟଫଳା ଯାଃ ପଶୁପ୍ରେୟା ଗୋପସ୍ତ୍ରିୟସ୍ତାସାଂ ଯୋ ଭବ ଔତ୍ସୁକ୍ୟମୟସ୍ତେନ ମୃଗ୍ୟାନ୍ତରୀ ସ୍ତଦ୍ବନାସୀନା-ଭିରତ୍ୟର୍ଥଃ । ବଦନେ ମୁଖେ ଉଚ୍ଛିପିତୁଂ ଶୀଳଂ ଯସ୍ୟ ଏବଂଭୂତୋ ବେଣୁର୍ଯସ୍ୟ ସଃ । ୯ମ ଶ୍ଲୋକ । ବଃ ଚଃ

ପରସ୍ପାରେଽପି ପ୍ରାର୍ଥନାୟାମପି ୧୦ମ ଶ୍ଲୋକଃ । ବ, ଚ,

ଅନୁଚରନ୍ ପରିଚରନ୍ ନିରନ୍ତରଂ ସର୍ବକାଳଂ । ପ୍ରଶାନ୍ତଂ ନିଃଶେଷେଣ ମନୋରଥାନ୍ତରଂ ବୃନ୍ଦାବନବିଷୟବାସନା ଯସ୍ୟ ସଃ । ସୋଽହମଭିଧାନଃ । ୧୬ଶ ଶ୍ଲୋକ । ବ, ଚ,

ରୂପତ୍ୱେନ ରୂପେତିପ୍ରୟୋଗଃ ନତ୍ୱଧୁନା ରୂପନାମାସ୍ୟଂ ପଶ୍ଚାତ୍ତନ୍ନାମା ଭବିଷ୍ୟତି ଇଦାନୀନ୍ତୁ ଦବୀରଖାସେତି ସଂଜ୍ଞା ୧୯୪ ପଦ୍ୟ ।



# ମଧ୍ୟଲୀଳା—ଦ୍ୱିତୀୟ ପରିଚ୍ଛେଦ ।

ଅସ୍ମିନ୍ ଦ୍ୱିତୀୟେ ପରିଚ୍ଛେଦେ । ଅନ୍ତ୍ୟଲୀଳାୟାଃ ସୂତ୍ରାନୁବର୍ଣ୍ଣନଂ ଯତ୍ ଅଗ୍ରିମଗ୍ରନ୍ଥସ୍ୟ ବିଶେଷଣଂ ସମସ୍ତସ୍ୟା ସମସ୍ତସ୍ୟାନେନେତ୍ୟାଦିନା ପ୍ରଭୋରିତ୍ୟସ୍ୟାନ୍ତ୍ୟଲୀଳାୟାଃ ସମ୍ବନ୍ଧଃ । ୧ମ ଶ୍ଲୋକ । ବି, ଚ,

"ଛନ୍ନ" ଇତି, ଊର୍ଦ୍ଧ୍ୱଦ୍ୱାରେଣ ଉପରିତଲୋପରି ଗତ୍ୱା ତଦସ୍ଥାତ୍ମନ୍ଦିରଭିତ୍ତି ମୂର୍ଚ୍ଛସ୍ୟ ବହିର୍ଗତ ଇତ୍ୟର୍ଥଃ । ତଥାଚ ଚୈତନ୍ୟସ୍ତବ କଳ୍ପବୃକ୍ଷେ "ଅନୁଦ୍ଘାଟ୍ୟଦ୍ୱାରତ୍ରୟମୁରୁ ଚ ଭିତ୍ତିତ୍ରୟ—ମହୋ ବିଲଙ୍ଘ୍ୟୋଚ୍ଚୈଃ କାଳିଙ୍ଗିକ ସୁରଭିମଧ୍ୟେ ନିପତିତଃ" । ୭ମ ପଦ୍ୟ । ବି, ଚ,

ଦୁର୍ବଳାଃ ପୀଡ଼ୟନ୍ତି ନ ଯୋଗ୍ୟାଃ ଅଶ୍ରବ୍ୟ ବଚନମ୍ । ୨ୟ ଶ୍ଲୋକଃ ବି, ଚ,

ଉପୂଜ୍ଜ୍ୱଳ ଇତି । ଜାତମାତ୍ର ପ୍ରେମାଙ୍କୁର ଭଙ୍ଗେ ଯଦ୍‌ଦୁଃଖପୂରଂ ଦୁଃଖସମୁଦ୍ରସ୍ୟ ପାନଂ ସାବଧାନମନୁଭବ କୃଷ୍ଣୋ ନ କରୋତୀତ୍ୟର୍ଥଃ । ଶଠୋ ଯଥା ଉଜ୍ଜ୍ୱଳନୀଳମଣୌ "ପ୍ରିୟଂ ବକ୍ତି ପୁରୋଽନ୍ୟତ୍ର ବିପ୍ରିୟଂ କୁରୁତେ ଭୃଶଂ, ନିଗୂଢ଼ମପରାଧଞ୍ଚ ଶଠୋଽୟଂ କଥିତୋ ବୁଧୈଃ" ସାବଧାନ ଅଙ୍କନପୂର୍ଣଃ । ୧୭ଶ ପଦ୍ୟ । ବି, ଚ,

ଯେ ମଦନ ଇତି, ଯୋ ମଦନଃ ସ ତୁ ତନୁହୀନଃ ଅନଙ୍ଗତ୍ୱାତ୍ ତସ୍ୟ ତନୁସତ୍ତ୍ୱେ ଅସ୍ମାଭିରପି ତତ୍ପ୍ରତୀକାରଃ ଶକ୍ୟତ ଇତି ଭାବଃ । ୨୦ଶ ପଦ୍ୟ । ବି, ଚ,



ଶ୍ରୀଶ୍ରୀକୃଷ୍ଣଚୈତନ୍ୟଚନ୍ଦ୍ରାୟ ନମଃ ।

# ଶ୍ରୀଶ୍ରୀଚୈତନ୍ୟଚରିତାମୃତ ।

## ମଧ୍ୟ-ଲୀଳା ।

### ପ୍ରଥମ ପରିଚ୍ଛେଦ ।

ଯସ୍ୟ ପ୍ରସାଦାଦଜ୍ଞୋଽପି
ସଦ୍ୟଃ ସର୍ବଜ୍ଞତାଂ ବ୍ରଜେତ୍ ।
ସ ଶ୍ରୀଚୈତନ୍ୟଦେବୋ ମେ
ଭଗବାନ୍ ସମ୍ପ୍ରସୀଦତୁ । ୧ ।

ବନ୍ଦେ ଶ୍ରୀକୃଷ୍ଣଚୈତନ୍ୟ—
ନିତ୍ୟାନନ୍ଦୌ ସହୋଦିତୌ ।
ଗୌଡ଼ୋଦୟେ ପୁଷ୍ପବନ୍ତୌ
ଚିତ୍ରୌ ଶନ୍ଦୌ ତମୋନୁଦୌ । ୨ ।

ଜୟ ଜୟ ଗୌରଚନ୍ଦ୍ର ଜୟ କୃପାସିନ୍ଧୁ ।
ଜୟ ଜୟ ଶଚୀସୁତ ଜୟ ଦୀନବନ୍ଧୁ । ୧ ।
ଜୟ ଜୟ ନିତ୍ୟାନନ୍ଦ ଜୟାଦ୍ୱୈତଚନ୍ଦ୍ର ।
ଜୟ ଶ୍ରୀବାସାଦ ଜୟ ଗୌରଭକ୍ତବୃନ୍ଦ । ୨ ।

---

ସ ଶ୍ରୀଚୈତନ୍ୟଦେବୋ ଭଗବାନ୍ ମାଧୁର୍ଯୈଶ୍ୱର୍ଯ୍ୟପୂର୍ଣ୍ଣଃ ସମ୍ପ୍ରସୀଦତୁ (ସମ୍ପ୍ରସନ୍ନୋ ଭବତୁ) ଯସ୍ୟ ଶ୍ରୀ ଚୈତନ୍ୟସ୍ୟ ପ୍ରସାଦାତ୍ ଅଜ୍ଞୋଽପି (ମୂର୍ଖଜନୋଽପି) ସଦ୍ୟଃ (ତତ୍‌କ୍ଷଣାତ୍) ସର୍ବଜ୍ଞତାଂ ବ୍ରଜେତ୍ । ୧ ଶ୍ଳୋକ ।

---

ଯାହାଙ୍କର ଅନୁଗ୍ରହରୁ ଅଜ୍ଞ ବ୍ୟକ୍ତି ସ୍ୱୟଂ ତତ୍‌କ୍ଷଣାତ୍ ସର୍ବଜ୍ଞ ହୁଏ, ସେହି ମାଧୁର୍ଯ୍ୟ-ଐଶ୍ୱର୍ଯ୍ୟପୂର୍ଣ୍ଣ ଶ୍ରୀଚୈତନ୍ୟଦେବ ମୋ ପ୍ରତି ସୁପ୍ରସନ୍ନ ହୁଅନ୍ତୁ । ୧ ଶ୍ଳୋକାର୍ଥ ।

୨ୟ ଶ୍ଳୋକର ଅନ୍ୱୟ—ଆଦିଲୀଳା ୧ମ ପରିଚ୍ଛେଦ ୨ୟ ଶ୍ଳୋକ ।

ଗୌଡ଼ଦେଶରୂପ ଉଦୟାଚଳରେ ଯୁଗପତ୍ (ଏକକାଳୀନ) ସମୁଦିତ ଆଶ୍ଚର୍ଯ୍ୟରୂପ ଶୁଭଦାୟକ ଅଜ୍ଞାନାନ୍ଧକାରନାଶକ ରବି-ଚନ୍ଦ୍ର ତୁଲ୍ୟ ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ବନ୍ଦନା କରୁଅଛି । ୨ୟ ଶ୍ଳୋକାର୍ଥ ।

ଜୟତାଂ ସୁରତୌ ପଙ୍ଗୋ—
ର୍ମମ ମନ୍ଦମତେର୍ଗତୀ ।
ମତ୍ସର୍ବସ୍ୱପଦାମ୍ଭୋଜୌ
ରାଧାମଦନମୋହନୌ । ୩ ।

ଦୀବ୍ୟଦ୍‌ବୃନ୍ଦାରଣ୍ୟକଳ୍ପଦ୍ରୁମାଧଃ,
ଶ୍ରୀମଦ୍‌ରତ୍ନାଗାରସିଂହାସନସ୍ଥୌ ।
ଶ୍ରୀମଦ୍‌ରାଧାଶ୍ରୀଲଗୋବିନ୍ଦଦେବୌ,
ପ୍ରେଷ୍ଠାଲୀଭିଃ ସେବ୍ୟମାନୌ ସ୍ମରାମି । ୪ ।

ଶ୍ରୀମାନ୍ ରାସରସାରମ୍ଭୀ
ବଂଶୀବଟତଟସ୍ଥିତଃ ।
କର୍ଷନ୍ ବେଣୁସ୍ୱନୈର୍ଗୋପୀ
ର୍ଗୋପୀନାଥଃ ଶ୍ରିୟେଽସ୍ତୁ ନଃ ।୫।

ପୂର୍ବେ କହିଲ ଆଦିଲୀଲାର ସୂତ୍ରଗଣ ।
ଯାହା ବିସ୍ତାରିୟାଛେନ ଦାସ ବୃନ୍ଦାବନ । ୩ ।
ଅତଏବ ତାର ଆମି ସୂତ୍ରମାତ୍ର କୈଲ ।
ଯେ କିଛୁ ବିଶେଷ ସୂତ୍ରମଧ୍ୟେଇ କହିଲ । ୪ ।
ଏବେ କହି ଶେଷଲୀଲାର ମୁଖ୍ୟ ସୂତ୍ରଗଣ ।
ପ୍ରଭୁର ଅଶେଷ ଲୀଲା—ନା ଯାୟ ବର୍ଣ୍ଣନ । ୫ ।
ତାର ମଧ୍ୟେ ଯେଇ ଭାଗ ଦାସ ବୃନ୍ଦାବନ ।
ଚୈତନ୍ୟମଙ୍ଗଲେ ବିସ୍ତାରି କରିଲା ବର୍ଣ୍ଣନ ।୬।
ସେହି ଭାଗେର ଇହାଁ ସୂତ୍ରମାତ୍ର ଲିଖିବ ।
ଇହାଁ ଯେ ବିଶେଷ କିଛୁ ତାହା ବିସ୍ତାରିବ ।୭।
ଚୈତନ୍ୟ ଲୀଲାର ବ୍ୟାସ—ଦାସ ବୃନ୍ଦାବନ ।
ତାଁର ଆଜ୍ଞାୟ କରୋଁ ତାଁର ଉଚ୍ଛିଷ୍ଟ-ଚର୍ବଣ ।୮।
ଭକ୍ତି କରି ଶିରେ ଧରି ତାଁହାର ଚରଣ ।
ଶେଷଲୀଲାର ସୂତ୍ରଗଣ କରିୟେ ବର୍ଣ୍ଣନ । ୯ ।
ଚବିଶବତ୍ସର ପ୍ରଭୁର ଗୃହେ ଅବସ୍ଥାନ ।
ତାହାଁ ଯେ କରିଲ ଲୀଲା—'ଆଦିଲୀଲା' ନାମ ॥
ଚବିଶ-ବତ୍ସର-ଶେଷେ ଯେଇ ମାଘମାସ ।
ତାର ଶୁକ୍ଲପକ୍ଷେ ପ୍ରଭୁ କରିଲା ସନ୍ନ୍ୟାସ ।୧୧।
ସନ୍ନ୍ୟାସ କରିୟା ଚବିଶ-ବତ୍ସର ଅବସ୍ଥାନ ।
ତାହାଁ ଯେଇ ଲୀଲା—ତାର 'ଶେଷଲୀଲା' ନାମ ॥
ଶେଷଲୀଲାର 'ମଧ୍ୟ' 'ଅନ୍ତ୍ୟ' ଦୁଇ ନାମ ହୟ ।
ଲୀଲାଭେଦେ ବୈଷ୍ଣବ ସବ ନାମଭେଦ କୟ ।୧୩।
ତାର ମଧ୍ୟେ ଛୟ-ବତ୍ସର ଗମନାଗମନ ।
ନୀଳାଚଳ ଗୌଡ଼ ସେତୁବନ୍ଧ ବୃନ୍ଦାବନ । ୧୪ ।
ତାହାଁ ଯେହି ଲୀଲା—ତାର 'ମଧ୍ୟଲୀଲା' ନାମ ।
ତାର ପାଛେ ଲୀଲା—'ଅନ୍ତ୍ୟଲୀଲା'-ଅଭିଧାନ ॥
ଆଦ୍ୟଲୀଲା, ମଧ୍ୟଲୀଲା, ଅନ୍ତ୍ୟଲୀଲା ଆର ।
ଏବେ ମଧ୍ୟଲୀଲାର କିଛୁ କରିୟେ ବିସ୍ତାର । ୧୬ ।
ଅଷ୍ଟାଦଶବର୍ଷ କେବଲ ନୀଳାଚଲେ ସ୍ଥିତି ।
ଆପନି ଆଚରି ଜୀବେ ଶିଖାଇଲ ଭକ୍ତି । ୧୭ ।

---

୩ୟ ୪ର୍ଥ ୫ମ ଶ୍ଳୋକର ଟୀକା ଆଦିଲୀଳା ୧ମ ପରିଚ୍ଛେଦ ୧୫,୧୬,୧୭ ଶ୍ଳୋକରେ ଦେଖାଯାଉ ।

ପଙ୍ଗୁ ଅର୍ଥାତ୍ ସ୍ଥାନାନ୍ତରଗମନେ ଅଶକ୍ତ (ଅନନ୍ୟଶରଣ) ଏହି ମନ୍ଦବୁଦ୍ଧି (ଜ୍ଞାନାଦିସାଧନେ ପ୍ରବୃତ୍ତିରହିତ) ଲୋକର ଯେଉଁମାନେ ଗତି (ଆଶ୍ରୟ) ଯେଉଁମାନଙ୍କର ଶ୍ରୀପାଦପଦ୍ମ ମୋର ସର୍ବସ୍ୱ ଓ ଯେଉଁମାନେ ଶୋଭନ ପ୍ରେମଯୁକ୍ତ ଅବା କୃପାଳୁ ସେହି ଶ୍ରୀରାଧା-ମଦନମୋହନ ଜୟଯୁକ୍ତ ହେଉନ୍ତୁ । ୩ୟ ଶ୍ଳୋକାର୍ଥ ।

ପରମ ଶୋଭାମୟ ଶ୍ରୀବୃନ୍ଦାବନର କଳ୍ପବୃକ୍ଷ ମୂଳରେ ସୁନ୍ଦର ରତ୍ନମୟମନ୍ଦିରମଧ୍ୟସ୍ଥ ରତ୍ନସିଂହାସନୋପରି ବିରାଜିତ ଏବଂ ପ୍ରିୟ ସଖୀଗଣଙ୍କ ଦ୍ୱାରା ସେବିତ ଶ୍ରୀରାଧା ଓ ଗୋବିନ୍ଦ-ଦେବଙ୍କୁ ସ୍ମରଣ କରୁଅଛି । ୪ର୍ଥ ଶ୍ଳୋକାର୍ଥ ।

ଯେ ସର୍ବାର୍ଥପରିପୂର୍ଣ୍ଣ ରାସରସପ୍ରବର୍ତ୍ତକ ଅଟନ୍ତି ଏବଂ ଯେ ବଂଶୀବଟମୂଳଦେଶରେ ଅବସ୍ଥାନ କରି ବେଣୁଧ୍ୱନିଦ୍ୱାରା ଗୋପସୁନ୍ଦରୀବୃନ୍ଦଙ୍କୁ ଆକର୍ଷଣ କରୁଅଛନ୍ତି, ସେହି ଶ୍ରୀଗୋପୀନାଥ ଅସ୍ମମାନଙ୍କର କୁଶଳ ବିଧାନ କରନ୍ତୁ । ୫ମ ଶ୍ଳୋକାର୍ଥ ।

ତାର ମଧ୍ୟେ ଛଅବତ୍ସର ଭକ୍ତଗଣ-ସଙ୍ଗେ ।
ପ୍ରେମଭକ୍ତି ପ୍ରବର୍ତ୍ତାଇଲ ନୃତ୍ୟ-ଗୀତ-ରଙ୍ଗେ ।୧୮।
ନିତ୍ୟାନନ୍ଦ ଗୋସାଇଁରେ ପାଠାଇଲ
ଗୌଡ଼ଦେଶେ ।
ତେଁହୋ ଗୌଡ଼ଦେଶ ଭସାଇଲ ପ୍ରେମରସେ ।୧୯।

ସହଜେଇ ନିତ୍ୟାନନ୍ଦ କୃଷ୍ଣପ୍ରେମୋଦ୍ଦାମ ।
ପ୍ରଭୁ-ଆଜ୍ଞାୟ କୈଲ ଯାହାଁ ତାହାଁ ପ୍ରେମଦାନ ।୨୦।
ତାଁହାର ଚରଣେ ମୋର କୋଟି ନମସ୍କାର ।
ଚୈତନ୍ୟେର ଭକ୍ତି ଯେଁହୋ ଲଓୟାଇଲ ସଂସାର ॥
ଚୈତନ୍ୟ ଗୋସାଇଁ ଯାଁରେ ବୋଲେ 'ବଡ଼ଭାଇ',
ତେଁହୋ କହେ-ମୋର ପ୍ରଭୁ ଚୈତନ୍ୟ
ଗୋସାଇଁ । ୨୧ ।

ଯଦ୍ୟପି ଆପନେ ହୟେ ପ୍ରଭୁ ବଲରାମ ।
ତଥାପି ଚୈତନ୍ୟେର କରେ ଦାସ-ଅଭିମାନ ।୨୩।
'ଚୈତନ୍ୟ ସେବ, ଚୈତନ୍ୟ ଗାଓ, ଲଓ
ଚୈତନ୍ୟ ନାମ ।

ଚୈତନ୍ୟେ ଯେଭକ୍ତି କରେ, ସେଇମୋର ପ୍ରାଣ ॥'
ଏଇମତ ଲୋକେ ଚୈତନ୍ୟ ଭକ୍ତି ଲଓୟାଇଲ ।
ଦୀନ ହୀନ-ନିନ୍ଦକାଦି ସଭାରେ ନିସ୍ତାରିଲ ।୨୪।
ତବେ ପ୍ରଭୁ ବ୍ରଜେ ପାଠାଇଲ ରୂପ-ସନାତନ ।
ପ୍ରଭୁ-ଆଜ୍ଞାୟ ଦୁଇଭାଇ ଆଇଲା ବୃନ୍ଦାବନ ।୨୬।

ଭକ୍ତି ପ୍ରଚାରିୟା ସର୍ବ୍ବତୀର୍ଥ ପ୍ରକାଶିଲ ।
ମଦନଗୋପାଲ-ଗୋବିନ୍ଦେର ସେବାପ୍ରଚାରିଲ ।୨୭
ନାନା ଶାସ୍ତ୍ର ଆନି କୈଲ ଭକ୍ତିଗ୍ରନ୍ଥ ସାର ।
ମୂଢ଼ାଧମଜନେରେ ତେଁହୋ କରିଲା ନିସ୍ତାର ।୨୮।
ପ୍ରଭୁ-ଆଜ୍ଞାୟ କୈଲ ସର୍ବଶାସ୍ତ୍ରେର ବିଚାର ।
ବ୍ରଜେର ନିଗୂଢ଼ ଭକ୍ତି କରିଲା ପ୍ରଚାର । ୨୯ ।
ହରିଭକ୍ତିବିଲାସ, ଆର ଭାଗବତାମୃତ ।
ଦଶମଟିପ୍ପନୀ, ଆର ଦଶମ ଚରିତ । ୩୦ ।
ଏଇ ସବ ଗ୍ରନ୍ଥ କୈଲ ଗୋସାଇଁ ସନାତନ ।
ରୂପଗୋସାଇଁ କୈଲ ଯତ, କେ କରେ ଗଣନ ?
ପ୍ରଧାନ ପ୍ରଧାନ କିଛୁ କରିୟେ ଗଣନ ।
ଲକ୍ଷଗ୍ରନ୍ଥ କୈଲ ବ୍ରଜବିଲାସ ବର୍ଣ୍ଣନ । ୩୨ ।
ରସାମୃତସିନ୍ଧୁ, ଆର ବିଦଗ୍ଧମାଧବ ।
ଉଜ୍ଜ୍ୱଲନୀଲମଣି ଆର ଲଲିତମାଧବ । ୩୩ ।
ଦାନକେଲିକୌମୁଦୀ, ଆର ବହୁସ୍ତବାବଲୀ ।
ଅଷ୍ଟାଦଶଲୀଲାଛନ୍ଦ, ଆର ପଦ୍ୟାବଲୀ । ୩୪ ।
ଗୋବିନ୍ଦବିରୁଦାବଲୀ ତାହାର ଲକ୍ଷଣ ।
ମଥୁରା-ମାହାତ୍ମ୍ୟ, ଆର ନାଟକ ଲକ୍ଷଣ । ୩୫ ।
ଲଘୁଭାଗବତାମୃତାଦି କେ କରୁ ଗଣନ ?
ସର୍ବ୍ବତ୍ର କରିଲ ବ୍ରଜବିଲାସ-ବର୍ଣ୍ଣନ । ୩୬ ।
ତାଁର ଭ୍ରାତୁଷ୍ପୁତ୍ର—ନାମ ଶ୍ରୀଜୀବଗୋସାଇ ।
ଯତ ଭକ୍ତିଗ୍ରନ୍ଥ କୈଲ, ତାର ଅନ୍ତ ନାଇ ।୩୭।

---

ତାରମଧ୍ୟେ—ଶେଷ ଅଷ୍ଟାଦଶବର୍ଷ ମଧ୍ୟରୁ । ୧୮ । କୃଷ୍ଣ ପ୍ରେମୋଦ୍ଦାମ—କୃଷ୍ଣ ପ୍ରେମଲାଭ । ୨୦ । ଯାଁରେ—ଶ୍ରୀମନ୍ ନିତ୍ୟାନନ୍ଦଙ୍କୁ । ତେହେଁ—ଶ୍ରୀନିତ୍ୟାନନ୍ଦ ।୨୨। ଆପନେ ଶ୍ରୀ ନିତ୍ୟାନନ୍ଦ ।୨୩। ଏହା ଶ୍ରୀ ନିତ୍ୟାନନ୍ଦଙ୍କର ଜୀବ ଉପଦେଶ ଓ ପ୍ରେମଦାନ ।୨୪। ମୂଢ଼—ମୂର୍ଖ, ଅଜ୍ଞ । ଅଧମ—କୁକର୍ମୀ, ନୀଚାଶୟ । ୨୮ । ଭାଗବତାମୃତ—ବୃହଦ୍-ଭାଗବତାମୃତ । ଦଶମଟିପ୍ପଣୀ—ଶ୍ରୀମଦ୍ଭାଗବତ ଶ୍ରୀଦଶମସ୍କନ୍ଧର ବୈଷ୍ଣବତୋଷିଣୀ ନାମକ ଟୀକା, ଯାହାର ଅପର ନାମ ବୃହତ୍ତୋଷିଣୀ । ୩୦ । ଲକ୍ଷଗ୍ରନ୍ଥ, ଏଠାରେ ଗ୍ରନ୍ଥମାନେ ଅନୁଷ୍ଟୁପ୍‌ଛନ୍ଦର ପ୍ରତ୍ୟେକ୍ ଶ୍ଳୋକର ପ୍ରତ୍ୟେକ ପାଦକୁ ଗ୍ରନ୍ଥ କୁହାଯାଏ । ଏହିପ୍ରକାର ଏକ ଲକ୍ଷ ଗ୍ରନ୍ଥ ବା ଶ୍ଳୋକ ପାଦ, ଏତଦ୍ଦ୍ୱାରା ବ୍ରଜବିଳାସ ବର୍ଣ୍ଣନ କରିଅଛନ୍ତି । ୩୨ ।

ରସାମୃତସିନ୍ଧୁ—ଭକ୍ତିରସାମୃତସିନ୍ଧୁ । ୩୩ । ସର୍ବ୍ବତ୍ର—ତାଙ୍କ ଲିଖିତ ସମସ୍ତ ଗ୍ରନ୍ଥମାନଙ୍କରେ ॥ ତାଁର—ଶ୍ରୀ ସନାତନ ଏବଂ ଶ୍ରୀରୂପଙ୍କର । ଭ୍ରାତୁଷ୍ପୁତ୍ର—ଭ୍ରାତା ଶ୍ରୀଅନୁପମଙ୍କର ପୁତ୍ର । ୩୭ ।

ଶ୍ରୀଭାଗବତସନ୍ଦର୍ଭ ନାମ ଗ୍ରନ୍ଥ ବିସ୍ତାର ।
ଭକ୍ତି ସିଦ୍ଧାନ୍ତେର ତାତେ ଦେଖାଇୟାଛେନ ପାର ॥
ଗୋପାଲଚମ୍ପୂ-ନାମେ ଗ୍ରନ୍ଥ ମହାଶୂର ।
ନିତ୍ୟଲୀଲା-ସ୍ଥାପନ ଯାହେ ବ୍ରଜରସପୂର । ୩୯ ।
ଏଇମତ ନାନା ଗ୍ରନ୍ଥ କରିୟା ପ୍ରକାଶ ।
ଗୋଷ୍ଠୀସହିତେ କୈଲ ବୃନ୍ଦାବନେ ବାସ । ୪୦ ।
ପ୍ରଥମ ବତ୍ସରେ ଅଦ୍ୱୈତାଦି ଭକ୍ତଗଣ ।
ପ୍ରଭୁରେ ଦେଖିତେ କୈଲ ନୀଲାଦ୍ରି ଗମନ ।୪୧।
ରଥଯାତ୍ରା ଦେଖି ତାହାଁ ରହିଲା ଚାରିମାସ ।
ପ୍ରଭୁ-ସଙ୍ଗେ ନୃତ୍ୟ-ଗୀତ ପରମ ଉଲ୍ଲାସ । ୪୨ ।
ବିଦାୟସମୟେ ପ୍ରଭୁ କହିଲା ସଭାରେ— ।
ପ୍ରତ୍ୟବ୍ଦ ଆସିବେ ସବେ ଗୁଣ୍ଡିଚା ଦେଖିବାରେ ।୪୩
ପ୍ରଭୁର ଆଜ୍ଞାୟ ଭକ୍ତଗଣ ପ୍ରତ୍ୟବ୍ଦ ଆସିୟା ।
ଗୁଣ୍ଡିଚା ଦେଖିୟା ଯାନ ପ୍ରଭୁରେ ମିଲିୟା । ୪୪ ।
ବିଂଶତି ବର୍ଷ ଐଛେ କରେ ଗତାଗତି ।
ଅନ୍ୟୋଽନ୍ୟେ ଦୋହାଁରଦୋହାଁ ବିନା ନାହିଁ ସ୍ଥିତି ॥
ଶେଷ ଆର ଯେଇ ରହେ ଦ୍ୱାଦଶ ବତ୍ସର ।
କୃଷ୍ଣେର ବିରହ-ଲୀଳା ପ୍ରଭୁର ଅନ୍ତର । ୪୬ ।
ନିରନ୍ତର ରାତ୍ରି-ଦିନ ବିରହ ଉନ୍ମାଦେ ।
ହାସେ କାନ୍ଦେ ନାଚେ ଗାୟ ପରମ ବିଷାଦେ ।୪୭ ।
ଯେକାଲେ କରେନ ଜଗନ୍ନାଥ-ଦରଶନ ।
ମନେ ଭାବେ—କୁରୁକ୍ଷେତ୍ରେ ପାୟାଛି ମିଲନ ।୪୮।
ରଥଯାତ୍ରାୟ ଆଗେ ଯବେ କରେନ ନର୍ତ୍ତନ ।
ତାହାଁ ଏଇ ପଦମାତ୍ର କରୟେ ଗାୟନ । ୪୯ ।

ତଥାହି ପଦମ୍—

"ସେଇ ତ ପରାଣନାଥ ପାଇନୁ ।
ଯାହା ଲାଗି ମଦନଦହନେ ଝୁରି ଗେନୁ ।" ୫୦ ।

ଶ୍ରୀ ଜୀବଗୋସ୍ୱାମୀକୃତ ଗ୍ରନ୍ଥମାନଙ୍କ ମଧ୍ୟରୁ ପ୍ରଧାନ ପ୍ରଧାନ ଗ୍ରନ୍ଥମାନଙ୍କର ନାମ ଗ୍ରନ୍ଥକାର ଲେଖୁଅଛନ୍ତି ।

ଶ୍ରୀଭାଗବତସନ୍ଦର୍ଭ—ଷଟ୍‌ସନ୍ଦର୍ଭ । ପାର—ଶେଷ, ସୀମା । ୩୮ । ଶ୍ରୀଗୋପାଲଚମ୍ପୂ ନାମକ ଗ୍ରନ୍ଥରାଜ—ଯାହା ବ୍ରଜଲୀଳା ରସରେ ପୂର୍ଣ୍ଣ କରି ନିତ୍ୟଲୀଳା ସ୍ଥାପନ କରିଅଛନ୍ତି । ୩୯ । ଗୋଷ୍ଠୀସହିତେ କୈଲ ବୃନ୍ଦାବନ ବାସ—ଏଠାରେ 'କୈଲ' କ୍ରିୟାର କର୍ତ୍ତା ରୂପ ସନାତନ । ୪୦ ।

ଏଠାରେ ଅଶଙ୍କା ହୋଇ ପାରେ ଯେ—ପୂର୍ବୋକ୍ତ ୧୨ଶ ପୟାରରେ ଉଲ୍ଲେଖ ଅଛି, ଶ୍ରୀମନ୍ ମହାପ୍ରଭୁ ୧୮ ଶ ବର୍ଷ କେବଳ ନୀଳାଚଳରେ ବାସ କରିଥିଲେ ତାହାହେଲେ ଗୌଡ଼ବାସୀ ଭକ୍ତମାନେ ୨୧ ବର୍ଷ କିପରି ମହାପ୍ରଭୁଙ୍କ ନିକଟ ଗୁଣ୍ଡିଚାଯାତ୍ରା ସମୟରେ ଗମନାଗମନ କଲେ । ଏହାର ସମାଧାନ ଏହି ଯେ ଶ୍ରୀମନ୍ ମହାପ୍ରଭୁ ସନ୍ନ୍ୟାସର ପ୍ରଥମ ୬ ବର୍ଷ ମଧ୍ୟରେ ଦକ୍ଷିଣ, ଗୌଡ଼ ଓ ବୃନ୍ଦାବନ ଗମନ ଅବସରରେ ଫେରି ଆସି ଶ୍ରୀନୀଳାଚଳରେ ଶ୍ରୀଗୁଣ୍ଡିଚାଯାତ୍ରା ସମୟରେ ଅବସ୍ଥାନକାଳରେ ଉକ୍ତ ଭକ୍ତମାନେ ଦୁଇ ଥର ଆସିଥିଲେ, ଅର୍ଥାତ୍ ଶ୍ରୀମନ୍ ମହାପ୍ରଭୁ ଦକ୍ଷିଣକୁ ଗମନ କରି ପୁଣି ଫେରି ଆସି ନୀଳାଚଳରେ ଅବସ୍ଥାନ ସମୟରେ ଗୌଡ଼ୀୟ ଭକ୍ତମାନେ ସେଠାକୁ ଦୁଇ ବର୍ଷ ଆସିଥିଲେ ।

ଦୋହାଁର— ମହାପ୍ରଭୁ ଓ ଭକ୍ତଗଣ । ୪୫ । ଶେଷ ଦ୍ୱାଦଶବତ୍ସର—ଅର୍ଥାତ୍ ଶ୍ରୀମନ୍ ମହାପ୍ରଭୁଙ୍କର ସନ୍ନ୍ୟାସ ୨୪ ବର୍ଷ ମଧ୍ୟରୁ ଛଅ ବର୍ଷ ଗମନାଗମନରେ ଅତିବାହିତ ହେଲା ଓ ଛଅ ବର୍ଷ ପ୍ରେମଚର୍ଚ୍ଚାରେ ଅତିବାହିତ ହେଲାରୁ ଅବଶିଷ୍ଟ ୧୨ ବର୍ଷ । ୪୬ ।

ପାଇନୁ—ପାଇଲି । ଝୁରିଗେନୁ—ଗଲି । ଅର୍ଥାତ୍ ମଦନଦହନରେ ଯାହାଙ୍କୁ ଝୁରୁଥିଲି ସେହି ପ୍ରାଣନାଥଙ୍କୁ ତ ପାଇଲି । ୫୦ ।

ଏଇ ଧୂୟା-ଗାନେ ନାଚେନ ଦ୍ୱିତୀୟପ୍ରହର ।
କୃଷ୍ଣ ଲଇ ବ୍ରଜେ ଯାଇ — ଏ ଭାବ ଅନ୍ତର ।୫୧।
ଏଇଭାବେ ନୃତ୍ୟମଧ୍ୟେ ପଢ଼େ ଏକ ଶ୍ଳୋକ ।
ସେଇଶ୍ଳୋକେର ଅର୍ଥ କେହୋ ନାହି ବୁଝେ ଲୋକ ।୫୨।

ତଥାହି କାବ୍ୟପ୍ରକାଶେ ( ୧୪ ) ସାହିତ୍ୟ-ଦର୍ପଣେ ( ୧।୧୦ )—ପଦ୍ୟାବଲ୍ୟାଂ (୩୮୬)
—ଯଃ କୌମାରହରଃ ସ ଏବ ହି ବରସ୍ତା ଏବ ଚୈତ୍ରକ୍ଷପାସ୍ତେଚୋନ୍ମୀଲିତମାଲତୀସୁରଭୟଃ ପ୍ରୌଢ଼ାଃ କଦମ୍ବାନିଲାଃ । ସା ଚୈବାସ୍ମି ତଥାପି ତତ୍ର ସୁରତବ୍ୟାପାରଲୀଲାବିଧୌ, ରେବାରୋଧସି ବେତସୀତରୁତଲେ ଚେତଃ ସମୁତ୍କଣ୍ଠତେ ।୭।

ହେ ସଖି ! ଇତ୍ୟନ୍ୱୟଃ । ଯୋ ନାୟକଃ ମମ ପ୍ରାଣନାଥଃ କୌମାର ହରଃ କୌମାରବସ୍ଥାୟାଂ ସମ୍ଭୋଗେଚ୍ଛୋତ୍ପାଦନେନ ମନ୍ମାନସ ପ୍ରେରିତବାନ୍ ସ୍ୱୀକୃତେ ସ୍ୱୟମଙ୍ଗୀକ୍ରୟତେ ଇତି ବରଃ ପରମରସିକତୟା ପ୍ରିୟତ୍ୱେନସ୍ୱୀକାରଃ ହି ନିଶ୍ଚିତଂ ସ ଏବ ନବଯୌବନନାୟକଃ ଅଗ୍ରେ ଭବତ୍ୟେବ । ତା ଏବ ଚୈତ୍ରକ୍ଷପାଃ ସନ୍ତି-ବସନ୍ତରଜନ୍ୟୋଭବନ୍ତି ପୂର୍ବବନ୍ନତୁଗ୍ରୀଷ୍ମାଦୟଃ । ପୁନଃ ତେ ଉନ୍ମୀଲିତମାଲତୀସୁରଭୟଃ ଉନ୍ମୀଲିତାଃ ବିକସିତାଃ ଯାଃ ମାଲତ୍ୟଃ ତାଭିଃ ସୁରଭୟଃ ଶୋଭନ-ଗନ୍ଧାଃ ପୂର୍ବବତ୍ ବହନ୍ତି ନତୁ ଦୁର୍ଗନ୍ଧୟଃ । ତେ ପ୍ରୌଢ଼ାଃ ପରମସୁଖଦାଃ କଦମ୍ବାନିଲାଃ କଦମ୍ବାକାରାଃ ବାୟବଃ ବହନ୍ତି ନତୁ ଝଞ୍ଝାବଦ୍‌ବାୟବଃ । ପୁନଃ ସା ନବଯୌବନା ଅହମେବସ୍ୟାଂ ନତୁ ବୟୋଧିକା । ହେ ସଖି ତଥାପି ତତ୍ର ସୁରତବ୍ୟାପାରଲୀଲାବିଧୌ ଶୃଙ୍ଗାରକୌଶଳ-କ୍ରୀଡ଼ାବିଷୟେ ତତ୍ର ରେବାରୋଧସି ରେବାନାମ ନଦୀ ତସ୍ୟା ସ୍ତୀରକାନନେ, ତତ୍ରବେତସୀ-ତରୁତଳେ ବାନୀରଲତାଚ୍ଛାଦିତତମାଲମୂଳେ ନିକୁଞ୍ଜେ ଚେତୋ ମନ୍ମନଃ ସମୁତ୍କଣ୍ଠତେ । ୭ମ ଶ୍ଳୋକ ।

କୌଣସି କନ୍ୟା କୌମାରଅବସ୍ଥାରେ କୌଣସି ପୁରୁଷଦ୍ୱାରା ଆକୃଷ୍ଟ ହୋଇ ତାଙ୍କ ସହିତ ବିହାର କରିଥିଲେ । ପରେ ସେହି ପୁରୁଷଙ୍କ ସହିତ ସେହି କନ୍ୟାର ବିବାହ ହେବାରୁ ସେ ଅନ୍ତରଙ୍ଗ ସଖୀଙ୍କ ପ୍ରତି କହୁଅଛନ୍ତି ।

ହେ ସଖି ! ଯେଉଁ ବ୍ୟକ୍ତି ମୋର କୁମାରୀ ଅବସ୍ଥାରେ ମନୋହରଣ କରି ରେବାନଦୀ ତଟସ୍ଥ ( ନର୍ମଦାନଦୀ ) ବେତସୀଲତାଚ୍ଛାଦିତ ତରୁତଳେ ଚୈତ୍ରମାସରଜନୀରେ ମଧୁ-ମାଳତୀ ସୁମନସୁରଭିଯୁକ୍ତ ମନ୍ଦ ମନ୍ଦ ବାୟୁ ବହନ ସମୟରେ ମୋ ସହିତ ବିହାର କରିଥିଲେ, ସେ ଏବେ ମୋର ବର ( ସ୍ୱାମୀ ) ଅଛି ମଧ୍ୟ ଚୈତ୍ରମାସ ରଜନୀ, ମଧୁମାଳତୀସୁମନ-ସୁରଭିଯୁକ୍ତ ମନ୍ଦ ମନ୍ଦ ବାୟୁ ମଧ୍ୟ ବହୁଅଛି । ମୁଁ ମଧ୍ୟ ସେହି ନବଯୌବନା ନାୟିକା ଏବଂ ମୋର ସ୍ୱାମୀ ସେହି ନାୟକ, କିନ୍ତୁ ହେଲେହେଁ ସେ ଦିନର ସେ ରେବାନଦୀତଟର ବେତସୀଲତାଚ୍ଛାଦିତ ତରୁତଳର ଯେଉଁ ସୁରତବ୍ୟାପାର ଲୀଳା, ତାହା ମୋ ମନରୁ ଯାଉ ନାହିଁ ।

ଏହାର ଭାବ ଏହି ଯେ ପୂର୍ବ ମିଳନ ଓ ବର୍ତ୍ତମାନ ମିଳନରେ କାଳ ସାମ୍ୟ ଓ ବସ୍ତୁ ସାମ୍ୟ ଥିଲେହେଁ ସ୍ଥାନ ଓ ଭାବର ବୈଷମ୍ୟ ହେତୁ ପ୍ରଥମ ମିଳନରେ ଯେ ଆନନ୍ଦ ତାହା ବର୍ତ୍ତମାନ ମିଳନରେ ଦୁର୍ଲ୍ଲଭ । ୭ମ ଶ୍ଳୋକାର୍ଥ ।

ଧୂୟା – ଘୋଷା ( ଧ୍ରୁବ ) ଦ୍ୱିତୀୟପ୍ରହର—ଏଖାକୁ ଦୁଇପ୍ରହର ପର୍ଯ୍ୟନ୍ତ ।
କୃଷ୍ଣ ଲଇ—କୃଷ୍ଣଙ୍କୁ ନେଇ । ବ୍ରଜେ ଯାଇ—ବ୍ରଜକୁ ଯାଉଛୁ । ୫୧ ।

ଏଇ ଶ୍ଳୋକେର ଅର୍ଥ ଜାନେ ଏକଲେ ସ୍ୱରୂପ ।
ଦୈବେ ସେ-ବତ୍ସର ତାହାଁ ଗିୟାଛେନ ରୂପ ।୫୩।
ପ୍ରଭୁ-ମୁଖେ ଶ୍ଳୋକ ଶୁନି ଶ୍ରୀରୂପଗୋସାଇଁ ।
ସେଇ ଶ୍ଳୋକେର ଅର୍ଥ-ଶ୍ଳୋକ କରିଲ ତଥାଇ ।୫୪
ଶ୍ଳୋକ କରି ଏକ ତାଲପତ୍ରେତେ ଲିଖିୟା ।
ଆପନ ବାସାର ଚାଲେ ରାଖିଲ ଗୁଁଜିୟା । ୫୫ ।
ଶ୍ଳୋକ ରାଖି ଗେଲା ସମୁଦ୍ରସ୍ନାନ କରିତେ ।
ହେନକାଲେ ଆଇଲା ପ୍ରଭୁ ତାଁହାରେ ମିଲିତେ ।୫୬
ହରିଦାସଠାକୁର ଆର ରୂପ-ସନାତନ ।
ଜଗନ୍ନାଥମନ୍ଦିରେ ନାହି ଯାୟ ତିନଜନ ।୫୭।
ମହାପ୍ରଭୁ ଜଗନ୍ନାଥେର ଉପଲଭୋଗ ଦେଖିୟା ।
ନିଜଗୃହେ ଯାନ ଏଇ ତିନେରେ ମିଲିୟା ।୫୮।
ଏଇ ତିନ ମଧ୍ୟେ ଯବେ ଥାକେ ଯେଇ ଜନ ।
ତାରେ ଆସି ଆପନେ ମିଲେ-ପ୍ରଭୁର ନିୟମ ।୫୯।
ଦୈବେ ଆସି ପ୍ରଭୁ ଯବେ ଊର୍ଦ୍ଧ୍ୱେତେ ଚାହିଲା ।
ଚାଲେ ଗୋଁଜା ତାଲପତ୍ରେ ସେଇ ଶ୍ଳୋକ ପାଇଲା ॥
ଶ୍ଳୋକ ପଢ଼ି ପ୍ରଭୁ ଆଛେନ ଆବିଷ୍ଟ ହଇୟା ।
ରୂପଗୋସାଇଁ ଆସି ପଡ଼ିଲା ଦଣ୍ଡବତ ହୈୟା ।୬୧।
ଉଠି ମହାପ୍ରଭୁ ତାଁରେ ଚାପଡ଼ ମାରିୟା ।
କହିତେ ଲାଗିଲା କିଛୁ କୋଲେତେ କରିୟା ।୬୨।
ମୋର ଶ୍ଳୋକେର ଅଭିପ୍ରାୟ ନା ଜାନେ
କୋନଜନେ ।
ମୋର ମନେର କଥା ତୁମି ଜାନିଲେ
କେମନେ ? ୬୩ ।
ଏତ ବଲି ତାଁରେ ବହୁ ପ୍ରସାଦ କରିୟା ।
ସ୍ୱରୂପଗୋସାଇଁରେ ଶ୍ଳୋକ ଦେଖାଇଲ ଲୈୟା ।୬୪
ସ୍ୱରୂପେ ପୁଛେନ ପ୍ରଭୁ ହଇୟା ବିସ୍ମିତେ—
ମୋର ମନେର କଥା ରୂପ ଜାନିଲ କେମତେ ?୬୫
ସ୍ୱରୂପ କହେନ-ଯାତେ ଜାନିଲ ତୋମାର ମନ ।
ତାତେ ଜାନି-ହୟ ତୋମାର କୃପାର ଭାଜନ ।୬୬।
ପ୍ରଭୁ କହେ— ତାରେ ଆମି ସନ୍ତୁଷ୍ଟ ହଇୟା ।
ଆଲିଙ୍ଗନ କୈଲ ସର୍ବଶକ୍ତି ସଞ୍ଚାରିୟା । ୬୭ ।
ଯୋଗ୍ୟପାତ୍ର ହୟ ଗୂଢ଼ରସ-ବିବେଚନେ ।
ତୁମିଓ କହିଓ ତାରେ ଗୂଢ଼ରସାଖ୍ୟାନେ ।୬୮।
ଏ ସବ କହିବ ଆଗେ ବିସ୍ତାରି କରିୟା ।
ସଂକ୍ଷେପେ ଉଦ୍ଦେଶ କୈଲ ପ୍ରସ୍ତାବ ପାଇୟା ।୬୯।

---

ଶ୍ରୀମନ୍ ମହାପ୍ରଭୁ ଏହି ନାୟକନାୟିକାସମ୍ବନ୍ଧୀୟ ସାଧାରଣ ସାହିତ୍ୟିକ ଶ୍ଳୋକ କି ସକାଶେ ଯେ ରଥ ଆଗରେ ପାଠ କରୁଅଛନ୍ତି, ତାହା ତାଙ୍କର ମନୋଗତଭାବ ଶ୍ରୀ ସ୍ୱରୂପ-ଗୋସ୍ୱାମୀଙ୍କ ଭିନ୍ନ ଅପର କେହି ଜାଣୁ ନ ଥିଲେ । ଦୈବଯୋଗେ ଶ୍ରୀରୂପଗୋସ୍ୱାମୀ ସେ ବର୍ଷ ଶ୍ରୀଗୁଣ୍ଡିଚା ସମୟରେ ଶ୍ରୀପୁରୁଷୋତ୍ତମକୁ ଆସିଥିଲେ । ୫୩ ।

ଅର୍ଥଶ୍ଳୋକ—ଶ୍ରୀମନ୍ ମହାପ୍ରଭୁଙ୍କ ମନୋଗତ ଭାବନାନୁରୂପ ଶ୍ଳୋକ । ୫୪ ।

ତଥାଇ—ଶ୍ରୀରୂପଗୋସ୍ୱାମୀ ଶ୍ରୀପୁରୁଷୋତ୍ତମରେ ଥିବା ସମୟରେ । ୫୪ ।

ଗୁଞ୍ଜିୟା—ଖୋସି ଦେଇ । ୪୫ । ଉପଲଭୋଗ—ପ୍ରାତଃଭୋଗ ( ବଲ୍ଲଭ ) ଆବିଷ୍ଟ—ପ୍ରେମାବିଷ୍ଟ । ୬୦ ।

ଚାପଡ଼ ମାରିୟା—ଅନ୍ତରଙ୍ଗଭାବରେ ସ୍ନେହଚାପଡ଼ ମାରି । ୬୨ ।

ପ୍ରସାଦ କରିୟା—ନିମ୍ନସ୍ଥ ୬୭ ପୟାର ଉକ୍ତ ।
"ଆଲିଙ୍ଗନ କୈଲ ସର୍ବଶକ୍ତି ସଞ୍ଚାରିୟା ।" । ୬୪ ।

ଢିଙ୍କିଲ—କଳହ । ୬୭ । ଗୂଢ଼ରସ—ନିଗୂଢ଼ ପ୍ରେମରସ । ୬୮ ।

ତଥାହି ପଦ୍ୟାବଲ୍ୟାଂ ( ୩୮୭ )—
ଶ୍ରୀରୂପଗୋସ୍ୱାମିଚରଣୈରୁକ୍ତୋଽୟଂ ଶ୍ଲୋକଃ
ପ୍ରିୟଃ ସୋଽୟଂ କୃଷ୍ଣଃ ସହଚରି କୁରୁକ୍ଷେତ୍ରମିଳିତ
ସ୍ତଥାହଂ ସା ରାଧା ତଦିଦମୁଭୟୋଃ ସଙ୍ଗମସୁଖମ୍ ।
ତଥାପ୍ୟନ୍ତଃଖେଲନ୍ମଧୁରମୁରଳୀପଞ୍ଚମଜୁଷେ,
ମନୋ ମେ କାଳିନ୍ଦୀପୁଳିନବିପିନାୟ ସ୍ପୃହୟତି ।୭।

ଏହି ଶ୍ଲୋକେର ସଂକ୍ଷେପାର୍ଥ ଶୁନ ଭକ୍ତଗଣ !
ଜଗନ୍ନାଥ ଦେଖି ଯୈଛେ ପ୍ରଭୁର ଭାବନ—।୭୦।

ଶ୍ରୀରାଧିକା କୁରୁକ୍ଷେତ୍ରେ କୃଷ୍ଣେର ଦର୍ଶନ ।
ଯଦ୍ୟପି ପାୟେନ ତବୁ ଭାବେନ ଐଛନ—।୭୧।

ରାଜବେଶ ହାତୀ ଘୋଡ଼ା ମନୁଷ୍ୟଗହନ ।
କାହାଁ ଗୋପବେଶ—କାହାଁ ନିର୍ଜ୍ଜନ
ବୃନ୍ଦାବନ ? ୭୨ ।

ସେଇ ଭାବ ସେଇ କୃଷ୍ଣ ସେଇ ବୃନ୍ଦାବନ ।
ଯବେ ପାଇ, ତବେ ହୟ ବାଞ୍ଛିତ ପୂରଣ ।୭୩।

---

ହେ ସହଚରି ! ସ ବୃନ୍ଦାବନବିହାରୀ ଅୟଂ ଦୃଶ୍ୟମାନଃ କଶୋରଃ ପ୍ରିୟଃ ପ୍ରାଣନାଥଃ ନନ୍ଦନନ୍ଦନଃ କୁରୁକ୍ଷେତ୍ରେ ମିଳିତବାନ୍ । ତଥା ତେନପ୍ରକାରେଣ ସା ନବଯୌବନା ଅହଂ ସା ରାଧା ଉଭୟୋ ରାଧାକୃଷ୍ଣୟୋଃ ତଦିଦଂ ସଙ୍ଗମସୁଖଂ ଦର୍ଶନାଦିସମ୍ଭୋଗସୁଖଂ ତଥାପି ମେ ମମ ମନଃ କାଳିନ୍ଦୀପୁଳିନବିପିନାୟ ଯମୁନାତୀରକାନନାୟ ସ୍ପୃହୟତି, ଇଦଂ କୃଷ୍ଣଲାବଣ୍ୟ-ଦର୍ଶନଂ କର୍ତ୍ତୁଂ ଆକାଂକ୍ଷିତଂ କଥମ୍ଭୂତାୟ ଅନ୍ତଃ ଖେଲନ୍ ମଧୁରମୁରଳୀ ପଞ୍ଚମଜୁଷେ ବନାନ୍ତଃକ୍ରୀଡନ୍ମଧୁରବଂଶୀରବଂ ଜୁଷଣୀୟଂ ଯସ୍ ତସ୍ମୈ । ୭ମ ଶ୍ଲୋକ ।

---

ଶ୍ରୀରୂପଗୋସ୍ୱାମୀ ଶ୍ରୀମନ୍ ମହାପ୍ରଭୁଙ୍କର ମନୋଭାବାନୁଯାୟୀ ଏହି ଶ୍ଲୋକ ତାଳପତ୍ରରେ ଲେଖି ଚାଳରେ ଖୋସିଦେଇ ସ୍ନାନ କରିବାକୁ ଯାଇଥିଲେ ।

ଶ୍ରୀରାଧା କୁରୁକ୍ଷେତ୍ରରେ ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କ ସଙ୍ଗରେ ମିଳିତ ହୋଇ ସଖିପ୍ରତି କହୁଅଛନ୍ତି ।

ହେ ସହଚରି ! ମୋ ସହିତ ସେହି ବୃନ୍ଦାବନବିହାରୀ ଏହି ଶ୍ରୀକୁରୁକ୍ଷେତ୍ରରେ ମିଳିତ ହୋଇଅଛନ୍ତି ଏବଂ ମୁଁ ମଧ୍ୟ ସେହି ନବଯୌବନସମ୍ପନ୍ନା ରାଧା ଏବଂ ବର୍ତ୍ତମାନ ଉଭୟଙ୍କର ସେହି ବୃନ୍ଦାବନପ୍ରାୟ ସଙ୍ଗମସୁଖ । ତଥାପି ଶ୍ରୀକୃଷ୍ଣଙ୍କର ମଧୁରମୁରଲୀର ମୃଦୁ ପଞ୍ଚମସ୍ୱରରେ ନିନାଦିତ ସେହି ଯମୁନାପୁଳିନବିପିନକୁ ଯିବା ସକାଶେ ମୋହର ମନ ଉତ୍କଣ୍ଠିତ ହେଉଅଛି ।

ଏହାର ଭାବ ଏହି ଯେ—ଶ୍ରୀବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ସଙ୍ଗମସୁଖଭୋଗର ତୁଲ୍ୟ ଅନ୍ୟ କୌଣସିସ୍ଥାନରେ ଶ୍ରୀକୃଷ୍ଣଙ୍କ ସଙ୍ଗମଦ୍ୱାରା ସେପରି ସୁଖଲାଭ ହୋଇ ନ ପାରେ । ଏତଦ୍ଦ୍ୱାରା ଗୋପଭାବର ଉତ୍କର୍ଷ ପ୍ରକାଶ ହେଉଅଛି । ୭ମ ଶ୍ଲୋକାର୍ଥ ।

ସଂକ୍ଷେପାର୍ଥ—ଏଠାରେ ଭାବାର୍ଥ । ପ୍ରଭୁର ଭାବନ—ମହାପ୍ରଭୁଙ୍କର ମନୋଗତଭାବ ।୭୦। ଐଛନ—ଏହିପରି ।୭୧। ରାଜବେଶ ଇତ୍ୟାଦି—କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କର ରାଜବେଶ ଇତ୍ୟାଦି ଦେଖି ଶ୍ରୀରାଧା । ଶ୍ରୀକୃଷ୍ଣଙ୍କର ଗୋପବେଶ ଓ ନିର୍ଜ୍ଜନବୃନ୍ଦାବନବିହାର ସ୍ମରଣ କରି ଭାବିଥିଲେ । ୭୨ ।

ସେଇଭାବ—ଗୋପଭାବ । ୭୩ ।

ତଥାହି ( ଭାଃ ୧୦।୮୨।୪୮ )—

ଆହୁଶ୍ଚ ତେ ନଳିନନାଭପଦାରବିନ୍ଦଂ
ଯୋଗେଶ୍ୱରୈର୍ହୃଦି ବିଚିନ୍ତ୍ୟମଗାଧବୋଧୈଃ ।
ସଂସାରକୂପପତିତୋତ୍ତରଣାବଲମ୍ବଂ
ଗେହଂ ଜୁଷାମପି ମନସ୍ୟୁଦିୟାତ୍ ସଦା ନଃ ।୮।

ତୋମାର ଚରଣ ମୋର ବ୍ରଜପୁରଘରେ ।
ଉଦୟ କରୟେ ଯଦି, ତବେ ବାଞ୍ଛା ପୂରେ ।୭୪।

ଭାଗବତେର ଶ୍ଲୋକଗୂଢ଼ାର୍ଥ ବିଶଦ କରିଯା ।
ରୂପଗୋସାଞି ଶ୍ଲୋକ କୈଲ— ଲୋକ
ବୁଝାଇୟା ।୭୫।

ତଥାହି ଲଲିତମାଧବେ ( ୧୦।୩୬ )—

ଯାତେ ଲୀଲାରସପରିମଳୋଦ୍‌ଗାରିବନ୍ୟାପରୀତା
ଧନ୍ୟା କ୍ଷୌଣୀ ବିଲସତି ବୃତା ମାଥୁରୀ ମାଧୁରୀଭିଃ ।
ତତ୍ରାସ୍ମାଭିଶ୍ଚଟୁଲପଶୁପୀଭାବମୁଗ୍ଧାନ୍ତରାଭିଃ
ସମ୍ବୀତସ୍ତ୍ୱଂ କଲୟ ବଦନୋଲ୍ଲାସିବେଣୁର୍ବିହାରମ୍ ।୯।

( ଗୋପ୍ୟଃ ) ଆହୁଶ୍ଚ ( ହେ ) ନଳିନନାଭ ! ଅଗାଧବୋଧୈଃ ଗମ୍ଭୀରବୁଦ୍ଧିଭିଃ, ଯଦ୍ୱା—ସାକ୍ଷାଦ୍ଦର୍ଶନେଽପ୍ୟକ୍ଷୁଭିତବୁଦ୍ଧିଭିରିବ ତଦ୍ଦର୍ଶନେଚ୍ଛୟା ମୁହୁର୍ମୋହେନ କ୍ଷୁଭିତବୁଦ୍ଧିଭିଃ, ଯୋଗେଶ୍ୱରୈଃ ଯୋଗଃ— ଭକ୍ତିଯୋଗଃ ତଦୀଶ୍ୱରୈଃ—ବଶୀକୃତଭକ୍ତିଯୋଗୈଃ ହୃଦି ବିଚିନ୍ତ୍ୟଂ ସଂସାରକୂପପତିତୋତ୍ତରଣାବଲମ୍ବଂ, ସଂସାର ଏବ କୂପଃ ତସ୍ମିନ୍ ପତିତାନାଂ ଉତ୍ତରଣାୟ ଉଦ୍ଧାରାୟ ଅବଲମ୍ବ୍ୟତେ ଇତି ଅବଲମ୍ବଂ ଆଶ୍ରୟରୂପଂ, ନତୁ ଅସ୍ମାନ୍ ବିରହସିନ୍ଧୁନିମଗ୍ନାନ୍ ଉଦ୍ଧର୍ତ୍ତୁଂ ସମର୍ଥଂ ଇତି ଭାବଃ। ତେ ତବ ପାଦାରବିନ୍ଦଂ ସଦା ମନସି ଜୁଷାଂ ଉତ୍କଣ୍ଠୟା ତତ୍ସେବମାନାନାଂ ନଃ ଅସ୍ମାକଂ ଗେହଂ ବୃନ୍ଦାବନଂ ପ୍ରତି ଉଦିୟାତ୍ । ୮ ।

ହେ ଗୋବିନ୍ଦ ! ଯା ଧନ୍ୟା ସଫଳଜନ୍ମା ମାଥୁରୀ ମଥୁରାୟାଃ ଅଦୂରଭବା କ୍ଷୌଣୀ ବ୍ରଜଭୂରିତ୍ୟର୍ଥଃ ବିଲସତି ସର୍ବୋତ୍କର୍ଷେଣ ବର୍ତ୍ତତେ ସା। କଥମ୍ଭୂତା, ତେ ତବ ଲୀଲାରସପରିମଳୋଦ୍ଗାରିବନ୍ୟାପରୀତା ଲୀଲାରସାନାଂ ଯଃ ପରିମଳଃ ଚମତ୍କାରସ୍ତସ୍ୟ ଉଦ୍ଗାର ଉଦୟସ୍ତମେବ ବନ୍ୟା ଜଳପ୍ରବାହଃ ତେନ ପରୀତା ଯୁକ୍ତା। ପୁନଃ କଥମ୍ଭୂତା, ଅତଏବ ମାଧୁରୀଭିର୍ବୃତାବ୍ୟାପ୍ତା, ତତ୍ର ବ୍ରଜଭୂମିମଧ୍ୟେ ଅସ୍ମାଭିଃ ଗୋପୀଭିଃ ସହ ସମ୍ବୀତଃ— ଯୁକ୍ତଃ ସନ୍ ତ୍ୱମେବ ବିହାରଂ କଲୟ କୁର୍ବିତ୍ୟର୍ଥଃ । କଥମ୍ଭୂତାଭିରସ୍ମାଭିଃ । ଚଟୁଲପଶୁପୀଭାବମୁଗ୍ଧାନ୍ତରାଭିଃ, ଚଟୁଲାଃ ଚଞ୍ଚଳାଃ ଯାଃ ପଶୁପ୍ୟଃ ଗୋପିକାଃ ତାସାଂ ଭାବେନ ମୋହିତଂ ମୁଗ୍ଧଂ ଅନ୍ତରଂ ଯାସାଂ ତାଭିଃ । କଥମ୍ଭୂତସ୍ତ୍ୱଂ । ବଦନୋଲ୍ଲାସିବେଣୁ- ପ୍ରଫୁଲ୍ଲିତବଦନେ ବେଣୁର୍ଯସ୍ୟ ସ ତ୍ୱଂ । ଅତଏବ ବୃନ୍ଦାବନମେତ୍ୟ ଶ୍ରୀଚରଣଂ ଦର୍ଶୟେତିଧ୍ୱନିତଂ। ୯ମ ଶ୍ଲୋକ ।

ଗୋପୀମାନେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହୋଇ କୁରୁକ୍ଷେତ୍ରରେ କହୁଅଛନ୍ତି । ହେ ପଦ୍ମନାଭ ! ତୁମ୍ଭର ଯେଉଁ ଚରଣକମଳକୁ ଭକ୍ତଶ୍ରେଷ୍ଠମାନେ ହୃଦୟରେ ଚିନ୍ତା କରନ୍ତି, ମୁକ୍ତିଅଭିଳାଷୀ ଜ୍ଞାନିମାନେ ପରମପୁରୁଷାର୍ଥ ବୋଲି ଭାବନା କରନ୍ତି ଓ ବିଷୟାସକ୍ତ ବ୍ୟକ୍ତିମାନଙ୍କର (କର୍ମିମାନଙ୍କର) ଯାହା ସଂସାର ଉଦ୍ଧାରର ଅବଲମ୍ବନ ତୁମ୍ଭର ସେହି ଚରଣକମଳ ତୁମ୍ଭ କୃପାରୁ ତୁମ୍ଭର ସେବକା (ନିତ୍ୟସେବିକା) ଆମ୍ଭମାନଙ୍କ ହୃଦୟରେ ଉଦୟ ହେଉ । ୮ମ ଶ୍ଳୋକାର୍ଥ।

ଭାଗବତେର ଶ୍ଲୋକ — ଶ୍ରୀମଦ୍‌ଭାଗବତର ଉପରୋକ୍ତ ୮ମ ଶ୍ଲୋକ ।

ଗୂଢ଼ାର୍ଥ — ଗୋପନୀୟ ଅର୍ଥ । ବିଶଦ କରିଯା — ପ୍ରାଞ୍ଜଳଭାବରେ ।

ରୂପଗୋସାଞି ଶ୍ଲୋକ କୈଲ— ନିମ୍ନୋକ୍ତ ୯ମ ଶ୍ଳୋକ୍ତ । ୭୫ ।

ଦ୍ୱାରକାସ୍ଥ ନବ ବୃନ୍ଦାବନରେ ଶ୍ରୀରାଧିକା ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି । ହେ କୃଷ୍ଣ ! ମୋର ଲୀଲାରସ ସ୍ଫୁଟନୋଦ୍ଭାସି ବନସମୂହ ପରିବ୍ୟାପ୍ତ ଏବଂ ମାଧୁର୍ଯ୍ୟସୌଷ୍ଠବଶୋଭିତା

ଏଇମତ ମହାପ୍ରଭୁ ଦେଖି ଜଗନ୍ନାଥେ ।
ସୁଭଦ୍ରା-ସହିତ ଦେଖେ ବଂଶୀ ନାହିଁ ହାଥେ ।୭୬।
"ତ୍ରିଭଙ୍ଗ-ସୁନ୍ଦର ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ।
କାହାଁ ପାବ ?"—ଏଇ ବାଞ୍ଛା ବାଢ଼େ ଅନୁକ୍ଷଣ ।୭୭
ରାଧିକାର ଉନ୍ମାଦ ଯୈଛେ-ଉଦ୍ଧବ ଦର୍ଶନେ ।
ଉଦ୍‌ଘୂର୍ଣ୍ଣା ପ୍ରଲାପ ତୈଛେ ପ୍ରଭୁର ରାତ୍ରି-ଦିନେ ।୭୮
ଦ୍ୱାଦଶ-ବତ୍ସର ଶେଷ ଐଛେ ଗୋଙାଇଲ ।
ଏଇମତ ଶେଷଲୀଲା ତ୍ରିବିଧାନେ କୈଲ । ୭୯ ।
ସନ୍ନ୍ୟାସ କରି ଚବିଶବତ୍ସର କେଲ ଯେ-ଯେ କର୍ମ—
ଅନନ୍ତ ଅପାର — ତାର କେ ଜାନବେ ମର୍ମ ? ୮୦ ।
ଉଦ୍ଦେଶ କରିତେ କରି ଦିଗ୍-ଦରଶନ ।
ମୁଖ୍ୟ-ମୁଖ୍ୟ-ଲୀଲାର କରି ସୂତ୍ରଗଣନ । ୮୧ ।
ପ୍ରଥମ ସୂତ୍ର — ପ୍ରଭୁର ସନ୍ନ୍ୟାସକରଣ ।
ତବେ ତ ଚଲିଲା ପ୍ରଭୁ ଶ୍ରୀବୃନ୍ଦାବନ । ୮୨ ।
ପ୍ରେମେତେ ବିହ୍ୱଳ—ବାହ୍ୟ ନାହିଁକ ସ୍ମରଣ ।
ରାଢ଼ଦେଶେ ତିନଦିନ କରିଲା ଭ୍ରମଣ । ୮୩ ।
ନିତ୍ୟାନନ୍ଦପ୍ରଭୁ ମହାପ୍ରଭୁ ଭୁଲାଇଯା ।
ଗଙ୍ଗାତୀରେ ଲଞା ଆଇଲା 'ଯମୁନା' ବଲିଯା । ୮୪ ।

ଧନ୍ୟା ବ୍ରଜଭୂମି ଯେଉଁଠାରେ ବିରାଜ କରୁଅଛନ୍ତି, ତୁମ୍ଭେ ସେହି ବ୍ରଜଭୂମିରେ ଚଞ୍ଚଳ ଗୋପୀଭାବମୁଗ୍ଧାନ୍ତଃକରଣା ( ପରକୀୟାଭାବଗତଚିତ୍ତା ) ଆମ୍ଭମାନଙ୍କ ସହିତ ପରିବେଷ୍ଟିତ ହୋଇ ସହାସ୍ୟବଦନରେ ମଧୁର ମୁରଲୀ ବାଦନପୂର୍ବକ ବିହାର କର । ୯ମ ଶ୍ଲୋକାର୍ଥ ।

ଏଇମତ—ଶ୍ରୀମନ୍ ମହାପ୍ରଭୁ ଶ୍ରୀ ରାଧାଭାବରେ ଭାବିତ ହୋଇ ଶ୍ରୀମନ୍ ଜଗନ୍ନାଥଙ୍କୁ ରାଜବେଶରେ ଭଗିନୀର ସହିତ ଦର୍ଶନ କରି ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କୁ ଗୋପବେଶରେ ଗୋପୀ ସହ ବଂଶୀହସ୍ତ ନ ଦେଖି ଭାବନ୍ତି । ୭୬।

କାହାଁ ପାବ—କେଉଁଠାରେ ପାଇବି । ୭୭।

ଶ୍ରୀକୃଷ୍ଣ ମଥୁରା ବିଜୟ କଲା ପରେ ବ୍ରଜବାସିମାନଙ୍କୁ ପ୍ରବୋଧ ଦେବାସକାଶେ ପ୍ରିୟବର ଉଦ୍ଧବଙ୍କୁ ବୃନ୍ଦାବନକୁ ପଠାଇଥିଲେ । ଶ୍ରୀରାଧା ଉଦ୍ଧବଙ୍କୁ ଦର୍ଶନ କରି ଯେପରି ଉଦ୍‌ଘୂର୍ଣ୍ଣା ପ୍ରଲାପ କରିଥିଲେ, ଯାହା କି ଶ୍ରୀଦଶମସ୍କନ୍ଧର ୪୭ ଅଧ୍ୟାୟରେ ଭ୍ରମରଗୀତ ନାମରେ ପ୍ରସିଦ୍ଧ, ମହାପ୍ରଭୁଙ୍କର ଦିବାନିଶି ସେହି ଭାବ ଉପସ୍ଥିତ । ୭୮ ।

ତ୍ରିବିଧାନେ — ଏହି ପରିଚ୍ଛେଦର ୧୦, ୧୨ ପୟାରରେ ଉଲ୍ଲେଖ ଅଛି ଯେ, ଶ୍ରୀମନ ମହାପ୍ରଭୁଙ୍କର ପ୍ରକଟ ୪୮ ବର୍ଷ ମଧ୍ୟରୁ ପ୍ରଥମ ୨୪ ବର୍ଷ ଗାର୍ହସ୍ଥ୍ୟ ଲୀଳାକୁ ଆଦିଲୀଳା କୁହାଯାଏ ଏବଂ ଶେଷ ୨୪ ବର୍ଷ ସନ୍ନ୍ୟାସଲୀଳାକୁ ଶେଷଲୀଳା କୁହାଯାଏ । ଏହି ଶେଷଲୀଳା ମଧ୍ୟ ଓ ଅନ୍ତ୍ୟ ଦୁଇ ଭାଗରେ ବିଭକ୍ତ । ପ୍ରଥମ ୬ ବର୍ଷ ମଧ୍ୟରେ ଶ୍ରୀପୁରୁଷୋତ୍ତମ ଆଗମନ ଓ ସେହି ସ୍ଥାନରୁ ଦକ୍ଷିଣଗମନ, ପୁନରାଗମନ, ଗୌଡ଼ଗମନ, ପୁନରାଗମନ ଓ ଶ୍ରୀ ବୃନ୍ଦାବନ-ଗମନ ଓ ପୁନରାଗମନ ଏହାର ଅନ୍ତର୍ଭୂତ ଯେଉଁ ଲୀଳାମାନ ତାହା ମଧ୍ୟଲୀଳା ଓ ଅବଶିଷ୍ଟ ୧୮ ବର୍ଷ ଶ୍ରୀ ନୀଳାଚଳରେ ବାସ ସମୟରେ ଯେଉଁ ଲୀଳା ତାହା ଅନ୍ତ୍ୟଲୀଳା । ସେହି ଅନ୍ତ୍ୟଲୀଳା ମଧ୍ୟରେ ପ୍ରଥମ ୬ ବର୍ଷ କାଳ ପ୍ରେମଭକ୍ତି ଶିକ୍ଷାଦାନ ଓ କୀର୍ତ୍ତନବିଳାସ କରିଥିଲେ ଓ ଅବଶିଷ୍ଟ ୧୨ ବର୍ଷ ଶ୍ରୀରାଧାଭାବରେ ଶ୍ରୀକୃଷ୍ଣଙ୍କର ବିରହଲୀଳା ଉଦ୍‌ଘୂର୍ଣ୍ଣା ପ୍ରଲାପଦ୍ୱାରା ଆସ୍ୱାଦନ କରି ଭକ୍ତମାନଙ୍କୁ ଶିକ୍ଷା ଦେଇଥିଲେ । ଏଣୁ ଗ୍ରନ୍ଥକାର କହୁଅଛନ୍ତି ଯେ, ଶେଷଲୀଳା ବା ସନ୍ନ୍ୟାସଲୀଳା, ଏହି ତିନି ବିଧାନରେ କୁହାଗଲା । ୭୯ ।

ଗଙ୍ଗାକୁ ଯମୁନା ବୋଲି କହି ଭୁଲାଇ ଗଙ୍ଗାତୀରକୁ ନେଇ ଆସିଲେ । ୮୪ ।

ଶାନ୍ତିପୁରେ ଆଚାର୍ଯ୍ୟର ଗୃହେ ଆଗମନ ।
ପ୍ରଥମ ଭିକ୍ଷା କୈଲ ତାହାଁ ରାତ୍ରେ ସଂକୀର୍ତ୍ତନ ।୮୫।
ମାତା ଭକ୍ତଗଣେ ତାହାଁ କରିଲ ମିଳନ ।
ସର୍ବସମାଧାନ କରି କୈଲ ନୀଲାଦ୍ରି ଗମନ ।୮୬।
ପଥେ ନାନା ଲୀଳାରସ ଦେବଦରଶନ ।
ମାଧବପୁରୀର କଥା,— ଗୋପାଳ ସ୍ଥାପନ ।୮୭।
କ୍ଷୀରଚୁରିର କଥା, ସାକ୍ଷିଗୋପାଳ-ବିବରଣ ।
ନିତ୍ୟାନନ୍ଦ କୈଲ ପ୍ରଭୁର ଦଣ୍ଡଭଞ୍ଜନ ।୮୮।
କ୍ରୁଦ୍ଧ ହୈଯା ଏକା ଗେଲା ଜଗନ୍ନାଥ ଦେଖିତେ ।
ଦେଖିୟା ମୂର୍ଚ୍ଛିତ ହଞା ପଡ଼ିଲା ଭୂମିତେ ।୮୯।
ସାର୍ବଭୌମ ଲଞା ଆଇଲା ଆପନ ଭବନ ।
ତୃତୀୟପ୍ରହରେ ହୈଲ ପ୍ରଭୁର ଚେତନ ।୯୦।
ନିତ୍ୟାନନ୍ଦ ଜଗଦାନନ୍ଦ ଦାମୋଦର ମୁକୁନ୍ଦ ।
ପାଛେ ଆସି ମିଲି ସଭେ ପାଇଲା ଆନନ୍ଦ ।୯୧।
ତବେ ସାର୍ବଭୌମେ ପ୍ରଭୁ ପ୍ରସାଦ କରିଲା ।
ଆପନ ଈଶ୍ୱରମୂର୍ତ୍ତି ତାଁରେ ଦେଖାଇଲ ।୯୨।
ତବେ ତ କରିଲ ପ୍ରଭୁ ଦକ୍ଷିଣଗମନ ।
କୂର୍ମକ୍ଷେତ୍ରେ କୈଲ ବାସୁଦେବ ବିମୋଚନ ।୯୩।
ଜୀୟଡ଼ନୃସିଂହେ କୈଲ ନୃସିଂହ-ସ୍ତବନ ।
ପଥେ-ପଥେ ଗ୍ରାମେ-ଗ୍ରାମେ ନାମପ୍ରବର୍ତ୍ତନ ।୯୪।
ଗୋଦାବରୀତୀରେ ବନେ ବୃନ୍ଦାବନ-ଭ୍ରମ ।
ରାମାନନ୍ଦରାୟ-ସନେ ତାହାଞି ମିଲନ ।୯୫।
ତ୍ରିମଲ୍ଲ-ତ୍ରିପଦୀ-ସ୍ଥାନ କୈଲ ଦରଶନ ।
ସର୍ବତ୍ର କରିଲ କୃଷ୍ଣନାମ-ପ୍ରଚାରଣ ।୯୬।
ତବେ ତ ପାଷାଣ୍ଡିଗଣେ କରିଲ ଦଲନ ।
ଅହୋବଲ-ନୃସିଂହାଦି କୈଲ ଦରଶନ ।୯୭।
ଶ୍ରୀରଙ୍ଗକ୍ଷେତ୍ର ଆଇଲା କାବେରୀର ତୀର ।
ଶ୍ରୀରଙ୍ଗ ଦେଖିୟା ପ୍ରେମେ ହଇଲା ଅସ୍ଥିର ।୯୮।
ତ୍ରିମଲ୍ଲ ଭଟ୍ଟେର ଘରେ କୈଲ ପ୍ରଭୁ ବାସ ।
ତାହାଞି ରହିଲା ପ୍ରଭୁ ବର୍ଷା ଚାରିମାସ ।୯୯।
ଶ୍ରୀବୈଷ୍ଣବ ତ୍ରିମଲ୍ଲ ଭଟ୍ଟ ପରମପଣ୍ଡିତ ।
ଗୋସାଞିର ପାଣ୍ଡିତ୍ୟପ୍ରେମେ ହଇଲା ବିସ୍ମିତ ।୧୦୦।
ଚାତୁର୍ମାସ୍ୟ ତାହାଁ ପ୍ରଭୁ ଶ୍ରୀବୈଷ୍ଣବ-ସନେ ।
ଗୋଙାଇଲା ନୃତ୍ୟଗୀତ-କୃଷ୍ଣସଂକୀର୍ତ୍ତନେ ।୧୦୧।
ଚାତୁର୍ମାସ୍ୟ ଅନ୍ତେ ପୁନ ଦକ୍ଷିଣ ଗମନ ।
ପରମାନନ୍ଦପୁରୀ-ସନେ ତାହାଞି ମିଲନ ।୧୦୨।
ତବେ ଭଟ୍ଟମାରି ହୈତେ କୃଷ୍ଣଦାସେର ଉଦ୍ଧାର ।
ରାମଜପି-ବିପ୍ରମୁଖେ କୃଷ୍ଣନାମ ପ୍ରଚାର ।୧୦୩।
ଶ୍ରୀରଙ୍ଗପୁରୀର ସହ ହଇଲ ମିଲନ ।
ରାମଦାସ-ବିପ୍ରେର କୈଲ ଦୁଃଖବିମୋଚନ ।୧୦୪।
ତତ୍ତ୍ୱବାଦୀ-ସହ କୈଲ ତତ୍ତ୍ୱେର ବିଚାର ।
ଆପନାକେ ହୀନବୁଦ୍ଧି ହୈଲ ତାସଭାର ।୧୦୫।
ଅନନ୍ତ ପୁରୁଷୋତ୍ତମ ଶ୍ରୀଜନାର୍ଦ୍ଦନ ।
ପଦ୍ମନାଭ ବାସୁଦେବ କୈଲ ଦରଶନ ।୧୦୬।
ତବେ ପ୍ରଭୁ କୈଲ ସପ୍ତତାଲ-ବିମୋଚନ ।
ସେତୁବନ୍ଧସ୍ନାନ ରାମେଶ୍ୱର-ଦରଶନ ।୧୦୭।
ତାହାଞି କରିଲ କୂର୍ମ୍ମପୁରାଣ-ଶ୍ରବଣ ।
'ମାୟାସୀତା ନିଲ ରାବଣ,—ତାହାତେ ଲିଖନ ॥

ଭିକ୍ଷା—ସନ୍ନ୍ୟାସୀର ଆହାରକୁ ଭିକ୍ଷା କହନ୍ତି । ପ୍ରଥମ ଭିକ୍ଷା—ଶ୍ରୀମନ୍ ମହାପ୍ରଭୁ ସନ୍ନ୍ୟାସଗ୍ରହଣ ପରି ସେହିଁ ୩ ଦିନ ଗୌଡ଼ଦେଶରେ ଭ୍ରମଣ କରିଥିଲେ ସେ ୩ ଦିନ କିଛି ଆହାର କରି ନ ଥିଲେ, ତତ୍ପରେ ଶାନ୍ତିପୁରରେ ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟଙ୍କ ଗୃହରେ ଉପସ୍ଥିତ ହୋଇ ସନ୍ନ୍ୟାସ ଆଶ୍ରମର ପ୍ରଥମ ଭୋଜନ କଲେ ।୮୫।

ସାର୍ବଭୌମ— ବାସୁଦେବ ସାର୍ବଭୌମ ।୯୦। ଶ୍ରୀବୈଷ୍ଣବ — ବୈଷ୍ଣବ ଚାରି ସମ୍ପ୍ରଦାୟ ମଧ୍ୟରୁ ଶ୍ରୀ ସମ୍ପ୍ରଦାୟଭୁକ୍ତ ବୈଷ୍ଣବ ।୧୦୦। ତ୍ରିମଲ୍ଲଭଟ୍ଟ—ବେଙ୍କଟ ଭଟ୍ଟଙ୍କ ଭ୍ରାତା, ମଧ୍ୟମ ପରିଚ୍ଛେଦୋକ୍ତ ବେଙ୍କଟ ଭଟ୍ଟ । ଚାତୁର୍ମାସ୍ୟ—ବର୍ଷା ଚାରିମାସ ଅର୍ଥାତ୍ ଆଷାଢ଼ ଶୁକ୍ଳ-ଦ୍ୱାଦଶୀଠାରୁ କାର୍ତ୍ତିକ ଶୁକ୍ଳଦ୍ୱାଦଶୀ ପର୍ଯ୍ୟନ୍ତ ।୧୦୧। ରାମଜପୀ—ରାମନାମ ଜପକାରୀ ।୧୦୩।

ଶୁନିୟା ପ୍ରଭୁର ହୈଲ ଆନନ୍ଦିତ ମନ ।
ରାମଦାସ-ବିପ୍ରେର କଥା ହଇଲ ସ୍ମରଣ ।୧୦୯।
ସେଇ ପୁରାତନ ପତ୍ର ଆଗ୍ରହ କରି ନିଲ ।
ରାମଦାସେ ଦେଖାଇୟା ଦୁଃଖ ଖଣ୍ଡାଇଲ ।୧୧୦।
ବ୍ରହ୍ମସଂହିତା କର୍ଣାମୃତ—ଦୁଇ ପୁଁଥି ପାଞା ।
ଦୁଇ ପୁସ୍ତକ ଲଞା ଆଇଲା ଉତ୍ତମ ଜାନିଞା ।୧୧୧।
ପୁନରପି ନୀଳାଚଲେ ଗମନ କରିଲ ।
ଭକ୍ତଗଣେ ମିଲି ସ୍ନାନଯାତ୍ରା ଦେଖିଲ । ୧୧୨ ।
ଅନବସରେ ଜଗନ୍ନାଥେର ନା ପାଞା ଦର୍ଶନ ।
ବିରହେ ଆଲାଲନାଥ କରିଲ ଗମନ । ୧୧୩ ।
ଭକ୍ତସଙ୍ଗେ ଦିନକଥୋ ତାହାଞି ରହିଲା ।
'ଗୌଡ଼େର ଭକ୍ତ ଆଇସେ'—ସମାଚାର ପାଇଲା ॥
ନିତ୍ୟାନନ୍ଦ ସାର୍ବଭୌମ ଆଗ୍ରହ କରିୟା ।
ନୀଳାଚଲେ ଆଇଲା ମହାପ୍ରଭୁକେ ଲଇୟା ।୧୧୪।
ବିରହେ ବିହ୍ୱଲ ପ୍ରଭୁ—ନା ଜାନେ ରାତ୍ରି-ଦିନେ ।
ହେନକାଲେ ଆଇଲା ଗୌଡ଼େର ଭକ୍ତଗଣେ ॥
ସବେ ମିଲି ଯୁକ୍ତି କରି କୀର୍ତ୍ତନ ଆରମ୍ଭିଲ ।
କୀର୍ତ୍ତନ-ଆବେଶେ ପ୍ରଭୁର ମନ ସ୍ଥିର ହୈଲ ॥
ପୂର୍ବ୍ବେ ଯବେ ପ୍ରଭୁ ରାମାନନ୍ଦେରେ ମିଲିଲା ।
ନୀଳାଚଲେ ଆସିବାରେ ତାଁରେ ଆଜ୍ଞା ଦିଲା ।୧୧୮।
ରାଜ-ଆଜ୍ଞା ଲଞା ତେଁହୋ ଆଇଲା କଥୋଦିନେ ।
ରାତ୍ରି-ଦିନେ କୃଷ୍ଣକଥା ରାମାନନ୍ଦ-ସନେ ।୧୧୯।

କାଶୀମିଶ୍ରେ କୃପା, ପ୍ରଦ୍ୟୁମ୍ନମିଶ୍ରାଦି-ମିଲନ ।
ପରମାନନ୍ଦପୁରୀ-ଗୋବିନ୍ଦ-କାଶୀଶ୍ୱରାଗମନ ।୧୨୦
ଦାମୋଦରସ୍ୱରୂପ-ମିଲନ ପରମ ଆନନ୍ଦ ।
ଶିଖିମାହିତି-ମିଲନ ରାୟ ଭବାନନ୍ଦ । ୧୨୧ ।
ଗୌଡ଼ଦେଶ ହୈତେ ସବ ବୈଷ୍ଣବେର ଆଗମନ ।
କୁଲୀନଗ୍ରାମବାସି-ସଙ୍ଗେ ପ୍ରଥମ-ମିଲନ ।୧୨୨।
ନରହରିଦାସ-ଆଦି ଯତ ଖଣ୍ଡବାସୀ ।
ଶିବାନନ୍ଦସେନ-ସଙ୍ଗେ ମିଲିଲା ସଭେ ଆସି ॥
ସ୍ନାନଯାତ୍ରା ଦେଖି ପ୍ରଭୁ ସଙ୍ଗେ ଭକ୍ତଗଣ ।
ସଭା ଲଞା କୈଲ ପ୍ରଭୁ ଗୁଣ୍ଡିଚା-ମାର୍ଜନ ।୧୨୪।
ସଭାସଙ୍ଗେ ଚବେ ରଥଯାତ୍ରା-ଦରଶନ ।
ରଥ-ଆଗେ ନୃତ୍ୟ କରି ଉଦ୍ୟାନଗମନ ।୧୨୫।
ପ୍ରତାପରୁଦ୍ରେରେ କୃପା କୈଲ ସେଇସ୍ଥାନେ ।
ଗୌଡ଼ୀୟାଭକ୍ତେ ଆଜ୍ଞା ଦିଲ ବିଦାୟେର ଦିନେ—॥
ପ୍ରତ୍ୟବ୍ଦ ଆସିବେ ରଥଯାତ୍ରା-ଦରଶନେ ।
ଏଇଛଲେ ଚାହେ ଭକ୍ତଗଣେର ମିଲନେ ।୧୨୬।
ସାର୍ବଭୌମଘରେ ପ୍ରଭୁର ଭିକ୍ଷା-ପରିପାଟୀ ।
ଷାଠୀର ମାତା କହେ ଯାତେ—'ରାଣ୍ଡୀ ହଉକ ଷାଠୀ' । ୧୨୮ ।
ବର୍ଷାନ୍ତରେ ଅଦ୍ୱୈତାଦି-ଭକ୍ତ-ଆଗମନ ।
ଶିବାନନ୍ଦସେନ କରେ ସଭାର ପାଳନ । ୧୨୯ ।
ଶିବାନନ୍ଦେର ସଙ୍ଗେ ଆଇଲା କୁକ୍କୁର ଭାଗ୍ୟବାନ୍ ।
ପ୍ରଭୁର ଚରଣ ଦେଖି କୈଲ ଅନ୍ତର୍ଦ୍ଧାନ ।୧୩୦।

---

କର୍ଣାମୃତ—କୃଷ୍ଣକର୍ଣାମୃତ । ୧୧୧ । ଅନବସରେ—ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରାଠାରୁ ନବଯୌବନ ଦର୍ଶନ ପର୍ଯ୍ୟନ୍ତ ସମୟ, ଯାହାକୁ ଦେଶିକ ଭାଷାରେ ଅଣସର କହନ୍ତି । ୧୧୩ ।

ପୂର୍ବ୍ବେ—ଦକ୍ଷିଣଭ୍ରମଣକାଳରେ ଗୋଦାବରୀତୀରରେ । ରାମାନନ୍ଦେ—ରାୟ ରାମାନନ୍ଦଙ୍କୁ । ୧୧୮ ।

ରାଜଆଜ୍ଞା—ଶ୍ରୀ ମହାରାଜ ପ୍ରତାପରୁଦ୍ରଙ୍କ ଆଜ୍ଞା । ତେଁହୋ—ଶ୍ରୀ ରାୟ ରାମାନନ୍ଦ । ୧୧୯ ।

ପରମଆନନ୍ଦ—ସମସ୍ତ ଛାପା ପୁସ୍ତକରେ ପରମାନନ୍ଦ ବୋଲି ଅର୍ଥ କରା ହୋଇଅଛି । କିନ୍ତୁ ସମ୍ଭବତଃ ବ୍ରହ୍ମାନନ୍ଦ ଶବ୍ଦ ମୂଳ ଥିଲେ । କାରଣ ସେହି ସମୟରେ ଶ୍ରୀବ୍ରହ୍ମାନନ୍ଦ ଭାରତୀଙ୍କ ମିଳନ ବିଷୟ ବର୍ଣ୍ଣିତ ଅଛି ଏବଂ ଏ ମହାଶୟ ଶ୍ରୀମନ୍‌ମହାପ୍ରଭୁଙ୍କର ଜଣେ ପ୍ରଧାନ ପାର୍ଷଦ ।୧୨୧ ।

ନରହରି ଦାସ—ଶ୍ରୀଖଣ୍ଡ ଶ୍ରୀ ନରହରି ସରକାର ।୧୨୩। ଗୌଡ଼ୀୟା—ଗୌଡ଼ଦେଶବାସୀ । ୧୨୬ । ଷାଠୀର ମାତା—ସାର୍ବଭୌମଙ୍କ ଗୃହିଣୀ । ୧୨୮ ।

ପଥେ ସାର୍ବଭୌମ ସହ ସଭାର ମିଳନ ।
ସାର୍ବଭୌମଭଟ୍ଟାଚାର୍ଯ୍ୟେର କାଶୀତେ ଗମନ ।୧୩୧
ପ୍ରଭୁରେ ମିଳିଲା ସର୍ବ ବୈଷ୍ଣବ ଆସିୟା ।
ଜଳକ୍ରୀଡ଼ା କୈଲ ପ୍ରଭୁ ସଭାରେ ଲଇୟା ।୧୩୨।
ସଭା ଲଞା କୈଲ ଗୁଣ୍ଡିଚାଗୃହ-ସମ୍ମାର୍ଜ୍ଜନ ।
ରଥଯାତ୍ରା-ଦରଶନେ ପ୍ରଭୁର ନର୍ତ୍ତନ ।୧୩୩।
ଉପବନେ କୈଲ ପ୍ରଭୁ ବିବିଧ ବିଳାସ ।
ପ୍ରଭୁର ଅଭିଷେକ କୈଲ ବିପ୍ର କୃଷ୍ଣଦାସ ।୧୩୪।
ଗୁଣ୍ଡିଚାତେ ନୃତ୍ୟ-ଅନ୍ତେ କୈଲ ଜଳକେଳି ।
ହୋରାପଞ୍ଚମୀତେ ଦେଖିଲ ଲକ୍ଷ୍ମୀଦେବୀର କେଳି ॥
କୃଷ୍ଣଜନ୍ମଯାତ୍ରାତେ ପ୍ରଭୁ ଗୋପବେଶ ହୈଲା ।
ଦଧିଭାର ବହି ତବେ ଲଗୁଡ଼ ଫିରାଇଲା ।୧୩୬।
ଗୌଡ଼େର ଭକ୍ତଗଣେ ତବେ କରିଲ ବିଦାୟ ।
ସଙ୍ଗେର ଭକ୍ତ ଲଞା କରେ କୀର୍ତ୍ତନ ସଦାୟ ॥
ବୃନ୍ଦାବନ ଯାଇତେ କୈଲ ଗୌଡ଼େରେ ଗମନ ।
ପ୍ରତାପରୁଦ୍ର କୈଲ ପଥେ ବିବିଧ ସେବନ ।୧୩୮।
ପୁରୀଗୋସାଞି ସଙ୍ଗେ ବସ୍ତ୍ରପ୍ରଦାନପ୍ରସଙ୍ଗ ।
ରାମାନନ୍ଦରାୟ ଆଇଲା ଭଦ୍ରକପର୍ଯ୍ୟନ୍ତ । ୧୩୯ ।
ଆସି ବିଦ୍ୟାବାଚସ୍ପତିଗୃହେତେ ରହିଲା ।
ପ୍ରଭୁରେ ଦେଖିତେ ଲୋକସଙ୍ଘଟ୍ଟ ହଇଲା ।୧୪୦।

ପଞ୍ଚଦିନ ଦେଖେ ଲୋକ ନାହିକ ବିଶ୍ରାମ ।
ଲୋକଭୟେ ରାତ୍ରେ ପ୍ରଭୁ ଆଇଲା କୁଲିଆଗ୍ରାମ ॥
କୁଲିଆଗ୍ରାମେତେ ପ୍ରଭୁର ଶୁନି ଆଗମନ ।
କୋଟିକୋଟି ଲୋକ ଆସି କୈଲ ଦରଶନ ॥
କୁଲିଆଗ୍ରାମେ କୈଲ ଦେବାନନ୍ଦେରେ ପ୍ରସାଦ ।
ଗୋପାଳବିପ୍ରେର କ୍ଷମାଇଲ ଶ୍ରୀବାସ-ଅପରାଧ ॥
ପାଷଣ୍ଡୀ ନିନ୍ଦକ ଆସି ପଡ଼ିଲା ଚରଣେ ।
ଅପରାଧ କ୍ଷମି ତାରେ ଦିଲ କୃଷ୍ଣପ୍ରେମେ ।୧୪୪।
'ବୃନ୍ଦାବନ ଯାବେନ ପ୍ରଭୁ'—ଶୁନି ନୃସିଂହାନନ୍ଦ ।
ପଥ ସାଜାଇଲ ମନେ ପାଇୟା ଆନନ୍ଦ ।୧୪୫।
କୁଲିଆନଗର ହୈତେ ପଥ ରତ୍ନେ ବାନ୍ଧାଇଲ ।
ନିର୍ବୃନ୍ତ-ପୁଷ୍ପେର ଶଯ୍ୟା ଉପରେ ପାତିଲ ।୧୪୬।
ପଥେ ଦୁଇଦିଗେ ପୁଷ୍ପ ବକୁଲେର ଶ୍ରେଣୀ ।
ମଧ୍ୟେମଧ୍ୟେ ଦୁଇପାଶେ ଦିବ୍ୟ ପୁଷ୍କରିଣୀ ।୧୪୭।
ରତ୍ନବାନ୍ଧା ଘାଟ ତାହେ—ପ୍ରଫୁଲ୍ଲ କମଲ ।
ନାନା-ପକ୍ଷି-କୋଲାହଲ—ସୁଧାସମ ଜଲ ।୧୪୮
ଶୀତଲ ସମୀର ବହେ ନାନା ଗନ୍ଧ ଲଞା ।
କାନାଇରନାଟଶାଲା-ପର୍ଯ୍ୟନ୍ତ ଲଇଲ ବାନ୍ଧିୟା ॥
ଆଗେ ମନ ନାହିଁ ଚଲେ, ନା ପାରେ ବାନ୍ଧିତେ ।
ପଥ ବାନ୍ଧା ନା ଯାୟ, ନୃସିଂହ ହଇଲା ବିସ୍ମିତେ ॥

---

ଏହି ସୂତ୍ରର ବିଶଦ ବର୍ଣ୍ଣନ ଶ୍ରୀଚୈତନ୍ୟଚରିତାମୃତରେ ଗ୍ରନ୍ଥକାର କରି ନାହାନ୍ତି ।୧୩୧। କୃଷ୍ଣଜନ୍ମଯାତ୍ରା—ଜନ୍ମାଷ୍ଟମୀ ବୋଲି ଯାହା କହିତ । ୧୩୬ । ପୁରୀ ଗୋସାଇଁ ··· ପ୍ରସଙ୍ଗ—ଏ ସୂତ୍ରର ବିଶଦବର୍ଣ୍ଣନ ଏ ଗ୍ରନ୍ଥରେ ନାହିଁ । ୧୩୯ । ବିଦ୍ୟାବାଚସ୍ପତି—ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ଭ୍ରାତା, ଗଙ୍ଗାକୂଳ କୁମାରହଟ୍ଟନିବାସୀ ମଧୁସୂଦନ ବିଦ୍ୟାବାଚସ୍ପତି । ସଙ୍ଘଟ୍ଟ—ବହୁ ଲୋକର ଏକତ୍ର ସମ୍ମିଳନ । ୧୪୦ ।

ଗୋପାଳ ବିପ୍ରର—ଗୋପାଳ ଚାପାଳ ଯାହାଙ୍କର ଶ୍ରୀବାସ ପଣ୍ଡିତଙ୍କଠାରେ ଅପରାଧ ହୋଇଥିଲା ।

ଆଦିଲୀଳା ୧୭ଶ ପରିଚ୍ଛେଦ ୩୩ଠାରୁ ୪୧ ପୟାର । ୧୪୩ ।

ତାରେ—ପାଷଣ୍ଡୀମାନଙ୍କୁ ଏବଂ ନିନ୍ଦୁକମାନଙ୍କୁ । ୧୪୪ । ପଥ ସାଜାଇଲ ମନେ—ମନେ ମନେ ପଥ ସଜାଇଲେ । ୧୪୫ । ନିର୍ବୃନ୍ତ—ଫୁଲର ଡେମ୍ଫ ଛଡ଼ାଇ ।

ମନେ ମନେ ରତ୍ନରେ ପଥ ବନ୍ଧାଇ ତା ଉପରେ ବିଛଣା କରି ତା-ଉପରେ ଡେମ୍ଫ-ଛଡ଼ା ଫୁଲ ବିଛାଇଦେଲେ । ୧୪୬ ।

କାନାଇର ନାଟଶାଲା—ଗ୍ରାମବିଶେଷ । ୧୪୯ ।

ନିଶ୍ଚୟ କରିଯା କହି ଶୁନ ସର୍ବଜନ !— ।
ଏବାର ନା ଯାବେନ ପ୍ରଭୁ ଶ୍ରୀବୃନ୍ଦାବନ ।୧୫୧।
କାନାଇରନାଟ୍‌ଶାଲା ହୈତେ ଆସିବ ଫିରିଯା ।
ଜାନିବେ ପଶ୍ଚାତ୍, କହିନୁ ନିଶ୍ଚୟ କରିଯା ।୧୫୨।
ଗୋସାଞି କୁଲିଆ ହୈତେ ଚଲିଲା ବୃନ୍ଦାବନ ।
ସଙ୍ଗେ ସହସ୍ରେକ ଲୋକ— ଯତ ଭକ୍ତଗଣ ।୧୫୩
ଯାହାଁଯାହାଁ ଯାୟ, ତାହାଁ କୋଟିସଂଖ୍ୟ ଲୋକ ।
ଦେଖିତେ ଆଇସେ, ଦେଖି ଖଣ୍ଡେ ଦୁଃଖ-ଶୋକ ॥
ଯାହାଁ ତାହାଁ ପ୍ରଭୁର ଚରଣ ପଡ଼ୟେ ଚଲିତେ ।
ସେଇ ମୃତ୍ତିକା ଲୟ ଲୋକ, ଗର୍ତ୍ତ ହୟ ପଥେ ॥
ଐଛେ ଚଲି ଆଇଲା ପ୍ରଭୁ ରାମକେଲିଗ୍ରାମ ।
ଗୌଡ଼େର ନିକଟେ ଗ୍ରାମ ଅତି ଅନୁପାମ ।୧୫୬।
ତାହାଁ ନୃତ୍ୟ କରେ ପ୍ରଭୁ ପ୍ରେମେ ଅଚେତନ ।
କୋଟିକୋଟି ଲୋକ ଆଇଲ ଦେଖିତେ ଚରଣ ॥
ଗୌଡ଼େଶ୍ୱର ଯବନ-ରାଜା ପ୍ରଭାବ ଶୁନିଯା ।
କହିତେ ଲାଗିଲା କିଛୁ ବିସ୍ମିତ ହଇଯା — ।୧୫୮
ବିନା-ଦାନେ ଏତ ଲୋକ ଯାର ପାଛେ ହୟ ।
ସେଇ ତ ଗୋସାଞି —ଇହା ଜାନିହ ନିଶ୍ଚୟ ॥
କାଜୀ ଯବନ ! ଇହାର ନା କରିହ ହିଂସନ ।
ଆପନ ଇଚ୍ଛାୟ ବୁଲୁନ୍—ଯାହାଁ ଉଁହାର ମନ ॥

କେଶବଛତ୍ରୀରେ ରାଜା ବାର୍ତ୍ତା ପୁଛିଲ ।
ପ୍ରଭୁର ମହିମା ଛତ୍ରୀ ଉଡ଼ାଇଯା ଦିଲ— ।୧୬୧
ଭିଖାରୀ ସନ୍ନ୍ୟାସୀ କରେ ତୀର୍ଥ ପର୍ଯ୍ୟଟନ ।
ତାଁରେ ଦେଖିବାରେ ଆଇସେ ଦୁଇ ଚାରି ଜନ ॥
ଯବନେ ତୋମାର ଠାଁଇ କରୟେ ଲାଗାନି ।
ତାଁର ହିଂସାୟ ଲାଭ ନାହିଁ, ହୟ ଆରେ ହାନି ॥
ରାଜାରେ ପ୍ରବୋଧି କେଶବ ବ୍ରାହ୍ମଣ ପାଠାଇଯା ।
ଚଲିବାର ତରେ ପ୍ରଭୁରେ ପାଠାଇଲ କହିଯା ॥
ଦବୀରଖାସେରେ ରାଜା ପୁଛିଲ ନିଭୃତେ ।
ଗୋସାଞିର ମହିମା ତେଁହୋ ଲାଗିଲା କହିତେ —।
ଯେ ତୋମାରେ ରାଜ୍ୟ ଦିଲ ତୋମାର ଗୋଁସାଞି॥
ତୋମାର ଦେଶେ ତୋମାର ଭାଗ୍ୟେ ଜନ୍ମିଲ
ଆସିଞା ।୧୬୬।
ତୋମାର ମଙ୍ଗଲ ବାଞ୍ଛେ— ବାକ୍ୟସିଦ୍ଧ ହୟ ।
ଇଁହାର ଆଶୀର୍ବାଦେ ତୋମାର ସର୍ବତ୍ରେତେ ଜୟ॥
ମୋରେ କେନ ପୁଛ, ତୁମି ପୁଛ ଆପନ ମନ ।
ତୁମି ନରାଧିପ ହଓ—ବିଷ୍ଣୁ-ଅଂଶସମ ।୧୬୮।
ତୋମାର ଚିତ୍ତେ ଚୈତନ୍ୟେର କୈଛେ ହୟ
ଜ୍ଞାନ ?
ତୋମାର ଚିତ୍ତେ ଯେଇ ଲୟ, ସେଇ ତ ପ୍ରମାଣ॥

---

ଶ୍ରୀ ନୃସିଂହାନନ୍ଦ ତାଙ୍କ ନିକଟ ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କୁ କହିଲେ ଯେ, ଶ୍ରୀମନ୍ ମହାପ୍ରଭୁ ଏଥର ବୃନ୍ଦାବନ ଯାଇ କାନାଇର ନାଟଶାଳା ଗ୍ରାମରୁ ଫେରି ଆସିବେ, ଏହା ମୁଁ ନିଶ୍ଚୟ କରି କହୁଅଛି । ମହାପ୍ରଭୁ ସେଠାକୁ ଯାଇ ଫେରି ଆସିଲାରୁ ମୋର କଥାର ସତ୍ୟତା ବୁଝି ପାରିବ । ୧୫୧, ୧୫୨ ।

ଗୌଡ଼େର – ଗୌଡ଼ ରାଜଧାନୀର । ୧୫୬ । ଗୌଡ଼େଶ୍ୱର ଯବନରାଜା — ହୋସେନ୍‌ସାହା; ପ୍ରଭାବ—ଶ୍ରୀମହାପ୍ରଭୁଙ୍କର ପ୍ରଭାବ । ୧୫୮ । ବିନା ଦାନେ—ବିନା ବେତନରେ ।

ଗୋସାଇଁ—ଭଗବାନ୍ । ଅର୍ଥାତ୍ ସର୍ବଆକର୍ଷକ ଏହାଙ୍କ ଭଗବତ୍‌ପ୍ରଭାବ । ୧୫୯ ।

କାଜୀ ଯବନ —କାଜୀମାନେ ଓ ଅପର ଯବନମାନେ । ୧୬୦ ।

କେଶବଛତ୍ରୀ—ହୋସେନ୍‌ସାହାଙ୍କର ବଶିଷ୍ଠ କର୍ମଚାରୀ । ୧୬୧ ।

ଲାଗାନି—ଖଚ । ୧୬୩ । ଚଲିବାର ତରେ—ସେଠାରୁ ଚାଲିଯିବାକୁ । ୧୬୪ ।

ଦବୀରଖାସ—ଗୌଡ଼େଶ୍ୱର ହୁସେନସାହାଙ୍କର ମନ୍ତ୍ରୀ ଶ୍ରୀରୂପଙ୍କ ନବାବଦତ୍ତ ଉପାଧି । ଏହିରୂପହିଁ ପରବର୍ତ୍ତୀ ପ୍ରସିଦ୍ଧ ରୂପ ଗୋସ୍ୱାମୀ । ୧୬୫ ।

ଗୋସାଞା—ପ୍ରଭୁ-ଉପାସ୍ୟଦେବତା । ୧୬୬ ।

ରାଜା କହେ—ଶୁନ ମୋର ମନେ ଯେଇ ଲୟ ।
ସାକ୍ଷାତ୍ ଈଶ୍ୱରି ଇଁହୋ, ନାହିକ ସଂଶୟ ।୧୭୦।
ଏତ କହି ରାଜା ଗେଲା ନିଜ ଅଭ୍ୟନ୍ତରେ ।
ତବେ ଦବୀରଖାସ ଅଇଲା ଆପନାର ଘରେ ॥
ଘରେ ଆସି ଦୁଇ ଭାଇ ଯୁଗତି କରିୟା ।
ପ୍ରଭୁ ଦେଖିବାରେ ଚଲେ ବେଶ ଲୁକାଇୟା ॥
ଅର୍ଦ୍ଧରାତ୍ର୍ୟେ ଦୁଇଭାଇ ଅଇଲା ପ୍ରଭୁସ୍ଥାନେ ।
ପ୍ରଥମେ ମିଲିଲା ନିତ୍ୟାନନ୍ଦ-ହରିଦାସ-ସନେ ॥
ତାଁରା ଦୁଇଜନ ଜାନାଇଲା ପ୍ରଭୁର ଗୋଚରେ ।
ରୂପ-ସାକରମଲ୍ଲିକ ଅଇଲା ତୋମା ଦେଖିବାରେ ॥
ଦୁଇ ଗୁଚ୍ଛ ତୃଣ ଦୋଁହେ ଦଶନେ ଧରିୟା ।
ଗଲେ ବସ୍ତ୍ର ବାନ୍ଧି ପଡ଼େ ଦଣ୍ଡବତ୍ ହୟା ।୧୭୫।
ଦୈନ୍ୟ-ରୋଦନ କରେ—ଆନନ୍ଦେ ବିହ୍ୱଲ ।
ପ୍ରଭୁ କହେ—ଉଠଉଠ ହଇଲ ମଙ୍ଗଲ ।୧୭୬।
ଉଠି ଦୁଇଭାଇ ତବେ ଦନ୍ତେ ତୃଣ ଧରି ।
ଦୈନ୍ୟ କରି ସ୍ତୁତି କରେ କରଯୋଡ଼ କରି—॥
ଜୟଜୟ ଶ୍ରୀକୃଷ୍ଣଚୈତନ୍ୟ ଦୟାମୟ ।
ପତିତପାବନ ଜୟଜୟ ମହାଶୟ ।୧୭୮।
ନୀଚଜାତି ନୀଚସଙ୍ଗୀ କରି ନୀଚ କାଜ ।
ତୋମାର ଅଗ୍ରେତେ ପ୍ରଭୁ ! କହିତେ ବାସି ଲାଜ ॥

ତଥାହି ଭକ୍ତିରସାମୃତସିନ୍ଧୌ ପୂର୍ବବିଭାଗେ
ସାଧନଭକ୍ତିଲହର୍ଯ୍ୟାମ୍ (୭୫)—

ମତ୍ତୁଲ୍ୟୋ ନାସ୍ତି ପାପାତ୍ମା ନାପରାଧୀ ଚ କଶ୍ଚନ ।
ପରିହାରେଽପି ଲଜ୍ଜା ମେ କିଂ ବ୍ରୁବେ
ପୁରୁଷୋତ୍ତମ ॥ ୧୦ ॥

ପତିତପାବନ ହେତୁ ତୋମାର ଅବତାର ।
ଆମା ବହି ଜଗତେ ପତିତ ନାହିଁ ଆର ।୧୮୦।

---

ପାପିନାଂ ମଧ୍ୟେ ମତ୍ତୁଲ୍ୟଃ ମତ୍ସମାନଃ ପାପାତ୍ମା ଅଧମାତ୍ମା ନାସ୍ତି ନ ଭବେତ୍ । ଚ ପୁନଃ ମଦ୍ବିଧଃ କଶ୍ଚନ ଜନଃ ଅପରାଧୀ ନାସ୍ତି । ହେ ପୁରୁଷୋତ୍ତମ, ହେ ପ୍ରଭୋ ! ପରିହାରେଽପି ତ୍ୱତ୍ସମକ୍ଷଂ ନିବେଦନେଽପି ମେ ମମ ଲଜ୍ଜା ଭବେତ୍ । ଅତଏବ ତ୍ୱାଂ କିଂ ବ୍ରୁବେ କିଂ କଥୟାମ୍ୟହଂ । ୧୦ମ ଶ୍ଲୋକ ।

---

ଦୁଇ ଭାଇ—ରୂପ ଓ ସନାତନ । ବେଶ ଲୁକାଇୟା—ବେଶ ବଦଳାଇ । ୧୭୨ । ସାକରମଲ୍ଲିକ—ଶ୍ରୀସନାତନ ଗୋସ୍ୱାମୀଙ୍କର ରାଜଦତ୍ତ ଉପାଧି ।୧୭୪। ନୀଚଜାତି—ନୀଚକାର୍ଯ୍ୟ ।

ଯଦିଓ ଶ୍ରୀରୂପସନାତନ ସତ୍କୁଳୀନ ବୈଦିକ ବ୍ରାହ୍ମଣ, ତଥାପି ସେମାନେ ନୀଚସଙ୍ଗତ ଅର୍ଥାତ୍ ଯବନ ରାଜାର ମନ୍ତ୍ରିକାର୍ଯ୍ୟ କରୁଥିବାରୁ ସର୍ବଦା ତାଙ୍କ ସଂସର୍ଗରେ ରହିବାହେତୁ ସେମାନେ ଆପଣାକୁ ଯବନତୁଲ୍ୟ ନୀଚ ମନେ କରନ୍ତି । ସେହିହେତୁ ସେମାନେ ଶ୍ରୀଜଗନ୍ନାଥଙ୍କ ଦେଉଳ ମଧ୍ୟକୁ ପ୍ରବେଶ କରୁ ନ ଥିଲେ । କେବଳ ରଥଯାତ୍ରା ସମୟରେ ସାଧାରଣ ଲୋକଙ୍କ ସହିତ ପତିତପାବନ ପ୍ରଭୁଙ୍କୁ ଦର୍ଶନ କରୁଥିଲେ । ୧୭୯ ।

ହେ ପୁରୁଷୋତ୍ତମ ଭଗବାନ୍ ! ମୋ ପରି ପାପାତ୍ମା ଓ ଅପରାଧୀ ଆଉ ଦ୍ୱିତୀୟ ନାହିଁ । ଆପଣଙ୍କ ନିକଟରେ ମୋର ଅପରାଧ ମାର୍ଜନା ବିଷୟ ନିବେଦନ କରିବାକୁ ସୁଦ୍ଧା ମୋର ଲଜ୍ଜା ହେଉଅଛି । ମୁଁ ଆଉ ଅଧିକ କି କହିବି । ୧୦ମ ଶ୍ଲୋକାର୍ଥ ।

ଶ୍ରୀରୂପସନାତନ ମହାପ୍ରଭୁଙ୍କୁ ସ୍ତୁତି କରି କହୁଅଛନ୍ତି ଯେ ଆପଣ, ପତିତମାନଙ୍କୁ ଉଦ୍ଧାର କରିବା ସକାଶେ ଏହି ଧରାଧାମରେ ଅବତୀର୍ଣ୍ଣ ହୋଇଅଛନ୍ତି । କିନ୍ତୁ ଆମ୍ଭମାନଙ୍କ ତୁଲ୍ୟ ଜଗତରେ ଆଉ ପତିତ ନାହାନ୍ତି । ୧୮୦ ।

ଶ୍ରୀମନ୍ ମହାପ୍ରଭୁଙ୍କର ପତିତପାବନ କାର୍ଯ୍ୟର ଏବଂ ନିଜର ପତିତତ୍ୱର ବିଶେଷତ୍ୱ ଦେଖାଉ ଅଛନ୍ତି ।

ଜଗାଇ-ମାଧାଇ ଦୁଇ କରିଲେ ଉଦ୍ଧାର ।
ତାହା ଉଦ୍ଧାରରେ ଶ୍ରମ ନହିଲ ତୋମାର ।୧୮୧।
ବ୍ରାହ୍ମଣଜାତି ତାରା—ନବଦ୍ୱୀପେ ଘର ।
ନୀଚସେବା ନା କରେ, ନହେ ନୀଚେର କୂର୍ପର ॥
ସବେ ଏକ ଦୋଷ ତାର ହୟ—ପାପାଚାର ।
ପାପରାଶି ଦହେ ନାମାଭାସେତେ ତୋମାର ।୧୮୩।
ତୋମାର ନାମ ଲଞା କରେ ତୋମାର ନିନ୍ଦନ ।
ସେଇ ନାମ ହୈଲ ତାର ମୁକ୍ତିର କାରଣ ।୧୮୪।

ଜଗାଇ-ମାଧାଇ ହୈତେ କୋଟି-କୋଟି-ଗୁଣେ ।
ଅଧମ ପତିତ ପାପୀ ଆମି ଦୁଇଜନେ ।୧୮୫।
ମ୍ଲେଚ୍ଛଜାତି ମ୍ଲେଚ୍ଛସେବୀ କରି ମ୍ଲେଚ୍ଛକର୍ମ ।
ଗୋବ୍ରାହ୍ମଣଦ୍ରୋହି-ସଙ୍ଗେ ଆମାର ସଙ୍ଗମ ।୧୮୬।
ମୋର କର୍ମ ମୋର ହାଥେ ଗଲାୟ ବାନ୍ଧିୟା ।
କୁବିଷୟ-ବିଷ୍ଠାଗର୍ତ୍ତେ ଦିୟାଛେ ଫେଲାଇୟା ॥
ଆମା ଉଦ୍ଧାରିତେ ବଲୀ ନାହି ତ୍ରିଭୁବନେ ।
ପତିତପାବନ ତୁମି—ସବେ ତୋମା ବିନେ ।୧୮୮

ଆପଣ ପତିତପାବନ ହେତୁରୁ ଶ୍ରୀନବଦ୍ୱୀପଲୀଳାରେ ଜଗାଇ, ମାଧାଇ ନାମକ ଦୁଇଜଣ ପ୍ରସିଦ୍ଧ ପତିତଙ୍କୁ ଉଦ୍ଧାର କରିଅଛନ୍ତି । କିନ୍ତୁ ସେମାନଙ୍କ ଉଦ୍ଧାର କାର୍ଯ୍ୟରେ ଆପଣଙ୍କର କିଞ୍ଚିତ୍ ମାତ୍ର ଶ୍ରମ ହୋଇ ନାହିଁ । କାରଣ, ଜଗାଇ ମାଧାଇ ନୀଚ ସେବକ ନ ଥିଲେ କିମ୍ବା ନୀଚର ଦାସ ନ ଥିଲେ, ତେଣୁ ସେମାନେ ବ୍ରାହ୍ମଣ ଜାତିରୁ ପତିତ ହୋଇ ନ ଥିଲେ । ପୁନଶ୍ଚ ସେମାନେ ଶ୍ରୀନବଦ୍ୱୀପରେ ବାସ କରୁଥିବାରୁ ସେହି ସ୍ଥାନ ମାହାତ୍ମ୍ୟରେ ସେମାନଙ୍କର ପାପ କ୍ଷୟ ହେଉଥିଲା, ସେମାନଙ୍କର ଏକମାତ୍ର ଦୋଷ ଥିଲା ଯେ, ସେମାନେ ପାପାଚରଣରେ ରତ ଥିଲେ । କିନ୍ତୁ ସେହି ପାପରାଶି ଆପଣଙ୍କ ନାମାଭାସଦ୍ୱାରା ନଷ୍ଟ ହୁଏ । ସେହି ନାମାଭାସ ମଧ୍ୟ ସେମାନେ ଲାଭ କରିଥିଲେ । ଯେହେତୁ ସେମାନେ ଆପଣଙ୍କ ନାମ ଉଚ୍ଚାରଣ କରି ଆପଣଙ୍କୁ ନିନ୍ଦା କରୁଥିଲେ । ତେଣୁ ସେହି ନାମ ଉଚ୍ଚାରଣଦ୍ୱାରା ସେମାନେ ନାମାଭାସର ଫଳସ୍ୱରୂପ ମୁକ୍ତି ଲାଭ କରିଥିଲେ । ଏହି କାରଣରୁ ସେମାନଙ୍କୁ ପ୍ରକାଶ୍ୟଭାବରେ ଆପଣ ଯେ ଉଦ୍ଧାର କରିଥିଲେ, ସେଥିରେ ଆପଣଙ୍କର କୌଣସି ଶ୍ରମ ହୋଇ ନାହିଁ ।

( ଏତଦ୍ୱାରା ସ୍ଥାନମାହାତ୍ମ୍ୟ ଓ ନାମମାହାତ୍ମ୍ୟ ଲୋକଶିକ୍ଷା ସକାଶେ ପ୍ରକାଶ କଲେ । )

ଉପରୋକ୍ତ ପ୍ରକାର ଭାଗ୍ୟବାନ୍ ଜଗାଇ ମାଧାଇଠାରୁ ଅମ୍ଭେ ଦୁହେଁ କୋଟି କୋଟି ଗୁଣରେ ପତିତ, ଅଧମ ଓ ପାପୀ; କାରଣ ଅମ୍ଭେମାନେ ମ୍ଲେଚ୍ଛର ସେବକ ହୋଇ, ମ୍ଲେଚ୍ଛକର୍ମ କରି ଓ ଗୋବ୍ରାହ୍ମଣଦ୍ରୋହୀ ମ୍ଲେଚ୍ଛମାନଙ୍କ ସଙ୍ଗରେ ସର୍ବଦା ଅବସ୍ଥାନ କରିବା ହେତୁରୁ ବ୍ୟବହାରରେ ସ୍ୱଜାତିତ୍ୱ ହରାଇ ମ୍ଲେଚ୍ଛବତ୍ ହୋଇଅଛୁଁ । ଏହି ପ୍ରକାର କର୍ମଦ୍ୱାରା ଅମ୍ଭେମାନେ ପ୍ରଭୂତ ଧନ ଉପାର୍ଜନ କରି ମହାବିଷୟୀ ହୋଇଅଛୁଁ ଯାହାକି ସ୍ୱଭାବତଃ ନରକ ତୁଲ୍ୟ । ଏହାଦ୍ୱାରା ଦେଖାଉ-ଅଛନ୍ତି ଯେ ଅମ୍ଭେମାନେ ବ୍ରାହ୍ମଣ ହେଲେହେଁ ପତିତ ହୋଇଅଛୁଁ, ଯାହାକି ଜଗାଇ ମାଧାଇଙ୍କର ଘଟି ନ ଥିଲା । ଜଗାଇ, ମାଧାଇଙ୍କର ସ୍ଥାନମାହାତ୍ମ୍ୟର ଓ ନାମମାହାତ୍ମ୍ୟର ଯେଉଁ ଫଳ ଲାଭ ହୋଇ-ଥିଲା ତାହା ଅମ୍ଭମାନଙ୍କ ଭାଗ୍ୟରେ ଘଟି ନାହିଁ । ପରନ୍ତୁ ଅମ୍ଭେମାନେ କୁବିଷୟୀ ହୋଇ କାମକ୍ରୋଧ-ଦମ୍ଭାଦି ରିପୁବର୍ଗଙ୍କଦ୍ୱାରା ସର୍ବଦା ପ୍ରପୀଡ଼ିତ । ଅତଏବ ଜଗାଇ, ମାଧାଇ ତୁଳନାରେ ମହାପତିତ ।

ଏ ସମସ୍ତ କଥା ଶ୍ରୀରୂପସନାତନ ଯୁକ୍ତିଯୁକ୍ତଭାବରେ ଦେଖାଇଲେ ମଧ୍ୟ ଏହା ସେମାନଙ୍କର ଦୈନ୍ୟ ବଚନ, କାରଣ ସେମାନେ ମହାପଣ୍ଡିତ ଓ ଆବାଲ୍ୟରୁ ବୈଷ୍ଣବ, ବୈଷ୍ଣବବ୍ରାହ୍ମଣସେବୀ ଏବଂ ଶ୍ରୀମାନ୍ ମହାପ୍ରଭୁଙ୍କ ସହ ମିଳନ ପୂର୍ବରୁ ତାହାଙ୍କର ଏକାନ୍ତ ଅନୁଗ ଭକ୍ତ । ୧୮୧ରୁ ୧୮୭ ।

ସବେ—ଏକା—୧୮୮ ।

ଆମା ଉଦ୍ଧାରିୟା ଯଦି ଦେଖାଅ ନିଜ ବଳ ।
ପତିତପାବନ ନାମ ତବେ ସେ ସଫଳ ।୧୮୯।
ସତ୍ୟ ଏକ ବାତ କହୋँ—ଶୁନ ଦୟାମୟ !
ମୋ-ବିନୁ ଦୟାର ପାତ୍ର ଜଗତେ ନା ହୟ ।୧୯୦।
ମୋରେ ଦୟା କରି କର ସ୍ୱଦୟା ସଫଳ ।
ଅଖିଲ-ବ୍ରହ୍ମାଣ୍ଡ ଦେଖୁକ୍ ତୋମାର ଦୟା-ବଳ ॥

ତଥାହି ଯାମୁନମୁନିବରଚିତେ
ସ୍ତୋତ୍ରରତ୍ନେ ( ୫୦ ) —

ନ ମୃଷା ପରମାର୍ଥମେବ ମେ
ଶୃଣୁ ବିଜ୍ଞାପନମେକମଗ୍ରତଃ ।
ଯଦି ମେ ନ ଦୟିଷ୍ୟସେ ତଦା
ଦୟନୀୟସ୍ତବନାଥ ଦୁର୍ଲ୍ଲଭଃ ॥ ୧୧ ॥

ଆପନା ଅଯୋଗ୍ୟ ଦେଖି ମନେ ପାଙ୍ଗ କ୍ଷୋଭ ।
ତଥାପି ତୋମାର ଗୁଣେ ଉପଜାୟ ଲୋଭ ।୧୯୨
ବାମନ ଯୈଛେ ଚାଁଦ ଧରିତେ ଚାହେ କରେ ।
ତୈଛେ ଏଇ ବାଞ୍ଛା ମୋର ଉଠୟେ ଅନ୍ତରେ ॥

ତଥାହି ଯାମୁନମୁନିବରଚିତେ
ସ୍ତୋତ୍ରରତ୍ନେ ( ୪୬ )—

ଭବନ୍ତମେବାନୁଚରନ୍ନିରନ୍ତର-
ପ୍ରଶାନ୍ତନିଃଶେଷମନୋରଥାନ୍ତରଃ ।
କଦାହମୈକାନ୍ତିକ-ନିତ୍ୟକିଙ୍କରଃ ।
ପ୍ରହର୍ଷୟିଷ୍ୟାମି ସନାଥଜୀବିତଂ ॥ ୧୨ ॥

---

ହେ ନାଥ ? ଅଗ୍ରତଃ ତବ ସାକ୍ଷାତ୍ ମେ ମମ ଏକଂ ବିଜ୍ଞାପନଂ ନିବେଦନଂ ଶୃଣୁ ଅବଧାନଂ କୁରୁ । ପରମାର୍ଥଂ ବାସ୍ତବଂ ଯଥାର୍ଥଂ ମୃଷା ମିଥ୍ୟା ନ ଏବ ଇତି ଭବତି । ଯଦି ମେ ମହ୍ୟଂ ନ ଦୟିଷ୍ୟସେ ଦୟାଂ ନ କରିଷ୍ୟସେ ତଦା ତବ ଦୟନୀୟଃ ଦାୟାଯୋଗ୍ୟପାତ୍ରଂ ଦୁର୍ଲଭଃ ଭବିଷ୍ୟତି । ମତ୍ତୁସମଃ ହୀନଃ ଜଗତି ନାସ୍ତୀତି ଭାବଃ । ୧୧ଶ ଶ୍ଲୋକଃ ।

ହେ ନାଥ ? ପ୍ରଶାନ୍ତ ନିଃଶେଷ ମନୋରଥାନ୍ତରଃ (ପ୍ରଶାନ୍ତଂ ନିଃଶେଷଂ — ମନୋରଥାନାଂ ଅନ୍ତରଂ ତଭିନ୍ନଂ ବିଷୟବାସନା ଯସ୍ୟ ସଃ) ଐକାନ୍ତିକନିତ୍ୟକିଙ୍କରଃ (ଭୂତ୍ୱା) ସଃ ଅହଂ (ମାଗଃ) ଭବନ୍ତଂ ଏବ ନିରନ୍ତରଂ ଅନୁଚରନ୍ ( ପରିଚର୍ଯ୍ୟାଂ କୁର୍ବନ୍ ) କଦା ଜୀବିତଂ ( ଯଥା ସ୍ୟାତ୍ତଥା ) ପ୍ରହର୍ଷୟିଷ୍ୟାମି । ୧୨ଶ ଶ୍ଲୋକ ।

---

ବାତ୍—କଥା—୧୯୦ ।

ହେ ଭଗବାନ୍ ! ଆପଣ ମୋର ଗୋଟିଏ ନିବେଦନ ଶ୍ରବଣ କରନ୍ତୁ । ଏହା ମିଥ୍ୟା ନୁହେଁ ଯଥାର୍ଥ । ଆପଣ ଯଦି ମୋ ପ୍ରତି ଦୟା ନ କରନ୍ତି, ହେ ନାଥ ! ତାହାହେଲେ ଆପଣଙ୍କର ଦୟାରପାତ୍ର ଏ ଜଗତରେ ଦୁର୍ଲଭ । ଏହାର ଭାବାର୍ଥ ଏହି ଯେ, ଆପଣଙ୍କର ଦୟାଳୁତା ଅପୂର୍ଣ୍ଣ ରହିବ । ୧୧ଶ ଶ୍ଲୋକାର୍ଥ ।

ଆମ୍ଭମାନଙ୍କୁ ଦୟାର ଅଯୋଗ୍ୟ ବିବେଚନା କରି ମନରେ ବଡ଼ ଦୁଃଖ ଉପସ୍ଥିତ ହେଲେହେଁ ଆପଣଙ୍କର ଦୟାଳୁତା ଗୁଣହିଁ ତତ୍‌ପ୍ରତି ଲୋଭ ଉପଜାତ କରାଉଅଛି । ତାହା ବାମନର ହାତରେ ଚନ୍ଦ୍ର ଧରିବା ଲୋଭ ତୁଲ୍ୟ—୧୯୨।୧୯୩ ।

ହେ ନାଥ ? ଏହି ହୀନ ବ୍ୟକ୍ତି କେବେ ସର୍ବପ୍ରକାର ବିବିଧ ବିଷୟବାସନା ପରିତ୍ୟାଗ-ପୂର୍ବକ ଆପଣଙ୍କର ଐକାନ୍ତିକ ନିତ୍ୟଦାସ ହୋଇ ନିରନ୍ତର ଆପଣଙ୍କର ସେବା କରି ନିଜ ଜୀବନକୁ ଆନନ୍ଦିତ କରିବ । ୧୨ଶ ଶ୍ଲୋକାର୍ଥ ।

ଶୁନି ପ୍ରଭୁ କହେ — ଶୁନ ରୂପ ଦବୀରଖାସ !
ତୁମି ଦୁଇଭାଇ ମୋର ପୁରାତନ ଦାସ । ୧୯୪ ।
ଆଜ ହୈତେ ଦୋଁହାର ନାମ— ରୂପ ସନାତନ ।
ଦୈନ୍ୟ ଛାଡ଼, ତୋମାର ଦୈନ୍ୟେ ଫାଟେ ମୋର
ମନ । ୧୯୫ ।
ଦୈନ୍ୟପତ୍ରୀ ଲିଖି ମୋରେ ପାଠାଇଲେ ବାରବାର ।
ସେଇପତ୍ରୀ-ଦ୍ୱାରା ଜାନି ତୋମାର ବ୍ୟବହାର ॥
ତୋମାର ହୃଦୟ-ଇଚ୍ଛା ଜାନି ପତ୍ରୀ-ଦ୍ୱାରେ ।
ତୋମା ଶିଖାଇତେ ଶ୍ଳୋକ ପାଠାଇଲ
ତୋମାରେ । ୧୯୬ ।

ତଥାହି ଶିକ୍ଷାଶ୍ଳୋକଃ—

ପରବ୍ୟସନିନୀ ନାରୀ ବ୍ୟଗ୍ରାପି ଗୃହକର୍ମସୁ ।
ତଦେବାସ୍ୱାଦୟତ୍ୟନ୍ତର୍ନବସଙ୍ଗରସାୟନମ୍ ॥୧୩॥

ଗୌଡ଼-ନିକଟ ଆସିତେ ମୋର ନାହି ପ୍ରୟୋଜନ ।
ତୋମାଦୋଁହା ଦେଖିତେ ମୋର ଇହାଁ ଆଗମନ ॥
ଏଇ ମୋର ମନେର କଥା କେହୋ ନାହି ଜାନେ ।
ସଭେ ବୋଲେ— କେନେ ଆଇଲା ରାମକେଲି-
ଗ୍ରାମେ ? । ୧୯୯ ।
ଭାଲ ହୈଲ, ଦୁଇଭାଇ ଆଇଲା ମୋର ସ୍ଥାନେ ।
ଘର ଯାହ, ଭୟ କିଛୁ ନା କରିହ ମନେ ।୨୦୦।
ଜନ୍ମେଜନ୍ମେ ତୁମି-ଦୁଇ କିଙ୍କର ଆମାର ।
ଅଚିରାତେ କୃଷ୍ଣ ତୋମାର କରିବ ଉଦ୍ଧାର ॥
ଏତ ବଲି ଦୋଁହାର ଶିରେ ଧରେ ଦୁଇହାଥେ ।
ଦୁଇଭାଇ ପ୍ରଭୁପଦ ନିଲ ନିଜମାଥେ । ୨୦୨ ।
ଦୋଁହା ଆଲିଙ୍ଗିୟା ପ୍ରଭୁ ବଲିଲ ଭକ୍ତଗଣେ— ।
ସଭେ କୃପା କରି ଉଦ୍ଧାରହ ଦୁଇଜନେ ।୨୦୩।
ଦୁଇଜନେ ପ୍ରଭୁର କୃପା ଦେଖି ଭକ୍ତଗଣେ ।
'ହରି ହରି' ବୋଲେ ସଭେ ଆନନ୍ଦିତମନେ ॥
ନିତ୍ୟାନନ୍ଦ ହରିଦାସ ଶ୍ରୀବାସ ଶଙ୍କର ।
ମୁକୁନ୍ଦ ଜଗଦାନନ୍ଦ ମୁରାରି ବକ୍ରେଶ୍ୱର ।୨୦୫।
ସଭାର ଚରଣ ଧରି ପଡ଼େ ଦୁଇ ଭାଇ ।
ସବେ ବୋଲେ- ଧନ୍ୟ ତୁମି, ପାଇଲେ ଗୋସାଞି ॥
ସଭା-ପାଶ ଆଜ୍ଞା ଲଞା ଚଲନସମୟ ।
ପ୍ରଭୁ-ପଦେ କହେ କିଛୁ କରିୟା ବିନୟ ।୨୦୬।

---

ପରବ୍ୟସନିନୀ ପରପୁରୁଷସଙ୍ଗିନୀ ନାରୀ କୁଳବଧୂଃ ଗୃହକର୍ମସୁ ରନ୍ଧନଭୋଜନାଦିଷୁ ବ୍ୟଗ୍ରାପି ମହାବ୍ୟସ୍ତାପି ଅନ୍ତର୍ନବସଙ୍ଗରସାୟନଂ ପରକୀୟସଙ୍ଗମରସଂ ତଦେବ ନିଶ୍ଚୟଂ ଆସ୍ୱାଦୟତି ନିର୍ଯ୍ୟାସାସ୍ୱାଦନଂ କରୋତି । ତଦ୍‌ବତ୍ ଭଗବତି ମାନସଂ ଯୋଜନୀୟମିତି ଧ୍ୱନିତଂ । ୧୩ ଶ୍ଳୋକ ।

---

ରୂପ ଦବୀରଖାସ—ଦବୀରଖାସ୍ ଓ ସାକରମଲ୍ଲିକ ଏ ଦୁହିଙ୍କର ଶ୍ରୀମନ୍ ମହାପ୍ରଭୁ ଦତ୍ତ ନାମ ରୂପ ଓ ସନାତନ । ଦବୀରଖାସଙ୍କୁ ପ୍ରକାଶ୍ୟରେ ରୂପନାମ ଦେବା ପୂର୍ବରୁ ରୂପବୋଲି ମହାପ୍ରଭୁ ଡାକି ଅଛନ୍ତି । ପୁରାତନ ଦାସ—ଶ୍ରୀରୂପ ଓ ଶ୍ରୀସନାତନ ବୃନ୍ଦାବନସ୍ଥ ନିତ୍ୟଲୀଳାର ରୂପମଞ୍ଜରୀ ଓ ଲବଙ୍ଗମଞ୍ଜରୀ ହେତୁ ଶ୍ରୀମନ୍‌ମହାପ୍ରଭୁ ସେମାନଙ୍କୁ ପୁରାତନ ଦାସ ବୋଲି କହି ଅଛନ୍ତି । ୧୯୪ ।

ଶ୍ଳୋକ—ମହାପ୍ରଭୁଙ୍କ ଶିକ୍ଷା ଶ୍ଳୋକ ( ପରବର୍ତ୍ତୀ ୧୩ ଶ ଶ୍ଳୋକ ) ୧୯୬ ।

ପରପୁରୁଷାସକ୍ତା କୁଳରମଣୀ ଗୃହକର୍ମମାନଙ୍କରେ ବ୍ୟଗ୍ରଥିଲେ ସୁଦ୍ଧା ପରପୁରୁଷର ନବସଙ୍ଗମରସ ସୁଖ ମନେ ମନେ ଆସ୍ୱାଦ କରେ । ଏହାର ଭାବ ଏହି ଯେ—ସଂସାର ବ୍ୟାପାରରେ ଲିପ୍ତ ଥାଇ ସୁଦ୍ଧା ଭଗବାନଙ୍କ ପ୍ରତି ମନ ସର୍ବଦା ନିବେଶ କରିବା ଉଚିତ । ୧୩ ଶ ଶ୍ଳୋକାର୍ଥ ।

ଜନ୍ମେ ଜନ୍ମେ—ଗୋଲୋକସ୍ଥ ନିତ୍ୟଲୀଳାର ପାର୍ଷଦହେତୁ ଶ୍ରୀକୃଷ୍ଣଙ୍କର ନରଲୀଳା ଅବତରଣମାନଙ୍କ ସମୟରେ ଶ୍ରୀକୃଷ୍ଣଙ୍କ ପରି ଏମାନେ ମଧ୍ୟ ନରବପୁ ଧାରଣ କରି ଜନ୍ମ ହୁଅନ୍ତି । ଏହାହିଁ ଭାବ ୨୦୧ ।

ଇହାଁ-ହୈତେ ଚଲ ପ୍ରଭୁ ! ଇହାଁ ନାହିଁ କାଜ ।
ଯଦ୍ୟପି ତୋମାରେ ଭକ୍ତି କରେ ଗୌଡ଼ରାଜ ॥
ତଥାପି ଯବନଜାତି, ନା କରି ପ୍ରତୀତି ।
ତୀର୍ଥଯାତ୍ରାୟ ଏତ ସଙ୍ଘଟ୍ଟ—ଭାଲ ନହେ ରୀତି ॥
ଯାର ସଙ୍ଗେ ଚଲେ ଏଇ ଲୋକ ଲକ୍ଷକୋଟି ।
ବୃନ୍ଦାବନଯାତ୍ରାର ଏଇ ନହେ ପରିପାଟୀ ।୨୧୦।
ଯଦ୍ୟପି ବସ୍ତୁତ ପ୍ରଭୁର କିଛୁ ନାହି ଭୟ ।
ତଥାପି ଲୌକିକଲୀଳା—ଲୋକଚେଷ୍ଟାମୟ ॥
ଏତ ବଲି ଚରଣ ବନ୍ଦି ଗେଲା ଦୁଇଜନ ।
ପ୍ରଭୁର ସେଇ ଗ୍ରାମ ହୈତେ ଚଲିତେ ହୈଲ ମନ ।୨୧୨।
ପ୍ରାତେ ଚଲି ଆଇଲା ପ୍ରଭୁ କାନାଇର ନାଟଶାଲା ।
ଦେଖିଲ ସକଲ ତାହାଁ କୃଷ୍ଣଚରିତଲୀଲା ।୨୧୩।
ସେଇରାତ୍ର୍ୟେ ପ୍ରଭୁ ତାହାଁ ଚିନ୍ତେ ମନେମନ—।
'ସଙ୍ଗେ ସଙ୍ଘଟ୍ଟ ଭାଲ ନହେ'—କୈଲ ସନାତନ ॥
ମଥୁରା ଯାଇବ ଆମି ଏତ ଲୋକ ସଙ୍ଗେ ।
କିଛୁ ସୁଖ ନା ପାଇବ, ହବେ ରସଭଙ୍ଗେ ।୨୧୫।
ଏକାକୀ ଯାଇବ—କିବା ସଙ୍ଗେ ଏକଜନ ।
ତବେ ସେ ଶୋଭୟେ ବୃନ୍ଦାବନେର ଗମନ ॥
ଏତ ଚିନ୍ତି ପ୍ରାତଃକାଲେ ଗଙ୍ଗାସ୍ନାନ କରି ।
'ନୀଲାଚଲେ ଯାବ' ବଲି ଚଲିଲା ଗୌରହରି ॥
ଏଇମତ ଚଲିଚଲି ଆଇଲା ଶାନ୍ତିପୁରେ ।
ଦିନ-ପାଁଚ-ସାତ ରହିଲା ଆଚାର୍ଯ୍ୟେର ଘରେ ॥
ଶଚୀଦେବୀ ଆନି ତାଁରେ କୈଲ ନମସ୍କାର ।
ସାତଦିନ ତାଁର ଠାଞି ଭିକ୍ଷା-ବ୍ୟବହାର ।୨୧୯।
ତାଁରଠାଞି ଆଜ୍ଞା ଲଞା କରିଲା ଗମନେ ।
ବିନୟ କରିୟା ବିଦାୟ ଦିଲ ଭକ୍ତଗଣେ— ॥
ଜନ ଦୁଇ ସଙ୍ଗେ ଆମି ଯାବ ନୀଲାଚଲେ ।
ଆମାରେ ମିଲିବା ଆସି ରଥଯାତ୍ରାକାଲେ ।୨୨୧।
ବଲଭଦ୍ର-ଭଟ୍ଟାଚାର୍ଯ୍ୟ ପଣ୍ଡିତ ଦାମୋଦର ।
ଦୁଇଜନ ସଙ୍ଗେ ପ୍ରଭୁ ଆଇଲା ନୀଲାଚଲ ।୨୨୨।
ଦିନକଥୋ ତାହାଁ ରହି ଚଲିଲା ବୃନ୍ଦାବନ ।
ଲୁକାଇୟା ଚଲିଲା ରାତ୍ର୍ୟେ, ନା ଜାନେ କୋନ ଜନ ।୨୨୩।
ବଲଭଦ୍ର-ଭଟ୍ଟାଚାର୍ଯ୍ୟ ରହେ ମାତ୍ର ସଙ୍ଗେ ।
ଝାରିଖଣ୍ଡ-ପଥେ କାଶୀ ଆଇଲା ମହାରଙ୍ଗେ ॥
ଦିନ-ଚାରି କାଶୀତେ ରହି ଗେଲା ବୃନ୍ଦାବନ ।
ମଥୁରା ଦେଖିୟା ଦେଖେ ଦ୍ୱାଦଶ କାନନ ।୨୨୫।
ଲୀଲାସ୍ଥଲ ଦେଖି ପ୍ରେମେ ହଇଲ ଅସ୍ଥିର ।
ବଲଭଦ୍ର କୈଲ ତାଁରେ ମଥୁରା-ବାହିର ।୨୨୬।
ଗଙ୍ଗାତୀର-ପଥେ ଲୈୟା ପ୍ରୟାଗେ ଆଇଲା ।
ଶ୍ରୀରୂପ ଆସି ପ୍ରଭୁକେ ତାହାଁଇ ମିଲିଲା ।୨୨୭।
ଦଣ୍ଡବତ କରି ରୂପ ଭୂମିତେ ପଡ଼ିଲା ।
ପରମ-ଆନନ୍ଦେ ପ୍ରଭୁ ଆଲିଙ୍ଗନ ଦିଲା ।୨୨୮।
ଶ୍ରୀରୂପେର ଶିକ୍ଷା କରି ପାଠାଇଲା ବୃନ୍ଦାବନ ।
ଆପନେ କରିଲା ବାରାଣସୀ ଆଗମନ ।୨୨୯।

---

ଗୋସାଇଁ—ଶ୍ରୀମନ୍ ମହାପ୍ରଭୁ । ଶ୍ରୀମନ୍ ମହାପ୍ରଭୁ ସ୍ୱୟଂ ଭଗବାନ୍ ହେତୁ କାହାର ପ୍ରତି କୌଣସି ଭୟର ଆଶଙ୍କା ନ ଥିଲେହେଁ ନରରୂପରେ ଅବତୀର୍ଣ୍ଣ ହୋଇ ନରଲୀଳା କରୁଥିବାରୁ ନରବତ୍ ଆଚରଣ କରା ତାହାଙ୍କର କର୍ତ୍ତବ୍ୟ । ୨୧୧ ।

କୃଷ୍ଣଚରିତଲୀଳା—ଏଥିରୁ ବୁଝାଯାଏ ଶ୍ରୀକୃଷ୍ଣ ଦ୍ୱାପରଯୁଗୀୟ ଅବତାର ସମୟରେ ଯେଉଁ ସ୍ଥାନର ନାମ କାନାଇ ନାଟଶାଳା, ସେହି ସ୍ଥାନରେ କୌଣସି ଘଟଣାସୂତ୍ରରେ କୌଣସି ପ୍ରକାର ଲୀଳା କରିଥିଲେ । ଯାହାର କୌଣସି ପ୍ରକାର ଚିହ୍ନ ଶ୍ରୀମନ୍ ମହାପ୍ରଭୁ ସେଠାରେ ଦର୍ଶନ କରିଥିଲେ । ଏ ସମ୍ବନ୍ଧରେ କେହି କହନ୍ତି ଯେ, ଆଧୁନିକ ଦୀନାଜପୁର ଜିଲ୍ଲା ଦ୍ୱାପରଯୁଗୀୟ ବାଣାସୁରଙ୍କର ରାଜ୍ୟଥିଲା, ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧ କର୍ତ୍ତୃକ ବାଣକନ୍ୟା ଉଷା ହରଣ ସମୟରେ ଶ୍ରୀକୃଷ୍ଣ ଏହି ସ୍ଥାନରେ ଅବସ୍ଥିତ କରିଥିଲେ । ୨୧୩ ।

ଆଚାର୍ଯ୍ୟ—ଶ୍ରୀଅଦ୍ୱୈତାଚାର୍ଯ୍ୟ । ୨୧୮ । ଝାରିଖଣ୍ଡ—ବନ୍ୟ ପ୍ରଦେଶ । ୨୨୪

କାଶୀତେ ପ୍ରଭୁକେ ଆସି ମିଲିଲା ସନାତନ ।
ଦୁଇମାସ ରହି ତାଁରେ କରାଇଲ ଶିକ୍ଷଣ ।୨୩୦।
ମଥୁରା ପାଠାଇଲ ତାଁରେ ଦିଯ଼ା ଭକ୍ତିବଲ ।
ସନ୍ୟାସୀରେ କୃପା କରି ଗେଲ ନୀଲାଚଲ ।୨୩୧।
ଛୟବତ୍ସର ଐଛେ ପ୍ରଭୁ କରିଲା ବିଲାସ ।
କଭୁ ଇତି-ଉତି ଗତି, କଭୁ କ୍ଷେତ୍ରେ ବାସ ॥
(ଆନନ୍ଦେ ଭକ୍ତ-ସଙ୍ଗେ ସଦା କୀର୍ତ୍ତନ-ବିଲାସ ।
ଜଗନ୍ନାଥ-ଦରଶନେ ପ୍ରେମେର ବିଲାସ) ।୨୩୩।
ମଧ୍ୟଲୀଲାର କରିଲ ଏଇ ସୂତ୍ରେର ଗଣନ ।
ଅନ୍ତ୍ୟଲୀଲାର ସୂତ୍ର ଏବେ ଶୁନ ଭକ୍ତଗଣ ॥
ବୃନ୍ଦାବନ ହୈତେ ଯଦି ନୀଲାଚଲ ଆଇଲା ।
ଆଠାର-ବର୍ଷ ତାହାଁ ବାସ, କାହାଁ ନାହି ଗେଲା ॥
ପ୍ରତିବର୍ଷ ଆଇସେ ସବ ଗୌଡ଼େର ଭକ୍ତଗଣ ।
ଚାରିମାସ ରହେ ପ୍ରଭୁର ସଙ୍ଗେ ସମ୍ମିଲନ ।୨୩୬।
ନିରନ୍ତର ନୃତ୍ୟ-ଗୀତ କୀର୍ତ୍ତନ-ବିଲାସ ।
ଆଚଣ୍ଡାଲେ ପ୍ରେମଭକ୍ତି କରିଲା ପ୍ରକାଶ ।୨୩୭।
ପଣ୍ଡିତଗୋସାଞି କୈଲ ନୀଲାଚଲେ ବାସ ।
ବକ୍ରେଶ୍ୱର ଦାମୋଦର ଶଙ୍କର ହରିଦାସ ।୨୩୮।
ଜଗଦାନନ୍ଦ ଭଗବାନ ଗୋବିନ୍ଦ କାଶୀଶ୍ୱର ।
ପରମାନନ୍ଦପୁରୀ ଆର ସ୍ୱରୂପ ଦାମୋଦର ।୨୩୯।
କ୍ଷେତ୍ରବାସୀ ରାମାନନ୍ଦରାୟପ୍ରଭୃତି ।
ପ୍ରଭୁ ସଙ୍ଗେ ଏଇ ସବ କୈଲ ନିତ୍ୟସ୍ଥିତି ।୨୪୦।
ଅଦ୍ୱୈତ ନିତ୍ୟାନନ୍ଦ ମୁକୁନ୍ଦ ଶ୍ରୀବାସ ।
ବିଦ୍ୟାନିଧି ବାସୁଦେବ ମୁରାରି ଯତ ଦାସ ॥
ପ୍ରତିବର୍ଷେ ଆଇସେ ସଙ୍ଗେ—ରହେ ଚାରିମାସ ।
ତାଁହାସବା ଲଞା ପ୍ରଭୁର ବିବିଧ ବିଲାସ । ୨୪୨ ।
ହରିଦାସେର ସିଦ୍ଧିପ୍ରାପ୍ତି—ଅଦ୍ଭୁତ ସେ ସବ ।
ଆପନି ମହାପ୍ରଭୁ ଯାଁର କୈଲ ମହୋତ୍ସବ ।୨୪୩।
ତବେ ରୂପଗୋସାଞିର ପୁନରାଗମନ ।
ତାଁର ହୃଦୟେ କୈଲ ପ୍ରଭୁ ଶକ୍ତି ସଞ୍ଚାରଣ ॥
ତବେ ଛୋଟ-ହରିଦାସେ ପ୍ରଭୁ କୈଲ ଦଣ୍ଡ ।
ଦାମୋଦରପଣ୍ଡିତ କୈଲ ପ୍ରଭୁକେ ବାକ୍ୟଦଣ୍ଡ ॥
ତବେ ସନାତନଗୋସାଞିର ପୁନରାଗମନ ।
ଜ୍ୟୈଷ୍ଠମାସେ ପ୍ରଭୁ ତାଁରେ କୈଲ ପରୀକ୍ଷଣ ॥
ତୁଷ୍ଟ ହଞା ପ୍ରଭୁ ତାଁରେ ପାଠାଇଲ ବୃନ୍ଦାବନ ।
ଅଦ୍ୱୈତର ହାତେ ପ୍ରଭୁର ଅଦ୍ଭୁତ-ଭୋଜନ ॥
ନିତ୍ୟାନନ୍ଦ ସଙ୍ଗେ ଯୁକ୍ତି କରିଯ଼ା ନିଭୃତେ ।
ତାଁରେ ପାଠାଇଲ ଗୌଡ଼େ ପ୍ରେମ ପ୍ରଚାରିତେ ॥
ତବେ ତ ବଲ୍ଲଭଭଟ୍ଟ ପ୍ରଭୁରେ ମିଲିଲା ।
କୃଷ୍ଣନାମେର ଅର୍ଥ ପ୍ରଭୁ ତାଁହାରେ କହିଲା ॥
ପ୍ରଦ୍ୟୁମ୍ନମିଶ୍ରେର ପ୍ରଭୁ ରାମାନନ୍ଦ-ସ୍ଥାନେ ।
କୃଷ୍ଣକଥା ଶୁନାଇଲ—କହି ତାଁର ଗୁଣେ ।୨୫୦।
ଗୋପୀନାଥପଟ୍ଟନାୟକ—ରାମାନନ୍ଦ-ଭ୍ରାତା ।
ରାଜା ମାରିତେଛିଲ—ପ୍ରଭୁ ହୈଲ ତ୍ରାତା ।୨୫୧।
ରାମଚନ୍ଦ୍ରପୁରୀଭଯ଼େ ଭିକ୍ଷା ଘାଟାଇଲା ।
ବୈଷ୍ଣବେର ଦୁଃଖ ଦେଖି ଅର୍ଦ୍ଧେକ ରାଖିଲା ।୨୫୨।
ବ୍ରହ୍ମାଣ୍ଡ-ଭିତରେ ହୟ ଚୌଦ୍ଦଭୁବନ ।
ଚୌଦ୍ଦ ଭୁବନେ ବୈସେ ଯତ ଜୀବଗଣ ।୨୫୩।

---

ସନ୍ୟାସୀରେ—ପ୍ରକାଶାନନ୍ଦପ୍ରମୁଖ ସନ୍ୟାସୀମାନଙ୍କୁ ।୨୩୧। ଛୟବତ୍ସର—ସନ୍ୟାସ ଗ୍ରହଣର ପ୍ରଥମ ଛବର୍ଷ । ବିଲାସ- ଲୀଳା । ଇତି ଉତି—ଏଣେ ତେଣେ । ୨୩୨ । ପଣ୍ଡିତ ଗୋସ୍ୱାମୀ—ଶ୍ରୀଗଦାଧର ପଣ୍ଡିତ । ୨୩୭ । ବିଦ୍ୟାନିଧି—ଶ୍ରୀପୁଣ୍ଡରୀକ ବିଦ୍ୟାନିଧି । ୨୪୦ ।

ପୁନରାଗମନ—ସମ୍ଭବତଃ ପୁନଃସଙ୍ଗମ । ଅର୍ଥାତ୍ ଏହି ଗ୍ରନ୍ଥରେ ଶ୍ରୀରୂପ ଗୋସ୍ୱାମୀଙ୍କର ଶ୍ରୀମନ୍ ମହାପ୍ରଭୁଙ୍କ ସହିତ ପୁରୁଷୋତ୍ତମରେ ମିଳନପୂର୍ବରୁ ଆଉ କେବେ ସେ ପୁରୀଧାମକୁ ଆସିଥିଲେ ତାହା ଉଲ୍ଲେଖ ନାହିଁ । କିନ୍ତୁ ତାହାଙ୍କର ଶ୍ରୀମନ୍ ମହାପ୍ରଭୁଙ୍କ ସହିତ ପ୍ରଥମେ ରାମକେଲି ଗ୍ରାମରେ ମିଳନ ପରେ ଶ୍ରୀପ୍ରଯ଼ାଗଧାମରେ ପୁନର୍ମିଳନ ଓ ପୁନରାୟ ଶ୍ରୀପୁରୁଷୋତ୍ତମରେ ପୁନର୍ମିଳନ ହୋଇଥିଲା । ଏଥି "ପୁନରାଗମନ" ସ୍ଥଳରେ ପୁନର୍ମିଳନ ସଙ୍ଗତ ବୋଧ ହେଉଅଛି । ୨୪୨ ।

ପୁନରାଗମନ—ଏଠାରେ ମଧ୍ୟ ପୁନଃସଙ୍ଗମନ ସଙ୍ଗତ । ୨୪୫ ।

ଘାଟାଇଲା—ସଂକୋଚ କଲେ ।୨୫୧।

ମନୁଷ୍ୟେର ବେଶ ଧରି ଯାଏକେର ଛଲେ ।
ମହାପ୍ରଭୁ-ଦର୍ଶନ କରେ ଆସି ନୀଲାଚଲେ ।୨୫୪।
ଏକଦିନ ଶ୍ରୀବାସାଦି ଯତ ଭକ୍ତଗଣ ।
ମହାପ୍ରଭୁର ଗୁଣ ଗାଞା କରେନ କୀର୍ତ୍ତନ ।୨୫୫।
ଶୁନି ଭକ୍ତଗଣେ କହେ ସକ୍ରୋଧବଚନେ— ।
କୃଷ୍ଣନାମ-ଗୁଣ ଛାଡ଼ି କି କର କୀର୍ତ୍ତନେ ? ୨୫୬।
ଔଦ୍ଧତ୍ୟ କରିତେ ହୈଲ ସଭାକାର ମନ ।
ସ୍ୱତନ୍ତ୍ର ହଇୟା ସବେ ନାଶାବେ ଭୁବନ ?।୨୫୭।
ଦଶଦିଗେର କୋଟି-କୋଟି ଲୋକ ହେନକାଲେ ।
'ଜୟ କୃଷ୍ଣଚୈତନ୍ୟ' ବଲି କରେ କୋଲାହଲେ— । ୨୫୮ ।
ଜୟଜୟ ମହାପ୍ରଭୁ ବ୍ରଜେନ୍ଦ୍ର-କୁମାର !
ଜଗତ୍ ତାରିତେ ପ୍ରଭୁ ! ତୋମାର ଅବତାର ॥
ବହୁଦୂର ହୈତେ ଆଇଲାଙ ହଞା ବଡ଼ ଆର୍ତ୍ତ ।
ଦରଶନ ଦିୟା ପ୍ରଭୁ ! କରହ କୃତାର୍ଥ । ୨୬୦ ।
ଶୁନିଞା ଲୋକେର ଦୈନ୍ୟ, ଆର୍ଦ୍ର ହୈଲ ହୃଦୟ ।
ବାହିରେ ଆସି ଦରଶନ ଦିଲା ଦୟାମୟ ।୨୬୧।
ବାହୁ ତୁଲି ବୋଲେ ପ୍ରଭୁ 'ବୋଲ ହରିହରି' ।
ଉଠିଲ ଶ୍ରୀହରିଧ୍ୱନି ଚତୁର୍ଦ୍ଦିଗ ଭରି । ୨୬୨ ।
ପ୍ରଭୁ ଦେଖି ପ୍ରେମେ ଲୋକେର ଆନନ୍ଦିତ ମନ ।
ପ୍ରଭୁରେ 'ଈଶ୍ୱର' ବଲି କରୟେ ସ୍ତବନ ।୨୬୩।
ସ୍ତବ ଶୁନି ପ୍ରଭୁରେ କହୟେ ଶ୍ରୀନିବାସ— ।
ଘରେ ଗୁପ୍ତ ହଓ, କେନେ ବାହିରେ ପ୍ରକାଶ ? ॥
କେ ଶିଖାଇଲ ଏ-ଲୋକେ, କହେ କୋନ୍ ବାତ ?।
ଇହା ସଭାର ମୁଖ ଢାକ ଦିୟା ନିଜହାଥ । ୨୬୫ ।
ସୂର୍ଯ୍ୟ ଯୈଛେ ଉଦୟ କରି ଚାହେ ଲୁକାଇତେ ।
ବୁଝିତେ ନା ପାରି ତୈଛେ ତୋମାର ଚରିତେ ॥
ପ୍ରଭୁ କହେନ—ଶ୍ରୀନିବାସ ! ଛାଡ଼ ବିଡ଼ମ୍ବନା ।
ସବେ ମିଲି କର ମୋର କତେକ ଲାଞ୍ଛନା ।୨୬୭
ଏତ ବଲି ଲୋକେ କରି ଶୁଭଦୃଷ୍ଟିଦାନ ।
ଅଭ୍ୟନ୍ତରେ ଗେଲା, ଲୋକେର ପୂର୍ଣ୍ଣ ହୈଲ କାମ ॥
ରଘୁନାଥଦାସ ନିତ୍ୟାନନ୍ଦପାଶେ ଗେଲା ।
ଚିଡ଼ା-ଦଧି-ମହୋତ୍ସବ ତାହାଁଇ କରିଲା । ୨୬୯।
ତାଁର ଆଜ୍ଞା ଲଞା ଗେଲା ପ୍ରଭୁର ଚରଣେ ।
ପ୍ରଭୁ ତାଁରେ ସମର୍ପିଲ ସ୍ୱରୂପେର ସ୍ଥାନେ । ୨୭୦ ।
ବ୍ରହ୍ମାନନ୍ଦ-ଭାରତୀର ଘୁଚାଇଲ ଚର୍ମାମ୍ବର ।
ଏଇମତ ଲୀଲା କୈଲ ଛୟ-ବତ୍ସର । ୨୭୧ ।
ଆଦି ଦ୍ୱାଦଶ ବତ୍ସରେର ଏଇ ସବଗଣ ।
ଶେଷ ଦ୍ୱାଦଶ ବତ୍ସରେର ଶୁନ ବିସ୍ତାର ବର୍ଣ୍ଣନ ॥
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୨୭୩।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ମଧ୍ୟଲୀଲାସୂତ୍ରବର୍ଣ୍ଣନଂ ନାମ
ପ୍ରଥମପରିଚ୍ଛେଦଃ ॥

---

କହେ— ଶ୍ରୀମନ୍ ମହାପ୍ରଭୁ କହିଲେ ।୨୫୫ ।
ଶ୍ରୀନିବାସ— ଶ୍ରୀନିବାସ ପଣ୍ଡିତ । ଘରେ—ଅନ୍ତରଙ୍ଗ ଭକ୍ତଙ୍କ ନିକଟ । ୨୬୩ ।
ବାତ୍—କଥା । ହାଥ—ହାତ । ୨୬୪ ।

ଶ୍ରୀବ୍ରହ୍ମାନନ୍ଦ ଭାରତୀଙ୍କ ଚର୍ମାମ୍ବର ଘୁଞ୍ଚାଇବା ଏହା ମଧ୍ୟଲୀଳା ଅର୍ଥାତ୍ ମହାପ୍ରଭୁଙ୍କ ସନ୍ନ୍ୟାସପର ପ୍ରଥମ ଛ ବର୍ଷ ମଧ୍ୟର ଘଟଣା । ଏ ଦ୍ୱିତୀୟ ଛ ବର୍ଷ ପ୍ରେମ ପ୍ରଚାର ସମୟର ନୁହେଁ । ସୁତରାଂ ଏହି ପରିଚ୍ଛେଦର ୨୭୩ ପୟାରକୁ ଅବଲମ୍ବନ କଲେ ଏଠାରେ ଏହା (୨୭୦ ପୟାର) ଅତିରିକ୍ତ ପରି ବୋଧ ହେଉଅଛି ।

ଛୟବତ୍ସର— ଶ୍ରୀମନ୍ ମହାପ୍ରଭୁଙ୍କର ସନ୍ନ୍ୟାସ ହେବା ପର ୨ୟ ଛବର୍ଷ । ଅର୍ଥାତ୍ ତାହାଙ୍କର ଏକାଦିକ୍ରମେ ନୀଳାଚଳ ବାସର ୧୮ ବର୍ଷ ମଧ୍ୟରୁ ପ୍ରଥମ ଛବର୍ଷ । ୨୭୦ ।

ମଧ୍ୟଲୀଳା ପ୍ରଥମ ପରିଚ୍ଛେଦ ସମାପ୍ତ ।

## ଦ୍ୱିତୀୟ ପରିଚ୍ଛେଦ ।

ବିଚ୍ଛେଦେଽସ୍ମିନ୍ ପ୍ରଭୋରନ୍ତ୍ୟ-
ଲୀଲାସୂତ୍ରାନୁବର୍ଣ୍ଣନେ ।
ଗୌରସ୍ୟ କୃଷ୍ଣବିଚ୍ଛେଦ-
ପ୍ରଲାପାଦ୍ୟନୁବର୍ଣ୍ଣ୍ୟତେ ॥ ୧ ॥

ଜୟ ଜୟ ଗୌରଚନ୍ଦ୍ର, ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଶେଷ ଯେ ରହିଲ ପ୍ରଭୁର ଦ୍ୱାଦଶ ବତ୍ସର ।
କୃଷ୍ଣେର ବିରହ ସ୍ଫୂର୍ତ୍ତି ହୟ ନିରନ୍ତର । ୨ ।
ଶ୍ରୀରାଧିକାର ଚେଷ୍ଟା ଯୈଛେ ଉଦ୍ଧବଦର୍ଶନେ ।
ଏଇମତ ଦଶା ପ୍ରଭୁର ହୟ ରାତ୍ରି-ଦିନେ । ୩ ।
ନିରନ୍ତର ହୟ ପ୍ରଭୁର ବିରହ ଉନ୍ମାଦ ।
ଭ୍ରମମୟ ଚେଷ୍ଟା ସଦା—ପ୍ରଲାପମୟ ବାଦ । ୪ ।
ରୋମକୂପେ ରକ୍ତୋଦ୍ଗମ, ଦନ୍ତ ସବ ହାଲେ ।
କ୍ଷଣେ ଅଙ୍ଗ କ୍ଷୀଣ ହୟ, କ୍ଷଣେ ଅଙ୍ଗ ଫୁଲେ ।୫।
ଗମ୍ଭୀରା-ଭିତରେ ରାତ୍ର୍ୟେ ନାହି ନିଦ୍ରା-ଲବ ।
ଭିତ୍ତ୍ୟେ ମୁଖ-ଶିର ଘଷେ,—କ୍ଷତ ହୟ ସବ ।୬।

---

## ଦ୍ୱିତୀୟ ପରିଚ୍ଛେଦ ।



ପ୍ରଭୋଃ ଶ୍ରୀଚୈତନ୍ୟସ୍ୟ ଅନ୍ତ୍ୟଲୀଳାସୂତ୍ରାନୁବର୍ଣ୍ଣନେଽସ୍ମିନ୍ ମଧ୍ୟଲୀଳାୟାଂ ବିଚ୍ଛେଦେ—ପରିଚ୍ଛେଦେ ଗୌରସ୍ୟ କୃଷ୍ଣ ବିଚ୍ଛେଦପ୍ରଲାପାଦି ଅନୁବର୍ଣ୍ଣ୍ୟତେ ମୟାକାର୍ଯ୍ୟତେ । ୧ମ ଶ୍ଲୋକ ।

---

ଏହି ପରିଚ୍ଛେଦରେ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କର ଅନ୍ତ୍ୟଲୀଳା ସୂତ୍ରବର୍ଣ୍ଣନରେ ତାହାଙ୍କର ଶ୍ରୀକୃଷ୍ଣବିଚ୍ଛେଦଜନିତ ପ୍ରଲାପାଦି ବର୍ଣ୍ଣିତ ହେଲା । ୧ମ ଶ୍ଲୋକାର୍ଥ ।

ଶ୍ରୀମଦ୍ ଭାଗବତରେ ୧୦ମ—୪୭ ଅଧ୍ୟାୟ ୯ମ ଶ୍ଲୋକ ବର୍ଣ୍ଣିତ "କାଚିତ୍ ଗୋପୀ" ଶ୍ରୀରାଧା ଏବଂ ତାହାଙ୍କର ଶ୍ରୀଉଦ୍ଧବ ଦର୍ଶନରେ ଯେ ଭାବ ହୋଇଥିଲା ଓ ତଜ୍ଜନିତ ଯେ ସମସ୍ତ ବଚନାବଳୀ ଯାହା କି ଉକ୍ତ ଅଧ୍ୟାୟ ୧୦ମଶ୍ଲୋକଠାରୁ ୧୯ଶ ଶ୍ଲୋକରେ ବର୍ଣ୍ଣିତ ହୋଇଅଛି ଏବଂ ସେଥି ମଧ୍ୟରେ ତାହାଙ୍କର ଯେ ସମସ୍ତ ଦଶାର ପରିଚୟ ଦିଆ ହୋଇଅଛି ଶ୍ରୀମନ୍ ମହାପ୍ରଭୁଙ୍କର ଦିବାରାତ୍ର ସେହିପରି ଦଶା ହେଉଥିଲା । ୩ ।

ବିରହ—ଶ୍ରୀକୃଷ୍ଣବିରହ । ଉନ୍ମାଦ—ଉନ୍ମତ୍ତତା । ଚେଷ୍ଟା—କାୟିକବ୍ୟାପାର । ଭ୍ରମମୟଚେଷ୍ଟା—ଏକକାର୍ଯ୍ୟ କରୁ କରୁ ଅନ୍ୟକାର୍ଯ୍ୟ କରିବା । ବାଦ—ବଚନ । ପ୍ରଲାପମୟବାଦ-ଅସଂଲଗ୍ନ ବଚନ । ୪ । ହାଲେ—ହଲେ । ୫ । ଗମ୍ଭୀରା—ଗମ୍ଭୀର ଘର ।

ଏଠାରେ ଶ୍ରୀକାଶୀମିଶ୍ରଙ୍କ ଆବାସରେ ଅଧୁନିକ ନୀଳାଚଳର ଶ୍ରୀରାଧାକାନ୍ତ ମଠରେ ଶ୍ରୀମନ୍ ମହାପ୍ରଭୁ ଗୋଟିଏ ନିରୁଦ୍ଧ କ୍ଷୁଦ୍ର ପ୍ରକୋଷ୍ଠ ମଧ୍ୟରେ ବାସ କରୁଥିଲେ । ତାହା ଗମ୍ଭୀରା ନାମରେ ପ୍ରସିଦ୍ଧ, ବର୍ତ୍ତମାନ ମଧ୍ୟ ଶ୍ରୀରାଧାକାନ୍ତ ମଠରେ ଉକ୍ତ ପ୍ରକୋଷ୍ଠ ସ୍ଥାନରେ ଶ୍ରୀମନ୍ ମହାପ୍ରଭୁଙ୍କର କନ୍ଥା ଓ କମଣ୍ଡଳୁ ଅଦ୍ୟାପି ପୂଜିତ ହୋଇ ରହିଅଛନ୍ତି ।

ଲବ—ଲେଶ । ଭିତ୍ତ୍ୟେ—କାନ୍ଥରେ । ୬ ।

ତନ-ଦ୍ୱାରେ କବାଟ— ପ୍ରଭୁ ଯାଆନ୍ତି ବାହିରେ ।
କଭୁ ସିଂହଦ୍ୱାରେ ପଡ଼େ— କଭୁ ସିନ୍ଧୁନୀରେ ।୭।
ଚଟକ-ପର୍ବତ ଦେଖି ଗୋବର୍ଦ୍ଧନଭ୍ରମେ ।
ଧାଇଁ ଚଲେ ଅର୍ତ୍ତନାଦେ କରିଯା କ୍ରନ୍ଦନେ ।୮।
ଉପବନୋଦ୍ୟାନେ ଦେଖି ବୃନ୍ଦାବନଜ୍ଞାନ ।
ତାହାଁ ଯାଇ ନାଚେ ଗାୟ, କ୍ଷଣେ ମୂର୍ଚ୍ଛା ଯାନ ।୯
କାହାଁ ନାହି ଶୁନି ଯେ ଯେ ଭାବେର ବିକାର ।
ସେଇ ଭାବ ହୟ ପ୍ରଭୁର ଶରୀରେ ପ୍ରଚାର ।୧୦।
ହସ୍ତ-ପଦେର ସନ୍ଧି ଯତ ବିତସ୍ତିପ୍ରମାଣେ ।
ସନ୍ଧି ଛାଡ଼ି ଭିନ୍ନ ହୟେ— ଚର୍ମ ରହେ ସ୍ଥାନେ ॥
ହସ୍ତ ପଦ ଶିର ସବ ଶରୀର ଭିତରେ ।
ପ୍ରବିଷ୍ଟ ହୟ—କୂର୍ମରୂପ ଦେଖିଯେ ପ୍ରଭୁରେ ।୧୨।
ଏଇମତ ଅଦ୍ଭୁତଭାବ ଶରୀରେ ପ୍ରକାଶ ।
ମନେତେ ଶୂନ୍ୟତା—ବାକ୍ୟେ ହାହା
ହୁତାଶ ।୧୩।

'କାହାଁ କରୋଁ କାହାଁ ପାଙ ବ୍ରଜେନ୍ଦ୍ରନନ୍ଦନ ।
କାହାଁ ମୋର ପ୍ରାଣନାଥ ମୁରଲୀବଦନ ।୧୪।
କାହାରେ କହିବ, କେବା ଜାନେ ମୋର ଦୁଃଖ ।
ବ୍ରଜେନ୍ଦ୍ରନନ୍ଦନ-ବିନୁ ଫାଟେ ମୋର ବୁକ' ।୧୫।
ଏଇମତ ବିଲାପ କରେ—ବିହ୍ୱଲ ଅନ୍ତର ।
ରାୟେର ନାଟକ-ଶ୍ଲୋକ ପଢ଼େ ନିରନ୍ତର ।୧୬।

ତଥାହି ଜଗନ୍ନାଥବଲ୍ଲଭନାଟକେ (୩।୯)—

ପ୍ରେମଚ୍ଛେଦରୁଜୋଽବଗଚ୍ଛତି
ହରିର୍ନାୟଂ ନ ଚ ପ୍ରେମ ବା
ସ୍ଥାନାସ୍ଥାନମବୈତି ନାପି ମଦନୋ
ଜାନାତି ନୋ ଦୁର୍ବଲାଃ ।
ଅନ୍ୟୋ ବେଦ ନ ଚାନ୍ୟଦୁଃଖମଖିଳଂ
ନୋ ଜୀବନଂ ବାଶ୍ରବଂ
ଦ୍ୱିତ୍ରାଣ୍ୟେବଦିନାନି ଯୌବନମିଦଂ
ହାହା ବିଧେ କାଗତିଃ ॥

ଅୟଂ ହରିଃ ନନ୍ଦନନ୍ଦନଃ ପ୍ରେମଚ୍ଛେଦରୁଜଃ ବିରହଜନିତାଃ ପୀଡ଼ାଃ ନାବଗଚ୍ଛତି ନ ଜାନାତି, ତତ୍ପୁନଃ ବା ଇହ ଆଶ୍ଚର୍ଯ୍ୟେ, ପ୍ରେମ ସ୍ଥାନାସ୍ଥାନଂ ନାବୈତି ଉତ୍ତମାଧମସ୍ଥାନଂ ନ ଜାନାତି, ମଦନୋଽପି କନ୍ଦର୍ପୋଽପି ନଃ ଅସ୍ମାନ୍ ଦୁର୍ବଲାଃ କ୍ଷମଣହୀନାଃ ବା ପୀଡ଼ୟିତୁମଯୋଗ୍ୟାଃ—ନ ଜାନାତି ଅନ୍ୟୋ ଜନଃ ଅନ୍ୟଦୁଃଖଂ ଅନ୍ୟେଷାଂଜନାନାଂଦୁଃଖଂ ଅଖିଳଂ ପୀଡ଼ାସମୂହଂ ନଚ ବେଦ ନ ଜାନାତି, ବା ଇତିପ୍ରଶ୍ନେ, ଜୀବନଂ ନ ଅଶ୍ରବଂ ବଶ୍ୟସମ୍ପନ୍ନଂ ବା ବଚନସ୍ଥଂ ନ ଭବତି, ଇଦଂ ଯୌବନଂ ଦ୍ୱିତ୍ରାଣି ଦିନାନି ବ୍ୟାପ୍ୟ ସ୍ଥାସ୍ୟତି, ନ ତୁ ବହୁକାଲଂ, ହା ଇତି ଖେଦେ, ହେ ବିଧେ, ହେ ବିଧାତଃ ? ମମ କା ଗତିର୍ଭବିଷ୍ୟତି ବଦ ଇତ୍ୟର୍ଥଃ । ୬ଷ୍ଠ ଶ୍ଲୋକ ।

ତନଦ୍ୱାରେ—ଶ୍ରୀମନ୍ ମହାପ୍ରଭୁଙ୍କର ଗମ୍ଭୀରା ଯେଉଁ ଘରଟିରେ ସେଠାରୁ ବାହାରକୁ ଆସିବାକୁ ହେଲେ ପରପର ତିନୋଟି ପ୍ରାଚୀର ଘେରା ଅଗନ ପାରହୋଇ ଆସିବାକୁ ହୁଏ । ଏହି ତିନି ପ୍ରାଚୀରଦ୍ୱାର ରୁଦ୍ଧଥିଲେ ସୁଦ୍ଧା ଶ୍ରୀମନ୍ ମହାପ୍ରଭୁ ପ୍ରେମଭରରେ ପ୍ରାଚୀରମାନ ଉଲ୍ଲଙ୍ଘନ କରି ବାହାରକୁ ଆସି କେବେ ବା ଶ୍ରୀଜଗନ୍ନାଥ ଦେଉଳର ସିଂହ ଦ୍ୱାରରେ କେବେ ବା ସମୁଦ୍ରଜଳ ମଧ୍ୟରେ ପଡିତ ହୁଅନ୍ତି ।

ଚଟକ ପର୍ବତ—ତନ୍ନାମା ପର୍ବତବିଶେଷ, ଶ୍ରୀତୋଟାରେ ଗୋପୀନାଥଙ୍କ ସମ୍ମୁଖସ୍ଥ ବାଲୁକାମୟ ପର୍ବତ, ଯାହା ଉପରେ ବୃକ୍ଷାଦି ହୋଇଅଛି ।୮।

କାହାଁ—କୌଣସିଠାରେ ।୧୦। ବିତସ୍ତି—ଏକବିଘତ, ହାତ ଗୋଡ଼ ଗଣ୍ଠିମାନଙ୍କର ସନ୍ଧି ଛାଡ଼ିଯାଇ ଏକ ଏକ ବିଘତ ପ୍ରସାରିତ ହୋଇଥାଏ ଓ ଚର୍ମଦ୍ୱାରା ଆବୃତ ହୋଇ ଝୁଲୁଥାଏ ।୧୧। କାହାଁ କରୋ—କଣ କରିବି । କାହାଁ ପାଉଁ—କେଉଁଠାରେ ପାଇବି ।୧୨। ରାୟେର—ଶ୍ରୀ ରାମାନନ୍ଦ ରାୟଙ୍କର । ନାଟକ—ଶ୍ରୀ ଜଗନ୍ନାଥବଲ୍ଲଭ ନାଟକ ।୧୩।

ଅସ୍ୟାର୍ଥଃ । ଯଥାରାଗଃ ।

ଉପଜିଲ ପ୍ରେମାଙ୍କୁର, ଭାଙ୍ଗିଲ ଯେ ଦୁଃଖପୂର,
କୃଷ୍ଣ ତାହା ନାହି କରେ ପାନ ।

ବାହିରେ ନାଗରରାଜ, ଭିତରେ ଶଠେର କାଜ,
ପରନାରୀ ବଧେ ସାବଧାନ । ୧୭ ।
ସଖି ହେ ! ନା ବୁଝିୟେ ବିଧିର ବିଧାନ ।
ସୁଖ ଲାଗି କୈଲ ପ୍ରୀତ, ହୈଲ ଦୁଃଖ ବିପରୀତ,
ଏବେ ଯାୟ ନା ରହେ ପରାଣ ॥ ଧ୍ରୁ । ୧୮ ।

ଏହି ଶ୍ରୀକୃଷ୍ଣ ପ୍ରେମବିଚ୍ଛେଦଜାତ ପୀଡ଼ାର ବିଷୟ ଜାଣନ୍ତି ନାହିଁ । ପ୍ରେମ ମଧ୍ୟ ସ୍ଥାନାସ୍ଥାନ ଜାଣେ ନା, ଅର୍ଥାତ୍ ସତ୍ପାତ୍ର କି ଅସତ୍ପାତ୍ର ଏପରି ବିବେଚନା କରେ ନା, କନ୍ଦର୍ପ ମଧ୍ୟ ଆମ୍ଭମାନଙ୍କୁ ଦୁର୍ବଳା ବୋଲି ଜାଣେ ନା, ଅନ୍ୟଲୋକ ଅନ୍ୟଲୋକର ଦୁଃଖ ସମସ୍ତ ଜାଣେ ନା, ଏ ଜୀବନ ମଧ୍ୟ ମୋହର ବାଧ୍ୟ ନୁହେଁ, ଏହି ଯୌବନ ମଧ୍ୟ ଦୁଇ ତିନି ଦିନର ବ୍ୟାପାର, ହା ହା ବିଧାତା ମୋର ଏବେ କି ଗତି ହେବ ।

ଶ୍ରୀକୃଷ୍ଣ ମଥୁରା ଗମନ କଲାରୁ ତାଙ୍କ ବିରହରେ ଶ୍ରୀମତୀ ରାଧାଠାକୁରାଣୀଙ୍କର ଯେପରି ଉନ୍ମାଦ ବିହ୍ୱଳଭାବ ହୋଇଥିଲା ଏବଂ ସେହି ଭାବରେ ସେ ଯେପରି ବିଳାପ ଓ ପ୍ରଳାପ ଆଦି କରୁଥିଲେ, ଶ୍ରୀମନ୍ ମହାପ୍ରଭୁ ଶ୍ରୀରାଧାଭାବରେ ଭାବିତାନ୍ତଃକରଣ ହୋଇ ସେହି ଭାବରେ ପ୍ରଳାପ ଓ ବିଳାପ ଛଳରେ ଶ୍ରୀକୃଷ୍ଣବିରହରସ ଆସ୍ୱାଦନ କରୁଥିଲେ, ଅର୍ଥାତ୍ ତାହାଙ୍କର ଯେତେବେଳେ ଯେଉଁ ଭାବ ଉଦୟ ହୋଇଥିଲା, ସେହି ଭାବାନୁରୂପ ଶ୍ଳୋକ ପାଠ ଓ ଶ୍ରବଣ ଓ ତଦ୍ବ୍ୟାଖ୍ୟାରୂପ ପ୍ରଳାପ କରୁଥିଲେ । ଏ ବିଷୟର ଉଦାହରଣ ଏହି ଶ୍ଳୋକ ଓ ଗୀତମାନ ଅଟନ୍ତି ।

ଉପରୋକ୍ତ ଶ୍ଳୋକର ଘଟନା ଏହି ଯେ, ଶ୍ରୀରାଧା ଶ୍ରୀକୃଷ୍ଣଦର୍ଶନଲାଭ କଲା ପରି ନବାନୁରାଗରେ ଶ୍ରୀକୃଷ୍ଣସଙ୍ଗଲାଭାର୍ଥ ବ୍ୟାକୁଳ ହୋଇ ସଖୀମାନଙ୍କର ଉପଦେଶଅନୁଯାୟୀ କନ୍ଦର୍ପଲିପି ପଠାଇଥିଲେ । ଶ୍ରୀକୃଷ୍ଣ ଉକ୍ତ ଲିପି ପାଠ କରି ଶ୍ରୀରାଧାଙ୍କର ଭାବ ପରୀକ୍ଷା କରିବା କାରଣ ଉପେକ୍ଷାରୂପ ଛଳ ଅବଲମ୍ବନ କରନ୍ତେ ପତ୍ରବାହିକା ସଖୀ ଶ୍ରୀକୃଷ୍ଣଙ୍କର ସେହି ଛଳକଥାକୁ ସତ୍ୟ ମନେ କରି ଶ୍ରୀରାଧାଙ୍କୁ କହନ୍ତେ ଶ୍ରୀରାଧା ଏହି ଶ୍ଳୋକଦ୍ୱାରା ନିଜ ମନର ବ୍ୟାକୁଳତା ପ୍ରକାଶ କରିଅଛନ୍ତି । ଶ୍ରୀମନ୍ ମହାପ୍ରଭୁ ସେ ଶ୍ଳୋକ ଆବୃତ୍ତି କରି ନିମ୍ନଲିଖିତ ପ୍ରଳାପଦ୍ୱାରା ଭକ୍ତଭାବରେ ରସାସ୍ୱାଦନ କରିଅଛନ୍ତି ।

ପୂର—ସମୂହ । ପାନ—ବିଶେଷ ରସାନୁଭବ । ସାବଧାନ—ଅତି ନିପୁଣ । କୃଷ୍ଣ-ପ୍ରେମରୂପ ଅଙ୍କୁର ଉତ୍ପନ୍ନ ହେବାମାତ୍ର ନଷ୍ଟ ହେଲେ ସେଥିରୁ ଯେ ସମସ୍ତ ଦୁଃଖ ଜାତ ହୁଏ, ତାହା ଶ୍ରୀକୃଷ୍ଣ ଅନୁଭବ କରି ନାହାନ୍ତି । କାରଣ ସେ ବାହ୍ୟକରେ ନାଗରଚୂଡ଼ାମଣିରୂପେ ବ୍ୟବହାର କଲେ ହେଁ ଅନ୍ତରରେ ଶଠଚୂଡ଼ାମଣି । ଯେ ହେତୁ ସେ ପରସ୍ତ୍ରୀବଧ କାର୍ଯ୍ୟରେ ଅତି ନିପୁଣ । ୧୭ ।

ସୁଖ ପାଇବି ବୋଲି ପ୍ରୀତି କଲି, କିନ୍ତୁ ତାହାର ବିପରୀତ ଫଳ ଅର୍ଥାତ୍ ଦୁଃଖଲାଭ ହେଲା, ଏପରି କି ପ୍ରାଣ ଯିବା ଭଳି ହୋଇଅଛି । ଏହା କେବଳ ବିଧାତାଙ୍କର ନିର୍ବନ୍ଧ । ନ ହେଲେ ମୋର ଯଦି ଏଥିରେ କର୍ତ୍ତୃତ୍ୱ ଥାଆନ୍ତା, ତେବେ ମୁଁ ଏତେ ଦୁଃଖ ପାଇ ନ ଥାନ୍ତି । ୧ ।

କୁଟିଲ ପ୍ରେମା ଅଗେୟାନ, ନାହି ଜାନେ ସ୍ଥାନାସ୍ଥାନ,
ଭାଲ-ମନ୍ଦ ନାରେ ବିଚାରିତେ ।
କ୍ରୂର-ଶଠେର ଗୁଣଡୋରେ, ହାଥେ-ଗଲେ ବାନ୍ଧି ମୋରେ,
ରାଖିଆଛେ, ନାରି ଉକାଶିତେ । ୧୯ ।
ଯେ ମଦନ ତନୁହୀନ, ପରଦ୍ରୋହେ ପରବୀଣ,
ପାଁଚ-ବାଣ ସନ୍ଧେ ଅନୁକ୍ଷଣ ।
ଅବଲାର ଶରୀରେ, ବିନ୍ଧି କରେ ଜରଜରେ,
ଦୁଃଖ ଦେୟ, ନା ଲୟ ଜୀବନ । ୨୦ ।

ଅନ୍ୟେର ଯେ ଦୁଃଖ ମନେ, ଅନ୍ୟ ତାହା ନାହି ଜାନେ,
ସତ୍ୟ ଏଇ ଶାସ୍ତ୍ରେର ବିଚାରେ ।
ଅନ୍ୟଜନ କାହାଁ ଲିଖି, ନାହି ଜାନେ ପ୍ରାଣସଖୀ,
ଯାତେ କହେ ଧୈର୍ଯ୍ୟ ଧରିବାରେ । ୨୧ ।
କୃଷ୍ଣ କୃପା-ପାରାବାର, କଭୁ କରିବେନ ଅଙ୍ଗୀକାର,
ସଖି ! ତୋର ଏ ବ୍ୟର୍ଥ ବଚନ ।
ଜୀବେର ଜୀବନ ଚଞ୍ଚଲ, ଯେନ ପଦ୍ମପତ୍ରେର ଜଲ,
ତତଦିନ ଜୀବେ କୋନ୍ ଜନ । ୨୨ ।

ଏ ପ୍ରକାର ଶଠପୁରୁଷ ସହିତ ଜାଣିଶୁଣି ପ୍ରୀତି କଲ କାହିଁକି ? ସେ ଯାହା ହେବାର ହୋଇଅଛି । ଏବେ ତାକୁ ଭୁଲିଯାଅ । ଏହିପ୍ରକାର ସଖୀ ବଚନର ଉତ୍ତର ସ୍ୱରୂପ ଶ୍ରୀରାଧା କହୁଅଛନ୍ତି :—

ହେ ସଖି ? ପ୍ରେମ ସ୍ୱାଭାବିକ କୁଟିଳ ଏବଂ ଜଡ଼ବସ୍ତୁ ହେତୁ ଅଜ୍ଞାନ ତାହାର ସ୍ଥାନାସ୍ଥାନର ଜ୍ଞାନ କିମ୍ବା ଭଲମନ୍ଦ ବିଚାର ନାହିଁ, ତାହା ଥିଲେ ମୋହର ଏ ଦୁର୍ଦ୍ଦଶା ହୋଇ ନ ଥାନ୍ତା, ତୁମ୍ଭେମାନେ ଯେ ତାକୁ ( ଶ୍ରୀକୃଷ୍ଣଙ୍କୁ ) ଭୁଲିଯିବାକୁ କହୁଅଛ, ସେଥିରେ କି ମୋର କିଛି ଶକ୍ତି ଅଛି । କାରଣ ସେହି ଶଠଚୂଡ଼ାମଣିଙ୍କର ରୂପ ଗୁଣ ଦଉଡ଼ି ପରି ମୋହର ସମସ୍ତ ଅଙ୍ଗକୁ ବାନ୍ଧି ପକାଇ ଅଛି, ମୁଁ ସେଥିରୁ ବାହାରି ପାରୁ ନାହିଁ । ଉକାଶିତେ—ବନ୍ଧନରୁ ମୁକ୍ତ ହେବାକୁ । ୧୯ ।

ସଖି ! ଦୁଃଖ କଣ ଏତିକି ? ଶଠନାଗର ଯାହା ଦୁଃଖ ଦେବାର ତ ଦେଉଅଛନ୍ତି, ପୁଣି ସର୍ବଦା ପରହିଂସକ ମଦନ ଏହି ସୁଯୋଗରେ ତାର ପାଞ୍ଚୋଟିଯାକ ବାଣ ସର୍ବଦା ଶରୀରରେ ପ୍ରହାରପୂର୍ବକ ଜର ଜର କରି କେବଳ ଦୁଃଖ ଦେଉଅଛି । କିନ୍ତୁ ପ୍ରାଣ ନେଉ ନାହିଁ, ପ୍ରାଣ ନେଲେ ସମସ୍ତ ଦୁଃଖ ଶେଷ ହୁଅନ୍ତା । ମୁଁ ଅବଳା ହୋଇ ସ୍ୱୟଂ ଏଥିର କୌଣସି ପ୍ରତୀକାର କରନ୍ତି; କିନ୍ତୁ ତାହା ସ୍ୱୟଂ କରି ପାରୁ ନାହିଁ । କାରଣ ସେ (ମଦନ) ଅନଙ୍ଗ, ତାହାର ଅଙ୍ଗ ନ ଥିବାରୁ ମୁଁ ତାକୁ ଦେଖି ପାରୁ ନାହିଁ । ୨୦ ।

ସଖୀ କହୁଅଛନ୍ତି:—ଏତେ ଅଧୀର କିପାଇଁ ହେଉଅଛ, ଧୈର୍ଯ୍ୟ ଧର କୃଷ୍ଣ ତ କୃପାସାଗର, ସେ ଅବଶ୍ୟ କେବେ ତୁମ୍ଭଙ୍କୁ କୃପା କରିବେ । ସଖୀର ଏହି ପ୍ରକାର ପ୍ରବୋଧ ବଚନ ଶୁଣି ଶ୍ରୀରାଧା କହୁଅଛନ୍ତି:—ଶାସ୍ତ୍ରରେ ଲେଖା ଅଛି ଯେ; ଏକର ଦୁଃଖ ଅପର ଜାଣି ପାରେ ନା, ଏହା ସତ୍ୟ ହେଲେହେଁ ମୋର ବିଶ୍ୱାସ ଥିଲା ଯେ ପ୍ରାଣସଖୀମାନେ ମୋର ଦୁଃଖ ବୁଝି ପାରନ୍ତି, କିନ୍ତୁ ତୁମ୍ଭମାନଙ୍କର ଧୈର୍ଯ୍ୟ ଧରିବାର ଉପଦେଶ ଶୁଣି ମୋର ସେ ଭ୍ରମ ଦୂର ହେଲା । କାରଣ ତୁମ୍ଭେମାନେ ମୋର ଦୁଃଖ ହୃଦୟଙ୍ଗମ କରି ପାରୁଥିଲେ ମୋତେ କେବେହେଁ ଧୈର୍ଯ୍ୟ ଧରିବାକୁ କହନ୍ତ ନାହିଁ । ପୁଣି କହୁଅଛ ଯେ – ଶ୍ରୀକୃଷ୍ଣ କୃପାସାଗର ହେତୁ ଦିନେ ହେଲେ କୃପା କରିବେ, କିନ୍ତୁ ସେ ଦିନ ଯେ କେବେ ହେବ ତାହା ଜଣା ନାହିଁ । ଜୀବନ ତ ପଦ୍ମପତ୍ରର ଜଳ ପରି ସର୍ବଦା ଟଳଟଳ ହେଉଅଛି । କେତେବେଳେ ଯେ ବାହାରି ଯିବ ତାହାର ସ୍ଥିରତା ନାହିଁ । ଏପରି ସ୍ଥଳେ ଶ୍ରୀକୃଷ୍ଣ ଯେ କେବେ କୃପା କରିବେ, ସେତେ ଦିନ ଯାଏ କିଏ ବଞ୍ଚିଥିବ ? ୨୧ । ୨୨ ।

ଶତବତ୍ସର-ପର୍ଯ୍ୟନ୍ତ, ଜୀବେର ଜୀବନ-ଅନ୍ତ,
ଏଇ ବାକ୍ୟ କହିନା ବିଚାର ।
ନାରୀର ଯୌବନ ଧନ, ଯାରେ କୃଷ୍ଣ କରେ ମନ,
ସେ ଯୌବନ ଦିନ-ଦୁଇ-ଚାର । ୨୩ ।
ଅଗ୍ନି ଯୈଛେ ନିଜଧାମ, ଦେଖାଇୟା ଅଭିରାମ,
ପତଙ୍ଗେରେ ଆକର୍ଷିୟା ମାରେ ।
କୃଷ୍ଣ ଐଛେ ନିଜଗୁଣ, ଦେଖାଇୟା ହରେ ମନ,
ପାଛେ ଦୁଃଖ-ସମୁଦ୍ରେତେ ଡାରେ । ୨୪ ।
ଏତେକ ବିଲାପ କରି, ବିଷାଦେ ଶ୍ରୀଗୌରହରି,
ଉଘାଡ଼ିଆ ଦୁଃଖେର କବାଟ ।
ଭାବେର ତରଙ୍ଗ ବଲେ, ନାନାରୂପେ ମନ ଚଲେ,
ଆର ଏକ ଶ୍ଳୋକ କୈଲ ପାଠ । ୨୫ ।

ତଥାହି ଗୋସ୍ୱାମିପାଦୋକ୍ତଃ ଶ୍ଳୋକଃ—

ଶ୍ରୀକୃଷ୍ଣରୂପାଦିନିଷେବଣଂ ବିନା,
ବ୍ୟର୍ଥାନି ମେଽହାନ୍ୟଖିଲେନ୍ଦ୍ରିୟାଣ୍ୟଲମ୍ ।
ପାଷାଣ-ଶୁଷ୍କେନ୍ଧନ-ଭାରକାଣ୍ୟହୋ,
ବିଭର୍ମି ବା ତାନି କଥଂ ହତତ୍ରପଃ ॥ ୩ ।

ଶ୍ରୀକୃଷ୍ଣରୂପାଦିନିଷେବଣଂ ଶ୍ରୀକୃଷ୍ଣସ୍ୟ ରୂପରସଗନ୍ଧସ୍ପର୍ଶାନାଂ ନିଷେବଣଂ ଦର୍ଶନାଦିକଂ ବିନା ମେ ମମ ଅହାନି ଦିନାନି ତଦ୍‌ଗତଜୀବନାନି ଅଖିଲେନ୍ଦ୍ରିୟାଣି ଅଲଂ ଅତ୍ୟର୍ଥଂ ଚ ବ୍ୟର୍ଥାନି ଭବନ୍ତି । ଅତଏବ ଅହୋ ପାଷାଣଶୁଷ୍କେନ୍ଧନଭାରକାଣି ପାଷାଣଶୁଷ୍କକାଷ୍ଠସଦୃଶୋ ଭାରଃ ଯେଷାଂ ତାନି ଇନ୍ଦ୍ରିୟାଣି ଦିନାନି ଚ—କଥଂ କେନ ପ୍ରକାରେଣ ହତତ୍ରପଃ ନିର୍ଲଜ୍ଜଃ ସନ୍ ଅହଂ ବିଭର୍ମି-ଧାରୟାମି । ଅନ୍ୱୟ ଶ୍ଳୋକ ।

ସଖୀ କହୁଅଛନ୍ତି:—"ତୁମ୍ଭେ ଏପରି କାହିଁକି ହେଉଅଛ, ପରମାୟୁ ତ ଶତବର୍ଷ ନିରୂପିତ ହୋଇଅଛି, ଏତେ ଦିନ ମଧ୍ୟରେ ଶ୍ରୀକୃଷ୍ଣ କି ଦିନେ ସୁଦ୍ଧା କୃପା କରିବେ ନାହିଁ ?"

ଏହାର ଉତ୍ତରରେ ଶ୍ରୀରାଧା କହୁଅଛନ୍ତି :—"ଶତବର୍ଷ ପରମାୟୁ ନିରୂପିତ ହେଲେହେଁ ଏ କଥା କହିବା ପୂର୍ବରୁ ଥରେ ବିଚାର କରି କହିବା ଉଚିତ । ବିଚାର କରି ଦେଖ, ଶ୍ରୀକୃଷ୍ଣ ଯେଉଁ ଯୌବନଧନର ନିମନ୍ତରେ କୃପା କରନ୍ତି, ନାରୀର ସେ ଯୌବନଧନ କେତେ ଦିନ ଥାଏ । ତାହା ତ ଦୁଇ ଚାରି ଦିନ ଥାଏ, ଅର୍ଥାତ୍ ଅତି ଅଳ୍ପଦିନସ୍ଥାୟୀ; ତାହାହେଲେ ପରମାୟୁ ଶତବର୍ଷ ହେଲେହେଁ ଯୌବନ ଗତ ହେଲେ ଆଉ ଶ୍ରୀକୃଷ୍ଣଙ୍କର କୃପା କେବେ ହେବ ?" । ୨୩ ।

ପୂର୍ବକଥା କହିବା ପରେ ଶ୍ରୀରାଧାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଶଠତାର ଭାବ ମନରେ ଉଦୟ ହେବାରୁ କହୁଅଛନ୍ତି:—"ହେ ସଖି ! ଅଗ୍ନି ଯେପରି ଆପଣାର ରୂପ ଦେଖାଇ ପତଙ୍ଗମାନଙ୍କୁ ଆକର୍ଷଣ କରି ଆଣେ ଓ ପୋଡ଼ି ମାରେ, ଶ୍ରୀକୃଷ୍ଣ ସେହିପରି ଆପଣାର ରୂପଗୁଣଦ୍ୱାରା ମନୋହରଣ କରି ପରେ ଦୁଃଖସମୁଦ୍ରରେ ନିକ୍ଷେପ କରନ୍ତି । ଡାରେ—ପକାଏ । ୨୪ ।

ଶ୍ରୀମନ୍ ମହାପ୍ରଭୁ ଏହିପରି ବିଳାପ କରି ବିଷାଦରେ ଆପଣାର ମନୋଦୁଃଖ ଖୋଲି ଭାବତରଙ୍ଗରେ ମନର ଯେପରି ଗତି ହେଉଥିଲା, ସେହିପରି ଆଉ ଗୋଟିଏ ଶ୍ଳୋକ ପାଠ କଲେ ।

ଉଘାଡ଼ିଆ—ଉଦ୍‌ଘାଟନ କରି । ୨୫ ।

ଶ୍ରୀକୃଷ୍ଣଙ୍କର ଶବ୍ଦସ୍ପର୍ଶରୂପରସଗନ୍ଧ ଆସ୍ୱାଦନ ବ୍ୟତୀତ ମୋର କର୍ଣ୍ଣ, ତ୍ୱକ୍, ଚକ୍ଷୁ, ଜିହ୍ୱା ଓ ନାସିକା ଆଦି ଇନ୍ଦ୍ରିୟମାନେ ଓ ଦିବସ ସମସ୍ତ ( ଅର୍ଥାତ୍ ଜୀବନ ) ବୃଥା ଯାଉଅଛି । ମୁଁ ଯେ ନିର୍ଲଜ୍ଜ ପରି ଇନ୍ଦ୍ରିୟଗଣଙ୍କୁ ଓ ଜୀବନ ପାଷାଣ କିମ୍ବା ଶୁଷ୍କକାଷ୍ଠର ଭାର ପରି ବହନ କରୁଅଛି, ଏହା ବଡ଼ ଆଶ୍ଚର୍ଯ୍ୟ ବା ପରିତାପର ବିଷୟ । ଅନ୍ୱୟ ଶ୍ଳୋକାର୍ଥ ।

ଅସ୍ୟାର୍ଥଃ । ଯଥାରାଗଃ ।

ବଂଶୀଗାନାମୃତଧାମ, ଲାବଣ୍ୟାମୃତ-ଜନ୍ମସ୍ଥାନ,
ଯେ ନା ଦେଖେ ସେ ଚାନ୍ଦବଦନ ।
ସେ ନୟନେ କିବା କାଜ, ପଡ଼ୁ ତାର ମାଥେ ବାଜ,
ସେ ନୟନ ରହେ କି-କାରଣ । ୨୬ ।
ସଖି ହେ ! ଶୁନ ମୋର ହତବଧି-ବଲ ।
ମୋର ବପୁ ଚିତ୍ତ ମନ, ସକଲ ଇନ୍ଦ୍ରିୟଗଣ,
କୃଷ୍ଣ-ବିନୁ ସକଲ ବିଫଲ । ଧ୍ରୁ । ୨୭ ।

କୃଷ୍ଣେର ମଧୁର ବାଣୀ, ଅମୃତେର ତରଙ୍ଗିଣୀ,
ତାର ପ୍ରବେଶ ନାହି ଯେ-ଶ୍ରବଣେ ।
କାଣାକଡ଼ି-ଛିଦ୍ର-ସମ, ଜାନିହ ସେଇ ଶ୍ରବଣ,
ତାର ଜନ୍ମ ହୈଲ ଅକାରଣେ । ୨୮ ।
ମୃଗମଦ ନୀଲୋତ୍ପଲ, ମିଲନେ ଯେ ପରିମଲ,
ଯେଇ ହରେ ତାର ଗର୍ବ-ମାନ ।
ହେନ କୃଷ୍ଣ-ଅଙ୍ଗ-ଗନ୍ଧ, ଯାର ନାହିଁ ସେ-ସମ୍ବନ୍ଧ,
ସେଇ ନାସା ଭସ୍ତ୍ରାର ସମାନ । ୨୯ ।

ରୂପାଦୀତି । ରୂପଶବ୍ଦଗନ୍ଧରସସ୍ପର୍ଶାସ୍ତେଷାଂ ରୂପାଦୀନାଂ ନିଷେବଣଂ ବିନା । ଅହାନି ଦିନାନି । ଅଖିଲେନ୍ଦ୍ରିୟାଣି ଚକ୍ଷୁଃକର୍ଣ୍ଣନାସାଜିହ୍ଵାତ୍ଵଚଃ । ପାଷାଣଶୁଷ୍କେନ୍ଧନେ ପାଷାଣଶୁଷ୍କକାଷ୍ଠେ ଭାରଯୁତାନି ତଥା ତତ୍ତୁଲ୍ୟାନୀତି ଯାବତ୍ । ବିଭର୍ମି ଧାରୟାମି ତାନି ଦିନାନି କଥଂ କ୍ଷିପାମି ଇନ୍ଦ୍ରିୟାଣି ବା କଥଂ ଧାରୟାମୀତ୍ୟର୍ଥଃ । ବି. ଚ.

ବଂଶ୍ୟା ଯଦ୍ ଗାନାମୃତଂ ତସ୍ୟ ଧାମ ଆଶ୍ରୟସ୍ଥାନଂ । ତାର ତସ୍ୟ ଜନସ୍ୟ ଅଥବା ନୟନସ୍ୟ । ବି. ଚ.

ହତବିଧିବଲ—ମମ ବିଧିବଲଂ ହତମିତି ଶ୍ରୂଣ୍ଵିତ୍ୟର୍ଥଃ ବିଧାନଂ ବିଧିଃ କ୍ରିୟତେତି ଯାବତ୍ ମତ୍ ସମ୍ବନ୍ଧୀ ଯାବତୀ କୃତିଙ୍ଖପ୍ରବୃତ୍ତିକା ତସ୍ୟା ବଲଂ ଶକ୍ତିରିତ୍ୟର୍ଥଃ । ହତବିଧି ବଲମାହି ମୋର ଇତ୍ୟାଦି । ବି. ଚ. ।

ଶ୍ରୀମନ୍ ମହାପ୍ରଭୁ ଶ୍ରୀରାଧାଭାବରେ ଏହି ଶ୍ଳୋକର ଭାବରସ ନିମ୍ନଲିଖିତ ୭ ଗୋଟି—ପ୍ରଳାପ ପୟାରଦ୍ୱାରା ଆସ୍ୱାଦନ କରିଅଛନ୍ତି । ବାଜ—ବଜ୍ର । ଧାମ—ବାସସ୍ଥାନ ।

ଏ ପଦ୍ୟଦ୍ୱାରା ଚକ୍ଷୁର ବ୍ୟର୍ଥତା ନିରୂପଣ କରୁଅଛନ୍ତି । ବଂଶୀଗାନାମୃତର ବାସସ୍ଥାନ ଏବଂ ଲାବଣ୍ୟାମୃତର ଉତ୍ପତ୍ତିସ୍ଥାନରୂପ ଶ୍ରୀକୃଷ୍ଣଙ୍କର ବଦନଚନ୍ଦ୍ରମା ଯେଉଁ ଚକ୍ଷୁ ଦେଖି ନାହିଁ, ସେ ଚକ୍ଷୁ ବୃଥା । ଅତଏବ ତାହା ବଜ୍ରଦ୍ୱାରା ନଷ୍ଟହେବାହିଁ ମଙ୍ଗଳ । ୨୬ ।

ମୋର ବୋଲି କହିବାର ଯାହା କିଛି, ଶ୍ରୀକୃଷ୍ଣସମ୍ବନ୍ଧ ବିନା ସେ ସମସ୍ତ ଯେ ବୃଥା ହୋଇଅଛି ସେ ବିଷୟରେ କହୁଅଛନ୍ତି, ହେ ସଖି ! ମୋର ବିଧିବଳ ବା କର୍ମବଳ ଏଡ଼େ ଖେଷ୍ଟ ଯେ, ଶ୍ରୀକୃଷ୍ଣଙ୍କ ବିନା ମୋର ଦେହ, ଚିତ୍ତ, ମନ, ଇନ୍ଦ୍ରିୟଗଣ, ଏପରି କି ମୋର ବୋଲି କହିବାର ଯାହାକିଛି ସେ ସମସ୍ତ ଅର୍ଥାତ୍ ଜୀବନ ସୁଦ୍ଧା ବିଫଳ ହୋଇଅଛି । ୨୭ ।

ବର୍ତ୍ତମାନ ଶ୍ରବଣେନ୍ଦ୍ରିୟର ବିଫଳତ୍ୱ ଦେଖାଉଅଛନ୍ତି, ହେ ସଖି ! ଯେଉଁ କର୍ଣ୍ଣରେ ଅମୃତନଦୀବତ୍ ଶ୍ରୀକୃଷ୍ଣଙ୍କ ମଧୁରବାଣୀ ପ୍ରବେଶ କରି ନାହିଁ, ତାହା କଣା କଉଡ଼ି ମଧ୍ୟର ରନ୍ଧ୍ରତୁଲ୍ୟ, ଏଣୁ ତାର ଜନ୍ମ ବୃଥା । ୨୮ ।

ଭସ୍ତ୍ରା— କମାରମାନଙ୍କ ଚର୍ମନିର୍ମିତ ବାୟୁଯନ୍ତ୍ରବିଶେଷ ।

ନାସିକାର ବିଷୟ କହୁଅଛନ୍ତି:—କସ୍ତୁରୀ ଓ ନୀଲୋତ୍ପଳ ଏ ଦୁହିଁଙ୍କର ଏକତ୍ର ମିଳନରେ ଯେଉଁ ସୁଗନ୍ଧ ଜାତ ହୁଏ, ତାହା ଶ୍ରୀକୃଷ୍ଣଙ୍କର ଅଙ୍ଗଗନ୍ଧ ତୁଳନାରେ ଅତି ଅକିଞ୍ଚିତ୍କର, ଯେଉଁ ନାସା ଏତାଦୃଶ ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗଗନ୍ଧ ଲାଭ କରି ନାହିଁ, ସେ ନାସା କମାରମାନଙ୍କ ଚର୍ମନିର୍ମିତ ବାୟୁଯନ୍ତ୍ରର ସମାନ, ଅର୍ଥାତ୍ ସେ ନାସିକା ବୃଥା ୨୯ ।

କୃଷ୍ଣେର ଅଧରାମୃତ, କୃଷ୍ଣଗୁଣ-ଚରିତ,
ସୁଧାସାର-ସ୍ୱାଦୁ-ବିନିନ୍ଦନ ।
ତାର ସ୍ୱାଦୁ ଯେ ନା ଜାନେ, ଜନ୍ମିୟା ନା ମୈଲ କେନେ,
ସେ ରସନା ଭେକଜିହ୍ୱା-ସମ । ୩୦ ।

କୃଷ୍ଣ-କର-ପଦତଳ, କୋଟିଚନ୍ଦ୍ର-ସୁଶୀତଳ,
ତାର ସ୍ପର୍ଶ ଯେନ ସ୍ପର୍ଶମଣି ।
ତାର ସ୍ପର୍ଶ ନାହିଁ ଯାର, ସେ ଯାଉକ ଛାରଖାର,
ସେଇ ବପୁ ଲୌହସମ ଜାନି । ୩୧ ।

କରି ଏତ ବିଲପନ, ପ୍ରଭୁ ଶଚୀନନ୍ଦନ,
ଉଘାଡ଼ିୟା ହୃଦୟେର ଶୋକ ।
ଦୈନ୍ୟ-ନିର୍ବେଦ-ବିଷାଦେ, ହୃଦୟେର ଅବସାଦେ,
ପୁନରପି ପଢ଼େ ଏକ ଶ୍ଲୋକ । ୩୨ ।

ତଥାହି ଶ୍ରୀଜଗନ୍ନାଥବଲ୍ଲଭନାଟକେ (୩।୧୧)—
ଯଦା ଯାତୋ ଦୈବାନ୍ମଧୁରିପୁରସୌ ଲୋଚନପଥଂ
ତଦାସ୍ମାକଂ ଚେତୋ ମଦନହତକେନା-ହୃତମଭୂତ୍ ।
ପୁନର୍ଯସ୍ମିନ୍ନେଷ କ୍ଷଣମପି ଦୃଶୋରେତି ପଦବୀଂ
ବିଧାସ୍ୟାମସ୍ତସ୍ମିନ୍ନଖିଲଘଟିକା ରତ୍ନଖଚିତାଃ ॥ ୪ ॥

ଯଦା ଯସ୍ମିନ୍ କାଲେ ବା ସ୍ୱପ୍ନେ ଦୈବାତ୍ ସୌଭାଗ୍ୟବଶାତ୍ ଅସୌ ମଧୁରିପୁଃ ଶ୍ରୀକୃଷ୍ଣଃ ଲୋଚନପଥଂ ନୟନଗୋଚରଂ ଯାତଃ, ପ୍ରାପ୍ତଃ, ତଦା ମଦନହତକେନ ମଦନ ଏବ ହତ ବୈରୀ ଯସ୍ୟ ତେନ, ଯଦ୍ୱା ମଦଯୁକ୍ତ ହର୍ଷଯୁକ୍ତଶ୍ଚ ମଦନଃ, ଏତେନ ଆନନ୍ଦଃ ବ୍ୟଞ୍ଜିତଃ ଅତଏବ ସଃ ଏବ ବୈରୀଃ ଯସ୍ୟ ତେନ, ଅସ୍ମାକଂ ଚେତଃ ମନଃ ଅହୃତଂ ଆଚ୍ଛିଦ୍ୟ ଗୃହୀତଂ ଅଭୂତ୍ । ପୁନଃ- ଯସ୍ମିନ୍ କ୍ଷଣେ ଏଷଃ କୃଷ୍ଣଃ ଦୃଶୋଃ ନୟନୟୋଃ ପଦବୀଂ ମାର୍ଗଂ ଏତି ଆଗମିଷ୍ୟତି ତସ୍ମିନ୍ କ୍ଷଣେ ଅଖିଲଘଟିକାଃ ସମଗ୍ରଘଟିକାଃ ରତ୍ନଖଚିତାଃ ବିଧାସ୍ୟାମଃ ବିଧାନଂ କରବାମ । ୪ର୍ଥ ଶ୍ଲୋକ ।

ଛେନୀ କର୍ମ୍ମକାରସ୍ୟ ଲୌହାଦିଚ୍ଛେଦନ ନିମିତ୍ତ ଯନ୍ତ୍ରବିଶେଷ । ବି. ଚ.

ଭେକଇତି । ଭେକସ୍ୟ ଜିହ୍ୱାୟାଃ ସତ୍ତ୍ୱେପି ତସ୍ୟା ରସାଗ୍ରହଣାତ୍ ସତ୍ତ୍ୱେଽପ୍ୟସତ୍ତ୍ୱମେବେତି ପର୍ଯ୍ୟବସିତଂ ଅତଏବ ଭେକସ୍ୟ ଜିହ୍ୱା ନାସ୍ତି କୁତସ୍ତଦୁପମେତି କୁବାଦଂ ନିରସ୍ତଂ । ବି. ଚ.

ଜିହ୍ୱା ବିଷୟ କହୁଅଛନ୍ତି—ଶ୍ରୀକୃଷ୍ଣଙ୍କର ଅଧରାମୃତ ବା ଉଚ୍ଛିଷ୍ଟ ଏବଂ ତାହାଙ୍କର ଲୀଳା-ଚରିତ ଏ ଉଭୟର ଯେ ସ୍ୱାଦୁ, ତାହା ତୁଳନାରେ ଅମୃତର ନିର୍ଯ୍ୟାସ ଅପେକ୍ଷାକୃତ ଅଧିକତର, ଯେଉଁ ଜିହ୍ୱା ଏ ଉଭୟର ସ୍ୱାଦୁ ଅନୁଭବ ନ କରେ ସେ ଜିହ୍ୱା ଭେକ ଜିହ୍ୱାତୁଲ୍ୟ ବୃଥା, ଅର୍ଥାତ୍ ଭେକର ଜିହ୍ୱା ଥିଲେ ସୁଦ୍ଧା ତଦ୍ୱାରା ସେ କିଛି ରସାସ୍ୱାଦନ କରେ ନା ବୋଲି, ତାହା ନାହିଁ ବୋଲି କଥିତ ହୁଏ, କିମ୍ବା ଭେକ କେବଳ କୋଳାହଳ କରି ତଦ୍ୱାରା ସର୍ପକୁ ଆପଣାର ସ୍ଥାନ ଜଣାଇ ଆକର୍ଷଣ କରି ସର୍ପଦ୍ୱାରା ବିନଷ୍ଟ ହୁଏ, ସେହିପରି ଶ୍ରୀକୃଷ୍ଣ ସମ୍ବନ୍ଧ ବ୍ୟତୀତ ଅପର ବୃଥା ବିଷୟ ଉଚ୍ଚାରଣ କରି ମନୁଷ୍ୟମାନେ ନିଜର ଅନିଷ୍ଟକୁ କେବଳ ବରଣ କରନ୍ତି ।୩୦।

ସ୍ପର୍ଶମଣି—ଏହା ଲୌହକୁ ସ୍ପର୍ଶ କଲାମାତ୍ରେ ଲୌହ ସୁବର୍ଣ୍ଣ ହୁଏ ।

ସ୍ପର୍ଶେନ୍ଦ୍ରିୟ ବିଷୟ କହୁଅଛନ୍ତି—ଶ୍ରୀକୃଷ୍ଣଙ୍କର ହସ୍ତପଦତଳ ତୁଳନାରେ କୋଟି କୋଟି ଚନ୍ଦ୍ର ସୁଶୀତଳତା ଅପେକ୍ଷାକୃତ ଅଧିକତର ଏବଂ ସେହି କରପଦତଳର ସ୍ପର୍ଶ—ସ୍ପର୍ଶମଣି ତୁଲ୍ୟ, ଅର୍ଥାତ୍ ତାହାର ସ୍ପର୍ଶ ଲାଭ କଲେ ମନୁଷ୍ୟର ପ୍ରାକୃତ ବପୁ ଅପ୍ରାକୃତ ହୁଏ । ଶ୍ରୀକୃଷ୍ଣଙ୍କର ଏତାଦୃଶ ଚରଣସ୍ପର୍ଶ ଯାହାର ଲାଭ ହୋଇ ନାହିଁ, ତାହାର ଶରୀର ଲୌହ ତୁଲ୍ୟ ଅପେକ୍ଷାକୃତ କଠିନ । ୩୧ ।

ବିଲାପନ—ବିଳାପ । ଦୈନ୍ୟ—ଅପଣାକୁ ନିକୃଷ୍ଟଜ୍ଞାନ । ନିର୍ବେଦ—ଆତ୍ମଧିକ୍କାର । ବିଷାଦ—ଅନୁତାପ । ଅବସାଦ—ଅବସନ୍ନତା । ୩୨ ।

ଅସ୍ୟାର୍ଥଃ । ଯଥାରାଗଃ ।

ଯେ କାଳେ ବା ସ୍ୱପନେ, ଦେଖିନୁ ବଂଶୀବଦନେ,
ସେଇକାଳେ ଆଇଲା ଦୁଇ ବୈରୀ ।
ଆନନ୍ଦ ଆର ମଦନ, ହରି ନିଲ ମୋର ମନ,
ଦେଖିତେ ନା ପାଇନୁ ନେତ୍ର ଭରି । ୩୩ ।
ପୁନ ଯଦି କୋନକ୍ଷଣ, କରାୟ କୃଷ୍ଣ-ଦରଶନ,
ତବେ ସେଇ ଘଟୀ କ୍ଷଣ ପଲ ।

ଦିୟା ମାଲ୍ୟ-ଚନ୍ଦନ, ନାନା ରତ୍ନ-ଆଭରଣ,
ଅଲଙ୍କୃତ କରିମୁ ସକଲ । ୩୪ ।
କ୍ଷଣେ ବାହ୍ୟ ହୈଲ ମନ, ଆଗେ ଦେଖେ ଦୁଇଜନ
ତାରେ ପୁଛେ—ଆମି ନା ଚୈତନ୍ୟ ? ।
ସ୍ୱପ୍ନପ୍ରାୟ କି ଦେଖିନୁ, କିବା ଆମି ପ୍ରଲାପିନୁ,
ତୋମରା କିଛୁ ଶୁନିୟାଛ ଦୈନ୍ୟ ? । ୩୫ ।

ଯଦେତି । ଚେତୋହରଣେନ, ଲୋଚନପଥମାଗତସ୍ୟାପି ଅନନୁଭବାଭାବ ଇତି ଭାବ । ମଦସ୍ପୃହ ହର୍ଷସ୍ପୃତି ଇତି ମଦନଃ ଏତେନ ଆନନ୍ଦୋ ବ୍ୟଞ୍ଜିତଃ ଅତଏବାସ୍ୟ ବ୍ୟାଖ୍ୟା ଆନନ୍ଦ ଆରମଦନ ଇତି । ଯସ୍ମିନ୍ ସ୍ଥୂଲକାଳେ । ଏତି ବର୍ତ୍ତମାନ ସାମୀପ୍ୟେ ଭବିଷ୍ୟତିଲଟ୍ । ବିଧାସ୍ୟାମଃ ଅବ ଭାବ କୃଷ୍ଣଦର୍ଶନ ସମ୍ଭାବନୟାତ୍ମନୋ ବହୁମନନାତ୍ ଗୌରବେନ ବହୁବଚନଂ । ବି. ଚ.

ଯେ କାଳେ ଇତି—ଯସ୍ମିନ୍ କାଳେ ଅକସ୍ମାତ୍ ପ୍ରାଦୁର୍ଭାବେନ ସ୍ୱପ୍ନେବେତି ବା ଶବ୍ଦସ୍ୟାର୍ଥଃ । ବି. ଚ. ।

ଦୈବାତ୍ ଯେତେବେଳେ ଶ୍ରୀକୃଷ୍ଣ ନୟନଗୋଚର ହୋଇଥିଲେ, ସେତେବେଳେ ଦୁଷ୍ଟ ମଦନ ଓ ତଦ୍‌ଗତ ଆନନ୍ଦ ମୋର ମନକୁ ହରଣ କରିଥିଲେ, ଅର୍ଥାତ୍ ଶ୍ରୀକୃଷ୍ଣ ଦର୍ଶନମାତ୍ରେ ମୋର ମନ ଆନନ୍ଦରେ ବିବଶ ହେବାରୁ ମୁଁ ତାହାଙ୍କୁ ପ୍ରାୟ ଦେଖି ନାହିଁ କହିଲେ ହୁଏ । ପୁଣି ଯଦି କୌଣସି କ୍ଷଣରେ ତାହାଙ୍କର ଦର୍ଶନ ପାଇବି ତେବେ ସେହିକ୍ଷଣ ଅବଲମ୍ବୀ କାଳକୁ ବିବିଧ ରତ୍ନାଦିଦ୍ୱାରା ଅଳଙ୍କୃତ କରିବି । ୪ର୍ଥ ଶ୍ଳୋକାର୍ଥ ।

ଯେଉଁ ସମୟରେ ସାକ୍ଷାତ୍ ବା ସ୍ୱପ୍ନରେ ଶ୍ରୀକୃଷ୍ଣଙ୍କର ବଂଶୀଯୁକ୍ତ ଶ୍ରୀମୁଖଚନ୍ଦ୍ରମାର ଅକସ୍ମାତ୍ ଦର୍ଶନ ଲାଭ କଲି, ସେହି ସମୟରେ ମୋର ମନ ଦର୍ଶନଜନିତ ଆନନ୍ଦ ଓ ସମ୍ଭୋଗେଚ୍ଛାଦ୍ୱାରା ପୂର୍ଣ୍ଣ ହେବାରୁ ମୁଁ ତାହାଙ୍କର ଦର୍ଶନଜନିତ ସୁଖ ଅନୁଭବ କରି ପାରିଲି ନାହିଁ, ଅର୍ଥାତ୍ ଆନନ୍ଦ ଓ ମଦନ ମୋର କୃଷ୍ଣଦର୍ଶନର ବାଧକ ହେଲେ । ୩୩ ।

ପୁନରାୟ ଯଦି କୌଣସି ଶୁଭକ୍ଷଣ ଶ୍ରୀକୃଷ୍ଣଙ୍କର ଦର୍ଶନ ଦାନ କରାନ୍ତି, ତାହାହେଲେ ସେହିକ୍ଷଣ ଏବଂ ତତ୍ସନକ ପଳ ଓ ଘଟିକାଦିକୁ ମଧ୍ୟ ବହୁ ଯତ୍ନରେ ମାଲ୍ୟ ଚନ୍ଦନ ଓ ଆଭରଣାଦିଦ୍ୱାରା ପୁରସ୍କୃତ କରିବି । ଏହାର ଭାବ ଏହି ଯେ, ଆନନ୍ଦ ଓ ମଦନ ମୋର ପୂର୍ବ ଥର ଶ୍ରୀକୃଷ୍ଣଦର୍ଶନରେ ବାଧା ଦେଇଥିଲେ, କିନ୍ତୁ ଏଥର ଯଦି ଦୈବାତ୍ ପୂର୍ବ ପରି ଶ୍ରୀକୃଷ୍ଣଦର୍ଶନ ପାଏଁ, ତାହାହେଲେ ସେ ଦୁଇ ବାଧକକୁ ଦୂର କରି ଅବଚ୍ଛେଦରେ ମନ ବୋଧ କରି ଶ୍ରୀକୃଷ୍ଣଦର୍ଶନ କରିବି । ୩୪ ।

ଦୁଇ ଜନ—ଶ୍ରୀରୂପଗୋସ୍ୱାମୀ ଓ ଶ୍ରୀରାୟରାମାନନ୍ଦ । ପ୍ରଲାପିନୁ—ପ୍ରଲାପ କଲି । ଶ୍ରୀମନ୍‌ମହାପ୍ରଭୁ ଅନ୍ତର୍ଦ୍ଦଶାରେ ପୂର୍ବୋକ୍ତ ୪ର୍ଥ ଶ୍ଳୋକ ୩୩।୩୪ ପୟାର ଲକ୍ଷିତ ପ୍ରଲାପ କରି ବାହ୍ୟଜ୍ଞାନଯୁକ୍ତମାତ୍ର ଅର୍ଥାତ୍ ଅର୍ଦ୍ଧ-ବାହ୍ୟ ଦଶାରେ ଶ୍ରୀରୂପଗୋସାଇଁ ଓ ଶ୍ରୀରାମାନନ୍ଦରାୟଙ୍କୁ ସମ୍ମୁଖରେ ଦେଖି ଚିହ୍ନି ନ ପାରି ଏବଂ ଆପେ ଯେ କିଏ ଜାଣି ନ ପାରି ଭାବି ନିରୂପଣ କରି ପଚାରୁଅଛନ୍ତି; ମୁଁ କିଏ ? ମୁଁ କି ଚୈତନ୍ୟ ? କ୍ରମେ ବାହ୍ୟଜ୍ଞାନର ଉଦୟ ହେବାରୁ ପ୍ରଲାପ କରିଥିବାର ଜ୍ଞାନ ହେତୁ ଲଜ୍ଜିତ ପ୍ରାୟ କହୁଅଛନ୍ତି । ମୁଁ ସ୍ୱପ୍ନରେ ପ୍ରାୟ କଣ ଦେଖିଲି, ବୋଧହୁଏ କଣ ପ୍ରଳାପ ମଧ୍ୟ କଲି, ମୋର କୌଣସି ଦୈନ୍ୟ ବଚନ (ପ୍ରଳାପ) ତୁମ୍ଭେମାନେ ଶୁଣିଛ କି ? ।୩୫।

ଶୁନ ମୋର ପ୍ରାଣେର ବାନ୍ଧବ ! ।
ନାହି କୃଷ୍ଣପ୍ରେମଧନ, ଦରିଦ୍ର ମୋର ଜୀବନ,
ଦେହେନ୍ଦ୍ରିୟ ବୃଥା ମୋର ସବ । ଧ୍ରୁ । ୩୬ ।
ପୁନ କହେ—ହାୟ ହାୟ, ଶୁନହ ସ୍ୱରୂପ ରାମରାୟ !,
ଏଇ ମୋର ହୃଦୟ-ନିଶ୍ଚୟ ।
ଶୁନି କରହ ବିଚାର, ହୟ ନୟ କହ ସାର,
ଏତ ବଲି ଶ୍ଲୋକ ଉଚ୍ଚାରୟ । ୩୭ ।
ତଥାହି ଶ୍ରୀମଦ୍‌ଭାଗବତେ ଦଶମସ୍କନ୍ଧେ ଏକତ୍ରିଂଶାଧ୍ୟାୟସ୍ୟ ପ୍ରଥମାଙ୍କଧୃତ "ଜୟତି ତେଽଧିକମ୍" ଇତ୍ୟସ୍ୟ ତୋଷଣୀଧୃତନ୍ୟାୟଃ—

କଇଅବରହିଅଂ ପେମ୍ମଂ ଣହି
ହୋଇ ମାଣୁସେ ଲୋଏ ।
ଜଇ ହୋଇ କସ୍ସ ବିରହେ ହୋନ୍ତେ
ହୋନ୍ତମ୍ମି କୋ ଜୀଅଇ ॥ ୫ ॥

ଅସ୍ୟାର୍ଥଃ । ଯଥାରାଗଃ ।

ଅକୈତବ କୃଷ୍ଣପ୍ରେମ, ଯେନ ଜାମ୍ବୁନଦ ହେମ,
ସେଇ ପ୍ରେମା ନୃଲୋକେ ନା ହୟ । ।
ଯଦି ହୟ ତାର ଯୋଗ, ନା ହୟ ତାର ବିୟୋଗ
ବିୟୋଗ ହୈଲେ କେହୋ ନା ଜୀୟୟ । ୩୮ ।

ହେ ସଖି ! ମନୁଷ୍ୟଲୋକେ କୈତବରହିତଂ କପଟରହିତଂ ପ୍ରେମ କୃଷ୍ଣପ୍ରେମ ନ ଭବତି ଯଦବା କଦାଚିତ୍ ପ୍ରେମଯୋଗୋ ଭବତି କସ୍ୟଚିଜ୍ଜନସ୍ୟ ବିଯୋଗୋ ନ ଭବତି ଯଦି ବିରହେ ଭବତି ସତି ତଦା କୋ ଜୀବତି ନ କୋଽପୀତ୍ୟର୍ଥଃ । ୫ମ ଶ୍ଲୋକ ।

ବୃଥା ଇତି । ଧନାଭାବେ ପରିକରାଣାଂ ପାଳନାସାମର୍ଥ୍ୟାତ୍ ବୃଥାତ୍ୱଂ । ବି. ଚ.

ଜଇଇତି । ଅର୍ଥାତ୍ ପ୍ରେମ ଯଦି ଭବତି କସ୍ୟ ବିରହୋ ଭବେତ୍ ନ କସ୍ୟାପୀତ୍ୟର୍ଥଃ । ତତ୍ର ହେତୁଃ ବିରହେ ଭବତି ସତି କୋ ଜୀବତି ନ କୋପୀତ୍ୟର୍ଥଃ । ବି. ଚ.

କିନ୍ତୁ ଶ୍ରୀମନ୍‌ମହାପ୍ରଭୁଙ୍କର ପୂର୍ଣ୍ଣ ବାହ୍ୟ ଜ୍ଞାନ ହେବାରୁ ସେ ଦୁଇ ଜଣଙ୍କୁ ଆପଣାର ଅନ୍ତରଙ୍ଗ ବନ୍ଧୁ ବୋଲି ଚିହ୍ନି ପାରି ଏବଂ ସେତେବେଳେ ଅନ୍ତର୍ଦଶାର ଭାବରେ ମନ ପରିପୂର୍ଣ୍ଣ ଥିବାରୁ ପ୍ରେମଗଦ୍‌ଗଦଭାବରେ ଦୈନ୍ୟ ପ୍ରକାଶ କରି କହିଲେ, ହେ ମୋର ପ୍ରାଣବନ୍ଧୁ ! ମୋର ଜୀବନ ବଡ଼ ଦରିଦ୍ର, ତାର ଏକମାତ୍ର ଶ୍ରୀକୃଷ୍ଣପ୍ରେମରୂପ ଧନ ନାହିଁ, ଅତଏବ ପ୍ରେମଧନ ଅଭାବରୁ ସେ ତାହାର ପରିକର ସ୍ୱରୂପ ଦେହ ଓ ଇନ୍ଦ୍ରିୟମାନଙ୍କ ପୋଷଣ କରିବାକୁ ଅକ୍ଷମ, ତେଣୁ ସେ ଜୀବନ ବୃଥା, ଅର୍ଥାତ୍ କୃଷ୍ଣସମ୍ବନ୍ଧବହୀନ ବ୍ୟକ୍ତିର ଜୀବନ ବୃଥା । ୩୬ ।

ପୁନରାୟ ଶ୍ରୀମନ୍‌ମହାପ୍ରଭୁ ଅତି ବିଷାଦରେ କହୁଅଛନ୍ତି—ହାୟ ହାୟ, ମୁଁ ନିଶ୍ଚୟ କୃଷ୍ଣ-ପ୍ରେମଧନରୁ ବଞ୍ଚିତ । ପ୍ରିୟସ୍ୱରୂପ ! ଓ ରାମରାୟ ! ମୋର ଅନ୍ତରର କଥା ଶୁଣି ବିଚାର କରି କହ, ମୁଁ ଯାହା କହିଲି ତାହା ଠିକ କି ନା । ୩୭ ।

ହେ ସଖି ! ମନୁଷ୍ୟଲୋକରେ ନିଷ୍କପଟ କୃଷ୍ଣପ୍ରେମ ଲାଭ ହୁଏ ନାହିଁ, ଯଦବା କଦାଚିତ୍ ଜାହାର ସୌଭାଗ୍ୟରେ ଲାଭ ହୁଏ, ତେବେ ତାହାର ବିଯୋଗ ହୁଏ ନାହିଁ, ଯଦି ବିଯୋଗ ହୁଏ, ତେବେ ସେ ବଞ୍ଚନ୍ତି ନାହିଁ । ୫ମ ଶ୍ଲୋକାର୍ଥ ।

ଏହି ଶ୍ଲୋକ ଓ ପରବର୍ତ୍ତୀ ୩୮ ଓ ୩୯ ପୟାରଦ୍ୱାରା ପ୍ରତିଶ୍ରୁତ ମନର କଥା ପ୍ରକାଶ କରୁଅଛନ୍ତି ।

ଅକୈତବ—ନିଷ୍କପଟ, ଫଳାନୁସନ୍ଧାନରହିତ, ନିରୁପାଧି । ଜାମ୍ବୁନଦହେମ—ପୁରାଣୋକ୍ତ ଜାମ୍ବୁନଦଜାତ ସ୍ୱର୍ଣ୍ଣ ବିଶୁଦ୍ଧ ବୋଲି ବିଖ୍ୟାତ । ପ୍ରେମା—ପ୍ରେମ ।

ଯେପରି କଥାରେ ଜାମ୍ବୁନଦ ସ୍ୱର୍ଣ୍ଣ ଶୁଣାଯାଏ । କିନ୍ତୁ ଏହି ପୃଥିବୀରେ କେହି ତାହା ଲାଭ କରେ ନାହିଁ, ସେହିପରି ନିରୁପାଧି କୃଷ୍ଣପ୍ରେମ ଅତି ଦୁର୍ଲଭ ବସ୍ତୁ । ଯଦି କେହି ପରମସୌଭାଗ୍ୟ

ଏତ କହି ଶଚୀସୁତ, ଶ୍ଳୋକ ପଢ଼େ ଅଦ୍ଭୁତ,
ଶୁନେ ଦୋଁହେ ଏକମନ ହୋଇୟା ।
ଆପନ ହୃଦୟ କାଜ, କହିତେ ବାସିୟେ ଲାଜ,
ତବୁ କହି ଲାଜବୀଜ ଖାଇୟା । ୩୯ ।

ତଥାହି ମହାପ୍ରଭୁପାଦୋକ୍ତ ଶ୍ଳୋକଃ—

ନ ପ୍ରେମଗନ୍ଧୋଽସ୍ତି ଦରାପି ମେ ହରୌ
କ୍ରନ୍ଦାମି ସୌଭାଗ୍ୟଭରଂ ପ୍ରକାଶିତୁମ୍ ।
ବଂଶୀବିଳାସ୍ୟାନନଲୋକନଂ ବିନା
ବିଭର୍ମି ଯତ୍ ପ୍ରାଣପତଙ୍ଗକାନ୍ ବୃଥା ॥ ୬ ॥

ଅସ୍ୟାର୍ଥଃ । ଯଥାରାଗଃ ।

ଦୂରେ ଶୁଦ୍ଧପ୍ରେମ-ଗନ୍ଧ, କପଟ ପ୍ରେମେର ବନ୍ଧ,
ସେହ ମୋର ନାହି କୃଷ୍ଣ ପାୟ ।
ତବେ ଯେ କରି କ୍ରନ୍ଦନ, ସ୍ୱସୌଭାଗ୍ୟ-ପ୍ରଖ୍ୟାପନ,
କରି ଇହା ଜାନିହ ନିଶ୍ଚୟ । ୪୦ ।

ହରୌ—ନନ୍ଦନନ୍ଦନେ ମେ ମମ ପ୍ରେମଗନ୍ଧଃ—ପ୍ରେମାଲ୍ପସଃ ଦରାପି-ସ୍ୱଳ୍ପୋଽପି ନାସ୍ତି, ସୌଭାଗ୍ୟଭରଂ—ନିଜସୌଭାଗ୍ୟାତିଶୟ୍ୟଂ ପ୍ରକାଶିତୁଂ କ୍ରନ୍ଦାମି—ରୋଦନଂ କରୋମି ଇତ୍ୟର୍ଥଃ, ବଂଶୀବିଳାସୀ ନନ୍ଦନନ୍ଦନଃ ତସ୍ୟ ଆନନାଲୋକନଂ—ମୁଖାରବିନ୍ଦଦର୍ଶନଂ ବିନା ଯତ୍ ଯସ୍ମାତ୍ ପ୍ରାଣପତଙ୍ଗକାନ ବିଭର୍ମି—ଧାରୟାମି । ୬ଷ୍ଠ ଶ୍ଳୋକଃ ।

ଏତ କହି ଇତି । ଅସ୍ୟ କଥନନ୍ତୁ "ଆପନ ହୃଦୟ କାଯ" ଇତ୍ୟାଦିକମପି । ନ ତୁ "ଅକୈତବ କୃଷ୍ଣପ୍ରେମ" ଇତ୍ୟାଦିକଂ କେବଲଂ ତଥାତ୍ୱେ "ଆପନ ହୃଦୟ କାଯ" ଇତ୍ୟାଦିକସ୍ୟ ପ୍ରଭୁବାକ୍ୟସ୍ୟାସଙ୍ଗତାପତ୍ତିଃ ସ୍ୟାତ୍ । ବି. ଚ.

ଦରା ଇତ୍ୟବ୍ୟୟଂ ସ୍ୱଳ୍ପୋପୀତ୍ୟର୍ଥଃ । ବଂଶୀବିଳାସିନଃ ଶ୍ରୀକୃଷ୍ଣସ୍ୟାନନାଲୋକନଂ ଯଦତ୍ର ଅସ୍ୟ ଉତ୍ତରବାକ୍ୟସ୍ଥଃ ଯତ୍ ଶବ୍ଦ ସ୍ତତ୍ ଶବ୍ଦଂ ପ୍ରତି ନିରାକାଙ୍କ୍ଷ ଇତି ବିନାପି ତତ୍ପଦମନ୍ୱୟାବିରୋଧଃ । ବି. ଚ.

ବଳରେ ଏପ୍ରକାର ସୁଦୁର୍ଲଭ କୃଷ୍ଣପ୍ରେମ ଲାଭ କରେ, ତେବେ ସେ ତାହା ଅତି ଯତ୍ନରେ ଆପଣାର ପ୍ରାଣଠାରୁ ଅଧିକ କରି ରକ୍ଷା କରେ । ସୁତରାଂ ତାହାର କୃଷ୍ଣପ୍ରେମ ସହିତ ବିଚ୍ଛେଦ ଘଟେ ନାହିଁ । ଯଦିବା ଦୈବାତ୍ ବିଚ୍ଛେଦ ହୁଏ, ତେବେ ସେ ବ୍ୟକ୍ତି ପ୍ରାଣ ଅପେକ୍ଷା ପ୍ରିୟ ଯେ କୃଷ୍ଣପ୍ରେମ ତାକୁ ହରାଇ ତତ୍କ୍ଷଣାତ୍ ପ୍ରାଣତ୍ୟାଗ କରେ । ୩୮ ।

ଶ୍ରୀମନ୍ମହାପ୍ରଭୁ କହିଲେ, ହେ ବନ୍ଧୋ ! ଏହା ମୋର ହୃଦୟର କଥା, କିନ୍ତୁ ଏ କଥା କହିବା ବଡ଼ ଲଜ୍ଜାର ବିଷୟ ହେଲେହେଁ ମୁଁ ନିର୍ଲଜ୍ଜ ହୋଇ ଏ କଥା କହିଲି । ଏ କଥା କହି ଏକ ଅଦ୍ଭୁତ (ଅଶ୍ରୁତପୂର୍ବ) ଶ୍ଳୋକ ପାଠ କଲେ ଏବଂ ତାହା ସ୍ୱରୂପ ଓ ରାମରାୟ ମନୋଯୋଗ ସହିତ ଶୁଣିବାକୁ ଲାଗିଲେ । ୩୯ ।

ଶ୍ରୀକୃଷ୍ଣ ପ୍ରେମର ଟିକିଏ ସୁଦ୍ଧା ଗନ୍ଧ ମୋର ନାହିଁ । ତେବେ ମୁଁ ଯେ କ୍ରନ୍ଦନ କରେଁ ତାହା ଶ୍ରୀକୃଷ୍ଣପ୍ରେମଜନିତ ନୁହେ । ଲୋକେ ମୋତେ ଶ୍ରୀକୃଷ୍ଣପ୍ରେମିକ ବୋଲି କହି ଗୌରବ କରିବେ, କେବଳ ଏହି ସୌଭାଗ୍ୟ ଲାଭ ସକାଶେ ମୁଁ କ୍ରନ୍ଦନ କରେଁ । ବସ୍ତୁତଃ ବଂଶୀଯୁକ୍ତ ଶ୍ରୀକୃଷ୍ଣଙ୍କର ମୁଖାରବିନ୍ଦ ଦର୍ଶନଲାଭ ନ କରି ମୁଁ ବୃଥାରେ ଏହି କ୍ଷୁଦ୍ର ପ୍ରାଣକୁ ଧାରଣ କରୁଅଛି । ୬ଷ୍ଠ ଶ୍ଳୋକାର୍ଥ ।

ଶୁଦ୍ଧ—ନିର୍ମଳ, ନିରୁପାଧି । କପଟ—ମଳଯୁକ୍ତ, ଫଳାକାଙ୍କ୍ଷାଯୁକ୍ତ ।

ବନ୍ଧ—ସମ୍ବନ୍ଧଂ । ସେହ—ତାହା । ପାୟ—ଶ୍ରୀଚରଣରେ । ପ୍ରଖ୍ୟାପନ—ପ୍ରଚାର ।

ମୋର ଶ୍ରୀକୃଷ୍ଣଙ୍କ ଶ୍ରୀଚରଣରେ ନିରୁପାଧି ପ୍ରେମର ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ ସୁଖୀ କରିବା ସକାଶେ ତାଙ୍କ ସେବା କରିବା ରୂପ ପ୍ରେମର କିଞ୍ଚିତ୍ ସମ୍ବନ୍ଧ ଥିବାର ତ ବହୁ ଦୂରର କଥା, ତାଙ୍କ

ଯାତେ ବଂଶୀଧ୍ୱନି-ସୁଖ ନା ଦେଖି ସେ ଚାଁଦମୁଖ,
ଯଦ୍ୟପି ସେ ନାହି ଆଲମ୍ବନ ।
ନିଜଦେହେ କରି ପ୍ରୀତି, କେବଲ କାମେର ଗତି,
ପ୍ରାଣକୀଟେର କରିୟେ ଧାରଣ ।୪୧ ।

କୃଷ୍ଣପ୍ରେମ ସୁନିର୍ମଲ, ଯେନ ଶୁଦ୍ଧ-ଗଙ୍ଗାଜଲ,
ସେଇ ପ୍ରେମା ଅମୃତେର ସିନ୍ଧୁ ।
ନିର୍ମଲ ସେ ଅନୁରାଗେ, ନା ଲୁକାୟ ଅନ୍ୟ ଦାଗେ,
ଶୁକ୍ଲବସ୍ତ୍ରେ ଯୈଛେ ମସୀବିନ୍ଦୁ ।୪୨ ।

---

ଦୂରେ ଇତି । ମମ ଶୁଦ୍ଧ-ପ୍ରେମଗନ୍ଧୋଽପି ନୋ ଯଃ କପଟପ୍ରେମବନ୍ଧଃ ସୋଽପି କୃଷ୍ଣଂ ନ ବଶୀକର୍ତ୍ତୁଂ ଇତ୍ୟର୍ଥଃ । ବି. ଚ.

ଯାତେ ଇତି । ଯଦ୍ ସ୍ଫୂରିତାୟାଃ ବଂଶ୍ୟାଃ ଧ୍ୱନିନା ସୁଖମର୍ଥାଦସ୍ମାଦୃଶୀନାଂ ଯଦ୍ୟପୀତି ଯଦ୍ୟପି ତନ୍ମୁଖ ଦୃଷ୍ଟ୍ୟାଲମ୍ବନଂ ବିଷୟାଲମ୍ବନଂ ନ ଭବେତ୍ ତଥାପୀତି ସମ୍ବନ୍ଧଃ । ନିଜ ଦେହେ ପ୍ରୀତି ସ୍ୱତୃପ୍ତ୍ୟାଦନା । ବି. ଚ.

କୃଷ୍ଣପ୍ରେମ୍ନଃ ସଂସାରମୋଚକତ୍ୱେନ ଗଙ୍ଗାଜଲତୁଲ୍ୟତା ଶୁଦ୍ଧଂ ତୃଣାଦ୍ୟମିଶ୍ରଂ । ବି. ଚ.

---

ଶ୍ରୀଚରଣରେ କପଟପ୍ରେମର ଗନ୍ଧ ଅର୍ଥାତ୍ ମୋର ନିଜ ସୁଖଲାଭ କରିବା ସକାଶେ ଶ୍ରୀକୃଷ୍ଣ ସେବା-ରୂପ କପଟପ୍ରେମର ଗନ୍ଧ କାହିଁର ସମ୍ବନ୍ଧ ନାହିଁ । ତେବେ ମୁଁ ଯେ କୃଷ୍ଣ କୃଷ୍ଣ କହି କ୍ରନ୍ଦନ କରେ ତାହା କୃଷ୍ଣପ୍ରେମଜନିତ ନୁହେ । ଏହିପ୍ରକାର କରିବାଦ୍ୱାରା ଲୋକେ ମୋତେ କୃଷ୍ଣପ୍ରେମିକ ବୋଲି ଜାଣି ମୋତେ ମାନ୍ୟ, ଗୌରବ ଓ ପ୍ରଶଂସା କରିବେ । ଏତଦ୍ୱାରା ସମସ୍ତଙ୍କ ନିକଟରେ ମୋର ଏ ସୌଭାଗ୍ୟ ପ୍ରଚୁର ହେବ, ଏଥିପାଇଁ ମୁଁ କାନ୍ଦେ । ୪୦ ।

ଶ୍ରୀକୃଷ୍ଣଙ୍କର ସହିତ ମୋର କପଟପ୍ରେମ ଯେ ନାହିଁ ତାହାର କାରଣ ଏହି ଯେ, ଶ୍ରୀକୃଷ୍ଣଙ୍କ ଶ୍ରୀମୁଖଚନ୍ଦ୍ରମାର ବଂଶୀଧ୍ୱନି ଶ୍ରବଣ କରି ମୁଁ ସୁଖୀ ହୁଏ, ସେ ହେତୁ ତାହା ମୋହର ଆମ୍ଭସୁଖର ବିଷୟାବଲମ୍ବନ, ତାହା ମଧ୍ୟ ମୁଁ ଲାଭ କରୁ ନାହିଁ । ଅର୍ଥାତ୍ ମୁଁ ଶ୍ରୀକୃଷ୍ଣଙ୍କର ବଂଶୀସମନ୍ୱିତ ମୁଖ-ଚନ୍ଦ୍ରମାର ଦର୍ଶନ କରୁ ନାହିଁ ଏବଂ ତଜ୍ଜନିତ ସୁଖଲାଭ ନିମିତ୍ତ ଯେ ଶରୀର ପ୍ରତି ପ୍ରୀତି କରନ୍ତି ତାହା ଗନ୍ଧ ମୋର ନାହିଁ । ଶ୍ରୀକୃଷ୍ଣସମ୍ବନ୍ଧ ବ୍ୟତୀତ ମୁଁ ଯେ ନିଜ ଶରୀର ପ୍ରତି ପ୍ରୀତି କରୁଛି । ଏହା ଶୁଦ୍ଧ କାମବଶତଃ, ଏଥିଁ ସେହି କାମର ପୋଷଣ ନିମିତ୍ତ ଏ ତୁଚ୍ଛ ପ୍ରାଣକୁ ବହନ କରୁଛି ।

ଆଲମ୍ବନ—ଅବଲମ୍ବନ ( ଭକ୍ତିରସାମୃତସିନ୍ଧୁରେ ଦ୍ରଷ୍ଟବ୍ୟ ) । ୪୧ ।

ଶ୍ରୀକୃଷ୍ଣପ୍ରେମର ଯୋଗ୍ୟ କୌଣସି ଉପମା ନ ଥିଲେହେଁ ତାହା କାହିଁର ବୁଝାଇବା କାରଣ ଉପମା ଦେଉଅଛନ୍ତି । ଯଥା—କୃଷ୍ଣପ୍ରେମ ଅତି ନିର୍ମଲବସ୍ତୁ, ତାହା ବିଶୁଦ୍ଧ ଅର୍ଥାତ୍ ତୃଣ ପଙ୍କାଦି ଶୂନ୍ୟ, ନିର୍ମଳ ଗଙ୍ଗାଜଳ ତୁଲ୍ୟ, ଅର୍ଥାତ୍ ନିର୍ମଳ ଗଙ୍ଗାଜଳ ପାନ କଲେ ଯେପରି ସ୍ୱାଦୁ ଲାଭ ହୁଏ, ଏବଂ ପବିତ୍ରତା ଲାଭ ହୁଏ, ସେହିପରି ନିରୁପାଧି କୃଷ୍ଣପ୍ରେମଦ୍ୱାରା ପରମାନନ୍ଦ ଲାଭ ଓ ସଂସାର

ଶୁଦ୍ଧପ୍ରେମ-ସୁଖସିନ୍ଧୁ, ପାଇ ତାର ଏକବିନ୍ଦୁ,
ସେଇ ବିନ୍ଦୁ ଜଗତ୍ର ଡୁବାୟ ।
କହିବାର ଯୋଗ୍ୟ ନହେ, ତଥାପି ବାଉଲେ କହେ,
କହିଲେ ବା କେବା ପାତିୟାୟ ? । ୪୩ ।
ଏଇମତ ଦିନେ ଦିନେ, ସ୍ୱରୂପ-ରାମାନନ୍ଦ-ସନେ,
ନିଜଭାବ କରେନ ବିଦିତ ।
ବାହ୍ୟେ ବିଷଜ୍ୱାଲା ହୟ, ଭିତରେ ଆନନ୍ଦମୟ,
କୃଷ୍ଣପ୍ରେମାର ଅଦ୍ଭୁତ ଚରିତ । ୪୪ ।
ଏଇ ପ୍ରେମାର ଆସ୍ୱାଦନ, ତପ୍ତ-ଇକ୍ଷୁ-ଚର୍ବଣ,
ମୁଖ ଜ୍ୱଲେ, ନା ଯାୟ ତ୍ୟଜନ ।
ସେଇ ପ୍ରେମା ଯାର ମନେ, ତାର ବିକ୍ରମ ସେଇ ଜାନେ
ବିଷାମୃତେ ଏକତ୍ର ମିଳନ । ୪୫ ।

---

ଏକବିନ୍ଦୁ ତସ୍ୟୈକବିନ୍ଦୁଂ ପ୍ରାପ୍ୟ ବାତୁଲଃ କଥୟତୀତି ସମ୍ବନ୍ଧଃ । ସେଇ ଇତି ଯଂ ପ୍ରାପ୍ୟ ବାତୁଳଃ ତେନ ବିନ୍ଦୁନା ଜଗଦାପ୍ଲାବୟତି । ବି. ଚ.

---

ମୋଚନ ହୁଏ । ଅତଏବ ସେହି କୃଷ୍ଣପ୍ରେମ ଅମୃତସମୁଦ୍ର ତୁଲ୍ୟ, ବିଶୁଦ୍ଧପ୍ରେମ ଓ କପଟପ୍ରେମ ଏହା କିପରି ଜଣା ଯିବ, ତାହା ଉଦାହରଣଦ୍ୱାରା କହୁଅଛନ୍ତି । ନିର୍ମଳ ଅନୁରାଗରେ (ପ୍ରେମରେ) ଅନ୍ୟ ଦାଗ ଅର୍ଥାତ୍ କପଟତା କେବେ ଲୁଚି ରହିବ ନାହିଁ । ଅର୍ଥାତ୍ ସେ ନିଜେ ପ୍ରକାଶ ହୋଇ ପଡ଼ିବ । ଯେପରି ନିର୍ମଳ ଶୁକ୍ଲବସ୍ତ୍ରରେ ବିନ୍ଦୁମାତ୍ର କାଳିଦାଗ ଲାଗିଥିଲେ ତାହା ଅପେ ପ୍ରକାଶ ହୋଇ ପଡ଼େ । ୪୨ ।

ପାତିୟାୟ—ପ୍ରତ୍ୟୟ କରିବା । ବାଉଲ—ବାତୁଳ ।

ନିରୁପାଧି କୃଷ୍ଣପ୍ରେମ ସୁଖର ସମୁଦ୍ର ତୁଲ୍ୟ, ଅର୍ଥାତ ସମୁଦ୍ର ଯେପରି ଅସୀମ ଓ ଅନନ୍ତ ସେହିପରି, ସେହି ସମୁଦ୍ରର ଏକ ବିନ୍ଦୁମାତ୍ରର କି ବଳ ତାହା କହିବାର କଥା ନୁହେ, କାରଣ ତାହା କହିଲେ କେହି ବିଶ୍ୱାସ କରିବେ ନାହିଁ । ସେ କଥା ଏହି ଯେ, ଯଦି କେହି ବହୁ ଭାଗ୍ୟରେ ସେହି ପ୍ରେମସିନ୍ଧୁର ଏକ ବିନ୍ଦୁ ମାତ୍ର ଲାଭ କରେ, ତେବେ ସେ ପ୍ରେମରେ ଉନ୍ମତ୍ତ ହୋଇ ବାତୁଳ ହୁଏ ଏବଂ ସେ ସେହି ବିନ୍ଦୁଦ୍ୱାରା ଏତେ ବଡ଼ ବିସ୍ତୃତ ଯେ ଜଗତ୍ ତାକୁ ପ୍ଲାବିତ କରେ ଅର୍ଥାତ୍ ଜଗତ୍‌ବାସୀ ସମସ୍ତଙ୍କୁ ଆତ୍ମବତ୍ ଉନ୍ମତ୍ତ କରେ । ୪୩ ।

କୃଷ୍ଣପ୍ରେମର ସ୍ୱରୂପ ନିର୍ଣ୍ଣୟ କରୁଅଛନ୍ତି । ଏହାର ଭାବ ନିମ୍ନଲିଖିତ ୭ମ ଶ୍ଳୋକରେ ନିରୂପିତ ହୋଇଅଛି । ଯଥା—

ପ୍ରେମିକ ଭକ୍ତ ବାହ୍ୟରେ ସର୍ବଦା କୃଷ୍ଣବିରହରେ ଦୁଃଖ ଏବଂ ଅନ୍ତର୍ଗତରେ ପୂର୍ଣ୍ଣାନନ୍ଦ ଏକକାଳରେ ଅନୁଭବ କରନ୍ତି । କିନ୍ତୁ ତାହା ବାକ୍ୟଦ୍ୱାରା ପ୍ରକାଶ କରି ପାରନ୍ତି ନାହିଁ । କାରଣ ସେପରି କୌଣସି ଭାଷା ନାହିଁ ଯଦ୍ଦ୍ୱାରା ତାହା ପ୍ରକାଶ ହୋଇ ପାରିବ । ତପ୍ତଇକ୍ଷୁ ଚର୍ବଣ ସୁଖ ଦୁଃଖ ସହିତ ଏହାକୁ ତୁଳନା କରି ଯୁଗପତ୍ ଅନୁଭବ ଲକ୍ଷ୍ୟରେ ବିଷାମୃତର ଏକତ୍ର ମିଳନ ବୋଲି କହିଅଛନ୍ତି । ୪୪।୪୫

ତଥାହି ବିଦଗ୍ଧମାଧବେ ( ୨।୯ )—

ପୀଡ଼ାଭିର୍ନବକାଳକୂଟକଟୁତା-
ଗର୍ବସ୍ୟ ନିର୍ବ୍ବାସନୋ,
ନିଃସ୍ୟନ୍ଦେନ ମୁଦାଂ ସୁଧାମଧୁରିମା-
ହଙ୍କାର-ସଙ୍କୋଚନଃ
ପ୍ରେମା ସୁନ୍ଦରି ! ନନ୍ଦନନ୍ଦନପରୋ
ଜାଗର୍ତ୍ତି ଯସ୍ୟାନ୍ତରେ,
ଜ୍ଞାୟନ୍ତେ ସ୍ଫୁଟମସ୍ୟ ବକ୍ରମଧୁରା-
ସ୍ତେନୈବ ବିକ୍ରାନ୍ତୟଃ ॥ ୭ ॥

ଯେକାଳେ ଦେଖେ ଜଗନ୍ନାଥ, ଶ୍ରୀରାମ-ସୁଭଦ୍ରା-ସାଥ,
ତବେ ଜାନେ — ଆଇଲାଙ୍ କୁରୁକ୍ଷେତ୍ର ।
ସଫଳ ହଇଲ ଜୀବନ, ଦେଖିଲୁଁ ପଦ୍ମଲୋଚନ,
ଜୁଡ଼ାଇଲ ତନୁ-ମନ-ନେତ୍ର । ୪୬ ।

ହେ ସୁନ୍ଦରି ! ପୀଡ଼ାଭିଃ — ବ୍ୟଥାଭିଃ ନବକାଳକୂଟକଟୁତାଗର୍ବସ୍ୟ—ନବକାଳକୂଟସ୍ୟ ଯଃ କଟୁତାଗର୍ବଃ—ତସ୍ୟ—ନିର୍ବ୍ବାସନଃ — ଉତ୍ସାରଣଶୀଳଃ ମୁଦାଂ ନିଃସ୍ୟନ୍ଦେନ — କ୍ଷରଣେନ ସୁଧାମଧୁରିମାହଙ୍କାରସଙ୍କୋଚନଃ—ସୁଧାୟାଃ ଅମୃତସ୍ୟ ଯଃ ମଧୁରିମା ମାଧୁର୍ଯ୍ୟଂ ତେନ- ଯଃ ଅହଙ୍କାରଃ ତଂ ସଙ୍କୋଚୟତି—ଖର୍ବୀକରୋତି ଯଃସଃ, ନନ୍ଦନନ୍ଦନପରଃ— ଶ୍ରୀକୃଷ୍ଣବିଷୟକଃ ପ୍ରେମା ଯସ୍ୟ ଅନ୍ତରେ ଜାଗର୍ତ୍ତି, ଅସ୍ୟ ପ୍ରେମ୍ନଃ—ବକ୍ରାମଧୁରା, ବିକ୍ରାନ୍ତୟଃ (ପ୍ରଭାବାଃ) ତେନ ଜନେନ ଏବ ସ୍ଫୁଟଂ—ନିଶ୍ଚିତଂ ଜ୍ଞାୟନ୍ତେ କେବଳଂ ଅନୁଭୂୟନ୍ତେ ନତୁ ବକ୍ତୁଂ ଶକ୍ୟନ୍ତେ, ତଦ୍‌ବାଚକ-ଶବ୍ଦାଭାବାତ୍ । ୭ମ ଶ୍ଳୋକଃ ।

ପୀଡ଼ାଭିରିତି, ପୀଡ଼ାଭିଃ କୃତ୍ୱା ନବ କାଳକୂଟସ୍ୟ ଦର୍ପଣାବକବିଷସ୍ୟ କଟୁତାୟାଂ ଯୋ ଗର୍ବ— ସ୍ତସ୍ୟ ନିର୍ବ୍ବାସନ ଅନାଶ୍ରୟପ୍ରଦଃ ନିଃସ୍ୟନ୍ଦେନ ସ୍ରବଣେନ ମୁଦାଂ ହର୍ଷାଣାଂ ସୁଧାମଧୁରି-ମାହଙ୍କାରସଙ୍କୋଚନଃ ସୁଧାୟାରମୃତସ୍ୟ ମଧୁରିମ୍ନା ମାଧୁର୍ଯ୍ୟେଣ ଯୋଽହଙ୍କାରସ୍ତଂ ସଙ୍କୋଚୟତି ଖର୍ବୀକରୋତି ଇତି ତଥା । ସୁନ୍ଦରି ହେ ନାନ୍ଦୀମୁଖି ନନ୍ଦନନ୍ଦନପରଃ ଶ୍ରୀକୃଷ୍ଣବିଷୟଃ ଯସ୍ୟ ଜନସ୍ୟ ଅନ୍ତରେ ହୃଦି ଜ୍ଞାୟନ୍ତେ ବୁଧ୍ୟନ୍ତେ ଅସ୍ୟ ପ୍ରେମ୍ନଃ ବକ୍ରମଧୁରାଃ ସୁଖଦୁଃଖଦାଃ ବିକ୍ରାନ୍ତୟଃ ପରାକ୍ରମାଃ । ୭ମ ଶ୍ଳୋକଃ । ବି. ଚ.

ଶ୍ରୀ ପୌର୍ଣ୍ଣମାସୀ ନାନ୍ଦୀମୁଖୀକୁ କହୁଅଛନ୍ତି—

ହେ ସୁନ୍ଦରି ! ଶ୍ରୀନନ୍ଦନନ୍ଦନଙ୍କ ପ୍ରେମର ଯେ ବକ୍ରମାଧୁର୍ଯ୍ୟବିକ୍ରମ, ତାହା ଯେଉଁ ବ୍ୟକ୍ତିର ହୃଦୟରେ ସର୍ବଦା ଜାଗି ରହିଅଛି ସେହି ବ୍ୟକ୍ତିହିଁ ତାହା ଅନୁଭବଦ୍ୱାରା ଜାଣେ, ଅର୍ଥାତ୍ ତାହା ବାକ୍ୟଦ୍ୱାରା ବା ଅପର ସଙ୍କେତଦ୍ୱାରା ଅପରକୁ କେହି ଜଣାଇ ପାରେ ନା, ତେବେ ଦିଗ୍‌ଦର୍ଶନ-ରୂପ ଏତିକି ମାତ୍ର କୁହା ଯାଇ ପାରେ ଯେ, ସେହି ପ୍ରେମର ପୀଡ଼ାଦାୟିକା ଶକ୍ତିର ନିକଟ ନବ କାଳକୂଟଜନିତ ପୀଡ଼ା ଅତି ତୁଚ୍ଛ ଏବଂ ତାହାର ଆନନ୍ଦଦାୟିକା ଶକ୍ତିର ନିକଟ ଅମୃତ ଆସ୍ୱାଦନ-ଜନିତ ଆନନ୍ଦ ଅକିଞ୍ଚିତ୍କର । ୭ମ ଶ୍ଳୋକାର୍ଥ ।

ଶ୍ରୀରାମ—ବଳରାମ । ଆଇଲାଙ୍—ଆସିଲି । କୁରୁକ୍ଷେତ୍ର—ସ୍ୟମନ୍ତପଞ୍ଚକତୀର୍ଥ, ଯେଉଁ-ଠାରେ କୁରୁ ପାଣ୍ଡବଙ୍କର ପ୍ରସିଦ୍ଧ ମହାଭାରତୀୟ ଯୁଦ୍ଧ ହୋଇଥିଲା ।

ଶ୍ରୀମନ୍‌ମହାପ୍ରଭୁ ଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ଯାଇଁ ଶ୍ରୀଗରୁଡ଼ ସ୍ତମ୍ଭ ନିକଟରେ ଠିଆ ହୋଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ଶ୍ରୀବଳରାମ ଓ ଶ୍ରୀସୁଭଦ୍ରାଙ୍କ ସହିତ ତାଙ୍କୁ ଦର୍ଶନ କରି ଶ୍ରୀରାଧାଭାବରେ ଭାବିତ ମହାପ୍ରଭୁ ଆପଣାକୁ କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହୋଇଥିବା ମନେ କରନ୍ତି ଏବଂ ପ୍ରେମାଳାପରେ ବିହ୍ୱଳ ହୁଅନ୍ତି । ୪୬ ।

ଗରୁଡ଼େର ସନ୍ନିଧାନେ, ରହି କରେ ଦରଶନେ,
ସେ ଆନନ୍ଦେର କି କହିବ ବଲେ ।
ଗରୁଡ଼ସ୍ତମ୍ଭେର ତଲେ, ଆଛେ ଏକ ନିମ୍ନଖାଲେ,
ସେ-ଖାଲ ଭରିଯେ ଅଶ୍ରୁଜଲେ । ୪୭ ।
ତାହାଁ ହୈତେ ଘରେ ଆସି, ମାଟିର ଉପରେ ବସି,
ନଖେ କରେ ପୃଥିବୀ-ଲିଖନ ।
ହାହା କାହାଁ ବୃନ୍ଦାବନ, କାହାଁ ଗୋପେନ୍ଦ୍ର-ନନ୍ଦନ,
କାହାଁ ସେଇ ବଂଶୀବଦନ । ୪୮ ।
କାହାଁ ସେ ତ୍ରିଭଙ୍ଗଠାମ, କାହାଁ ସେଇ ବେଣୁଗାନ,
କାହାଁ ସେଇ ଯମୁନାପୁଲିନ ।
କାହାଁ ସେ ରାସବିଲାସ, କାହାଁ ନୃତ୍ୟ ଗୀତ-ହାସ,
କାହାଁ ପ୍ରଭୁ ମଦନମୋହନ । ୪୯ ।

ଉଠିଲ ନାନା ଭାବାବେଗ, ମନେ ହଇଲ ଉଦ୍ବେଗ,
କ୍ଷଣମାତ୍ର ନାରେ ଗୋଙାଇତେ ।
ପ୍ରବଲ ବିରହାନଲେ, ଧୈର୍ଯ୍ୟ ହୈଲ ଟଲମଲେ,
ନାନା ଶ୍ଳୋକ ଲାଗିଲା ପଢ଼ିତେ । ୫୦ ।

ତଥାହି କୃଷ୍ଣକର୍ଣ୍ଣାମୃତେ ( ୪୧ )—

ଅମୂନ୍ୟଧନ୍ୟାନି ଦିନାନ୍ତରାଣି,
ହରେ ତ୍ୱଦାଲୋକନମନ୍ତରେଣ ।
ଅନାଥବନ୍ଧୋ କରୁଣୈକସିନ୍ଧୋ,
ହା ହନ୍ତ ହା ହନ୍ତ କଥଂ ନୟାମି ॥ ୮ ॥

ନାନା ଭାବ— ସାତ୍ତ୍ୱିକ ବ୍ୟଭିଚାରୀ ପ୍ରଭୃତି ଭାବ । ୫୦ । ଗୁଆଁଇତେ—କଟାଇବାକୁ ।
ହାହା ଖେଦେ, ହନ୍ତ-ହନ୍ତ ବିଷାଦେ, ଅନାଥବନ୍ଧୋ !—ଅନାଥାନାଂ ତ୍ୟକ୍ତପତୀନାଂ ବଲ୍ଲବୀନାଂ ବନ୍ଧୋ, କରୁଣୈକସିନ୍ଧୋ ହରେ ! ଚିତ୍ତେନ୍ଦ୍ରିୟହାରିନ୍ ! ତ୍ୱଦାଲୋକନଂ— ତ୍ୱଦ୍ଦର୍ଶନଂ, ଅନ୍ତରେଣ — ବିନା ଅଧନ୍ୟାନି—ଅଶୁଭାନି ଅମୂନି ଦିନାନ୍ତରାଣି—ଦିନସ୍ୟ ଅହୋରାତ୍ରସ୍ୟ ଅନ୍ତରାଣି ମଧ୍ୟଗତାନି କ୍ଷଣବୃନ୍ଦାନି କଥଂ—କେନପ୍ରକାରେଣ ନୟାମି—ଅତିବାହୟାମି । ୮ମ ଶ୍ଳୋକ ।

ବଲେ—ପରାକ୍ରମ ।

ଆନନ୍ଦର ବଳ ବା ପରାକ୍ରମ ଯେ କେତେ ତାହା ଏଥିରୁ ଜଣାଯିବ ଯେ, ଶ୍ରୀମନ୍ ମହାପ୍ରଭୁଙ୍କର ଆନନ୍ଦାଶ୍ରୁଧାରା ନୟନକମଳରୁ ନିର୍ଗତ ହୋଇ ତଳେ ପଡ଼ି ଶ୍ରୀଗରୁଡ଼ସ୍ତମ୍ଭ ନିକଟରେ ଗର୍ତ୍ତଟି ପୂରିଯାଏ । ୪୭ ।

କୁରୁକ୍ଷେତ୍ରରେ କ୍ଷତ୍ରିୟବେଶଧାରୀ ଶ୍ରୀକୃଷ୍ଣଙ୍କ ଦର୍ଶନ କରି ଶ୍ରୀରାଧା ପ୍ରିୟସମ୍ମିଳନଜନିତ ପୂର୍ଣ୍ଣାନନ୍ଦ ଲାଭ କରି ନ ପାରି ବରଂ ତାହାଙ୍କର ଶ୍ରୀକୃଷ୍ଣବିରହ ବୃଦ୍ଧି ପାଇଥିଲା । ଅର୍ଥାତ୍ ସେ ଶ୍ରୀକୃଷ୍ଣଙ୍କ ଗୋପବେଶ ବେଣୁକର ଦେଖିଲେ ନାହିଁ । କିମ୍ବା ଯମୁନାପୁଲିନସ୍ଥ ସୁରମ୍ୟ ବୃନ୍ଦାବନର କୁଞ୍ଜମାନଙ୍କରେ ତାହାଙ୍କ ସହିତ ଯେରୂପ ମିଳିତ ହୁଅନ୍ତି, ସେପରି ହେଲା ନାହିଁ । ଏହି ହେତୁ ଶ୍ରୀରାଧାଙ୍କର ଯେଉଁ ଭାବ ହୋଇଥିଲା, ଶ୍ରୀମନ୍ମହାପ୍ରଭୁ ସେହି ଭାବରେ ଭାବିତ ହୋଇ ବିରହିଣୀ ରମଣୀମାନଙ୍କ ତୁଲ୍ୟ ନଖଦ୍ୱାରା ଭୂମିରେ ଲେଖିଲେ ଏବଂ ହାହା ହତାଶ ହେବାକୁ ଲାଗିଲେ । ୪୮ ।

ହେ ଅନାଥବନ୍ଧୋ ! ହେ କରୁଣାସାଗର ! ହେ ଚିତ୍ତେନ୍ଦ୍ରିୟହାରି ଶ୍ରୀକୃଷ୍ଣ ! ତୁମ୍ଭର ଅଦର୍ଶନରେ ମୋର କ୍ଷଣେମାତ୍ର ସମୟ ଅତିବାହିତ ହେବା ଅତି କଷ୍ଟକର ହୋଇଅଛି । ଏପରି ଅବସ୍ଥାରେ ତୁମ୍ଭ ବିହୁନେ ମୁଁ କିପରି କାଳ କଟାଇବି, ଅର୍ଥାତ୍ ତୁମ୍ଭେ କୃପାପୂର୍ବକ ଅନାଥାକୁ ଦର୍ଶନ ଦାନ କର । ୮ମ ଶ୍ଳୋକାର୍ଥ ।

ତୋମାର ଦର୍ଶନ-ବିନେ, ଅଧନ୍ୟ ଏଇ ରାତ୍ରି ଦିନେ,
ଏଇ କାଲ ନା ଯାୟ କାଟନ ।
ତୁମି ଅନାଥେର ବନ୍ଧୁ, ଅପାର କରୁଣାସିନ୍ଧୁ,
କୃପା କରି ଦେହ ଦରଶନ । ୫୧ ।
ଉଠିଲ ଭାବ ଚାପଲ, ମନ ହଇଲ ଚଞ୍ଚଲ,
ଭାବେର ଗତି ବୁଝନ ନା ଯାୟ ।
ଅଦର୍ଶନେ ପୋଡ଼େ ମନ, କେମନେ ପାବ ଦରଶନ,
କୃଷ୍ଣ-ଠାଞି ପୁଛେନ ଉପାୟ । ୫୨ ।
ତଥାହି ତତ୍ରୈବ ( ୩୨ )—
ତ୍ୱଚ୍ଛୈଶବଂ ତ୍ରିଭୁବନାଦ୍ଭୁତମିତ୍ୟବେହି,
ମଚ୍ଚାପଲଞ୍ଚ ତବ ବା ମମ ବାଧିଗମ୍ୟମ୍ ।
ତତ୍ କିଂ କରୋମି ବିରଲଂ ମୁରଲୀବିଲାସି,
ମୁଗ୍ଧଂ ମୁଖାମ୍ବୁଜମୁଦୀକ୍ଷିତୁମୀକ୍ଷଣାଭ୍ୟାମ୍ ॥ ୯ ॥
ତୋମାର ମାଧୁରୀ-ବଲ, ତାତେ ମୋର ଚାପଲ,
ଏଇ ଦୁଇ ତୁମି-ଆମି ଜାନି ।
କାହାଁ କରୋଁ କାହାଁ ଯାଙ୍, କାହାଁ ଗେଲେ ତୋମା ପାଙ୍,
ତାହା ମୋରେ କହ ତ ଆପନି । ୫୩ ।
ନାନା-ଭାବେର ପ୍ରାବଲ୍ୟ, ହଇଲ ସନ୍ଧି ଶାବଲ୍ୟ,
ଭାବେ-ଭାବେ ହୈଲ ମହାରଣ ।
ଔତ୍ସୁକ୍ୟ ଚାପଲ୍ୟ ଦୈନ୍ୟ, ରୋଷାମର୍ଷ ଆଦି ସୈନ୍ୟ,
ପ୍ରେମୋନ୍ମାଦ ସଭାର କାରଣ । ୫୪ ।

---

ତ୍ୱଂ ତବ ଶୈଶବଂ କୈଶୋରଂ ମତ୍ ମମ ଚାପଲଂ ଚ ତ୍ରିଭୁବନାଦ୍ଭୁତଂ—ତ୍ରିଭୁବନେ ଅଦ୍ଭୁତମିତି ଅବେହି, ଏତଦ୍ୱୟଂ ତବ ବା-ମମ ବା ଅଧିଗମ୍ୟଂ । ବିରଲଂ କୁଲବଧୂନାଂ ତସ୍ୟ ଗୋଚରତ୍ୱାଦନାତ୍ମୁର୍ଲଭଦର୍ଶନଂ ମୁରଲୀବିଲାସିମୁଗ୍ଧଂ ମୁଖାମ୍ବୁଜଂ ଈକ୍ଷଣାଭ୍ୟାଂ— ନୟନାଭ୍ୟାଂ ଉଦୀକ୍ଷିତୁଂ କିଂ କରୋମି । ୯ମ ଶ୍ଳୋକ ।

---

କାଟନ—ଅତିବାହିତ କରିବା । ୫୧ । ଏକକାଲ—କ୍ଷଣମାତ୍ର ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ଅଦର୍ଶନରେ ଉଦ୍‌ଘୂର୍ଣ୍ଣା ଦଶା ପ୍ରାପ୍ତ ହେବା ଅବସ୍ଥାରେ ଶ୍ରୀକୃଷ୍ଣଙ୍କର ସାକ୍ଷାତ୍କାର ସ୍ଫୂର୍ତ୍ତି ହେବାରୁ କହୁଅଛନ୍ତି—

ହେ ନାଗରେନ୍ଦ୍ର ! ତୁମ୍ଭର କୈଶୋରଜନିତ ମାଧୁର୍ଯ୍ୟାଦିର ମାଦକତ୍ୱ ଏବଂ ମୋର ତୁମ୍ଭ ସକାଶେ ଏ ଚାପଲ୍ୟ, ଏହା ତ୍ରିଭୁବନରେ ଅଦ୍ଭୁତ, ଏହା ତୁମ୍ଭେ ସ୍ମରଣ କରି ଦେଖ, ଏ ଦୁଇଟି ବିଷୟ କେବଳ ତୁମ୍ଭେ ଓ ମୁଁ ଏ ଦୁହେଁ ଜାଣୁ, ଅର୍ଥାତ୍ ଅପର କେହି ଜାଣିବା ଦୂରେ ଥାଉ ମୋର ପ୍ରାଣର ସଖୀମାନେ ସୁଦ୍ଧା ଜାଣନ୍ତି ନାହିଁ, ଜାଣିଥିଲେ କି ସେମାନେ ମୋତେ ପ୍ରବୋଧ ଦେଉଥାନ୍ତେ, ଅତଏବ ମୁଁ କୁଳବଧୂ ହେତୁରୁ କିପରି ବିରଳରେ ତୁମ୍ଭର ସାମ୍ୟରହିତ ବଂଶୀଯୁକ୍ତ ମନୋହର ମୁଖକମଳ ନୟନଦ୍ୱୟରେ ଦେଖିବି, ଏହାର ଉପାୟ ତୁମ୍ଭେ କୁହ । ୯ମ ଶ୍ଳୋକାର୍ଥ ।

ଭାବ ଅନୁରାଗର ପରାକାଷ୍ଠା ଅବସ୍ଥା, ସନ୍ଧି—ଦୁଇଭାବର ପରସ୍ପର ମିଳନ ।

ଶାବଲ୍ୟ ଭାବମାନଙ୍କର ପରସ୍ପର ମର୍ଦ୍ଦନ । ଔତ୍ସୁକ୍ୟ—ପ୍ରିୟ ବସ୍ତୁଲାଭରେ କାଳବିଳମ୍ବର ଅସହିଷ୍ଣୁତା ।

ଚାପଲ୍ୟ—ମାଧୁର୍ଯ୍ୟାଦି ହେତୁ ଚିତ୍ତର ଅସ୍ଥିରତା । ଦୈନ୍ୟ—ଅପୂର୍ଣ୍ଣକୃଷ୍ଣତା—ଅନୁଭବଜାତ ଚିତ୍ତ ଗ୍ଲାନି । ରୋଷ - ଚିତ୍ତର ଉଗ୍ରତା ।

ଅମର୍ଷ – ଛିଦ୍ରସ୍ଥାର ଅପମାନାଦି ଅସହିଷ୍ଣୁତା ।

ଉନ୍ମାଦ—ଅତିଶୟ ଆନନ୍ଦ, ଆପଦ ଓ ବିରହାଦିଜନିତ ହୃଦୟର ଭ୍ରମ । ୫୪ ।

ମତ୍ତଗଜ ଭାବଗଣ, ପ୍ରଭୁର ଦେହ ଇକ୍ଷୁବନ,
ଗଜଯୁଦ୍ଧେ ବନେର ଦଳନ ।
ପ୍ରଭୁର ହୈଲ ଦିବ୍ୟୋନ୍ମାଦ, ତନୁ-ମନେର
ଅବସାଦ,
ଭାବାବେଶେ କରେ ସମ୍ବୋଧନ । ୬୬ ।
ତଥାହି ତତ୍ରୈବ ( ୪୦ )—
ହେ ଦେବ ହେ ଦୟିତ
ହେ ଭୁବନୈକବନ୍ଧୋ,

ହେ କୃଷ୍ଣ ହେ ଚପଲ
ହେ କରୁଣୈକସିନ୍ଧୋ ।
ହେ ନାଥ ହେ ରମଣ
ହେ ନୟନାଭିରାମ,
ହା ହା କଦା ନୁ ଭବିତାସି
ପଦଂ ଦୃଶୋର୍ମେ ॥ ୧୦ ॥

---

ହେ ସମ୍ବୋଧସ୍ତୃତି, ଦେବସ୍ତ୍ୱମତସ୍ତ୍ୱମେବ ଗଚ୍ଛେତ୍ୟର୍ଥଃ । ହେ ଦୟିତ ! ତ୍ୱଂ ତୁ ମେ ପ୍ରାଣଦୟିତୋଽପି କଥଂ ତ୍ୟକ୍ଷ୍ୟସେ-ତତ୍ର ଦର୍ଶନଂ ଦେହୀତ୍ୟର୍ଥଃ । ହେ ଏକଭୁବନୈକବନ୍ଧୋ ! ତବାବ କୋଦୋଷ, ତ୍ୱଂ ନ କେବଳଂ ମମୈବ, ସର୍ବଗୋପୀନାମପି, କିମ୍ନୃତ ତାସାମେବ ବେଣୁନାଦା କୃଷ୍ଟାନାଂ ଭୁବନାନାଂ ତଦ୍‌ଗତସ୍ତ୍ରୀଣାମପି ବନ୍ଧୁରସି, ତତ୍ର ସର୍ବସମାଧାନାର୍ଥଂ ଗଚ୍ଛେତ୍ୟର୍ଥଃ । ହେ କୃଷ୍ଣ ! ହେ ଶ୍ୟାମସୁନ୍ଦର ! ହେ ଚିତ୍ତାକର୍ଷକ ! ଚିତ୍ତଂ ତ୍ୱୟାହୃତଂ କିଂ, ମେ ଅନେନ ସକୃଦପି ଦର୍ଶନଂ ଦେହୀତ୍ୟର୍ଥଃ । ହେ ଚପଲବଲ୍ଲବୀବୃନ୍ଦଭୁଜଙ୍ଗ ! ପରସ୍ତ୍ରୀଚୌର ଗଚ୍ଛ ଗଚ୍ଛ ଇତ୍ୟର୍ଥ । ହେ କରୁଣୈକସିନ୍ଧୋ ! ଯଦ୍ୟପ୍ୟହମପରାଧିନୀ ତଥାପି କରୁଣାକୋମଳଦୃଷ୍ଟ୍ୟା ଦର୍ଶନଂ ଦେହୀତ୍ୟର୍ଥଃ । ହେ ନାଥ ! ତ୍ୱନ୍ନୁ ବ୍ରଜବାସିନାଂ ନୋ ରକ୍ଷିତାସି, କା ନାମ ହତଧୀସ୍ତ୍ୱାଂ ନ ସମ୍ବୋଧତେ । ହେ ରମଣ ! ସଦା ମାଂ ରମୟସୀତି ରମଣସ୍ତ୍ୱମିଦାନୀମପ୍ୟାଗତ୍ୟ ତଥା କୁର୍ବିତ୍ୟର୍ଥଃ । ହେ ହେ ନୟନାଭିରାମ ! ନନ୍ଦନାନନ୍ଦ ! କଦା ନୁ ମେ ଦୃଶୋଃ ପଦଂ ଗୋଚରେ ଭବିତାସି ହା ଇତି ଖେଦେ । ୧୦ମ ଶ୍ଳୋକ ।

---

ଦିବ୍ୟୋନ୍ମାଦ—ଅନିର୍ବଚନୀୟଗତିପ୍ରାପ୍ତ ମୋହନ ନାମକ ଭାବର ପ୍ରେମସଦୃଶ ବୈଚିତ୍ରୀ । ଅବସାଦ—ଅବସନ୍ନତା । ୬୬ ।

ହେ ଦେବ ! ହେ ଦୟିତ ! ହେ ଭୁବନର ଏକମାତ୍ର ବନ୍ଧୁ ! ହେ କୃଷ୍ଣ ! ହେ ଚପଳ ! ହେ କରୁଣାସିନ୍ଧୁ ! ହେ ନାଥ ! ହେ ରମଣ ! ହେ ନୟନାଭିରାମ ! ହାୟ ହାୟ କେବେ ମୁଁ ତୁମ୍ଭର ଦର୍ଶନ ପାଇବି । ୧୦ମ ଶ୍ଳୋକାର୍ଥ ।

ଏହି ଶ୍ଳୋକର ଅନ୍ତର୍ଗତ ଭାବ ପରବର୍ତ୍ତୀ ୬୭ ରୁ ୭୧ ପୟାରମାନଙ୍କଦ୍ୱାରା ବ୍ୟକ୍ତ ହୋଇଅଛି ଏବଂ ସେହି ପୟାରମାନଙ୍କ ବ୍ୟାଖ୍ୟା ପ୍ରସଙ୍ଗରେ ବିଶଦ ଅର୍ଥ ପ୍ରକାଶ ପାଇବ ।

ଏ ପୟାରରେ ଗ୍ରନ୍ଥକାର ମହାପ୍ରଭୁଙ୍କର ଉନ୍ମାଦ ଲକ୍ଷଣ ବର୍ଣ୍ଣନ କରୁଅଛନ୍ତି ।

ମାନ—ଯେ ସ୍ନେହ ଉତ୍କୃଷ୍ଟତାପ୍ରାପ୍ତି ହେତୁ ନୂତନ ମାଧୁର୍ଯ୍ୟ ଅନୁଭବ କରାଏ ଏବଂ ନିଜେ କୌଟିଲ୍ୟ ଧାରଣ କରେ ।

ପ୍ରଣୟ— ଯେଉଁ ମାନ ପ୍ରିୟଜନର ସହିତ ସମ୍ଭ୍ରମରହିତ୍ୟ ଅର୍ଥାତ୍ ଅଭେଦ ମନନ କରାଏ ।

ସୋଲ୍ଲୁଣ୍ଠ—ବକ୍ରୋକ୍ତି । ଗର୍ବ—ଇଷ୍ଟଲାଭାଦି ହେତୁ ଅନ୍ୟର ହେଳନ ।

ଉନ୍ମାଦେର ଲକ୍ଷଣ, କରାୟ କୃଷ୍ଣ-ସ୍ଫୁରଣ,
ଭାବାବେଶେ ଉଠେ ପ୍ରଣୟମାନ ।
ସୋଲ୍ଲୁଣ୍ଠ-ବଚନ-ରୀତି ମାନ ଗର୍ବ ବ୍ୟାଜସ୍ତୁତି,
କଭୁ ନିନ୍ଦା କଭୁ ତ ସମ୍ମାନ । ୫୬ ।
ତୁମି ଦେବ କ୍ରୀଡ଼ାରତ, ଭୁବନେର ନାରୀ ଯତ,
ତାହେ କର ଅଭୀଷ୍ଟ-କ୍ରୀଡ଼ନ ।
ତୁମି ମୋର ଦୟିତ, ମୋତେ ବୈସେ ତୋମାର ଚିତ,
ମୋର ଭାଗ୍ୟେ କୈଲେ ଆଗମନ । ୫୭ ।

ଭୁବନେର ନାରୀଗଣ, ସଭା କର ଆକର୍ଷଣ,
ତାହା କର ସବ ସମାଧାନ ।
ତୁମି କୃଷ୍ଣ ଚିତ୍ତ-ହର, ଐଛେ କୋନ ପାମର,
ତୋମାର ବା କୋନ କରେ ମାନ । ୫୮ ।
ତୋମାର ଚପଲ ମତି, ନା ହୟ ଏକତ୍ର ସ୍ଥିତି,
ତାତେ ତୋମାର ନାହି କିଛୁ ଦୋଷ ।
ତୁମି ତ କରୁଣାସିନ୍ଧୁ, ଆମାର ପ୍ରାଣେର ବନ୍ଧୁ,
ତୋମାୟ ମୋର ନାହି କଭୁ ରୋଷ । ୫୯ ।

---

ବ୍ୟାଜସ୍ତୁତି ମୁଖେସ୍ତୁତିଃ ନିନ୍ଦା ବା ହୃଦୟେ ବ୍ୟାଜସ୍ତୁତିଃ ସ୍ୟାତ୍ତତ୍ତ୍ର ଅନ୍ୟଥା । ଯଦା ହୃଦୟେ ସ୍ତୁତି ସ୍ତଦା ମୁଖେ ନିନ୍ଦା ପ୍ରଭୃତିର୍ୟଦା ହୃଦୟେ ନିନ୍ଦାତଦା ମୁଖେ ସ୍ତୁତିପ୍ରଭୃତିଃ । ୫୬ । ବି. ଚ.

କ୍ରୀଡ଼ାରତ ଇତ୍ୟାଦି ଶ୍ଳୋକୋକ୍ତ ଦେବ ଇତ୍ୟସ୍ୟାର୍ଥ—ତୁମି ମୋର ଦୟିତ ଇତ୍ୟାଦି ଶ୍ଳୋକୋକ୍ତ । ୫୭ । ବି. ଚ.

ଭୁବନେର ଇତ୍ୟାଦି ଶ୍ଳୋକୋକ୍ତ ଭୁବନୈକବନ୍ଧୋ ଇତ୍ୟସ୍ୟାର୍ଥଃ । ସବସମାଧାନ ସ୍ୱପ୍ରୟୋଜନସିଦ୍ଧି । ତୁମି କୃଷ୍ଣ ଇତ୍ୟାଦି ଶ୍ଳୋକୋକ୍ତ କୃଷ୍ଣ ଇତ୍ୟସ୍ୟାର୍ଥଃ, ତୋମାର ଇତ୍ୟାଦି ଶ୍ଳୋକୋକ୍ତ କରୁଣୈକସିନ୍ଧୁ ଇତ୍ୟସ୍ୟାର୍ଥଃ । ୫୯ । ବି. ଚ.

---

ବ୍ୟାଜସ୍ତୁତି—ଅନ୍ତରେ ନିନ୍ଦା ଓ ମୁଖରେ ସ୍ତୁତି, କିମ୍ବା ଅନ୍ତରେ ସ୍ତୁତି ମୁଖରେ ନିନ୍ଦା । ୫୬ ।

୧୦ମ ଶ୍ଳୋକସ୍ଥ ଦେବ ଶବ୍ଦର ଅର୍ଥ କହୁଅଛନ୍ତି । ତୁମ୍ଭେ ଦେବ, ଅର୍ଥାତ୍ କ୍ରୀଡ଼ାରତ, ଏବଂ ତେଣୁ ଜଗନ୍ନାରୀମାନଙ୍କ ସହିତ ବା ଗୋପୀମାନଙ୍କ ସହିତ ଇଚ୍ଛାନୁରୂପ କ୍ରୀଡ଼ା କର ।

'ଦୟିତ'—ପ୍ରିୟ, ତୁମ୍ଭେ ମୋର ପ୍ରିୟ ହେତୁ ମଦ୍‌ଗତଚିତ୍ତ, ଅତଏବ ମୋତେ ମନେ ପକାଇ ମୋର ଭାଗ୍ୟକୁ ଅଛି । ୫୭ ।

'ଭୁବନୈକବନ୍ଧୋ !'—ତୁମ୍ଭେ ନାରୀମାନଙ୍କର ବନ୍ଧୁ ହେତୁ ସେମାନଙ୍କୁ ବଂଶୀଧ୍ୱନି ଦ୍ୱାରା ଆକର୍ଷଣ କରି ନିଜର ପ୍ରୟୋଜନ ସାଧନ କର ।

'କୃଷ୍ଣ'— ତୁମ୍ଭେ ମୋର ଚିତ୍ତ ହରଣ କରିଅଛ, ଅତଏବ କୃଷ୍ଣ, ଏପରି ସ୍ଥଳେ ଆଉ ତୁମ୍ଭ ପ୍ରତି ମୋର ମାନର ପ୍ରୟୋଜନ କଣ ? ୫୮ ।

'ଚପଳ'—ତୁମ୍ଭର ମନ ବଡ଼ ଚଞ୍ଚଳ, ଏକ ସ୍ଥାନରେ ସ୍ଥିର ହୋଇ ରହେ ନା, ଏଣୁ ତୁମ୍ଭେ ଯେତେବେଳେ ଯେଉଁ ସ୍ଥାନରେ ଇଚ୍ଛା ସେହିଠାରେ ଥାଅ, ଏ ହେତୁ ଏଠାକୁ ଯେ ନ ଆସିଛ, ସେଥିରେ କିଛି ଦୋଷ ନାହିଁ ।

'କରୁଣୈକସିନ୍ଧୋ' —ତୁମ୍ଭେ କରୁଣାପାରାବାର, ତେଣୁ କୋମଳହୃଦୟ ହେତୁ ମୋର ଦୋଷ ହୋଇଥିଲେ ସୁଦ୍ଧା କ୍ଷମା କରିବ, ପୁଣି ତୁମ୍ଭେ ପ୍ରାଣର ବନ୍ଧୁ, ଅତଏବ ତୁମ୍ଭପ୍ରତି ମୋର କ୍ରୋଧ କାହିଁକି ହେବ ? ୫୯ ।

| | |
|---|---|
| ତୁମି ନାଥ ବ୍ରଜପ୍ରାଣ, ବ୍ରଜେର କର ପରିତ୍ରାଣ,<br>ବହୁ କାର୍ଯ୍ୟେ ନାହି ଅବକାଶ ।<br>ତୁମି ଆମାର ରମଣ, ସୁଖ ଦିତେ ଆଗମନ,<br>ଏ ତୋମାର ବୈଦଗ୍‌ଧ-ବିଳାସ । ୬୦ । | ମୋର ବାକ୍ୟ ନିନ୍ଦା ମାନି, କୃଷ୍ଣ ଛାଡ଼ି ଗେଲ ଜାନି,<br>ଶୁନ ମୋର ଏ ସ୍ତୁତିବଚନ ।<br>ନୟନେର ଅଭିରାମ, ତୁମି ମୋର ଧନ-ପ୍ରାଣ,<br>ହା ହା ପୁନ ଦେହ ଦରଶନ । ୬୧ । |

ତୁମି ନାଥ ଇତ୍ୟାଦି ଶ୍ଳୋକୋକ୍ତ ନାଥ ଇତ୍ୟସ୍ୟାର୍ଥଃ । ତୁମି ଇତ୍ୟାଦି ଶ୍ଳୋକୋକ୍ତ ରମଣ ଇତ୍ୟସ୍ୟାର୍ଥଃ । ୬୦ । ବି. ଚ.

ନୟନେର ଇତ୍ୟାଦି ଶ୍ଳୋକୋକ୍ତ ନୟନାଭିରାମ ଇତ୍ୟବଶିଷ୍ଟାସ୍ୟାର୍ଥଃ । ୬୧ । ବି. ଚ.

---

'ନାଥ'— ତୁମ୍ଭେ ବ୍ରଜବାସୀମାନଙ୍କର ରକ୍ଷକ, ସେମାନଙ୍କୁ ସର୍ବବିପଦରୁ ଉଦ୍ଧାର କର, ଏହେତୁ ତୁମ୍ଭଙ୍କୁ ସର୍ବଦା ନାନା କାର୍ଯ୍ୟ କରିବାକୁ ହୁଏ । ଅତଏବ ତୁମ୍ଭର ଅବକାଶ ନାହିଁ ।

'ରମଣ'—ତୁମ୍ଭେ ମୋର ରମଣ, ରମଣଦ୍ୱାରା ସୁଖଦାନ କରିଥାଅ । ବର୍ତ୍ତମାନ ଯେ ସୁଖ ଦେବାକୁ ଆସିଛ, ଏହା ତୁମ୍ଭର ରସିକତା । ୬୦ ।

'ନୟନାଭିରାମ'—ପୂର୍ବୋକ୍ତ କଥାମାନଙ୍କୁ ନିନ୍ଦା ମନେ କରି କୃଷ୍ଣ ଚାଲିଗଲେ, ଏହିପରି ଭାବ ମନେ ହେବାରୁ କହୁଛନ୍ତି ତୁମ୍ଭେ ମୋହର ନୟନର ଆନନ୍ଦ, ମୋର ପ୍ରାଣର ଧନ, ତୁମ୍ଭେ ଗଲ କେଉଁ ଆଡ଼େ ?

"ହା ହା ବୃଶୋର୍ମେ"—ହା ହା ପୁନର୍ବାର ଥରେ ଦର୍ଶନ ଦିଅ । ୬୧ ।

ଶ୍ରୀମନ୍ ମହାପ୍ରଭୁ ଶ୍ରୀରାଧାଭାବଭାବିତ ଅନ୍ତଃକରଣରେ ଉନ୍ମାଦ ଅବସ୍ଥାରେ ଶ୍ରୀକୃଷ୍ଣଙ୍କୁ ରହିତାଭାସମନ୍ୱିତ ସାକ୍ଷାତ୍ ଦର୍ଶନ କରି କହୁଅଛନ୍ତି;—

ତୁମ୍ଭେ ଗୋପୀମାନଙ୍କ ସହିତ କ୍ରୀଡ଼ା କରୁଥିଲ, ଏଠାକୁ କାହିଁକି ଆସିଲ ? ଯାଅ ସେମାନଙ୍କ ସହିତ ବିଳାସ କର, ଏହିପରି କହିବାରୁ ଯେପରି ମନେ ହେଲା, କୃଷ୍ଣ ଚାଲିଗଲେ, ତେଣୁ ପୁନର୍ଦର୍ଶନରେ ଉତ୍ସୁକ ହେବାରୁ କହିଲେ, ହେ ମୋର ପ୍ରାଣପ୍ରିୟ ! ମୁଁ ତୁମ୍ଭ ଅଦର୍ଶନରେ ବଡ଼ କଷ୍ଟ ପାଉଛି । ଥରେ ଦର୍ଶନ ଦେଇ ସୁଖୀ କର । ଏହା କହିବା ପରି ମନେ ହେଲା, ଯେପରି କୃଷ୍ଣ ପେଣ୍ଠ ଆସି ଅନୁନୟ କରୁଅଛନ୍ତି । ତେଣୁ ବକ୍ରୋକ୍ତିରେ କହିଲେ, ତୁମ୍ଭେ ତ କେବଳ ମୋହର ନୁହଁ, ସବୁ ଗୋପୀମାନଙ୍କର ବନ୍ଧୁ ଏବଂ ସେମାନଙ୍କ ସହିତ ଆପଣାର ପ୍ରୟୋଜନ ସାଧନ କର । ତେବେ କାହିଁକି ଅନୁନୟ କରୁଅଛ । ଏହା କହିବା ପରେ ମନେ ହେଲା, ଯେପରି କୃଷ୍ଣ ଚାଲିଗଲେ, ତେଣୁ ପୁନର୍ବାର ଦର୍ଶନରେ ଉତ୍କଣ୍ଠା ବଢ଼ିବାରୁ କହିଲେ, ହେ ଶ୍ୟାମସୁନ୍ଦର ! ହେ ମୋର ଚିତ୍ତଚୋର ! ତୁମ୍ଭେ ତ ମୋର ମନ ହରଣ କରିଅଛ, ତୁମ୍ଭଠାରେ ମୋର ଅଭିମାନ ହୋଇ ପାରେ, କାରଣ ତୁମ୍ଭଙ୍କୁ ଛାଡ଼ି ମୁଁ ତ ରହି ପାରିବି ନାହିଁ । ଅତଏବ ଦେଖା ଦେଇ ମୋର ଚିତ୍ତ ସ୍ଥିର କର । ଏପ୍ରକାର କହିବା ପରେ ମନେ ହେଲା, ଯେପରି କୃଷ୍ଣ ଆସି ପୁନର୍ବାର ଅନୁନୟ କଲେ । ଏହି ଭାବରୁ ପୁନର୍ବାର କହିଲେ, ତୁମ୍ଭେ ଯେତେ ଅନୁନୟ କର ନା କାହିଁକି, ତୁମ୍ଭେ ବଡ଼ ଚପଳସ୍ୱଭାବ ଓ ପରନାରୀଚୋର, ତୁମ୍ଭଠାରେ ପ୍ରତୀତି କାହିଁ, ତୁମ୍ଭେ ଯେଉଁଠାରୁ ଆସିଛ, ସେଠାକୁ ଯାଅ । ଏ କଥା କହିବା ପରେ ମନେ ହେଲା, ଯେପରି କୃଷ୍ଣ ଦୁଃଖିତ ହୋଇ ଚାଲିଗଲେ, ତେଣୁ ମନରେ ଦୈନ୍ୟଭାବ ଉପୁଜିବାରୁ କହିଲେ, ହେ କୃଷ୍ଣ ! ତୁମ୍ଭେ କରୁଣା-ସାଗର ଓ ଦୁଃଖିମାନଙ୍କର ବନ୍ଧୁ, ମୁଁ ଯଦି ଅପରାଧିନୀ ହୋଇଥାଏଁ, ତୁମ୍ଭର ସୁକୋମଳ ଭାବଦ୍ୱାରା ଦୋଷମାର୍ଜନାପୂର୍ବକ କୃପା କର । ତୁମ୍ଭେ ତ ମୋର ପ୍ରାଣପ୍ରିୟ । ତୁମ୍ଭଠାରେ ମୋର କ୍ରୋଧ କାହିଁକି ହେବ ? ଏହିପରି କହିବା ପରେ ମନେ ହେଲା, ଯେପରି କୃଷ୍ଣ ଆସି ଚାଟୁବଚନଦ୍ୱାରା ପ୍ରସନ୍ନ

ସ୍ତମ୍ଭ କମ୍ପ ପ୍ରସ୍ୱେଦ, ବୈବର୍ଣ୍ଣ୍ୟ ଅଶ୍ରୁ ସ୍ୱରଭେଦ,
ଦେହ ହୋଇଲ ପୁଲକେ ବ୍ୟାପିତ ।
ହାସେ କାନ୍ଦେ ନାଚେ ଗାୟ, ଉଠି ଇତ-
ଉତ ଧାୟ,
କ୍ଷଣେ ଭୂମେ ପଡ଼ୟା ମୂର୍ଚ୍ଛିତ । ୬୨ ।
ମୂର୍ଚ୍ଛାୟ ହୈଲ ସାକ୍ଷାତ୍କାର, ଉଠି କରେ
ହୁହୁଙ୍କାର,
କହେ—ଏଇ ଆଇଲା ମହାଶୟ ।

କୃଷ୍ଣେର ମାଧୁରୀ-ଗୁଣେ, ନାନା ଭ୍ରମ ହୟ ମନେ,
ଶ୍ଳୋକ ପଡ଼ି କରୟେ ନିଶ୍ଚୟ । ୬୩ ।

ତଥାହି ଶ୍ରୀକୃଷ୍ଣକର୍ଣ୍ଣାମୃତେ ( ୬୮ )—

ମାରଃ ସ୍ୱୟଂ ନୁ ମଧୁରଦ୍ୟୁତିମଣ୍ଡଳଂ ନୁ,
ମାଧୁର୍ଯ୍ୟମେବ ନୁ ମନୋନୟନାମୃତଂ ନୁ ।
ବେଣୀମୃଜୋ ନୁ ମମ ଜୀବିତବଲ୍ଲଭୋ ନୁ,
କୃଷ୍ଣୋଽୟମଭ୍ୟୁଦୟତେ ମମ ଲୋଚନାୟ ॥ ୧୧ ॥

ପ୍ରଥମଂ ଦର୍ଶନାଦେବ ବରହବକ୍ଳବାତ୍ କନ୍ଦର୍ପଭ୍ରାନ୍ତ୍ୟା ସଭୟମାହ-ମାର ଇତି, ଯସ୍ମାବତ୍ତ ଅଦୃଶ୍ୟ ଏବ ଜଗତ୍ ମାରୟତି ସ ମାରଃ ସ୍ୱୟମାଗତଃ କିଂ ନୁ ବିତର୍କେ, ପୁନର୍ମାଧୁର୍ଯ୍ୟମନୁଭୂୟ ସାଶ୍ଚର୍ଯ୍ୟମାହ, ସ ତାବତ୍ ଈଦୃଙ୍ମଧୁରୋ ନ ଭବତି, ତଦିଦଂ ମଧୁରଦ୍ୟୁତୀନାଂ ମଣ୍ଡଳଂ ନୁ କିଂ, ପୁନରତ୍ୟାଶ୍ଚର୍ଯ୍ୟମାହ, ନ ତଦେତତ୍, କିନ୍ତୁ ମାଧୁର୍ଯ୍ୟମେବ ତଦ୍ଧର୍ମ ଏବ ଦେହଣତଃ ସମାଗତଃ କିଂ, ପୁନର୍ମନୋନୟନୟୋରତିତୃପ୍ତ୍ୟା ସନ୍ତୋଷମାହ, ମନୋନୟନୟୋରମୃତଂ ତଦ୍ରୂପମିଦଂ କିଂ, ପୁନରବୟବମନୁଭୂୟ ସସମ୍ଭ୍ରମମାହ । ବେଣୀମୃଜୋ—ବେଣୀଂ ମାର୍ଷ୍ଟି—ଉନ୍ମୋଚୟତୀତି ବେଣୀ-ମୃଜଃ ପ୍ରୋଷ୍ୟାଗତଃ କାନ୍ତଃ ସ ଏବାୟଂ କିଂ । ପୁନଃ ସମ୍ୟଗବଲୋକ୍ୟ ସାନନ୍ଦମାହ, ନୁ—ହେ ସଖ୍ୟଃ ! ମମ ଜୀବିତବଲ୍ଲଭଃ ଅୟଂ କୃଷ୍ଣଃ ! ବାଲ ଇତି ପାଠେ ବାଲଃ ନବକିଶୋରଃ ମମ ଲୋଚନାୟ ତଦାନନ୍ଦପୂର୍ତ୍ତିମଭ୍ୟୁଦୟତେ ଯୂୟଂ ପଶ୍ୟେତେତି ଶେଷଃ । ୧୧ ଶ ଶ୍ଳୋକଃ ।

କରିବାକୁ ଚେଷ୍ଟା କରୁଅଛନ୍ତି । କିନ୍ତୁ ଶ୍ରୀକୃଷ୍ଣଙ୍କର ପୂର୍ବ ବ୍ୟବହାରମାନ ମନରୁ ବିଦୂରିତ ହୋଇ ନ ଥିବାରୁ ବିଦ୍ରୂପଭାବରେ କହିଲେ, ହେ ନାଥ ! ତୁମ୍ଭେ ଗୋପୀମାନଙ୍କର ନାଥ, ଏ ହେତୁ ତୁମ୍ଭଙ୍କୁ ଅନେକ କାର୍ଯ୍ୟ କରିବାକୁ ହୁଏ, ସୁତରାଂ ତୁମ୍ଭର ଅବସର କାହିଁ ଯେ ଥରେ ତୁମ୍ଭର ଦର୍ଶନ ଲାଭ କରିବି ? ଏହାପରି କହିବା ପରେ ମନେ ହେଲା, ଯେପରି କୃଷ୍ଣ ଥରକୁଥର ଯିବା ଆସିବା କରି ମୋ କଥାକୁ ନିନ୍ଦା ମନେ କରି କ୍ରୋଧରେ ଚାଲିଗଲେ, ତେଣୁ ଅତ୍ୟନ୍ତ ଶୋକାବେଗରେ କାତର ହୋଇ ଗଦ୍ଗଦ ବଚନରେ କହିଲେ, ହେ ମୋର ନୟନପିତୁଳି ! ମୋର ପ୍ରାଣଧନ, ହାୟ ହାୟ, ତୁମ୍ଭେ କେଉଁଆଡ଼େ ଗଲ, ଥରେ ଏକାନ୍ତ ଦାସୀକୁ ଦର୍ଶନ ଦାନ କରି କୃତାର୍ଥ କର । ୫୭ ରୁ ୬୧ ଭାବାର୍ଥ ।

ସ୍ତମ୍ଭକମ୍ପାଦି—ସାତ୍ତ୍ୱିକଭାବର ଲକ୍ଷଣ ଭକ୍ତିରସାମୃତସିନ୍ଧୁର ଦକ୍ଷିଣବିଭାଗ ତୃତୀୟ ଲହରୀରେ ଦ୍ରଷ୍ଟବ୍ୟ ।

ଇତଉତ—ଏଆଡ଼େ ସେଆଡ଼େ ।

ମୂର୍ଚ୍ଛିତ—କୃଷ୍ଣଦର୍ଶନରେ ହତାଶ ହୋଇ ମୂର୍ଚ୍ଛିତ ହେଲେ । ୬୨ ।

ମହାଶୟ—କୌଣସି ମହାମନା ବ୍ୟକ୍ତି । ମୂର୍ଚ୍ଛିତ ଅବସ୍ଥାରେ ଶ୍ରୀକୃଷ୍ଣଙ୍କର ସାକ୍ଷାତ୍କାର ସ୍ଫୁର୍ତ୍ତି ହେତୁ ଉଠି ଅର୍ଦ୍ଧବାହ୍ୟ ଅବସ୍ଥାରେ ଭ୍ରମ ହେତୁ କହୁଅଛନ୍ତି, ଏ କେଉଁ ମହାଶୟ ଆଇଲେ । ୬୩ ।

ଶ୍ରୀରାଧା କୃଷ୍ଣଦର୍ଶନରେ ହତାଶ ହୋଇ ଅତ୍ୟନ୍ତ ଅବସନ୍ନଭାବରେ ସଖୀ ଗଳା ଧରି ଶ୍ରୀକୃଷ୍ଣଙ୍କ ରୂପଗୁଣ ବାହୁନି କାନ୍ଦୁଥିବା ସମୟରେ ଶ୍ରୀକୃଷ୍ଣଙ୍କୁ ଦୂରରୁ ଆସିବାର ଦେଖି କାଏ ଆସୁଛନ୍ତି

କିବା ଏଇ ସାକ୍ଷାତ୍ କାମ, ଦ୍ୟୁତିବିମ୍ବ ମୂର୍ତ୍ତିମାନ,
କି ମାଧୁର୍ଯ୍ୟ ସ୍ୱୟଂ ମୂର୍ତ୍ତିମନ୍ତ ।
କିବା ମନୋନେତ୍ରୋତ୍ସବ, କିବା ପ୍ରାଣବଲ୍ଲଭ,
ସତ୍ୟ କୃଷ୍ଣ ଆଇଲା ନେତ୍ରାନନ୍ଦ । ୭୪ ।
ଗୁରୁ ନାନା ଭାବଗଣ, ଶିଷ୍ୟ ପ୍ରଭୁର ତନୁ-ମନ,
ନାନାରୀତେ ସତତ ନାଚାୟ ।
ନିର୍ବେଦ ବିଷାଦ ଦୈନ୍ୟ, ଚାପଲ୍ୟ ହର୍ଷ ଧୈର୍ଯ୍ୟ
ମନ୍ୟୁ,
ଏଇ ନୃତ୍ୟେ ପ୍ରଭୁର କାଲ ଯାୟ । ୭୫ ।

ଚଣ୍ଡୀଦାସ ବିଦ୍ୟାପତି, ରାୟେର ନାଟକ-ଗୀତି,
କର୍ଣ୍ଣାମୃତ ଶ୍ରୀଗୀତଗୋବିନ୍ଦ ।
ସ୍ୱରୂପ-ରାମାନନ୍ଦ-ସନେ, ମହାପ୍ରଭୁ ରାତ୍ରି-ଦିନେ,
ଗାୟ ଶୁନେ ପରମ ଆନନ୍ଦ । ୭୬ ।
ପୁରୀର ବାତ୍ସଲ୍ୟ ମୁଖ୍ୟ, ରାମାନନ୍ଦେର ଶୁଦ୍ଧ-ସଖ୍ୟ,
ଗୋବିନ୍ଦାଦ୍ୟେର ଶୁଦ୍ଧ ଦାସ୍ୟ-ରସ ।
ଗଦାଧର ଜଗଦାନନ୍ଦ, ସ୍ୱରୂପେର ମୁଖ୍ୟ ରସାନନ୍ଦ,
ଏଇ ଚାରି-ଭାବେ ପ୍ରଭୁ ବଶ । ୭୭ ।

ମୁଖ୍ୟରସାନନ୍ଦ—ଶୃଙ୍ଗାରରସାନନ୍ଦ । ୭୭ । ବି. ଚ.

ଏହି ମନରେ ଭ୍ରମ ହେବାରୁ ନିରୂପଣ କରି ସଖୀ ପ୍ରତି କହୁଅଛନ୍ତି । ହେ ସଖି ! ଏହି ମଧୁରମୂର୍ତ୍ତି କଣ କନ୍ଦର୍ପ କି ? କିନ୍ତୁ କନ୍ଦର୍ପ ତ ଅନଙ୍ଗ ଓ ଦୁଃଖଦାୟକ, ତାଙ୍କର ଏପରି ମାଧୁର୍ଯ୍ୟ କାହୁଁ ଆସିବ, ଏବଂ ତାଙ୍କର ରୂପ କାହୁଁ ଆସିବ । ନା, ଏ ତ ମଧୁର ଦ୍ୟୁତିମଣ୍ଡଳ ପରି ଦିଶୁଛନ୍ତି । କିନ୍ତୁ ଦ୍ୟୁତି-ମଣ୍ଡଳର ତ ଗତି ନାହିଁ, ତେବେ କଣ ଏ ସ୍ୱୟଂ ମାଧୁର୍ଯ୍ୟ, କିନ୍ତୁ ତଦ୍ୱାରା ଯୁଗପତ୍ ମନ ଓ ନୟନ ଆନନ୍ଦିତ ହୋଇ ନ ପାରେ । ତେବେ ଏ କଣ ? ଯୁଗପତ୍ ମନ ଓ ନୟନର ଆନନ୍ଦଦାୟୀ କୌଣସି ବସ୍ତୁ ତାହା ବି ନୁହେଁ, ଏହାଙ୍କର ମନୁଷ୍ୟବତ୍ ଅବୟବ ଦେଖା ଯାଉଅଛି, ଏବଂ ଏହାଙ୍କୁ ଦେଖି ଯୁଗପତ୍ ମନ ଓ ନୟନର ଆନନ୍ଦ ଜାତ ହେଉଅଛି, ଏ ତେବେ କଣ ? ପ୍ରବାସସମାଗତ କାନ୍ତ ? ଏହା କହି କୃଷ୍ଣଙ୍କୁ ଅତି ନିକଟରେ ଦେଖି ଏବଂ କୃଷ୍ଣ ବୋଲି ଚିହ୍ନିପାରି ଅତ୍ୟନ୍ତ ଆନନ୍ଦ ଆବେଗରେ କହୁଅଛନ୍ତି, ସଖି ! ଏ ମୋର ପ୍ରାଣବଲ୍ଲଭ ସେହି ନବକିଶୋର କୃଷ୍ଣ ! ଯାହାଙ୍କର ପୁନର୍ଦର୍ଶନରେ ହତାଶ ହୋଇଥିଲି, ସେ କୃପା କରି ମୋତେ ଦର୍ଶନ ଦେଲେ । ୧୧ଶ ଶ୍ଲୋକାର୍ଥ ।

ଯେପରି ସଙ୍ଗୀତାଚାର୍ଯ୍ୟ ଶିଷ୍ୟମାନଙ୍କୁ ନୃତ୍ୟ ଶିକ୍ଷା ଦେଇ ନାନା ଭଙ୍ଗିରେ ନଚାନ୍ତି, ସେହିପରି ମହାପ୍ରଭୁଙ୍କର ହୃଦ୍‌ଗତ ଭାବମାନ ଗୁରୁରୂପରେ ମହାପ୍ରଭୁଙ୍କର ତନୁ ଓ ମନକୁ ଶିଷ୍ୟ ରୂପରେ ନଚାନ୍ତି ।

ନିର୍ବେଦାଦି—ଭକ୍ତିରସାମୃତସିନ୍ଧୁର ଦକ୍ଷିଣ ବିଭାଗ ୪ର୍ଥ ଲହରୀରେ ଦ୍ରଷ୍ଟବ୍ୟ ।

କାଲ ଯାୟ—ଶେଷଲୀଳାର ଦ୍ୱାଦଶବର୍ଷ ଅତିବାହିତ କରିଥିଲେ । ୭୫ ।

ବଙ୍ଗୀୟ କବି ଶ୍ରୀଚଣ୍ଡୀଦାସ ଓ ମୈଥିଲୀ କବି ଶ୍ରୀବିଦ୍ୟାପତିଙ୍କ ପଦାବଳୀ, ଶ୍ରୀରାମାନନ୍ଦ ରାୟଙ୍କ ଶ୍ରୀଜଗନ୍ନାଥବଲ୍ଲଭ ନାଟକ ଏବଂ ଗୀତ, ଠାକୁର ଶ୍ରୀବିଲ୍ୱମଙ୍ଗଳ କୃତ ଶ୍ରୀକୃଷ୍ଣକର୍ଣ୍ଣାମୃତ ଓ ଶ୍ରୀଜୟଦେବ ଗୋସ୍ୱାମୀ କୃତ ଶ୍ରୀଗୀତଗୋବିନ୍ଦ, ଏହି ଗ୍ରନ୍ଥ ଓ ପଦମାନ ଶ୍ରୀସ୍ୱରୂପ ଦାମୋଦର ଓ ରାମାନନ୍ଦ ରାୟଙ୍କ ସହିତ ଶ୍ରୀମନ୍ ମହାପ୍ରଭୁ ଦିବାରାତ୍ର ପରମାନନ୍ଦରେ ଶ୍ରବଣ କୀର୍ତ୍ତନ କରୁଥିଲେ । ୭୬ ।

ପୁରୀ—ଶ୍ରୀପରମାନନ୍ଦ ପୁରୀ । ବାତ୍ସଲ୍ୟ ମୁଖ୍ୟ—ବାତ୍ସଲ୍ୟରସ ପ୍ରଧାନଭାବ ।
ଶୁଦ୍ଧସଖ୍ୟ - ସଖ୍ୟପ୍ରଧାନ । ଶୁଦ୍ଧ ଦାସ୍ୟ - ଦାସ୍ୟ ପ୍ରଧାନ ।
ସ୍ୱରୂପ—ଶ୍ରୀସ୍ୱରୂପ ଦାମୋଦର । ମୁଖ୍ୟ ରସାନନ୍ଦ—ଆନନ୍ଦରସ ବା ମଧୁରରସ ପ୍ରଧାନ ।
ଏଇ ଚାରି—ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁରରସ ଭାବ ।
ଦାସ, ସଖା, ଗୁରୁଜନ ଓ କାନ୍ତାମାନଙ୍କର ସେବା । ୭୭ ।

ଲୀଲାଶୁକ ମର୍ତ୍ତ୍ୟଜନ, ତାର ହୟ ଭାବୋଦ୍‌ଗମ,
ଈଶ୍ୱରେ ସେ କି ଇହା ବିସ୍ମୟ ।
ତାହେ ମୁଖ୍ୟରସାଶ୍ରୟ, ହଇୟାଛେନ ମହାଶୟ,
ତାତେ ହୟ ସର୍ବଭାବୋଦୟ । ୬୮ ।
ପୂର୍ବେ ବ୍ରଜବିଲାସେ, ଯେଇ ତିନ ଅଭିଲାଷେ,
ଯତ୍ନେହ ଆସ୍ୱାଦ ନା ହଇଲ ।
ଶ୍ରୀରାଧାର ଭାବସାର, ଆପନେ କରି ଅଙ୍ଗୀକାର,
ସେଇ ତିନ ବସ୍ତୁ ଆସ୍ୱାଦିଲ । ୬୯ ।
ଆପନେ କରି ଆସ୍ୱାଦନେ, ଶିଖାଇଲ ଭକ୍ତଗଣେ,
ପ୍ରେମଚିନ୍ତାମଣିର ପ୍ରଭୁ ଧନୀ ।
ନାହି ଜାନେ ସ୍ଥାନାସ୍ଥାନ, ଯାରେ-ତାରେ କୈଲ ଦାନ,
ମହାପ୍ରଭୁ ଦାତାଶିରୋମଣି । ୭୦ ।

ଏଇ ଗୁପ୍ତଭାବ-ସିନ୍ଧୁ ବ୍ରହ୍ମା ନା ପାୟ ଯାର ବିନ୍ଦୁ
ହେନ ଧନ ବିଲାଇଲ ସଂସାରେ ।
ଐଛେ ଦୟାଲୁ ଅବତାର, ଐଛେ ଦାତା ନାହି ଆର
ଗୁଣ କେହୋ ନାରେ ବର୍ଣ୍ଣିବାରେ । ୭୧ ।

କହିବାର କଥା ନହେ, କହିଲେ କେହୋ ନା ବୁଝୟେ,
ଐଛେ ଚିତ୍ର ଚୈତନ୍ୟେର ରଙ୍ଗ ।
ସେଇ ସେ ବୁଝିତେ ପାରେ, ଚୈତନ୍ୟେର କୃପା ଯାରେ,
ହୟ ତାଁର ଦାସାନୁଦାସ ସଙ୍ଗ । ୭୨ ।

---

ମର୍ତ୍ତ୍ୟଜନ ମାନୁଷଃ ଲୋକଃ । ୬୮ । ବି. ଚ.

ତିନ ଇତି । ଅଭିଲାଷତ୍ରୟମାହଲୀଳାୟାଂ ଦୃଷ୍ଟଂ ଶ୍ରୀରାଧାୟାଃ ପ୍ରଣୟମହିମେତ୍ୟାଦିନା । ୬୯। ବି. ଚ.

---

ଲୀଳାଶୁକ— ଶ୍ରୀବିଲ୍ୱମଙ୍ଗଳ ଠାକୁର । ମର୍ତ୍ତ୍ୟଜନ—ମାନବ ।

ଗ୍ରନ୍ଥକାର କହୁଅଛନ୍ତି, ଶ୍ରୀବିଲ୍ୱମଙ୍ଗଳ ଠାକୁର ମାନବ ହୋଇ ସିଦ୍ଧ ସାଧକ ଅବସ୍ଥାରେ ସିଦ୍ଧଦେହର ଭାବ ଲାଭ କରି ମଧୁରରସର ଭାବମୟୀ ପ୍ରଳାପମୟ ଶ୍ଳୋକ ଉଚ୍ଚାରଣ କରିଥିଲେ, ଯାହା କି—'ଶ୍ରୀକୃଷ୍ଣକର୍ଣ୍ଣାମୃତ' ନାମରେ ଲିପିବଦ୍ଧ ହୋଇଅଛି । ମନୁଷ୍ୟ ପକ୍ଷରେ ଯଦି ଏରୂପ ମଧୁରରସର ଭାବୋଦ୍‌ଗମ ହୁଏ, ମାୟାଧୀଶ ଈଶ୍ୱରଙ୍କ ପକ୍ଷରେ ସେରୂପ ଭାବୋଦ୍‌ଗମ ହେବାର ବିଚିତ୍ରତା କଅଣ, ଈଶ୍ୱରଙ୍କ ପକ୍ଷରେ ତ ଏହା ସହଜ, ଶ୍ରୀମନ୍ ମହାପ୍ରଭୁ (ମହାଶୟ) ମଧୁର ରସର ଆଶ୍ରୟ (ମୁଖ୍ୟରସାଶ୍ରୟ) ଅର୍ଥାତ୍ କାନ୍ତାଭାବ ଗ୍ରହଣ କରିଅଛନ୍ତି । ସେହି ହେତୁରୁ ତାଙ୍କଠାରେ କାନ୍ତାଭାବର ଅନ୍ତର୍ଗତ ନିର୍ବେଦବିଷାଦାଦି ସର୍ବ ଭାବ ଉଦୟ ହୁଏ । ୬୮ ।

ପୂର୍ବେ (ଶ୍ରୀକୃଷ୍ଣ ଅବତାରରେ) ବୃନ୍ଦାବନଲୀଳାରେ (ବ୍ରଜବିଳାସରେ) ଯେଉଁ ତିନ ଅଭିଳାଷ, ଅର୍ଥାତ୍ ଶ୍ରୀରାଧାଙ୍କର ପ୍ରେମ କି-ପ୍ରକାର, ନିଜର ମାଧୁର୍ଯ୍ୟ କି ପ୍ରକାର ଏବଂ ସେହି ମାଧୁର୍ଯ୍ୟ ଅନୁଭବ କରି ଶ୍ରୀରାଧାଙ୍କର କି ଜାତୀୟ ସୁଖ ହୁଏ, ଏହା ଶ୍ରୀକୃଷ୍ଣ ବହୁ ଯତ୍ନରେ ସୁଦ୍ଧା ଅନୁଭବ କରି ନ ପାରି ନିଜେ ଶ୍ରୀରାଧାଙ୍କର ଭାବରେ ଭାବିତ ହୋଇ ଗୌରରୂପରେ ଶ୍ରୀନବଦ୍ୱୀପଧାମରେ ଅବତୀର୍ଣ୍ଣ ହୋଇ ଆସ୍ୱାଦନ କଲେ ଏବଂ ଭକ୍ତମାନଙ୍କୁ ସେହି ତିନ ବସ୍ତୁ ଆସ୍ୱାଦନ ପ୍ରଣାଳୀ ଶିକ୍ଷା ଦେଲେ ।

ନାହିଁ ଜାନେ ସ୍ଥାନାସ୍ଥାନ – ପାତ୍ରାପାତ୍ର ବିବେଚନା ନ କରି । ୬୯ । ୭୦ ।

ଗୁପ୍ତଭାବସିନ୍ଧୁ—ପ୍ରେମଚିନ୍ତାମଣି । ବିଲାଇଲ—ବିତରଣ କଲେ । ୭୧ ।

ଚିତ୍ର—ବିଚିତ୍ର । ୭୨ ।

| | |
|---|---|
| ଚୈତନ୍ୟଲୀଳା-ରତ୍ନସାର, ସ୍ୱରୂପେର ଭଣ୍ଡାର,<br>ତେଁହୋ ଥୁଇଲା ରଘୁନାଥେର କଣ୍ଠେ ।<br>ତାହାଁ କିଛୁ ଯେ ଶୁନିଲ, ତାହା ଇହାଁ ବିବରିଲ,<br>ଭକ୍ତଗଣେ ଦିଲ ଏଇ ଭେଟେ । ୭୩ ।<br>ଯଦି କେହୋ ହେନ କହେ, ଗ୍ରନ୍ଥ ହୈଲ<br>ଶ୍ଲୋକମୟେ,<br>ଇତରଜନ ନାରିବେ ବୁଝିତେ । | ପ୍ରଭୁର ଯେଇ ଆଚରଣ, ସେଇ କରି ବର୍ଣ୍ଣନ,<br>ସର୍ବଚିତ୍ତ ନାରି ଅରାଧିତେ । ୭୪ ।<br>ନାହି କାଁହା ସବିରୋଧ, ନାହି କାଁହା ଅନୁରୋଧ<br>ସହଜ ବସ୍ତୁ କରି ବିବରଣ ।<br>ଯଦି ହୟ ରାଗୋଦେଶ, ତାହାଁ ହୟ ଆବେଶ,<br>ସହଜ-ବସ୍ତୁ ନା ଯାୟ ଲିଖନ । ୭୫ । |

ସହଜବସ୍ତୁ ଅନାରୋପିତବସ୍ତୁ । ଯଦି ଇତି । ବିବରଣକରଣେ ଯଦି ରାଗସ୍ୟ ଉଦ୍ଦେଶୋ ଭବେତ୍ତ ତଦା ତଦ ଆବେଶସ୍ତଦନୁଭବେ ମନୋନିବେଶୋ ଭବେତ୍ତ । ଅତଏବ ସହଜବସ୍ତୁନୋ ଲିଖନଂ ନ ଭବେତ୍ତ । ଲେଖ୍ୟଭେଦାନାମନୁସନ୍ଧାନାଦିତି ଭାବଃ । ୭୫ । ବି. ଚ.

ଶ୍ରୀମନ୍ ମହାପ୍ରଭୁ ଏ କଳିଯୁଗରେ ଅବତୀର୍ଣ୍ଣ ହୋଇ ଯେଉଁ ଲୀଳା କରିଅଛନ୍ତି, ତାହି ଅତି ଦୁର୍ଲଭ ହେତୁ ଗ୍ରନ୍ଥକାର ରତ୍ନର ସହିତ ତୁଳନା କରିଅଛନ୍ତି । କିନ୍ତୁ ସେହି ଲୀଳା ମଧ୍ୟରୁ ଶେଷ ଦ୍ୱାଦଶ ବର୍ଷର ଲୀଳା ଅର୍ଥାତ୍ତ ଅନ୍ତ୍ୟଲୀଳା ତାହାଙ୍କର ଲୀଳାସାର ହେତୁ ରତ୍ନସାର ବୋଲି ଗ୍ରନ୍ଥକାର କହିଅଛନ୍ତି । ତାହାର କାରଣ ଏହି ଯେ—ଶ୍ରୀମାନ୍ ମହାପ୍ରଭୁଙ୍କର ଅବତୀର୍ଣ୍ଣ ହେବାର ଯାହା ମୂଳ ପ୍ରୟୋଜନ ବୋଲି ପୂର୍ବେ ବର୍ଣ୍ଣିତ ହୋଇଅଛି ତାହା ଏହି ଅନ୍ତ୍ୟଲୀଳାରେ ସେ ଆସ୍ୱାଦନ କରି ଥିବାରୁ ଏହି ଲୀଳା ଲୀଳାସାର । ଶ୍ରୀସ୍ୱରୂପଗୋସ୍ୱାମୀ ଏହି ଦ୍ୱାଦଶ ବର୍ଷ କାଳ ଶ୍ରୀମାନ୍ ମହାପ୍ରଭୁଙ୍କୁ ଏହି ଲୀଳାରସ-ଆସ୍ୱାଦନରେ ସର୍ବ ପ୍ରକାରରେ ସହାୟତା କରି ଏହି ଲୀଳାର ବିଷୟ ଉତ୍ତମରୂପେ ଅବଗାହନ କରିଥିଲେ ଏବଂ ତାହାଙ୍କର ପ୍ରିୟଶିଷ୍ୟ ରଘୁନାଥ ଗୋସ୍ୱାମିଙ୍କୁ ତାହା ଶିକ୍ଷା ଦେଇଥିଲେ । ଗ୍ରନ୍ଥକାର ଏହି ବିଷୟ ଶ୍ରୀମାନ୍ ଦାସ ଗୋସ୍ୱାମିଙ୍କଠାରୁ ଯେପରି ଶୁଣିଥିଲେ ତାହା ଏହି ଗ୍ରନ୍ଥରେ ବର୍ଣ୍ଣନା କରି ଶ୍ରୀମନ୍ ମହାପ୍ରଭୁଙ୍କର ଭକ୍ତମାନଙ୍କୁ ଉପହାର ଦେଲେ । ୭୩ ।

ଗ୍ରନ୍ଥକାର କହୁଅଛନ୍ତି ଯେ, ଯଦି କେହି କହେ ଯେ, ଏପ୍ରକାର ବର୍ଣ୍ଣନାଦ୍ୱାରା ଗ୍ରନ୍ଥଟି ଶ୍ଲୋକବହୁଳ ହେଲା, ଅତଏବ ଏହା ସାଧାରଣ ଲୋକେ ବୁଝି ପାରିବେ ନାହିଁ । ଗ୍ରନ୍ଥକାର ଏହାର ଉତ୍ତର ଦେଉଅଛନ୍ତି ଯେ ମୁଁ କଣ କରିବି, ମହାପ୍ରଭୁ ଯେପରି ଆଚରଣ କରିଥିଲେ ଅର୍ଥାତ୍ତ ଯେପରି ଶ୍ଲୋକ ପାଠ ଓ ପ୍ରଳାପ କରିଥିଲେ, ତାହାହିଁ ମୁଁ ବର୍ଣ୍ଣନ କରିଛି । ଏଥିରେ ଯେ ସମସ୍ତଙ୍କର ମନ ବୋଧ ହେବ ଏପ୍ରକାର ମୁଁ କିପରି ବର୍ଣ୍ଣନ କରିବି । ୭୪ ।

ପୂର୍ବ ପୟାରରେ ଗ୍ରନ୍ଥକାର କହିଅଛନ୍ତି "ସର୍ବଚିତ୍ତ ନାରି ଅରାଧିତେ" ତାହା କାହିଁକି କହିଲେ, ସେଥିର କାରଣ ନିର୍ଦ୍ଦେଶ କରୁଅଛନ୍ତି । ଏହି ଗ୍ରନ୍ଥ ଶ୍ଲୋକବହୁଳ ହେତୁ ଯେଉଁମାନେ ଏହାକୁ ବୁଝି ପାରିବେ ନାହିଁ ସେମାନଙ୍କ ପ୍ରତି ବିଦ୍ୱେଷ ଭାବରୁ କିମ୍ବା ଯେଉଁମାନେ ବୁଝି ପାରିବେ ସେମାନଙ୍କ ଅନୁରୋଧ ହେତୁ ଯେ ମୁଁ ଏପ୍ରକାର ଶ୍ଲୋକ ବହୁଳଭାବରେ ରଚନା କରିଅଛି ତାହା ନୁହେ, ଯାହା ସ୍ୱାଭାବିକ ଘଟିଅଛି ଅର୍ଥାତ୍ତ ଶ୍ରୀମନ୍ ମହାପ୍ରଭୁ ଯେପରି ଶ୍ଲୋକ ପାଠ ଓ ରସାସ୍ୱାଦକ ପ୍ରଳାପ କରିଥିଲେ, ମୁଁ ଯେହି ସେହି କଥା ମୂଳେ ମୂଳେ ଲେଖୁଅଛି । ଯଦି କେହି କହନ୍ତି ଯେ, ତାହାହେଲେ ସୁଦ୍ଧା ଆପଣ ସେ ବିଷୟ ନିଜ ଭାବରେ ସରଳ କରି ସମସ୍ତଙ୍କର ବୁଝିବାଭଳି ବର୍ଣ୍ଣନା କଲେ ଭଲ ହୁଅନ୍ତା । ଏହି ଆଶଙ୍କାକୁ ଲକ୍ଷ୍ୟ କରି କହୁଅଛନ୍ତି ଯେ ଏପରି ଅନୁରାଗ ଯଦି ବର୍ଣ୍ଣନାର ଉଦ୍ଦେଶ୍ୟ ହୁଏ, ତେବେ ମନ ସେଥିରେ ନିବିଷ୍ଟ ହେବ । ଅତଏବ ସ୍ୱାଭାବିକ ଘଟନା ବର୍ଣ୍ଣନା କରି ହୋଇ ପାରିବ ନାହିଁ । ୭୫ ।

ଯେବା ନାହି ବୁଝେ କେହୋ, ଶୁନିତେ
ଶୁନିତେ ସେହୋ,
କି ଅଦ୍ଭୁତ ଚୈତନ୍ୟଚରିତ ।
କୃଷ୍ଣେ ଉପଜିବେ ପ୍ରୀତି, ଜାନିବେ ରସେର ରୀତି,
ଶୁନିଲେଇ ହଇବେ ବଡ଼ ହିତ । ୭୬ ।
ଭାଗବତ ଶ୍ଳୋକମୟ, ଟୀକା ତାର ସଂସ୍କୃତ ହୟ,
ତବୁ କୈଛେ ବୁଝେ ତ୍ରିଭୁବନ ?
ଇହାଁ ଶ୍ଳୋକ ଦୁଇ-ଚାରି, ତାର ବ୍ୟାଖ୍ୟା ଭାଷା କରି,
କେନେ ନା ବୁଝିବେ ସର୍ବଜନ ? । ୭୭ ।
ଶେଷ ଲୀଳାର ସୂତ୍ରଗଣ, କୈଲ କିଛୁ ବିବରଣ,
ଇହା ବିସ୍ତାରିତେ ଚିତ୍ତ ହୟ ।
ଥାକେ ଯଦି ଆୟୁଃଶେଷ, ବିସ୍ତାରିବ ଲୀଳାଶେଷ,
ଯଦି ମହାପ୍ରଭୁର କୃପା ହୟ । ୭୮ ।
ଆମି ବୃଦ୍ଧ ଜରାତୁର, ଲିଖିତେ କାଁପୟେ କର,
ମନେ କିଛୁ ସ୍ମରଣ ନା ହୟ ।
ନା ଦେଖିୟେ ନୟନେ, ନା ଶୁନିୟେ ଶ୍ରବଣେ,
ତବୁ ଲିଖି, ଏ ବଡ଼ ବିସ୍ମୟ । ୭୯ ।
ଏଇ ଅନ୍ତ୍ୟଲୀଳା ସାର, ସୂତ୍ରମଧ୍ୟେ ବିସ୍ତାର,
କରି କିଛୁ କରିଲ ବର୍ଣ୍ଣନ ।
ଇହା-ମଧ୍ୟେ ମରି ଯବେ, ବର୍ଣ୍ଣିତେ ନା ପାରି ତବେ
ଏହି ଲୀଳା ଭକ୍ତଗଣ ଧନ । ୮୦ ।

ସଂକ୍ଷେପେ ଏହି ସୂତ୍ର କୈଲ, ଯେଇ ଇହାଁ ନା
ଲିଖିଲ,
ଆଗେ ତାହା କରିବ ବିସ୍ତାର ।
ଯଦି ତତଦିନ ଜୀୟେ, ମହାପ୍ରଭୁର କୃପା ହୟେ,
ଇଚ୍ଛା ଭରି କରିବ ବିଚାର । ୮୧ ।
ଛୋଟ ବଡ଼ ଭକ୍ତଗଣ, ବନ୍ଦୋଁ ସଭାର ଶ୍ରୀଚରଣ,
ସବେ ମୋରେ କରହ ସନ୍ତୋଷ ।
ସ୍ୱରୂପଗୋସାଇଁର ମତ, ରୂପ ରଘୁନାଥ
ଜାନେ ଯତ,
ତାହା ଲିଖି, ନାହିଁ ମୋର ଦୋଷ ।୮୨।
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ, ଅଦ୍ୱୈତାଦି ଭକ୍ତବୃନ୍ଦ,
ଶିରେ ଧରି ସଭାର ଚରଣ ।
ସ୍ୱରୂପ ରୂପ ସନାତନ, ରଘୁନାଥେର ଶ୍ରୀଚରଣ,
ଧୂଲି କରି ମସ୍ତକଭୂଷଣ । ୮୩ ।
ପାଞା ଯାଁର ଆଜ୍ଞାଧନ, ବ୍ରଜେର ବୈଷ୍ଣବଗଣ,
ବନ୍ଦୋ ତାଁର ମୁଖ୍ୟ ହରିଦାସ ।
ଚୈତନ୍ୟବିଲାସ ସିନ୍ଧୁ, କଲ୍ଲୋଲେର ଏକବିନ୍ଦୁ,
ତାର କଣା କହେ କୃଷ୍ଣଦାସ । ୮୪ ।
ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ ଅନ୍ତ୍ୟ-
ଲୀଳାସୂତ୍ର-ବର୍ଣ୍ଣନେ ପ୍ରେମୋନ୍ମାଦ-ପ୍ରଲାପ-ବର୍ଣ୍ଣନଂ
ନାମ ଦ୍ୱିତୀୟପରିଚ୍ଛେଦଃ ।



ଏହା ଲେଖି ଗ୍ରନ୍ଥକାର ସର୍ବସାଧାରଣଙ୍କୁ କହୁଅଛନ୍ତି ଯେ, ଶ୍ରୀମନ୍‌ମହାପ୍ରଭୁଙ୍କ ଲୀଳା ଏପରି ଅଦ୍ଭୁତ ଯେ, ଯେଉଁମାନେ ବୁଝି ନ ପାରନ୍ତି ସେମାନେ ଯଦି ବାରମ୍ବାର ଏହି ଲୀଳା ଶ୍ରବଣ କରନ୍ତି, ତାହାହେଲେ ସେମାନଙ୍କର ଶ୍ରୀକୃଷ୍ଣଙ୍କ ଶ୍ରୀଚରଣରେ ଅନୁରାଗ ଜାତ ହେବ ଏବଂ ତାହା ହେଲେ ସେମାନେ ରସତତ୍ତ୍ୱ ବୁଝି ପାରିବେ । ଅତଏବ ଏହି ଗ୍ରନ୍ଥ ବାରମ୍ବାର ଶୁଣିଲେ ବଡ଼ ମଙ୍ଗଳ ହେବ । ୭୬ ।

ବିସ୍ତାରିତେ—ପରେ ବିସ୍ତାର କରିବାକୁ । ଲୀଳାଶେଷ—ଶେଷଲୀଳା । ୭୮ ।

ଗ୍ରନ୍ଥକାର ଏହି ଦ୍ୱିତୀୟ ପରିଚ୍ଛେଦରେ ଶ୍ରୀମନ୍‌ମହାପ୍ରଭୁଙ୍କର ଅନ୍ତ୍ୟଲୀଳାର ସୂତ୍ର ଲେଖୁଁ ଲେଖୁଁ କାହିଁକି ସେ ଲୀଳାର ବିଷୟ ବର୍ଣ୍ଣନା କଲେ, ତାହାର କାରଣ ଏହି ପୟାରରେ ବ୍ୟକ୍ତ କରୁଅଛନ୍ତି । ୮୦ ।

ଇହାଁ—ଏଠାରେ । ଜୀୟେ—ବଞ୍ଚେ । ୮୧ ।

ଏହି ପରିଚ୍ଛେଦର ୭୩ ପୟାରରେ ଯାହା ଲେଖିଅଛନ୍ତି, ତାହାର ଦୃଢ଼ତା ପ୍ରକାଶେ ଉପସଂହାରରେ ମଧ୍ୟ ପୁନରାୟ "ସ୍ୱରୂପ × × × ଦୋଷ" ଏହି ପୟାରଦ୍ୱାରା ଲେଖୁଅଛନ୍ତି ।୮୨।

ହରିଦାସ—ଏ ମହାଶୟଙ୍କ ବିଷୟ ଆଦିଲୀଳା ୯ମ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି ।୮୪।

ଦ୍ୱିତୀୟ ପରିଚ୍ଛେଦ ସମାପ୍ତ ।



## ତୃତୀୟ ପରିଚ୍ଛେଦ ।

ନ୍ୟାସଂ ବିଧାୟୋତ୍ପ୍ରଣୟୋଽଥ ଗୌରୋ,
ବୃନ୍ଦାବନଂ ଗନ୍ତୁମନା ଭ୍ରମାଦ୍ୟଃ ।
ରାଢ଼େ ଭ୍ରମନ୍ ଶାନ୍ତିପୁରୀମୟିତ୍ୱା,
ଲଲାସ ଭକ୍ତୈରିହ ତଂ ନତୋଽସ୍ମି ॥ ୧ ॥

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଚବିଶବତ୍ସର-ଶେଷ ଯେଇ ମାଘ-ମାସ ।
ତାର ଶୁକ୍ଲପକ୍ଷେ ପ୍ରଭୁ କରିଲା ସନ୍ନ୍ୟାସ । ୨ ।
ସନ୍ନ୍ୟାସ କରି ପ୍ରେମାବେଶେ ଚଲିଲ ବୃନ୍ଦାବନ ।
ରାଢ଼ଦେଶେ ତିନଦିନ କରିଲା ଭ୍ରମଣ । ୩ ।
ଏଇ ଶ୍ଲୋକ ପଢ଼ି ପ୍ରଭୁ ଭାବେର ଆବେଶେ ।
ଭ୍ରମିତେ ପବିତ୍ର କୈଲ ସବ ରାଢ଼ଦେଶେ । ୪ ।

ତଥାହି ( ଭାଃ ୧୧। ୩।୨୩ )—

ଏତାଂ ସ ଆସ୍ଥାୟ ପରାତ୍ମନିଷ୍ଠା-
ମଧ୍ୟାସିତାଂ ପୂର୍ବତମୈର୍ମହଦ୍ଭିଃ ।
ଅହଂ ତରିଷ୍ୟାମି ଦୁରନ୍ତପାରଂ
ତମୋ ମୁକୁନ୍ଦାଙ୍ଘ୍ରିନିଷେବୟୈବ । ୨ ।

## ତୃତୀୟ ପରିଚ୍ଛେଦ ।

ଯୋ ଗୌରଃ ନ୍ୟାସଂ-ସନ୍ନ୍ୟାସାଶ୍ରମଂ ବିଧାୟ କୃତ୍ୱା ଉତ୍ପ୍ରଣୟଃ ଆନନ୍ଦିତଃ ସନ୍ ବୃନ୍ଦାବନଂ ଗନ୍ତୁମନାଃ ଗନ୍ତୁଂ ମନୋଯସ୍ୟ ତଥାଭୂତଃ ସନ୍ ଭ୍ରମାତ୍—ପ୍ରେମବିହ୍ୱଳତ୍ୱାତ୍ । ରାଢ଼େ-ରାଢ଼ଦେଶେ ଭ୍ରମନ୍ ପର୍ଯ୍ୟଟନ୍ ଶାନ୍ତିପୁରୀଂ—ଶ୍ରୀଅଦ୍ୱୈତଭବନଂ । ଅୟିତ୍ୱା—ଗତ୍ୱା ଭକ୍ତୈଃ ସହ ଇହ—ଶାନ୍ତିପୁର୍ଯ୍ୟାଂ ଲଲାସ—ଶୋଭିତବାନ୍ ତଂ ଗୌରଂ ନତୋଽସ୍ମି ଇତି । ୧ମ ଶ୍ଲୋକ ।

ସଃ ଅହଂ ପୂର୍ବତମୈଃ-ପ୍ରାଚୀନୈଃ ମହର୍ଷିଭିଃ ଅଧ୍ୟାସିତାଂ-ଉପାସିତାଂ ଏତାଂ ପରାତ୍ମନିଷ୍ଠାଂ—( ପରଃଶ୍ରେଷ୍ଠଃ ଯଃ ଆତ୍ମାଜୀବଃ ତସ୍ୟ ନିଷ୍ଠାଂ ବିଶୁଦ୍ଧଲକ୍ଷଣଂ ସ୍ୱରୂପଂ କେବଳଂ ) ଆସ୍ଥାୟ ମୁକୁନ୍ଦାଙ୍ଘ୍ରି ନିଷେବୟା ଏବ ଦୁରନ୍ତପାରଂ ସଂସାରାଖ୍ୟଂ ତମଃ ତରିଷ୍ୟାମି । ୨ୟ ଶ୍ଲୋକଃ ।

ନ୍ୟାସଂ ସନ୍ନ୍ୟାସଂ । ଉତ୍ପ୍ରଣୟଃ ଉତ୍କୃଷ୍ଟଃ ପ୍ରଣୟଃ ଯସ୍ୟ । ଶାନ୍ତିପୁରୀମୟିତ୍ୱା ଗତ୍ୱା ଇତି ପାଠେ ଶାନ୍ତିପୁରଜନମାନନ୍ଦୟିତୁଂ । ଲଲାସ ପ୍ରକାଶମାନୋଽଭୂତ୍ । ଇହ ଶାନ୍ତିପୁରେ ।୧। ବି. ଚ.

ଯେଉଁ ଗୌରଚନ୍ଦ୍ର ସନ୍ନ୍ୟାସ ଗ୍ରହଣ କରି ପ୍ରେମାନନ୍ଦବଶତଃ ବୃନ୍ଦାବନ ଗମନାଭିଳାଷୀ ହୋଇ ପ୍ରେମବିହ୍ୱଳତା ହେତୁ ଭ୍ରମବଶତଃ ରାଢ଼ ଦେଶରେ ଭ୍ରମଣ କରି ଶାନ୍ତିପୁରରେ ଶ୍ରୀଅଦ୍ୱୈତ-ଆଚାର୍ଯ୍ୟଙ୍କ ଗୃହକୁ ଯାଇ ସେଠାରେ ଭକ୍ତମାନଙ୍କ ସହିତ ବିଳାସ କରିଥିଲେ । ତାହାଙ୍କୁ ମୁଁ ପ୍ରଣାମ କରେଁ । ୧ମ ଶ୍ଲୋକାର୍ଥ ।

ରାଢ଼ଦେଶ—ବଙ୍ଗଦେଶସ୍ଥ ଗଙ୍ଗାନଦୀ ପଶ୍ଚିମଦିଗର ଭୂମି । ୩ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଅବନ୍ତୀଦେଶୀୟ ଭିକ୍ଷୁକବ୍ରାହ୍ମଣଙ୍କ ସନ୍ନ୍ୟାସ ଗ୍ରହଣ ପରେ ଆତ୍ମାର ସ୍ୱରୂପ ବିଚାର ବିଷୟ ବର୍ଣ୍ଣନପୂର୍ବକ ତାଙ୍କର (ଭିକ୍ଷୁକଙ୍କର) କର୍ତ୍ତବ୍ୟ ନିର୍ଦ୍ଧାରଣରୂପ ବଚନ ଉଦ୍ଧୃତ କରିଅଛନ୍ତି—ଭିକ୍ଷୁକବ୍ରାହ୍ମଣ କହିଲେ—ମୁଁ ଅଧୁନା ପୂର୍ବତମ ମହତ୍ ବ୍ୟକ୍ତିମାନଙ୍କଦ୍ୱାରା ପରିସେବିତ ଏହି ଦେହଦେହାଭିମାନତ୍ୟାଗରୂପ ବିଶୁଦ୍ଧ ଆତ୍ମତତ୍ତ୍ୱ ଜ୍ଞାନ ଲାଭ କଲି । ବର୍ତ୍ତମାନ ଶ୍ରୀମୁକୁନ୍ଦଙ୍କର ଚରଣସେବାଦ୍ୱାରା ଏହି ଦୁରନ୍ତପାର ତମୋମୟ ସଂସାରରୁ ଉଦ୍ଧାର ହେବି ।

ପ୍ରଭୁ କହେ—ସାଧୁ ଏହି ଭିକ୍ଷୁର ବଚନ ।
ମୁକୁନ୍ଦ ସେବନବ୍ରତ କୈଲ ନିର୍ଦ୍ଧାରଣ । ୫ ।
ପରାତ୍ମନିଷ୍ଠା ମାତ୍ର ବେଶଧାରଣ ।
ମୁକୁନ୍ଦସେବାୟ ହୟ ସଂସାରତାରଣ । ୬ ।
ସେହି ବେଶ କୈଲ ଏବେ ବୃନ୍ଦାବନ ଗିୟା ।
କୃଷ୍ଣନିଷେବଣ କରି ନିଭୃତେ ବସିୟା । ୭ ।
ଏତ ବଲି ଚଲେ ପ୍ରଭୁ ପ୍ରେମୋନ୍ମାଦେର ଚିହ୍ନ ।
ଦିଗ୍‌ବିଦିଗ୍ ଜ୍ଞାନ ନାହିଁ—କିବା ରାତ୍ରି ଦିନ । ୮ ।
ନିତ୍ୟାନନ୍ଦ ଆଚାର୍ଯ୍ୟରତ୍ନ ମୁକୁନ୍ଦ—ତିନଜନ ।
ପ୍ରଭୁର-ପାଛେ ପାଛେ ତିନେ କରେନ ଗମନ । ୯ ।
ଯେଇ ଯେଇ ପ୍ରଭୁ ଦେଖେ ସେଇ ସେଇ ଲୋକ ।
ପ୍ରେମାବେଶେ 'ହରି' ବୋଲେ, ଖଣ୍ଡେ ଦୁଃଖ ଶୋକ । ୧୦ ।
ଗୋପବାଲକ ସବ ପ୍ରଭୁକେ ଦେଖିୟା ।
'ହରିହରି' ବଲି ଡାକେ ଉଚ୍ଚ କରିୟା । ୧୧ ।
ଶୁନି ତା-ସଭାର ନିକଟ ଗେଲା ଗୌରହରି ।
'ବୋଲ ବୋଲ୍' ବୋଲେ ସଭାର ଶିରେ ହସ୍ତ ଧରି । ୧୨ ।
ତା-ସଭାରେ ସ୍ତୁତି କରେ—ତୋମରା ଭାଗ୍ୟବାନ୍
କୃତାର୍ଥ କରିଲେ ମୋରେ ଶୁନାୟାଁ ହରିନାମ । ୧୩ ।
ଗୁପ୍ତେ ତା-ସଭାରେ ଆନି ଠାକୁର ନିତ୍ୟାନନ୍ଦ ।
ଶିଖାଇଲ ସଭାକାରେ କରିୟା ପ୍ରବନ୍ଧ—। ୧୪ ।
ବୃନ୍ଦାବନ-ପଥ ପ୍ରଭୁ ପୁଛେନ ତୋମାରେ ।
ଗଙ୍ଗାତୀର-ପଥ ତବେ ଦେଖାଇହ ତାଁରେ । ୧୫ ।
ତବେ ପ୍ରଭୁ ପୁଛିଲେନ—ଶୁନ ଶିଶୁଗଣ ! ।
କହ ଦେଖି କୋନ୍ ପଥେ ଯାବ ବୃନ୍ଦାବନ । ୧୬ ।
ଶିଶୁସବ ଗଙ୍ଗାତୀର-ପଥ ଦେଖାଇଲ ।
ସେହି ପଥେ ଆବେଶେ ପ୍ରଭୁ ଗମନ କରିଲ । ୧୭ ।
ଆଚାର୍ଯ୍ୟରତ୍ନେରେ କହେ ନିତ୍ୟାନନ୍ଦ ଗୋସାଞିଁ— ।
ଶୀଘ୍ର ଯାଅ ତୁମି ଅଦ୍ୱୈତ-ଆଚାର୍ଯ୍ୟର ଠାଞିଁ । ୧୮ ।

---

ଏହାର ଭାବ ଏହି ଯେ, ଭିକ୍ଷୁକ ବ୍ରାହ୍ମଣ ଜ୍ଞାନର ଆଲୋଚନାଦ୍ୱାରା ବିଚାରପୂର୍ବକ ବିଶୁଦ୍ଧ ଜୀବତତ୍ତ୍ୱ ଅବଧାରଣ କଲେ । କିନ୍ତୁ ବିଚାର କରି ଦେଖିଲେ ଯେ, ସନ୍ନ୍ୟାସବେଶ ଏବଂ ଆତ୍ମଜ୍ଞାନଦ୍ୱାରା ସଂସାରସାଗରରୁ ଉତ୍ତୀର୍ଣ୍ଣ ହୋଇ ପାରି ଯାଏ ନାହିଁ । ପରେ ତାଙ୍କ ମନରେ ଉଦୟ ହେଲା ଯେ, ଶ୍ରୀହରିଙ୍କ ଶ୍ରୀଚରଣ ସେବାଦ୍ୱାରା ସଂସାରରୁ ଉଦ୍ଧାର ମିଳେ । ଏଣୁ ହର୍ଷପୂର୍ବକ କହିଲେ ଯେ, ମହତ୍ ବ୍ୟକ୍ତିମାନଙ୍କର ଆଶ୍ରିତ ସନ୍ନ୍ୟାସ ଆଶ୍ରମ ତ ପାଇଅଛି, ବର୍ତ୍ତମାନ ଏହି ବେଶରେ ନିଃସଙ୍ଗ ହୋଇ ଶ୍ରୀହରିଙ୍କ ଚରଣ ସେବାଦ୍ୱାରା ନିଶ୍ଚୟ ଉଦ୍ଧାର ହେବ । ୨ୟ ଶ୍ଳୋକାର୍ଥ ।

ଶ୍ରୀମନ୍ମହାପ୍ରଭୁ କହିଲେ ଯେ, ଭିକ୍ଷୁକ ବ୍ରାହ୍ମଣଙ୍କର ଉପରୋକ୍ତ ଶ୍ଳୋକ ଲିଖିତ ବଚନ ପ୍ରଶଂସନୀୟ । ଯେହେତୁ ତଦ୍ଦ୍ୱାରା ସେ ଶ୍ରୀମୁକୁନ୍ଦ ସେବାବ୍ରତ ଯେ ଅବଶ୍ୟ କର୍ତ୍ତବ୍ୟ, ତାହା ବିଚାର-ଦ୍ୱାରା ନିର୍ଦ୍ଧାରଣ କଲେ । ୫ ।

ତାହାଙ୍କ ନିର୍ଦ୍ଧାରଣର ତାତ୍ପର୍ଯ୍ୟ ଏହି ଯେ—ସନ୍ନ୍ୟାସବେଶଧାରଣ ଦେହଦୈହିକ ଜ୍ଞାନଶୂନ୍ୟ ପରାତ୍ମନିଷ୍ଠାର ପରିଚୟ ମାତ୍ର, କିନ୍ତୁ ତଦ୍ଦ୍ୱାରା ସଂସାର ଉଦ୍ଧାର ଘଟେ ନାହିଁ, ସେ ସଂସାର ଉଦ୍ଧାର କେବଳ ଶ୍ରୀମୁକୁନ୍ଦ ସେବାଦ୍ୱାରା ଘଟେ, ମୁଁ ତ ସେହିବେଶ (ସନ୍ନ୍ୟାସ ବେଶ) ଗ୍ରହଣ କଲି । ଏବେ ଶ୍ରୀବୃନ୍ଦାବନ ଯାଇ ନିଭୃତରେ ବସି ଶ୍ରୀକୃଷ୍ଣସେବା କରିବି । ୬ । ୭ ।

ଆଚାର୍ଯ୍ୟରତ୍ନ—ଶ୍ରୀଚନ୍ଦ୍ରଶେଖର ଆଚାର୍ଯ୍ୟରତ୍ନ ।

ମୁକୁନ୍ଦ—ଶ୍ରୀମୁକୁନ୍ଦଦତ୍ତ । ୯ । ଶୁନି—ଶ୍ରୀହରିନାମ ଶୁଣି । ୧୨ ।

ପ୍ରଭୁ ଲଯ଼ା ଯାବ ଆମି ତାଁହାର ମନ୍ଦିରେ ।
ସାବଧାନେ ରହେ ଯେନ ନୌକା
ଲଯ଼ାଁ ତୀରେ । ୧୯ ।
ତବେ ନବଦ୍ୱୀପେ ତୁମି କରିହ ଗମନ ।
ଶଚୀସହ ଲଯ଼ାଁ ଆଇସ ସବ ଭକ୍ତଗଣ । ୨୦ ।
ତାଁରେ ପାଠାଇଯ଼ା ନିତ୍ୟାନନ୍ଦ ମହାଶଯ଼ ।
ମହାପ୍ରଭୁର ଆଗେ ଆସି ଦିଲ ପରିଚଯ଼ । ୨୧ ।
ପ୍ରଭୁ କହେ ଶ୍ରୀପାଦ ! ତୋମାର କୋଥାକେ
ଗମନ ।
ଶ୍ରୀପାଦ କହେ—ତୋମାର ସଙ୍ଗେ ଯାବ
ବୃନ୍ଦାବନ । ୨୨ ।
ପ୍ରଭୁ କହେ—କତଦୂରେ ଆଛେ ବୃନ୍ଦାବନ ।
ତେଁହୋ କହେନ—କର ଏହି ଯମୁନା-
ଦର୍ଶନ । ୨୩ ।
ଏତ ବଲି ଆନିଲ ପ୍ରଭୁକେ ଗଙ୍ଗା-ସନ୍ନିଧାନେ ।
ଆବେଶେ ପ୍ରଭୁର ହୈଲ ଗଙ୍ଗାରେ ଯମୁନା-ଜ୍ଞାନେ ॥
'ଅହୋ' ଭାଗ୍ୟ ଯମୁନାର ପାଇଲ ଦରଶନ ।
ଏତ ବଲି ଯମୁନାରେ କରେନ ସ୍ତବନ । ୨୫ ।
ତଥାହି ଚୈତନ୍ୟଚନ୍ଦ୍ରୋଦଯ଼ନାଟକେ (୫।୧୩)-

ଚିଦାନନ୍ଦଭାନୋଃ ସଦା ନନ୍ଦସୂନୋଃ,
ପରପ୍ରେମପାତ୍ରୀ ଦ୍ରବବ୍ରହ୍ମଗାତ୍ରୀ ।
ଅଘାନାଂ ଲବିତ୍ରୀ ଜଗତ୍‌କ୍ଷେମଧାତ୍ରୀ,
ପବିତ୍ରୀକ୍ରିଯ଼ାନ୍ନୋ ବପୁର୍ମିତ୍ରପୁତ୍ରୀ । ୩ ।

ଏତ ବଲି ନମସ୍କରି କୈଲ ଗଙ୍ଗାସ୍ନାନ ।
ଏକ କୌପୀନ,—ନାହି ଦ୍ୱିତୀଯ଼ ପରିଧାନ ।୨୬।
ହେନକାଲେ ଆଚାର୍ଯ୍ୟଗୋସାଇଁ ନୌକାତେ
ଚଡ଼ିଯ଼ା ।
ଆଇଲା ନୂତନ କୌପୀନ-ବହିର୍ବାସ ଲଯ଼ାଁ ।୨୭।

---

ମିତ୍ରଃ ସୂର୍ଯ୍ୟ ସ୍ତସ୍ୟ ପୁତ୍ରୀ କନ୍ୟା ଯମୁନା ନଃ ଅସ୍ମାକଂ ବପୁଃ ଶରୀରଂ ପବିତ୍ରୀକ୍ରିଯ଼ାଦିତ୍ୟନ୍ୱଯ଼ଃ । କମ୍ଭୂତା, ନନ୍ଦସୂନୋଃ ଶ୍ରୀକୃଷ୍ଣସ୍ୟ ସଦା-ସର୍ବକ୍ଷଣଂ ପରପ୍ରେମପାତ୍ରୀ, କମ୍ଭୂତସ୍ୟ, ଚିଦାନନ୍ଦଭାନୋଃ ଚିଦାନନ୍ଦଃ-ନିର୍ବିଶେଷଂ ବ୍ରହ୍ମ ଭାନୁଃ ପ୍ରଭା ଯସ୍ୟ ତସ୍ୟ, କମ୍ଭୂତା ଯମୁନା, ଦ୍ରବ ଏବ ବ୍ରହ୍ମ ତଦେବ ଗାତ୍ରଂ ଯସ୍ୟାଃ ସା, ପୁନଃ କମ୍ଭୂତା, ଅଘାନାଂ ପାପାନାଂ ଲବିତ୍ରୀ ନାଶିନୀ, ପୁନଃ କମ୍ଭୂତା ଜଗତ୍ କ୍ଷେମଧାତ୍ରୀ, ଜଗତାଂ ମଙ୍ଗଳବିଧାତ୍ରୀ । ୩ୟ ଶ୍ଳୋକ ।

ପରିଚଯ଼ୋଽତ୍ର ବୃନ୍ଦାବନଗମନରୂପଂ ନ ତୁ ସ୍ୱପ୍ରକାଶନଂ ପୂର୍ବୈବ ସ୍ୱେନ ପରିଚଯ଼ୋଽସ୍ତି ଅଧୁନାପି ପ୍ରଭୁ କହେ ଶ୍ରୀପାଦଇତ୍ୟାଦିନା ପୂର୍ବପରିଚଯ଼ସ୍ୟୈବ ପ୍ରକଟିତଃ । ୨୧ । ଚ. ଚ.

---

ତବେ—ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କୁ କହିବା ପର । ୨୦ ।

ଦିଲପରିଚଯ଼—ଶ୍ରୀମନ୍‌ମହାପ୍ରଭୁ ସନ୍ନ୍ୟାସ ଗ୍ରହଣପର ଯେଉଁ ତିନଦିନ ରାଢ଼ଦେଶରେ ଭ୍ରମଣ କରିଥିଲେ, ସେତେବେଳେ ସେ ଏରୂପ ପ୍ରେମାନନ୍ଦରେ ବିହ୍ୱଳ ଥିଲେ ଯେ,—ତାଙ୍କର ଦିଗ୍‌ବିଦିଗ୍ ଓ ଦିବାନିଶି ଜ୍ଞାନ ନ ଥିଲା । ଏପରି କି ତାଙ୍କ ସଙ୍ଗେ ସଙ୍ଗେ ଶ୍ରୀମନ୍ ନିତ୍ୟାନନ୍ଦ ଶ୍ରୀଆଚାର୍ଯ୍ୟରତ୍ନ ଓ ମୁକୁନ୍ଦଦତ୍ତ ଯେ ଥିଲେ ତାହା ତାଙ୍କର ଜଣା ନ ଥିଲା । ଶ୍ରୀମନ୍‌ମହାପ୍ରଭୁଙ୍କୁ ଶ୍ରୀଗଙ୍ଗାକୂଳଅଭିମୁଖେ ଅଗ୍ରସର ହେବାର ଦେଖି ଶ୍ରୀମନ୍‌ନିତ୍ୟାନନ୍ଦପ୍ରଭୁ ଆସି ତାଙ୍କ ପୁରୋଭାଗରେ ଉପସ୍ଥିତ ହୋଇ ସଙ୍ଗେ ଆସି ଥିବାର ପରିଚଯ଼ ଦେଲେ । ୨୧ ।

ଶ୍ରୀପାଦ—ଏଠାରେ ଶ୍ରୀମନ୍‌ନିତ୍ୟାନନ୍ଦ ପ୍ରଭୁ । ୨୨ ।

ନିର୍ବିଶେଷବ୍ରହ୍ମ ଯାହାଙ୍କର ଅଙ୍ଗପ୍ରଭା ଏମନ୍ତ ଯେ ନନ୍ଦନନ୍ଦନ ଶ୍ରୀକୃଷ୍ଣ, ତାହାଙ୍କର ସର୍ବଦା ପରପ୍ରେମପାତ୍ରୀ, ଦ୍ରବୀଭୂତ ବ୍ରହ୍ମସ୍ୱରୂପା, ସର୍ବପାପବିନାଶିନୀ ଓ ଜଗତର ମଙ୍ଗଳବିଧାଯ଼ିନୀ ସୂର୍ଯ୍ୟତନଯ଼ା ଶ୍ରୀଯମୁନା ଆମ୍ଭମାନଙ୍କର ଶରୀରକୁ ପବିତ୍ର କରନ୍ତୁ । ୩ୟ ଶ୍ଳୋକାର୍ଥ ।

ଆଚାର୍ଯ୍ୟଗୋସାଇଁ—ଶ୍ରୀମାନ୍ ଅଦ୍ୱୈତଆଚାର୍ଯ୍ୟ । ୨୭ ।

ଆଗେ ଆସି ରହିଲା ଅଗ୍ରୁଯ୍ୟ ନମସ୍କାର କରି ।
ଅଗ୍ରୁଯ୍ୟ ଦେଖି ବୋଲେ ପ୍ରଭୁ ମନେ ସଂଶୟ କରି — । ୨୮ ।
ତୁମି ତ ଅଦ୍ୱୈତଗୋସାଇଁ, ହେଥା କେନେ ଆଇଲା ।
ଆମି ବୃନ୍ଦାବନେ, ତୁମି କେମତେ ଜାନିଲା । ୨୯ ।
ଆଗ୍ରୁଯ୍ୟ କହେ — ତୁମି ଯାହାଁ ସେ-ଇ ବୃନ୍ଦାବନ ।
ମୋର ଭାଗ୍ୟେ ଗଙ୍ଗାତୀରେ ତୋମାର ଆଗମନ । ୩୦ ।
ପ୍ରଭୁ କହେ - ନିତ୍ୟାନନ୍ଦ ଆମାରେ ବଞ୍ଚିଲା ।
ଗଙ୍ଗାକେ ଆନିଯାଁ ମୋରେ 'ଯମୁନା' କହିଲା । ୩୧ ।
ଅଗ୍ରୁଯ୍ୟ କହେ - ମିଥ୍ୟା ନହେ ଶ୍ରୀପାଦବଚନ ।
ଯମୁନାତେ ସ୍ନାନ ତୁମି କରିଲା ଏଖନ । ୩୨ ।
ଗଙ୍ଗାୟ ଯମୁନା ବହେ ହଯାଁ ଏକଧାର ।
ପଶ୍ଚିମେ ଯମୁନା ବହେ—ପୂର୍ବେ ଗଙ୍ଗାଧାର । ୩୩ ।
ପଶ୍ଚିମଧାରେ ଯମୁନା ବହେ, ତାହାଁ କୈଲ ସ୍ନାନ ।
ଆର୍ଦ୍ରକୌପୀନ ଛାଡ଼ି ଶୁଷ୍କ କର ପରିଧାନ । ୩୪ ।
ପ୍ରେମାବେଶେ ତିନଦିନ ଆଛ ଉପବାସ ।
ଆଜି ମୋର ଘରେ ଭିକ୍ଷା, ଚଲ ମୋର ବାସ । ୩୫ ।
ଏକମୁଷ୍ଟି ଅନ୍ନ ମୁହିଁ କରିଯାଁଛୋ ପାକ ।
ଶୁକାରୁଖା ବ୍ୟଞ୍ଜନ ଏକ ସୂପ ଆର ଶାକ । ୩୬ ।
ଏତ ବଲି ନୌକାୟ ଚଢ଼ାଇ ନିଲ ନିଜଘର ।
ପାଦପ୍ରକ୍ଷାଳନ କୈଲ ଆନନ୍ଦ ଅନ୍ତର । ୩୭ ।
ପ୍ରଥମେଇ ପାକ କରିଯାଛେନ ଆଗ୍ରୁଯ୍ୟାଣୀ ।
ବିଷ୍ଣୁସମର୍ପଣ କୈଲ ଅଗ୍ରୁଯ୍ୟ ଆପନି । ୩୮ ।
ତିନଠାଇ ଭୋଗ ବାଢ଼ାଇଲ ସମ କରି ।
କୃଷ୍ଣେର ଭୋଗ ବାଢ଼ାଇଲ ଧାତୁପାତ୍ରୋପରି । ୩୯ ।
ବତ୍ରିଶା-ଆଣ୍ଠିଯା-କଲାର ଆଙ୍ଗଟିୟାପାତେ ।
ଦୁଇଠାଇଁ ଭୋଗ ବାଢ଼ାଇଲ ଭାଲମତେ । ୪୦ ।

---

ବ୍ୟଞ୍ଜନମଧ୍ୟେ ଏକଂ ସୂପରୂପଂ ଅନ୍ୟତ୍ ଶାକରୂପଂ ଇତ୍ୟର୍ଥଃ । ୩୬ । ଚ. ଚ.

ସମର୍ପଣପ୍ରକାରମାହ ତିନଠାଇଁ ଇତ୍ୟାରଭ୍ୟ ଶ୍ରୀକୃଷ୍ଣରେ କରାଇଲା ଭୋଜନ ଏତତ୍-ପର୍ଯ୍ୟନ୍ତଂ । ୩୯ । ଚ. ଚ.

---

ଆମି ବୃନ୍ଦାବନେ — ମୁଁ ବୃନ୍ଦାବନକୁ ଆସି ଶ୍ରୀଯମୁନାରେ ସ୍ନାନ କରୁଛି । ୨୯ ।

ଶ୍ରୀକୃଷ୍ଣ ଯେଉଁଠାରେ ଯେତେବେଳେ ତାଙ୍କୁ ଆଣି ରଖାନ୍ତି, ଶ୍ରୀବୃନ୍ଦାବନ ସେତେବେଳେ ସେହିଠାରେ ଅବଶ୍ୟ ହୁଅନ୍ତି । ଶ୍ରୀମନ୍ ମହାପ୍ରଭୁ ଶ୍ରୀକୃଷ୍ଣ ହେବାରୁ ଅଗ୍ରୁଯ୍ୟଗୋସାଇଁ କହିଲେ, ତୁମ୍ଭେ ଯେଉଁଠାରେ, ଶ୍ରୀବୃନ୍ଦାବନ ସେହିଠାରେ । ୩୦ ।

ଶ୍ରୀପାଦ — (ଏଠାରେ) ଶ୍ରୀନିତ୍ୟାନନ୍ଦ । ୩୦ ।

ଶୁକାରୁଖା — ଶୁଖିଲା ଓ ଲୁଖୁରା (କେବଳ ପାଣିରେ ସିଦ୍ଧ) ଯେଉଁ ମଧ୍ୟରୁ ଗୋଟିଏ ସୂପ (ଡାଲି) ବା ରସା, ଏହା ଶ୍ରୀଅଦ୍ୱୈତାଗ୍ରୁଯ୍ୟଙ୍କର ଦୈନ୍ୟୋକ୍ତି । ୩୬ ।

ତିନଠାଇଁ—ତିନି ସ୍ଥାନରେ । ଏକ ଧାତୁ ପାତ୍ରରେ ତାଙ୍କ ଇଷ୍ଟଦେବ ଶ୍ରୀକୃଷ୍ଣବିଗ୍ରହଙ୍କ ପାଇଁ ଓ ଅପର ଦୁଇ ବତିଶା କଦଳୀମଞ୍ଜପତ୍ରରେ । ୩୯ ।

ବତିଶା-ଆଣ୍ଠିଯା କଲା— ଯେଉଁ କଦଳୀକାନ୍ଦିରେ ୩୨ ଫେଣା କଦଳୀ ଫଳେ ଏବଂ ସେ କଦଳୀରେ ମଞ୍ଜି ଫଳ ଭିତରେ ଥିବାରୁ ତାକୁ ବଙ୍ଗଦେଶରେ ଆଣ୍ଠିଯାକଲା କହନ୍ତି ।

ଅଙ୍ଗଟିଯାପାତେ—ମଞ୍ଜପତ୍ର । ୩୯ । ଡୋଙ୍ଗା — କଦଳୀପଟୁଆରେ ଡାଲି ଓ ତରକାରୀ ଖାଇବାର ଡଙ୍ଗା ।

ମୁଦ୍ଗସୂପ—ମୁଗଡ଼ାଲି । ବାସ୍ତୁକଶାକ —ଯେ ଶାକ ଘରର ବାଡ଼ିରେ ପ୍ରସ୍ତୁତ କରାଯାଏ, କିମ୍ବା ବଥୁଆ ।

ଫରାଇଲ ମୁକ୍ତା—ନାସାୟ ଛିଦ୍ର ଦେଖିୟା ।
ମହାମହୋତ୍ସବ କୈଲ ଆନନ୍ଦିତ ହୈୟା ।୧୩୧।
ସେଇ-ହୈତେ ଗୋପାଲେର କହେ ଜେତେ ସ୍ଥିତ ।
ଏଇ-ଲାଗି 'ସାକ୍ଷୀଗୋପାଲ' ନାମ ହୈଲ ଖ୍ୟାତ ॥
ନିତ୍ୟାନନ୍ଦଗୋସାଞ୍ଚିର ମୁଖେ ଗୋପାଲଚରିତ ।
ଶୁନି ତୁଷ୍ଟ ହୈଲ ପ୍ରଭୁ ସ୍ୱଭକ୍ତ ସହିତ ।୧୩୩।
ଗୋପାଲେର ଆଗେ ଯବେ ପ୍ରଭୁର ହୟ ସ୍ଥିତ ।
ଭକ୍ତଗଣ ଦେଖେ ଯେନ ଦୌହେ ଏକମୂର୍ତ୍ତି ॥
ଦୌହେ ଏକବର୍ଣ୍ଣ—ଦୌହେ ପ୍ରକାଣ୍ଡ-ଶରୀର ।
ଦୌହେ ରକ୍ତାମ୍ବର—ଦୌହାର ସ୍ୱଭାବ ଗମ୍ଭୀର ॥
ମହାତେଜୋମୟ ଦୌହେ କମଲନୟନ ।
ଦୌହାର ଭାବାବେଶ-ମନ ଚନ୍ଦ୍ରବଦନ ।୧୩୬।
ଦୌହା ଦେଖି ନିତ୍ୟାନନ୍ଦପ୍ରଭୁ ମହାରଙ୍ଗେ ।
ଠାରାଠାରି କରି ହାସେ ଭକ୍ତଗଣ-ସଙ୍ଗେ ।୧୩୭।
ଏଇମତ ନାନାରଙ୍ଗେ ସେ ରାତ୍ରି ବଞ୍ଚିୟା ।
ପ୍ରାତେ ଚଲିଲା ମଙ୍ଗଲ-ଆରତି ଦେଖିୟା ।୧୩୮।
ଭୁବନେଶ୍ୱର-ପଥେ ଯୈଛେ କରିଲ ଗମନ ।
ବିସ୍ତାରି ବର୍ଣ୍ଣିୟାଛେନ ଦାସ ବୃନ୍ଦାବନ ।୧୩୯।
କମଲପୁରେ ଆସି ଭାର୍ଗୀନଦୀ-ସ୍ନାନ କୈଲ ।
ନିତ୍ୟାନନ୍ଦ-ହାଥେ ପ୍ରଭୁ ଦଣ୍ଡ ଧରିଲ ।୧୪୦।
କପୋତେଶ୍ୱର ଦେଖିତେ ଗେଲା ଭକ୍ତଗଣ ସଙ୍ଗେ ।
ଏଥା ନିତ୍ୟାନନ୍ଦପ୍ରଭୁ କୈଲ ଦଣ୍ଡଭଙ୍ଗେ ।୧୪୧।
ତିନଖଣ୍ଡ କରି ଦଣ୍ଡ ଦିଲ ଭାସାଇୟା ।
ଭକ୍ତ-ସଙ୍ଗେ ଆଇଲା ପ୍ରଭୁ ମହେଶ ଦେଖିୟା ॥
ଜଗନ୍ନାଥେର ଦେଉଲ ଦେଖି ଆବିଷ୍ଟ ହଇଲା ।
ଦଣ୍ଡବତ କରି ପ୍ରେମେ ନାଚିତେ ଲାଗିଲା ।୧୪୩।
ଭକ୍ତଗଣ ଆବିଷ୍ଟ ହୈୟା ସଭେ ନାଚେ ଗାୟ ।
ପ୍ରେମାବେଶେ ପ୍ରଭୁ ସଙ୍ଗେ ରାଜମାର୍ଗେ ଯାୟ ॥
ହାସେ କାନ୍ଦେ ନାଚେ ପ୍ରଭୁ ହୁଙ୍କାର-ଗର୍ଜ୍ଜନ ।
ତିନକ୍ରୋଶ ପଥ ହୈଲ ସହସ୍ର-ଯୋଜନ ।୧୪୫।
ଚଲିତେ-ଚଲିତେ ପ୍ରଭୁ ଆଇଲା ଅଠାରନାଲା ।
ତାହାଁ ଆସି ପ୍ରଭୁ କିଛୁ ବାହ୍ୟ ପ୍ରକାଶିଲା ।୧୪୬।
ନିତ୍ୟାନନ୍ଦେ ପ୍ରଭୁ କହେ— ଦେହୋ ମୋର ଦଣ୍ଡ ।
ନିତ୍ୟାନନ୍ଦ କହେ ଦଣ୍ଡ ହୈଲ ତିନଖଣ୍ଡ ।୧୪୭।
ପ୍ରେମାବେଶେ ପଡ଼ିଲେ ତୁମି, ତୋମାରେ ଧରିଲୁଁ ।
ତୋମାସହ ସେଇ ଦଣ୍ଡ-ଉପରେ ପଡ଼ିଲୁ ।୧୪୮।
ଦୁଇଜନାର ଭରେ ଦଣ୍ଡ ଖଣ୍ଡଖଣ୍ଡ ହୈଲ ।
ସେଇ ଖଣ୍ଡ କାହାଁ ପଡ଼ିଲ, କିଛୁ ନା ଜାନିଲ ॥
ମୋର ଅପରାଧେ ତୋମାର ଦଣ୍ଡ ହୈଲ ଖଣ୍ଡ ।
ଯେଇ ଯୁକ୍ତ ହୟ ମୋର କର ତାର ଦଣ୍ଡ ।୧୫୦।
ଶୁନି ପ୍ରଭୁ ମନେ କିଛୁ ଦୁଃଖ ପ୍ରକାଶିଲା ।
ଈଷତ୍ କ୍ରୋଧ କରି କିଛୁ ସଭାରେ କହିଲା—॥
ନୀଲାଚଲେ ଆନି ଆମା ସଭେ ହିତ କୈଲା ।
ସବେ ଦଣ୍ଡ ଧନ ଛିଲ—ତାହା ନା ରାଖିଲା ।୧୫୨।
ତୁମି ସବ ଆଗେ ଯାହ ଈଶ୍ୱର ଦେଖିତେ ।
କିବା ଆମି ଆଗେ ଯାଇ; ନା ଯାବ ସହିତେ ॥
ମୁକୁନ୍ଦଦତ୍ତ କହେ—ପ୍ରଭୁ ! ତୁମି ଚଲ ଆଗେ ।
ଆମିସବ ପାଛେ ଯାବ, ନାହି ଯାବ ସଙ୍ଗେ ।୧୫୪।
ଏତ ଶୁନି ପ୍ରଭୁ ଆଗେ ଚଲିଲା ଶୀଘ୍ରଗତି ।
ବୁଝିତେ ନା ପାରେ କେହୋ ଦୁଇପ୍ରଭୁର ମତି—॥

---

ଭାର୍ଗୀନଦୀ—ବର୍ତ୍ତମାନ ଦାମୋଦରପୁର ନଦୀ, ବା ଦଣ୍ଡଭଙ୍ଗା ନଦୀ । ୧୪୦ ।

ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ଇଙ୍ଗିତରେ ଏହି ଦୁଇ ପୟାର୍ ଦ୍ୱାରା ନିଜ ମନୋଗତ ଭାବ— ମହାପ୍ରଭୁଙ୍କୁ ଜଣାଉଅଛନ୍ତି । ୧୪୮ । ୧୪୯ । ୧୫୦ ।

ସବେ—ଏକମାତ୍ର । ୧୫୨ । ଈଶ୍ୱର—ଶ୍ରୀଜଗନ୍ନାଥ ଦେବ । ୧୫୩ ।

ଦୁଇ ପ୍ରଭୁର—ଶ୍ରୀମନ୍ ମହାପ୍ରଭୁ ଓ ଶ୍ରୀ ନିତ୍ୟାନନ୍ଦ ପ୍ରଭୁ । ୧୫୫ ।

ଇଁହୋ କେନ ଦଣ୍ଡ ଭାଙ୍ଗେ, ତେଁହୋ କେନେ
ଭାଙ୍ଗାୟ ।
ଭାଙ୍ଗାଇୟା କେନେ କ୍ରୁଦ୍ଧ ଇଁହୋ ତ ଦୋଷାୟ ?
ଦଣ୍ଡଭଙ୍ଗଲୀଲା ଏଇ ପରମ ଗମ୍ଭୀର ।
ସେଇ ବୁଝେ—ଦୋଁହାର ପଦେ ଯାର ଭକ୍ତି
ଧୀର । ୧୫୭ ।
ବ୍ରହ୍ମଣ୍ୟଦେବ-ଗୋପାଲେର ମହିମା ଏଇ ଧନ୍ୟ ।
ନିତ୍ୟାନନ୍ଦ ବକ୍ତା ଯାର—ଶ୍ରୋତା ଶ୍ରୀଚୈତନ୍ୟ ॥
ଶ୍ରଦ୍ଧାଯୁକ୍ତ ହଞା ଇହା ଶୁନ ଭକ୍ତଗଣ ।
ଅଚିରେ ପାଇବେ କୃଷ୍ଣଚୈତନ୍ୟ-ଚରଣ ।୧୫୯।
ଶ୍ରୀରୂପ ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୧୬୦।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ସାକ୍ଷୀଗୋପାଲଚରିତବର୍ଣ୍ଣନଂ ନାମ
ପଞ୍ଚମପରିଚ୍ଛେଦଃ ।

---

"ଇହୋ" ଇତି; କିଂ ଯତିଚିହ୍ନଧାରଣେ ନ ଯତି-ର୍ଭବେଦତି ନ କିନ୍ତୁ ତଦ୍ଧର୍ମନିଷ୍ଠୟୈବ ଇତି ପରମରସିକଜନେଷ୍ୱେତତ୍ ଖ୍ୟାପନାୟେତି ତତ୍କାରିତବାନିତି ।

"ତିହୋ" ଇତି, ତତ୍ର ଗତ୍ୱା ସାର୍ବଭୌମାଦିଭ୍ୟୋ ଯଦୈଶ୍ୱର୍ଯ୍ୟଂ ପ୍ରକାଶୟିତବ୍ୟଂ ତଦା ଯତିଚିହ୍ନେନ ଦଣ୍ଡେନାଲମିତି କୃତ୍ୱୈବ ଦଣ୍ଡଂ ଭଗ୍ନମିତି ଖଣ୍ଡଶସ୍ତୁ ଉନ୍ମାଦଗୁଣସ୍ୟଖଣ୍ଡନାଭି-ପ୍ରାୟେଣ ।

"କ୍ରୁଦ୍ଧ" ଇତି, କ୍ରୋଧସ୍ତୁ ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋଜନ ଇତି ନ୍ୟାୟେ-ନାବଶିଷ୍ଟୟତିଜନ ଦଣ୍ଡତ୍ୟାଗ ସମ୍ଭାବନ ଶଙ୍କୟେତି ଗୂଢ଼ୋଽଭିପ୍ରାୟଃ । ୧୫୭ । ବି. ଚ.

---

ଇଁହୋ—ଶ୍ରୀନିତ୍ୟାନନ୍ଦ ପ୍ରଭୁ । ତେହୋଁ—ଶ୍ରୀମନ୍ ମହାପ୍ରଭୁ ।

ଇଁହାତେ—ଏହାଙ୍କୁ (ଶ୍ରୀମନ୍ ନିତ୍ୟାନନ୍ଦଙ୍କୁ) । ଦୋଷାୟ—ଦୋଷଦେବା ।

ଏହାର ଅଭିପ୍ରାୟ ଏହି ଯେ ସନ୍ନ୍ୟାସିମାନେ ତ୍ରିଦଣ୍ଡ ଧାରଣ କରନ୍ତି । ଅର୍ଥାତ ବାକ୍, ଦେହ, ଓ ମନକୁ ସଂଯତ କରିବା ସକାଶେ ତାହା ଧାରଣ କରନ୍ତି । କିନ୍ତୁ ବାକ୍ୟର ଦଣ୍ଡ ମୌନ, ଦେହର ଦଣ୍ଡ କାମ୍ୟକର୍ମ ତ୍ୟାଗ, ଏବଂ ଚିତ୍ତର ଦଣ୍ଡ ପ୍ରାଣାୟାମ । ଏହା ନକରି କେବଳ ବଂଶ-ଦଣ୍ଡ ମାତ୍ର ଧାରଣକଲେ କେହି ସନ୍ନ୍ୟାସୀ ହୁଏନା, ଏହି କାରଣରୁ ଶ୍ରୀନିତ୍ୟାନନ୍ଦପ୍ରଭୁ ଭାବିଲେ—ଯେ;—ଯତି ଧର୍ମରେ ନିଷ୍ଠା ଥିଲେହିଁ ଯତି, ନତୁବା କେବଳ ଚିହ୍ନରୂପ ଦଣ୍ଡଧାରଣରେ ତାହି ହୁଏନା । ଏହିକଥା ପରମରସିକ ଜନମାନଙ୍କୁ ଜଣାଇବା କାରଣ ସେ ଦଣ୍ଡ ଭଗ୍ନକଲେ । ଏବଂ ଶ୍ରୀମନ୍ ମହାପ୍ରଭୁ ଶ୍ରୀପୁରୀଧାମକୁ ଯାଇ ସାର୍ବଭୌମଙ୍କୁ ଯେ ଐଶ୍ୱର୍ଯ୍ୟ ଦେଖାଇବେ, ସେଥିସକାଶେ ଦଣ୍ଡ ନିଷ୍ପ୍ରୟୋଜନ । ଏହିହେତୁ ନିତ୍ୟାନନ୍ଦପ୍ରଭୁଙ୍କର ହୃଦୟରେ ପ୍ରେରକରୂପରେ ତାଙ୍କଦ୍ୱାରା ନିଜର ଦଣ୍ଡ-ଭଗ୍ନ କରାଇଲେ । ତାହାରେ କ୍ରୋଧ ପ୍ରକାଶର କାରଣ ଏହି ଯେ, ମହତ୍-ଲୋକମାନେ ଯାହା ଆଚରଣ କରନ୍ତି ଇତରଲୋକମାନେ ତାହା ଅନୁକରଣ କରନ୍ତି । ଏହି ନ୍ୟାୟରେ କାଳେ ସନ୍ନ୍ୟାସିମାନେ ଦଣ୍ଡତ୍ୟାଗ କରନ୍ତି ଏହି ଆଶଙ୍କାରେ ଲୋକଶିକ୍ଷା ନିମନ୍ତେ କ୍ରୋଧ ପ୍ରକାଶ କଲେ । ୧୫୭ ।

ପଞ୍ଚମପରିଚ୍ଛେଦ ସମାପ୍ତ ।

## ଷଷ୍ଠ ପରିଚ୍ଛେଦ ।

ନୌମି ତଂ ଗୌରଚନ୍ଦ୍ରଂ ଯଃ
କୁତର୍କକର୍କଶାଶୟମ୍ ।
ସାର୍ବଭୌମଂ ସର୍ବଭୂମା
ଭକ୍ତିଭୂମାନମାଚରତ୍ ॥ ୧ ॥
ଜୟଜୟ ଗୌରଚନ୍ଦ୍ର, ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର, ଜୟ ଗୌରଭକ୍ତବୃନ୍ଦ ॥ ୧ ॥

ଆବେଶେ ଚଳିଲ ପ୍ରଭୁ ଜଗନ୍ନାଥ-ମନ୍ଦିରେ ।
ଜଗନ୍ନାଥ ଦେଖି ପ୍ରେମେ ହୋଇଲ ଅସ୍ଥିରେ ॥୨॥
ଜଗନ୍ନାଥ ଆଲିଙ୍ଗିତେ ଚଳିଲା ଧାଇୟା ।
ମନ୍ଦିରେ ପଡ଼ିଲ ପ୍ରେମେ ଆବିଷ୍ଟ ହଇୟା ॥ ୩ ॥
ଦୈବେ ସାର୍ବଭୌମ ତାହା କରେନ ଦର୍ଶନ ।
ପଡ଼ିଛା ମାରିତେ ତେଁହୋ କୈଲ ନିବାରଣ ॥୪॥

## ଷଷ୍ଠ ପରିଚ୍ଛେଦ ।

ସର୍ବଭୂମା ( ସର୍ବେଭ୍ୟଃ ପ୍ରକୃଷ୍ଟାଦିଭ୍ୟଃ ଭୂମା ମହତ୍ତ୍ୱଂ ଯସ୍ୟ ସଃ ) ଯଃ ଗୌରଚନ୍ଦ୍ରଃ, କୁତର୍କକର୍କଶାଶୟଂ-କୁତର୍କେଣ କର୍କଶଃ କଠିନଃ ଆଶୟଃ ଯସ୍ୟତଂ-ସାର୍ବଭୌମଂ ଭକ୍ତିଭୂମାନଂ ଭକ୍ତ୍ୟାସ୍ୱାଦଚତୁରଂ ଆଚରତ୍ ଅକରୋତ୍ ତଂ ଗୌରଚନ୍ଦ୍ରଂ ନୌମି । ୧ମ ଶ୍ଳୋକ ।

---

କୁତର୍କଦ୍ୱାରା ଯାହାଙ୍କର ହୃଦୟ କଠିନ ହୋଇଥିଲା, ଏମନ୍ତ ଯେ ଶ୍ରୀମନ୍ ବାସୁଦେବ ସାର୍ବଭୌମଭଟ୍ଟାଚାର୍ଯ୍ୟ ତାହାଙ୍କୁ ଯେ ପରମଭକ୍ତିରସିକ କରିଥିଲେ, ସେହି ସର୍ବଲୋକ ପ୍ରଭୁ ଶ୍ରୀମନ୍ ଗୌରଚନ୍ଦ୍ରଙ୍କୁ ମୁଁ ପ୍ରଣାମ କରେଁ । ୧ମ ଶ୍ଳୋକାର୍ଥ ।

ସାର୍ବଭୌମ—ଏହାଙ୍କର ନାମ ବାସୁଦେବ ସାର୍ବଭୌମ । ଏ ମହାଶୟ ନବଦ୍ୱୀପର ପ୍ରସିଦ୍ଧ ପଣ୍ଡିତ ଶ୍ରୀ ମହେଶ୍ୱର ବିଶାରଦଙ୍କର ଜ୍ୟେଷ୍ଠ ପୁତ୍ର । ସେ ସମୟରେ ନ୍ୟାୟଶାସ୍ତ୍ର କେବଳ ମିଥିଳାରେ ଅଧ୍ୟାପିତ ହେଉଥିଲା । ମିଥିଳାବାସୀ ଅଧ୍ୟାପକମାନେ ନ୍ୟାୟଗ୍ରନ୍ଥ ବିଦେଶୀୟ ଛାତ୍ରମାନଙ୍କୁ ଅଣିବାକୁ ଦେଉ ନ ଥିଲେ । କାରଣ ତଦ୍ଦ୍ୱାରା ନ୍ୟାୟଶାସ୍ତ୍ର ଅନ୍ୟ ଦେଶରେ ଅଧ୍ୟାପିତ ହେଲେ ମିଥିଳାର ପ୍ରାଧାନ୍ୟ ଲୋପ ହେବ । ବାଳକ ବାସୁଦେବ ନ୍ୟାୟଶାସ୍ତ୍ର ପଢ଼ିବାକୁ ମିଥିଳାକୁ ଯାଇ ଅଧ୍ୟାପକମାନଙ୍କର ଏହି କାର୍ଯ୍ୟ ଦେଖି ଦୁଃଖିତ ହୋଇ ମନେ ମନେ ସ୍ଥିର କଲେ ଯେ, ଅଧ୍ୟାପକମାନେ ସିନା ଲିଖିତ ଗ୍ରନ୍ଥ ନେବାକୁ ଦେବେ ନାହିଁ ? କିନ୍ତୁ ତାହା କଣ୍ଠସ୍ଥ କରିନେଲେ ଏମାନେ କଣ କରିବେ । ଏହା ଭାବି ଉକ୍ତ ଗ୍ରନ୍ଥମାନ କଣ୍ଠସ୍ଥ କରି ନବଦ୍ୱୀପକୁ ଆସି ନ୍ୟାୟର ଟୋଲ ସ୍ଥାପନ କଲେ । ମହାପ୍ରତିଭାଶାଳୀ ବାସୁଦେବ ନ୍ୟାୟଶାସ୍ତ୍ର ଓ ଅନ୍ୟାନ୍ୟ ଶାସ୍ତ୍ରରେ ଅଦ୍ୱିତୀୟ ପଣ୍ଡିତ ହୋଇଥିବା ଜାଣି ତାତ୍କାଳିକ ଉତ୍କଳୀୟ ସମ୍ରାଟ୍ ମହାବୀର ଓ ଭକ୍ତ୍ୟରସିକ ଶ୍ରୀମନ୍ ପ୍ରତାପରୁଦ୍ର ଦେବ ତାହାଙ୍କୁ ବହୁ ମାନ୍ୟ କରି ଆଣି ବୃତ୍ତିଦାନପୂର୍ବକ ଶ୍ରୀପୁରୁଷୋତ୍ତମରେ ରଖାଇ ନ୍ୟାୟ ବିଦ୍ୟାଳୟ ସ୍ଥାପନ କରାଇଲେ । ଏହି ବାସୁଦେବ ସାର୍ବଭୌମ ତତ୍କାଳରେ ସମଗ୍ର ଭାରତବର୍ଷରେ ଅଦ୍ୱିତୀୟ ପଣ୍ଡିତ ଥିବାରୁ ସାର୍ବଭୌମ ଉପାଧି ପାଇଥିଲେ ।

ପଡ଼ିଛା—ପରିଛା । ୪ ।

ପ୍ରଭୁର ସୌନ୍ଦର୍ଯ୍ୟ ଆର ପ୍ରେମେର ବିକାର ।
ଦେଖି ସାର୍ବଭୌମେର ହଇଲ ବିସ୍ମୟ ଅପାର ।୫।
ବହୁକ୍ଷଣେ ଚୈତନ୍ୟ ନହେ, ଭୋଗେର କାଲ ହୈଲ ।
ସାର୍ବଭୌମ ମନେ ତବେ ଉପାୟ ଚିନ୍ତିଲ ।୬।
ଶିଷ୍ୟ-ପଡ଼ିଛା ଦ୍ୱାରେ ପ୍ରଭୁ ନିଲ ବହାଇୟା ।
ଘରେ ଆନି ପବିତ୍ର ସ୍ଥାନେ ରାଖିଲ ଶୋୟାଇୟା ।
ଶ୍ୱାସ-ପ୍ରଶ୍ୱାସ ନାହି ଉଦର-ସ୍ପନ୍ଦନ ।
ଦେଖିୟା ଚିନ୍ତିତ ହୈଲ ଭଟ୍ଟାଚାର୍ଯ୍ୟେର ମନ ।୮।
ସୂକ୍ଷ୍ମ ତୁଲା ଆନି ନାସା-ଅଗ୍ରେତେ ଧରିଲ ।
ଈଷତ୍ ଚଲୟେ ତୁଲା—ଦେଖି ଧୈର୍ଯ୍ୟ ହୈଲ ।
ବସି ଭଟ୍ଟାଚାର୍ଯ୍ୟ ମନେ କରେନ ବିଚାର— ।
ଏଇ କୃଷ୍ଣମହାପ୍ରେମେର ସାତ୍ତ୍ୱିକ ବିକାର ।୧୦।
ସୂଦ୍ଦୀପ୍ତ ସାତ୍ତ୍ୱିକ ଏଇ— ନାମ ଯେ 'ପ୍ରଲୟ'
ନିତ୍ୟସିଦ୍ଧଭକ୍ତେ ସେ ସୂଦ୍ଦୀପ୍ତ ଭାବ ହୟ ।୧୧।
ଅଧିରୂଢ଼ଭାବ ଯାର, ତାର ଏ ବିକାର ।
ମନୁଷ୍ୟେର ଦେହେ ଦେଖି, ବଡ଼ ଚମତ୍କାର ।

ଚୈତନ୍ୟ ନହେ—ଚେତନା ଲାଭ ନ ହେବାରୁ ।

ଭୋଗେରକାଲ—ଶ୍ରୀ ଜଗନ୍ନାଥଦେବଙ୍କର ଭୋଗର ସମୟ । ୬ ।

ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ସର୍ବଶାସ୍ତ୍ରଦର୍ଶୀ ନୈୟାୟିକ ପଣ୍ଡିତ ଥିବାରୁ ପ୍ରତିଭାବଳରେ ସର୍ବ ଶାସ୍ତ୍ର ଆଲୋଚନା କରି ଯେଉଁ ଜ୍ଞାନ ଲାଭ କରିଥିଲେ, ସେହି ଲବ୍ଧଜ୍ଞାନବଳରେ ଶ୍ରୀମନ୍ ମହାପ୍ରଭୁଙ୍କର ଉପରଲକ୍ଷିତ ମୂର୍ଚ୍ଛାର କାରଣ ନିରୂପଣ କରୁଅଛନ୍ତି ଯେ, ଶାସ୍ତ୍ରରେ ଯେ ଶ୍ରୀକୃଷ୍ଣ-ପ୍ରେମିକର ସାତ୍ତ୍ୱିକବିକାର ବର୍ଣ୍ଣିତ ଅଛି, ତାହା ତ ଏହି ଏବଂ ଏହା ସୂଦୀପ୍ତ ସ୍ୱାଭାବିକ ଭାବର ପ୍ରଳୟ ନାମକ ବିକାର । କିନ୍ତୁ ସୂଦୀପ୍ତ ଭାବ ତ ନିତ୍ୟସିଦ୍ଧ-ଭକ୍ତମାନଙ୍କର (ନିତ୍ୟଲୋକବାସୀ ଭକ୍ତମାନଙ୍କର) ହୁଏ ଏବଂ ତାହା ମଧ୍ୟ ସେମାନଙ୍କଠାରେ ସର୍ବଦା ନ ହୋଇ ଅଧିରୂଢ଼ଭାବାପନ୍ନ ଅବସ୍ଥାରେ ହେବାର ବର୍ଣ୍ଣିତ ହୋଇଅଛି । ଏପରି ସ୍ଥଳରେ ଏତାଦୃଶ ଶାସ୍ତ୍ରବର୍ଣ୍ଣିତ ସୁଦୁର୍ଲଭ ବିକାର ଏହି ମନୁଷ୍ୟ ଦେହରେ ( ମୂର୍ଚ୍ଛିତ ଶ୍ରୀମନ୍ ମହାପ୍ରଭୁଙ୍କୁ ଲକ୍ଷ୍ୟ କରି ) କିପରି ଜାତ ହେଲା, ଏହା ବଡ଼ ଚମତ୍କାର ବିଷୟ । ଅର୍ଥାତ୍ ସାର୍ବଭୌମ ନିରୂପଣ କରି ନ ପାରି ବ୍ୟାକୁଳ ହେଲେ ।

ସାତ୍ତ୍ୱିକ—ସାକ୍ଷାତ୍ କିମ୍ବା କିଞ୍ଚିତ୍ ବ୍ୟବଧାନ ହେତୁ ଭକ୍ତର କୃଷ୍ଣସମ୍ବନ୍ଧୀୟ ଭାବାବଳୀ-ଦ୍ୱାରା ଆକ୍ରାନ୍ତ ଚିତ୍ତକୁ ସତ୍ତ୍ୱ କହାଯାଏ । ସେହି ସତ୍ତ୍ୱରୁ ଉତ୍ପନ୍ନ ଭାବାବଳୀକୁ ସାତ୍ତ୍ୱିକଭାବ କହାଯାଏ ।

ବିକାର—ଉପରୋକ୍ତ ଭାବାବଳୀ ଚିତ୍ତକୁ ବିକୃତ କରେ ବୋଲି ସେମାନଙ୍କୁ ବିକାର କୁହାଯାଏ ।

ସାତ୍ତ୍ୱିକଭାବାବଳୀ—ସ୍ତମ୍ଭ, ସ୍ୱେଦ; ରୋମାଞ୍ଚ, ସ୍ୱରଭେଦ, ବେପଥୁ (କମ୍ପ), ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ [ ମୂର୍ଚ୍ଛା ] ଏହି ଅଷ୍ଟ ।

ପ୍ରଳୟ—ସୁଖ ବା ଦୁଃଖଜନିତ ଜ୍ଞାନଶୂନ୍ୟତାରୂପ ଚେଷ୍ଟା ।

ସୂଦୀପ୍ତ—ପାଞ୍ଚ କିମ୍ବା ତତୋଽଧିକ ସାତ୍ତ୍ୱିକଭାବ ଯୁଗପତ୍ ଉଦୟ ହୋଇ ପରମୋତ୍କର୍ଷ ପ୍ରାପ୍ତ ହେଲେ ତାହାକୁ ଉଦ୍ଦୀପ୍ତ ସାତ୍ତ୍ୱିକଭାବ କୁହାଯାଏ । ଏହି ଉଦ୍ଦୀପ୍ତ ସାତ୍ତ୍ୱିକଭାବ ମହାଭାବ-ଯୁକ୍ତ ହେଲେ ତାକୁ ସୂଦୀପ୍ତ କୁହାଯାଏ ।

ଅଧିରୂଢ଼—ଉଦ୍ଦୀପ୍ତ ସାତ୍ତ୍ୱିକ ବିକାରଯୁକ୍ତ ଭାବକୁ ରୂଢ଼ଭାବ କୁହାଯାଏ । ଏହି ରୂଢ଼-ଭାବର ଅନୁଭବମାନଙ୍କଠାରୁ କୌଣସି ବୈଶିଷ୍ଟ୍ୟ ଅନୁଭାବମାନ ଯହିଁରେ ଜାତ ହୁଏ, ସେହି ଅବସ୍ଥାକୁ ଅଧିରୂଢ଼ କୁହାଯାଏ । ୧୦।୧୧।୧୨ ।

ଏତ ଚିନ୍ତି ଭଟ୍ଟାଚାର୍ଯ୍ୟ ଆଛେନ ବସିଯା ।
ନିତ୍ୟାନନ୍ଦାଦି ସିଂହଦ୍ୱାରେ ମିଲିଲା ଆସିଯା ।୧୩।
ତାହା ଶୁନି ଲୋକ କହେ ଅନ୍ୟୋନ୍ୟେ ବାତ— ।
ଏକ ସନ୍ନ୍ୟାସୀ ଆସି ଦେଖି ଜଗନ୍ନାଥ ।୧୪।
ମୂର୍ଚ୍ଛିତ ହଇଲା—ଚେତନ ନା ହୟ ଶରୀରେ ।
ସାର୍ବଭୌମ ତୈଛେ ତାଁରେ ଲଞା ଗେଲା ଘରେ ॥
ଶୁନି ସଭେ ଜାନିଲା—ଏଇ ମହାପ୍ରଭୁର କାର୍ଯ୍ୟ ।
ହେନକାଲେ ଆଇଲା ତଥା ଗୋପୀନାଥାଚାର୍ଯ୍ୟ ॥
ନଦୀୟାନିବାସୀ—ବିଶାରଦେର ଜାମାତା ।
ମହାପ୍ରଭୁର ଭକ୍ତ ତେଁହୋ ପ୍ରଭୁ ତତ୍ତ୍ୱଜ୍ଞାତା ।୧୬।
ମୁକୁନ୍ଦସହିତ ପୂର୍ବ ଆଛେ ପରିଚୟ ।
ମୁକୁନ୍ଦ ଦେଖିଯା ତାଁର ହଇଲ ବିସ୍ମୟ ।୧୮।
ମୁକୁନ୍ଦ ତାଁହାରେ ଦେଖି କୈଲା ନମସ୍କାର ।
ତେଁହୋ ଆଲିଙ୍ଗିଯା ପୁଛେ ପ୍ରଭୁର ସମାଚାର ।୧୯।
ମୁକୁନ୍ଦ କହେ—ପ୍ରଭୁର ଇହାଁ ହୈଲ ଆଗମନେ ।
ଆମି ସବ ଆସିଯାଛି ମହାପ୍ରଭୁର ସନେ ।୨୦।
ନିତ୍ୟାନନ୍ଦଗୋସାଞିରେ ଆଚାର୍ଯ୍ୟ କୈଲ ନମସ୍କାର ।
ସଭେ ମିଲି ପୁଛେ ପ୍ରଭୁର ବାର୍ତ୍ତା ଆରବାର ।୨୧।
ମୁକୁନ୍ଦ କହେ—ମହାପ୍ରଭୁ ସନ୍ନ୍ୟାସ କରିଯା ।
ନୀଳାଚଳ ଆଇଲା ସଙ୍ଗେ ଆମାସଭା ଲୈଯା ॥
ଆମାସଭା ଛାଡ଼ି ଆଗେ ଗେଲା ଦରଶନେ ।
ଆମି ସବ ପାଛେ ଆଇଲାଙ୍ ତାଁର ଅନ୍ୱେଷଣେ ॥
ଅନ୍ୟୋନ୍ୟ ଲୋକେର ମୁଖେ ଯେ କଥା ଶୁନିଲ ।
ସାର୍ବଭୌମଘରେ ପ୍ରଭୁ—ଅନୁମାନ କୈଲ ।୨୪।
ଈଶ୍ୱରଦର୍ଶନେ ପ୍ରଭୁ ପ୍ରେମେ ଅଚେତନ ।
ସାର୍ବଭୌମ ଲଞା ଗେଲା ଆପନ ଭବନ ।୨୫।
ତୋମାର ମିଲନେ ଆମାର ଯବେ ହୈଲ ମନ ।
ଦୈବେ ସେଇକ୍ଷଣେ ପାଇଲ ତୋମାର ଦର୍ଶନ ॥
ଚଲ ସବେ ଯାଇ ସାର୍ବଭୌମେର ଭବନ ।
ପ୍ରଭୁ ଦେଖି ପାଛେ କରିବ ଈଶ୍ୱରଦର୍ଶନ ।୨୬।
ଏତ ଶୁନି ଗୋପୀନାଥ ସଭାରେ ଲଇଯା ।
ସାର୍ବଭୌମଗୃହେ ଗେଲା ହରଷିତ ହୈଯା ।୨୮।
ସାର୍ବଭୌମସ୍ଥାନେ ଯାଇଯା ପ୍ରଭୁରେ ଦେଖିଲା ।
ପ୍ରଭୁ ଦେଖି ଆଚାର୍ଯ୍ୟେର ଦୁଃଖ-ହର୍ଷ ହୈଲା ॥
ସାର୍ବଭୌମେ ଜାନାଇଯା ସଭା ନିଲ ଅଭ୍ୟନ୍ତରେ ।
ନିତ୍ୟାନନ୍ଦଗୋସାଞିରେ ତେଁହୋ କୈଲ ନମସ୍କାରେ ।୩୦।
ସଭାସହିତ ଯଥାଯୋଗ୍ୟ କରିଲ ମିଲନ ।
ପ୍ରଭୁ ଦେଖି ସଭାର ହୈଲ ଦୁଃଖ-ହର୍ଷ ମନ ।୩୧।
ସାର୍ବଭୌମ ପାଠାଇଲ ସଭା ଦର୍ଶନ କରିତେ ।
ଚନ୍ଦନେଶ୍ୱର ନିଜପୁତ୍ର ଦିଲ ସଭାର ସାଥେ ।୩୨।

---

ଅନ୍ୟୋନ୍ୟେ ବାତ—ପରସ୍ପର କଥା । ୧୪ । ଗୋପୀନାଥାଚାର୍ଯ୍ୟ—ଶ୍ରୀସାର୍ବଭୌମଙ୍କର ଭଗିନୀପତି । ୧୬ ।

ବିଶାରଦ—ଶ୍ରୀ ମହେଶ୍ୱର ବିଶାରଦ ସାର୍ବଭୌମଙ୍କ ପିତା ।

ପ୍ରଭୁତତ୍ତ୍ୱଜ୍ଞାତା—ମହାପ୍ରଭୁ ଯେ ସ୍ୱୟଂ ଭଗବାନ୍ ଏହା ଜାଣିଥିଲେ । ୧୬ ।

ଈଶ୍ୱର—ଶ୍ରୀଜଗନ୍ନାଥ ଦେବ ।୨୬। ଦୁଃଖହର୍ଷ—ଶ୍ରୀଗୋପୀନାଥାଚାର୍ଯ୍ୟ ମହାପ୍ରଭୁଙ୍କୁ ସନ୍ନ୍ୟାସୀ ଦେଖି ଦୁଃଖିତ ଏବଂ ଦର୍ଶନ ଲାଭରେ ଆନନ୍ଦିତ ହେଲେ । ୨୯ ।

ତେହେଁ—ସାର୍ବଭୌମ । ୩୦ ।

ସଭାସହିତ—ମହାପ୍ରଭୁଙ୍କର ଅବଶିଷ୍ଟ ସଙ୍ଗୀ ଶ୍ରୀଦାମୋଦର, ଶ୍ରୀମୁକୁନ୍ଦ, ଓ ଶ୍ରୀଜଗଦାନନ୍ଦ ।

ଦୁଃଖହର୍ଷ—ଶ୍ରୀମନ୍ ମହାପ୍ରଭୁଙ୍କର ମୂର୍ଚ୍ଛାରେ ଦୁଃଖ, ଓ ଦର୍ଶନ ହେତୁ ଆନନ୍ଦ ।୩୧।

ଜଗନ୍ନାଥ ଦେଖି ସଭାର ହୋଇଲ ଆନନ୍ଦ ।
ଭିତରେତେ ଅବଷ୍ଟ ହୋଇଲା ପ୍ରଭୁ ନିତ୍ୟାନନ୍ଦ ॥
ସବେ ମିଳି ତବେ ତାଁରେ ସୁସ୍ଥିର କହିଲ ।
ଈଶ୍ୱରସେବକ ମାଲ୍ୟ-ପ୍ରସାଦ ଆନି ଦିଲ । ୩୪ ।
ପ୍ରସାଦ ପାଇୟା ସବେ ଆନନ୍ଦିତମନେ ।
ପୁନରପି ଆଇଲା ସବେ ମହାପ୍ରଭୁସ୍ଥାନେ । ୩୫ ।
ଉଚ୍ଚ କରି କରେ ସବେ ନାମସଙ୍କୀର୍ତ୍ତନ ।
ତୃତୀୟ-ପ୍ରହରେ ପ୍ରଭୁର ହୋଇଲ ଚେତନ । ୩୬ ।
ହୁଙ୍କାର କରିୟା ଉଠେ 'ହରିହରି' ବଲି ।
ଆନନ୍ଦେ ସାର୍ବଭୌମ ଲୈଲ ତାଁର ପଦଧୂଲି । ୩୭
ସାର୍ବଭୌମ କହେ—ଶୀଘ୍ର କରହ ମଧ୍ୟାହ୍ନ ।
ମୁଇ ଭିକ୍ଷା ଦିମୁ ଆଜି ମହାପ୍ରସାଦାନ୍ନ । ୩୮ ।
ସମୁଦ୍ର-ସ୍ନାନ କରି ମହାପ୍ରଭୁ ଶୀଘ୍ର ଆଇଲା ।
ଚରଣ ପାଖାଳି ପ୍ରଭୁ ଆସନେ ବସିଲା । ୩୯ ।
ବହୁତ ପ୍ରସାଦ ସାର୍ବଭୌମ ଆନାଇଲା ।
ତବେ ମହାପ୍ରଭୁ ସୁଖେ ଭୋଜନ କରିଲା । ୪୦ ।
ସୁବର୍ଣ୍ଣଥାଲୀର ଅନ୍ନ ଉତ୍ତମ ବ୍ୟଞ୍ଜନ ।
ଭକ୍ତଗଣ-ସଙ୍ଗେ ପ୍ରଭୁ କରେନ ଭୋଜନ । ୪୧ ।
ସାର୍ବଭୌମ ପରିବେଶନ କରେନ ଆପନେ ।
ପ୍ରଭୁ କହେ-ମୋରେ ଦେହ ଲାଫ୍ରା-ବ୍ୟଞ୍ଜନେ ।
ପିଠା-ପାନା ଦେହ ତୁମି ଇଁହାସଭାକାରେ ।
ତବେ ଭଟ୍ଟାଚାର୍ଯ୍ୟ କହେ ଯୁଡ଼ି ଦୁଇ କରେ— ।
ଜଗନ୍ନାଥ କୈଛେ କରିୟାଛେନ ଭୋଜନ ।
ଆଜି ସବ ମହାପ୍ରସାଦ କର ଆସ୍ୱାଦନ । ୪୪ ।
ଏତ ବଲି ପିଠା-ପାନା ସବ ଖାଓୟାଇଲା ।
ଭିକ୍ଷା କରାଇୟା ଆଚମନ କରାଇଲା । ୪୫ ।
ଆଜ୍ଞା ମାଗି ଗେଲା ଗୋପୀନାଥାଚାର୍ଯ୍ୟ ଲଞା ।
ପ୍ରଭୁର ନିକଟ ଆଇଲା ଭୋଜନ କରିଞା । ୪୬ ।
'ନମୋ ନାରାୟଣ' ବଲି ନମସ୍କାର କୈଲ ।
'କୃଷ୍ଣେ ମତିରସ୍ତୁ' ବଲି ଗୋସାଞି କହିଲ । ୪୭ ।
ଶୁନି ସାର୍ବଭୌମ ମନେ ବିଚାର କରିଲ— ।
ବୈଷ୍ଣବସନ୍ନ୍ୟାସୀ ଇଁହୋ—ବଚନେ ଜାନିଲ ॥
ଗୋପୀନାଥ-ଆଚାର୍ଯ୍ୟେରେ କହେ ସାର୍ବଭୌମ— ।
ଗୋସାଞିର ଜାନିତେ ଚାହି କାହାଁ ପୂର୍ବାଶ୍ରମ ? ॥
ଗୋପୀନାଥ-ଆଚାର୍ଯ୍ୟ କହେ—ନବଦ୍ୱୀପେ ଘର ।
ଜଗନ୍ନାଥ ନାମ - ପଦବୀ ମିଶ୍ରପୁରନ୍ଦର । ୫୦ ।
ବିଶ୍ୱମ୍ଭର ନାମ ଇଁହାର,—ତାଁର ଇଁହୋ ପୁତ୍ର ।
ନୀଲାମ୍ବରଚକ୍ରବର୍ତ୍ତୀର ହୟେନ ଦୌହିତ୍ର । ୫୧ ।
ସାର୍ବଭୌମ କହେ—ନୀଲାମ୍ବର ଚକ୍ରବର୍ତ୍ତୀ
ବିଶାରଦେର ସମାଧ୍ୟାୟୀ—ଏଇ ତାଁର ଖ୍ୟାତି ॥

ମିଶ୍ରାଣାଂ ପୁରନ୍ଦରଃଶ୍ରେଷ୍ଠ ଇତ୍ୟର୍ଥଃ । ୫୦ । ଚ. ଚ.

ଦିମୁ—ଦେବ । ୩୮ । ପାଖାଳି—ପଖାଳି । ୩୯ ।

ସୁବର୍ଣ୍ଣ ଥାଲୀର ଅନ୍ନ—ଶ୍ରୀଜଗନ୍ନାଥ ଦେବଙ୍କ ସୁନାଥାଳୀ ଖେଚୁଡ଼ି ଅନ୍ନ । ୪୧ ।

ଲାଫ୍ରା— ମହୁର । ୪୨ ।

ସନ୍ନ୍ୟାସୀମାନଙ୍କୁ 'ନମୋ ନାରାୟଣାୟ' ବୋଲି ନମସ୍କାର କରିବା ବିଧି, କାରଣ ସେମାନେ 'ସୋଽହଂ' ବାଦୀ । ୪୭ ।

ଇଁହୋ—ଏହି ( ଶ୍ରୀମନ୍ ମହାପ୍ରଭୁ ) କୃଷ୍ଣେମତିରସ୍ତୁ ଏହି ଆଶୀର୍ବାଦ କରିବାରୁ ଶ୍ରୀସାର୍ବଭୌମଭଟ୍ଟାଚାର୍ଯ୍ୟ ଶ୍ରୀମନ୍ ମହାପ୍ରଭୁଙ୍କୁ ବୈଷ୍ଣବ ବୋଲି ବୁଝିଲେ । ୪ ।

ପୂର୍ବାଶ୍ରମ—ସନ୍ନ୍ୟାସ ଗ୍ରହଣର ପୂର୍ବାଶ୍ରମ ଅର୍ଥାତ୍ ଜନ୍ମସ୍ଥାନ—ବାସସ୍ଥାନ, ନାମ ଇତ୍ୟାଦି । ୪୯ ।

ଯାହାଙ୍କର ନାମ 'ଜଗନ୍ନାଥ' ଏବଂ ଉପାଧି 'ମିଶ୍ର ପୁରନ୍ଦର' (ଜଗନ୍ନାଥ ମିଶ୍ର ପୁରନ୍ଦର);

ତାହାର— ଶ୍ରୀଜଗନ୍ନାଥ ମିଶ୍ର ପୁରନ୍ଦରଙ୍କର । ଇଁହୋ—ଶ୍ରୀମନ୍ ମହାପ୍ରଭୁ । ୫୧ ।

ବିଶାରଦ—ସାର୍ବଭୌମଙ୍କ ପିତା । ସମାଧ୍ୟାୟୀ—ସମାନ ଶିକ୍ଷା ଲାଭ କରିଥିଲେ, ଅର୍ଥାତ୍ ମହେଶ୍ୱର ବିଶାରଦଙ୍କ ତୁଲ୍ୟ ପଣ୍ଡିତ ଏହାହିଁ ତାହାଙ୍କର ଖ୍ୟାତି । ୫୨ ।

ମିଶ୍ରପୁରନ୍ଦର ତାଁର ମାନ୍ୟ ହେନ ଜାନି ।
ପିତାର ସମ୍ବନ୍ଧେ ଦୋହାଁ ପୂଜ୍ୟ ହେନ ମାନି ।୫୩।
ନଦୀୟା-ସମ୍ବନ୍ଧେ ସାର୍ବଭୌମ ତୁଷ୍ଟ ହୈଲା ।
ପ୍ରୀତ ହଞା ଗୋସାଞିରେ କହିତେ ଲାଗିଲା ।୫୪।
ସହଜେଇ ପୂଜ୍ୟ ତୁମି—ଆରେ ତ ସନ୍ନ୍ୟାସ ।
ଅତଏବ ଜାନିହ ତୁମି – ଆମି ନିଜ ଦାସ ।୫୫।
ଶୁନି ମହାପ୍ରଭୁ କୈଲ ଶ୍ରୀବିଷ୍ଣୁ ସ୍ମରଣ ।
ଭଟ୍ଟାଚାର୍ଯ୍ୟ କହେ କିଛୁ ବିନୟ-ବଚନ - । ୫୬ ।
ତୁମି ଜଗଦ୍‌ଗୁରୁ ସର୍ବଲୋକ-ହିତକର୍ତ୍ତା ।
ବେଦାନ୍ତ ପଡ଼ାଓ—ସନ୍ନ୍ୟାସୀର ଉପକର୍ତ୍ତା ।୫୭।
ଆମି ବାଲକ ସନ୍ନ୍ୟାସୀ – ଭାଲ-ମନ୍ଦ ନାହି ଜାନି
ତୋମାର ଆଶ୍ରୟ ନିଲ—'ଗୁରୁ' କରି ମାନି ।୫୮।
ତୋମାର ସଙ୍ଗ ଲାଗି ମୋର ଏଥା ଆଗମନ ।
ସର୍ବପ୍ରକାରେ ଆମାର କରିବେ ପାଲନ ।୫୯।
ଆଜି ଯେ ହଇଲ ଆମାର ବଡ଼ଇ ବିପତ୍ତି ।
ତାହା-ହୈତେ କୈଲେ ତୁମି ଆମାର-ଅବ୍ୟାହତି
ଭଟ୍ଟାଚାର୍ଯ୍ୟ କହେ ଏକଲେ ନା ଯାଇହ ଦର୍ଶନେ ।
ଆମା ସଙ୍ଗେ ଯାଇହ-କିବା ଆମାର ଲୋକସନେ ।
ପ୍ରଭୁ କହେ—ମନ୍ଦିର-ଭିତର ନା ଯାଇବ ।
ଗରୁଡ଼େର ପାଛେ ରହି ଦର୍ଶନ କରିବ । ୬୨ ।

ଗୋପୀନାଥ-ଆଚାର୍ଯ୍ୟେରେ କହେ ସାର୍ବଭୌମ— ।
ତୁମି ଗୋସାଞିରେ ଲଞା କରାଇହ ଦର୍ଶନ ।୬୩।
ଆମା'ର ମାତୃଷ୍ୱସା-ଗୃହ ନିର୍ଜ୍ଜନସ୍ଥାନ ।
ତାହାଁ ବାସା ଦେହ—କର ସର୍ବ ସମାଧାନ ।୬୪।
ଗୋପୀନାଥ ପ୍ରଭୁ ଲଞା ତାହାଁ ବାସା ଦିଲ ।
ଜଲ-ଜଲପାତ୍ରାଦିକ-ସମାଧାନ କୈଲ । ୬୫ ।
ଆରଦିନ ଗୋପୀନାଥ ପ୍ରଭୁସ୍ଥାନେ ଗିୟା ।
ଶଯ୍ୟୋତ୍ଥାନ-ଦରଶନ କରାଇଲ ଲଞା । ୬୬ ।
ମୁକୁନ୍ଦଦତ୍ତ ଲଞା ଆଇଲ ସାର୍ବଭୌମ-ସ୍ଥାନେ ।
ସାର୍ବଭୌମ କିଛୁ ତାଁରେ ବଲିଲ ବଚନେ ।୬୭।
ପ୍ରକୃତି ବିନୀତ ସନ୍ନ୍ୟାସୀ ଦେଖିତେ ସୁନ୍ଦର ।
ଆମାର ବହୁ ପ୍ରୀତି ବାଢ଼େ ଇଁହାର ଉପର ।୬୮।
କୋନ୍ ସମ୍ପ୍ରଦାୟେ ସନ୍ନ୍ୟାସ କରିୟାଛେନ ଗ୍ରହଣ ?
କିବା ନାମ ଇଁହାର ?—ଶୁନିତେ ହୟ ମନ ।୬୯।
ଗୋପୀନାଥ କହେ—ନାମ ଶ୍ରୀକୃଷ୍ଣଚୈତନ୍ୟ ।
ଗୁରୁ ଇଁହାର – କେଶବଭାରତୀ ମହାଧନ୍ୟ ॥
ସାର୍ବଭୌମ କହେ—ଏଇ ନାମ ସର୍ବୋତ୍ତମ ।
ଭାରତୀ-ସମ୍ପ୍ରଦାୟ ଇଁହୋ ହୟେନ ମଧ୍ୟମ ।୭୧।

---

ତାଁର—ବିଶାରଦଙ୍କର । ଦୋହାଁ—ଶ୍ରୀନୀଲାମ୍ବର ଚକ୍ରବର୍ତ୍ତୀ ଓ ଶ୍ରୀଜଗନ୍ନାଥ ମିଶ୍ର ପୁରନ୍ଦର । ୫୩ ।

ପୂଜ୍ୟ—ଆତ୍ମୀୟ ଜ୍ଞାନରେ ପ୍ରୀତିପାତ୍ର । ୫୫ ।

ଜଗଦ୍‌ଗୁରୁ—ସନ୍ନ୍ୟାସୀମାନଙ୍କୁ ଜଗଦ୍‌ଗୁରୁ ବୋଲି କୁହାଯାଏ । କାରଣ ସେମାନେ ଜଗଦ୍‌ବାସୀମାନଙ୍କର ପୂଜ୍ୟ ଓ ପ୍ରଣମ୍ୟ, ସାର୍ବଭୌମ ଗୃହସ୍ଥ ହେଲେହେଁ ସନ୍ନ୍ୟାସୀମାନଙ୍କୁ ବେଦାନ୍ତ ଶିକ୍ଷା ଦେଉ ଥିବାରୁ ସେମାନଙ୍କର ଗୁରୁ ଏଣୁ ସେ ମଧ୍ୟ ଜଗଦ୍‌ଗୁରୁ । ୫୬ ।

ବଡ଼ଇବିପତ୍ତି—ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ମୂର୍ଚ୍ଛା । ୬୦ ।

ମନ୍ଦିର ଭିତର—ଯହିଁରେ ରତ୍ନସିଂହାସନ ଉପରେ ଶ୍ରୀଜଗନ୍ନାଥ ବିଜେ କରିଅଛନ୍ତି ।

ମାତୃଷ୍ୱସା—ମାଉସୀ । ୬୪ । କିବା ନାମ— ଏହାଙ୍କର ସନ୍ନ୍ୟାସାଶ୍ରମରେ କି ନାମ ।୬୯

କଥିତ ଅଛି ଶ୍ରୀମତ୍ ଶଙ୍କରାଚାର୍ଯ୍ୟଙ୍କର ଦଶନାମୀ ଶିଷ୍ୟମାନଙ୍କ ମଧ୍ୟରୁ ଗିରିପ୍ରଭୃତି କେତେକ ଶିଷ୍ୟ ଅପରାଧ କରିଥିବାରୁ ଶ୍ରୀ ଶଙ୍କରାଚାର୍ଯ୍ୟ ସେମାନଙ୍କର ଦଣ୍ଡ କାଢ଼ିନେବାରୁ ସେମାନେ ହୀନସମ୍ପ୍ରଦାୟ ଗଣ୍ୟ ହେଲେ, ଏବଂ ଭାରତୀ ଅର୍ଦ୍ଧଦଣ୍ଡ କାଢ଼ି ନେବାରୁ ମଧ୍ୟମ, ଏବଂ ତୀର୍ଥ, ଆଶ୍ରମ ଓ ସରସ୍ୱତୀ ଏମାନେ ନିରପରାଧୀହେତୁ ଉତ୍ତମ । ୭୧ ।

ଗୋପୀନାଥ କହେ-ଇଁହାର ନାହି ବାହ୍ୟାପେକ୍ଷା ।
ଅତଏବ ବଡ଼ ସମ୍ପ୍ରଦାୟ କରହ ଉପେକ୍ଷା ।୭୨।
ଭଟ୍ଟାଚାର୍ଯ୍ୟ କହେ—ଇଁହାର ପ୍ରୌଢ଼ଯୌବନ ।
କେମତେ ସନ୍ନ୍ୟାସ-ଧର୍ମ ହଇବେ ରକ୍ଷଣ ? ।୭୩।
ନିରନ୍ତର ଇଁହାରେ ଆମି ବେଦାନ୍ତ ଶୁନାଇବ ।
ବୈରାଗ୍ୟ ଅଦ୍ୱୈତମାର୍ଗେ ପ୍ରବେଶ କରାଇବ ॥
କହେନ ଯଦି ପୁନରପି ଯୋଗପଟ୍ଟ ଦିଯା ।
ସଂସ୍କାର କରିଯେ ଉତ୍ତମସମ୍ପ୍ରଦାୟ ଆନିଯା ॥
ଶୁନି ଗୋପୀନାଥ ମୁକୁନ୍ଦ ଦୌଁହେ ଦୁଃଖୀ ହୈଲା ।
ଗୋପୀନାଥ-ଆଚାର୍ଯ୍ୟ କିଛୁ କହିତେ ଲାଗିଲା ॥
ଭଟ୍ଟାଚାର୍ଯ୍ୟ ତୁମି ଇଁହାର ନା ଜାନ ମହିମା ।
ଭଗବତ୍ତା-ଲକ୍ଷଣେର ଇଁହାତେଇ ସୀମା ।୭୬।
ତାହାତେ ବିଖ୍ୟାତ ଇଁହୋ ପରମ-ଈଶ୍ୱର ।
ଅଜ୍ଞ-ସ୍ଥାନେ କିଛୁ ନହେ, ବିଜ୍ଞେର ଗୋଚର ॥
ଶିଷ୍ୟଗଣ କହେ—ଈଶ୍ୱର କହ କୋନ୍
ପ୍ରମାଣେ ? ।
ଆଚାର୍ଯ୍ୟ କହେ--ବିଜ୍ଞମତ ଈଶ୍ୱର-ଲକ୍ଷଣେ।୭୯।
ଭଟ୍ଟାଚାର୍ଯ୍ୟ କହେ—ଈଶ୍ୱରତତ୍ତ୍ୱ ସାଧି ଅନୁମାନେ
ଆଚାର୍ଯ୍ୟ କହେ—ଈଶ୍ୱରତତ୍ତ୍ୱ ସାଧ ଅନୁମାନେ ।
ଅନୁମାନପ୍ରମାଣେ ନହେ ଈଶ୍ୱରତତ୍ତ୍ୱଜ୍ଞାନେ ।
କୃପା-ବିନେ ଈଶ୍ୱରତତ୍ତ୍ୱ କେହୋ ନାହି ଜାନେ ॥
ଈଶ୍ୱରେର କୃପା-ଲେଶ ହୟେ ତ ଯାହାରେ ।
ସେ-ଇ ତ ଈଶ୍ୱରତତ୍ତ୍ୱ ଜାନିବାରେ ପାରେ ।୮୨।

---

ବାହ୍ୟାପେକ୍ଷା—ଗୌରବର ଅପେକ୍ଷା, ଅର୍ଥାତ୍ ବଡ଼ ସମ୍ପ୍ରଦାୟରେ ପାକିଥିଲେ ଗୌରବାନ୍ୱିତ ହେବେବୋଲି ଆକାଙ୍କ୍ଷା । ୭୨ ।

ପ୍ରୌଢ଼—ପ୍ରବୃଦ୍ଧ, ପୂର୍ଣ୍ଣ ।୭୩। ବେଦାନ୍ତ—ବ୍ରହ୍ମସୂତ୍ର (ଏହା ଶ୍ରୀ ବ୍ୟାସଦେବଙ୍କ କୃତ)

ଶୁନାଇବ—ବେଦାନ୍ତର ଶାଙ୍କରଭାଷ୍ୟଦ୍ୱାରା ତାହା ବୁଝାଇବି ।

ବୈରାଗ୍ୟ—ପ୍ରାକୃତ ବସ୍ତୁରେ ଆସକ୍ତିଶୂନ୍ୟତା ।

ଅଦ୍ୱୈତମାର୍ଗ — ନିର୍ବିଶେଷ ବ୍ରହ୍ମସତ୍ୟ, ଜଗନ୍ମିଥ୍ୟା, ଜୀବହିଁ ବ୍ରହ୍ମ, ଏହା ଯେଉଁ ମାର୍ଗର ମତ । ୭୪ ।

ଯୋଗପଟ୍ଟ—ସନ୍ନ୍ୟାସୀମାନଙ୍କର ବେଶ ବିଶେଷ । ୭୫ । ମହିମା—ମାହାତ୍ମ୍ୟ । ଭାଗବତ ଲକ୍ଷଣମାନ ଏହାଙ୍କ ଠାରେ ଶେଷସୀମା (ପୂର୍ଣ୍ଣତା) ପ୍ରାପ୍ତ ହୋଇ ଅଛନ୍ତି । ବା ଏହାଙ୍କଠାରୁ ଉଦ୍ଭବ ହୋଇଅଛନ୍ତି । ଅତଏବ ଭାବ ଏହି ଯେ, ଏ ସ୍ୱୟଂ ଭଗବାନ୍ । ୭୬ ।

ବିଜ୍ଞ—ଏଠାରେ କୃଷ୍ଣତତ୍ତ୍ୱଜ୍ଞ । ଅଜ୍ଞ - କୃଷ୍ଣତତ୍ତ୍ୱ ଅନଭିଜ୍ଞ । ୭୮ ।

ଶିଷ୍ୟଗଣ—ସାର୍ବଭୌମଙ୍କର ଶିଷ୍ୟମାନେ ।

ପ୍ରମାଣେ—ନ୍ୟାୟଶାସ୍ତ୍ରୋକ୍ତ ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଆଦି ପ୍ରମାଣ, ଅର୍ଥାତ୍ ଜଗତ୍ ଦେଖି ସୃଷ୍ଟିକର୍ତ୍ତା ଅଛନ୍ତି, ଏହି ଅନୁମାନରେ ଯେପରି ଈଶ୍ୱରନିରୂପଣ କରାଯାଏ, ଏହାହିଁ ଈଶ୍ୱରଙ୍କର ଅସ୍ତିତ୍ୱବିଷୟରେ ପ୍ରମାଣ, ଏହିପରି ଏହି ସନ୍ନ୍ୟାସୀ ( ଶ୍ରୀମନ୍ ମହାପ୍ରଭୁ ) ଯେ ଈଶ୍ୱର ଏହାର ପ୍ରମାଣ କଣ ? ଶିଷ୍ୟମାନଙ୍କର ଏହି ପ୍ରଶ୍ନ ଶୁଣି ଶ୍ରୀ ଗୋପୀନାଥ ଆଚାର୍ଯ୍ୟ କହିଲେ, ଯେ ବିଜ୍ଞବ୍ୟକ୍ତିମାନେ ଈଶ୍ୱରଙ୍କର ଲକ୍ଷଣବିଷୟରେ ଯେଉଁ ମତ ଦେଇଅଛନ୍ତି; ସେହି ଲକ୍ଷଣମାନ ଏହାଙ୍କଠାରେ ଥିବାରୁ ଏ ଈଶ୍ୱର । ୭୯ ।

ଭଟ୍ଟାଚାର୍ଯ୍ୟ କହିଲେ ଯେ;—ଈଶ୍ୱର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ନୁହନ୍ତି, ତାହାଙ୍କର ସତ୍ତ୍ୱ-ଜ୍ଞାନ ଅନୁମାନସିଦ୍ଧ ମାତ୍ର, ଅତଏବ ଏହି ସନ୍ନ୍ୟାସିଙ୍କୁ ଈଶ୍ୱର ବୋଲି କପରି ବୁଝାଯିବ ?

ଆଚାର୍ଯ୍ୟ କହିଲେ, ଆପଣ ଅନୁମାନଦ୍ୱାରା ଈଶ୍ୱରତତ୍ତ୍ୱ ସାଧନ୍ତି, କିନ୍ତୁ ଈଶ୍ୱର ଅନୁମାନ ପ୍ରମାଣସିଦ୍ଧ ନୁହନ୍ତି, ତାହାଙ୍କର କୃପା ନ ହେଲେ ତାହାଙ୍କର ତତ୍ତ୍ୱଜ୍ଞାନ ( ସ୍ୱରୂପଜ୍ଞାନ ) କାହାରିକୁ ହୁଏ ନା, ଯାହାଙ୍କଠାରେ ତାଙ୍କର କିଞ୍ଚିତ୍ କୃପା ହୁଏ, ସେହିବ୍ୟକ୍ତିହିଁ ତାହାଙ୍କର ତତ୍ତ୍ୱ ଜାଣିପାରେ, ଏହାର ପ୍ରମାଣ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀ ବ୍ରହ୍ମାଙ୍କର ସ୍ତୁତିବାକ୍ୟ । ୮୦ । ୮୧ ।

ତଥାହି ( ଭାଃ—୧୦।୧୪।୨୯ )—

ତଥାପି ତେ ଦେବ ପଦାମ୍ବୁଜଦ୍ୱୟ-
ପ୍ରସାଦଲେଶାନୁଗୃହୀତ ଏବ ହି ।
ଜାନାତି ତତ୍ତ୍ୱଂ ଭଗବନ୍ମହିମ୍ନୋ,
ନ ଚାନ୍ୟ ଏକୋଽପି ଚିରଂ ବିଚିନ୍ୱନ୍ ।।

ଯଦ୍ୟପି ଜଗଦ୍‌ଗୁରୁ ତୁମି ଶାସ୍ତ୍ରଜ୍ଞାନବାନ୍ ।
ପୃଥିବୀତେ ନାହି ପଣ୍ଡିତ ତୋମାର ସମାନ । ୮୩।

ଈଶ୍ୱରେର କୃପାଲେଶ ନାହିକ ତୋମାତେ ।
ଅତଏବ ଈଶ୍ୱରତତ୍ତ୍ୱ ନା ପାର ଜାନିତେ । ୮୪ ।
ତୋମାର ନାହିକ ଦୋଷ—ଶାସ୍ତ୍ରେ ଏଇ କହେ ।–
ପାଣ୍ଡିତ୍ୟାଦ୍ୟେ ଈଶ୍ୱରତତ୍ତ୍ୱ କଭୁ ଜ୍ଞାତ ନହେ ।
ସାର୍ବଭୌମ କହେ—ଆଚାର୍ଯ୍ୟ ! କହ
ସାବଧାନେ ।
ତୋମାତେ ତାହାର କୃପା—ଇଥେ କି
ପ୍ରମାଣେ ? । ୮୬ ।

( ତୋଷଣୀ ) ଯଦ୍ୟପ୍ୟେବଂ ଅପରଚ୍ଛିନ୍ନଂ ତ୍ୱନ୍ମାହାତ୍ମ୍ୟଂ ପ୍ରତ୍ୟୁତେମେବ, ତଥାପି ତ୍ୱତ୍ପ୍ରସାଦେନୈବ ତ୍ୱଦ୍‌ବିବେକସ୍ୟ ତତ୍ପରସରଗନଂ ସ୍ୟାତ୍ତୁ ନତ୍ୱନ୍ୟଥା ଇତ୍ୟାହ, ଅଥାପୀତି । ଯୋଜନାବଷ୍ଟୋ ତବ ଚ ଅଥାପି ତବ ମହିମ୍ନସ୍ତତ୍ତ୍ୱଂ ଜାନାତି ଇତ୍ୟନେନ ଦ୍ୱିପ୍ରକରଣେ ବିବର୍ତ୍ତ-ବାଦମସ୍ୟ ବ୍ୟାଖ୍ୟାନଞ୍ଚ ତ୍ରୁଟ୍ୟତେମେବ, ପଦାର୍ଥାସ୍ତୁ ଦର୍ଶ୍ୟନ୍ତେ । ଦେବ ! ହେ ସର୍ବପ୍ରକାଶକ । ସର୍ବସ୍ୱପ୍ରକାଶମାନ ! ଇତିବା ଯଦ୍ୱା ଶ୍ରୀବୃନ୍ଦାବନେ ଯଦାକ୍ରୀଡ଼ତ ଇତି ଦେବଃତସ୍ୟ ସମ୍ବୋଧନଂ, ପ୍ରସାଦଃ କୃପା ତସ୍ୟଲେଶେନାପି ଅନୁଗୃହୀତଃ, ଏବେତିଚମେଵୈବଲୂଣତେ ଇତ୍ୟାଦ ଶ୍ରୁତିଂ ସ୍ମୃତିମ୍ପି ହିତ୍ୟୈଷୁ ପାଦାମ୍ବୁଜଟକପ୍ରୟୋଗଃ, ହିନିଶ୍ଚିତଂ ଭଗବନ୍ ? ହେ ନିଜ-କାରୁଣ୍ୟାଦିଗୁଣପ୍ରକଟନପର ଇତ୍ୟର୍ଥଃ, ଅସ୍ୟଂ ପ୍ରସାଦହେତୁରୂହ୍ୟଃ, ମହିମ୍ନଃ ଚତୁଃ ମସ୍ୟାପିଦେବ ବପୁଷରିତ୍ୟାଦଭିଃ ଅପରଚ୍ଛେଦ୍ୟତୟା ପ୍ରକାନ୍ତସ୍ୟ କୋବେତ୍ତିଭୂମନ୍ନିତ୍ୟାଦନା ତଥାଭ୍ୟସ୍ତସ୍ୟାପି ତତ୍ତ୍ୱଂସ୍ୱରୂପଂ ଯତ୍ତୁକିଞ୍ଚିତ୍ତୁ ଅନୁଭବତି, ଅନ୍ୟପ୍ରସାଦହୀନଃ ଏବ ଏକାକୀନଃସଙ୍ଗଃ ସନ୍ନପୀତ୍ୟର୍ଥଃ, ଶ୍ରେଷ୍ଠୋଚୁଦ୍ରାଦରପି ଇତିବ, ବିଚିନ୍ୱନ୍ ତତ୍ତ୍ୱଂଜ୍ଞାତୁଂ ବ୍ୟଗ୍ରବେଦ ଶାସ୍ତ୍ରାଭ୍ୟାସେନ ବିଗ୍ରହଯୁକ୍ତ ଯୋଗାଭ୍ୟାସେନ ଚ ମୃଗୟନ୍ନପୀତ୍ୟର୍ଥଃ । ଲେଶେତ୍ୟୁକ୍ତିଃ ତସ୍ୟ ବର୍ଦ୍ଧିଷ୍ଣୋଃ ଦ୍ରମେଣ ଦୁର୍ଭ୍ରପ୍ରାପ୍ୟଭିପ୍ରାୟେଣ । ଏସ୍ତ ଶ୍ଳୋକ ।

ଯଦ୍ୟପି ମୁକ୍ତି ଜ୍ଞାନଦ୍ୱାରା ସାଧ୍ୟ, ଏହାକୁ ଲକ୍ଷ୍ୟ କରି ବ୍ରହ୍ମା କହୁଅଛନ୍ତି, ହେ ଦେବ ? ( ଶ୍ରୀବୃନ୍ଦାବନବିହାରୀ ) ହେ ଭଗବାନ୍ ? ( ସର୍ବୈଶ୍ୱର୍ଯ୍ୟପୂର୍ଣ୍ଣ ) ତଥାପି ତୁମ୍ଭର ତତ୍ତ୍ୱଜ୍ଞାନ ( ସ୍ୱରୂପଗତ ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ଅନୁଭବ ) ତୁମ୍ଭର ଶ୍ରୀଚରଣକମଳ ଯୁଗଳର କିଞ୍ଚିତ୍ ଅନୁଗ୍ରହ ବ୍ୟତୀତ କାହାରି ଲାଭ ହୁଏ ନା, ତୁମ୍ଭର କୃପାବିହୀନ ଯେ କୌଣସି ବ୍ୟକ୍ତି ଜ୍ଞାନଦ୍ୱାରା ଚିରକାଳ ( ଜନ୍ମଜନ୍ମାନ୍ତରେ ) ବିଚାରଦ୍ୱାରା ତାହାର କିଞ୍ଚିତ୍ ମାତ୍ର ଲାଭ କରିପାରେ ନା ଏସ୍ତ ଶ୍ଳୋକାର୍ଥ ।

ସାବଧାନେ—ବିବେଚନାପୂର୍ବକ । ୮୬ ।

ଆଚାର୍ଯ୍ୟ କହେ - ବସ୍ତୁବିଷୟେ ହୟ ବସ୍ତୁ ଜ୍ଞାନ ।
ବସ୍ତୁତତ୍ତ୍ୱଜ୍ଞାନ ହୟ କୃପାତେ ପ୍ରମାଣ ।୮୭।
ଇଁହାର ଶରୀରେ ସବ ଈଶ୍ୱର-ଲକ୍ଷଣ ।
ମହାପ୍ରେମାବେଶ ତୁମି ପାଇଆଛ ଦର୍ଶନ ।୮୮।
ତବୁ ତ ଈଶ୍ୱରଜ୍ଞାନ ନା ହୟ ତୋମାର ।
ଈଶ୍ୱରମାୟାୟ କରେ ଏଇ ବ୍ୟବହାର ।୮୯।
ଦେଖିଲେ ନା ଦେଖେ ତାରେ ବହିର୍ମୁଖଜନ ।
ଶୁନି ହାସି ସାର୍ବଭୌମ କହିଲ ବଚନ—।୯୦।
ଇଷ୍ଟଗୋଷ୍ଠୀ ବିଚାର କରି, ନା କରିହ ରୋଷ ।
ଶାସ୍ତ୍ରଦୃଷ୍ଟ୍ୟେ କହି କିଛୁ ନା ଲଇହ ଦୋଷ ॥
ମହାଭାଗବତ ହୟ ଚୈତନ୍ୟଗୋସାଞି ।
ଏଇ କଲିକାଲେ ବିଷ୍ଣୁ-ଅବତାର ନାଞି ।୯୨।
ଅତଏବ 'ତ୍ରିଯୁଗ' କରି କହି ବିଷ୍ଣୁନାମ ।
କଲିଯୁଗେ ଅବତାର ନାହି ଶାସ୍ତ୍ରଜ୍ଞାନ ।୯୩।
ଶୁନିଞା ଆଚାର୍ଯ୍ୟ-କହେ ଦୁଃଖୀ ହୈଞା ମନେ ।
'ଶାସ୍ତ୍ରଜ୍ଞ' କରିଞା ତୁମି କର ଅଭିମାନେ ।୯୪।
ଭାଗବତ ଭାରତ ଦୁଇ—ଶାସ୍ତ୍ରେର ପ୍ରଧାନ ।
ସେଇ ଦୁଇ-ଗ୍ରନ୍ଥବାକ୍ୟେ ନାହି ଅବଧାନ ? ॥
ସେଇ ଦୁଇ କହେ—କଲିତେ ସାକ୍ଷାତ୍ ଅବତାର ।
ତୁମି କହ —କଲିତେ ନାହି ବିଷ୍ଣୁର ପ୍ରଚାର ? ।

---

କଲାବିତି । ଲୀଳାବତାରତ୍ୱଂ ପାରିଭାଷିକଃ, ତତ୍ତୁ କୁମାରାଦିପଞ୍ଚବିଂଶତିସଙ୍ଖ୍ୟକୋ ନତୁ ଲୀଳାର୍ଥେ ଅବତାର ଇତି ଯୌଗିକଃ, ତତ୍ରେ ଶ୍ରୀଚୈତନ୍ୟସ୍ୟାପି ଲୀଳାବତାରତା ସ୍ୟାତ୍ ।୯୩। ଚ.ଚ.

---

ଶ୍ରୀ ଗୋପୀନାଥଆଚାର୍ଯ୍ୟ କହିଲେ ଯେପରି ଦ୍ରବ୍ୟର ଉପାଦାନଗତ ଜ୍ଞାନଦ୍ୱାରା ଦ୍ରବ୍ୟର ସମ୍ୟକ୍ ଜ୍ଞାନ ଲାଭହୁଏ, ସେହିପରି ମୁଁ ଯେ ଏହାଙ୍କର ତତ୍ତ୍ୱଜ୍ଞାନ ଲାଭକରି ଏହାଙ୍କୁ ସ୍ୱୟଂ ଭଗବାନ୍ ବୋଲି ଜାଣିଅଛି, ଏହାହିଁ ତାଙ୍କର ମୋ ପ୍ରତି କୃପାର ପ୍ରମାଣ, ମୁଁ ଏହାଙ୍କର ଯେଉଁ ଯେଉଁ ଲକ୍ଷଣ ଓ କ୍ରିୟା ଦେଖି ଏହାଙ୍କୁ ସ୍ୱୟଂ ଭଗବାନ ବୋଲି ବୁଝୁଅଛି, ତୁମ୍ଭେ ମଧ୍ୟ ଏହାଙ୍କ ଶରୀରରେ ସେହି ସେହି ଲକ୍ଷଣ ଓ ଏହାଙ୍କର ମହାପ୍ରେମାବେଶ ଦେଖିଅଛ । ତଥାପି ତୁମ୍ଭେ ଏହାଙ୍କୁ ଈଶ୍ୱର ବୋଲି ଜାଣି ପାରୁ ନାହିଁ, କାରଣ ତୁମ୍ଭପ୍ରତି ତାଙ୍କର କୃପା ହୋଇନାହିଁ ବୋଲି ସେ ତୁମ୍ଭଙ୍କୁ ତାଙ୍କର ମାୟାଦ୍ୱାରା ଆଚ୍ଛନ୍ନ କରି ରଖିଅଛନ୍ତି, ଏହା କେବଳ ତୁମ୍ଭପକ୍ଷରେ ନୁହେଁ, ଏହା ସବୁ ବହିର୍ମୁଖଙ୍କର ଅର୍ଥାତ୍ ତାଙ୍କର କୃପାବହିର୍ମୁଖୀନ ଲୋକମାନଙ୍କର ହୋଇଥାଏ । ଅର୍ଥାତ୍ ସେମାନେ ତାଙ୍କୁ ସାକ୍ଷାତ୍ ଦେଖି ସୁଦ୍ଧା ଚିହ୍ନିପାରନ୍ତି ନାହିଁ । ୮୭ ଠାରୁ ୯୦ ।

ଇଷ୍ଟଗୋଷ୍ଠୀବିଚାର—ଅନୁରାଗଭାବରେ ତତ୍ତ୍ୱାଲୋଚନା, ଏହା ତର୍କର ବିପରୀତ ।୯୧।

ମହାଭାଗବତ—ପରମଭକ୍ତ । ସାର୍ବଭୌମ କହିଲେ, ଶାସ୍ତ୍ରରେ ଅଛି ଯେ, କଲିଯୁଗରେ ବିଷ୍ଣୁ ଅବତାର ଗ୍ରହଣ କରନ୍ତି ନାହିଁ, ଏହିହେତୁ ଏହି ଶ୍ରୀକୃଷ୍ଣଚୈତନ୍ୟଙ୍କର ଲକ୍ଷଣ ଓ ବ୍ୟବହାର ଦେଖି ସୁଦ୍ଧା ତାଙ୍କୁ ଈଶ୍ୱର ବୋଲି ସ୍ୱୀକାର କରିପାରୁ ନାହିଁ । ତେବେ-ସେ ଯେ ଜଣେ ଶ୍ରେଷ୍ଠ ଭକ୍ତ, ଏହାହିଁ ମୋର ବିଶ୍ୱାସ । ୯୨ ।

ଅତଏବ—କଲିଯୁଗରେ ବିଷ୍ଣୁ ଅବତୀର୍ଣ୍ଣ ହୁଅନ୍ତି ନାହିଁ ବୋଲି । ୯୩ ।

ଭାଗବତ—ଶ୍ରୀମଦ୍‌ଭାଗବତ । ଭାରତ—ମହାଭାରତ । ଅବଧାନ—ମନୋନିବେଶ ।୯୫

ସାକ୍ଷାତ୍—ସ୍ୱୟଂ ( ଅଂଶକଳାଦ୍ୱାରା ନୁହେଁ ) । ୯୬ ।

ଲୀଳାବତାର—ଜଗତ୍‌ପକ୍ଷରେ କୌଣସି ପ୍ରୟୋଜନ ନ ଥିଲେ ସୁଦ୍ଧା ଭଗବାନ ଆତ୍ମପ୍ରୟୋଜନରେ ଓ ଭକ୍ତାନୁଗ୍ରହ ପ୍ରକାଶେ ଜଗତରେ ସ୍ୱେଚ୍ଛାକ୍ରମେ ଆବିର୍ଭୂତ ହେଲେ ତାହାକୁ ଲୀଳାବତାର କୁହାଯାଏ । ଏହା ଅସ୍ଥାୟୀ ଓ ସ୍ଥାୟୀ ଉଭୟବିଧ ହୋଇଥାଏ ।

ଅସ୍ଥାୟୀ—ତତ୍କାଳିକ ଆବିର୍ଭାବ ଓ ଲୀଳାର ପ୍ରୟୋଜନସମାପ୍ତିର ପର ଅନ୍ତର୍ଦ୍ଧାନ, ଯେପରି ଶ୍ରୀନୃସିଂହ ।

କଲିଯୁଗେ ଲୀଲାବତାର ନା କରେ ଭଗବାନ ।
ଅତଏବ 'ତ୍ରିଯୁଗ' କରି କହି ତାଁର ନାମ ।୯୭।
ପ୍ରତିଯୁଗେ କରେ କୃଷ୍ଣ ଯୁଗ-ଅବତାର ।
ତର୍କନିଷ୍ଠ ହୃଦୟ ତୋମାର—ନାହିକ ବିଚାର ।
ତଥାହି ( ଭାଃ—୧୦।୮।୧୩ )—
ଆସନ୍ ବର୍ଣ୍ଣାସ୍ତ୍ରୟୋ ହ୍ୟସ୍ୟ ଗୃହ୍ଣତୋଽନୁଯୁଗଂ ତନୂଃ
ଶୁକ୍ଳୋ ରକ୍ତସ୍ତଥା ପୀତ ଇଦାନୀଂ କୃଷ୍ଣତାଂ ଗତଃ ।

ତତ୍ରୈବ ( ୧୧।୫।୩୨ )—
କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦମ୍ ।
ଯଜ୍ଞୈଃ ସଂକୀର୍ତ୍ତନପ୍ରାୟୈର୍ଯଜନ୍ତି ହି ସୁମେଧସଃ ।୪।
ମହାଭାରତେ ଚ ଦାନଧର୍ମେ ବିଷ୍ଣୁସହସ୍ରନାମ-
ସ୍ତୋତ୍ରେ ( ୮୦ ; ୨୩ )—
ସୁବର୍ଣ୍ଣବର୍ଣ୍ଣୋ ହେମାଙ୍ଗୋ ବରାଙ୍ଗଶ୍ଚନ୍ଦନାଙ୍ଗଦୀ ।
ସନ୍ନ୍ୟାସକୃଚ୍ଛମଃ ଶାନ୍ତୋ ନିଷ୍ଠାଶାନ୍ତିପରାୟଣଃ ।୫

ପ୍ରତିଇତି । କଲିଯୁଗେଽବତାରେ ନାସ୍ତ୍ୟେବ ଇତି ଯାବଦ୍ଭୌମେନ ଯଦଗଦତ୍ତଂ
ତତ୍ପୂର୍ବପକ୍ଷାଶ୍ରୟ ସିଦ୍ଧାନ୍ତଯୁକ୍ତି ନତୁ ଶ୍ରୀଚୈତନ୍ୟସ୍ୟାବତାରାପେକ୍ଷୟା ତଦ୍ଭେଦସ୍ୟଯୁଗାବତାରତାସ୍ୟାତ୍
।୯୮। ଚ. ଚ.

ସପ୍ତାହକ—କଲ୍ପାଦିକ୍ରମେ ଆବିର୍ଭାବ ଓ ଲୀଲାନ୍ତେ ତିରୋଭାବ । ଯେପରି ଶ୍ରୀ ରଘୁନାଥ ।୯୭।

ଯୁଗାବତାର—ଧର୍ମସଂସ୍ଥାପନ ସକାଶେ ଭଗବାନ୍ ଯେ ଯୁଗେ ଯୁଗେ ଅବତୀର୍ଣ୍ଣ ହୁଅନ୍ତି ତାହା ଯୁଗାବତାର ।

ପ୍ରତିଯୁଗେ—ଶ୍ରୀଗୋପୀନାଥାଚାର୍ଯ୍ୟ ଏହି ପଦ୍ୟାବଳୀ ବଚନଦ୍ୱାରା ଶ୍ରୀମନ୍ମହାପ୍ରଭୁଙ୍କୁ ଯୁଗାବତାର ବୋଲି ସ୍ଥାପନ କରୁନାହାନ୍ତି, ଶ୍ରୀମନ୍ମହାପ୍ରଭୁ ୯୭ ପଦ୍ୟାବଳୀ ଯେ ସାକ୍ଷାତ୍ ଅବତାର ତାହା ବୁଝାଇବା କାରଣ ଲୀଲାବତାର ଯୁଗାବତାର ବିଷୟମାନ ପ୍ରସଙ୍ଗକ୍ରମେ ଉତ୍ଥାପନ କରିଅଛନ୍ତି ।୯୮।

୩ୟ ଶ୍ଳୋକର ଅନ୍ୱୟ—ଆଦିଲୀଳା ୩ୟ ପରିଚ୍ଛେଦ ୭ମ ଶ୍ଳୋକରେ ଅଛି । ମହର୍ଷିଗର୍ଗାଚାର୍ଯ୍ୟ ଶ୍ରୀନନ୍ଦମହାରାଜାଙ୍କ କହିଥିଲେ, ତୁମ୍ଭର ଏହି ପୁତ୍ର ଯୁଗେ ଯୁଗେ ଶରୀର ଗ୍ରହଣ କରି ଶୁକ୍ଳ, ରକ୍ତ, ପୀତ, ଏହି ତିନି ବର୍ଣ୍ଣ ହୋଇଥିଲେ, ସମ୍ପ୍ରତି ଏ କୃଷ୍ଣ ହୋଇଅଛନ୍ତି । ୩ୟ ଶ୍ଳୋକାର୍ଥ ।

୪ର୍ଥ ଶ୍ଳୋକ ଅନ୍ୱୟ—ଆଦିଲୀଳା ତୃତୀୟପରିଚ୍ଛେଦ ୧୧ଶ ଶ୍ଳୋକ । କଲିଯୁଗରେ ଯେଉଁ ବ୍ୟକ୍ତିମାନେ ବିବେକୀ ହୁଅନ୍ତି ସେମାନେ କେବଳ ସଂକୀର୍ତ୍ତନପ୍ରଧାନ ଯଜ୍ଞଦ୍ୱାରା ଅଙ୍ଗ ଉପାଙ୍ଗରୂପଅସ୍ତ୍ର ଓ ପରିଷଦରୂପ ପୈନ୍ୟପରିବେଷ୍ଟିତ ଗୌରବର୍ଣ୍ଣ କୃଷ୍ଣନାମ ଗ୍ରହଣକାରୀ ଓ କୃଷ୍ଣଉପଦେଶକାରୀ ମହାପୁରୁଷଙ୍କୁ ( ଶ୍ରୀକୃଷ୍ଣଚୈତନ୍ୟଙ୍କୁ ) ଯଜନା କରନ୍ତି । ୪ ଶ୍ଳୋକାର୍ଥ ।

୫ମ ଶ୍ଳୋକ ଅନ୍ୱୟ - ଆଦି ୩ୟ ପରି ୯ମ ଶ୍ଳୋକ ।

ମହାଭାରତର ବିଷ୍ଣୁସହସ୍ରନାମସ୍ତୋତ୍ରମଧ୍ୟରେ ଏହି ଅଷ୍ଟନାମ ଶ୍ରୀକୃଷ୍ଣଚୈତନ୍ୟଅବତାରର ନାମ ଅଟେ, ଯଥା—

୧ । ସୁବର୍ଣ୍ଣବର୍ଣ୍ଣ—ସୁ—ଉତ୍ତମବର୍ଣ୍ଣବିଶିଷ୍ଟ ଯେ ଶ୍ରୀକୃଷ୍ଣ ତାଙ୍କୁ ଯେ ବର୍ଣ୍ଣନ କରନ୍ତି ।
୨ । ହେମାଙ୍ଗ—ହେମତୁଲ୍ୟ ରୂପଗୁଣମଣ୍ଡଳଶରୀର ବା ହିରଣ୍ମୟପୁରୁଷ ।
୩ । ବରାଙ୍ଗ—ସପ୍ତଚତ୍ୱାରିଂଶତ୍ ମହାପୁରୁଷଲକ୍ଷଣାନ୍ୱିତ ଶରୀର ।

ତୋମାର ଅଗେ ଏତ କଥାର ନାହି ପ୍ରୟୋଜନ ।
ଊଷର-ଭୂମିତେ ଯେନ ବୀଜେର ରୋପନ ।୯୯।
ତୋମାର ଉପରେ ତାଁର କୃପା ଯବେ ହବେ ।
ଏ-ସବ ସିଦ୍ଧାନ୍ତ ତବେ ତୁମିହ କହିବେ ।୧୦୦।
ତୋମାର ଯେ ଶିଷ୍ୟ କହେ କୁତର୍କ ନାନାବାଦ ।
ଇହାର କି ଦୋଷ—ଏଇ ମାୟାର ପ୍ରସାଦ ॥

ତଥାହି ( ଭା·—୬।୪।୩୧ )—

ଯଚ୍ଛକ୍ତୟୋ ବଦତାଂ ବାଦିନାଂ ବୈ,
ବିବାଦସଂବାଦଭୁବୋ ଭବନ୍ତି ।
କୁର୍ବନ୍ତି ଚୈଷାଂ ମୁହୁରାତ୍ମମୋହଂ,
ତସ୍ମୈ ନମୋଽନନ୍ତଗୁଣାୟ ଭୂମ୍ନେ । ୬ ।

ତତ୍ରୈବ ( ୧୧।୨୨।୪ ) —

ଯୁକ୍ତଞ୍ଚ ସନ୍ତି ସର୍ବତ୍ର ଭାଷନ୍ତେ ବ୍ରାହ୍ମଣା ଯଥା ।
ମାୟାଂ ମଦୀୟାମୁଦ୍‌ଗୃହ୍ୟ ବଦତାଂ କିଂ ନୁ
ଦୁର୍ଘଟମ୍ । ୭ ।

ଯଚ୍ଛକ୍ତୟଃ – ଯସ୍ୟ ମାୟାବିଦ୍ୟାଃଶକ୍ତୟଃ ବଦତାଂ—ସମାଦଧତାଂ ବାଦିନାଂ ବିବାଦ-ସମ୍ବାଦଭୁବଃ ବିବାଦସ୍ୟ କ୍ୱଚିତ୍ ସମ୍ବାଦସ୍ୟଚ ଭୁବଃ ଉତ୍ପତ୍ତିହେତବ ଭବନ୍ତି । ଏଷାଂ ବାଦିନାଂ ମୁହୁଃ ଆତ୍ମମୋହଂ କୁର୍ବନ୍ତି, ତସ୍ମୈ ଅନନ୍ତଗୁଣାୟ ଭୂମ୍ନେ ନମଃ । ୬ଷ୍ଠ ଶ୍ଳୋକ ।

ତେଷାଂ ବିବାଦେଽପି ବସ୍ତୁତଃ ନବୈ ବିବାଦ ଇତ୍ୟାହ ଯୁକ୍ତମିତି, ଯଥା ବ୍ରାହ୍ମଣା ଭାଷନ୍ତେ ତଦ୍‌ଯୁକ୍ତମେବ ଯତଃସନ୍ତି ସର୍ବତ୍ରାନ୍ତର୍ଭୂତାନ ସର୍ବତତ୍ତ୍ୱାନି । କସ୍ତର୍ହି ବିବାଦେ ହେତୁରତ ଚେନ୍ମାୟାମୋହିତତ୍ୱମେବେତ୍ୟାହ, ମାୟାମିତି, ତଥା ତଥା ଉଦ୍‌ଗ୍ରାହ୍ୟସାମର୍ଥ୍ୟ ମପ୍ୟାଚନ୍ଦ୍ରାର୍କଂ ମନ୍ମାୟୈବ ତେଭ୍ୟୋ ଦଦାତୀତିଭାବଃ । ୭ମ ଶ୍ଳୋକ ।

୪ । କନ୍ଦନାଙ୍ଗଦୀ – ଚନ୍ଦନ ଅଙ୍ଗଦ ବ୍ୟବହାରକାରୀ । ଏହି ଗୃହ ନାମ ମହାପ୍ରଭୁଙ୍କର ଆଦିଲୀଳାର ଏବଂ :—

୫ । ସନ୍ନ୍ୟାସକୃତ୍ – ସନ୍ନ୍ୟାସୀ;
୬ । ଶମ—ନି ଗ୍ରହିତାନ୍ତଃକରଣ ।
୭ । ଶାନ୍ତ କୃଷ୍ଣୈକନିଷ୍ଠଚିତ୍ତ,
୮ । ନିଷ୍ଠ ଶାନ୍ତିପରାୟଣ—ଚିତ୍ତ ଏକାଗ୍ରତାହେତୁ ସମସ୍ତ ଅବିଦ୍ୟାନିବୃତ୍ତିକାରୀ ଯାହାଙ୍କଠାରେ ସର୍ବତୋଭାବେ ଆଶ୍ରୟ କରିଅଛି ।—ଏହି ଶେଷ ଗୃହ ନାମ ଶେଷଲୀଳାର ଅଟେ । ୫ମ ଶ୍ଳୋକାର୍ଥ ।

ଊଷରଭୂମି—ଅନୁର୍ବର ଭୂମି । ୯୯ । ତାଁର— ଶ୍ରୀମନ୍ ମହାପ୍ରଭୁଙ୍କର । ୧୦୦ ।

ଦକ୍ଷପ୍ରଜାପତି କହୁଅଛନ୍ତି—ଯାହାଙ୍କର ବିଦ୍ୟା ଅବିଦ୍ୟାଦି ମାୟା ଶକ୍ତି ସମୂହ ବିବାଦକାରୀମାନଙ୍କ ନିକଟ, କେତେବେଳେ ବିବାଦ ବା କେତେବେଳେ ସମ୍ବାଦର ସ୍ଥାନ ହୁଅନ୍ତି, ଏବଂ ସେହି ବିବାଦକାରୀମାନଙ୍କର ବାରମ୍ବାରଆତ୍ମମୋହ ଜନ୍ମାନ୍ତି । ସେହି ଅନନ୍ତ-ଗୁଣଶାଳୀ ଓ ପରମପୁରୁଷ ଭଗବାନଙ୍କୁ ମୁଁ ନମସ୍କାର କରେଁ । ୬ଷ୍ଠ ଶ୍ଳୋକାର୍ଥ ।

ଶ୍ରୀ ଭଗବାନ୍ ଉଦ୍ଧବଙ୍କୁ କହିଲେ ( ତତ୍ତ୍ୱନିର୍ଣ୍ଣୟସମ୍ବନ୍ଧରେ ) ବ୍ରାହ୍ମଣମାନେ ଯାହା କହନ୍ତି ତାହା ଯୁକ୍ତ, ଯେହେତୁ ସମସ୍ତତତ୍ତ୍ୱ ସର୍ବତ୍ର ଅନ୍ତର୍ଭୂତ ଅଛି, ଏଠାରେ ଏହିପରି ପ୍ରଶ୍ନ ହୋଇପାରେ ଯେ ଏକଜଣ ଆତ୍ମମତ ସ୍ଥାପନ କରିବାକୁ ଯାଇ ଅପରର ମତକୁ ଅଗ୍ରାହ୍ୟ କରେ କାହିଁକି ? ଏହାର ଉତ୍ତରସ୍ୱରୂପ ଶ୍ରୀଭଗବାନ୍ କହୁଅଛନ୍ତି ଯେ, ଏହିପ୍ରକାର ମତଭେଦ ହେତୁ ସେମାନଙ୍କ ମଧ୍ୟରେ ଯେଉଁ ବାଦ ହୁଏ ତାହାର କାରଣ ଏହି ଯେ, ସେମାନେ ମୋର ମାୟାଦ୍ୱାରା ମୋହିତ । ୭ମ ଶ୍ଳୋକାର୍ଥ ।

ତବେ ଭଟ୍ଟାଚାର୍ଯ୍ୟ କହେ—ଯାଇ ଗୋସାଞ୍ଜିର
ସ୍ଥାନେ ।
ଆମାର ନାମେ ଗଣ-ସହିତ କର ନିମନ୍ତ୍ରଣେ ॥
ପ୍ରସାଦ ଆନିଞା ତାଁରେ କରାହ ଆଗେ ଭିକ୍ଷା ।
ପଶ୍ଚାତ୍ ଆମାରେ ଆସି କରାଇହ ଶିକ୍ଷା ॥୧୦୩॥
ଆଚାର୍ଯ୍ୟ ଭଗିନୀପତି, ଶ୍ୟାଲକ ଭଟ୍ଟାଚାର୍ଯ୍ୟ ।
ନିନ୍ଦା-ସ୍ତୁତି-ହାସ୍ୟେ ଶିକ୍ଷା କରେନ ଆଚାର୍ଯ୍ୟ ॥
ଆଚାର୍ଯ୍ୟେର ସିଦ୍ଧାନ୍ତେ ମୁକୁନ୍ଦେର ହୈଲ ସନ୍ତୋଷ ।
ଭଟ୍ଟାଚାର୍ଯ୍ୟେର ବାକ୍ୟେ ମନେ ହୈଲ ଦୁଃଖ-
ରୋଷ ।୧୦୪।
ଗୋସାଞ୍ଜିର ସ୍ଥାନେ ଆଚାର୍ଯ୍ୟ କୈଲ ଆଗମନ ।
ଭଟ୍ଟାଚାର୍ଯ୍ୟେର ନାମେ ତାଁରେ କୈଲ ନିମନ୍ତ୍ରଣ ॥
ମୁକୁନ୍ଦ-ସହିତ କହେ ଭଟ୍ଟାଚାର୍ଯ୍ୟେର କଥା ।
ଭଟ୍ଟାଚାର୍ଯ୍ୟେର ନିନ୍ଦା କରେ ମନେ ପାଞା ବ୍ୟଥା ॥
ଶୁନି ମହାପ୍ରଭୁ କହେ— ଐଛେ ମତ କହ ।
ଆମା-ପ୍ରତି ଭଟ୍ଟାଚାର୍ଯ୍ୟେର ହୟ ଅନୁଗ୍ରହ ।୧୦୮।
ଆମାର ସନ୍ନ୍ୟାସଧର୍ମ ଚାହେନ ରାଖିତେ ।
ବାତ୍ସଲ୍ୟେ କରୁଣା କରେନ, କି ଦୋଷ
ଇହାତେ ? ।୧୦୯।
ଆରଦିନ ମହାପ୍ରଭୁ ଭଟ୍ଟାଚାର୍ଯ୍ୟସନେ ।
ଆନନ୍ଦେ କରିଲା ଜଗନ୍ନାଥ ଦରଶନେ ।୧୧୦।
ଭଟ୍ଟାଚାର୍ଯ୍ୟ-ସଙ୍ଗେ ତାଁର ମନ୍ଦିରେ ଆଇଲା ।
ପ୍ରଭୁରେ ଆସନ ଦିୟା ଆପନେ ବସିଲା ।୧୧୧।
ବେଦାନ୍ତ ପଡ଼ାଇତେ ତବେ ଆରମ୍ଭ କରିଲା ।
ସ୍ନେହ ଭକ୍ତି କରି କିଛୁ ପ୍ରଭୁରେ କହିଲ— ॥
ବେଦାନ୍ତଶ୍ରବଣ ଏଇ ସନ୍ନ୍ୟାସୀର ଧର୍ମ ।
ନିରନ୍ତର କର ତୁମି ବେଦାନ୍ତ-ଶ୍ରବଣ ॥
ପ୍ରଭୁ କହେ— ମୋରେ ତୁମି କର ଅନୁଗ୍ରହ ।
ସେଇ ତ କର୍ତ୍ତବ୍ୟ ଆମାର—ତୁମି ଯେଇ କହ ॥
ସାତଦିନପର୍ଯ୍ୟନ୍ତେ ଐଛେ କରେନ ଶ୍ରବଣେ ।
ଭାଲ-ମନ୍ଦ ନାହି କହେ, ବସି ମାତ୍ର ଶୁନେ ॥
ଅଷ୍ଟମ-ଦିବସେ ତାଁରେ କହେ ସାର୍ବ୍ବଭୌମ ।
ସାତଦିନ କର ତୁମି ବେଦାନ୍ତ ଶ୍ରବଣ ।୧୧୬।
ଭାଲ-ମନ୍ଦ ନାହି କହ, ରହ ମୌନ ଧରି ।
ବୁଝ କି ନା ବୁଝ—ଇହା ବୁଝିତେ ନା ପାରି ।
ପ୍ରଭୁ କହେ— ମୂର୍ଖ ଆମି, ନାହି ଅଧ୍ୟୟନ ।
ତୋମାର ଆଜ୍ଞାତେ ମାତ୍ର କରିୟେ ଶ୍ରବଣ ।୧୧୮।
ସନ୍ନ୍ୟାସୀର ଧର୍ମ-ଲାଗି ଶ୍ରବଣମାତ୍ର କରି ।
ତୁମି ଯେ କରହ ଅର୍ଥ—ବୁଝିତେ ନା ପାରି ॥
ଭଟ୍ଟାଚାର୍ଯ୍ୟ କହେ-'ନା ବୁଝି' ହେନ ଜ୍ଞାନ ଯାର ।
ବୁଝିବାର ତରେ ସେଇ ପୁଛେ ଆରବାର ॥
ତୁମି ଶୁନିଶୁନି ରହ ମୌନ-ମାତ୍ର ଧରି ।
ହୃଦୟେ କି ଆଛେ ତୋମାର—ବୁଝିତେ ନା
ପାରି ।୧୨୧।
ପ୍ରଭୁ କହେ—ସୂତ୍ରେର ଅର୍ଥ ବୁଝିୟେ ନିର୍ମଲ ।
ତୋମାର ବ୍ୟାଖ୍ୟା ଶୁନି ମନ ହୟ ତ ବିକଲ ॥
ସୂତ୍ରେର ଅର୍ଥ—ଭାଷ୍ୟ କହେ ପ୍ରକାଶିୟା ।
ତୁମି ଭାଷ୍ୟ କହ—ସୂତ୍ରେର ଅର୍ଥ ଆଚ୍ଛାଦିୟା ॥
ସୂତ୍ରେର ମୁଖ୍ୟାର୍ଥ ତୁମି ନା କର ବ୍ୟାଖ୍ୟାନ ।
କଳ୍ପନା-ଅର୍ଥେତେ ତାହା କର ଆଚ୍ଛାଦନ ।୧୨୪

ସୂତ୍ରେର ଇତି । ସୂତ୍ରସ୍ୟାର୍ଥପ୍ରକାଶ ମେବ ଭାଷ୍ୟସ୍ୱଭାବଃ ଭବତ୍କଥିତଭାଷ୍ୟେଣ ତୁ ତଦପ୍ରକାଶନମେବେତି କମିଦଂ ଭାଷ୍ୟମିତି ଭାବଃ ।୧୨୩ ଚ. ଚ.,

ଐଛେ ମତ କହ - ଏ ପ୍ରକାର କୁହନା; ଅର୍ଥାତ୍ ନିନ୍ଦା କରନା ।୧୦୮। ତାଁର ମନ୍ଦିରେ—ଭଟ୍ଟାଚାର୍ଯ୍ୟଙ୍କ ଗୃହକୁ ।୧୧୧। ସୂତ୍ରେର—ବେଦାନ୍ତ ସୂତ୍ରମାନଙ୍କର । ତୁମି ଭାଷ୍ୟ କହ—ଏଠାରେ ଶାଙ୍କର ଭାଷ୍ୟ । କଳ୍ପନା ଅର୍ଥ—କାଳ୍ପିତ ଅର୍ଥ (ଗୌଣଅର୍ଥ) ।୧୨୨।୧୨୪।

ଶ୍ରୀମନ୍ ମହାପ୍ରଭୁ କହିଲେ ଯେ, ବେଦାନ୍ତ ସୂତ୍ରମାନଙ୍କର ଅଭିଧା ବୃତ୍ତି ଦ୍ୱାରା ନିରୂପିତ ମୁଖ୍ୟାର୍ଥ ମୁଁ ସୁନ୍ଦରରୂପେ ବୁଝିପାରୁଅଛି । କିନ୍ତୁ ଆପଣଙ୍କର ବ୍ୟାଖ୍ୟା ଶୁଣି ମୋ ମନରେ ବଡ଼ କଷ୍ଟ

ଉପନିଷଦ୍-ଶବ୍ଦେର ଯେଇ ମୁଖ୍ୟ ଅର୍ଥ ହୟ ।
ସେଇ ମୁଖ୍ୟ ଅର୍ଥ ବ୍ୟାସସୂତ୍ରେ ସବ କୟ ॥ ୧୨୫ ॥
ମୁଖ୍ୟାର୍ଥ ଛାଡ଼ିୟା କର ଗୌଣାର୍ଥ-କଳ୍ପନା ।
ଅଭିଧାବୃତ୍ତି ଛାଡ଼ି ଶବ୍ଦେର କରହ 'ଲକ୍ଷଣା' ॥
ପ୍ରମାଣେର ମଧ୍ୟେ ଶ୍ରୁତିପ୍ରମାଣ ପ୍ରଧାନ ।
ଶ୍ରୁତି ଯେ ମୁଖ୍ୟାର୍ଥ କହେ—ସେଇ ସେ ପ୍ରମାଣ ॥
ଜୀବେର ଅସ୍ଥି ବିଷ୍ଠା ଦୁଇ ଶଙ୍ଖ ଗୋମୟ ।
ଶ୍ରୁତିବାକ୍ୟେ ସେଇ ଦୁଇ ମହାପବିତ୍ର ହୟ ।
ସ୍ୱତଃପ୍ରମାଣ ବେଦ —ସତ୍ୟ ଯେଇ କହେ ।
ଲକ୍ଷଣା କରିଲେ ସ୍ୱତଃପ୍ରାମାଣ୍ୟ-ହାନି ହୟେ ॥

---

ଅଭିଧା ଇତି, ଅଭିଧା ଈଶ୍ୱରେଚ୍ଛା ଗୋଶବ୍ଦାତ୍ ଜଳପ୍ରବାହରୂପାର୍ଥପ୍ରତିପାଦିକା । ଲକ୍ଷଣା — ଈଶ୍ୱରପ୍ରତିପାଦିତଂ ଅର୍ଥଂ ତ୍ୟକ୍ତ୍ୱା ଅନ୍ୟାର୍ଥକଳ୍ପନା, ଯଥା ଗଙ୍ଗାୟାଂ ଘୋଷ ଇତ୍ୟତ୍ର ଗଙ୍ଗାଶବ୍ଦସ୍ୟ ତୀରରୂପାର୍ଥକଳ୍ପନଂ, ମୁଖ୍ୟଶକ୍ତେସ୍ତୁ ସର୍ବଥା ବ୍ୟବହାରଯୋଗ୍ୟତା, ଲାକ୍ଷଣିକସ୍ୟ ତୁ କାଦାଚିତ୍କମିତିଭାବଃ ।' ୨୨ ବି· ଚ·

---

ହୋଇଅଛି । କାରଣ ଯେଉଁମାନେ ଭାଷ୍ୟ ( ବ୍ୟାଖ୍ୟା ) କରନ୍ତି ସେମାନେ ସୂତ୍ରର ମୁଖ୍ୟାର୍ଥକୁ ସମସ୍ତଙ୍କର ବୋଧଗମ୍ୟ ରୂପରେ ତଦ୍ଦ୍ୱାରା ପ୍ରକାଶ କରନ୍ତି, କିନ୍ତୁ ଆପଣ ଯେଉଁ ବ୍ୟାଖ୍ୟା କରୁ-ଅଛନ୍ତି, ତଦ୍ଦ୍ୱାରା ସୂତ୍ରମାନଙ୍କର ମୁଖ୍ୟାର୍ଥକୁ ଘୋଡ଼ାଇ ରଖି ଲକ୍ଷଣା ବୃତ୍ତି ଦ୍ୱାରା କଳ୍ପିତ ଅର୍ଥ କରୁଅଛନ୍ତି, ଏହାର ଉଦାହରଣ ଏହି ଯେ କୌଣସି ବ୍ୟକ୍ତି ଭୋଜନ କରୁ କରୁ କହିଲେ 'ସୈନ୍ଧବ ଅଣ' ଏହାର ମୁଖ୍ୟାର୍ଥ ସୈନ୍ଧବଲବଣ ଆନୟନ କର, କିନ୍ତୁ ଏହାକୁ ଯଦି କେହି ସିନ୍ଧୁ-ଦେଶୀୟ ଘୋଡ଼ା ଅଣ ଏହି ଅର୍ଥ କରନ୍ତି ତେବେ ଏହା ଏସ୍ଥାନରେ କଳ୍ପିତ ଅର୍ଥ ହେବ ।

ସ୍କନ୍ଦପୁରାଣରେ ଉକ୍ତ ଅଛି ଯେ ଦ୍ୱାପର ଯୁଗରେ ସଙ୍କୀର୍ଣ୍ଣବୁଦ୍ଧିର ଲୋକମାନେ ବେଦର ପ୍ରକୃତ ଅର୍ଥ ଗ୍ରହଣ କରି ନ ପାରିବାରୁ ଶ୍ରୀହରି ଶ୍ରୀକୃଷ୍ଣଦ୍ୱୈପାୟନ ରୂପରେ ସେହି ବେଦାର୍ଥ ନିରୂପକ ଚତୁର୍ଲକ୍ଷଣା ବ୍ରହ୍ମମୀମାଂସା ( ବେଦାନ୍ତ ସୂତ୍ର ) ଅବିଷ୍କାର କଲେ, ଏହାକୁ ଲକ୍ଷ୍ୟକରି ଶ୍ରୀମନ୍ ମହାପ୍ରଭୁ କହୁଅଛନ୍ତି ଯେ, ଉପନିଷଦ୍‌ଶବ୍ଦମାନଙ୍କର ଯେ ମୁଖ୍ୟାର୍ଥ, ତାହା ବେଦାନ୍ତ ସୂତ୍ରମାନଙ୍କର ମଧ୍ୟ ମୁଖ୍ୟାର୍ଥ । ଅର୍ଥାତ୍ ବେଦାନ୍ତ ସୂତ୍ରମାନଙ୍କୁ ବ୍ୟାଖ୍ୟା କରିବାକୁ ଗଲେ ଶ୍ରୁତି ଧୃତ ବାକ୍ୟମାନଙ୍କର ମୁଖ୍ୟାର୍ଥ ଦ୍ୱାରା ବ୍ୟାଖ୍ୟା କରିବାକୁ ହେବ । କିମ୍ବା ସେମାନଙ୍କର ଅନୁଗାମୀ ସ୍ମୃତି ପୁରାଣାଦି ଧୃତବଚନ ଦ୍ୱାରା ବ୍ୟାଖ୍ୟାକରିବାକୁ ହେବ । କାରଣ ବ୍ରହ୍ମସୂତ୍ର ଶ୍ରୁତି-ମାନଙ୍କର ନିର୍ଯ୍ୟାସ । ୧୨୫ ।

ଏବେ ତୁମ୍ଭେ ଆପଣ ସୂତ୍ରର ଅଭିଧା ବୃତ୍ତିଦ୍ୱାରା ପ୍ରକାଶିତ ମୁଖ୍ୟାର୍ଥକୁ ଛାଡ଼ି ଲକ୍ଷଣା ବୃତ୍ତି ଦ୍ୱାରା କଳ୍ପିତ ଗୌଣାର୍ଥ ବ୍ୟାଖ୍ୟା କରୁଅଛନ୍ତି । ମୁଖ୍ୟାର୍ଥ, ଗୌଣାର୍ଥ, ଅଭିଧା, ଲକ୍ଷଣା, ଏ ଶବ୍ଦମାନଙ୍କର ଅର୍ଥ ଆଦିଲୀଳା ୭ମ ପରିଚ୍ଛେଦରେ ଦ୍ରଷ୍ଟବ୍ୟ । ୧୨୬ ।

ଶ୍ରୀମନ୍ ମହାପ୍ରଭୁ ଶ୍ରୀସାର୍ବଭୌମଙ୍କ କୃତ ଶାଙ୍କର ଭାଷ୍ୟର ଶବ୍ଦାର୍ଥରେ ଦୋଷ ଦେଖାଇ ବର୍ତ୍ତମାନ ପ୍ରମାଣରେ ଦୋଷ ଦେଖାଉଅଛନ୍ତି । ଯଥା – ଶ୍ରୁତି ସ୍ୱତଃପ୍ରମାଣ, ଅର୍ଥାତ୍ ଅନ୍ୟ କୌଣସି ବିଷୟ ପ୍ରମାଣ କରିବାକୁ ଗଲେ ଶ୍ରୁତିବଚନ ଯଦି ସେ ବିଷୟର ସପକ୍ଷରେ ଯାଏ, ତାହାହେଲେ ସେହି ଶ୍ରୁତି ବଚନ ଉଦ୍ଧୃତକରି ତାହାର ମୁଖ୍ୟାର୍ଥ ଦ୍ୱାରା ଉକ୍ତ ବିଷୟ ପ୍ରମାଣ କରାଯାଏ । କିନ୍ତୁ ଶ୍ରୁତି ବଚନକୁ ଶ୍ରୁତିବ୍ୟତୀତ ଅନ୍ୟ କୌଣସି ଶାସ୍ତ୍ରଦ୍ୱାରା ପ୍ରମାଣ କରାଯାଏ ନା ।

ଶ୍ରୁତି ଯେ ସ୍ୱତଃସିଦ୍ଧ ଏହାର ଉଦାହରଣ ଦେଉଅଛନ୍ତି । ଜୀବର ଅସ୍ଥି ଓ ବିଷ୍ଠା ଅତି ଅପବିତ୍ର ଓ ଘୃଣ୍ୟ ବସ୍ତୁ, ଶଙ୍ଖ ଜୀବର ଅସ୍ଥି ଓ ଗୋମୟ ବିଷ୍ଠା ହେଲେହେଁ ଶ୍ରୁତି ଏ ଉଭୟ

ବ୍ୟାସେର ସୂତ୍ରେର ଅର୍ଥ ସୂର୍ଯ୍ୟେର କିରଣ ।
ସ୍ୱକଳ୍ପିତ-ଭାଷ୍ୟମେଘେ କରେ ଆଚ୍ଛାଦନ ।୧୩୦।
ବେଦପୁରାଣେ କହେ ବ୍ରହ୍ମନିରୂପଣ ।
ସେଇ ବ୍ରହ୍ମ—ବୃହଦ୍ବସ୍ତୁ ଈଶ୍ୱର-ଲକ୍ଷଣ ।୧୩୧।
ସର୍ବୈଶ୍ୱର୍ଯ୍ୟ ପରିପୂର୍ଣ୍ଣ ସ୍ୱୟଂ ଭଗବାନ୍ ।
ତାଁରେ 'ନିରାକାର' କରି କରହ ବ୍ୟାଖ୍ୟାନ ?

---

ସେଇ ଇତି । ବୃହତ୍ତ୍ୱାତ୍ ବୃଂହଣତ୍ୱାଚ୍ଚ ତଦ୍ବ୍ରହ୍ମ ପରମଂ ବିଦୁଃ । ଆତତତ୍ୱାଚ୍ଚ ମାତୃତ୍ୱାଦାତ୍ମା ହି ପରମୋ ହରିଃ । ୧୩୧ । ଶ. ଚ.

---

ବସ୍ତୁକୁ ପରମ ପବିତ୍ର ବୋଲି କହିଥିବାରୁ ସେହି ଦୁଇ ବସ୍ତୁର ଉପାଦାନ ବା ଅବସ୍ଥା କେହି ବିବେଚନା କରନ୍ତି ନାହିଁ । ସମସ୍ତେ ଶ୍ରୁତିବାକ୍ୟକୁ ଶିରୋଧାର୍ଯ୍ୟ କରି ଏହି ଦୁଇ ବସ୍ତୁକୁ ପରମ ପବିତ୍ର ବୋଲି ଗ୍ରହଣ କରନ୍ତି । ଏ ସ୍ଥଳେ ଯଦି ଶ୍ରୁତିର ମୁଖ୍ୟାର୍ଥ ଆଚ୍ଛାଦନକରି ଏହି ଦୁଇ ବସ୍ତୁର କଳ୍ପିତ ଅର୍ଥ କରାଯାଏ । ତାହାହେଲେ କେହି ତାହା ଗ୍ରହଣ କରିବେ ନାହିଁ, କିମ୍ବା ଏହି ଦୁଇ ବସ୍ତୁର ପବିତ୍ରତାର କୌଣସି ଅପଚୟ ହେବ ନାହିଁ । ଯେଉଁମାନେ ଲକ୍ଷଣା ଅର୍ଥକୁ ଗ୍ରହଣ କରିବେ ସେମାନଙ୍କ ନିକଟ ଶ୍ରୁତି ମୁଖ୍ୟାର୍ଥ ଆଚ୍ଛାଦନ ଦ୍ୱାରା ସେମାନଙ୍କର କ୍ଷତି ହେବ । ୧୨୭।୧୨୮।୧୨୯।

ଏହାର ଉଦାହରଣ କହୁ ଅଛନ୍ତି ।

ଶ୍ରୀବ୍ୟାସଦେବଙ୍କର ବେଦାନ୍ତ ସୂତ୍ର ସୂର୍ଯ୍ୟସ୍ଥାନୀୟ, ତାହାର ମୁଖ୍ୟାର୍ଥ କିରଣ ସ୍ଥାନୀୟ । ସୂର୍ଯ୍ୟ ଯେପରି ନିଜର କିରଣ ଦ୍ୱାରା ଜଗତ୍ଜୀବ ସମୂହର ଉପକାର ସାଧନ କରନ୍ତି । ବ୍ରହ୍ମସୂତ୍ରର ମୁଖ୍ୟାର୍ଥ ଅବଧାରଣଦ୍ୱାରା ମନୁଷ୍ୟମାନଙ୍କର ପ୍ରଭୂତ ଉପକାର ହୁଏ ଅର୍ଥାତ୍ ଶୁଦ୍ଧଭକ୍ତି ଲାଭ ହୁଏ । କିନ୍ତୁ ସୂର୍ଯ୍ୟଙ୍କର କିରଣୋତ୍ପନ୍ନ ମେଘପଟଳ ଯେପରି ଜଗତ୍ଜୀବନମାନଙ୍କର ଦୃଷ୍ଟିଶକ୍ତିକୁ ସୂର୍ଯ୍ୟଙ୍କଠାରୁ ଅଚ୍ଛନ୍ନ କରି ନାନାପ୍ରକାର ଅମଙ୍ଗଳକରନ୍ତି ଅର୍ଥାତ୍ ପ୍ରଧାନତଃ ସୂର୍ଯ୍ୟଦର୍ଶନ ଲାଭ ହୁଏ ନା, ସେହିପରି କଳ୍ପିତ ଶାଙ୍କରଭାଷ୍ୟ ବ୍ରହ୍ମସୂତ୍ରକୁ ମନୁଷ୍ୟମାନଙ୍କ ଜ୍ଞାନର ଅନ୍ତରାଳରେ ରଖି ପ୍ରଭୂତ ଅନିଷ୍ଟସାଧନ କରୁଅଛନ୍ତି । ଅର୍ଥାତ୍ ପ୍ରଧାନତଃ ଭଗବଦ୍ଜ୍ଞାନ ନଷ୍ଟ କରୁଅଛନ୍ତି । ଯଦ୍ୟପି ମେଘ ଜୀବମାନଙ୍କର ଦୃଷ୍ଟିଶକ୍ତିକୁ ସୂର୍ଯ୍ୟଙ୍କଠାରୁ ଅଚ୍ଛନ୍ନ କରନ୍ତି କିନ୍ତୁ ତଦ୍ଦ୍ୱାରା ସୂର୍ଯ୍ୟଙ୍କର ବା ସୂର୍ଯ୍ୟକିରଣର କୌଣସି ଅପଚୟ ହୁଏନା । ସେହିପରି କଳ୍ପିତ ଶାଙ୍କରଭାଷ୍ୟଦ୍ୱାରା ବ୍ରହ୍ମସୂତ୍ର ଓ ସେଥିର ମୁଖ୍ୟାର୍ଥର କିଛି ହାନି ହୁଏ ନା । ୧୩୦ ।

ଶ୍ରୀମନ୍ ମହାପ୍ରଭୁ ବେଦାନ୍ତର ପ୍ରଥମସୂତ୍ରର ଅର୍ଥ କରୁଅଛନ୍ତି ।—

ବେଦପୁରାଣାଦିରେ ଯେଉଁ ବ୍ରହ୍ମକୁ ନିରୂପଣ କରିଅଛନ୍ତି ଏବଂ ଯାହା ଗୁରୁଙ୍କ ନିକଟ ଜିଜ୍ଞାସ୍ୟ ଓ ଶିଷ୍ୟର ଜ୍ଞାତବ୍ୟ, ସେହି ବ୍ରହ୍ମ ବୃହତ୍ ବସ୍ତୁ ବା ସର୍ବବ୍ୟାପକ, ଈଶ୍ୱରଲକ୍ଷଣ ସର୍ବନିୟନ୍ତା ସର୍ବ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ, ଏବଂ ସ୍ୱୟଂ ଭଗବାନ୍ ସର୍ବାଶ୍ରୟ ଅତଏବ ସାକାର, ଏପ୍ରକାର ରୂପଗୁଣଯୁକ୍ତ ଭଗବାନଙ୍କୁ ନିରାକାର ବୋଲି ତୁମ୍ଭେ ବ୍ୟାଖ୍ୟା କରି, ଏଠାରେ ସମ୍ଭବତଃ ସାର୍ବଭୌମ ପୂର୍ବପକ୍ଷୀ ହୋଇ ଶ୍ରୁତି ପ୍ରମାଣଦ୍ୱାରା ନିରାକାରତ୍ୱ ସ୍ଥାପନ କରିବାରୁ ଶ୍ରୀମନ୍ମହାପ୍ରଭୁ ଖଣ୍ଡନ କରି କହୁଅଛନ୍ତି । ୧୩୧ । ୧୩୨ ।

ଯେଉଁ ଯେଉଁ ଶ୍ରୁତିମାନେ ବ୍ରହ୍ମକୁ ନିର୍ବିଶେଷ ବୋଲି କହିଅଛନ୍ତି, ସେମାନେ ବ୍ରହ୍ମଙ୍କର ପ୍ରାକୃତ ଅର୍ଥାତ୍ ଭୌତିକ ବା ମାୟିକ ଆକାର ନାହିଁ, ଏ କଥା କହିବାଦ୍ୱାରା ତାଙ୍କର ଅପ୍ରାକୃତ ବା ଚିନ୍ମୟ ଆକାର ଥିବାର ସ୍ଥାପନ କରିଅଛନ୍ତି ।

'ନିର୍ବିଶେଷ' ତାଁରେ କହେ ଯେଇ ଶ୍ରୁତିଗଣ ।
'ପ୍ରାକୃତ' ନିଷେଧି 'ଅପ୍ରାକୃତ' କରୟେ ସ୍ଥାପନ

ତଥାହି ଶ୍ରୀଚୈତନ୍ୟଚନ୍ଦ୍ରୋଦୟ-
ନାଟକେ ( ୬।୬୮ )—

ଯା ଯା ଶ୍ରୁତିର୍ଜଳ୍ପତି ନିର୍ବିଶେଷଂ
ସା ସାଭିଧତ୍ତେ ସବିଶେଷମେବ ।
ବିଚାରଯୋଗେ ସତି ହନ୍ତ ତାସାଂ,
ପ୍ରାୟୋ ବଲୀୟଃ ସବିଶେଷମେବ । ୮ ।

ବ୍ରହ୍ମ ହୈତେ ଜନ୍ମେ ବିଶ୍ୱ—ବ୍ରହ୍ମତେ ଜୀବୟ ।
ସେଇ ବ୍ରହ୍ମେ ପୁନରପି ହୟେ ଯାୟ ଲୟ ।୧୩୪।
ଅପାଦାନ-କରଣାଧିକରଣ—କାରକ ତିନ ।
ଭଗବାନେର 'ସବିଶେଷ' ଏଇ ତିନ ଚିହ୍ନ ।
ଭଗବାନ୍ ବହୁ ହୈତେ ଯବେ କୈଲ ମନ ।
ପ୍ରାକୃତଶକ୍ତିତେ ତବେ କୈଲ ବିଲୋକନ ।
ସେକାଲେ ନାହିକ ଜନ୍ମେ ପ୍ରାକୃତ ମନ-ନୟନ
ଅତଏବ 'ଅପ୍ରାକୃତ' ବ୍ରହ୍ମେର ନେତ୍ର-ମନ ।

---

ଯାଯାଶ୍ରୁତି ବେଦଃ ନିର୍ବିଶେଷଂ ନିରାକାରଂ ଜଲ୍ପତି କଥୟତି ତା ସା ଶ୍ରୁତିଃ ସବିଶେଷଂ ସାକାରଂ ଏବାଭିଧତ୍ତେ ଗୃହ୍ଣାତିବଦତୀତ୍ୟର୍ଥଃ । ତାସାଂ ଶ୍ରୁତୀନାଂ ବିଚାରେଯୋଗେସତି ସବିଶେଷମେବ ପ୍ରାୟଃ ବାହୁଲ୍ୟେନ ହନ୍ତ ଇତ୍ୟାଶ୍ଚର୍ଯ୍ୟେ ବଲୀୟଃ ବଲବଦ୍ ଭବତୀତ୍ୟର୍ଥଃ । ୮ଷ୍ଠମ ଶ୍ଳୋକ ।

ନିର୍ବିଶେଷ ଇତି । ଯାଦ୍ବେ—ଯୋଽସୌ ନିର୍ଗୁଣ ଇତ୍ୟୁକ୍ତଃ ଶାସ୍ତ୍ରେଷୁ ଜଗଦୀଶ୍ୱରଃ । ପ୍ରାକୃତୈର୍ହେୟ ସଂଯୁକ୍ତୈର୍ଗୁଣୈର୍ହେୟତ୍ୱମୁଚ୍ୟତେ । ଇତି । ୧୩୩ । ବି, ଚ,

ବ୍ରହ୍ମ ହୈତେ ଜନ୍ମେ ଇତ୍ୟପାଦାନଂ, ବ୍ରହ୍ମେ ସେ ଜୀବୟ ଇତି କରଣଂ । ସେଇ ବ୍ରହ୍ମେ ଇତ୍ୟାଦିକମଧିକରଣଂ । ୧୩୪ । ବି, ଚ,

---

ଏହାର ଭାବାର୍ଥ ଏହି ଯେ, ବ୍ରହ୍ମ ( ଭଗବାନ୍ ) ଜୀବମାନଙ୍କପରି ପ୍ରାପଞ୍ଚିକ ଦେହଯୁକ୍ତ ଅର୍ଥାତ୍ ଦେହଦେହୀ ଭେଦଯୁକ୍ତ ନୁହନ୍ତି । ସେ ଅପ୍ରାକୃତ ଅର୍ଥାତ୍ ଚିଦାନନ୍ଦଘନବିଗ୍ରହ ବା ଦେହଦେହୀ ଅଭେଦ । ୧୩୩ ।

( ଏହା ହୟଶୀର୍ଷ ପଞ୍ଚରାତ୍ରର ଶ୍ଳୋକ, ଶ୍ରୀଚୈତନ୍ୟଚନ୍ଦ୍ରୋଦୟ ନାଟକରେ ଏ ଶ୍ଳୋକ ଉଦ୍ଧୃତ ହୋଇଅଛି ( ୬।୬୭ )

ଯେଉଁ ଯେଉଁ ଶ୍ରୁତିମାନେ ବ୍ରହ୍ମଙ୍କୁ ନିରାକାର ବୋଲି କହନ୍ତି, ସେହି ସେହି ଶ୍ରୁତିମାନେ ତାଙ୍କୁ ସାକାର ବୋଲି ସ୍ୱୀକାର କରନ୍ତି । ସେହି ସେହି ଶ୍ରୁତିର ଏବମ୍ବିଧ ବଚନମାନଙ୍କୁ ବିଚାର କଲେ ଦେଖାଯାଏ ଯେ ସେମାନଙ୍କର କଥିତ ନିରାକାର ମତ ଅପେକ୍ଷା ସାକାର ମତହିଁ ସର୍ବତୋଭାବେ ବଳବାନ୍ । ୮ମ ଶ୍ଳୋକାର୍ଥ ।

ଶ୍ରୀମନ୍ ମହାପ୍ରଭୁ ବ୍ରହ୍ମସୂତ୍ରର ଦ୍ୱିତୀୟ ସୂତ୍ରର ଅର୍ଥ କରୁଅଛନ୍ତି । ଯାହାଙ୍କଠାରୁ ବିଶ୍ୱର ଉତ୍ପତ୍ତି ହୁଏ, ଯାହାଙ୍କଦ୍ୱାରା ବିଶ୍ୱର ସ୍ଥିତି ହୁଏ, ଏବଂ ଯାହାଙ୍କଠାରେ ବିଶ୍ୱର ଲୟ ହୁଏ ସେହି 'ବ୍ରହ୍ମ' । ଏତଦ୍ୱାରା ବିଶ୍ୱର ଜନ୍ମକର୍ତ୍ତା ହେତୁ ବ୍ରହ୍ମ ଅପାଦାନ, ସ୍ଥିତିକର୍ତ୍ତା ହେତୁ କରଣ, ଏବଂ ଲୟକର୍ତ୍ତା ହେତୁ ଅଧିକରଣ, ଏହି ତିନକାରକ ତାହାଙ୍କର ସବିଶେଷତ୍ୱ ପ୍ରତିପାଦନ କରୁଅଛି । ଅର୍ଥାତ୍ ଏତଦ୍ୱାରା ତାହାଙ୍କର ଭଗବତ୍ତା ( ଐଶ୍ୱର୍ଯ୍ୟପୂର୍ଣ୍ଣ ଆକାର ) ପ୍ରତିପାଦିତ ହେଉଅଛି । ୧୩୪ । ୧୩୫ ।

ଆହୁରି ମଧ୍ୟ ଶ୍ରୁତିରେ ଉକ୍ତ ଅଛି, ଭଗବାନ୍ ବହୁ ହେବାକୁ ମନେକରି ପ୍ରାକୃତ ଶକ୍ତି ଅର୍ଥାତ୍ ବହିରଙ୍ଗା ମାୟାକୁ ( ବହିଃଶକ୍ତିକୁ ) ଅବଲୋକନ କରିବାରୁ ମାୟା କ୍ଷୋଭିତ ହେଲେ,

ବ୍ରହ୍ମ-ଶବ୍ଦେ କହେ—ପୂର୍ଣ୍ଣ ସ୍ୱୟଂ ଭଗବାନ୍ ।
ସ୍ୱୟଂ ଭଗବାନ୍ କୃଷ୍ଣ—ଶାସ୍ତ୍ରେର ପ୍ରମାଣ ।୧୩୮।
ବେଦେର ନିଗୂଢ଼ ଅର୍ଥ ବୁଝନ ନା ଯାୟ ।
ପୁରାଣବାକ୍ୟେ ସେଇ ଅର୍ଥ କରୟେ ନିଶ୍ଚୟ ॥

ତଥାହି ( ଭାଃ—୧୦।୧୪।୩୦ )—

ଅହୋ ଭାଗ୍ୟମହୋ ଭାଗ୍ୟଂ ନନ୍ଦଗୋପବ୍ରଜୌକସାମ୍,
ଯନ୍ମିତ୍ରଂ ପରମାନନ୍ଦଂ ପୂର୍ଣ୍ଣଂ ବ୍ରହ୍ମ ସନାତନମ୍ ।୯।

---

ପରମାନନ୍ଦଂ ପୂର୍ଣ୍ଣଂ ସନାତନଂ ବ୍ରହ୍ମ ଯନ୍ମିତ୍ରଂ ଯେଷାଂ ମିତ୍ରଂ ତେଷାଂ ନନ୍ଦଗୋପ-ବ୍ରଜୌକସାଂ ଶ୍ରୀମନ୍ନନ୍ଦରାଜବ୍ରଜବାସୀମିତ୍ରାଣାଂ ପଶୁପକ୍ଷିପର୍ଯ୍ୟନ୍ତାନାଂ ସର୍ବେଷାମେବ ଅହୋଭାଗ୍ୟଂ ଅହୋଭାଗ୍ୟଂ । ୯ମ ଶ୍ଳୋକ ।

---

ଏବଂ ତହିଁରୁ ମହତ୍ତତ୍ତ୍ୱାଦି ସୃଷ୍ଟି ଆରମ୍ଭ ହେଲା । ଏଠାରେ ଭଗବାନ୍ ମାୟାକୁ ଅବଲୋକନଦ୍ୱାରା ପ୍ରାକୃତ ସୃଷ୍ଟି ଆରମ୍ଭ ହେଲା । ଅର୍ଥାତ୍ ମହତ୍ତତ୍ତ୍ୱ, ମନ, ବୁଦ୍ଧି, ଅହଙ୍କାର, ପଞ୍ଚତନ୍ମାତ୍ର ପଞ୍ଚଜ୍ଞାନେନ୍ଦ୍ରିୟ, ଓ ପଞ୍ଚକର୍ମେନ୍ଦ୍ରିୟ, ଆଦି ୨୪ଣ ତତ୍ତ୍ୱ ସୃଷ୍ଟି ହେଲା । ଏହି ପ୍ରାକୃତତତ୍ତ୍ୱ ଅର୍ଥାତ୍ ମନ ଓ ନୟନ ସୃଷ୍ଟି ହେବା ପୂର୍ବରୁ ଶ୍ରୁତି କହୁତ ଭଗବାନ୍ ମନେକଲେ ଓ ଅବଲୋକନ କଲେ, ଏହି ଦୁଇ କ୍ରିୟା କାହାଦ୍ୱାରା କଲେ କାରଣ ସେତେବେଳେ ପ୍ରାକୃତ ମନ ଓ ନୟନର ତ ସୃଷ୍ଟି ହୋଇ ନାହିଁ । ଏତଦ୍ୱାରା ଜଣାଯାଏ ଯେ, ଭଗବାନ୍ ଯେଉଁ ମନଦ୍ୱାରା ମନେକଲେ ଓ ଯେଉଁ ନୟନଦ୍ୱାରା ଅବଲୋକନ କଲେ ତାହା ଅପ୍ରାକୃତ । ଏବଂ ତାହା ଭଗବାନ୍ଙ୍କର ଅପ୍ରାକୃତ ଆକାରକୁ ଅବଲମ୍ବନ କରିଅଛି । ଏଣୁ ଏତଦ୍ୱାରା ଭଗବାନଙ୍କର ସାକାରତ୍ୱ ସିଦ୍ଧ ହେଉଅଛି । ୧୩୬ । ୧୩୭ ।

ଏହି ସମସ୍ତ କାରଣରୁ ବ୍ରହ୍ମାଙ୍କର ମୁଖ୍ୟାର୍ଥଦ୍ୱାରା ପରିପୂର୍ଣ୍ଣ ସ୍ୱୟଂ ଭଗବତ୍ତ୍ୱ ସିଦ୍ଧ ହେଲା । ଶାସ୍ତ୍ରମାନଙ୍କର ପ୍ରମାଣଦ୍ୱାରା ସ୍ୱୟଂ ଭଗବାନ ଯେ ଶ୍ରୀକୃଷ୍ଣ ତାହା ସିଦ୍ଧ ହୋଇଅଛି । କାରଣ ବେଦରେ ଯେଉଁ ସିଦ୍ଧାନ୍ତ କରିଅଛନ୍ତି, ତାହାର ନିଗୂଢ଼ ଅର୍ଥ ବୁଝିବା ଅତି କଠିନ ହେତୁ ପୁରାଣ ବାକ୍ୟଦ୍ୱାରା ସେହି ନିଗୂଢ଼ ଅର୍ଥ ପ୍ରକାଶ କରାହୋଇଅଛି । ଯଥା—

ବ୍ରହ୍ମା ଚମତ୍କୃତ ହୋଇ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି କହୁଅଛନ୍ତି, ପ୍ରଭୋ ? ନନ୍ଦଗୋପଙ୍କ ବ୍ରଜବାସୀ ତାବତୀୟ ସ୍ଥାବର ଜଙ୍ଗମମାନଙ୍କର କି ମହାସୌଭାଗ୍ୟ ଦେଖନ୍ତୁ । ଏହି ସୌଭାଗ୍ୟର କଥା ଆଉ ଅଧିକ କଣ କହିବି । ଆପଣ ଯେଉଁ ନିତ୍ୟରୂପୀ ( ସନାତନ ) ଅଖଣ୍ଡାନନ୍ଦମୟ ବ୍ରହ୍ମ । ( ଯହିଁରୁ ଅଧିକ ଆପଣଙ୍କ ବିଷୟ ଶ୍ରୁତି ଅବଧାରଣ କରିବାକୁ ଅକ୍ଷମ ) ସେହି ଆପଣ ସମଗ୍ର ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଆଦରେ ପରିପୂର୍ଣ୍ଣରୂପରେ ସ୍ୱୟଂ ସେମାନଙ୍କର ସ୍ୱାଭାବିକ ବନ୍ଧୁ ହୋଇଅଛନ୍ତି । ଅର୍ଥାତ୍ ନିତ୍ୟ ସେମାନଙ୍କର ବନ୍ଧୁଜନୋଚିତ ପ୍ରେମର ବିଷୟ ହୋଇଅଛନ୍ତି । ୯ମ ଶ୍ଳୋକାର୍ଥ ।

ଅପାଣି'-ଶ୍ରୁତି ବର୍ଜେ—ପ୍ରାକୃତ ପାଣି-ଚରଣ ।
ପୁନଃ କହେ—ଶୀଘ୍ର ଚଲେ, କରେ ସର୍ବଗ୍ରହଣ ॥
ଅତଏବ ଶ୍ରୁତି କହେ—ବ୍ରହ୍ମ 'ସବିଶେଷ' ।
ମୁଖ୍ୟ ଛାଡ଼ି ଲକ୍ଷଣାତେ ମାନେ 'ନିର୍ବିଶେଷ' ॥
ଷଡ଼୍ୈଶ୍ୱର୍ଯ୍ୟ-ପୂର୍ଣ୍ଣାନନ୍ଦ ବିଗ୍ରହ ଯାଁହାର ।
ହେନ ଭଗବାନେ ତୁମି କହ 'ନିରାକାର' ?
ସ୍ୱାଭାବିକ ତିନ ଶକ୍ତି ଯେଇ ବ୍ରହ୍ମେ ହୟ ।
'ନିଃଶକ୍ତି' କରିୟା ତାଁରେ କରହ ନିଶ୍ଚୟ ? ॥

ତଥାହି ବିଷ୍ଣୁପୁରାଣେ ( ୬।୭।୬୧—୬୩ )

ବିଷ୍ଣୁଶକ୍ତିଃ ପରା ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥାପରା
ଅବିଦ୍ୟାକର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ ।୧୦
ଯୟା କ୍ଷେତ୍ରଜ୍ଞଶକ୍ତିଃ ସା ବେଷ୍ଟିତା ନୃପ ସର୍ବଗା ।
ସଂସାରତାପାନଖିଲାନବାପ୍ନୋତ୍ୟନୁସନ୍ତତାନ୍ ।୧୧

ହେ ନୃପ—ଭୂପାଳ ସର୍ବଗାପି ସା କ୍ଷେତ୍ରଜ୍ଞଶକ୍ତିଃ ଯୟା ଅବିଦ୍ୟୟା ବେଷ୍ଟିତାଽଭୂତ ଆଶ୍ଳିଷ୍ଟାଭୂତ, ଅତ ସଂସାରେ ସନ୍ତତାନ୍ ଭେଦଂ ପ୍ରାପ୍ୟ କର୍ମଭିଃ ଅଖିଳାନ୍ ସଂସାରତାପାନ୍ ଅବାପ୍ନୋତି—ପ୍ରାପ୍ନୋତି । ୧୧ଶ ଶ୍ଳୋକ ।

ପ୍ରକାଶାନନ୍ଦ ବ୍ରହ୍ମାଙ୍କର ସାକାରତ୍ୱ ବିଷୟରେ କହୁଅଛନ୍ତି—ଶ୍ରୁତି କହୁଅଛନ୍ତି ବ୍ରହ୍ମ "ଅପାଣି-ପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟ ଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ" ଅର୍ଥାତ୍ ବ୍ରହ୍ମଙ୍କର ପାଣିପାଦ ନାହିଁ, ଅଥଚ ସେ ଶୀଘ୍ର ଚଳନ୍ତି ଓ ସବୁ ଗ୍ରହଣ କରନ୍ତି । ଆଖି ନାହିଁ ସବୁ ଦେଖନ୍ତି, କାନ ନାହିଁ ସବୁ ଶୁଣନ୍ତି । ଏହି ବଚନଦ୍ୱାରା ବ୍ରହ୍ମଙ୍କର ଏହି ସମସ୍ତ ଇନ୍ଦ୍ରିୟ ନ ଥାଇ କପରି ଇନ୍ଦ୍ରିୟକ୍ରିୟା ହୁଏ, ଏହାର ତାତ୍ପର୍ଯ୍ୟ ଏହି ଯେ ବ୍ରହ୍ମାଙ୍କର ପାଣିଚରଣାଦି ପ୍ରାକୃତ ନୁହେ, ତାହା ଅପ୍ରାକୃତ । ତେଣୁ ସେ ସାକାର ଏହି ଅର୍ଥ ଶ୍ରୁତିର ମୁଖ୍ୟ ଅର୍ଥ । ଏହାକୁ ଛାଡ଼ି ଲକ୍ଷଣାବୃତ୍ତିଦ୍ୱାରା ବ୍ରହ୍ମଙ୍କୁ ନିର୍ବିଶେଷ ବୋଲି କଳ୍ପନା କରୁଅଛ । ଯେଉଁ ବ୍ରହ୍ମଙ୍କର ଶ୍ରୀବିଗ୍ରହ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଓ ଆନନ୍ଦପୂର୍ଣ୍ଣ (ଅଖଣ୍ଡାନନ୍ଦ) ଏପ୍ରକାର ଭଗବାନଙ୍କୁ କେଉଁ ସାହସରେ ନିରାକାର ବୋଲି କୁହ ।୧୪୦।୧୪୧।୧୪୨।

ନିର୍ବିଶେଷବାଦୀମାନେ ବ୍ରହ୍ମକୁ ନିରାକାର ସତ୍ତାମାତ୍ର ବୋଲି କଳ୍ପନା କରନ୍ତି । ତାହାଙ୍କର ଶକ୍ତି ସ୍ୱୀକାର କରନ୍ତି ନାହିଁ । ଏଣୁ ଶ୍ରୀମନ୍ ମହାପ୍ରଭୁ କହୁଅଛନ୍ତି ଯେ, ଯେଉଁ ବ୍ରହ୍ମଙ୍କର ପ୍ରଧାନ ତିନ ଶକ୍ତି ରହିଅଛି, ତାହାଙ୍କୁ ନିଃଶକ୍ତି ବୋଲି ତୁମ୍ଭେ କଳ୍ପନା କର ।୧୪୩।

୧୦ମ ଶ୍ଳୋକର ଅନ୍ୱୟ :—ଅାଦି :—୬ମ ପରି :—୬ମ ଶ୍ଳୋକରେ ଅଛି ।

ବିଷ୍ଣୁଙ୍କର ତିନଗୋଟି ଶକ୍ତି ଉପଲବ୍ଧି ହୁଏ । ସେଥି ମଧ୍ୟରୁ ପରା ( ସର୍ବଶ୍ରେଷ୍ଠା ) ଚିତ୍ସ୍ୱରୂପା ( ଅନ୍ତରଙ୍ଗାଶକ୍ତି ) ୧ମ; ଅପରା ( ଅନ୍ତରଙ୍ଗାଶକ୍ତିଠାରୁ ପୃଥକ୍ ) କ୍ଷେତ୍ରଜ୍ଞାନାମ୍ନୀ-ଶକ୍ତି ( ଜୀବଶକ୍ତି ) ୨ୟ—ଏବଂ ଅନ୍ୟା ( ଅନ୍ତରଙ୍ଗା ଓ କ୍ଷେତ୍ରଜ୍ଞା ବ୍ୟତୀତ ଅନ୍ୟା ) କର୍ମସଂଜ୍ଞାନାମା ଅବିଦ୍ୟା ( ମାୟା ବା ବହିରଙ୍ଗାଶକ୍ତି ) ୩ୟ— ୧୦ମ ଶ୍ଳୋକାର୍ଥ ।

ହେ ରାଜନ୍ ସର୍ବଗା କ୍ଷେତ୍ରଜ୍ଞାଶକ୍ତି ( ଜୀବଶକ୍ତି ) ଅବିଦ୍ୟା କର୍ତ୍ତୃକ ଆବୃତ ହୋଇ ଅର୍ଥାତ୍ କର୍ମଦ୍ୱାରା ଭେଦପ୍ରାପ୍ତ ହୋଇ ଅଖିଳ ସଂସାରତାପ ପ୍ରାପ୍ତ ହୁଅନ୍ତି ।

ତୟ୍ୟା ତିରୋହିତତ୍ୱାଚ୍ଛ ଶକ୍ତିଃ କ୍ଷେତ୍ରଜ୍ଞସଂଜ୍ଞିତା ।
ସର୍ବଭୂତେଷୁ ଭୂପାଳ ତାରତମ୍ୟେନ ବର୍ତ୍ତତେ ॥

ତଥାହି ବିଷ୍ଣୁପୁରାଣେ ( ୧।୧୨।୬୯ )—
ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ତ୍ୱୟ୍ୟେକା ସର୍ବସଂଶ୍ରୟେ ।
ହ୍ଲାଦତାପକରୀ ମିଶ୍ରା ତ୍ୱୟି ନୋ ଗୁଣବର୍ଜିତେ ।୧୩

ହେ ଭୂପାଳ ! ଚ ପୁନଃ ତସ୍ୟାଃ—ଅବିଦ୍ୟାୟାଃ ତିରୋହିତତ୍ୱାତ୍ ଗୁଣମାୟାହୀନତ୍ୱାତ୍ କ୍ଷେତ୍ରଜ୍ଞସଂଜ୍ଞିତାଶକ୍ତିଃ—ମୁକ୍ତଜୀବଃ ଭଗବଦ୍ବୈମୁଖ୍ୟବଧାଦ୍ଭିନ୍ନ୍ୟବର୍ତ୍ତିମାନେ ସର୍ବଭୂତେଷୁ ତାର-ତମ୍ୟେନ ବର୍ତ୍ତତେ ଅବିଦ୍ୟାୟା ବର୍ବରଂ ମନ୍ୟତେ । ୧୨ଶ ଶ୍ଳୋକ ।

ହେ ରାଜନ୍ ! ପୁନଶ୍ଚ ମାୟାବେଷ୍ଟନରୁ କ୍ଷେତ୍ରଜ୍ଞାଶକ୍ତି ସର୍ବଗା ( ମୁକ୍ତଜୀବ ) ହୁଅନ୍ତି । କିନ୍ତୁ ସେ ଭଗବଦ୍ବୈମୁଖ୍ୟହେତୁ ମାୟାଦ୍ୱାରା ଆବଦ୍ଧ ହୋଇ ସର୍ବଦା ସର୍ବଭୂତରେ ଆପଣାକୁ ଉଚ୍ଚ ନୀଚ ( ତାରତମ୍ୟ ) ଭାବରେ ଅନୁଭବ କରନ୍ତି । ୧୨ଶ ଶ୍ଳୋକାର୍ଥ ।

୧୩ଶ ଶ୍ଳୋକ ଅନ୍ୱୟ ଅଛି :—୪ର୍ଥ ପର :—୯ମ ଶ୍ଳୋକ ।

ହେ ଭଗବନ୍ ! ସୁଖ୍ୟା ଅବ୍ୟଭିଚାରିଣୀ ଆପଣଙ୍କର ସ୍ୱରୂପଭୂତା ହ୍ଲାଦିନୀ ସନ୍ଧିନୀ ଓ ସମ୍ବିତ୍, ଏହି ଶକ୍ତିତ୍ରୟ ସର୍ବାଧିଷ୍ଠାନଭୂତ ଆପଣଙ୍କଠାରେ ବିରାଜ କରୁଅଛନ୍ତି । ତ୍ରିଗୁଣା ପ୍ରକୃତିସ୍ଥ ହ୍ଲାଦକାରୀ ଅର୍ଥାତ୍ ମନଃପ୍ରସାଦଜନନୀ ସାତ୍ତ୍ୱିକୀ, ତାପକରୀ ଅର୍ଥାତ୍ ବିଷୟବିଯୋଗାଦିରେ ତାପଦାୟିନୀ ତାମସୀ ଏବଂ ପ୍ରସାଦ ଓ ତାପ ଉଭୟମିଶ୍ରା ବିଷୟଜନ୍ୟା ରାଜସୀ, ଏ ତ୍ରିବିଧାଶକ୍ତି ପ୍ରାକୃତ ସତ୍ତ୍ୱାଦି ଗୁଣବିହୀନ ଆପଣଙ୍କଠାରେ ନାହାନ୍ତି । ଅର୍ଥାତ୍ ତାହା ଜୀବମାନଙ୍କଠାରେ ରହିଅଛି ।

ଏଠାରେ ଆଶଙ୍କା ହୋଇପାରେ ଯେ, ସର୍ବାଧିଷ୍ଠାନଭୂତ ଭଗବାନଙ୍କଠାରେ ମାୟିକ ଶକ୍ତିତ୍ରୟ ଯଦି ନ ରହନ୍ତି ତେବେ ସେ ସର୍ବାଧିଷ୍ଠାନଭୂତ କିରୂପ ହେଲେ ? ଏହାର ସିଦ୍ଧାନ୍ତ ଏହି ଯେ, ସ୍ୱରୂପଗତ-ଶକ୍ତିତ୍ରୟ ସ୍ୱରୂପରୁ ଅଭିନ୍ନ ହେତୁ ସେମାନେ ଯୁଗପତ୍ ତାହାଙ୍କ ସ୍ୱରୂପରେ ରହିଅଛନ୍ତି । କିନ୍ତୁ ମାୟାଶକ୍ତି ତାହାଙ୍କର ବହିରଙ୍ଗାହେତୁ ମାୟିକ ତ୍ରିଗୁଣମୟୀ ଶକ୍ତି ତାହାଙ୍କ ସହିତ ଯୁକ୍ତ ହୁଅନ୍ତି ନାହିଁ ଅର୍ଥାତ୍ ତାହାଙ୍କ ଆଶ୍ରୟରେ ରହିଅଛନ୍ତି । ଏହାହିଁ ଶ୍ରୀଭଗବାନଙ୍କର ଭଗବତ୍ତା । କାରଣ ସେ ସ୍ୱୟଂ ଆନନ୍ଦଘନସ୍ୱରୂପ ହେତୁ ମାୟାଗୁଣବିଶିଷ୍ଟା ମିଶ୍ରା ସାତ୍ତ୍ୱିକୀ ଆଦି ଗୁଣଦ୍ୱାରା ତାହାଙ୍କର ମନଃପ୍ରସାଦ କିପରି ହୋଇପାରେ । ଏହି ଶ୍ଳୋକରେ ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀର କ୍ରମୋତ୍କର୍ଷ ଥିବାରୁ ଅର୍ଥାତ୍ ସନ୍ଧିନୀର ଗୁଣ ସମ୍ବିତ୍‌ରେ ଓ ସମ୍ବିତ୍‌ର ଗୁଣ ହ୍ଲାଦିନୀରେ ଥିବାରୁ ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ, ଏହିରୂପ କ୍ରମ ଜାଣିବାକୁ ହେବ । ହ୍ଲାଦିନୀର ଅର୍ଥ ଏହି ଯେ ଶ୍ରୀକୃଷ୍ଣ ସ୍ୱୟଂ ଆହ୍ଲାଦନରୂପ ହୋଇ ଯେଉଁ ଯାହାଦ୍ୱାରା ଆହ୍ଲାଦିତ ହୁଅନ୍ତି ଏବଂ ଆହ୍ଲାଦିତ କରନ୍ତି, ତାହାହିଁ ତାହାଙ୍କର ହ୍ଲାଦିନୀଶକ୍ତି । ଏହାର ସାରାଂଶ-ପ୍ରଧାନକୁ ଗୁହ୍ୟବିଦ୍ୟା ବା ମାୟାଭାବ କୁହାଯାଏ । ଏହା ଦ୍ୱାରା ଶ୍ରୀକୃଷ୍ଣଙ୍କର ପ୍ରୀତ୍ୟାତ୍ମିକା ( ରାଗାନୁଗାଭକ୍ତି ) ପ୍ରକାଶ ପାଏ । ଶ୍ରୀକୃଷ୍ଣ ସ୍ୱୟଂ ସନ୍ଧିନୀସ୍ୱରୂପ ଅର୍ଥାତ୍ ସତ୍ତାସ୍ୱରୂପ ହେଲେହେଁ ଯାହାଦ୍ୱାରା ସତ୍ତାକୁ ଧାରଣ କରନ୍ତି ଏବଂ କରାନ୍ତି ତାହାହିଁ ସନ୍ଧିନୀଶକ୍ତି । ଏହାର ସାରାଂଶ ପ୍ରଧାନକୁ ଆଧାରଶକ୍ତି ବା ଶୁଦ୍ଧସତ୍ତ୍ୱ କୁହାଯାଏ । ଶ୍ରୀକୃଷ୍ଣ ସ୍ୱୟଂ ସମ୍ବିତ୍‌ମୟ ( ଜ୍ଞାନମୟ ) ହେଲେହେଁ ଯାହାଦ୍ୱାରା ଜାଣନ୍ତି ଓ ଜଣାନ୍ତି ତାହାହିଁ ସମ୍ବିତ୍‌ଶକ୍ତି । ଏହାର ସାରାଂଶ ପ୍ରଧାନକୁ ଆତ୍ମବିଦ୍ୟା ( ଭଗବତ୍ତତ୍ତ୍ୱଜ୍ଞାନ ) କୁହାଯାଏ । ୧୩ଶ ଶ୍ଳୋକାର୍ଥ ।

ସତ୍‌-ଚିତ୍‌-ଆନନ୍ଦମୟ ଈଶ୍ୱରସ୍ୱରୂପ ।
ତିନ ଅଂଶେ ଚିଚ୍ଛକ୍ତି ହୟ ତିନ-ରୂପ । ୧୪୪ ।
ଆନନ୍ଦାଂଶେ ହ୍ଲାଦିନୀ, ସଦଂଶେ ସନ୍ଧିନୀ ।
ଚିଦଂଶେ ସମ୍ବିତ୍‌—ଯାରେ 'ଜ୍ଞାନ' କରି ମାନି ॥
ଅନ୍ତରଙ୍ଗା ଚିଚ୍ଛକ୍ତି, ତଟସ୍ଥା ଜୀବଶକ୍ତି ।
ବହିରଙ୍ଗା ମାୟା—ତିନେ କରେ ପ୍ରଭୁ ଭକ୍ତି ॥
ଷଡ୍‌ବିଧ ଐଶ୍ୱର୍ଯ୍ୟ ପ୍ରଭୁର ଚିଚ୍ଛକ୍ତିବିଲାସ ।
ହେନ ଶକ୍ତି ନାହି ମାନ—ପରମ ସାହସ ॥
ମାୟାଧୀଶ ମାୟାବଶ—ଈଶ୍ୱରେ-ଜୀବେ ଭେଦ ।
ହେନ ଜୀବ ଈଶ୍ୱର-ସନେ କରହ ଅଭେଦ ?
ଗୀତାଶାସ୍ତ୍ରେ ଜୀବରୂପ 'ଶକ୍ତି' କରି ମାନେ ।
ହେନ ଜୀବେ ଅଭେଦ କର ଈଶ୍ୱରେର ସନେ ।

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ ( ୭।୫ )—
ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍ ।
ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ
ଜଗତ୍ । ୧୪ ।

---

ଈଶ୍ୱରଙ୍କ ସ୍ୱରୂପଶକ୍ତି ଅର୍ଥାତ୍ ପରାଶକ୍ତି ସଚ୍ଚିଦାନନ୍ଦମୟ ତାହାହିଁ ଭଗବତ୍‌ ଚିଚ୍ଛକ୍ତି, ଏବଂ ତିନଅଂଶରେ ତିନରୂପ ଧାରଣ କରନ୍ତି ଯଥା—ଆନନ୍ଦ ଅଂଶରେ ହ୍ଲାଦିନୀ, ସତ୍ ଅଂଶରେ ସନ୍ଧିନୀ (ଆଧାର ଶକ୍ତି, ଓ ଚିତ୍‌ଅଂଶରେ ସମ୍ବିତ୍‌—ଯାହାକୁ କି କୃଷ୍ଣଜ୍ଞାନ ବୁଝାଯାଏ ।୧୪୪।୧୪୫।

ଏହି ଚିତ୍‌ଶକ୍ତି (ପରାଶକ୍ତି)ହିଁ ଅନ୍ତରଙ୍ଗା, ଜୀବଶକ୍ତି (କ୍ଷେତ୍ରଜ୍ଞଶକ୍ତି)ହିଁ ତଟସ୍ଥା ଏବଂ ମାୟାଶକ୍ତିହିଁ ବହିରଙ୍ଗା, ଏହି ତିନଶକ୍ତି ଭଗବାନ୍‌ଙ୍କୁ ଭକ୍ତି କରନ୍ତି । ଏହାର ଭାବ ଏହି ଯେ, ଅନ୍ତରଙ୍ଗା ଶକ୍ତିର ଅଧିଷ୍ଠାତ୍ରୀମାନେ ତଟସ୍ଥାଶକ୍ତି (ଭଗବାନ୍ ଓ ମାୟା ଏ ଉଭୟର ସମ୍ବନ୍ଧ ଅବଧାରଣ କାଳପର) ଏବଂ ମାୟାର ଅଧିଷ୍ଠାତ୍ରୀମାନେ ଭଗବାନଙ୍କୁ ଭକ୍ତି କରନ୍ତି । ୧୪୬ ।

ଶ୍ରୀ ଭଗବାନ୍ ସ୍ୱରୂପ ଶକ୍ତିର ବିଳାସ ଅର୍ଥାତ୍ ଲୀଳାଦ୍ୱାରା ଷଡ୍‌ଐଶ୍ୱର୍ଯ୍ୟ ପ୍ରକାଶ କରନ୍ତି । ଏରୂପ ଭଗବତ୍ ଶକ୍ତିକୁ ଆପଣ କେଉଁ ସାହସରେ ମାନନ୍ତି ନାହିଁ । ୧୪୭ ।

ଏଠାରେ ସମ୍ଭବତଃ ଭଟ୍ଟାଚାର୍ଯ୍ୟ ଜୀବବ୍ରହ୍ମଙ୍କର ଅଭେଦ ବିଷୟ ପୂର୍ବପକ୍ଷ କରିବାରୁ ଶ୍ରୀମନ୍ ମହାପ୍ରଭୁ ତାହା ଖଣ୍ଡନ କରୁଅଛନ୍ତି । ଯଥା —

ଈଶ୍ୱର—ମାୟାର ଈଶ୍ୱର ବା ନିୟନ୍ତା ଏବଂ ଜୀବ—ମାୟାର ଅଧୀନ ଏହି—ସାଧାରଣ ଜ୍ଞାନଦ୍ୱାରା ଶ୍ରୀଭଗବାନ୍ ଏବଂ ଜୀବ ମଧ୍ୟରେ ମହା ବ୍ୟବଧାନ ରହିଅଛି । ଏପରି ସ୍ଥଳେ ମାୟାର କ୍ରୀଡ଼ାପୁତ୍ତଳ ଜୀବକୁ ମାୟା ଯାହାଙ୍କର କ୍ରୀଡ଼ାପୁତ୍ତଳ ସେହି ଭଗବାନଙ୍କ ସହିତ କିପରି ଅଭେଦ ବୋଲି—ଅର୍ଥାତ୍—ଜୀବ ଓ ଭଗବାନ ଏକବସ୍ତୁ ବୋଲି କହୁଅଛନ୍ତି । ଶ୍ରୀମଦ୍ ଭଗବଦ୍ ଗୀତାରେ ଶ୍ରୀଭଗବାନ୍ କହି ଅଛନ୍ତି ଜୀବହିଁ ଶ୍ରୀଭଗବାନଙ୍କର ଏକଶକ୍ତି, ଅତଏବ ଜୀବର ଭଗବାନଙ୍କ ସହିତ ଅଂଶାଂଶୀ ସମ୍ବନ୍ଧ । ସମତ୍ୱ ବା ଏକତ୍ୱ ନୁହେଁ । ୧୪୮ । ୧୪୯ ।

୧୪ଶ ଶ୍ଳୋକର ଅନ୍ୱୟ—ଆଦି : ୭ମ ପରି : ୬ଷ୍ଠ ଶ୍ଳୋକ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ମହାବାହୁ ଅର୍ଜୁନ ! ପୂର୍ବେ ଯେଉଁ ଅଷ୍ଟବିଧା ପ୍ରକୃତିର ବିଷୟ କହିଲି ସେମାନେ ଅପରା—ଅର୍ଥାତ୍ ଜଡ଼ତ୍ୱ ହେତୁ ନିକୃଷ୍ଟ, ସେମାନଙ୍କ ଅପେକ୍ଷା ପରା (ଉତ୍କୃଷ୍ଟ) ଅପର ପ୍ରକୃତିର ବିଷୟ ଅବଗତ ହୁଅ, ଯେ ପ୍ରକୃତି ଜୀବସ୍ୱରୂପା ଅର୍ଥାତ୍ କ୍ଷେତ୍ରଜ୍ଞା ହେତୁରୁ ଏହି ଜଗତ୍‌କୁ ସ୍ୱକର୍ମ ଦ୍ୱାରା ଧାରଣ କରି ରହିଅଛି । ୧୪ଶ ଶ୍ଳୋକାର୍ଥ ।

ଈଶ୍ୱରେର ଶ୍ରୀବିଗ୍ରହ ସଚ୍ଚିଦାନନ୍ଦାକାର ।
ଶ୍ରୀବିଗ୍ରହେ କହ — ସତ୍ତ୍ୱଗୁଣେର ବିକାର ? ॥
ଶ୍ରୀବିଗ୍ରହ ଯେ ନା ମାନେ — ସେଇ ତ ପାଷଣ୍ଡୀ ।
ଅଦୃଶ୍ୟ ଅସ୍ପୃଶ୍ୟ ସେଇ — ହୟ ଯମଦଣ୍ଡୀ । ୧୪୧
ବେଦ ନା ମାନିଞା ବୌଦ୍ଧ ହୟ ତ ନାସ୍ତିକ ।
ବେଦାଶ୍ରୟ-ନାସ୍ତିକ୍ୟବାଦ ବୌଦ୍ଧକେ ଅଧିକ ॥
ଜୀବେର ନିସ୍ତାର-ଲାଗି ସୂତ୍ର କୈଲ ବ୍ୟାସ ।
ମାୟାବାଦିଭାଷ୍ୟ ଶୁନିଲେ ହୟ ସର୍ବନାଶ ॥
ପରିଣାମବାଦ ବ୍ୟାସସୂତ୍ରେର ସମ୍ମତ ।
ଅଚିନ୍ତ୍ୟଶକ୍ତ୍ୟେ ଈଶ୍ୱର ଜଗଦ୍ରୂପେ ପରିଣତ ॥
ମଣି ଯୈଛେ ଅବିକୃତ ପ୍ରସବେ ହେମଭାର ।
ଜଗଦରୂପ ହୟ ଈଶ୍ୱର — ତବୁ ଅବିକାର ॥

---

ଯେଉଁ ଭଗବାନ୍‌ଙ୍କର ଦେହ ମାୟାତୀତ ଅର୍ଥାତ୍ ମାୟାର ଗୁଣ ଓ ବିକାରର ଅତୀତ, କେବଳ ଚିଦାନନ୍ଦମୟ ଆକାର ଅର୍ଥାତ୍ ଦେହ ଦେହୀ ଅଭେଦ, ସେହି ଭଗବଦ୍‌ବିଗ୍ରହଙ୍କୁ ମାୟିକ ସତ୍ତ୍ୱଗୁଣ ଦ୍ୱାରା ଗଠିତ-ବୋଲି ଆପଣ କହୁଅଛନ୍ତି । ଶ୍ରୀ ଭଗବଦ୍ବିଗ୍ରହରେ ଯାହାର ବିଶ୍ୱାସ ନାହିଁ, ସେ ନର ପାଷଣ୍ଡ । ସେ ହେତୁ ସେ ଦର୍ଶନ ଓ ସ୍ପର୍ଶର ଅଯୋଗ୍ୟ ଏବଂ ସେ ଯମଦଣ୍ଡ ଭୋଗ କରନ୍ତି । ୧୪୦।୧୪୧।

ବୌଦ୍ଧମାନେ ଅର୍ଥାତ୍ ସର୍ବାକାର ଶୂନ୍ୟବାଦମାନେ ବେଦ ମାନନ୍ତି ନାହିଁ । ସୁତରାଂ ବେଦପ୍ରତିପାଦ୍ୟ ଚିଦାନନ୍ଦମୟ ଭଗବାନଙ୍କୁ ସ୍ୱୀକାର କରନ୍ତି ନାହିଁ । ଏଣୁ ସେମାନଙ୍କୁ ବେଦାଶ୍ରୟିମାନେ ନାସ୍ତିକ ବୋଲି କହନ୍ତି, କିନ୍ତୁ ଯେଉଁମାନେ ବେଦକୁ ସ୍ୱୀକାର କରୁଅଛନ୍ତି ବୋଲି ଦେଖାଇ ବେଦପ୍ରତିପାଦ୍ୟ ଚିଦାନନ୍ଦଘନବ୍ରହ୍ମଙ୍କୁ ସ୍ୱୀକାର କରନ୍ତି ନାହିଁ ସେମାନେ ନାସ୍ତିକ ବୌଦ୍ଧମାନଙ୍କ ଅପେକ୍ଷା ଅଧମ । ୧୪୨ ।

ବେଦର ନିଗୂଢ଼ ଅର୍ଥ ସାଧାରଣତଃ ମନୁଷ୍ୟମାନେ ବୁଝିବାକୁ ଅକ୍ଷମ ହେବାରୁ ଏବଂ ତତ୍ତ୍ୱପ୍ରତିପାଦ୍ୟ ସାକାର ବ୍ରହ୍ମଙ୍କୁ ଧାରଣା କରି ନ ପାରିବାରୁ ଭଗବାନ ବେଦବ୍ୟାସ ସେଥିର ସୂତ୍ର (ବେଦାନ୍ତସୂତ୍ର) ସଙ୍କଳନ କଲେ । ଅର୍ଥାତ୍ ଯେଉଁ ସୂତ୍ରକୁ ଅବଲମ୍ବନ କରି ବ୍ୟାଖ୍ୟା ରୂପରେ ସେହି ସେହି ସୂତ୍ରର ପ୍ରାମାଣ୍ୟ ଶ୍ରୁତିବଚନମାନଙ୍କର ଅର୍ଥ ମନୁଷ୍ୟମାନେ ଗ୍ରହଣ କରିପାରିବେ । କିନ୍ତୁ ସେହି ସୂତ୍ରମାନଙ୍କର ମାୟାବାଦୀ ଭାଷ୍ୟ ( ନିର୍ବିଶେଷ ବ୍ରହ୍ମବାଦୀ ଭାଷ୍ୟ ) ଶୁଣିଲେ ମନୁଷ୍ୟର ସର୍ବନାଶ ହେବ । ଅର୍ଥାତ୍ ମନୁଷ୍ୟ ଭଗବାନଙ୍କ ନିକଟ ଅପରାଧୀ ହେବ, କାରଣ, ମାୟାବାଦୀ ଭାଷ୍ୟର ନିର୍ଯାସ, ବ୍ରହ୍ମ ନିର୍ବିଶେଷ ସତ୍ତା ମାତ୍ର, ଜୀବହିଁ ବ୍ରହ୍ମ, ଜଗତ୍ ମିଥ୍ୟା, ଏହା ଧାରଣା କଲେ ମନୁଷ୍ୟର ସର୍ବନାଶ ହେବ । ୧୪୩ ।

ଶାଙ୍କର ଭାଷ୍ୟରେ ଜଗତକୁ ବ୍ରହ୍ମରେ କଳ୍ପିତ ବୋଲି ନିରୂପଣ କରି ଅଛନ୍ତି । ଅର୍ଥାତ୍ ରଜ୍ଜୁରେ ସର୍ପ ଭ୍ରମତୁଲ୍ୟ ବ୍ରହ୍ମରେ ଜଗତ୍ କଳ୍ପନା ରୂପ ଭ୍ରମଅଟେ ଏହା କହିଅଛନ୍ତି, ଶ୍ରୀମନ୍ ମହାପ୍ରଭୁ ତାହା ଖଣ୍ଡନ କରି କହୁଅଛନ୍ତି ଯେ, ବ୍ୟାସଙ୍କର ସୂତ୍ର ପରିଣାମବାଦ, ଅର୍ଥାତ୍ ଭଗବାନ ନିଜର ଅଚିନ୍ତ୍ୟ ଶକ୍ତିଦ୍ୱାରା ଜଗତ୍ ରୂପରେ ପରିଣତ ଏହା ସ୍ୱୀକାର କରିଅଛନ୍ତି । ଏହାର ତାତ୍ପର୍ଯ୍ୟ ଏହି ଯେ ଭଗବାନ ସତ୍ୟ ଏବଂ ତାହାଙ୍କର ଜଗଦ୍ରୂପ ମଧ୍ୟ ସତ୍ୟ । ତାହା କାଳ୍ପନିକ ନୁହେଁ । ଏଠାରେ ଆଶଙ୍କା ହୋଇପାରେ ଯେ ଭଗବାନ୍ ଜଗଦ୍ରୂପରେ ପରିଣତ ହେବା ଦ୍ୱାରା ବିକୃତ ହୁଅନ୍ତି, ଅର୍ଥାତ୍ ତାହାଙ୍କର ଭଗବତ୍ତାର ହାନି ହୁଏ । ଏହି ଆଶଙ୍କା ଖଣ୍ଡନ ପୂର୍ବକ କହୁଅଛନ୍ତି ଯେ ଭଗବାନ୍ ଜଗତ୍ ରୂପରେ ପରିଣତ ହେଲେ ସୁଦ୍ଧା ବିକୃତ ହୁଅନ୍ତି ନାହିଁ । ଏହାର ପ୍ରମାଣ ଏହି ଯେ ସ୍ପର୍ଶମଣିର ସ୍ପର୍ଶ ମାତ୍ରେ ରାଶି ରାଶି ଲୌହ ସୁବର୍ଣ୍ଣ ହୋଇଯାନ୍ତି କିନ୍ତୁ ସ୍ପର୍ଶମଣିର ତହିଁରେ କିଛି

ବ୍ୟାସ ଭ୍ରାନ୍ତ ବଲି ସେଇ ସୂତ୍ରେ ଦୋଷ ଦିୟା ।
'ବିବର୍ତ୍ତବାଦ' ସ୍ଥାପିୟାଛେ କଳ୍ପନା କରିୟା ॥
ଜୀବେର ଦେହେ ଆତ୍ମବୁଦ୍ଧି—ସେଇ ମିଥ୍ୟା ହୟ
ଜଗତ ମିଥ୍ୟା ନହେ—ନଶ୍ୱର ମାତ୍ର ହୟ । ୧୫୯
ପ୍ରଣବ ଯେ 'ମହାବାକ୍ୟ'—ଈଶ୍ୱରେର ମୂର୍ତ୍ତି ।
ପ୍ରଣବ ହୈତେ ସର୍ବବେଦ ଜଗତ-ଉତ୍ପତ୍ତି ।
'ତତ୍ତ୍ୱମସି' ଜୀବହେତୁ ପ୍ରାଦେଶିକ ବାକ୍ୟ ।
ପ୍ରଣବ ନା ମାନି ତାରେ କହେ 'ମହାବାକ୍ୟ' ।
ଏଇମତ କଳ୍ପନା-ଭାଷ୍ୟେ ଶତ ଦୋଷ ଦିଲ ।
ଭଟ୍ଟାଚାର୍ଯ୍ୟ ପୂର୍ବପକ୍ଷ ଅପାର କରିଲ । ୧୬୦ ।
ବିତଣ୍ଡା ଛଲ-ନିଗ୍ରହାଦି ଅନେକ ଉଠାଇଲ ।
ସବ ଖଣ୍ଡି ପ୍ରଭୁ ନିଜ ମତ ସେ ସ୍ଥାପିଲ । ୧୬୧ ।
ଭଗବାନ 'ସମ୍ବନ୍ଧ' ଭକ୍ତି 'ଅଭିଧେୟ' ହୟ ।
ପ୍ରେମା 'ପ୍ରୟୋଜନ'— ବେଦେ ତିନ ବସ୍ତୁ କୟ ।
ଆର ଯେ ଯେ କହେ କିଛୁ —ସକଲି କଳ୍ପନା ।
ସ୍ୱତଃପ୍ରମାଣ ବେଦବାକ୍ୟେ କଲ୍ପେନ ଲକ୍ଷଣା ॥
ଆଚାର୍ଯ୍ୟେର ଦୋଷ ନାହି, ଈଶ୍ୱର ଆଜ୍ଞା ହୈଲ
ଅତଏବ କଳ୍ପନା କରି ନାସ୍ତିକ-ଶାସ୍ତ୍ର କୈଲ ।

---

ବିକାର ହୁଏ ନାହିଁ । ଅଧିକନ୍ତୁ ଶ୍ରୀମଦ୍ଭାଗବତର ୧୦ମ ସ୍କନ୍ଧ ୫୬ ଅଧ୍ୟାୟ ୧୦ମ ଶ୍ଳୋକରେ ଉଲ୍ଲେଖ ଅଛି ସ୍ୟମନ୍ତକମଣି ପ୍ରତିଦିନ ଆଠଭାର ସ୍ୱର୍ଣ୍ଣ ପ୍ରସବ କରେ । ଏ ସ୍ଥଳେ ମଣି ଅବିକୃତ ଥାଇ ସୁଦ୍ଧା ସ୍ୱର୍ଣ୍ଣଭାରମାନ ସୃଷ୍ଟି କରେ । ଏହା ଯଦି ପ୍ରାକୃତ ବସ୍ତୁରେ ଦେଖାଯାଏ ତେବେ ଅଚିନ୍ତ୍ୟଶକ୍ତିସମ୍ପନ୍ନ ଶ୍ରୀଭଗବାନଙ୍କଠାରେ ଏଥିର ବିଚିତ୍ରତା କଣ ? ୧୫୪ । ୧୫୫ ।

ଆଦିଲୀଳା ୭ମ ପରିଚ୍ଛେଦ ୧୧୪ ଠାରୁ ୧୨୭ ପଯ୍ୟାରମାନଙ୍କ ଦ୍ୱାରା ଏହା ବୁଝାଇ ଦିଆ ହୋଇଅଛି । ୧୫୬ ଠାରୁ ୧୫୯ ।

ଶ୍ରୀମନ୍ ମହାପ୍ରଭୁ ପୂର୍ବବର୍ଣ୍ଣିତ ପ୍ରକାରରେ ଶଙ୍କରକଳ୍ପିତ ବେଦାନ୍ତଭାଷ୍ୟର ଶତ ଶତ ଦୋଷ ଦେଖାଇଲେ ଏବଂ ସାର୍ବଭୌମ ମଧ୍ୟ ପୂର୍ବପକ୍ଷୀ ହୋଇ ବିତଣ୍ଡା ( ମିଥ୍ୟାବିଗ୍ରହ ) ଛଳ (ବାକ୍ୟଦୂଷଣବିଶେଷ) ନିଗ୍ରହ (ନିରାକରଣ) ଆଦିଦ୍ୱାରା ଶାଙ୍କରଭାଷ୍ୟର ସମର୍ଥନ କଲେ । କିନ୍ତୁ ଶ୍ରୀମନ୍ ମହାପ୍ରଭୁ ସେ ସମସ୍ତ ଖଣ୍ଡନ କରି ନିଜ ମତ ଅର୍ଥାତ୍ ବେଦପ୍ରତିପାଦିତ ମୁଖ୍ୟାର୍ଥ ସ୍ଥାପନ କଲେ । କିମ୍ବା ଭଗବାନ୍ ବେଦମୟ ମୂର୍ତ୍ତି ଅତଏବ ଶ୍ରୀମନ୍ ମହାପ୍ରଭୁ ଭଗବାନ୍ ହେତୁ ନିଜ ମତ ଅର୍ଥାତ୍ ବେଦର ନିଗୂଢ଼ମତ ଅର୍ଥାତ୍ ଭଗବତ ମତ ପ୍ରକାଶ କଲେ । ୧୬୦ । ୧୬୧ ।

ଶ୍ରୀମନ୍ ମହାପ୍ରଭୁ କହିଲେ, ବେଦର ତାତ୍ପର୍ଯ୍ୟ ଏହି ଯେ, ଭଗବାନ୍ ସମ୍ବନ୍ଧ ( ଅଶ୍ରୟତତ୍ତ୍ୱ ଅର୍ଥାତ୍ ଭଜନୀୟ ) ଭକ୍ତି ( ଅଭିଧେୟ ଭଜନପ୍ରଣାଳୀ ବା ସାଧନ ) ଏବଂ ପ୍ରେମ ପ୍ରୟୋଜନ (ଲକ୍ଷ୍ୟବସ୍ତୁ) ଏହାହିଁ ବେଦର ମୁଖ୍ୟାର୍ଥ । ଏତଦ୍‌ବ୍ୟତୀତ ଆଉ ଯେଉଁ ଯେଉଁ ବ୍ୟକ୍ତି ଯେଉଁ ଯେଉଁ ଅର୍ଥ କରନ୍ତୁ ନା କାହିଁକି ତାହା ସମସ୍ତ କଳ୍ପିତ । ୧୬୨ । ୧୬୩ ।

ଏଠାରେ ଏହା ଆଶଙ୍କା ହୋଇପାରେ ଯେ, ଶ୍ରୀଶଙ୍କରାଚାର୍ଯ୍ୟ ସାକ୍ଷାତ୍ ମହାଦେବଙ୍କର ଅବତାର, ଅତଏବ ସେ ଏପରି କଳ୍ପିତ ଅର୍ଥ କାହିଁକି କଲେ । ଏହି ହେତୁ ଶ୍ରୀମନ୍‌ମହାପ୍ରଭୁ କହୁଅଛନ୍ତି ଯେ ଶଙ୍କରରୂପୀ ଶଙ୍କରାଚାର୍ଯ୍ୟ ନିଜ ଇଚ୍ଛାରେ ଈଶ୍ୱରନିନ୍ଦାରୂପ ନାସ୍ତିକ ଅର୍ଥ ପ୍ରକାଶ କରି ନାହାନ୍ତି, ଭଗବାନଙ୍କ ଆଜ୍ଞାରେ ବାଧ୍ୟ ହୋଇ ନାସ୍ତିକ ଶାସ୍ତ୍ର କରିଅଛନ୍ତି । ୧୬୪ ।

ତଥାହି ପଦ୍ମପୁରାଣେ ଉତ୍ତରଖଣ୍ଡେ (୭୨।୩)-

ସ୍ୱାଗମୈଃ କଳ୍ପିତୈସ୍ତ୍ୱଞ୍ଚ ଜନାନ ମଦ୍‌ବିମୁଖାନ୍ କୁରୁ ।
ମାଞ୍ଚ ଗୋପୟ ଯେନ ସ୍ୟାତ୍ ସୃଷ୍ଟିରେଷୋତ୍ତରୋତ୍ତରା । ୧୫ ।

ତଥାହି ତତ୍ରୈବ (୨୫।୭)—

ମାୟାବାଦମସଚ୍ଛାସ୍ତ୍ରଂ ପ୍ରଚ୍ଛନ୍ନଂ ବୌଦ୍ଧମୁଚ୍ୟତେ ।
ମୟୈବ ବିହିତଂ ଦେବି କଳୌ ବ୍ରାହ୍ମଣମୂର୍ତ୍ତିନା ।
ଶୁନି ଭଟ୍ଟାଚାର୍ଯ୍ୟ ହୈଲ ପରମ ବିସ୍ମିତ ।
ମୁଖେ ନା ନିଃସରେ ବାଣୀ—ହଇଲ ସ୍ତମ୍ଭିତ ।

ହେ ଶଙ୍କର ! କଳ୍ପିତୈଃ ରଚିତୈଃ ସ୍ୱାଗମୈଃ ସ୍ୱୀୟ ଆଗମୈଃ ଶାସ୍ତ୍ରୈଃ କରଣୈଃ ଜନାନ୍ ଲୋକାନ୍ ମଦ୍‌ବିମୁଖାନ୍ ମୟି ଭକ୍ତିହୀନାନ୍ ତ୍ୱମେବ କୁରୁ । ତତ୍କୃତ୍ୱା ମାଞ୍ଚ ଗୋପୟ ଗୋପନଂ କୁରୁ । ଯେନ ଗୋପନେନ ଏଷା ସୃଷ୍ଟିଃ ଉତ୍ତରୋତ୍ତରା କ୍ରମେ କ୍ରମେ ବୃଦ୍ଧିବାହୁଲ୍ୟା ଭବେଦିତ୍ୟର୍ଥଃ । ୧୫ଶ ଶ୍ଳୋକ ।

ହେ ଦେବି ! ମାୟାବାଦଂ ଅସଚ୍ଛାସ୍ତ୍ରଂ ଅସତାଂ କୃଷ୍ଣବିମୁଖାନାଂ ଶାସ୍ତ୍ରଂ, କଳୌ ମୟା ଏବ ବ୍ରାହ୍ମଣମୂର୍ତ୍ତିନା ଶଙ୍କରାଚାର୍ଯ୍ୟ ରୂପେଣ ବିହିତଂ କୃତଂ, ଯତ୍ତ ସଦ୍ଭିଃ ପ୍ରଚ୍ଛନ୍ନଂ ବୌଦ୍ଧଂ ଉଚ୍ୟତେ । ୧୬ଶ ଶ୍ଳୋକ ।

( ଶିବଙ୍କ ପ୍ରତି ଶ୍ରୀକୃଷ୍ଣ ବାକ୍ୟ )

ଶ୍ରୀକୃଷ୍ଣ କହିଲେ ହେ ଶଙ୍କର ! ତୁମ୍ଭେ ବେଦାର୍ଥ କଳ୍ପନା କରି ନିଜର ଆଗମଶାସ୍ତ୍ର ପ୍ରଚାର କରି ମନୁଷ୍ୟମାନଙ୍କୁ ମୋର ଭକ୍ତିହୀନ କରାଅ ଏବଂ ତଦ୍ଦ୍ୱାରା ମୋତେ ଗୋପନ କରି (ମୋତେ କାହାରିକୁ ଜାଣିବାକୁ ଦିଅ ନାହିଁ) ଏହି ପ୍ରକାର କଲେ ସୃଷ୍ଟି ଉତ୍ତରୋତ୍ତର ବୃଦ୍ଧି ହେବ । ଅର୍ଥାତ୍ ଲୋକେ ମୋତେ ଜାଣି ନ ପାରିଲେ ଏବଂ ଅଜ୍ଞତା ହେତୁ ମୋତେ ଭକ୍ତି ନ କଲେ ସେମାନେ ସଂସାରରୁ ଉଦ୍ଧାର ହେବେ ନାହିଁ । ଅତଏବ ସଂସାର କ୍ରମେ କ୍ରମେ ବୃଦ୍ଧି ହେବ । ୧୫ଶ ଶ୍ଳୋକାର୍ଥ ।

ଶ୍ରୀ ଶିବ ଦୁର୍ଗାଙ୍କୁ କହୁଅଛନ୍ତି—ହେ ଦେବି ! ମୁଁ କଳିଯୁଗରେ ବ୍ରାହ୍ମଣମୂର୍ତ୍ତି ଧାରଣକରି ମାୟାବାଦ ଅର୍ଥାତ୍ ମିଥ୍ୟାବାଦପୂର୍ଣ୍ଣ ଅସତ୍ ଶାସ୍ତ୍ର (କଳ୍ପିତ ଶାସ୍ତ୍ର) କିମ୍ବା ଯେଉଁ ଶାସ୍ତ୍ରଦ୍ୱାରା ସଦ୍‌ଜ୍ଞାନ (ଭଗବଦ୍ ଜ୍ଞାନ) ଆଚ୍ଛାଦିତ ହେବ ସେହିପରି ଶାସ୍ତ୍ର ରଚନା କରିବି । ଯେଉଁ ଶାସ୍ତ୍ରକୁ ବିବେକମାନେ ଗୁପ୍ତ ବୌଦ୍ଧ ଶାସ୍ତ୍ର ବୋଲି କହିବେ । ଅର୍ଥାତ୍ ବେଦକୁ ଅସ୍ୱୀକାରକାରୀ ନାସ୍ତିକ୍ୟବାଦଶାସ୍ତ୍ରମାନେ ବୌଦ୍ଧ ଶାସ୍ତ୍ର କିନ୍ତୁ ଲୋକମାନଙ୍କ ନିକଟ ବେଦକୁ ସ୍ୱୀକାର କରୁଅଛି ଏହିପ୍ରକାର ଦେଖାଇ ନାସ୍ତିକ ମତକୁ ପ୍ରଚାର କରାହିଁ ପ୍ରଚ୍ଛନ୍ନ ବୌଦ୍ଧଶାସ୍ତ୍ର । ୧୬ଶ ଶ୍ଳୋକାର୍ଥ ।

ଭଟ୍ଟାଚାର୍ଯ୍ୟ ବିତଣ୍ଡାଛଳାଦି ଦ୍ୱାରା ନାନାପ୍ରକାର ପୂର୍ବପକ୍ଷ କରି ସ୍ୱୀୟ ନିର୍ବିଶେଷବାଦ ସ୍ଥାପନ କରିବାକୁ ଅକ୍ଷମ ହେଲେ ଏବଂ ଶ୍ରୀମନ୍ ମହାପ୍ରଭୁ ଭଟ୍ଟାଚାର୍ଯ୍ୟଙ୍କର ସମସ୍ତ ଯୁକ୍ତି ଖଣ୍ଡନ କରି ସବିଶେଷବାଦ ସ୍ଥାପନ କଲେ । ଏଥିରେ ଭଟ୍ଟାଚାର୍ଯ୍ୟ ଅତ୍ୟନ୍ତ ବିସ୍ମିତ ହେଲେ ଏବଂ ପ୍ରତିଭାହୀନ ହେତୁ କୌଣସି କଥା କହି ନ ପାରି ନିସ୍ତବ୍ଧ ହୋଇ ରହିଲେ । ୧୭ ।

ପ୍ରଭୁ କହେ—ଭଟ୍ଟାଚାର୍ଯ୍ୟ ! ନା କର ବିସ୍ମୟ ।
ଭଗବାନେ ଭକ୍ତି—ପରମପୁରୁଷାର୍ଥ ହୟ ।୧୬୬।
ଆତ୍ମାରାମ-ପର୍ଯ୍ୟନ୍ତ କରେ ଈଶ୍ୱର ଭଜନ ।
ଐଛେ ଅଚିନ୍ତ୍ୟ ଭଗବାନେର ଗୁଣଗଣ ।୧୬୭।

ତଥାହି ( ଭାଃ—୧।୭।୧୦ )—

ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ ।୧୬

ଶୁନି ଭଟ୍ଟାଚାର୍ଯ୍ୟ କହେ—ଶୁନ ମହାଶୟ ।
ଏଇ ଶ୍ଳୋକେର ଅର୍ଥ ଶୁନିତେ ବାଞ୍ଛା ହୟ ।
ପ୍ରଭୁ କହେ—ତୁମି କି ଅର୍ଥ କର, ତାହା ଆଗେ ଶୁନି ।
ପାଛେ ଆମି କରିବ ଅର୍ଥ—ଯେବା କିଛୁ ଜାନି ॥
ଶୁନି ଭଟ୍ଟାଚାର୍ଯ୍ୟ ଶ୍ଳୋକ କରିଲ ବ୍ୟାଖ୍ୟାନ ।
ତର୍କଶାସ୍ତ୍ର ମତ ଉଠାୟ ବିବିଧବିଧାନ । ୧୭୦ ।
ନବବିଧ ଅର୍ଥ ତର୍କଶାସ୍ତ୍ର-ମତ ଲୈୟା ।
ଶୁନି ମହାପ୍ରଭୁ କହେ ଈଷତ ହାସିୟା । ୧୭୧ ।
ଭଟ୍ଟାଚାର୍ଯ୍ୟ ! ଜାନି ତୁମି ସାକ୍ଷାତ ବୃହସ୍ପତି ।
ଶାସ୍ତ୍ରବ୍ୟାଖ୍ୟା କରିତେ ଐଛେ କାରୋ ନାହି ଶକ୍ତି ॥
କିନ୍ତୁ ତୁମି ଅର୍ଥ କୈଲେ ପାଣ୍ଡିତ୍ୟପ୍ରତିଭାୟ ।
ଇହା ବଇ ଶ୍ଳୋକେର ଆଛେ ଆର ଅଭିପ୍ରାୟ ।
ଭଟ୍ଟାଚାର୍ଯ୍ୟେର ପ୍ରାର୍ଥନାୟ ପ୍ରଭୁ ବ୍ୟାଖ୍ୟା କୈଲ ।
ତାଁର ନବ-ଅର୍ଥମଧ୍ୟେ ଏକ ନା ଛୁଁଇଲ ।୧୭୨
ଆତ୍ମାରାମଚ-ଶ୍ଳୋକେ ଏକାଦଶ ପଦ ହୟ ।
ପୃଥକ ପୃଥକ କୈଲ ପଦେର ଅର୍ଥ ନିଶ୍ଚୟ ।
ତତ୍ତତ୍ ପଦପ୍ରାଧାନ୍ୟେ ‘ଆତ୍ମାରାମ’ ମିଲାଇୟା ।
ଅଷ୍ଟାଦଶ ଅର୍ଥ କୈଲ ଅଭିପ୍ରାୟ ଲୈୟା ।
ଭଗବାନ ତାଁର ଭକ୍ତି ତାଁର ଗୁଣଗଣ ।
ଅଚିନ୍ତ୍ୟ ପ୍ରଭାବ ତିନେର—ନା ହୟ କଥନ ॥

---

ଆତ୍ମାରାମାଃ ମୁନୟଶ୍ଚ ନିର୍ଗ୍ରନ୍ଥାଅପି ଉରୁକ୍ରମେ ଅହୈତୁକୀଂ ଭକ୍ତିଂ କୁର୍ବନ୍ତି ।
ଇତ୍ଥମ୍ଭୂତଗୁଣଃ—ଆତ୍ମାରାମାଣାମପି ଆକର୍ଷଣସ୍ୱଭାବଃ ହରିଃ । ୧୬୮ ଶ୍ଳୋକ ।

---

ଭକ୍ତି ପରମ ପୁରୁଷାର୍ଥ—ଚତୁର୍ବିଧ ପୁରୁଷାର୍ଥ ମଧ୍ୟରେ ମୁକ୍ତି ଶ୍ରେଷ୍ଠପୁରୁଷାର୍ଥ । କିନ୍ତୁ ଭକ୍ତି ତାହା ଅପେକ୍ଷା ଅତ୍ୟୁତ୍କୃଷ୍ଟ ହେତୁ ସର୍ବଶ୍ରେଷ୍ଠ ପୁରୁଷାର୍ଥ । ଅର୍ଥାତ୍ ପଞ୍ଚମ ପୁରୁଷାର୍ଥ ।୧୬୬।

ଆତ୍ମାରାମ—ଆତ୍ମଜ୍ଞାନ ବା ଜୀବର ସ୍ୱରୂପଜ୍ଞାନ ଲଭିକରି ଅବିଦ୍ୟାବନ୍ଧନରୁ ମୁକ୍ତ ହୋଇ ସ୍ୱାନୁଭବରେ ରତ ।

ଶ୍ରୀସୂତ ଶୌନକ ପ୍ରଭୃତିଙ୍କୁ କହିଲେ—ସର୍ବଚିତ୍ତାକର୍ଷକ ଶ୍ରୀହରିଙ୍କର ଅଦ୍ଭୁତ ଗୁଣର କଥା ଆଉ କଣ କହିବି । ସେ ଆତ୍ମାରାମ ମୁନିମାନଙ୍କୁ ସୁଦ୍ଧା ଆକର୍ଷଣ କରନ୍ତି, ଯେହେତୁ ମାୟା-ଗ୍ରନ୍ଥିନିର୍ଭେଦକାରୀ ବା ଅହଙ୍କାରଶୂନ୍ୟ ବ୍ରହ୍ମାନନ୍ଦଅନୁଭବୀ ମୁନିମାନଙ୍କର କୌଣସି ଆକାଂକ୍ଷା ନ ଥିଲେହେଁ ସେମାନେ ସୁଦ୍ଧା ନିଷ୍କର୍ମା ଭଗବାନଙ୍କୁ ଫଳାଭିସନ୍ଧିରହିତ ଭକ୍ତି କରନ୍ତି । ୧୬୮ ଶ୍ଳୋକାର୍ଥ ।

ନବବିଧ—୯ ପ୍ରକାର । ୧୭୧ । ଜାନି—ମୁଁ ଜାଣୁଛି । ସାକ୍ଷାତ୍—ସ୍ୱୟଂ ।୧୭୨।

ପାଣ୍ଡିତ୍ୟ ପ୍ରତିଭାୟ—ଶାସ୍ତ୍ରଜ୍ଞାନ ଉତ୍ପନ୍ନ ଯେ ପ୍ରତ୍ୟୁତ୍ପନ୍ନମତି ତଦ୍ୱାରା ।

ଏହାବଇ—ଏତଦ୍ବ୍ୟତୀତ ।

ଶ୍ରୀମନ୍ ମହାପ୍ରଭୁ କହିଲେ—ଆପଣ ଶାସ୍ତ୍ରଜ୍ଞାନ ହେତୁ ପ୍ରତ୍ୟୁତ୍ପନ୍ନମତିଦ୍ୱାରା ଯେଉଁ ଅର୍ଥ କଲେ ତାହା ଶ୍ଳୋକର ଅଭିପ୍ରାୟ ନୁହେଁ । ଅର୍ଥାତ୍ ଶ୍ଳୋକକର୍ତ୍ତା ଯେଉଁ ଅଭିପ୍ରାୟରେ ଶ୍ଳୋକ କରିଅଛନ୍ତି ତାହା ଆପଣଙ୍କ ଅର୍ଥଦ୍ୱାରା ପ୍ରକାଶ ହେଉନାହିଁ । ୧୭୩ ।

ଆତ୍ମାରାମ ଶ୍ଳୋକରେ ୧୧ଟି ଶବ୍ଦ ଅଛି । ପ୍ରତ୍ୟେକ ଶବ୍ଦର ଯେତେ ପ୍ରକାର ଅର୍ଥ ଅଛି ତାହା ପୃଥକ୍ ପୃଥକ କରି ସେହି ଶବ୍ଦାର୍ଥରେ ଆତ୍ମାରାମଶବ୍ଦର ଅର୍ଥକୁ ଲଗାଇ ଅର୍ଥ କରିବାକୁ

ଅନ୍ୟ ଯେତ ସାଧ୍ୟସାଧନ କରି ଆଚ୍ଛାଦନ ।
ଏଇଗିନେ ହରେ ସିଦ୍ଧସାଧକେର ମନ । ୧୭୮ ।
ସନକାଦି ଶୁକଦେବ ତାହାତେ ପ୍ରମାଣ ।
ଏଇମତ ନାନା ଅର୍ଥ କରେନ ବ୍ୟାଖ୍ୟାନ ॥
ଶୁନି ଭଟ୍ଟାଚାର୍ଯ୍ୟ-ମନେ ହୈଲ ଚମତ୍କାର ।
ପ୍ରଭୁକେ 'କୃଷ୍ଣ' ଜାନି କରେ ଆପନା ଧିକ୍କାର - ॥
ଇଁହୋତ ସାକ୍ଷାତ କୃଷ୍ଣ—ଇହା ନା ଜାନିୟା ।
ମହାଅପରାଧ କୈନୁ ଗର୍ବିତ ହଇୟା । ୧୮୧ ।
ଆତ୍ମନିନ୍ଦା କରି ଲୈଲ ପ୍ରଭୁର ଶରଣ ।
କୃପା କରିବାରେ ତବେ ପ୍ରଭୁର ହୈଲ ମନ ॥
ଦେଖାଇଲ ଆଗେ ତାରେ ଚତୁର୍ଭୁଜ ରୂପ ।
ପାଛେ ଶ୍ୟାମ ବଂଶୀମୁଖ—ସ୍ୱକୀୟ ସ୍ୱରୂପ । ୧୮୩ ।
ଦେଖି ସାର୍ବଭୌମ ପଡ଼େ ଦଣ୍ଡବତ କରି ।
ପୁନ ଉଠି ସ୍ତୁତି କରେ ଦୁଇ କର ଯୁଡ଼ି । ୧୮୪ ।
ପ୍ରଭୁର କୃପାୟ ତାରେ ସ୍ଫୁରିଲ ସବ ତତ୍ତ୍ୱ ।
ନାମ ପ୍ରେମଦାନ ଆଦି ବର୍ଣ୍ଣେନ ମହତ୍ତ୍ୱ । ୧୮୫ ।
ଶତ ଶ୍ଲୋକ କୈଲ ଏକ ଦଣ୍ଡ ନ ଯାଇତେ ।
ବୃହସ୍ପତି ତୈଛେ ଶ୍ଲୋକ ନା ପାରେ କରିତେ ॥
ଶୁନି ସୁଖେ ପ୍ରଭୁ ତାରେ କୈଲ ଆଲିଙ୍ଗନ ।
ଭଟ୍ଟାଚାର୍ଯ୍ୟ ପ୍ରେମାବେଶେ ହୈଲା ଅଚେତନ ॥
ଅଶ୍ରୁ ସ୍ତମ୍ଭ ପୁଲକ କମ୍ପ ସ୍ୱେଦ ଥରହରି ।
ନାଚେ ଗାୟ କାନ୍ଦେ ପଡ଼େ ପ୍ରଭୁ-ପଦ ଧରି ॥
ଦେଖି ଗୋପୀନାଥାଚାର୍ଯ୍ୟ ହରଷିତ-ମନ ।
ଭଟ୍ଟାଚାର୍ଯ୍ୟ-ର ନୃତ୍ୟ ଦେଖି ହାସେ ପ୍ରଭୁର ଗଣ ॥
ଗୋପୀନାଥାଚାର୍ଯ୍ୟ କହେ ମହାପ୍ରଭୁ ପ୍ରତି— ।
ସେଇ ଭଟ୍ଟାଚାର୍ଯ୍ୟେର ପ୍ରଭୁ କୈଲ ଏଇ ଗତି ? ॥
ପ୍ରଭୁ କହେ-ତୁମି ଭକ୍ତ, ତୋମାର ସଙ୍ଗ ହୈତେ ।
ଜଗନ୍ନାଥ ଇଁହାରେ କୃପା କୈଲ ଭାଲମତେ ॥
ତବେ ଭଟ୍ଟାଚାର୍ଯ୍ୟେ ପ୍ରଭୁ ସୁସ୍ଥିର କରିଲ ।
ସ୍ଥିର ହୈୟା ଭଟ୍ଟାଚାର୍ଯ୍ୟ ବହୁ ସ୍ତୁତି କୈଲା । ୧୯୨ ।
ଜଗତ ନିସ୍ତାରିଲେ ତୁମି – ସେହ ଅଳ୍ପ କାର୍ଯ୍ୟ ।
ଆମା ଉଦ୍ଧାରିଲେ ତୁମି—ଏ ଶକ୍ତି ଆଶ୍ଚର୍ଯ୍ୟ ॥
ତର୍କଶାସ୍ତ୍ରେ ଜଡ଼ ଆମି—ଯୈଛେ ଲୌହପିଣ୍ଡ ।
ଆମା ଦ୍ରବାଇଲେ ତୁମି ପ୍ରତାପ-ପ୍ରଚଣ୍ଡ । ୧୯୪ ।
ସ୍ତୁତି ଶୁନି ମହାପ୍ରଭୁ ନିଜବାସା ଆଇଲା ।
ଭଟ୍ଟାଚାର୍ଯ୍ୟ ଆଚାର୍ଯ୍ୟଦ୍ୱାରେ ଭିକ୍ଷା କରାଇଲା । ୧୯୫ ।
ଆରଦିନ ପ୍ରଭୁ ଗେଲା ଜଗନ୍ନାଥ ଦର୍ଶନେ ।
ଦର୍ଶନ କରିଲା ଜଗନ୍ନାଥ-ଶୟ୍ୟୋତ୍ଥାନେ । ୧୯୬ ।
ପୂଜାରୀ ଆନିଞା ମାଲା-ପ୍ରସାଦାନ୍ନ ଦିଲା ।
ପ୍ରସାଦାନ୍ନ-ମାଲା ପାଞା ପ୍ରଭୁ ହର୍ଷ ହୈଲା । ୧୯୭ ।
ସେଇ ପ୍ରସାଦାନ୍ନ-ମାଲା ଅଞ୍ଚଲେ ବାନ୍ଧିୟା ।
ଭଟ୍ଟାଚାର୍ଯ୍ୟେର ଘରେ ଆଇଲା ତ୍ୱରାଯୁକ୍ତ ହୈୟା ॥
ଅରୁଣୋଦୟକାଲେ ହୈଲ ପ୍ରଭୁର ଆଗମନ ।
ସେଇକାଲେ ଭଟ୍ଟାଚାର୍ଯ୍ୟେର ହୈଲ ଜାଗରଣ ॥

ଲାଗିଲେ । ଏହି ଅନୁସାରେ ମହାପ୍ରଭୁ ସେ ଶ୍ଳୋକର ୧୮ ପ୍ରକାର ଅର୍ଥ କଲେ । କିନ୍ତୁ ପ୍ରତ୍ୟେକ ଅର୍ଥର ତାତ୍ପର୍ଯ୍ୟ ଭଗବାନ୍, ଭଗବତ୍ଭକ୍ତି ଏବଂ ଭଗବାନଙ୍କର ଗୁଣଗଣ, ଏହି ତିନି ବସ୍ତୁ ଅଚିନ୍ତ୍ୟ ପ୍ରଭାବର ବିଷୟ ଅଟେ ।

ଅତଏବ ଭଗବାନ, ଭଗବତ୍ ଭକ୍ତି, ଓ ଭଗବଦ୍ ଗୁଣଗଣ, ଏହି ତିନିବସ୍ତୁ ସାଧକ-ମାନଙ୍କର ଏବଂ ସିଦ୍ଧମାନଙ୍କର ମନକୁ ହରଣ କରେ, ଏବଂ ତଦ୍ଦ୍ୱାରା ଭଗବାନ ଓ ଭକ୍ତିବ୍ୟତୀତ ଅନ୍ୟବିଧ ସାଧ୍ୟସାଧନ ଆଚ୍ଛାଦିତ ହୁଏ । ଅର୍ଥାତ୍ ଭଗବତ୍ ନିମନ୍ତ୍ରିଲେ ଓ ଭକ୍ତିଲାଭ ହେଲେ ଜ୍ଞାନ କର୍ମାଦି ଅକିଞ୍ଚିତ୍କର ବୋଧହୁଏ । ୧୭୫ ଠାରୁ ୧୭୮ ।

ପ୍ରଥମେ ଶ୍ରୀମନ୍ ମହାପ୍ରଭୁ ସାର୍ବଭୌମଙ୍କୁ ନିଜଐଶ୍ୱର୍ଯ୍ୟ ମୂର୍ତ୍ତି (ଚତୁର୍ଭୁଜ ନାରାୟଣ ମୂର୍ତ୍ତି) ଦେଖାଇଲେ । ପଛେ ନିଜର ସ୍ୱାଭାବିକ ରୂପ (ଶ୍ୟାମସୁନ୍ଦର ତ୍ରିଭଙ୍ଗ ଦ୍ୱିଭୁଜ ମୁରଲୀବଦନମୂର୍ତ୍ତି) ଦେଖାଇଲେ । ୧୮୩ ।

ତତ୍ତ୍ୱ—ଭଗବତ୍ ତତ୍ତ୍ୱ କିମ୍ବା ଶ୍ରୀମନ୍ ମହାପ୍ରଭୁଙ୍କର ଅବତାର ତତ୍ତ୍ୱ । ୧୮୫ ।
ସେଇ—ତର୍କନିଷ୍ଠ କଠିନ ହୃଦୟ । ଏଇ—ଅଷ୍ଟସାତ୍ତ୍ୱିକଭାବପୂର୍ଣ୍ଣ ସରସ । ୧୯୦ ।

'କୃଷ୍ଣକୃଷ୍ଣ' ସ୍ଫୁଟ କହି ଭଟ୍ଟାଚାର୍ଯ୍ୟ ଜାଗିଲା ।
କୃଷ୍ଣନାମ ଶୁନି ପ୍ରଭୁର ଆନନ୍ଦ ବାଢ଼ିଲା ।୨୦୦।
ବାହିରେ ପ୍ରଭୁର ତେହ ପାଇଲ ଦରଶନ ।
ଆସ୍ତେ-ବ୍ୟସ୍ତେ ଆସି କୈଲ ଚରଣ-ବନ୍ଦନ ॥
ବସିତେ ଆସନ ଦିୟା ଦୌହେତ ବସିଲା ।
ପ୍ରସାଦାନ୍ନ ଖୁଲି ପ୍ରଭୁ ତାଁର ହାଥେ ଦିଲା ।୨୦୨।
ପ୍ରସାଦ ପାଞା ଭଟ୍ଟାଚାର୍ଯ୍ୟେର ଆନନ୍ଦ ହଇଲ ।
ସ୍ନାନ ସନ୍ଧ୍ୟା ଦନ୍ତଧାବନ ଯଦ୍ୟପି ନା କୈଲ ॥
ଚୈତନ୍ୟପ୍ରସାଦେ ମନେର ସବ ଜାଡ୍ୟ ଗେଲ ।
ଏଇ ଶ୍ଳୋକ ପଢ଼ି ଅନ୍ନ ଭକ୍ଷଣ କରିଲ ।୨୦୪।

ତଥାହି ପଦ୍ମପୁରାଣେ—
ଶୁଷ୍କଂ ପର୍ଯ୍ୟୁଷିତଂ ବାପି ନୀତଂ ବା ଦୂରଦେଶତଃ ।
ପ୍ରାପ୍ତମାତ୍ରେଣ ଭୋକ୍ତବ୍ୟଂ ନାତ୍ର କାଲ-
ବିଚାରଣା ।୧୮।

(ନ ଦେଶନିୟମସ୍ତତ୍ର ନ କାଲନିୟମସ୍ତଥା ।
ପ୍ରାପ୍ତମନ୍ନଂ ଦ୍ରୁତଂ ଶିଷ୍ଟୈର୍ଭୋକ୍ତବ୍ୟଂ
ହରିରବ୍ରବୀତ୍ ।୧୯।

ଦେଖି ଆନନ୍ଦିତ ହୈଲ ମହାପ୍ରଭୁ ମନ ।
ପ୍ରେମାବିଷ୍ଟ ହୈୟା ପ୍ରଭୁ କୈଲ ଆଲିଙ୍ଗନ ।୨୦୫
ଦୁଇଜନ ଧରି ଦୌହେ କରେନ ନର୍ତ୍ତନ ।
ପ୍ରଭୁ ଭୃତ୍ୟ ଦୌହାର ସ୍ପର୍ଶେ ଦୌହାର ଫୁଲେ ମନ
ସ୍ୱେଦ କମ୍ପ ଅଶ୍ରୁ ଦୌହେ ଆନନ୍ଦେ ଭାସିଲା ।
ପ୍ରେମାବିଷ୍ଟ ହଞା ପ୍ରଭୁ କହିତେ ଲାଗିଲା— ॥
ଆଜି ମୁଞି ଅନାୟାସେ ଜିନିନୁ ତ୍ରିଭୁବନ ।
ଆଜି ମୁଞି କରିନୁ ବୈକୁଣ୍ଠେ ଆରୋହଣ ।୨୦୮

---

ଶୁଷ୍କଂ—ଉପଚାରାନ୍ନଂ ପର୍ଯ୍ୟୁଷିତଂ-ପୂର୍ବଦିନପକ୍ୱଂ, ଦୂରଦେଶତଃ ନୀତଂ ଆନୀତଂ ପ୍ରାପ୍ତ-ମାତ୍ରେଣ ଯଦାପ୍ନୁୟାତ୍ ତଦୈବ ଭୋକ୍ତବ୍ୟଂ, ଅତ୍ର-ମହାପ୍ରସାଦଭୋଜନବିଷୟେ କାଲବିଚାରଣା-ନିତ୍ୟନୈମିତ୍ତିକାଦ୍ୟାବଶ୍ୟକକର୍ମାପେକ୍ଷା ନ । ୧୮ଶ ଶ୍ଳୋକ ।

ତତ୍ରମହାପ୍ରସାଦଭୋଜନେ ଦେଶନିୟମଃ-ଶୁଚ୍ୟାଶୁଚିସ୍ଥାନନିୟମଃ ନ, ତଥା କାଲନିୟମଃ ଯୋଗ୍ୟାଯୋଗ୍ୟତ୍ୱ ବିଚାରଃ ନ, ପ୍ରାପ୍ତଂ ଅନ୍ନଂ ମହାପ୍ରସାଦଂ ଦ୍ରୁତଂ ତତ୍କ୍ଷଣମେବ ଶିଷ୍ଟୈଃ-ବୈଦିକାଚାରସମ୍ପନ୍ନୈଃ ଜନୈଃ ଭୋକ୍ତବ୍ୟଂ ଇତି ହରିଃ ସ୍ୱୟମେବ ଅବ୍ରବୀତ୍ । ୧୯ଶ ଶ୍ଳୋକ ।

---

ସ୍ଫୁଟ—ପ୍ରକାଶ୍ୟରେ ପାଠକରି । ୨୦୦ । ଦୋହେଁତ—ଦୁହେଁ ଯାକ । ୨୦୨ ।
ଜାଡ୍ୟ – ମାଲିନ୍ୟ । ୨୦୪ ।

ମହାପ୍ରସାଦ ଶୁଷ୍କ ହେଉନ୍ତୁ ବା ବାସି ହେଉନ୍ତୁ ବା ଦୂରଦେଶରୁ ଆନୀତ ହେଉନ୍ତୁ ତାହା ପ୍ରାପ୍ତ ହେବାମାତ୍ରେ ତତ୍କ୍ଷଣାତ୍ ଭୋଜନ କରିବ । ଏଥିରେ ଶୌଚାଶୌଚାଦି କାଲବିଚାର କରିବ ନାହିଁ । ୧୮ଶ୍ଳୋକାର୍ଥ ।

ମହାପ୍ରସାଦ ଭୋଜନରେ ଦେଶନିୟମ (ଶୁଚ୍ୟାଶୁଚିସ୍ଥାନବିଚାର) କାଲନିୟମ (ଶୌଚା-ଶୌଚ ଅବସ୍ଥା) ନାହିଁ । ଶିଷ୍ଟବ୍ୟକ୍ତିମାନେ ତାହା ପ୍ରାପ୍ତିମାତ୍ରେ ତତ୍କ୍ଷଣାତ୍ ଭୋଜନ କରିବେ, ଏହା ଶ୍ରୀହରି କହିଅଛନ୍ତି । (ତାତ୍ପର୍ଯ୍ୟ) ଶ୍ରୀହରି ଯେପରି ଦେଶ କାଳ ଓ ବସ୍ତୁ ପରିଚ୍ଛିନ୍ନର ଅତୀତ, ମହାପ୍ରସାଦ ଅନ୍ନ ମଧ୍ୟ ତଦ୍ରୂପ ଅପରିଚ୍ଛିନ୍ନ । ତାହା ଗ୍ରହଣ ସମ୍ବନ୍ଧରେ ଦେଶକାଳ ଓ ଦ୍ରବ୍ୟର ଗୁଣଦୋଷ ବିଚାର ଅକର୍ତ୍ତବ୍ୟ । ୧୯ଶ ଶ୍ଳୋକାର୍ଥ ।

ଶ୍ରୀମନ୍ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ସର୍ବଲୋକପ୍ରସିଦ୍ଧ ନିର୍ବିଶେଷବାଦୀ ବୈଦାନ୍ତିକ ମହାପଣ୍ଡିତ ଏବଂ ଅଧ୍ୟାପକ । ତାଙ୍କ ମତରେ ବୃଦ୍ଧି ପରୀମାଣ ଅନୁମାନସିଦ୍ଧ, ତାତ୍କାଳିକ ପଣ୍ଡିତ ଓ ଜ୍ଞାନୀ ବା ଗୃହସ୍ଥ କ ଯତ ସମସ୍ତେ ଅଳ୍ପ ବା ଅଧିକ ଏହି ମତକୁ ଆଶ୍ରୟ କରିଥିଲେ । ଅର୍ଥାତ୍ ଏକ କଥାରେ ସାର୍ବଭୌମଙ୍କ ମତହିଁ ସମସ୍ତ ପଣ୍ଡିତ ଓ ଜ୍ଞାନୀମାନଙ୍କର ମତ ବୋଲିବାକୁ ହେବ । ଏଣୁ ସାର୍ବ-

ଆଜ ମୋର ପୂର୍ଣ୍ଣ ହୋଇଲ ସବ ଅଭିଲାଷ ।
ସାର୍ବଭୌମେର ହୋଇଲ ମହାପ୍ରସାଦେ ବିଶ୍ୱାସ ॥
ଆଜି ନିଷ୍କପଟେ ତୁମି ହୋଇଲା କୃଷ୍ଣାଶ୍ରୟ ।
କୃଷ୍ଣ ନିଷ୍କପଟେ ହୋଇଲ ତୋମାରେ ସଦୟ ।୨୧୦।

ଆଜ ସେ ଖଣ୍ଡିଲ ତୋମାର ଦେହାଦି-ବନ୍ଧନ ।
ଆଜ ଛିନ୍ନ କୈଲ ତୁମି ମାୟାର ବନ୍ଧନ ।୨୧୧।
ଆଜ କୃଷ୍ଣପ୍ରାପ୍ତି-ଯୋଗ୍ୟ ହୋଇଲ ତୋମାର ମନ ।
ବେଦଧର୍ମ ଲଙ୍ଘି କୈଲେ ପ୍ରସାଦଭକ୍ଷଣ ।୨୧୨।

ଭୌମଙ୍କର ଯେତେବେଳେ ଯେଉଁ ମତ ହେବ, ସେତେବେଳେ ତାହା ସମସ୍ତ ପଣ୍ଡିତ ଓ ଶିଷ୍ୟ-ବର୍ଗ ଅନୁସରଣ କରିବେ । ସାର୍ବଭୌମ ଯେ କେବଳ ମତ ପ୍ରଚାର କରିଥିଲେ, ତାହା ନୁହେଁ । ସେ ମଧ୍ୟ ଦୃଢ଼ବ୍ରତ ନୈଷ୍ଠିକ କର୍ମୀ ଥିଲେ । ଅର୍ଥାତ୍ ଶ୍ରୌତ୍ସ୍ମାର୍ତ୍ତାଦି କର୍ମକଳାପ ଦୃଢ଼ତାର ସହିତ ସମ୍ପାଦନପୂର୍ବକ ସମସ୍ତଙ୍କର ଆଦର୍ଶ ଥିଲେ । ସେ ନିର୍ବିଶେଷବାଦୀ ହେତୁ ଶ୍ରୀମନ୍ ଜଗନ୍ନାଥଙ୍କୁ ସାକାର ବ୍ରହ୍ମ ବୋଲି ସ୍ୱୀକାର କରୁ ନ ଥିଲେ ଏବଂ ତାଙ୍କ ପ୍ରସାଦକୁ ପ୍ରସାଦ ବୋଲି ମଧ୍ୟ ସ୍ୱୀକାର କରୁ ନ ଥିଲେ । ଏପରି କି ଦୃଢ଼ବ୍ରତ କର୍ମୀ ହେତୁ ମହାପ୍ରସାଦକୁ କେବଳ ଅନ୍ନ ବା ମିଷ୍ଟାନ୍ନ ଜ୍ଞାନ କରି ସୁଦ୍ଧା ଭୋଜନ କରୁ ନ ଥିଲେ । ନିତ୍ୟକର୍ମ ନ କରି ଅର୍ଥାତ୍ ଦନ୍ତଧାବନ ସ୍ନାନାଦି ପ୍ରାତଃକୃତ୍ୟ ନ କରି ଅନ୍ନ ଗ୍ରହଣ କରୁ ନ ଥିଲେ । ଏପ୍ରକାର ଯେ ସାର୍ବଭୌମ ସେ ଶ୍ରୀମନ୍ ମହାପ୍ରଭୁଙ୍କଦ୍ୱାରା ଦତ୍ତମାତ୍ର ମହାପ୍ରସାଦାନ୍ନ ଦନ୍ତଧାବନ ନ କରି ମୁଖ ସୁଦ୍ଧା ନ ଧୋଇ ବିଛଣାରୁ ଉଠିବା ମାତ୍ର ମହାପ୍ରସାଦକୁ ଅପରିଚ୍ଛିନ୍ନ ଓ ପ୍ରାପ୍ତ ମାତ୍ର ଭୋକ୍ତବ୍ୟ ବୋଲି ନିଷ୍ଠା ଓ ବିଶ୍ୱାସ ସହକାରେ ହବ୍ୟାନ୍ତ କରି ତତ୍କ୍ଷଣାତ୍ ଭୋଜନ କଲେ । ଏହା ଦେଖି ଭକ୍ତବତ୍ସଳ ଶ୍ରୀମନ୍ମହାପ୍ରଭୁ ଜଗତ୍ ଶିକ୍ଷା ସକାଶେ ଶ୍ରୀମନ୍ ସାର୍ବଭୌମଙ୍କୁ ଲକ୍ଷ୍ୟ କରି ଓ ଆପଣାକୁ ଉପଲକ୍ଷ କରି ପ୍ରେମୋ-ଚ୍ଛ୍ୱାସରେ ତଦ୍ଗୋଷ୍ଠୀଭାବରେ କହୁଅଛନ୍ତି ଯେ, ଲୋକେ ଜନ୍ମଜନ୍ମାନ୍ତର ସାଧନାଦ୍ୱାରା ବହୁ ଆୟାସରେ ବିଭୁବନ ସାର୍ବଭୌମ ପଦ ଲାଭ କରି ପାରନ୍ତି । ଏପରି କି ବୈକୁଣ୍ଠପଦ ବରଂ ଲାଭ କରି ପାରନ୍ତି । ତଥାପି ଦୃଢ଼ବ୍ରତ ସାର୍ବଭୌମଙ୍କର ଜ୍ଞାନ ଓ କର୍ମନିଷ୍ଠା କେହି ବହୁ ଆୟାସରେ ସୁଦ୍ଧା ପରିବର୍ତ୍ତନ କରାଇ ପାରିବେ ନାହିଁ । ଏପ୍ରକାର ସାର୍ବଭୌମଙ୍କର ଯେ ପରିବର୍ତ୍ତନ ଅନାୟାସରେ ହୋଇ, ଅର୍ଥାତ୍ ମୁଁ ମହାପ୍ରସାଦ ଯାଚିବା ମାତ୍ରେ ସେ ବେଦବିଧିଲଙ୍ଘନପୂର୍ବକ ନିଷ୍ଠା ତ୍ୟାଗ କରି ମହାପ୍ରସାଦକୁ ବିଶ୍ୱାସ ଓ ଭକ୍ତିର ସହିତ ତତ୍କ୍ଷଣାତ୍ ସେବନ କଲେ, ଏହା ଅତି ଆଶ୍ଚର୍ଯ୍ୟ । ମନୁଷ୍ୟର ସର୍ବବିଧ କାମନା ଯୁଗପତ୍ ପୂର୍ଣ୍ଣ ହେଲେ ତାହାର ଯେପରି ଆନନ୍ଦ ହୁଏ, ସାର୍ବଭୌମଙ୍କର ମହାପ୍ରସାଦରେ ବିଶ୍ୱାସ ଦେଖି ମୋର ସେହିରୂପ ଆନନ୍ଦ ହେଉଅଛି । ୨୦୮ ।

ପୁନରାୟ ଶ୍ରୀମନ୍ ମହାପ୍ରଭୁ ସାର୍ବଭୌମଙ୍କୁ କହୁଅଛନ୍ତି, ହେ ମହାଶୟ ! ଆପଣ ମହା-ପ୍ରସାଦକୁ ବିଶ୍ୱାସପୂର୍ବକ ଭକ୍ଷଣ କରିବାଦ୍ୱାରା ଶ୍ରୀକୃଷ୍ଣଙ୍କୁ ସାକାର ଓ ଇନ୍ଦ୍ରିୟକ୍ରିୟାସମ୍ପନ୍ନ ବୋଲି ସ୍ୱୀକାରପୂର୍ବକ ତାଙ୍କର ଆଶ୍ରୟ ଗ୍ରହଣ କଲେ । ଏହା ଆପଣ ନିଷ୍କପଟରେ କରିଅଛନ୍ତି । କାରଣ ଆପଣ ଏପରି ଦୃଢ଼ବ୍ରତ ଯେ, ନ୍ୟାୟାନୁମୋଦିତ ବିବେଚନା ନ କଲେ କାହାରି ଚକ୍ଷୁଲଜ୍ଜାରେ କୌଣସି କାର୍ଯ୍ୟ କରନ୍ତି ନାହିଁ । ଅତଏବ ଅନ୍ତରିକ ନିଷ୍କପଟତା ହେତୁ ଶ୍ରୀକୃଷ୍ଣ ମଧ୍ୟ ଆପଣଙ୍କ ପ୍ରତି କୃପା ଦାନ କଲେ । କାପଟ୍ୟହିଁ ଅଭିମାନ, ଏହି ଅଭିମାନହିଁ ଜୀବକୁ ଦେହଦୈହିକବନ୍ଧନରେ ଆବଦ୍ଧ ରଖିଅଛି ଏବଂ ବେଦୋକ୍ତ ବିଧିନିଷେଧାତ୍ମକ କର୍ମହିଁ ଏ ବନ୍ଧନର ଶୃଙ୍ଖଳ ଏବଂ ଏହି ବନ୍ଧନହିଁ ମାୟା, ବର୍ତ୍ତମାନ ଆପଣଙ୍କ ମନରୁ କାପଟ୍ୟ ବା ଅଭିମାନ ଦୂର ହେତୁ ଆପଣ ବେଦଧର୍ମ ଲଙ୍ଘନ କଲେ ଓ ତଦ୍ଦ୍ୱାରା ଦେହଦୈହିକ ମାୟାବନ୍ଧନକୁ ମଧ୍ୟ ଛିନ୍ନ କଲେ । ଏହି ହେତୁ ଆପଣଙ୍କ ଚିତ୍ତ ନିର୍ମଳ ହୋଇ । ଏହି ନିର୍ମଳ ଚିତ୍ତ ହେତୁ ଆପଣ ଶ୍ରୀକୃଷ୍ଣ ସେବା ପ୍ରାପ୍ତିର ଉପଯୋଗୀ ହେଲେ ।

ତଥାହି (ଭାଃ—୨।୭।୪୨)—

ଯେଷାଂ ସ ଏବ ଭଗବାନ ଦୟୟେଦନନ୍ତଃ,
ସର୍ବାତ୍ମନାଶ୍ରିତପଦୋ ଯଦି ନିର୍ବ୍ୟଲୀକମ୍ ।
ତେ ଦୁସ୍ତରାମତିତରନ୍ତି ଚ ଦେବମାୟାଂ,
ନୈଷାଂ ମମାହମିତି ଧୀଃ ଶ୍ୱଶୃଗାଲଭକ୍ଷ୍ୟେ । ୨୧୦

ଏତ କହି ମହାପ୍ରଭୁ ଆଇଲା ନିଜସ୍ଥାନେ ।
ସେଇ ହୈତେ ଭଟ୍ଟାଚାର୍ଯ୍ୟେର ଖଣ୍ଡିଲ ଅଭିମାନେ ।
ଚୈତନ୍ୟଚରଣ ବିନେ ନାହି ଜାନେ ଆନ ।
ଭକ୍ତି ବିନୁ ଶାସ୍ତ୍ରେର ଆର ନା କରେ ବ୍ୟାଖ୍ୟାନ ॥
ଗୋପୀନାଥାଚାର୍ଯ୍ୟ ତାଁର ବୈଷ୍ଣବତା ଦେଖିୟା ।
'ହରିହରି' ବଲି ନାଚେ କରତାଳି ଦିୟା । ୨୧୧

ଆରଦିନ ଭଟ୍ଟାଚାର୍ଯ୍ୟ ଚଲିଲା ଦର୍ଶନେ ।
ଜଗନ୍ନାଥ ନା ଦେଖି ଆଇଲା ପ୍ରଭୁ-ସ୍ଥାନେ । ୨୧୨
ଦଣ୍ଡବତ୍ କରି କୈଲ ବହୁବିଧ ସ୍ତୁତି ।
ଦୈନ୍ୟ କରି କହେ ନିଜ ପୂର୍ବ ଦୁର୍ମତି । ୨୧୩
ଭକ୍ତିସାଧନ ଶ୍ରେଷ୍ଠ ଶୁନିତେ ହୈଲ ମନ ।
ପ୍ରଭୁ ଉପଦେଶ କୈଲ—ନାମସଙ୍କୀର୍ତ୍ତନ । ୨୧୪

ତଥାହି ବୃହନ୍ନାରଦୀୟପୁରାଣେ (୩୮।୧୨୬)—

ହରେର୍ନାମ ହରେର୍ନାମ ହରେର୍ନାମୈବ କେବଲମ୍
କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ
ଗତିରନ୍ୟଥା ।

---

ସଏବ ଅନନ୍ତଃ ଭଗବାନ୍ ଯେଷାଂ ଦୟୟୈବ-ଦୟାଂ କୁର୍ଯ୍ୟାତ୍ ତେ ଚ ଯଦି ନିର୍ବ୍ୟଲୀକଂ ନିଷ୍କପଟଂ ଯଥା ସ୍ୟାତ୍ ତଥା ସର୍ବାତ୍ମନା ଜ୍ଞାନକର୍ମାଦି ନିରପେକ୍ଷତୟା ସର୍ବୋତଭାବେନ ଆଶ୍ରିତପଦଃ-ଆଶ୍ରିତଚରଣାଃ ଭବନ୍ତି ତେ ଦୁସ୍ତରାଂ ତର୍ତ୍ତୁମଶକ୍ୟାମପି ଦେବମାୟାଂ—ଦେବସ୍ୟ ଭଗବତଃ ମାୟାଂ ଅତିତରନ୍ତି, ଚ ଏଷାଂ ଅକପଟେନ ଭଗବଚ୍ଚରଣାଶ୍ରିତାନାଂ ଶ୍ୱଶୃଗାଲଭକ୍ଷ୍ୟେ ଶ୍ୱଶୃଗାଲାନାଂ ଭକ୍ଷ୍ୟେ ଦେହେ ମମାହଂ—ମମେଦଂ ଅହମିତି ଚ ଇତିଧୀଃ ବୁଦ୍ଧିଃ ନ ଭବତି । ୨୧୦ଶ ଶ୍ଳୋକଃ ।

---

ତାତ୍ପର୍ଯ୍ୟ—ଆପଣ ଅନାଦି ବହିର୍ମୁଖତାରୂପ ସର୍ବାବରଣରୁ ମୁକ୍ତ ହେଲେ ! ବର୍ତ୍ତମାନ ନିରୁଦ୍ବେଗରେ ନିତ୍ୟସେବ୍ୟ ଶ୍ରୀକୃଷ୍ଣଙ୍କ ନିତ୍ୟସେବକ ଜୀବରୂପରେ ସେବା କରିବାର ଅଧିକାରୀ ହେଲେ । ୨୧୦।୨୧୧।୨୧୨ ।

ଶ୍ରୀବ୍ରହ୍ମା ଶ୍ରୀନାରଦଙ୍କୁ କହୁଅଛନ୍ତି, ଏପ୍ରକାର ଅପରିଚ୍ଛିନ୍ନ ଯେ ଭଗବାନ୍ (ଯାହାଙ୍କୁ କେହି ଜ୍ଞାନକର୍ମାଦି ପୁରୁଷକାରଦ୍ୱାରା ଜାଣି ପାରନ୍ତି ନାହିଁ) ସେ ଯଦି କାହାର ପ୍ରତି କୃପା କରନ୍ତି ଏବଂ ସେ ବ୍ୟକ୍ତିମାନେ ଯଦି ନିଷ୍କପଟରେ (ନିଷ୍କାମରେ ଜ୍ଞାନକର୍ମାଦି ପୁରୁଷାକାରଜନିତ ଅଭିମାନଶୂନ୍ୟ ଭାବରେ) ତାହାଙ୍କର ଚରଣାଶ୍ରୟ କରନ୍ତି, ତାହାହେଲେ ସେ ବ୍ୟକ୍ତିମାନେ ଅନାୟାସରେ ଦେବମାୟାଙ୍କ ହାତରୁ ଉଦ୍ଧାର ପାଆନ୍ତି । ସେ ବ୍ୟକ୍ତିମାନଙ୍କର ଶୃଗାଳ କୁକୁର ଭକ୍ଷଣଯୋଗ୍ୟ ଦେହରେ ମୁଁ ବା ମୋହର, ଏହି ଅଭିମାନ ଆଉ ରହେ ନାହିଁ । ଏଠାରେ କୃପାର ପ୍ରମାଣ ମାୟାରୁ ଉଦ୍ଧାର ଏବଂ ତାହାର ପ୍ରମାଣ ଦେହଦୈହିକ ଅଭିମାନଶୂନ୍ୟତା । ୨୧୦ଶ ଶ୍ଳୋକାର୍ଥ ।

ଅଭିମାନ—ଦେହଦୈହିକ ଅଭିମାନ । ୨୧୩ । ଭକ୍ତିସାଧନ - ଭକ୍ତିମାର୍ଗର ସାଧନ । ୨୧୪

୨୧ଶ ଶ୍ଳୋକର ଅନ୍ୱୟ ଆଦି ୭ମ ପରିଚ୍ଛେଦ ୩ୟ ଶ୍ଳୋକରେ ଦେଖ ।

ସତ୍ୟ ତ୍ରେତା ଦ୍ୱାପର ଯୁଗରେ ମନୁଷ୍ୟମାନେ ବିଷ୍ଣୁଙ୍କର ଧ୍ୟାନ ଯଜ୍ଞାଦିଦ୍ୱାରା ବିଷ୍ଣୁ ଅର୍ଚ୍ଚନା ଓ ପରିଚର୍ଯ୍ୟାଦି ଶ୍ରୀମୂର୍ତ୍ତି ସେବାଦ୍ୱାରା ଗତି ଲାଭ କରୁଥିଲେ । କିନ୍ତୁ କଳି ଜୀବମାନଙ୍କର ପୂର୍ବବର୍ତ୍ତୀ-ଯୁଗୀୟ ଜୀବମାନଙ୍କ ତୁଲ୍ୟ ପରମାୟୁ ଓ ଶକ୍ତି ନ ଥିବାରୁ ସେମାନଙ୍କ ଗତି ସକାଶେ ଶ୍ରୀହରିନାମରୂପୀ ନାମ ଯଜନରେ ବ୍ୟବସ୍ଥା ହୋଇଅଛି । ଅର୍ଥାତ୍ ହରିନାମ ଭଜନ ବ୍ୟତୀତ କଳିହତ ଜୀବମାନଙ୍କର ଅପର କୌଣସି କ୍ରିୟାଦ୍ୱାରା ଗତି ଲାଭ ହେବ ନାହିଁ । ଏହା ଯେ ଦୃଢ଼ ସତ୍ୟ, ତାହା ପ୍ରକାଶ କରିବା ସକାଶେ ତିନଥର "ନାହିଁ" କୁହା ହୋଇଅଛି । ୨୧ଶ ଶ୍ଳୋକାର୍ଥ ।

ଏଇ ଶ୍ଳୋକେର ଅର୍ଥ ଶୁନାଇଲ କରିୟା ବିସ୍ତାର ।
ଶୁନି ଭଟ୍ଟାଚାର୍ଯ୍ୟ ମନେ ହୈଲ ଚମତ୍କାର ।୨୧୯।
ଗୋପୀନାଥାଚାର୍ଯ୍ୟ ବୋଲେ—ଆମି ପୂର୍ବେ ଯେ କହିଲ ।
ଶୁନ ଭଟ୍ଟାଚାର୍ଯ୍ୟ ! ତୋମାର ସେଇ ତ ହଇଲ ?॥
ଭଟ୍ଟାଚାର୍ଯ୍ୟ କହେ ତାଁରେ କରି ନମସ୍କାରେ— ।
ତୋମାର ସମ୍ବନ୍ଧେ ପ୍ରଭୁ କୃପା କୈଲ ମୋରେ ॥
ତୁମି ମହାଭାଗବତ,—ଆମି ତର୍କ-ଅନ୍ଧେ ।
ପ୍ରଭୁ କୃପା କୈଲ ମୋରେ ତୋମାର ସମ୍ବନ୍ଧେ ॥
ବିନୟ ଶୁନି ତୁଷ୍ଟ ପ୍ରଭୁ କୈଲ ଆଲିଙ୍ଗନ ।
କହିଲ—ଯାଇଁା କରହ ଜଗନ୍ନାଥ ଦରଶନ ।
ଜଗଦାନନ୍ଦ ଦାମୋଦର ଦୁଇ ସଙ୍ଗେ ଲଞା ।
ଘରେ ଆଇଲା ଭଟ୍ଟାଚାର୍ଯ୍ୟ ଜଗନ୍ନାଥ ଦେଖିୟା ।
ଉତ୍ତମ-ଉତ୍ତମ ପ୍ରସାଦ ବହୁତ ଆନିଲା ।
ନିଜ-ବିପ୍ର-ହାଥେ ଦୁଇଜନା ସଙ୍ଗେ ଦିଲା ।୨୨୫
ନିଜ ଦୁଇ ଶ୍ଳୋକ ଲିଖି ଏକ ତାଲପାତେ ।
'ପ୍ରଭୁକେ ଦିହ' ବଲି ଦିଲ ଜଗଦାନନ୍ଦ-ହାତେ ।
ପ୍ରଭୁ-ସ୍ଥାନେ ଆଇଲା ଦୋଁହେ ପ୍ରସାଦ ପତ୍ରୀ ଲଞା ।
ମୁକୁନ୍ଦଦତ୍ତ ପତ୍ରୀ ନିଲ ତାର ହାଥେ ✻ ପାଞା ॥
ଦୁଇ ଶ୍ଳୋକ ବାହିର-ଭିତେ ଲିଖିୟା ରାଖିଲ ।
ତବେ ଜଗଦାନନ୍ଦ ପତ୍ରୀ ପ୍ରଭୁରେ ଲଞା ଦିଲ ।
ପ୍ରଭୁ ଶ୍ଳୋକ ପଢ଼ି ପତ୍ର ଚିରିୟା ଫେଲିଲ ।
ଭିତ୍ତ୍ୟେ ଦେଖି ଭକ୍ତ ସବ ଶ୍ଳୋକ କଣ୍ଠେ କୈଲ ॥

ତଥାହି ଚୈତନ୍ୟଚନ୍ଦ୍ରୋଦୟନାଟକେ

(୬।୭୪)—

ବୈରାଗ୍ୟବିଦ୍ୟା ନିଜଭକ୍ତିଯୋଗ-
ଶିକ୍ଷାର୍ଥମେକଃ ପୁରୁଷଃ ପୁରାଣଃ ।
ଶ୍ରୀକୃଷ୍ଣଚୈତନ୍ୟଶରୀରଧାରୀ,
କୃପାମ୍ବୁଧିର୍ଯସ୍ତମହଂ ପ୍ରପଦ୍ୟେ । ୨୨ ।

---

ବୈରାଗ୍ୟବିଦ୍ୟା ନିଜ ଭକ୍ତିଯୋଗ ଶିକ୍ଷାର୍ଥଂ—ବୈରାଗ୍ୟଂ ପ୍ରପଞ୍ଚ ବସ୍ତୁ ଷ୍ୱନାସକ୍ତିଃ ବିଦ୍ୟା ଭଗବତତ୍ତ୍ୱାନୁଭବଃ । ନିଜଭକ୍ତିଯୋଗଃ ପ୍ରେମଭକ୍ତିଃ ତେଷାଂ ଶିକ୍ଷାର୍ଥଂ ସ୍ୱୟଂ ଅନୁଷ୍ଠାୟ ପରାନ୍ ଶିକ୍ଷୟିତୁଂ ଉପଦେଷ୍ଟୁଂ ଏକଃ-ସଜାତୀୟ-ବିଜାତୀୟ ସ୍ୱଗତଭେଦଶୂନ୍ୟଃ ପୁରାଣଃ ପୁରାପି ନବ ଇତି ନିର୍ବିକାରଃ କୃପାମ୍ବୁଧିଃ ପୁରୁଷଃ ଶ୍ରୀକୃଷ୍ଣ ଯଃ ଶ୍ରୀକୃଷ୍ଣଚୈତନ୍ୟ ଶରୀରଧାରୀ-ଶ୍ରୀକୃଷ୍ଣଚୈତନ୍ୟ ଏବ ଶରୀରଂ ଧର୍ତ୍ତୁଂ ପ୍ରକଟୟିତୁଂ ଶୀଳମସ୍ୟେତି, ଅହଂ ତଂ ପ୍ରପଦ୍ୟେ । ୨୨ଶ ଶ୍ଳୋକ ।

---

ଉତ୍ତମ ଉତ୍ତମ ପ୍ରସାଦ—ଉତ୍ତମ ଉତ୍ତମ ମହାପ୍ରସାଦ ।୨୨୫। ଭିତେ—କାନ୍ଥରେ ।୨୨୮।

ବୈରାଗ୍ୟ ( ପ୍ରପଞ୍ଚ ବସ୍ତୁରେ ଅନାସକ୍ତି ) ବିଦ୍ୟା ( ଭଗବତ୍ତତ୍ତ୍ୱାନୁଭବ ) ନିଜ ଭକ୍ତି-ଯୋଗ ( କୃଷ୍ଣନାମ ପ୍ରେମରୂପ ଭକ୍ତି ) ଆପାମର ସମସ୍ତଙ୍କୁ ଶିକ୍ଷା ଦେବା ସକାଶେ ଯେଉଁ ଅଦ୍ୱିତୀୟ ଅନାଦି ଓ କୃପାସାଗର ପୁରୁଷ (ଶ୍ରୀକୃଷ୍ଣ) ଶ୍ରୀକୃଷ୍ଣ ଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି, ମୁଁ ତାହାଙ୍କର ଶରଣାଗତ ହେଲି । ୨୨ଶ ଶ୍ଳୋକାର୍ଥ ।

କାଲାନ୍ନଷ୍ଟଂ ଭକ୍ତିଯୋଗଂ ନିଜଂ ଯଃ,
ପ୍ରାଦୁଷ୍କର୍ତ୍ତୁଂ କୃଷ୍ଣଚୈତନ୍ୟନାମା ।
ଆବିର୍ଭୂତସ୍ତସ୍ୟ ପାଦାରବିନ୍ଦେ,
ଗାଢ଼ଂ ଗାଢ଼ଂ ଲୀୟତାଂ ଚିତ୍ତଭୃଙ୍ଗଃ ।୨୭୯।

ଏଇ ଦୁଇ ଶ୍ଲୋକ ଭକ୍ତକଣ୍ଠେ ରତ୍ନହାର ।
ସାର୍ବଭୌମେର କୀର୍ତ୍ତି ଘୋଷେ ଢକ୍କା-
ବାଦ୍ୟାକାର ।୨୮୦।
ସାର୍ବଭୌମ ହୈଲ ପ୍ରଭୁର ଭକ୍ତ ଏକତାନ ।
ମହାପ୍ରଭୁ ବିନେ ସେବ୍ୟ ନାହି ଜାନେ ଆନ ॥
ଶ୍ରୀକୃଷ୍ଣଚୈତନ୍ୟ ଶଚୀସୁତ ଗୌରଧାମ ।
ଏଇ ଧ୍ୟାନ, ଏଇ ଜପ, ଏଇ ଲୟ ନାମ ।୨୮୨।
ଏକଦିନ ସାର୍ବଭୌମ ପ୍ରଭୁସ୍ଥାନେ ଆଇଲା ।
ନମସ୍କାର କରି ଶ୍ଲୋକ ପଢ଼ିତେ ଲାଗିଲା ।୨୮୩।
ଭାଗବତେର ବ୍ରହ୍ମସ୍ତବେର ଶ୍ଲୋକ ପଢ଼ିଲା ।
ଶ୍ଲୋକଶେଷେ ଦୁଇ ଅକ୍ଷର ପାଠ ଫିରାଇଲା ।

ତଥାହି (ଭାଃ—୧୦।୧୪।୮)—

ତତ୍ତେଽନୁକମ୍ପାଂ ସୁସମୀକ୍ଷ୍ୟମାଣୋ,
ଭୁଞ୍ଜାନ ଏବାତ୍ମକୃତଂ ବିପାକମ୍ ।
ହୃଦ୍‌ବାଗ୍‌ବପୁର୍ଭିର୍ବିଦଧନ୍ନମସ୍ତେ,
ଜୀବେତ ଯୋ ଭକ୍ତିପଦେ ସ ଦାୟଭାକ୍ ।୨୮୪।

---

କାଲାତ୍—କାଲ ପ୍ରଭାବାତ୍ ନଷ୍ଟଂ—ସାଧାରଣଲୋକଲୋଚନାଗୋଚରଂ ନିଜଭକ୍ତି-ଯୋଗଂ—ପ୍ରାଦୁଷ୍କର୍ତ୍ତୁଂ—ପ୍ରକଟୟିତୁଂ କୃଷ୍ଣଚୈତନ୍ୟ ନାମା ସନ୍ ଆବିର୍ଭୂତଃ, ତସ୍ୟ ପଦାରବିନ୍ଦେ ଚିତ୍ତଭୃଙ୍ଗଃ ଗାଢ଼ଂ-ଗାଢ଼ଂ ଗାଢ଼ତା ପ୍ରକାରେଣ ଲୀୟତାଂ ଲୀନୋଭବତୁ । ୨୭୯ଶ ଶ୍ଲୋକ ।

ତତ୍ ତସ୍ମାତ୍ ତେ ଅନୁକମ୍ପାଂ ସୁସମୀକ୍ଷମାଣଃ—ପ୍ରତୀକ୍ଷମାଣଃ ଆତ୍ମକୃତଂ – ସ୍ୱାର୍ଜିତଂ ବିପାକଂ—କର୍ମଫଳଂ ଅନାସକ୍ତଃସନ୍ ଭୁଞ୍ଜାନ ଏବ ହୃଦ୍‌ବାଗ୍‌ବପୁଭିଃ ତେ ତୁଭ୍ୟଂ ନମଃ ବିଦଧତ୍ ଯଃ—ଜୀବେତ ସଃ ଭକ୍ତି ପଦେ ଦାୟଭାକ୍ ଭବତି । ୨୮୪ଶ ଶ୍ଲୋକ ।

ଏକତା ନୋଽନନ୍ୟବୃତ୍ତିଃ । ବି, ତ । ୨୮୧ ।

---

କାଳବଶରେ ବିଲୁପ୍ତ ନିଜର ଭକ୍ତିଯୋଗ ଆମ୍ଭମାନଙ୍କର ସାଧାରଣରେ ପ୍ରକାଶ କରିବା ନିମିତ୍ତ ଯେ ଶ୍ରୀକୃଷ୍ଣ ଚୈତନ୍ୟ ନାମ ଧାରଣ କରି ଆବିର୍ଭୂତ ହୋଇଅଛନ୍ତି । ମୋର ଚିତ୍ତଭ୍ରମର ତାହାଙ୍କର ଶ୍ରୀଚରଣ ପଦ୍ମରେ ପ୍ରଗାଢ଼ରୂପେ ଲଗ୍ନହେଉ । ୨୭ଶ୍ଲୋକାର୍ଥ ।

ଢକ୍କାବାଦ୍ୟ—ନାଗରା । ୨୮୦ । ଭକ୍ତ ଏକତାନ—ଐକାନ୍ତିକ ଭକ୍ତ, ଅନନ୍ୟଶରଣ ଭକ୍ତ । ୨୮୧ ।

ଗୌରଧାମ—ଗୌରବର୍ଣ୍ଣ । ୨୮୨ । 'ମୁକ୍ତି' ଶବ୍ଦ ପରିବର୍ତ୍ତରେ ଭକ୍ତି ଶବ୍ଦ ବ୍ୟବହାର କରି ପାଠକଲେ । ୨୮୪ ।

ଶ୍ରୀବ୍ରହ୍ମା ସ୍ତବ ପୂର୍ବକ କହୁଅଛନ୍ତି, ହେ ଶ୍ରୀକୃଷ୍ଣ ! ସେହି ହେତୁ (ପୂର୍ବ କଥିତ କାରଣରୁ) ଆପଣଙ୍କ କୃପା କେବେ ହେବ ଏହି ଆଶାରେ ବଦ୍ଧଚିତ୍ତ ହୋଇ ଜୀବ ଆତ୍ମକୃତ କର୍ମଫଳ ଭୋଗ-କରୁଁ କରୁଁ ମନୋବାକ୍ୟ ଏବଂ ଦେହ ଦ୍ୱାରା ଆପଣଙ୍କୁ ପ୍ରଣାମ କରି ଜୀବିତ ରହିଲେ, ସେ ଭକ୍ତି ପଦ (ତୁମ୍ଭଙ୍କୁ) ଉତ୍ତରାଧିକାରୀ ତୁଲ୍ୟ ଲାଭକରେ; ଅର୍ଥାତ୍ ନିଶ୍ଚୟ ପାଏ । ୨୮ଶ୍ଲୋକାର୍ଥ ।

ପ୍ରଭୁ କହେ—'ମୁକ୍ତିପଦେ' ଇହା ପାଠ ହୟ ।
'ଭକ୍ତିପଦେ' କେନ ପଢ଼—କି ତୋମାର ଆଶୟ ?
ଭଟ୍ଟାଚାର୍ଯ୍ୟ କହେ—ମୁକ୍ତି ନହେ ଭକ୍ତି-ଫଲ ।
ଭଗବଦ୍ବିମୁଖେର ହୟ ଦଣ୍ଡ କେବଲ ।୧୩୬।
କୃଷ୍ଣେର ବିଗ୍ରହ ଯେଇ ସତ୍ୟ ନାହିଁ ମାନେ ।
ଯେଇ ନିନ୍ଦା-ଯୁଦ୍ଧାଦିକ କରେ ତାଁର ସନେ ॥
ସେଇ ଦୁଇୟେର ଦଣ୍ଡ ହୟ—ବ୍ରହ୍ମ ସାଯୁଜ୍ୟ ମୁକ୍ତି ।
ତାର ମୁକ୍ତି ଫଲ ନହେ—ଯେଇ କରେ ଭକ୍ତି ॥
ଯଦ୍ୟପି ସେ ମୁକ୍ତି ହୟ ପଞ୍ଚ ପରକାର—
ସାଲୋକ୍ୟ ସାମୀପ୍ୟ ସାରୂପ୍ୟ ସାର୍ଷ୍ଟି ସାଯୁଜ୍ୟ ଆର
ସାଲୋକ୍ୟାଦି ଚାରି ଯଦି ହୟ ସେବାଦ୍ୱାର ।
ତବେ କଦାଚିତ ଭକ୍ତ କରେ ଅଙ୍ଗୀକାର ।୧୪୦।
'ସାଯୁଜ୍ୟ' ଶୁନିତେ ଭକ୍ତେର ହୟ ଘୃଣା-ଭୟ ।
ନରକ ବାଞ୍ଛୟେ, ତବୁ ସାଯୁଜ୍ୟ ନା ଲୟ ।୧୪୧।

ମୁକ୍ତିପଦେ—ଶ୍ରୀମଦ୍ଭାଗବତରେ ଏହି ଶ୍ଳୋକର ଶେଷପାଦରେ "ମୁକ୍ତିପଦେ" ଲେଖାଅଛି । କିନ୍ତୁ ସାର୍ବଭୌମ ଏହି ଶ୍ଳୋକ ପାଠକଲା ସମୟରେ 'ମୁକ୍ତିପଦେ' ଏହି ସ୍ଥାନରେ 'ଭକ୍ତି ପଦେ' ବୋଲି ପାଠକଲେ । ଏହା ଶୁଣି ଶ୍ରୀମନ୍ ମହାପ୍ରଭୁ ତାହାର କାରଣ ଜାଣିବାକୁ ଇଚ୍ଛାକଲେ । ଆଶୟ-ଅଭିପ୍ରାୟ । ୧୩୫ ।

ଭଟ୍ଟାଚାର୍ଯ୍ୟ କହିଲେ ଯେ, ମୁକ୍ତି (ବ୍ରହ୍ମ ସାଯୁଜ୍ୟ) ଭକ୍ତିଲବ୍ଧ ନୁହେଁ । କାରଣ, ତାହା ଭଗବଦ୍‌ବିରୋଧୀମାନଙ୍କ ପ୍ରତି ଦଣ୍ଡ, ଅର୍ଥାତ୍ ଯେଉଁମାନେ ଶ୍ରୀକୃଷ୍ଣଙ୍କ ବିଗ୍ରହ ପ୍ରତି ବିଶ୍ୱାସ କରନ୍ତି ନାହିଁ, ଏବଂ ଯେଉଁମାନେ ଶ୍ରୀକୃଷ୍ଣଙ୍କର ନିନ୍ଦା କରନ୍ତି, ତାହାଙ୍କ ସହିତ ଯୁଦ୍ଧାଦି କରନ୍ତି, ସେହି ଦୁଇପ୍ରକାର ବହିର୍ମୁଖ ବ୍ୟକ୍ତିମାନଙ୍କୁ ଦଣ୍ଡତୁଲ୍ୟ ବ୍ରହ୍ମସାଯୁଜ୍ୟ ମୁକ୍ତି ମିଳେ । କିନ୍ତୁ ଯେ ଶ୍ରୀକୃଷ୍ଣଙ୍କୁ ଭକ୍ତିକରେ ଅର୍ଥାତ୍ ଆନୁକୂଲ୍ୟରେ କୃଷ୍ଣାନୁଶୀଳନକରେ ତାହାର ଭକ୍ତି ଲଭ୍ୟବସ୍ତୁ ମୁକ୍ତି-ନୁହେଁ । ୧୩୬।୧୩୭।୧୩୮ ।

ଭଟ୍ଟାଚାର୍ଯ୍ୟ ବ୍ରହ୍ମସାଯୁଜ୍ୟ ମୁକ୍ତି ବ୍ୟତୀତ ଅନ୍ୟମୁକ୍ତି ଅଛି ଏବଂ ତାହା ଭକ୍ତିର ଅଙ୍ଗସ୍ୱରୂପ ଲାଭ ହୋଇଥାଏ ଏହା ନିରୂପଣ କରି ମୁକ୍ତି ଶବ୍ଦର ରୂଢ଼ି ଅର୍ଥ ଅର୍ଥାତ୍ ସାଯୁଜ୍ୟମୁକ୍ତିର ବିଷୟ କହିଲାପରେ ଅପର ମୁକ୍ତିମାନଙ୍କ ବିଷୟ କହୁଅଛନ୍ତି, ସାଲୋକ୍ୟ, ସାର୍ଷ୍ଟି, ସାମୀପ୍ୟ, ଏବଂ ସାଯୁଜ୍ୟ, ଏହି ପାଞ୍ଚ ପ୍ରକାର ମୁକ୍ତିମଧ୍ୟରୁ ସାଲୋକ୍ୟାଦି (ପ୍ରଥମ ଚାରିପ୍ରକାର ମୁକ୍ତି) ଶ୍ରୀଭଗବତ୍ସେବା ଦ୍ୱାରା ଅର୍ଥାତ୍ ଅନୁକୂଳ ଅନୁଶୀଳନ ଦ୍ୱାରା ଲାଭ ହେଲେହେଁ ଭକ୍ତ ତାହା କ୍ୱଚିତ୍ ଗ୍ରହଣ କରେ । ଏହାର ଭାବ ଏହି ଯେ ଏହି ଚତୁର୍ବିଧ ମୁକ୍ତି ଭକ୍ତ କଦାପି ପ୍ରାର୍ଥନା କରେ ନା, (କିନ୍ତୁ ଭଗବତ୍—ଧାମରେ) ରହି ସେବା କରିବାକୁ ହେଲେ ଏହି ଚତୁର୍ବିଧମୁକ୍ତିରୁ ଏକ କିମ୍ବା ଅଧିକ ଗ୍ରହଣ ନ କଲେ ଭଗବତ୍-ସେବା ହୋଇପାରେ ନା, ଏଣୁ ଭକ୍ତ କେବଳ ସେବା ସକାଶେ ତାହା ଗ୍ରହଣ କରନ୍ତି । କିନ୍ତୁ ଆତ୍ମସୁଖ ସକାଶେ କଦାପି ଗ୍ରହଣ କରନ୍ତି ନାହିଁ । ୧୩୯ । ୧୪୦ ।

ସାଯୁଜ୍ୟ ଏହିକଥା ଶୁଣିଲେହିଁ ଭକ୍ତର ଯତପର ଘୃଣା ଓ ଭୟ ଉଦୟ ହୁଏ । କାରଣ ତାହା ଭଗବଦ୍‌ଦ୍ୱେଷୀମାନଙ୍କର ଦଣ୍ଡ ସ୍ୱରୂପ, ଘୃଣାର କାରଣ ଏହି ଯେ, ମୁକ୍ତି ଦ୍ୱାରା ଭକ୍ତି ନଷ୍ଟହୁଏ ଅତଏବ ଭକ୍ତ ସାଯୁଜ୍ୟ ମୁକ୍ତି ତୁଳନାରେ ନରକକୁ ବରଂ ସ୍ପୃହଣୀୟ ମନେକରେ । କାରଣ ନରକରେ ଦୈବାତ୍ ସାଧୁସଙ୍ଗ ଲାଭ ଦ୍ୱାରା ଭକ୍ତିଲାଭ ହେବାର ସମ୍ଭାବନା ଅଛି । ୧୪୧ ।

ବ୍ରହ୍ମେ ଈଶ୍ୱରେ ସାଯୁଜ୍ୟ ଦୁଇତ ପ୍ରକାର ।
ବ୍ରହ୍ମସାଯୁଜ୍ୟ ହୈତେ ଈଶ୍ୱରସାଯୁଜ୍ୟ ଧିକ୍କାର ।୨୪୧।

ତଥାହି (ଭାଃ ୩।୨୯।୧୩)—

ସାଲୋକ୍ୟ ସାର୍ଷ୍ଟିସାମୀପ୍ୟ ସାରୂପ୍ୟୈକତ୍ୱମପ୍ୟୁତ ।
ଦୀୟମାନଂ ନ ଗୃହ୍ଣନ୍ତିବିନା ମତ୍ସେବନଂ ଜନାଃ ।୨୫
ପ୍ରଭୁ କହେ—ମୁକ୍ତିପଦେର ଆର ଅର୍ଥ ହୟ ।
'ମୁକ୍ତିପଦ'ଶବ୍ଦେ-ସାକ୍ଷାତ୍ ଈଶ୍ୱର କହୟ ।୨୪୩
ମୁକ୍ତି ପଦେ ଯାର—ସେଇ 'ମୁକ୍ତିପଦ' ହୟ ।
କିମ୍ବା ନବମପଦାର୍ଥ ମୁକ୍ତିର ସମାଶ୍ରୟ ।୨୪୪।
ଦୁଇ ଅର୍ଥେ 'କୃଷ୍ଣ' କହି, କାହେ ପାଠ ଫିରି ?
ସାର୍ବଭୌମ କହେ—ଓ ଶବ୍ଦ କହିତେ ନାପାରି॥
ଯଦ୍ୟପି ତୋମାର ଅର୍ଥ ଏଇ ଶବ୍ଦେ କୟ ।
ତଥାପି ଅଶ୍ଳିଷ୍ୟଦୋଷେ କହନେ ନାଯାୟ ।୨୪୬।

ମୁକ୍ତିପଦେ ଇତି । ମୁକ୍ତିଃପଦେ ଯସ୍ୟସ ମୁକ୍ତିପଦଃ ଅଥବା ମୁକ୍ତେଃ ନବମପଦାର୍ଥସ୍ୟ ପଦଂ ଆଶ୍ରୟ ଇତ୍ୟର୍ଥଃ । ୨୪୪ ଚ. ଚ.

ସାଯୁଜ୍ୟମୁକ୍ତିର ପ୍ରକରଣ କହୁଅଛନ୍ତି । ଯଥା—ବ୍ରହ୍ମସାଯୁଜ୍ୟ—ଅର୍ଥାତ୍ ଆତ୍ମାନୁଭବ ଦ୍ୱାରା ଆତ୍ମାରାମତ୍ୱ ଓ ଈଶ୍ୱର - ସାଯୁଜ୍ୟ, ଅର୍ଥାତ୍ ସାକାର ଭଗବାନ୍ଙ୍କଠାରେ ଲୟ ବା ନିର୍ବାଣ । ଉକ୍ତ ପକ୍ଷରେ ବ୍ରହ୍ମସାଯୁଜ୍ୟ ଅପେକ୍ଷା ଈଶ୍ୱର ସାଯୁଜ୍ୟ ଅଧିକତର ଘୃଣାସ୍ପଦ, ଏହାର କାରଣ ଏହି ଯେ, ବ୍ରହ୍ମସାଯୁଜ୍ୟ ପ୍ରାପ୍ତ ଆତ୍ମାରାମମାନଙ୍କ ମଧ୍ୟରୁ କେହି କେହି ଶ୍ରୀକୃଷ୍ଣଙ୍କ କୃପାରୁ କଦାଚିତ୍ ଭକ୍ତି-ଲାଭ କରନ୍ତି, ଯଥା— ସନକ ଶୁକଦେବ ଆଦି ; କିନ୍ତୁ ଈଶ୍ୱର ସାଯୁଜ୍ୟରେ ସେ ପ୍ରକାର ଲାଭର ସମ୍ଭାବନା ପର୍ଯ୍ୟନ୍ତ ନାହିଁ । ୨୪୨ ।

୨୫ଶ ଶ୍ଳୋକ ଅନ୍ୱୟ – ଆଦି ୪ର୍ଥ ପରିଃ ୩୪ ଶ୍ଳୋକଃ ।

ଶ୍ରୀକୃଷ୍ଣଙ୍କର ପ୍ରେମିକ ଭକ୍ତମାନେ ଯେ ନିଷ୍କାମ ତାହା ପ୍ରତିପାଦନ କରିବା ସକାଶେ ଶ୍ରୀକପିଳ ଦେବ ଦେବହୂତିଙ୍କୁ କହୁଅଛନ୍ତି । ମୁଁ ସାଲୋକ୍ୟ (ମୋର ସହିତ ଏକତ୍ରବାସ) ସାର୍ଷ୍ଟି (ମୋର ସମାନ ଐଶ୍ୱର୍ଯ୍ୟ) ସାମୀପ୍ୟ (ମୋର ନିକଟ ଅବସ୍ଥାନ) ସାରୂପ୍ୟ (ମୋର ସମାନ ରୂପ) ଏବଂ ଏକତ୍ୱକ ସାଯୁଜ୍ୟ ଏହି ପଞ୍ଚବିଧ ମୁକ୍ତି ମୋର ଭକ୍ତଙ୍କୁ ଦେଲେ ସୁଦ୍ଧା ସେମାନେ ମୋର ସେବା ବ୍ୟତୀତ ସେପ୍ରକାର ମୁକ୍ତିକୁ ଗ୍ରହଣ କରନ୍ତି ନାହିଁ ।

ସାଯୁଜ୍ୟ ମୁକ୍ତି ହରିଲୋକର ଅଧସ୍ତନ, ତେଣୁ ତାହା ଭକ୍ତମାନେ ସ୍ୱାଭାବିକ ଘୃଣା କରନ୍ତି । ସାଲୋକ୍ୟ, ସାର୍ଷ୍ଟି, ସାମୀପ୍ୟ ଓ ସାରୂପ୍ୟ ଏହି ଚତୁର୍ବିଧ ମୁକ୍ତି ହରିଲୋକର ଅନ୍ତର୍ଗତ ଅଟେ । ଏହା ଚତୁର୍ଥ ପୁରୁଷାର୍ଥ, ଅର୍ଥାତ୍ ମୁକ୍ତିକାମୀ ବୈଧୀ ଭକ୍ତମାନେ ପ୍ରାର୍ଥନା କରନ୍ତି । କିନ୍ତୁ ରାଗାନୁଗଭକ୍ତମାନେ ନିଷ୍କାମ ହେତୁ ତାହା ମଧ୍ୟ କାମନା କରନ୍ତି ନାହିଁ । ଏଣୁ ହରି-ସେବାବିହୀନ ତଲ୍ଲୋକସ୍ଥ କେବଳ ମୁକ୍ତିଚତୁଷ୍ଟୟ ପାଇଲେ ସୁଦ୍ଧା ତାହା ତ୍ୟାଗ କରନ୍ତି । କିନ୍ତୁ ସେପ୍ରକାର ମୁକ୍ତି ହରିସେବାର ପୋଷକ ହେଲେ କେବଳ ହରିସେବା ସକାଶେ ତାହା ଗ୍ରହଣ କରନ୍ତି, ଫଳତଃ ହରିଲୋକ ମୁକ୍ତିସ୍ଥାନ ହେତୁ ରାଗାନୁଗଭକ୍ତମାନେ ହରିଲୋକର ହରିସେବା ପ୍ରାପ୍ତ ହେଲେ ଅବଶ୍ୟ ମୁକ୍ତି ପ୍ରାପ୍ତ ହୁଅନ୍ତି, କିନ୍ତୁ ତାହା କାମନାର ସହିତ ନୁହେଁ । ୨୫ଶ ଶ୍ଳୋକାର୍ଥ ।

ସାର୍ବଭୌମଙ୍କର କଥା ଶୁଣି ଶ୍ରୀମନ୍ ମହାପ୍ରଭୁ କହିଲେ, 'ମୁକ୍ତିପଦ' ଶବ୍ଦର ଅର୍ଥଦ୍ୱାରା ଈଶ୍ୱରଙ୍କୁ ବୁଝାଏ, ଅର୍ଥାତ୍ ମୁକ୍ତି ଯାହାଙ୍କ ପଦରେ ରହିଅଛି, ସେ ମୁକ୍ତିପଦ, କିମ୍ବା ମୁକ୍ତିରୂପ ନବମ ପଦାର୍ଥର ଯେ ପଦ ଅର୍ଥାତ୍ ଆଶ୍ରୟ ଅର୍ଥାତ୍ ମୁକ୍ତି ଯାହାଙ୍କ ଆଶ୍ରୟରେ ରହିଅଛି, ଏହି ଦୁଇ ଅର୍ଥଦ୍ୱାରା 'ମୁକ୍ତିପଦ' ଶବ୍ଦ ଶ୍ରୀକୃଷ୍ଣଙ୍କୁ ପ୍ରତିପାଦନ କରୁଅଛି । ଏ ସ୍ଥଳରେ ଆପଣ ଭକ୍ତିପଦ ବ୍ୟବହାର କଲେ କାହିଁକି ? ସାର୍ବଭୌମ କହିଲେ, "ଆପଣ ଯେ ଅର୍ଥ କଲେ, ତାହାହିଁ ଶ୍ଳୋକସ୍ଥ ଶବ୍ଦର

ଯଦ୍ୟପିହ ମୁକ୍ତି-ଶବ୍ଦେର ପଞ୍ଚ ମୁକ୍ତ୍ୟେ ବୃତ୍ତି ।
ରୂଢ଼ିବୃତ୍ତ୍ୟେ କରେ ତବୁ ସାଯୁଜ୍ୟ ପ୍ରତୀତି ।୧୪୭।
ମୁକ୍ତି-ଶବ୍ଦ କହିତେ ମନେ ହୟ ଘୃଣା ତ୍ରାସ ।
ଭକ୍ତି ଶବ୍ଦ କହିତେ ମନେ ହୟ ତ ଉଲ୍ଲାସ ।୧୪୮।
ଶୁନିଞା ହାସେନ ପ୍ରଭୁ ଆନନ୍ଦିତ ମନେ ।
ଭଟ୍ଟାଚାର୍ଯ୍ୟେ କୈଲ ପ୍ରଭୁ ଦୃଢ଼ ଆଲିଙ୍ଗନେ ।୧୪୯।
ଯେ ଭଟ୍ଟାଚାର୍ଯ୍ୟ ପଡ଼େ ପଢ଼ାୟ ମାୟାବାଦ ।
ତାଁର ଐଛେ ବାକ୍ୟ ସ୍ଫୁରେ ଚୈତନ୍ୟପ୍ରସାଦ ।୧୫୦
ଲୋହାକେ ଯାବତ୍ ସ୍ପର୍ଶି ହେମ ନାହି କରେ ।
ତାବତ୍ ସ୍ପର୍ଶମଣି କେହୋ ଚିନିତେ ନାପାରେ ॥
ଭଟ୍ଟାଚାର୍ଯ୍ୟେର ବୈଷ୍ଣବତା ଦେଖି ସର୍ବଜନ ।
ପ୍ରଭୁକେ ଜାଣିଲ — ସାକ୍ଷାତ୍ ବ୍ରଜେନ୍ଦ୍ରନନ୍ଦନ ॥
କାଶୀମିଶ୍ର ଆଦି ଯତ ନୀଲାଚଲବାସୀ ।
ଶରଣ ଲଇଲ ସବେ ପ୍ରଭୁପଦେ ଆସି ।୧୫୧ ।

ସେଇ ସବ କଥା ଆଗେ କରିବ ବର୍ଣ୍ଣନ ।
ସାର୍ବଭୌମ କରେ ଯୈଛେ ପ୍ରଭୁର ସେବନ ।୧୫୨
ଯୈଛେ ପରିପାଟୀ କରେ ଭିକ୍ଷା-ନିର୍ବାହଣ ।
ବିସ୍ତାରିୟା ଆଗେ ତାହା କରିବ ବର୍ଣ୍ଣନ ।୧୫୩।
ଏଇ ମହାପ୍ରଭୁ ଲୀଳା ସାର୍ବଭୌମ ମିଲନ ।
ଇହା ଯେଇ ଶ୍ରଦ୍ଧା କରି କରୟେ ଶ୍ରବଣ ।୧୫୪।
ଜ୍ଞାନକର୍ମପାଶ-ହୈତେ ହୟ ବିମୋଚନ ।
ଅଚିରେତେ ପାୟ ସେଇ ଚୈତନ୍ୟଚରଣ ।୧୫୫।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ॥

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ସାର୍ବଭୌମୋଦ୍ଧାରୋ ନାମ ଷଷ୍ଠ ପରିଚ୍ଛେଦଃ ।

---

ଅର୍ଥ । ତଥାପି ମୁଁ ସେ ଶବ୍ଦ ତୁଣ୍ଡରେ ଆଣି ପାରିବ ନାହିଁ । କାରଣ ସେଥିରେ ଅଶ୍ଳିଷ୍ୟ ଦୋଷ ଅର୍ଥାତ୍ ଦୁଇ ଅର୍ଥବୋଧକରୂ ଦୋଷ ରହିଅଛି । ସୁତରାଂ ସେ ଶବ୍ଦ ଉଚ୍ଚାରଣ ମାତ୍ରେ ଗୌଣାର୍ଥ ସ୍ଫୂର୍ତ୍ତି ହେତୁରୁ ମନ ବିକଳ ହୁଏ ।"

କୌଣସି ପ୍ରାମାଣିକ ଗ୍ରନ୍ଥରେ 'ଅଶ୍ଳିଷ୍ୟ ଦୋଷ' ସ୍ଥାନରେ 'ଅଶ୍ଳୀଳ' ଶବ୍ଦ ଲେଖା ଅଛି । ଅଶ୍ଳୀଳ ତିନି ପ୍ରକାର, ଯଥା—ବ୍ରୀଡ଼ା, ଜୁଗୁପ୍ସା (ନିନ୍ଦା), ଅମଙ୍ଗଳପ୍ରକାଶକ, ଏଠାରେ ମୁକ୍ତିପଦର ଗୌଣାର୍ଥ ନିନ୍ଦା ପ୍ରକାଶକ ହେତୁ ସେ ଶବ୍ଦ ବ୍ୟବହାର ଅଯୋଗ୍ୟ । ୧୪୩ରୁ ୧୪୬ ।

ଉପରୋକ୍ତ ଅଶ୍ଳିଷ୍ୟ ଦୋଷ ବା ଅଶ୍ଳୀଳତାର କାରଣ ନିର୍ଦ୍ଦେଶ କରୁଅଛନ୍ତି । ଯଦ୍ୟପି ମୁକ୍ତି ଏହି ଶବ୍ଦଦ୍ୱାରା ପାଞ୍ଚ ପ୍ରକାର ମୁକ୍ତି ବୁଝାଏ, ତଥାପି ରୂଢ଼ି ଅର୍ଥରେ ହଠାତ୍ ସାଯୁଜ୍ୟମୁକ୍ତିହିଁ ପ୍ରକାଶ ପାଏ । ସେହି ହେତୁ ମୁକ୍ତି ଶବ୍ଦ କହିବା ଶୁଣିବା ମାତ୍ର ସାଯୁଜ୍ୟମୁକ୍ତିଜ୍ଞାନରେ ହଠାତ୍ ମନରେ ଘୃଣା ଭୟ ଜାତ ହୁଏ । କିନ୍ତୁ ଭକ୍ତି ଶବ୍ଦ ସେପରି ଦୋଷଯୁକ୍ତ ନ ଥିବାରୁ ତାହା କହିବା ବା ଶୁଣିବା ମାତ୍ର ମନରେ ଉଲ୍ଲାସ ହୁଏ । ଏହି ହେତୁ ମୁଁ 'ଭକ୍ତିପଦ' ଏହା ବ୍ୟବହାର କରୁଅଛି ।

ମହାପ୍ରଭୁଙ୍କର ଏପ୍ରକାର ପ୍ରଶ୍ନୋତ୍ତରର କାରଣ ଏହି ଯେ, ନିର୍ବିଶେଷବାଦୀ ସାର୍ବ-ଭୌମଙ୍କର ଭକ୍ତିପ୍ରଭାବରେ ଚିତ୍ତବୃତ୍ତି କି ପ୍ରକାର ହୋଇଅଛି, ତାହା ସମସ୍ତେ ଦେଖନ୍ତୁ ଓ ତଦ୍ଦ୍ୱାରା ଶିକ୍ଷା ଲାଭ କରନ୍ତୁ । ୧୪୭ । ୧୪ ।

ଗ୍ରନ୍ଥକାର କହୁଅଛନ୍ତି ଯେ, ଯେଉଁ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ବ୍ରହ୍ମସୂତ୍ରର ଶାଙ୍କରଭାଷ୍ୟ ଅଧ୍ୟୟନ ଅଧ୍ୟାପନ କରନ୍ତି, ସେ ଯେ ଭାଷ୍ୟର ଏକମାତ୍ର ପ୍ରତିପାଦ୍ୟ, ମୁକ୍ତି ଶବ୍ଦ ସୁଦ୍ଧା ଉଚ୍ଚାରଣ କରିବାକୁ ଅକ୍ଷମ । ଏହା ଶ୍ରୀମନ୍ ମହାପ୍ରଭୁଙ୍କର ଅପାର କୃପାର ଫଳ । ଏହାହିଁ ସ୍ପର୍ଶମଣିର ସ୍ପର୍ଶ-ମଣିତ୍ୱ, ଅର୍ଥାତ୍ ତର୍କନିଷ୍ଠ ଶୁଷ୍କ ଲୌହପିଣ୍ଡ ସମ ଭଟ୍ଟାଚାର୍ଯ୍ୟଙ୍କ ଚିତ୍ତକୁ କାଞ୍ଚନ ତୁଲ୍ୟ ଭକ୍ତିରସୋଜ୍ଜ୍ୱଳ କରିଅଛନ୍ତି । ୧୫୦ । ୧୫୧ ।

ଆଗେ—ଏପରେ । ୧୫୪ ।

ମଧ୍ୟଲୀଳା ଷଷ୍ଠ ପରିଚ୍ଛେଦ ସମାପ୍ତ ।

# ସପ୍ତମ ପରିଚ୍ଛେଦ ।



ଧନ୍ୟଂ ତଂ ନୌମି ଚୈତନ୍ୟଂ ବାସୁଦେବଂ
ଦୟାର୍ଦ୍ର ଧୀଃ ।
ନଷ୍ଟକୁଷ୍ଠଂ ରୂପପୁଷ୍ଟଂ ଭକ୍ତିତୁଷ୍ଟଂ ଚକାର ଯଃ । ୧ ।

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଏଇମତ ସାର୍ବଭୌମେର ନିସ୍ତାର କରିଲ ।
ଦକ୍ଷିଣ ଗମନେ ପ୍ରଭୁର ଇଚ୍ଛା ଉପଜିଲ । ୨ ।
ମାଘ ଶୁକ୍ଳପକ୍ଷେ ପ୍ରଭୁ କରିଲ ସନ୍ନ୍ୟାସ ।
ଫାଲଗୁନେ ଆସିୟା କୈଲ ନୀଳାଚଲେ ବାସ । ୩ ।
ଫାଲଗୁନେର ଶେଷେ ଦୋଲଯାତ୍ରା ସେ ଦେଖିଲ ।
ପ୍ରେମାବେଶେ ତାହାଁ ବହୁ ନୃତ୍ୟଗୀତ କୈଲ । ୪ ।
ଚୈତ୍ରେ ରହି କୈଲ ସାର୍ବଭୌମ ବିମୋଚନ ।
ବୈଶାଖ ପ୍ରଥମେ ଦକ୍ଷିଣ ଯାଇତେ ହୈଲ ମନ ।
ନିଜଗଣ ଆନି କହେ ବିନୟ କରିୟା ।
ଆଲିଙ୍ଗନ କରି ସଭାର ଶ୍ରୀହସ୍ତେ ଧରିୟା—। ୬ ।
ତୋମା ସଭା ଜାନି ଆମି ପ୍ରାଣାଧିକ କରି ।
ପ୍ରାଣ ଛାଡ଼ାଯାଏ, ତୋମା ସଭା ଛାଡ଼ିତେ ନାପାରି ॥
ତୁମି ସବ ବନ୍ଧୁ ମୋର—ବନ୍ଧୁକୃତ୍ୟ କୈଲେ ।
ଇହାଁ ଆନି ମୋରେ ଜଗନ୍ନାଥ ଦେଖାଇଲେ । ୮ ।
ଏବେ ସଭାସ୍ଥାନେ ମୁଞି ମାଗୋଁ ଏକଦାନେ ।
ସବେ ମେଲି ଆଜ୍ଞା ଦେହ—ଯାଇବ ଦକ୍ଷିଣେ । ୯ ।
ବିଶ୍ୱରୂପ ଉଦ୍ଦେଶେ ଆମି ଅବଶ୍ୟ ଯାଇବ ।
ଏକାକୀ ଯାଇବ, କାହୋ ସଙ୍ଗେ ନା ଲଇବ । ୧୦ ।
ସେତୁବନ୍ଧ ହୈତେ ଆମି ନା ଆସି ଯାବତ ।
ନୀଲାଚଲେ ତୁମି ସବ ରହିବେ ତାବତ । ୧୧ ।
'ବିଶ୍ୱରୂପେର ସିଦ୍ଧିପ୍ରାପ୍ତି' ଜାନେନ ସକଲ ।
ଦକ୍ଷିଣଦେଶ ଉଦ୍ଧାରିତେ କରେନ ଏଇ ଛଲ ॥

---

# ସପ୍ତମ ପରିଚ୍ଛେଦ ।



ଦୟାର୍ଦ୍ରଧୀଃ— ଦୟୟା ଆର୍ଦ୍ରା ଧୀର୍ବୁଦ୍ଧିଃ ଯସ୍ୟ ସଃ, ଯଃ ଶ୍ରୀକୃଷ୍ଣଚୈତନ୍ୟଃ ବାସୁଦେବଂ ବାସୁଦେବାନାମାନଂ ଦ୍ୱିଜଂ ନଷ୍ଟକୁଷ୍ଠଂ ନଷ୍ଟଂ ନିବାରିତଂ କୁଷ୍ଠଂ ଯସ୍ୟେତ ତଥାଭୂତଂ ରୂପପୁଷ୍ଟଂ ରୂପେଣୈବ ସୁନ୍ଦରଂ ଶରୀରଂ ଯସ୍ୟେତି ତଥାଭୂତଂ ଭକ୍ତିତୁଷ୍ଟଂ ଭକ୍ତ୍ୟାପ୍ରେମ୍ଣା ତୁଷ୍ଟଂ ଅନ୍ତର୍ବହିରାନନ୍ଦୋ ଯସ୍ୟେତି ତଥାଭୂତଂ, ଚକାର, ତଂ ଧନ୍ୟଂ ଜଗଦ୍‌ଜନଦୁଃଖନାଶକଂ ଚୈତନ୍ୟଂ ନୌମିସ୍ତୌମି । ୧ମ ଶ୍ଳୋକ ।

---

ଯେ ଦୟାପରବଶ ହୋଇ ବାସୁଦେବ ନାମକ ବିପ୍ରଙ୍କର କୁଷ୍ଠରୋଗ ନିବାରଣ କରି ତାହାଙ୍କୁ ଅଧିକ ରୂପବାନ୍ କରାଇ ପ୍ରେମଭକ୍ତିଦାନପୂର୍ବକ ଆନନ୍ଦିତ କରିଥିଲେ, ସେହି ଜଗତ୍ତ୍ରିଜନ-ଦୁଃଖନାଶକ ଶ୍ରୀଚୈତନ୍ୟଦେବଙ୍କୁ ମୁଁ ପ୍ରଣାମକରେଁ । ୧ମ ଶ୍ଳୋକାର୍ଥ ।

ବିଶ୍ୱରୂପ—ମହାପ୍ରଭୁଙ୍କର ପୂର୍ବାଶ୍ରମର ଜ୍ୟେଷ୍ଠ ଭ୍ରାତା ଯେ କି ସନ୍ନ୍ୟାସୀ ହୋଇଥିଲେ । ଆଦିଲୀଳା ୧୩ଶ ପରିଚ୍ଛେଦ ୭୨।୭୩ ପୟାର ।

କାହେଁ।—କାହାରିକୁ । ୧୦ ।

ବିଶ୍ୱରୂପେର ସିଦ୍ଧିପ୍ରାପ୍ତି—ବିଶ୍ୱରୂପ ସନ୍ନ୍ୟାସ ଗ୍ରହଣ କରି ଶଙ୍କରାରଣ୍ୟ ନାମ ଗ୍ରହଣ କରିଥିଲେ । ପ୍ରାୟ ସନ୍ନ୍ୟାସ ଗ୍ରହଣର ତିନି ବର୍ଷ ପରେ ତାହାଙ୍କର ସିଦ୍ଧିପ୍ରାପ୍ତି ହୋଇଥିଲା ଏହା ଏମନ୍ ମହାପ୍ରଭୁଙ୍କର ନବଦ୍ୱୀପବାସ ସମୟରେ ଘଟିଥିଲା ଓ ଏହା ମହାପ୍ରଭୁ ଜାଣନ୍ତି । ସୌଭାଗ୍ୟ-

ଶୁନିଞା ସଭାର ମନେ ହୈଲ ମହାଦୁଃଖ ।
ବଜ୍ର ଯେନ ମାଥେ ପଡ଼େ -ଶୁକାଇଲ ମୁଖ ।୧୩।
ନିତ୍ୟାନନ୍ଦ ପ୍ରଭୁ କହେ—ଐଛେ କୈଛେ ହୟ ?
ଏକାକୀ ଯାଇବେ ତୁମି— କେ ଏହା ସହୟ ? ।
ଏକ-ଦୁଇ ସଙ୍ଗେ ଚଲୁକ—ନା ପଡ଼ ହାତରଙ୍ଗେ
ଯାରେ କହ ସେଇ-ଦୁଇ ଚଲୁକ ତୋମାର ସଙ୍ଗେ ॥
ଦକ୍ଷିଣେର ତୀର୍ଥ-ପଥ ଆମି ସବ ଜାନି ।
ଆମି ସଙ୍ଗେ ଚଲ ପ୍ରଭୁ ! ଆଜ୍ଞା ଦେହ ତୁମି । ୧୬ ।
ପ୍ରଭୁ କହେ—ଆମି ନର୍ତ୍ତକ, ତୁମି ସୂତ୍ରଧାର ।
ଯେଇଛେ ତୁମି ନାଚାହ ତୈଛେ ନର୍ତ୍ତନ ଆମାର ।୧୭
ସନ୍ନ୍ୟାସ କରିଯା ଆମି ଚଲିଲାଙ ବୃନ୍ଦାବନ ।
ତୁମି ଆମା ଲୈଯା ଆଇଲା ଅଦ୍ୱୈତଭବନ । ୧୮ ।
ନୀଲାଚଲ ଆସିତେ ପଥେ ଭାଙ୍ଗିଲେ ମୋର ଦଣ୍ଡ ।
ତୋମାସଭାର ଗାଢ଼ସ୍ନେହେ ଆମାର କାର୍ଯ୍ୟ ଭଙ୍ଗ ।
ଜଗଦାନନ୍ଦ ଚାହେ ଆମା ବିଷୟ ଭୁଞ୍ଜାଇତେ ।
ଯେଇ କହେ—ସେଇ ଭୟେ ଚାହିୟେ
କରିତେ । ୨୦ ।
କଭୁ ଯଦି ଇଁହାର ବାକ୍ୟ କରିୟେ ଅନ୍ୟଥା ।
କ୍ରୋଧେ ତିନଦିନ ଆମାୟ ନାହି କହେ କଥା ।୨୧।
ମୁକୁନ୍ଦ ହୟେନ ଦୁଃଖୀ ଦେଖି ସନ୍ନ୍ୟାସଧର୍ମ ।
ତିନବାର ଶୀତେ ସ୍ନାନ — ଭୂମିତେ ଶୟନ ।୨୨।
ଅନ୍ତରେ ଦୁଃଖୀ ମୁକୁନ୍ଦ — ନାହି କହେ ମୁଖେ ।
ଇହାର ଦୁଃଖ ଦେଖି ଆମାର ଦ୍ୱିଗୁଣ ହୟେ
ଦୁଃଖେ । ୨୩ ।
ଆମିତ ସନ୍ନ୍ୟାସୀ,—ଦାମୋଦର ବ୍ରହ୍ମଚାରୀ ।
ସଦା ରହେ ଆମାର ଉପର ଶିକ୍ଷାଦଣ୍ଡ ଧରି ।୨୪।
ଇଁହାର ଅଗ୍ରେତେ ଆମି ନା ଜାନି ବ୍ୟବହାର ।
ଇଁହାରେ ନା ଭାୟ ସ୍ୱତନ୍ତ୍ର ଚରିତ୍ର ଆମାର ।୨୫।

ଲୋକାପେକ୍ଷା ନାହି ଇଁହାର କୃଷ୍ଣ କୃପା ହୈତେ ।
ଆମି ଲୋକାପେକ୍ଷା କଭୁ ନା ପାରି ଛାଡ଼ିତେ ।୨୬।
ଅତଏବ ତୁମି ସବ ରହ ନୀଲାଚଲେ ।
ଦିନକଥୋ ଆମି ତୀର୍ଥ ଭ୍ରମିବ ଏକଲେ । ୨୭ ।
ଇହାସଭାର ବଶ ପ୍ରଭୁ ହୟେ ଯେ ଯେ ଗୁଣେ ।
ଦୋଷାରୋପ ଛଲେ କରେ ଗୁଣ-ଆସ୍ୱାଦନେ ।୨୮।
ଚୈତନ୍ୟେର ଭକ୍ତବାତ୍ସଲ୍ୟ ଅକଥ୍ୟ କଥନ ।
ଆପନେ ବୈରାଗ୍ୟ-ଦୁଃଖ କରେନ ସହନ ।୨୯।
ସେଇ ଦୁଃଖ ଦେଖି ଯେଇ ଭକ୍ତ ଦୁଃଖ ପାୟ ।
ସେଇ ଦୁଃଖ ତାଁର ଶକ୍ତ୍ୟେ ସହନ ନା ଯାୟ ।୩୦।
ଗୁଣେ ଦୋଷୋଦ୍ଗାର-ଛଲେ ସଭା ନିଷେଧିୟା ।
ଏକାକୀ ଭ୍ରମିବେନ ତୀର୍ଥ ବୈରାଗ୍ୟ କରିୟା ।୩୧।
ତବେ ଚାରିଜନ ବହୁ ମିନତି କରିଲ ।
ସ୍ୱତନ୍ତ୍ର ଈଶ୍ୱର ପ୍ରଭୁ—କଭୁ ନା ମାନିଲ । ୩୨ ।
ତବେ ନିତ୍ୟାନନ୍ଦ କହେ—ଯେ ଆଜ୍ଞା ତୋମାର ।
ଦୁଃଖ-ସୁଖ ହଉକ— ସେଇ କର୍ତ୍ତବ୍ୟ ଆମାର ।୩୩।
କିନ୍ତୁ ଏକ ନିବେଦନ କରୋଁ ଆରବାର ।
ବିଚାର କରିୟା ତାହା କର ଅଙ୍ଗୀକାର । ୩୪ ।
କୌପୀନ, ବହିର୍ବାସ, ଆର ଜଲପାତ୍ର ।
ଆର କିଛୁ ସଙ୍ଗେ ନାହି, ଯାବେ ଏଇମାତ୍ର ।୩୫।
ତୋମାର ଦୁଇ ହସ୍ତ ବଦ୍ଧ ନାମଗଣନେ ।
ଜଲପାତ୍ର-ବହିର୍ବାସ ବହିବେ କେମନେ ? ।୩୬।
ପ୍ରେମାବେଶେ ପଥେ ତୁମି ହବେ ଅଚେତନ ।
ଜଲପାତ୍ର-ବସ୍ତ୍ରେର କେବା କରିବେ ରକ୍ଷଣ ? ।୩୭।
କୃଷ୍ଣଦାସ ନାମ ଏଇ ସରଲ ବ୍ରାହ୍ମଣ ।
ଇହା ସଙ୍ଗେ କରି ଲହ—ଧର ନିବେଦନ ।୩୮।
ଜଲପାତ୍ର ବସ୍ତ୍ର ବହି ତୋମାର ସଙ୍ଗେ ଯାବେ ।
ଯେ ତୋମାର ଇଚ୍ଛା କର—କିଛୁ ନା ବଲିବେ ॥

---

ବାନ୍ ଦକ୍ଷିଣ ଦେଶବାସିମାନଙ୍କୁ ନାମପ୍ରେମଦାନଦ୍ୱାରା ଉଦ୍ଧାର କରିବାର ଇଚ୍ଛାରେ ଏହି ଛଳକୁ ଅବଲମ୍ବନ କରି ଦକ୍ଷିଣ ଯିବାର ଇଚ୍ଛା ପ୍ରକାଶ କଲେ । ୧୬ ।

ନାପଡ଼ ହାତରଙ୍ଗେ—କଷ୍ଟ କରନା । ୧୫ । ସୂତ୍ରଧାର—ନାଟ୍ୟପ୍ରସ୍ତାବକ ପ୍ରଧାନ ନଟ । ୧୭ ।

ତବେ ତାର ବାକ୍ୟ ପ୍ରଭୁ କରି ଅଙ୍ଗୀକାରେ ।
ତାଁହାସଙ୍ଗେ ଲୈୟା ଗେଲା ସାର୍ବଭୌମଘରେ ।୪୦।
ନମସ୍କରି ସାର୍ବଭୌମ ଆସନ ନିବେଦିଲ ।
ସଭାକାରେ ମିଲିୟା ଆସନେ ବସାଇଲ ।୪୧।
ନାନା କୃଷ୍ଣବାର୍ତ୍ତା ପ୍ରଭୁ କହିଲ ତାଁହାରେ—
ତୋମାର ଠାଞି ଆଇଲୁଁ ଆଜ୍ଞା ମାଗିବାରେ ।୪୨।
ସନ୍ନ୍ୟାସ କରି ବିଶ୍ୱରୂପ ଗିୟାଛେ ଦକ୍ଷିଣେ ।
ଅବଶ୍ୟ କରିବ ଆମି ତାଁର ଅନ୍ୱେଷଣେ ।୪୩।
ଆଜ୍ଞା ଦେହ ଅବଶ୍ୟ ଆମି ଦକ୍ଷିଣେ ଚଲିବ ।
ତୋମାର ଆଜ୍ଞାତେ ସୁଖେ ଲେଉଟି ଆସିବ ।୪୪
ଶୁନି ସାର୍ବଭୌମ ହୈଲା ଅତ୍ୟନ୍ତ କାତର ।
ଚରଣେ ଧରିୟା କହେ ବିଷାଦ-ଉତ୍ତର—।୪୫।
ବହୁଜନ୍ମ ପୁଣ୍ୟଫଲେ ପାଇନୁ ତୋମାର ସଙ୍ଗ ।
ହେନ ସଙ୍ଗ ବିଧି ମୋର କରିବେକ ଭଙ୍ଗ ।୪୬।
ଶିରେ ବଜ୍ର ପଡ଼େ ଯଦି ପୁତ୍ର ମରି ଯାୟ ।
ତାହା ସହି, ତୋମାର ବିଚ୍ଛେଦ ସହନ ନା ଯାୟ ।
ସ୍ୱତନ୍ତ୍ର ଈଶ୍ୱର ତୁମି କରିବେ ଗମନ ।
ଦିନକଥୋ ରହ, ଦେଖି ତୋମାର ଚରଣ ।୪୮।
ତାଁହାର ବିନୟେ ପ୍ରଭୁର ଶିଥିଲ ହୈଲ ମନ ।
ରହିଲ ଦିବସକଥୋ—ନା କୈଲ ଗମନ ।୪୯।
ଭଟ୍ଟାଚାର୍ଯ୍ୟ ଆଗ୍ରହ କରି କରେ ନିମନ୍ତ୍ରଣ ।
ଗୃହେ ପାକ କରି ପ୍ରଭୁକେ କରାୟ ଭୋଜନ ।୫୦।
ତାଁହାର ବ୍ରାହ୍ମଣୀ—ତାଁର ନାମ ଷାଠୀରମାତା ।
ରାନ୍ଧି ଭିକ୍ଷା ଦେନ ତେହେଁ, ଆଶ୍ଚର୍ଯ୍ୟ ତାଁର କଥା ।
ଆଗେ ତ କହିବ ତାହା କରିୟା ବିସ୍ତାର ।
ଏବେ କହି ପ୍ରଭୁର ଦକ୍ଷିଣଯାତ୍ରା-ସମାଚାର ।୫୨।
ଦିନ ଚାରି ରହି ପ୍ରଭୁ ଭଟ୍ଟାଚାର୍ଯ୍ୟ-ସ୍ଥାନେ ।
ଚଲିବାର ଲାଗି ଆଜ୍ଞା ମାଗିଲ ଆପନେ ।୫୩।
ପ୍ରଭୁର ଆଗ୍ରହେ ଭଟ୍ଟାଚାର୍ଯ୍ୟ ସମ୍ମତ ହଇଲ ।
ପ୍ରଭୁ ତାଁରେ ଲୈୟା ଜଗନ୍ନାଥ-ମନ୍ଦିରେ ଗେଲ ।
ଦର୍ଶନ କରି ଠାକୁର ପାଶେ ଆଜ୍ଞା ମାଗିଲ ।
ପୂଜାରୀ ପ୍ରଭୁରେ ମାଲାପ୍ରସାଦ ଆନି ଦିଲ ।୫୫।
ଆଜ୍ଞାମାଲା ପାଞା ହର୍ଷେ ନମସ୍କାର କରି ।
ଆନନ୍ଦେ ଦକ୍ଷିଣଦେଶେ ଚଲିଲ ଗୌରହରି ।୫୬।
ଭଟ୍ଟାଚାର୍ଯ୍ୟ ସଙ୍ଗେ ଆର ଯତ ନିଜଗଣ ।
ଜଗନ୍ନାଥ ପ୍ରଦକ୍ଷିଣ କରି କରିଲ ଗମନ ।୫୭।
ସମୁଦ୍ର ତୀରେ ତୀରେ ଆଲାଲନାଥ ପଥେ ।
ସାର୍ବଭୌମ କହିଲ ଆଚାର୍ଯ୍ୟ ଗୋପୀନାଥେ—।
ଚାରି କୌପୀନ ବହିର୍ବାସ ରାଖିୟାଛି ଘରେ ।
ତାହା ପ୍ରସାଦାନ୍ନ ଲୈୟା ଆଇସ ବିପ୍ରଦ୍ୱାରେ ।୫୯।
ତବେ ସାର୍ବଭୌମ କହେ ପ୍ରଭୁର ଚରଣେ— ।
ଅବଶ୍ୟ କରିବେ ମୋର ଏଇ ନିବେଦନେ ।୬୦।
ରାୟ ରାମାନନ୍ଦ ଆଛେ ଗୋଦାବରୀ ତୀରେ ।
ଅଧିକାରୀ ହୟେନ ତେହେଁ ବିଦ୍ୟାନଗରେ ।୬୧।
ଶୂଦ୍ର ବିଷୟୀ ଜ୍ଞାନେ ତାଙ୍କର ଉପେକ୍ଷା ନା କରିବ
ଆମାର ବଚନେ ତାଁରେ ଅବଶ୍ୟ ମିଲିବେ ।୬୨।
ତୋମାର ସଙ୍ଗେର ଯୋଗ୍ୟ ତେହେଁ ଏକଜନ ।
ପୃଥିବୀତେ ରସିକ ଭକ୍ତ ନାହି ତାଁର ସମ ।୬୩।
ପାଣ୍ଡିତ୍ୟ ଆର ଭକ୍ତିରସ- ଦୁହାଁର ତେହେଁ ସୀମା
ସମ୍ଭାଷିଲେ ଜାନିବେ ତୁମି ତାଁହାର ମହିମା ।୬୪
ଅଲୌକିକ ବାକ୍ୟଚେଷ୍ଟା ତାଁର ନା ବୁଝିୟା ।
ପରିହାସ କରିୟାଛି 'ବୈଷ୍ଣବ' ବଲିୟା ।୬୫।
ତୋମାର ପ୍ରସାଦେ ଏବେ ଜାନିଲ ତାଁର ତତ୍ତ୍ୱ ।
ସମ୍ଭାଷିଲେ ଜାନିବେ ତାଁର ଯେମନ ମହତ୍ତ୍ୱ ।୬୬।
ଅଙ୍ଗୀକାର କରି ପ୍ରଭୁ ତାଁହାର ବଚନ ।
ତାଁରେ ବିଦାୟ ଦିତେ ତାଁରେ କୈଲ ଆଲିଙ୍ଗନ ।

ତାଁହା ଇତି । ଚାରି କୌପୀନ ବହିର୍ବାସାଂସି ପ୍ରସାଦାନ୍ନମପି ବିପ୍ରଦ୍ୱାରା ଗୃହୀତ୍ୱା ଆଗଚ୍ଛେତ୍ୟର୍ଥଃ । ବି· ଚ. । ୫୯ ।

ଲେଉଟି— ନେଉଟି । ୪୪ । ଅଧିକାରୀ—ଶାସନକର୍ତ୍ତା । ୬୧ ।
ଅଲୌକିକ ବାକ୍ୟ ଚେଷ୍ଟା—ଅସାଧାରଣ ବା ପାରମାର୍ଥିକ ବାକ୍ୟ ଏବଂ ଆଚରଣ ।୬୫।

'ଘରେ କୃଷ୍ଣ ଭଜ ମୋରେ କରହ ଆଶୀର୍ବାଦେ ।
ନୀଳାଚଳେ ଆସି ଯେମନ ତୋମାର ପ୍ରସାଦେ ।୭୮।
ଏତ ବଲି ମହାପ୍ରଭୁ କରିଲା ଗମନ ।
ମୂର୍ଚ୍ଛିତ ହଞା ତାହାଁ ପଡ଼ିଲା ସାର୍ବଭୌମ । ୭୯ ।
ତାଁରେ ଉପେକ୍ଷିଯା କୈଲ ଶୀଘ୍ର ଗମନ ।
କେ ବୁଝିତେ ପାରେ ମହାପ୍ରଭୁର ଚିତ୍ତ-ମନ ? ।
ମହାନୁଭାବେର ଚିତ୍ତେର ସ୍ୱଭାବ ଏଇ ହଯ ।
ପୁଷ୍ପସମ କୋମଲ—କଠିନ ବଜ୍ରମଯ । ୭୧ ।

ତଥା ହି ଉତ୍ତରଚରିତେ (୨୧୭)—।

ବଜ୍ରାଦପି କଠୋରାଣି ମୃଦୂନି କୁସୁମାଦପି ।
ଲୋକୋତ୍ତରାଣାଂ ଚେତାଂସି କୋ ହି ବିଜ୍ଞାତୁ-
ମୀଶ୍ୱରଃ ॥ ୨ ।

ନିତ୍ୟାନନ୍ଦ ପ୍ରଭୁ ଭଟ୍ଟାଚାର୍ଯ୍ୟେ ଉଠାଇଲ ।
ତାଁର ଲୋକ ସଙ୍ଗେ ତାଁରେ ଘରେ ପାଠାଇଲ ।
ଭକ୍ତଗଣ ଶୀଘ୍ର ଆସି ଲୈଲ ପ୍ରଭୁର ସାଥ ।
ବସ୍ତ୍ରପ୍ରସାଦ ଲୈଞା ତବେ ଆଇଲା ଗୋପୀନାଥ ।
ସଭାସଙ୍ଗେ ତବେ ପ୍ରଭୁ ଆଲାଲନାଥ ଆଇଲା ।
ନମସ୍କାର କରି ତାଁରେ ବହୁ ସ୍ତୁତି କୈଲା । ୭୪ ।
ପ୍ରେମାବେଶେ ନୃତ୍ୟ-ଗୀତ କୈଲ କଥୋକ୍ଷଣ ।
ଦେଖିତେ ଆଇଲ ତାହାଁ ବୈସେ ଯତ ଜନ ।
ଚତୁର୍ଦ୍ଦିଗେ ଲୋକସବ ବୋଲେ 'ହରିହରି' ।
ପ୍ରେମାବେଶେ ମଧ୍ୟେ ନୃତ୍ୟ କରେ ଗୌରହରି ।
କାଞ୍ଚନସଦୃଶ ଦେହ — ଅରୁଣବସନ ।
ପୁଲକାଶ୍ରୁ କମ୍ପ ସ୍ୱେଦ ତାହାତେ ଭୂଷଣ । ୭୬ ।
ଦେଖିଞା ଲୋକେର ମନେ ହୈଲ ଚମତ୍କାର ।
ଯତ ଲୋକ ଆଇସେ—କେହୋ ନାହି ଯାଯ
ଘର ।
କେହୋ ନାଚେ କେହୋ ଗାଯ ଶ୍ରୀକୃଷ୍ଣଗୋପାଲ
ପ୍ରେମେତେ ଭାସିଲ ଲୋକ—ସ୍ତ୍ରୀ ବୃଦ୍ଧ ଯୁବା ବାଲ
ଦେଖି ନିତ୍ୟାନନ୍ଦପ୍ରଭୁ କହେ ଭକ୍ତଗଣେ—।
ଏଇରୂପେ ନୃତ୍ୟ ଆଗେ ହବେ ଗ୍ରାମେ ଗ୍ରାମେ ।
ଅତିକାଲ ହୈଲ—ଲୋକ ଛାଡ଼ିଞା ନା ଯାଯ
ତବେ ନିତ୍ୟାନନ୍ଦଗୋସାଞି ସୃଜିଲ ଉପାଯ ।
ମଧ୍ୟାହ୍ନ କରିତେ ଗେଲା ପ୍ରଭୁକେ ଲଇଯା
ତାହା ଦେଖି ଲୋକ ଆଇସେ ଚୌଦିଗେ ଧାଇଞା
ମଧ୍ୟାହ୍ନ କରିଞା ଆଇଲା ଦେବତା-ମନ୍ଦିରେ ।
ନିଜ-ଗଣ ପ୍ରବେଶି କବାଟ ଦିଲ ଦ୍ୱାରେ ॥
ତବେ ଗୋପୀନାଥ ଦୁଇପ୍ରଭୁରେ ଭିକ୍ଷା କରାଇଲ
ପ୍ରଭୁର ଶେଷ-ପ୍ରସାଦାନ୍ନ ସବେ ବାଁଟି ଖାଇଲ ॥
ଶୁନିଶୁନି ଲୋକସବ ଆସି ବହିର୍ଦ୍ୱାରେ ।
'ହରିହରି' ବଲି ଲୋକ କୋଲାହଲ କରେ ॥
ତବେ ମହାପ୍ରଭୁ ଦ୍ୱାର କରାଇଲ ମୋଚନ ।
ଆନନ୍ଦେ ଆସିଞା ଲୋକ କୈଲ ଦରଶନ ।୮୭।
ଏଇମତ ସନ୍ଧ୍ୟାପର୍ଯ୍ୟନ୍ତ ଲୋକ ଆଇସେ ଯାଯ ।
ବୈଷ୍ଣବ ହଇଲ ଲୋକ—ସବେ ନାଚେ ଗାଯ ।
ଏଇରୂପେ ସେଇ ଠାଞି ଭକ୍ତଗଣସଙ୍ଗେ ।
ସେଇ ରାତ୍ରି ଗୋଙାଇଲା କୃଷ୍ଣକଥା ରଙ୍ଗେ ।

ଲୋକୋତ୍ତରାଣାଂ—ଅଲୌକିକାନାଂ ଭଗବଦାଦୀନାଂ ଚେତାଂସି - ମନାଂସି ବିଜ୍ଞାତୁଂ— କୋହି ଈଶ୍ୱରଃ ସମର୍ଥୋ ନ କୋଽପୀତ୍ୟର୍ଥଃ । କଥଂଭୂତାନି ଚେତାଂସି । ବଜ୍ରାଦପି—କୁଲିଶାଦପି କଠୋରାଣି—କଠିନାନି କୁସୁମାଦପି— ମହା କୋମଲାଦପି ମୃଦୂନି କୋମଲାନି । ୨ୟ ଶ୍ଳୋକ ।

ଲୋକୋତ୍ତର ( ଭଗବଦ୍‌ଭକ୍ତ ) ମାନଙ୍କର ଚିତ୍ତ ବଜ୍ର ଅପେକ୍ଷା କଠିନ ଏବଂ କୁସୁମ ଅପେକ୍ଷା କୋମଳ, ତାହା ଜାଣିବାକୁ କିଏ ସମର୍ଥ ହେବ ଅର୍ଥାତ୍ କେହି ସମର୍ଥ ନୁହେଁ ।

୨ୟ ଶ୍ଳୋକାର୍ଥ ।

ଆଲାଲନାଥ — ଶ୍ରୀପୁରୁଷୋତ୍ତମ କ୍ଷେତ୍ରଠାରୁ ପ୍ରାୟ ସାତ କ୍ରୋଶ ଦକ୍ଷିଣ । ଏଠାରେ ଶ୍ରୀ ଆଲାଲନାଥ ନାମକ ବିଷ୍ଣୁ ବିଗ୍ରହ ବିରାଜମାନ । ୭୪ ।

ଅତିକାଲ — ମଧ୍ୟାହ୍ନକୃତ୍ୟର ସମୟ ଗଡ଼ିଗଲା ।୮୧। ଗୋଙାଇଲ—କଟାଇଲେ ।୮୮।

ପ୍ରାତଃକାଳେ ସ୍ନାନ କରି କରିଲା ଗମନ ।
ଭକ୍ତଗଣେ ବିଦାୟ ଦିଲା କରି ଆଲିଙ୍ଗନ ॥
ମୂର୍ଚ୍ଛିତ ହଇଯା ସବେ ଭୂମିତେ ପଡ଼ିଲା ।
ତାହାସଭାପାନେ ପ୍ରଭୁ ଫିରି ନା ଚାହିଲା ।୯୦।
ବିଚ୍ଛେଦେ ବ୍ୟାକୁଳ ପ୍ରଭୁ ଚଲିଲା ଦୁଃଖୀ ହୈଯା
ପାଛେ କୃଷ୍ଣଦାସ ଯାୟ ପାନି ବସ୍ତ୍ର ଲୈଞା ।
ଭକ୍ତଗଣ ଉପବାସୀ ତାହାଁଇ ରହିଲା ।
ଆରଦିନ ଦୁଃଖୀ ହୈଯା ନୀଲାଚଳେ ଆଇଲା ।୯୧
ମତ୍ତସିଂହପ୍ରାୟ ପ୍ରଭୁ କରିଲା ଗମନ ।
ପ୍ରେମାବେଶେ ଯାୟ କରି ନାମସଂକୀର୍ତ୍ତନ । ୯୩ ।

ତଥାହି ଶ୍ରୀକୃଷ୍ଣଚୈତନ୍ୟବାକ୍ୟମ୍ —

କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ହେ ।
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ହେ ॥
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ରକ୍ଷ ମାମ୍ ।
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ପାହି ମାମ୍ ॥
ରାମ ରାଘବ ରାମ ରାଘବ ରାମ ରାଘବ ରକ୍ଷ ମାମ୍ ।
କୃଷ୍ଣ କେଶବ କୃଷ୍ଣ କେଶବ କୃଷ୍ଣ କେଶବ ପାହି ମାମ୍ ॥

ଏଇ ଶ୍ଲୋକ ପଢ଼ି ପଥେ ଚଲେ ଗୌରହରି ।
ଲୋକ ଦେଖି ପଥେ କହେ—ବୋଲ 'ହରିହରି'
ସେଇ ଲୋକ ପ୍ରେମେ ମତ୍ତ – ବୋଲେ 'ହରିକୃଷ୍ଣ'
ପ୍ରଭୁର ପାଛେ ସଙ୍ଗେ ଯାୟ— ଦର୍ଶନେ ସତୃଷ୍ଣ ॥
କଥୋକ୍ଷଣେ ରହି ପ୍ରଭୁ ତାରେ ଆଲିଙ୍ଗିଞା ।
ବିଦାୟ କରେନ ତାରେ ଶକ୍ତି ସଞ୍ଚାରିଞା ॥
ସେଇଜନ ନିଜ ଗ୍ରାମେ କରିଞା ଗମନ ।
'କୃଷ୍ଣ' ବୋଲେ ହାସେ କାନ୍ଦେ ନାଚେ ଅନୁକ୍ଷଣ
ଯାରେ ଦେଖେ ତାରେ କହେ — କହ କୃଷ୍ଣନାମ
ଏଇମତ ବୈଷ୍ଣବ କୈଲ ସବ ନିଜଗ୍ରାମ । ୯୮ ।
ଗ୍ରାମାନ୍ତର ହୈତେ ଦେଖିବେ ଆଇସେ ଯତଜନ ।
ତାହାର ଦର୍ଶନକୃପାୟ ହୟ ତାର ସମ । ୯୯ ।
ସେଇ ଯାଇ ନିଜଗ୍ରାମ ବୈଷ୍ଣବ କରୟ ।
ଅନ୍ୟଗ୍ରାମୀ ଆସି ତାରେ ଦେଖି ବୈଷ୍ଣବ ହୟ ୧୦୦
ସେଇ ଯାଇ ଆର-ଗ୍ରାମେ କରେ ଉପଦେଶ ।
ଏଇମତ ବୈଷ୍ଣବ ହୈଲ ସବ ଦକ୍ଷିଣଦେଶ ।୧୦୧
ଏଇମତ ପଥେ ଯାଇତେ ଶତ ଶତ ଜନ ।
ବୈଷ୍ଣବ କରେନ--ତାରେ କରି ଆଲିଙ୍ଗନ ।୧୦୨
ଯେଇଗ୍ରାମେ ରହି ଭିକ୍ଷା କରେନ ଯାର ଘରେ ।
ସେଇଗ୍ରାମେର ଯତ ଲୋକ ଆଇସେ ଦେଖିବାରେ
ପ୍ରଭୁର କୃପାୟ ହୟ ମହାଭାଗବତ ।
ସେ-ସବ ଆଚାର୍ଯ୍ୟ ହଇଯା ତାରିଲା ଜଗତ ।୧୦୪।
ଏଇମତ କୈଲା ଯାବତ୍ ଗେଲା ସେତୁବନ୍ଧେ ।
ସର୍ବଦେଶ ବୈଷ୍ଣବ ହୈଲା ପ୍ରଭୁର ସମ୍ବନ୍ଧେ ।୧୦୫
ନବଦ୍ୱୀପେ ଯେଇ ଶକ୍ତି ନା କୈଲ ପ୍ରକାଶେ ।
ସେ ଶକ୍ତି ପ୍ରକାଶି ନିସ୍ତାରିଲ ଦକ୍ଷିଣଦେଶେ ।୧୦୬।
ପ୍ରଭୁରେ ଯେ ଭଜେ — ତାରେ ତାଁର କୃପା ହୟ ।
ସେଇ ସେ ଏସବ ଲୀଳା ସତ୍ୟକରି ଲୟ ।୧୦୭।
ଅଲୌକିକ ଲୀଲାତେ ଯାର ନା ଜନ୍ମେ ବିଶ୍ୱାସ ।
ଇହଲୋକ ପରଲୋକ ତାର ହୟ ନାଶ ।୧୦୮।
ପ୍ରଥମେ କହିଲ ପ୍ରଭୁ ଯେରୂପେ ଗମନ ।
ଏଇମତ ଜାନିହ ଯାବତ୍ ଦକ୍ଷିଣ ଭ୍ରମଣ ।୧୦୯।
ଏଇମତ ଯାଇତେ ଯାଇତେ ଗେଲା କୂର୍ମସ୍ଥାନେ ।
କୂର୍ମ ଦେଖି ତାରେ କୈଲ ସ୍ତବନ-ପ୍ରଣାମେ ।୧୧୦

---

ପାହି ମାଂ—ମୋତେ ଉଦ୍ଧାର କର । ରକ୍ଷ ମାଂ— ମୋତେ ରକ୍ଷା କର । ୭ମ ଶ୍ଲୋକ । କୃଷ୍ଣ ଇତି । ହେ କୃଷ୍ଣ ! ହେ କୃଷ୍ଣ ! ଇତ୍ୟାଦି ମାଂ ରାହି ମାଂ ପାହି । ଅନ୍ୟତ୍ର ସୁଗମଂ । ବ· ଚ· ୭ ଶ୍ଲୋକ ।

---

ନିଜ ଗ୍ରାମ – ସେହି ଲୋକର ଗ୍ରାମ । ୯୮ । କୂର୍ମସ୍ଥାନେ—କୂର୍ମକ୍ଷେତ୍ରର ଅଧିଷ୍ଠିତ ଦେବତା କୂର୍ମ ।

ବେଙ୍ଗଲ ନାଗପୁର ରେଲର ଗଞ୍ଜାମ ଜିଲାର 'ଚିକାକୋଲ' ରେଲ ଷ୍ଟେସନଠାରୁ ଆଠ ମାଇଲ ପୂର୍ବ ଦିଗରେ କୂର୍ମାଚଳ ବା ଶ୍ରୀକୂର୍ମମ୍ ସ୍ଥାନ ଅବସ୍ଥିତ । ସେଠାରେ କୂର୍ମମୂର୍ତ୍ତି

ପ୍ରେମାବେଶେ ହାସି କାନ୍ଦି ନୃତ୍ୟଗୀତ କୈଲ ।
ଦେଖି ସର୍ବଲୋକଙ୍କଚିତ୍ତେ ଚମତ୍କାର ହୈଲ ।୧୧୧।
ଆଶ୍ଚର୍ଯ୍ୟ ଶୁନି ସବଲୋକ ଆଇଲା ଦେଖିବାରେ ।
ପ୍ରଭୁର ରୂପ-ପ୍ରେମ ଦେଖି ହୈଲ ଚମତ୍କାରେ ॥
ଦର୍ଶନେ ବୈଷ୍ଣବ ହୈଲା— ବୋଲେ 'କୃଷ୍ଣହରି' ।
ପ୍ରେମାବେଶେ ନାଚେ ଲୋକ ଊର୍ଦ୍ଧ୍ୱବାହୁ କରି ॥
କୃଷ୍ଣ ନାମ ଲୋକମୁଖେ ଶୁନି ଅବିରାମ ।
ସେଇ ଲୋକ ବୈଷ୍ଣବ କୈଲ ଅନ୍ୟ ସବ ଗ୍ରାମ ॥
ଏଇମତ ପରମ୍ପରାୟ ଦେଶ ବୈଷ୍ଣବ ହୈଲ ।
କୃଷ୍ଣନାମାମୃତ-ବନ୍ୟାୟ ଦେଶ ଭାସାଇଲ ।୧୧୫।
କଥୋକ୍ଷଣେ ପ୍ରଭୁ ଯଦି ବାହ୍ୟ ପ୍ରକାଶିଲା ।
କୂର୍ମେର ସେବକ ବହୁ ସମ୍ମାନ କରିଲା ।୧୧୬।
ଯେଇ ଗ୍ରାମେ ଯାୟ, ତାହାଁ ଏଇ ବ୍ୟବହାର ।
ଏକଠାଇଁ କହିଲ, ନା କହିବ ଆରବାର ।୧୧୭।
କୂର୍ମନାମେ ସେଇ ଗ୍ରାମେ ବୈଦିକ ବ୍ରାହ୍ମଣ ।
ବହୁ ଶ୍ରଦ୍ଧାଭକ୍ତ୍ୟେ ପ୍ରଭୁର କୈଲ ନିମନ୍ତ୍ରଣ ।୧୧୮।
ଘରେ ଆନି ପ୍ରଭୁର କୈଲ ପାଦ ପ୍ରକ୍ଷାଳନ ।
ସେଇ ଜଲ ବଂଶସହିତ କରିଲ ଭକ୍ଷଣ ।୧୧୯।
ଅନେକପ୍ରକାରେ ସ୍ନେହେ ଭିକ୍ଷା କରାଇଲ ।
ଗୋସାଞିର ଶେଷାନ୍ନ ସବଂଶେ ଖାଇଲ ।୧୨୦।
ଯେଇ ପାଦପଦ୍ମ ତୋମାର ବ୍ରହ୍ମା ଧ୍ୟାନ କରେ ।
ସେଇ ପାଦପଦ୍ମ ସାକ୍ଷାତ୍ ଆଇଲ ମୋର ଘରେ ॥
ଆମାର ଭାଗ୍ୟେର ସୀମା ନାଯାୟ କଥନ ।
ଆଜି ମୋର ଶ୍ଳାଘ୍ୟ ହୈଲ ଜନ୍ମ କୁଲ ଧନ ।୧୨୨।
କୃପା କର ମୋରେ ପ୍ରଭୁ ! ଯାଇ ତୋମାର ସଙ୍ଗେ ।
ସହିତେ ନାପାରି ଦୁଃଖ ବିଷୟତରଙ୍ଗେ ।୧୨୩।
ପ୍ରଭୁ କହେ—ଐଛେ ବାତ କଭୁ ନା କହିବା ।
ଗୃହେ ରହି କୃଷ୍ଣନାମ ନିରନ୍ତର ଲୈବା ।୧୨୪।
ଯାରେ ଦେଖ—ତାରେ କହ କୃଷ୍ଣ-ଉପଦେଶ ।
ଆମାର ଆଜ୍ଞାୟ ଗୁରୁ ହୈଞା ତାର' ଏଇ ଦେଶ ॥
କଭୁ ନା ବାଧିବେ ତୋମାୟ ବିଷୟତରଙ୍ଗ ।
ପୁନରପି ଏଇଠାଞି ପାବେ ମୋର ସଙ୍ଗ ।୧୨୬।
ଏଇମତ ଯାର ଘରେ ପ୍ରଭୁ କରେ ଭିକ୍ଷା ।
ସେଇ ଐଛେ କହେ, ତାରେ କରାୟ ଏଇ ଶିକ୍ଷା ॥
ପଥେ ଯାଇତେ ଦେବାଲୟେ ରହେ ଯେଇ ଗ୍ରାମେ
ଯାର ଘରେ ଭିକ୍ଷା କରେ ସେଇ ମହାସ୍ଥାନେ ॥
କୂର୍ମେ ଯୈଛେ ରୀତି, ତୈଛେ କୈଲ ସର୍ବଠାଞି
ନୀଲାଚଲ ପୁନ ଯାବତ୍ ନା ଆଇଲା ଗୋସାଞି ॥
ଅତଏବ ଇହାଁ କହିଲ କରିଞା ବିସ୍ତାର ।
ଏଇମତ ଜାନିବେ ପ୍ରଭୁର ସର୍ବତ୍ର ବ୍ୟବହାର ॥
ଏଇମତ ସେଇ ରାତ୍ରି ତାହାଁଇ ରହିଲା ।
ସ୍ନାନ କରି ପ୍ରଭୁ ପ୍ରାତଃକାଲେ ତ ଚଲିଲା ।୧୩୧।
ପ୍ରଭୁ ଅନୁବ୍ରଜି କୂର୍ମ ବହୁଦୂର ଗେଲା ।
ପ୍ରଭୁ ତାରେ ଯତ୍ନ କରି ଘରେ ପାଠାଇଲା ।୧୩୨।
ବାସୁଦେବ ନାମ ଏକ ଦ୍ୱିଜ ମହାଶୟ ।
ସର୍ବାଙ୍ଗେ ଗଲିତକୁଷ୍ଠ—ତେହୋ କୀଡ଼ାମୟ ॥
ଅଙ୍ଗ ହୈତେ ଯେଇ କୀଡ଼ା ଖସିଞା ପଡ଼ୟ ।
ଉଠାଇଞା ସେଇ କୀଡ଼ା ରାଖେ ସେଇଠାୟ ।୧୩୪।
ରାତ୍ରିତେ ଶୁନିଲ ତେହୋ ଗୋସାଞିର ଆଗମନ ।
ଦେଖିତେ ଆଇଲା ପ୍ରାତଃ, କୂର୍ମେର ଭବନ ॥
ପ୍ରଭୁର ଗମନ କୂର୍ମ-ମୁଖେତେ ଶୁନିଞା ।
ଭୂମିତେ ପଡ଼ିଲା ଦୁଃଖେ ମୂର୍ଚ୍ଛିତ ହଇଞା ।୧୩୬।
ଅନେକପ୍ରକାରେ ବିଲାପ କରିତେ ଲାଗିଲା ।
ସେଇକ୍ଷଣେ ଆସି ପ୍ରଭୁ ତାଁରେ ଆଲିଙ୍ଗିଲା ।୧୩୭।
ପ୍ରଭୁର ସ୍ପର୍ଶେ ଦୁଃଖ-ସଙ୍ଗେ କୁଷ୍ଠ ଦୂରେ ଗେଲ ।
ଆନନ୍ଦସହିତ ଅଙ୍ଗ ସୁନ୍ଦର ହଇଲ ।୧୩୮।
ପ୍ରଭୁର କୃପା ଦେଖି ତାର ବିସ୍ମୟ ହୈଲ ମନ ।
ଶ୍ଳୋକ ପଡ଼ି ପାୟେ ଧରି କରୟେ ସ୍ତବନ ।୧୩୯।

ବିରାଜମାନ । ଏକାଦଶଶକ ଶତାବ୍ଦୀରେ ଯେଉଁ ସମୟରେ ଶ୍ରୀ ରାମାନୁଜ ସ୍ୱାମୀ ଶ୍ରୀପୁରୁଷୋତ୍ତମରୁ ଶ୍ରୀଜଗନ୍ନାଥ ଦେବଙ୍କ କର୍ତ୍ତୃକ ନିକ୍ଷିପ୍ତ ହୁଅନ୍ତି, ସେହି ସମୟରେ ସେ କୂର୍ମମୂର୍ତ୍ତିକୁ ଶିବମୂର୍ତ୍ତି ଜ୍ଞାନ କରି ଉପବାସ କରିଥିଲେ । ପରେ ବିଷ୍ଣୁମୂର୍ତ୍ତି ଜାଣି କୂର୍ମଦେବଙ୍କର ସେବା ପ୍ରକାଶ କଲେ । ପରେ ଏହି ମନ୍ଦିର ଶ୍ରୀମାଧ୍ୱମଠର ତତ୍ତ୍ୱାବଧାନରେ ବିଜୟନଗର ରାଜାଙ୍କର ଅଧିକାରରେ ଥିଲା । ୧୧୦ ।

ଅନୁବ୍ରଜି—ପାଛେ ପାଛେ । ୧୩୨ । ଠାଁୟ—ସ୍ଥାନରେ । ୧୩୪ ।

୪ର୍ଥ ଶ୍ଳୋକର ଅନ୍ୱୟ ଅଧଃ ୧୬ଶ ପର : ୬ଷ୍ଠ ଶ୍ଳୋକ ।

ତଥାହି ( ଭାଃ—୧୦।୮।୧୬ )

କ୍ୱାହଂ ଦରିଦ୍ରଃ ପାପୀୟାନ କ୍ୱ କୃଷ୍ଣଃ ଶ୍ରୀନିକେତନଃ।
ବ୍ରହ୍ମବନ୍ଧୁରିତି ସ୍ମାହଂ ବାହୁଭ୍ୟାଂ ପରିରମ୍ଭିତଃ । ୪ ।

ବହୁ ସ୍ତୁତି କରି କହେ—ଶୁନ ଦୟାମୟ ! ।
ଜୀବେ ଏଇ ଗୁଣ ନାଇ, ତୋମାତେଇ ହୟ ॥
ମୋରେ ଦେଖି ମୋର ଗନ୍ଧେ ପଳାୟ ପାମର ।
ହେନ ମୋରେ ସ୍ପର୍ଶ' ତୁମି ସ୍ୱତନ୍ତ୍ର ଈଶ୍ୱର ।୧୪୧।
କିନ୍ତୁ ଆଛିଲାଙ୍ ଭାଲ ଅଧମ ହଇୟା ।
ଏବେ ଅହଙ୍କାର ମୋର ଜନ୍ମିବେ ଆସିୟା ।୧୪୨।
ପ୍ରଭୁ କହେ—କଭୁ ତୋମାର ନା ହବେ ଅଭିମାନ
ନିରନ୍ତର କହ ତୁମି କୃଷ୍ଣକୃଷ୍ଣ ନାମ । ୧୪୩ ।
କୃଷ୍ଣ ଉପଦେଶି କର ଜୀବେର ନିସ୍ତାର ।
ଅଚିରାତେ କୃଷ୍ଣ ତୋମା କରିବେନ ଅଙ୍ଗୀକାର ॥
ଏତେକ କହିୟା ପ୍ରଭୁ କୈଲ ଅନ୍ତର୍ଦ୍ଧାନେ ।
ଦୁଇ ବିପ୍ର ଗଲାଗଲି କାନ୍ଦେ ପ୍ରଭୁର ଗୁଣେ । ୧୪୪ ।
ବାସୁଦେବ-ଉଦ୍ଧାର ଏଇ କହିଲ ଆଖ୍ୟାନ ।
'ବାସୁଦେବାମୃତପ୍ରଦ' ହୈଲ ପ୍ରଭୁର ନାମ ।୧୪୫।
ଏଇ ତ କହିଲ ପ୍ରଭୁର ପ୍ରଥମ ଗମନ ।
କୂର୍ମ୍ମ ଦରଶନ ବାସୁଦେବ-ବିମୋଚନ ।୧୪୬।
ଶ୍ରଦ୍ଧା କରି କରେ ଯେଇ ଏ ଲୀଲା ଶ୍ରବଣ ।
ଅଚିରାତେ ମିଲେ ତାରେ ଚୈତନ୍ୟଚରଣ ।୧୪୭।
ଚୈତନ୍ୟଲୀଲାର ଆଦି ଅନ୍ତ ନାହି ଜାନି ।
ସେଇ ଲିଖି— ଯେଇ ମହାନ୍ତେର ମୁଖେ ଶୁନି ।
ଇଥେ ଅପରାଧ ମୋର ନା ଲଇହ ଭକ୍ତଗଣ ! ।
ତୋମାସଭାର ଚରଣ ମୋର ଏକାନ୍ତ ଶରଣ ॥
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୧୫୧ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ଦକ୍ଷିଣଗମନେ ବାସୁଦେବୋଦ୍ଧାର
ନାମ ସପ୍ତମପରିଚ୍ଛେଦଃ ।

---

ଶ୍ରୀକୃଷ୍ଣଙ୍କର ଆଲିଙ୍ଗନ ଲାଭ କଲା ପରେ ସୁଦାମବିପ୍ର ମନେ ମନେ କହୁଅଛନ୍ତି ।—ମୋ ପରି ହତଭାଗ୍ୟ ଦରିଦ୍ର ବା କେଉଁଠାରେ ! ପୁଣି ଲକ୍ଷ୍ମୀର ବାସସ୍ଥାନ ଭଗବାନ୍ ଶ୍ରୀକୃଷ୍ଣ କେଉଁଠାରେ ! ଅର୍ଥାତ୍ ଆମ୍ଭ ଦୁହିଙ୍କର ଏପରି ପାର୍ଥକ୍ୟ ଥିବା ସ୍ଥଳେ ମିଳନର କିଞ୍ଚିନ୍ମାତ୍ର ସମ୍ଭାବନା ନ ଥିଲେ ସୁଦ୍ଧା ମୋତେ ବିପ୍ରକୁଳଜାତ ବୋଲି ଶ୍ରୀକୃଷ୍ଣ ଦୁଇ ଭୁଜଦ୍ୱାରା ଆଲିଙ୍ଗନ କଲେ । ୪ର୍ଥଶ୍ଳୋକାର୍ଥ।

ଏଇଗୁଣ—ସର୍ବାଙ୍ଗେ କୀଟମୟ ଗଳିତ କୁଷ୍ଠରୋଗିକୁ ନିର୍ଘୃଣ ଭାବରେ ଆଲିଙ୍ଗନ କରିବା । ୧୪୦ ।

ଅଧମହଇୟା— କୀଟମୟ କୁଷ୍ଠରୋଗଗ୍ରସ୍ତ ହୋଇ ।

ଏବେ ଅହଙ୍କାର— ରୋଗଶୂନ୍ୟ ନୂତନ ସୁନ୍ଦରଶରୀର ପ୍ରାପ୍ତି ହେତୁ । ୧୪୨ ।

ଗଲାଗଲି —ଗଳା ଧରାଧରି ହୋଇ । ୧୪୩ ।

ମଧ୍ୟଲୀଳା ସପ୍ତମ ପରିଚ୍ଛେଦ ସମାପ୍ତ ।



# ଅଷ୍ଟମ ପରିଚ୍ଛେଦ ।



ସଞ୍ଚାର୍ଯ୍ୟ ରାମାଭିଧ-ଭକ୍ତମେଘେ,
ସ୍ୱଭକ୍ତିସିଦ୍ଧାନ୍ତଚୟାମୃତାନି ।
ଗୌରାବ୍ଧିରେତୈରମୁନା ବିତୀର୍ଣ୍ଣୈ-
ସ୍ତଜ୍ଜ୍ଞତ୍ୱରତ୍ନାଳୟତାଂ ପ୍ରୟାତି । ୧ ।

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ପୂର୍ବ ମତେ ପ୍ରଭୁ ଆଗେ କରିଲ ଗମନେ ।
ଜିୟଡ଼-ନୃସିଂହକ୍ଷେତ୍ରେ ଗେଲା କତୋଦିନେ । ।

## ଅଷ୍ଟମ ପରିଚ୍ଛେଦ ।



ଗୌରପ୍ରେମସମୁଦ୍ର, ରାମାଭିଧଭକ୍ତମେଘେ ରାମାନନ୍ଦଃ ଅଭିଧା ନାମ ଯସ୍ୟ ସଃ ଏବ ଭକ୍ତୋ ମେଘଃ ତସ୍ମିନ୍ ସ୍ୱଭକ୍ତିସିଦ୍ଧାନ୍ତଚୟାମୃତାନି—ସ୍ୱକୀୟଭକ୍ତିସିଦ୍ଧାନ୍ତାନାଂ—ଦାସ୍ୟ ସଖ୍ୟ-ବାତ୍ସଲ୍ୟମଧୁର ରସସିଦ୍ଧାନ୍ତାନାଂ ଚୟାଃ ସମୂହା ସ୍ତ ଏବାମୃତାନି ତାହତୁଲ୍ୟାନି ସଞ୍ଚାର୍ଯ୍ୟ—ସଞ୍ଚାରଣଂ କୃତ୍ୱା ଅମୁନା—ରାମାନନ୍ଦମେଘେନ ବିତୀର୍ଣ୍ଣୈଃ—କୃତୈଃ ଏତୈ ଭକ୍ତିସିଦ୍ଧାନ୍ତମୟ-ଜଳୈଃ ତଜ୍ଜ୍ଞତ୍ୱରତ୍ନାଳୟତାଂ—ତେଷାଂସିଦ୍ଧାନ୍ତାନାଂ ଜ୍ଞତ୍ୱଂ— ବୋଧଃ ସ ଏବରତ୍ନଂ ତସ୍ୟ-ଆଳୟତାଂ ପ୍ରୟାତି—ପ୍ରାପ୍ନୋତୀତ୍ୟର୍ଥଃ । ଯଥା ସମୁଦ୍ରଜଳ ପ୍ରଦାନେନ ମେଘାଃ ତସ୍ମିନ୍ବର୍ଷନ୍ତି, ଶଙ୍ଖମୁକ୍ତାଦୟସ୍ତୁ ରତ୍ନାଦି ସମ୍ଭବନ୍ତି, ଅତଏବ ସମୁଦ୍ରୋ ରତ୍ନାଳୟତାଂ ପ୍ରାପ୍ନୋତି ତଦ୍ୱତ୍ । ୧ମ ଶ୍ଳୋକ ।

ଗୌରରୂପୀ ସମୁଦ୍ର ରାମାନନ୍ଦରୂପୀ ମେଘରେ ନିଜର ଭକ୍ତିସିଦ୍ଧାନ୍ତସମୂହରୂପ ଜଳ ସଞ୍ଚାର କରି ସେହି ରାମାନନ୍ଦ ମେଘପ୍ରଦ ଓ ଭକ୍ତିସିଦ୍ଧାନ୍ତ ଜଳଦ୍ୱାରା ସିଦ୍ଧାନ୍ତ ରତ୍ନ ଲାଭ କରି ରତ୍ନାଳୟ ହେଲେ । ତାତ୍ପର୍ଯ୍ୟ ସମୁଦ୍ରର ଜଳଦ୍ୱାରା ମେଘ ପୁଷ୍ଟ ହୋଇ ଯେପରି ସମୁଦ୍ରରେ ବୃଷ୍ଟି କରେ ଏବଂ ସେହି ବୃଷ୍ଟିଜଳଦ୍ୱାରା ସମୁଦ୍ରରେ ମୁକ୍ତାଦି ରତ୍ନମାନେ ଜନ୍ମ ହୁଅନ୍ତି ଏହା ସେହିପରି । ୧ମ ଶ୍ଳୋକାର୍ଥ ।

ପୂର୍ବମତେ—ପୂର୍ବବର୍ଣ୍ଣିତ ପ୍ରକାରରେ ନାମପ୍ରେମ ବିତରଣ କରି କରି ।

ଜିୟଡ଼ ନୃସିଂହକ୍ଷେତ୍ର—ଭିଜିଗାପଟ୍ଟାମ ବା ବିଶାଖାପତ୍ତନର ଅବ୍ୟବହିତ ୫ ମାଇଲ ମଧ୍ୟରେ ସିଂହାଚଳନାମକ ସ୍ଥାନ, ସିଂହାଚଳ ନାମରେ ରେଲଷ୍ଟେସନ ଅଛି । ଶ୍ରୀମନ୍ଦିର ପର୍ବତର ଉଚ୍ଚପ୍ରଦେଶରେ ଅବସ୍ଥିତ, ସେଠାରେ ଶ୍ରୀନୃସିଂହଙ୍କ ସେବକବୃନ୍ଦ ଓ ଅଧିବାସୀଗଣ ବାସ କରନ୍ତି । ବର୍ତ୍ତମାନ ପର୍ବତୋପରି ଶ୍ରୀମନ୍ଦିରର ସଂଲଗ୍ନରେ ଅନେକ ଯାତ୍ରୀ ରହିବାର ସ୍ଥାନ ଓ ଅନେକ ଗୃହ ନିର୍ମିତ ହୋଇଅଛି । ବିଜୟ ମୂର୍ତ୍ତି ଆଲୋକରେ ଏବଂ ମୂଳ ନୃସିଂହମୂର୍ତ୍ତି ଅଭ୍ୟନ୍ତରରେ ବିରାଜମାନ । କତିପୟ ରାମାନୁଜୀୟ ଶ୍ରୀବୈଷ୍ଣବଗଣ ବିଜୟନଗର ରାଜାଙ୍କର ଅଧୀନରେ ଶ୍ରୀମୂର୍ତ୍ତିର ସେବା କରନ୍ତି । ୨ ।

ନୃସିଂହ ଦେଖିଯା କୈଲ ଦଣ୍ଡବତ୍ ନତି ।
ପ୍ରେମାବେଶେ କୈଲ ବହୁ ନୃତ୍ୟଗୀତ ସ୍ତୁତି ।୩।
ଶ୍ରୀନୃସିଂହ ଜୟ ନୃସିଂହ ଜୟ ଜୟ ନୃସିଂହ ! ।
ପ୍ରହ୍ଲାଦେଶ ଜୟ ପଦ୍ମା-ମୁଖପଦ୍ମଭୃଙ୍ଗ ! ।୪।

ତଥାହି ଶ୍ରୀମଦ୍‌ଭାଗବତେ (୭।୯।୧ ଶ୍ଳୋକସ୍ୟ ସ୍ୱାମିଟୀକାୟାମ୍)—

ଉଗ୍ରୋଽପ୍ୟନୁଗ୍ର ଏବାୟଂ ସ୍ୱଭକ୍ତାନାଂ ନୃକେଶରୀ
କେଶରୀବ ସ୍ୱପୋତାନାମନ୍ୟେଷାମୁଗ୍ରବିକ୍ରମଃ ।୨।

ଏଇମତ ନାନାଶ୍ଳୋକ ପଢ଼ି ସ୍ତୁତି କୈଲ ।
ନୃସିଂହସେବକମାଲ୍ୟ-ପ୍ରସାଦ ଆନି ଦିଲ ।୫।
ପୂର୍ବବତ୍ କୋନ ବିପ୍ର କୈଲ ନିମନ୍ତ୍ରଣ ।
ସେଇରାତ୍ରି ତାହାଁ ରହି କରିଲା ଗମନ ।୬।
ପ୍ରଭାତେ ଉଠିଞା ପ୍ରଭୁ ଚଲିଲା ପ୍ରେମାବେଶେ ।
ଦିଗ୍‌ବିଦିଗ ଜ୍ଞାନ ନାହି ରାତ୍ରି-ଦିବସେ ।୭।
ପୂର୍ବବତ୍ ବୈଷ୍ଣବ କରି ସର୍ବଲୋକଗଣେ ।
ଗୋଦାବରୀତୀରେ ଚଲି ଆଇଲ କଥୋଦିନେ ।
ଗୋଦାବରୀ ଦେଖି ହୈଲ ଯମୁନା-ସ୍ମରଣ ।
ତୀରେ ବନ ଦେଖି ସ୍ମୃତି ହୈଲ ବୃନ୍ଦାବନ ।୯।
ସେଇବନେ କଥୋକ୍ଷଣ କରି ନୃତ୍ୟ-ଗାନ ।
ଗୋଦାବରୀ ପାର ହୈଞା କୈଲ ତାହାଁ ସ୍ନାନ ।
ଘାଟ ଛାଡ଼ି କଥୋଦୂରେ ଜଲ-ସନ୍ନିଧାନେ ।
ବସି ପ୍ରଭୁ କରେ କୃଷ୍ଣନାମ-ସଂକୀର୍ତ୍ତନେ ।୧୧।

ହେନ କାଲେ ଦୋଲାୟ ଚଢ଼ି ରାମାନନ୍ଦରାୟ ।
ସ୍ନାନ କରିବାରେ ଆଇଲା—ବାଜନା ବାଜାୟ ।
ତାଁର ସଙ୍ଗେ ଆଇଲା ବହୁ ବୈଦିକ ବ୍ରାହ୍ମଣ ।
ବିଧିମତ କୈଲ ତେଁହୋ ସ୍ନାନ ତର୍ପଣ ।୧୩।
ପ୍ରଭୁ ତାଁରେ ଦେଖି ଜାନିଲ—ଏଇ ରାମରାୟ ।
ତାଁହାରେ ମିଲିତେ ପ୍ରଭୁର ମନ ଉଠି ଧାୟ ।୧୪।
ତଥାପି ଧୈର୍ଯ୍ୟ କରି ପ୍ରଭୁ ରହିଲା ବସିଞା ।
ରାମାନନ୍ଦ ଆଇଲା ଅପୂର୍ବ ସନ୍ନ୍ୟାସୀ ଦେଖିଯା ।
ସୂର୍ଯ୍ୟଶତସମ କାନ୍ତି—ଅରୁଣ ବସନ ।
ସୁବଲିତ ପ୍ରକାଣ୍ଡ ଦେହ—କମଲଲୋଚନ ।୧୬।
ଦେଖିଞା ତାଁହାର ମନେ ହୈଲ ଚମତ୍କାର ।
ଆସିଯା କରିଲ ଦଣ୍ଡବତ୍ ନମସ୍କାର ।୧୭।
ଉଠି ପ୍ରଭୁ କହେ—ଉଠ, କହ 'କୃଷ୍ଣକୃଷ୍ଣ' ।
ତାଁରେ ଆଲିଙ୍ଗିତେ ପ୍ରଭୁର ହୃଦୟ ସତୃଷ୍ଣ ।୧୮।
ତଥାପି ପୁଛିଲ—ତୁମି ରାୟ ରାମାନନ୍ଦ ? ।
ତେଁହୋ କହେ—ସେଇ ହଙ୍ ଦାସ ଶୂଦ୍ର ମନ୍ଦ ।
ତବେ ପ୍ରଭୁ କୈଲ ତାଁରେ ଦୃଢ଼ ଆଲିଙ୍ଗନ ।
ପ୍ରେମାବେଶେ ପ୍ରଭୁ-ଭୃତ୍ୟ ଦୋଁହେ ଅଚେତନ ।
ସ୍ୱାଭାବିକ ପ୍ରେମ ଦୋଁହାର ଉଦୟ କରିଲା ।
ଦୋଁହା ଆଲିଙ୍ଗିଯା ଦୋଁହେ ଭୂମିତେ ପଡ଼ିଲା ।
ସ୍ତମ୍ଭ ସ୍ୱେଦ ଅଶ୍ରୁ କମ୍ପ ପୁଲକ ବୈବର୍ଣ୍ୟ ।
ଦୋଁହାର ମୁଖେତେ—ଶୁନି ଗଦ୍‌ଗଦ କୃଷ୍ଣବର୍ଣ

ଅୟଂ ଦୃଶ୍ୟମାନଃ ନୃକେଶରୀ – ନୃସିଂହଦେବଃ ଭକ୍ତବିଦ୍ୱେଷିନାଂ ଉଗ୍ରୋଽପି ସ୍ୱଭକ୍ତାନା-ମନୁଗ୍ରଃ ଶାନ୍ତରୂପଃ ଯଥା କେଶରୀ-ସିଂହଃ ସ୍ୱପୋତାନାଂ ନିଜପୁତ୍ରାଣାଂ ସମ୍ବନ୍ଧେ ଅନୁଗ୍ରୋଽପି ଅନ୍ୟେଷାଂ ସ୍ୱପୋତବିରୋଧିନାଂ ସମ୍ବନ୍ଧେ ଉଗ୍ରବିକ୍ରମ-ମହାକ୍ରୂରଃ ଇତ୍ୟର୍ଥଃ । ୨ୟ ଶ୍ଳୋକ ।

ଦଣ୍ଡବତ ନତି—ଅଷ୍ଟାଙ୍ଗ ପ୍ରଣାମ । ୩ ।

ସିଂହ ଯେପରି ଅପରର ନିକଟ ଉଗ୍ରବିକ୍ରମ ହୋଇ ସୁଦ୍ଧା ନିଜ ସନ୍ତାନମାନଙ୍କ ନିକଟ ସଦା ଶାନ୍ତମୂର୍ତ୍ତି, ତଦ୍ରୂପ ଏହି ଶ୍ରୀ ନୃସିଂହଦେବ ଅଭକ୍ତମାନଙ୍କ ନିକଟରେ ଉଗ୍ରବିକ୍ରମ ହୋଇ ନିଜ ଭକ୍ତମାନଙ୍କ ନିକଟରେ ଅନୁଗ୍ରହକର୍ତ୍ତା । ୨ୟ ଶ୍ଳୋକାର୍ଥ ।

ଦୋଲାୟ—ପାଲକୀ । ୧୨ । ସୂର୍ଯ୍ୟଶତସମକାନ୍ତି ଇତ୍ୟାଦି — ଏହାହିଁ ଅପୂର୍ବତ୍ୱ ।୧୬। ଦାସଦ୍ୱାରା ଭକ୍ତର ପରିଚୟ ଦେଲେ ଏହି ... ମନ୍ଦ, ଏହି ଦୈନ୍ୟୋକ୍ତିଦ୍ୱାରା ନିରଭିମାନତାର ପରିଚୟ ଦେଲେ । ୧୯ । ସ୍ୱାଭାବିକ ପ୍ରେମ ... ନିତ୍ୟସିଦ୍ଧ ଓ ଜୀବସ୍ୱରୂପତଃ ନିତ୍ୟଦାସ । ଏହି ନିତ୍ୟ ସମ୍ବନ୍ଧହିଁ ଭଗବାନ୍ ଓ ଜୀବଙ୍କ ମଧ୍ୟରେ ସ୍ୱାଭାବିକ ପ୍ରେମ । କିନ୍ତୁ ସ୍ୱୟଂ ଭଗବାନ

ଦେଖିଯ୍ବା ବ୍ରାହ୍ମଣଗଣେର ହଇଲ ଚମତ୍କାର ।
ବୈଦିକ ବ୍ରାହ୍ମଣ ସବ କରେନ ବିଚାର— ।୨୩।
ଏଇ ତ ସନ୍ନ୍ୟାସୀର ତେଜ ଦେଖି ବ୍ରହ୍ମସମ ।
ଶୂଦ୍ର ଆଲିଙ୍ଗିଯ୍ବା କେନେ କରେନ କ୍ରନ୍ଦନ ? ।
ଏଇ ମହାରାଜ ମହାପଣ୍ଡିତ ଗମ୍ଭୀର ।
ସନ୍ନ୍ୟାସୀର ସ୍ପର୍ଶେ ମତ୍ତ ହଇଲ ଅସ୍ଥିର ।୨୪।
ଏଇମତ ବିପ୍ରଗଣ ଭାବେ ମନେମନ ।
ବିଜାତୀଯ୍ବ ଲୋକ ଦେଖି ପ୍ରଭୁ କୈଲ ସଂବରଣ ।
ସୁସ୍ଥ ହୈଯ୍ବା ଦୋହେ ସେଇ ସ୍ଥାନେତେ ବସିଲା
ତବେ ହାସି ମହାପ୍ରଭୁ କହିତେ ଲାଗିଲା— ।୨୬।
ସାର୍ବଭୌମ ଭଟ୍ଟାଚାର୍ଯ୍ୟ କହିଲ ତୋମାର ଗୁଣ ।
ତୋମାରେ ମିଲିତେ ମୋରେ କରିଲ ଯତନ ।
ତୋମା ମିଲିବାରେ ମୋର ଏଥା ଆଗମନ ।
ଭାଲ ହୈଲ, ଅନାଯ୍ବାସେ ପାଇଲ ଦରଶନ ।୨୯।
ରାଯ୍ବ କହେ—ସାର୍ବଭୌମ କରେ ଭୃତ୍ୟଜ୍ଞାନ ।
ପରୋକ୍ଷେହ ମୋର ହିତେ ହଯ୍ବା ସାବଧାନ ।୩୦।
ତାଁର କୃପାଯ୍ବ ପାଇନୁ ତୋମାର ଚରଣଦର୍ଶନ ।
ଆଜ ସଫଲ ହୈଲ ମୋର ମନୁଷ୍ୟ-ଜନମ ।୩୧।
ସାର୍ବଭୌମେ ତୋମାର କୃପା-ତାର ଏଇ ଚିହ୍ନ ।
ଅସ୍ପୃଶ୍ୟ ସ୍ପର୍ଶିଲେ ହଯ୍ବାଁ ତାଁର ପ୍ରେମାଧୀନ ।୩୨।
କାହାଁ ତୁମି ସାକ୍ଷାତ୍ ଈଶ୍ୱର ନାରାଯ୍ବଣ ।
କାହାଁ ମୁଞି ରାଜସେବୀ ,ବିଷଯ୍ବୀ ଶୂଦ୍ରାଧମ ।୩୩।
ମୋର ସ୍ପର୍ଶେ ନା କରିଲେ ଘୃଣା ବେଦଭଯ୍ବ ।
ମୋର ଦରଶନ ତୋମା— ବେଦେ ନିଷେଧଯ୍ବ ।
ତୋମାର କୃପାଯ୍ବ ତୋମାଯ୍ବ କରାଯ୍ବ ନିନ୍ଦ୍ୟକର୍ମ ।
ସାକ୍ଷାତ୍ ଈଶ୍ୱର ତୁମି-କେ ଜାନେ ତୋମାର ମର୍ମ ।

ଶ୍ରୀକୃଷ୍ଣଙ୍କର ରାଯ୍ବରାମାନନ୍ଦ ନିତ୍ୟଲୀଳାପରିକର ନର୍ମସଖୀତତ୍ତ୍ୱ (ଅର୍ଜୁନ) ଏବଂ ଶ୍ରୀରାଧାଙ୍କର ପ୍ରଧାନ ସଖୀ ବିଶାଖା ହେତୁ ରାଧାକୃଷ୍ଣମିଳିତ ତନୁ ଶ୍ରୀକୃଷ୍ଣଚୈତନ୍ୟଙ୍କ ସହିତ ମିଳନ ମାତ୍ର ଦୁହିଙ୍କର ସ୍ୱାଭାବିକ ପ୍ରେମ ଅର୍ଥାତ୍ ନିତ୍ୟଲୀଳାଗତ ପ୍ରେମ ଜାତ ହେଲା । ୨୧ ।

ସାଧକ ସନ୍ନ୍ୟାସୀ ପକ୍ଷରେ ସ୍ତ୍ରୀ ବା ଶୂଦ୍ର ସ୍ପର୍ଶ କରିବା ନିଷିଦ୍ଧ ଏବଂ ରୋଦନରୂପ ଚିତ୍ତ-ବିକୃତି ପ୍ରକାଶ କରିବା ନିଷିଦ୍ଧ । ଏହା ଜାଣି ଏବଂ ଶ୍ରୀମନ୍ ମହାପ୍ରଭୁଙ୍କର ଶତସୂର୍ଯ୍ୟସମ ଅଙ୍ଗକାନ୍ତି ଦର୍ଶନ କରି ବୈଦିକବ୍ରାହ୍ମଣମାନେ ତାହାଙ୍କୁ ବ୍ରହ୍ମାନୁଭବୀ ସିଦ୍ଧ-ସନ୍ନ୍ୟାସୀ ବୋଲି ମନେ କଲେ । କିନ୍ତୁ ସେ ଶୂଦ୍ର ରାଯ୍ବରାମାନନ୍ଦଙ୍କୁ ଆଲିଙ୍ଗନ କରି ସାତ୍ତ୍ୱିକ ବିକାରଗ୍ରସ୍ତ ହେବାରୁ ତାଙ୍କର ଗଦ୍ଗଦ ବଚନ ଏବଂ ଲୋତକ ଦେଖି ତାହା ରୋଦନ ବୋଲି ବ୍ରାହ୍ମଣମାନେ ମନେ କରି ଆପଣା ଆପଣା ଭିତରେ କଳ୍ପନା କରୁଅଛନ୍ତି ଯେ, ଏ ବ୍ରହ୍ମସମ ତେଜୋଧର୍ମିଯ୍ବ ସନ୍ନ୍ୟାସୀ ଏପରି ନିଷିଦ୍ଧ କାର୍ଯ୍ୟ ଅର୍ଥାତ୍ ଶୂଦ୍ରକୁ ଆଲିଙ୍ଗନ ଓ ରୋଦନ କାହିଁକି କରୁଅଛନ୍ତି । ପୁଣି ସେମାନେ ସର୍ବଦା ରାଯ୍ବ-ରାମାନନ୍ଦଙ୍କୁ ମହାପଣ୍ଡିତ ଏବଂ ଗମ୍ଭୀରପ୍ରକୃତିର ମହାଶଯ୍ବ ବୋଲି ଦେଖି ଆସୁଅଛନ୍ତି । ଗମ୍ଭୀର ବ୍ୟକ୍ତି ରୋଦନର ବିଶେଷ କାରଣ ହେଲେ ସୁଦ୍ଧା ରୋଦନ କରନ୍ତି ନାହିଁ । ବର୍ତ୍ତମାନ ଶ୍ରୀମନ୍ମହାପ୍ରଭୁଙ୍କର ଆଲିଙ୍ଗନ ହେତୁ ରାଯ୍ବରାମାନନ୍ଦଙ୍କ ସାତ୍ତ୍ୱିକବିକାରଗତ ଗଦ୍‌ଗଦ ବଚନ ଓ ନଯ୍ବନାଶ୍ରୁ ଦେଖି ବ୍ରାହ୍ମଣମାନେ ତାହାଙ୍କୁ ରୋଦନ କରୁଥିବାର ମନେ କରି ସେମାନେ ବିତର୍କ କରି କହୁଅଛନ୍ତି । ଏପ୍ରକାର ମହାପଣ୍ଡିତ ଏବଂ ଗମ୍ଭୀରାଶଯ୍ବ ଯେ,ଆମ୍ଭମାନଙ୍କର ମହାରାଜ (ଶାସନକର୍ତ୍ତା ରାଯ୍ବରାମାନନ୍ଦ) ଏ ବା କାହିଁକି ଏପ୍ରକାର ଅସ୍ଥିର ହେଉଅଛନ୍ତି । ୨୪ ।

ବିଜାତୀଯ୍ବ— ଅନ୍ୟ ମତାବଲମ୍ବୀ, ବହିରଙ୍ଗ । ୨୬ । ପରୋକ୍ଷେହ—ଅସାକ୍ଷାତ୍‌ରେ ।୩୦।
ଅସ୍ପୃଶ୍ୟ— ଅର୍ଥାତ୍ ବିଷଯ୍ବୀ ଓ ଶୂଦ୍ର ରାମାନନ୍ଦଙ୍କୁ ।୩୨। ତୋମା—ସନ୍ନ୍ୟାସୀଙ୍କର ।୩୪।
ନିନ୍ଦ୍ୟକର୍ମ—ଏଠାରେ ଶୂଦ୍ର ବିଷଯ୍ବୀଙ୍କୁ ସ୍ପର୍ଶ ।
ସାକ୍ଷାତ୍ ଈଶ୍ୱର—ଏହାହିଁ ଈଶ୍ୱରଙ୍କର ସ୍ୱାତନ୍ତ୍ର୍ୟ ଅର୍ଥାତ୍ ଘୃଣା ବା ବେଦ ଅନୁଶାସନର ଅଧୀନ ନୁହନ୍ତି । ୩୬ ।

ଆମା ନିସ୍ତାରିତେ ତୋମାର ଇହାଁ ଆଗମନ ।
ପରମ ଦୟାଳୁ ତୁମି ପତିତପାବନ ।
ମହାନ୍ତସ୍ୱଭାବ ଏଇ—ତାରିତେ ପାମର ।
ନିଜକାର୍ଯ୍ୟ ନାଇ—ତବୁ ଯାନ ତାର ଘର ।

ତଥାହି (ଭାଃ—୧୦।୮।୪) –

ମହଦ୍ବିଚଲନଂ ନୃଣାଂ ଗୃହିଣାଂ ଦୀନଚେତସାମ୍ ।
ନିଃଶ୍ରେୟସାୟ ଭଗବନ୍ କଳ୍ପତେ ନାନ୍ୟଥା କ୍ୱଚିତ୍ ।୩।

ଆମାର ସଙ୍ଗେ ବ୍ରାହ୍ମଣାଦି ସହସ୍ରେକ ଜନ ।
ତୋମାର ଦର୍ଶନେ ସଭାର ଦ୍ରବୀଭୂତ ମନ ।୩ ।
'କୃଷ୍ଣକୃଷ୍ଣ' ନାମ ଶୁନି ସଭାର ବଦନେ ।
ଭାର ଅଙ୍ଗ ପୁଲକିତ—ଅଶ୍ରୁ ନୟନେ ।୮ ୯।

ଆକୃତେ-ପ୍ରକୃତେ ତୋମାର ଈଶ୍ୱର-ଲକ୍ଷଣ ।
ଜୀବେ ନା ସମ୍ଭବେ ଏଇ ଅପ୍ରାକୃତ ଗୁଣ ।୪୦।
ପ୍ରଭୁ କହେ—ତୁମି ମହାଭାଗବତୋତ୍ତମ ।
ତୋମାର ଦର୍ଶନେ ସଭାର ଦ୍ରବ ହୈଲ ମନ ।୪୧।
ଅନେର କା କଥା—ଆମି ମାୟାବାଦୀ ସନ୍ନ୍ୟାସୀ
ଆମିହ ତୋମାର ସ୍ପର୍ଶେ କୃଷ୍ଣପ୍ରେମେ ଭାସି ।୦ ୨।
ଏଇ ଜାନି—କଠିନ ମୋର ହୃଦୟ ଶୋଧିତେ
ସାର୍ବଭୌମ କହିଲେନ ତୋମାରେ ମିଲିତେ ।
ଏଇମତ ଦୋହେ ସ୍ତୁତି କରେ ଦୋହାର ଗୁଣ ।
ଦୋହେ ଦୋହା-ଦରଶନେ ଆନନ୍ଦିତ-ମନ ।୪୪।
ହେନକାଲେ ବୈଦିକ ଏକ ବୈଷ୍ଣବବ୍ରାହ୍ମଣ ।
ଦଣ୍ଡବତ କରି କୈଲ ପ୍ରଭୁର ନିମନ୍ତ୍ରଣ ।୪୫।

ହେ ଭଗବନ୍ ! ମହଦ୍ବିଚଲନଂ - ମହତାଂ ବିଚଲନଂ ସ୍ୱାଶ୍ରମାତ୍ ଅନ୍ୟତ୍ର ଗମନଂ ନସମ୍ଭବତି ନିଷ୍ପ୍ରୟୋଜନାଭାବାତ୍, ଯଦକ୍ୱଚିତ୍ ଗମନଂ ଭବତି ତଦା ଦୀନଚେତସାଂ—ବ୍ୟାକୁଳତୟା ବିବେକେ ଅସମର୍ଥଂ ଚେତଃ ଯେଷାଂ ତେଷାଂ ଗୃହିଣାଂ ନୃଣାଂ ନିଃଶ୍ରେୟସାୟ—ମଙ୍ଗଳାୟ କଳ୍ପତେ, ଅନ୍ୟଥା ସ୍ୱପ୍ରୟୋଜନାୟ ନ ଘଟତେ । ଇତ୍ୟ ଶ୍ଳୋକ ।

---

ମହାନ୍ତ—ମହତ୍ତ୍ୱବ୍ୟକ୍ତି ।୩୬।

ଶ୍ରୀନନ୍ଦମହାରାଜା ଶ୍ରୀଗର୍ଗାଚାର୍ଯ୍ୟଙ୍କୁ କହୁଅଛନ୍ତି, ହେ ଭଗବନ୍ । ମହତ୍ତ୍ୱବ୍ୟକ୍ତିମାନଙ୍କର ନିଜ ଆଶ୍ରମରୁ ଅନ୍ୟତ୍ର ଯିବାରେ କୌଣସି ସ୍ୱାର୍ଥ ନ ଥିଲେହେଁ ଗୃହୀମାନଙ୍କ ମଙ୍ଗଳସକାଶେ ସେମାନେ ଗୃହସ୍ଥମାନଙ୍କ ଗୃହକୁ ଯାଆନ୍ତି । ଏତଦ୍ଭିନ୍ନ ଅନ୍ୟ କୌଣସି ଉଦ୍ଦେଶ୍ୟରେ ନୁହେଁ । ଏଠାରେ ପ୍ରଶ୍ନ ହୋଇପାରେ ଯେ;—ଗୃହୀମାନେ ନିଜର ମଙ୍ଗଳ ସକାଶେ ମହତ୍ତ୍ୱବ୍ୟକ୍ତିମାନଙ୍କଠାକୁ ଆସିପାରନ୍ତି । ଏହିହେତୁ ( ଦୀନଚେତସାଂ ) ଶବ୍ଦଦ୍ୱାରା ପ୍ରକାଶ କରୁଅଛନ୍ତି ଗୃହସ୍ଥମାନେ ବଡ଼ କୃପଣ, ସାମାନ୍ୟ ସମୟସକାଶେ ବିଷୟ ଛାଡ଼ି ମହତ୍ଦର୍ଶନ ନିମିତ୍ତ ଯିବାକୁ ଅକ୍ଷମ, ଏଣୁ ଏପ୍ରକାର ମାୟାବିମୋହିତ ଜୀବମାନଙ୍କ ପ୍ରତି ଅପାର କୃପାବଶତଃ ମହତ୍ତ୍ୱବ୍ୟକ୍ତିମାନେ ସେମାନଙ୍କ ଗୃହକୁ ଆସି ସେମାନଙ୍କର ମଙ୍ଗଳବିଧାନ କରନ୍ତି । ଇତ୍ୟ ଶ୍ଳୋକାର୍ଥ ।

ଶ୍ରୀରାୟରାମାନନ୍ଦ ଉପରୋକ୍ତ ପୟାରରେ ଶ୍ରୀମନ୍ ମହାପ୍ରଭୁଙ୍କୁ ଯେ ଈଶ୍ୱର ବୋଲି କହୁଅଛନ୍ତି ତାହା ତାହାଙ୍କର ପ୍ରକୃତି ଓ ଆକୃତିଦ୍ୱାରା ନିରୂପଣ କରି କହୁଅଛନ୍ତି ବୋଲି ବ୍ୟକ୍ତ କରୁଅଛନ୍ତି । ପ୍ରକୃତିଗତ ସ୍ୱାତନ୍ତ୍ର୍ୟ ଏହି ଯେ—ଘୃଣ୍ୟବସ୍ତୁରେ ଘୃଣା ନ କରି ଏବଂ କୃପାବଶତଃ ବେଦର ଅନୁଶାସନ ଲଙ୍ଘନ କରି । ଆକୃତିଗତ ଲକ୍ଷଣ ଏହି ଯେ, ବୈଦିକବ୍ରାହ୍ମଣ ଓ ଅପରାପର ବର୍ଣ୍ଣାଶ୍ରମୀ ସହସ୍ର ସହସ୍ର ବ୍ୟକ୍ତି ଶ୍ରୀମନ୍ମହାପ୍ରଭୁଙ୍କ ଦର୍ଶନ ମାତ୍ର ଅନିଚ୍ଛାସତ୍ତ୍ୱେ କୃଷ୍ଣନାମ ଉଚ୍ଚାରଣ କରୁଅଛନ୍ତି ଓ ସେମାନଙ୍କର ପୁଲକାଶ୍ରୁରୂପ ସାତ୍ତ୍ୱିକ ବିକାର ଦେଖାଯାଉଛି । ଏହାହିଁ ଅପ୍ରାକୃତ-ଷଡ଼ୈଶ୍ୱର୍ଯ୍ୟ ଭଗବାନଙ୍କର ସ୍ୱାଭାବିକ ରୂପମାଧୁର୍ଯ୍ୟର ଗୁଣ ।୪୦ ।

ନିମନ୍ତ୍ରଣ ମାନିଲ ତାରେ 'ବୈଷ୍ଣବ' ଜାନିୟା ।
ରାମାନନ୍ଦେ କହେ ପ୍ରଭୁ ଈଷତ୍ ହାସିୟା ॥ ୪୭ ॥
ତୋମାର ମୁଖେ କୃଷ୍ଣକଥା ଶୁନିତେ ହୟ ମନ ।
ପୁନରପି ପାଇ ଯେନ ତୋମାର ଦର୍ଶନ ॥ ୪୮ ॥
ରାୟ କହେ—ଆଇଲା ଯଦି ପାମରେ ଶୋଧିତେ
ଦର୍ଶନମାତ୍ରେ ଶୁଦ୍ଧ ନହେ ମୋର ଦୁଷ୍ଟଚିତ୍ତେ ।
ଦିନ-ପାଁଚ-ସାତ ରହି କରହ ମାର୍ଜ୍ଜନ ।
ତବେ ଶୁଦ୍ଧ ହୟ ମୋର ଏଇ ଦୁଷ୍ଟମନ ॥ ୪୯ ॥
ଯଦ୍ୟପି ବିଚ୍ଛେଦ ଦୋଁହାର ସହନେ ନା ଯାୟ ।
ତବୁ ଦଣ୍ଡବତ କରି ଚଲିଲା ରାମରାୟ ॥ ୫୦ ॥
ପ୍ରଭୁ ଯାଇ ସେଇ ବିପ୍ରଘରେ ଭିକ୍ଷା କୈଲ ।
ଦୁଇଜନାର ଉତ୍କଣ୍ଠାୟ ଆସି ସନ୍ଧ୍ୟା ହୈଲ ।
ପ୍ରଭୁ ସ୍ନାନକୃତ୍ୟ କରି ଆଛେନ ବସିୟା ।
ଏକଭୃତ୍ୟସଙ୍ଗେ ରାୟ ମିଲିଲ ଆସିୟା ॥ ୫୨ ॥
ନମସ୍କାର କୈଲ ରାୟ, ପ୍ରଭୁ କୈଲ ଆଲିଙ୍ଗନେ
ଦୁଇଜନ କଥା କହେ ବସି ରହଃସ୍ଥାନେ ॥ ୫୩ ॥
ପ୍ରଭୁ କହେ—ପଢ଼ ଶ୍ଳୋକ ସାଧ୍ୟେର ନିର୍ଣ୍ଣୟ ।
ରାୟ କହେ—ସ୍ୱଧର୍ମାଚରଣେ ବିଷ୍ଣୁଭକ୍ତି ହୟ

ରହଃସ୍ଥାନେ—ନିର୍ଜ୍ଜନସ୍ଥାନରେ । ୫୩ ।

ଶ୍ରୀମନ ମହାପ୍ରଭୁ ଶ୍ରୀରାମାନନ୍ଦଙ୍କ ସହିତ ନିର୍ଜ୍ଜନସ୍ଥାନରେ ବସି ଶ୍ରୀକୃଷ୍ଣକଥା ଆଳାପ ଆରମ୍ଭ କଲେ ଏବଂ ରାୟ ରାମାନନ୍ଦଙ୍କୁ ସାଧ୍ୟତତ୍ତ୍ୱର ନିରୂପଣପୂର୍ବକ ଶ୍ଳୋକ ପାଠ କରିବାକୁ କହିଲେ । ଏଠାରେ ଦେଖାଯାଏ ଯେ, ଶ୍ରୀରାୟ ରାମାନନ୍ଦ ଶ୍ରୀମନ୍ ମହାପ୍ରଭୁଙ୍କୁ ସାକ୍ଷାତ୍ ଈଶ୍ୱର ବୋଲି ଅର୍ଥାତ୍ ନିଜର ସେବ୍ୟ ବୋଲି ଏବଂ ଆପଣାକୁ ସେବକ ଭୃତ୍ୟ ବୋଲି ଜାଣିଅଛନ୍ତି । ଏବଂ ଶ୍ରୀମନ୍ ମହାପ୍ରଭୁ ସ୍ୱୟଂ ଭଗବାନ୍ ହେତୁ ରାୟ ରାମାନନ୍ଦ ଯେ ପରମଭାଗବତ ଓ ତାହାଙ୍କର ନିତ୍ୟପ୍ରିୟ ସେବକ ତାହା ମଧ୍ୟ ସେ ଜାଣିଅଛନ୍ତି । ଏ ବିଷୟ ଏହି ପରିଚ୍ଛେଦୋକ୍ତ ପୂର୍ବ ପୂର୍ବ ପଦ୍ୟାରମାନଙ୍କଦ୍ୱାରା ବ୍ୟକ୍ତ ହୋଇଅଛି । ଏତତ୍‌ସ୍ଥଳେ ଶ୍ରୀମନ ମହାପ୍ରଭୁଙ୍କର ଶ୍ରୀରାୟ ରାମାନନ୍ଦଙ୍କଠାରୁ ସାଧ୍ୟବସ୍ତୁ (ଭକ୍ତି) ନିର୍ଣ୍ଣୟାତ୍ମକ ଶ୍ଳୋକ ଶୁଣିବାର ଅଭିଳାଷ ଯେ ପ୍ରକାଶେ ହେଲା, ଏହି ପ୍ରଶ୍ନର ମୀମାଂସା ଏହି ଯେ, ଶ୍ରୀମଦ୍‌ଭାଗବତାଦି ବୈଷ୍ଣବ ଗ୍ରନ୍ଥମାନଙ୍କରେ ସାଧ୍ୟବସ୍ତୁ ନିର୍ଣ୍ଣୟକାରୀ ନାନାବିଧ ଇତିହାସ ଓ ଶ୍ରୀଭଗବତଲୀଳା ବର୍ଣ୍ଣିତ ହୋଇଅଛି । କିନ୍ତୁ ସେଥିରେ ଏହିଟି ଏହିଜାତୀୟ ଗୁଣ କର୍ମାଶ୍ରିତ ବା ବର୍ଣ୍ଣାଶ୍ରମାଶ୍ରିତ ବ୍ୟକ୍ତିର ସାଧ୍ୟ କିମ୍ବା ଏହିବିଷୟ ସିଦ୍ଧାନ୍ତସାଧ୍ୟ ଏପରି ସ୍ପଷ୍ଟଭାଷାରେ ନିର୍ଯ୍ୟାସରୂପରେ କଥିତ ହୋଇ ନ ଥିବାରୁ ସେହିସମସ୍ତ ଶାସ୍ତ୍ରଆଦି ଆଲୋଚନା କରି ଲୋକେ ସାଧାରଣତଃ ସାଧ୍ୟସାଧକତତ୍ତ୍ୱ ନିର୍ଣ୍ଣୟ କରିବାକୁ ଅକ୍ଷମ, ଏହିହେତୁ ଶ୍ରୀମାନ୍‌ମହାପ୍ରଭୁ ପରମ-ଭାଗବତ ଭକ୍ତିସିଦ୍ଧାନ୍ତବେତ୍ତା ତ୍ରିଦ୍ରୁତମ ଶ୍ରୀରାୟ ରାମାନନ୍ଦଙ୍କଦ୍ୱାରା ଭକ୍ତିର କ୍ରମବିକାଶ ସିଦ୍ଧାନ୍ତମାନ ଜଗତ୍‌ଶିକ୍ଷା ସକାଶେ ପ୍ରଥମରୁ ଶେଷପର୍ଯ୍ୟନ୍ତ ନିର୍ଯ୍ୟାସରୂପରେ ଶାସ୍ତ୍ରୋକ୍ତ ଶ୍ଳୋକଦ୍ୱାରା ନିର୍ଣ୍ଣୟ କରାଉଅଛନ୍ତି । ଏହାହିଁ ପତିତଜୀବମାନଙ୍କ ପ୍ରତି ଅପାର କୃପାର ପରିଚାୟକ । କାରଣ ଏକ ଗଣ୍ଡୂଷରେ ସମୁଦ୍ରଶୋଷଣ ପରି ବା ସମୁଦ୍ର ମନ୍ଥନଦ୍ୱାରା ଅମୃତ ଆହରଣ କଲାପରି ଶ୍ରୀରାୟ ରାମାନନ୍ଦଙ୍କ ଏହି ପରିଚ୍ଛେଦୋକ୍ତ ବଚନଦ୍ୱାରା ସମଗ୍ର ଶାସ୍ତ୍ରସମୁଦ୍ରର ସାରୋଦ୍ଧାର ସିଦ୍ଧାନ୍ତ ରତ୍ନମାନ ଅଥବା ଶାସ୍ତ୍ରସମୁଦ୍ର ମନ୍ଥନପୂର୍ବକ ଅଦ୍ଭୁତ ସିଦ୍ଧାନ୍ତ ରତ୍ନମାନ କଳିହତ ଜୀବମାନଙ୍କୁ ଅଯାଚିତ ଭାବରେ ଦାନକରା ହୋଇଅଛି । ଏହାହିଁ ଦାତାଶିରୋମଣି ଶ୍ରୀମନ୍ ମହାପ୍ରଭୁଙ୍କର ଦାତୃତ୍ୱ ।

ମହାପ୍ରଭୁଙ୍କ ପ୍ରଶ୍ନଭଙ୍ଗୀରୁ ଶ୍ରୀ ରାୟ ରାମାନନ୍ଦ ବୁଝିପାରିଲେ ଯେ, ପ୍ରଭୁ ଜଗତ୍ ଶିକ୍ଷା ସକାଶେ ସାଧ୍ୟବସ୍ତୁର ନିର୍ଣ୍ଣୟାତ୍ମକ ନିର୍ଯ୍ୟାସରୂପୀ ଶ୍ଳୋକମାନ ସିଦ୍ଧାନ୍ତ ଗ୍ରନ୍ଥମାନଙ୍କରୁ ଉଦ୍ଧାର

ତଥାହି ବିଷ୍ଣୁପୁରାଣେ (୩।୮।୯)—
ବର୍ଣ୍ଣାଶ୍ରମାଚାରବତା ପୁରୁଷେଣ ପରଃ ପୁମାନ୍ ।
ବିଷ୍ଣୁରାରାଧ୍ୟତେ ପନ୍ଥା ନାନ୍ୟତ୍ତତ୍ତୋଷକାରଣମ୍ ।୪।

ପ୍ରଭୁ କହେ—ଏହୋ ବାହ୍ୟ, ଆଗେ କହ ଆର ।
ରାୟ କହେ—କୃଷ୍ଣେ କର୍ମାର୍ପଣ ସାଧ୍ୟସାର ।୫୫।

ବର୍ଣ୍ଣାଶ୍ରମାଚାରବତା ବ୍ରାହ୍ମଣ-କ୍ଷତ୍ରିୟ-ବୈଶ୍ୟ-ଶୂଦ୍ରଜାତୟଧର୍ମଯୁକ୍ତେନ ପୁରୁଷେଣ କର୍ତ୍ତୃଭୂତେନ ପରଃପୁମାନ୍ ପ୍ରଧାନପୁରୁଷଃ ଶ୍ରୀ ବିଷ୍ଣୁରାରାଧ୍ୟତେ, ତତ୍ତୋଷକାରଣଂ ବିଷ୍ଣୁସନ୍ତୋଷହେତୁରନ୍ୟଃ ପନ୍ଥା ନାସ୍ତୀତ୍ୟର୍ଥଃ । ୪ର୍ଥ ଶ୍ଳୋକ ।

ଏହୋ ବାହ୍ୟ ଇତି । ଅତ୍ର "ବର୍ଣ୍ଣାଶ୍ରମ" ଇତି ଶ୍ଳୋକେ ପୁରୁଷେଣ ବର୍ଣ୍ଣାଶ୍ରମାଚାରବତା ପତେତ୍ୟସ୍ୟ ବିଧେୟତ୍ୱଂ ବ୍ୟାଖ୍ୟାନଂ ବାହ୍ୟଂ ନତୁ ଅନ୍ତର୍ଧନସିଦ୍ଧାନ୍ତଂ ସିଦ୍ଧାନ୍ତେ ତସ୍ୟୈବ ପ୍ରତିପାଦ୍ୟତ୍ୱାତ୍ । ୫୫ । ଚ. ଚ.

କରିବା ସକାଶେ ଆଦେଶ କରୁଅଛନ୍ତି । ତେଣୁ ସେ ମନୁଷ୍ୟ ସମାଜର ସାଧାରଣ ଅବସ୍ଥାକୁ ଲକ୍ଷ୍ୟ କରି କହିଲେ ଯେ, ସ୍ୱଧର୍ମାଚରଣ ଦ୍ୱାରା ଅନନ୍ୟସିଦ୍ଧ ବିଷ୍ଣୁଭକ୍ତି ନିଜେ ଉଦୟ ହୁଅନ୍ତି ।

ତାତ୍ପର୍ଯ୍ୟ—ମନୁଷ୍ୟ ଜାତି ବର୍ଣ୍ଣାଶ୍ରମ ବ୍ୟତୀତ ରହିପାରନ୍ତି ନାହିଁ (ବର୍ଣ୍ଣ—ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, କମ୍ବା ଅନ୍ୟାନ୍ୟ ଧର୍ମାବଲମ୍ବିମାନଙ୍କ ମଧ୍ୟରେ ଉଚ୍ଚ ନୀଚ-ସାମାଜିକ ସୋପାନ, ଆଶ୍ରମ, ଯଥା—ଗୃହସ୍ଥ, ବାନପ୍ରସ୍ଥ, ବ୍ରହ୍ମଚର୍ଯ୍ୟ ଓ ସନ୍ନ୍ୟାସ ଓ ଅନ୍ୟାନ୍ୟ ଧର୍ମାବଲମ୍ବିମାନଙ୍କ ମଧ୍ୟରେ ଗୃହସ୍ଥ, ଧର୍ମଯାଜକ, ବିରକ୍ତ ଇତ୍ୟାଦି ) ଏହି ବର୍ଣ୍ଣାଶ୍ରମ ଅଧୀନରେ ଯେଉଁ ଅବଶ୍ୟ କର୍ତ୍ତବ୍ୟକର୍ମ କରନ୍ତି ତାହାହିଁ ସେମାନଙ୍କର ସ୍ୱଧର୍ମ ଏବଂ ତଦ୍‌ବିପରୀତାଚରଣ ଅଧର୍ମ ଏବଂ ନିଷିଦ୍ଧ କର୍ମାଚରଣ ପାପ । ଏହି ପ୍ରକାର କାର୍ଯ୍ୟ ଅର୍ଥାତ୍ ଶାସ୍ତ୍ରୋକ୍ତ ସତ୍କାର୍ଯ୍ୟ କଲେ ଚିତ୍ତ ଶୁଦ୍ଧି ହୁଏ ଓ କ୍ରମେ ସାତ୍ତ୍ୱିକ ଭାବ ପ୍ରବଳହେବାରୁ ଭଗବାନଙ୍କ ପ୍ରତି ଲକ୍ଷ୍ୟ ଓ ନିଷ୍ଠା ହୁଏ, ଏହିପ୍ରକାର ଭକ୍ତି ଲାଭ ହୁଏ, ଏହାହିଁ ତମୋମିଶ୍ର ରଜସିକ ପୁରୁଷକାର ଅଭିମାନୀ ସକାମ ବ୍ୟକ୍ତିମାନଙ୍କ ପ୍ରତି ( ପ୍ରାଥମିକ ) ଉପଦେଶ ।

ଅର୍ଥାତ୍ ସ୍ୱଧର୍ମ ଆଚରଣ ଦ୍ୱାରା ଏରୂପ କାର୍ଯ୍ୟହିଁ ସ୍ୱଧର୍ମ, ଏତଦ୍ୱାରା ଈଶ୍ୱରଙ୍କ କାର୍ଯ୍ୟ କରାହୁଏ । ଏହାହିଁ ବୈଧ ଭକ୍ତିର ପୂର୍ବାଙ୍ଗ ବା ଭକ୍ତିର ପ୍ରଥମ ବିକାଶ । ୫୪ ।

ପୁରୁଷ ବର୍ଣ୍ଣାଶ୍ରମାଚାରବାନ୍ ହୋଇ ପରମପୁରୁଷ ବିଷ୍ଣୁଙ୍କୁ ଆରାଧନା କରିବେ । ଏତଦ୍‌ଭିନ୍ନ ବିଷ୍ଣୁଙ୍କର ସନ୍ତୋଷ କରିବାର ଅନ୍ୟ ପଥ ନାହିଁ । ୪ର୍ଥ ଶ୍ଳୋକ ।

ମହାପ୍ରଭୁ କହିଲେ ଏହା ସାଧ୍ୟତତ୍ତ୍ୱର ( ଭକ୍ତିର ) ବହିରଙ୍ଗ ମାତ୍ର । ଅର୍ଥାତ୍ ଏହା ସକାମହେତୁ ଏଥିରେ ଭକ୍ତିର ଆଭାସ ମାତ୍ର ରହିଅଛି । ଏଠାରେ ପୁରୁଷର ବର୍ଣ୍ଣାଶ୍ରମାଚାରବାନତ୍ୱକୁ ବାହ୍ୟ ବୋଲି କହୁଅଛନ୍ତି । କିନ୍ତୁ ବିଷ୍ଣୁ ଆରାଧନାକୁ ବାହ୍ୟ କହୁ ନାହାନ୍ତି । ମହାପ୍ରଭୁଙ୍କର ଏହି କଥା ଶୁଣି ରାୟ ରାମାନନ୍ଦ କହିଲେ, ଅତଃପର ପୁରୁଷର ସର୍ବକର୍ମ ଶ୍ରୀକୃଷ୍ଣଙ୍କ ଠାରେ ଅର୍ପଣ କରାହିଁ ସାଧ୍ୟଶ୍ରେଷ୍ଠ ।

ଏହାର ତାତ୍ପର୍ଯ୍ୟ ଏହିଯେ, ଜୀବ ବାସନା ଅନୁରୂପ କର୍ମକରେ, କିନ୍ତୁ ତାହାର ନିଜର ପୁରୁଷକାରକୁ ଅବଲମ୍ବନ କରିବା ଦ୍ୱାରା ନିଜେ ସେଥିରେ ସୁଖଦୁଃଖାଦି ଦ୍ୱନ୍ଦ୍ୱଭାବ ପ୍ରାପ୍ତହୁଏ । ଏହା ବର୍ଣ୍ଣାଶ୍ରମବାନ୍ ପୁରୁଷମାନଙ୍କର ଭୋଗ୍ୟ । ଏଥିରେ ଯେଉଁମାନେ ଭୀତ ହୁଅନ୍ତି ଅଥଚ କାମନାନୁରୂପ ଫଳ ଭୋଗ କରିବାକୁ ଇଚ୍ଛା କରନ୍ତି ସେମାନଙ୍କ ପକ୍ଷରେ ସର୍ବକର୍ମଫଳ

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ (୯।୨୭) — ।
ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।୫।

ପ୍ରଭୁ କହେ—ଏହୋ ବାହ୍ୟ, ଆଗେ କହ ଆର ।
ରାୟ କହେ-ସ୍ୱଧର୍ମତ୍ୟାଗ ଏଇ ସାଧ୍ୟସାର ।୫୭।

ନତ ଫଳପୁଷ୍ପାଦିକମପି ଯଜ୍ଞାର୍ଥପଶୁସୋମାଦିଦ୍ରବ୍ୟବତ୍ତ ମଦର୍ଥମେବ ଉଦ୍ୟମୈରୁପାହ୍ୟ ସମର୍ପଣୀୟଂ କାନ୍ତର୍ଦ୍ଧ ଯତ୍ତୁ କରୋତୀଷି । ସ୍ୱଭାବତୋ ବା ଶାସ୍ତ୍ରତୋ ବା ଯତ୍ତୁ କିଞ୍ଚିତ୍ କର୍ମ୍ମ କରୋଷି ତଥାଯଦଶ୍ନାସି ଯଜ୍ଜୁହୋଷି ଯଦ୍‌ଦଦାସୀ, ଯଚ୍ଚ ତପସ୍ୟସି—ତପଃକରୋଷି, ତତ୍‌ସର୍ବଂ ମଯ୍ୟର୍ପିତଂ ଯଥାଭବତି ଏବଂ କୁରୁଷ୍ୱ । ୫ମ ଶ୍ଳୋକ ।

ଏତୋହବାହ୍ୟଇତି, ଅବ ଯତ୍ କରୋଷୀତ୍ୟାଦିକନ୍ତୁ ବହିରୁପାସନବତ୍ ଭଜନାନୁସନ୍ଧାନଂ ନତ୍ତେ ତୁମଶକ୍ତଂପ୍ରତି ଜ୍ଞାତବ୍ୟଂ ଯଥାର୍ଥ ନିର୍ଣ୍ଣୟେ ଏବ ବାହ୍ୟଂ । ୫୭ । ଚ. ଚ.

ଶ୍ରୀ ଭଗବାନଙ୍କ ଉପରେ ଅର୍ପଣ କରିବାହିଁ କର୍ତ୍ତବ୍ୟ । ଯେହେତୁ ତଦ୍ଦ୍ୱାରା ପୁରୁଷଙ୍କାର ଅଭିମାନ ଜନିତ ସୁଖଦୁଃଖାଦି ଦ୍ୱନ୍ଦ୍ୱଭାବରେ ବିକଳ ହେବାକୁ ହୁଏନା । ଏ ସ୍ଥଳରେ ଯାହା ବିଚାରାଏ ତାହା ଭଗବାନଙ୍କର ନିୟନ୍ତୃତ୍ୱ ଅଧୀନରେ ତାହାଙ୍କର କାର୍ଯ୍ୟ କରାହୁଏ । ସେଥିରେ ଫଳାଫଳ ଶ୍ରୀ ଭଗବାନଙ୍କର ବୋଲି ମନେ କରାହୁଏ । ଯେପରି କି, ଜଣେ ରାଜକର୍ମଚାରୀ ଆପଣାକୁ ରାଜକର୍ମଚାରୀ ବୋଲି ମନେକରି ରାଜନିୟମ ଅନୁସାରେ ଯେଉଁ କାର୍ଯ୍ୟ କରେ ସେ କାର୍ଯ୍ୟର ଭଲମନ୍ଦ ଆଦି ଦ୍ୱନ୍ଦ୍ୱଫଳ ସକାଶେ ସେ ଆପଣାକୁ ଦାୟୀ ମନେକରେନା । ଅର୍ଥାତ୍ ତତ୍କାର୍ଯ୍ୟ-କରଣରେ ଯଦି କିଛି ଲାଭ ହୁଏ, ତାହା ରାଜାଙ୍କର ଲାଭ ମନେକରି ଆପେ ଆତ୍ମପକ୍ଷରେ ସୁଖୀ ହୁଏ ନାହିଁ ଏବଂ ଯଦି କିଛି କ୍ଷତି ହୁଏ, ସେ କ୍ଷତି ରାଜାଙ୍କର ମନେ କରି ଆତ୍ମପକ୍ଷରେ ଦୁଃଖୀ ହୁଏ ନା (ଏହା ଭଗବାନଙ୍କଠାରେ କର୍ମାର୍ପଣ) ଜୀବପକ୍ଷରେ ସେହିପରି ଆଶ୍ରୟ ଗ୍ରହଣ କରି କର୍ତ୍ତବ୍ୟ । ଏହାହିଁ ସକାମ କର୍ମର ଉତ୍ତରାର୍ଦ୍ଧ ଏ ସ୍ଥଳେ ବିଧିଭକ୍ତି କିଞ୍ଚିତ୍ ପ୍ରକାଶ । ୫୫ ।

ଶ୍ରୀକୃଷ୍ଣ କହୁଅଛନ୍ତି, ହେ ଅର୍ଜ୍ଜୁନ ! ତୁମ୍ଭେ ଯେଉଁ ସମସ୍ତ କର୍ମ ସ୍ୱଭାବତଃ ବା ଶାସ୍ତ୍ର ଅନୁଗତରେ କର, ଯାହା ଭୋଜନକର, ଯାହା ହୋମକର, ଯାହା ଦାନକର, ଯାହା ତପସ୍ୟାକର (ଏକକଥାରେ ଯାହା କିଛି କର) ଏ ସମସ୍ତ କର୍ମଫଳ ମୋତେ ଅର୍ପଣ କର, ଅର୍ଥାତ୍ ମୋର ସନ୍ତୋଷ ନିମିତ୍ତ ଏ ସମସ୍ତ କର । ୫ମ ଶ୍ଳୋକାର୍ଥ ।

ମହାପ୍ରଭୁ କହିଲେ, ଏହା ମଧ୍ୟ ଭକ୍ତିର ବହିରଙ୍ଗ, ଅର୍ଥାତ୍ ପୁରୁଷ କର୍ମ୍ମଫଳ ଭୋଗର ଭୟରେ ଈଶ୍ୱରଙ୍କ ଆଶ୍ରୟ ଗ୍ରହଣ କରି କର୍ମଫଳ ତାଙ୍କୁ ଅର୍ପଣ କରନ୍ତି । ଏ ଭାବରେ ଆଶ୍ରୟ କରିବା ଦ୍ୱାରା ଈଶ୍ୱରତ୍ୱ ନିର୍ଣ୍ଣୟ ପୂର୍ବକ ଆଶ୍ରୟ କରା ହୁଏ ନା, ଏଣୁ ଏହା ଭକ୍ତିର ବହିରଙ୍ଗଭାବ, ଅର୍ଥାତ ଭକ୍ତିର ଆଭାସମାତ୍ର, ଏହା ଶୁଣି ଶ୍ରୀରାମାନନ୍ଦ କହିଲେ, ସ୍ୱଧର୍ମତ୍ୟାଗ ଦ୍ୱାରା ଈଶ୍ୱର ଆରାଧନାହିଁ ସାଧ୍ୟଶ୍ରେଷ୍ଠ, ଏହାହିଁ ନିଷ୍କାମଭକ୍ତି । ଅର୍ଥାତ୍ ପୁରୁଷ ବାସନାଯୁକ୍ତକର୍ମ ଦ୍ୱାରା ବା ତତ୍‌କର୍ମଫଳ ଅର୍ପଣଦ୍ୱାରା ଈଶ୍ୱର ଆରାଧନା ନ କରି କେବଳ ଈଶ୍ୱର ଆରାଧ୍ୟ ଏହି ଭାବରେ ଆରାଧନା କରିବାହିଁ ନିଷ୍କାମଭକ୍ତି ।

ଏହାର ତାତ୍ପର୍ଯ୍ୟ ଏହି ଯେ—ପ୍ରାରବ୍ଧ କର୍ମଫଳ ଭୋଗାୟତନ ଶରୀର ଅବଶ୍ୟ ଭୋଗ ହେବ । ସେଥିର ସହିତ ଈଶ୍ୱର ଆରାଧନାର କୌଣସି ସମ୍ବନ୍ଧ ନାହିଁ । ଏହି ପ୍ରକାର ଅବଧାରଣାର ସହିତ ଈଶ୍ୱର ଆରାଧନା ବା ଈଶ୍ୱର ଆରାଧନାରୁ କୌଣସି ପ୍ରକାର ଫଳ କାମନାରହିତ୍ୟହିଁ ନିଷ୍କାମ କର୍ମ । ୫୭ ।

ତଥାହି (ଭାଃ—୧୧।୧୧।୩୨)—

ଆଜ୍ଞାୟୈବଂ ଗୁଣାନ୍ ଦୋଷାନ୍ ମୟାଦିଷ୍ଟାନପି ସ୍ୱକାନ୍ ।
ଧର୍ମାନ୍ ସନ୍ତ୍ୟଜ୍ୟ ଯଃ ସର୍ବାନ୍ ମାଂ ଭଜେତ୍ ସ ତୁ ସତ୍ତମଃ । ୬ ।

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ (୧୮।୬୬)—
ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ । ୭ ।

ପ୍ରଭୁ କହେ—ଏହୋ ବାହ୍ୟ, ଆଗେ କହ ଆର ।
ରାୟ କହେ—ଜ୍ଞାନମିଶ୍ରଭକ୍ତି ସାଧ୍ୟସାର । ୫୭ ।

କିନ୍ତୁ ମୟା ବେଦ ରୂପେଣ ଆଦିଷ୍ଟାନପିସ୍ୱଧର୍ମାନ୍ ସନ୍ତ୍ୟଜ୍ୟ ଯୋମାଂ ଭଜେତ୍ ସୋଽପ୍ୟେବଂ ପୂର୍ବୋକ୍ତବତ୍ ସତ୍ତମଃ କିମଜ୍ଞାନାତ୍ ନାସ୍ତିକ୍ୟାଦ୍ୱା ନ ଧର୍ମାଚରଣେ ସତ୍ତ୍ୱଶୁଦ୍ଧ୍ୟାଦୀନ୍ ଗୁଣାନ୍ ବିପକ୍ଷେ ଦୋଷାଂଶ୍ଚ ଆଜ୍ଞାୟ—ଜ୍ଞାତ୍ୱାପି ମଦ୍ଧ୍ୟାନବିକ୍ଷେପକତୟା ମଦ୍‌ଭକ୍ତ୍ୟୈବ ସର୍ବଂ ଭବିଷ୍ୟତ ଇତି ଦୃଢ଼ନିଶ୍ଚୟେନୈବ - ଧର୍ମାନ୍ ସନ୍ତ୍ୟଜ୍ୟ ଯଦ୍ୱାଭକ୍ତେର୍ଦାର୍ଢ୍ୟେନ ନିବୃତ୍ତ୍ୟଧିକାରିତୟା ସନ୍ତ୍ୟଜ୍ୟ ଅଥବା ଏକୈକାଦଶୀ କୃଷ୍ଣୈକାଦଶ୍ୟନୁପବାସାଦ୍ୟନିବେଦ୍ୟ ଶ୍ରାଦ୍ଧାଦୟୋ ଯେ ଭକ୍ତିବିରୁଦ୍ଧାଃ ଧର୍ମାସ୍ତାନ୍ ସନ୍ତ୍ୟଜ୍ୟେତ୍ୟର୍ଥଃ । ୬ଷ୍ଠ ଶ୍ଳୋକ ।

ତତୋଽପି ଗୁହ୍ୟତମମାହ ସର୍ବେତି— ମଦ୍‌ଭକ୍ତ୍ୟୈବ ସର୍ବଂ ଭବିଷ୍ୟତୀତି ବିଧିକୈଙ୍କର୍ଯ୍ୟଂ ତ୍ୟକ୍ତ୍ୱା ମଦେକଶରଣୋ ଭବ ଏବଂ ବର୍ତ୍ତମାନଃ କର୍ମତ୍ୟାଗ ନିମିତ୍ତଂ ପାପଂ ଭବିଷ୍ୟତୀତି ମାଶୁଚଶୋକଂ ମା କାର୍ଷୀଃ । ଯତସ୍ତ୍ୱାଂ ମଦେକଶରଣଂ ସର୍ବ ପାପେଭ୍ୟୋଽହଂ ମୋକ୍ଷୟିଷ୍ୟାମି । ୭ମ ଶ୍ଳୋକ ।

ଏହୋ ବାହ୍ୟମିତି, ଅତ୍ର ସ୍ୱଧର୍ମତ୍ୟାଗବିଧୌନିର୍ବେଦବତ୍ କଥାଶ୍ରବଣାଦୌ ପ୍ରବୃତ୍ତ୍ୟ-ଭାବାତ୍ ଅନଧିକାରିଣଃ ସ୍ୱଧର୍ମତ୍ୟାଗେନ ନଶ୍ୟେୟୁରିତିବାହ୍ୟଂ । ୫୭ । ବି, ଚ,

ମୁଁ ବେଦରୂପରେ ଯାହା ଆଦେଶ କରିଅଛି ସେହି ଧର୍ମ ଆଚରଣ ଗୁଣ ଏବଂ ତାହା ନ କଲେ ତଜ୍ଜନିତ ଦୋଷ ଏହା ଜାଣି ସୁଦ୍ଧା ଯେଉଁ ବ୍ୟକ୍ତି ସେ ପ୍ରକାର କର୍ମତ୍ୟାଗ କରି (ସ୍ୱଧର୍ମତ୍ୟାଗକରି) ମୋତେ ଭଜେ ଅର୍ଥାତ୍ ମୁଁ ଏକମାତ୍ର ଭଜନୀୟ ଏହା ନିଶ୍ଚୟପୂର୍ବକ ମୋତେ ଭଜେ ସେ ଉତ୍ତମ ସାଧୁ । ୬ଷ୍ଠ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ଅର୍ଜ୍ଜୁନ ! ତୁମ୍ଭେ ସର୍ବ ଧର୍ମକର୍ମ ପରିତ୍ୟାଗ ପୂର୍ବକ ଏକମାତ୍ର ମୋର ଶରଣାଗତ ହୁଅ । ମୁଁ ତୁମ୍ଭଙ୍କୁ କର୍ମତ୍ୟାଗରୂପ ପାପରୁ ଉଦ୍ଧାର କରିବି । ଶୋକ କର ନା । ୭ମ ଶ୍ଳୋକାର୍ଥ !

ମହାପ୍ରଭୁ କହିଲେ ଯେ,—ସ୍ୱଧର୍ମ ତ୍ୟାଗକରି ବାହ୍ୟ, ଅର୍ଥାତ୍ ଯଦି କୃଷ୍ଣ ଭଜନ ନ କରି ସ୍ୱଧର୍ମ ତ୍ୟାଗ କରିଯାଏ ତାହାହେଲେ ସେଥିରେ ଉଚ୍ଛୃଙ୍ଖଳତା ଆସେ ଏଥିରେ ଭକ୍ତିର କୌଣସି ସମ୍ବନ୍ଧ ନାହିଁ; କିମ୍ବା ଭଜନ କଲେ ସ୍ୱଧର୍ମତ୍ୟାଗଜନିତ ପାପରୁ ଭଗବାନ୍ ଉଦ୍ଧାର କରିବେ, ଏପ୍ରକାର ଅକାଂକ୍ଷାରସହିତ ଭଜନା କରିବା ବାସ୍ତବିକ ନିଷ୍କାମ ଭଜନ ନୁହେଁ । ଅତଏବ ଏହା ଭକ୍ତିର ବହିରଙ୍ଗ, ଏହାଶୁଣି ଶ୍ରୀରାୟ ରାମାନନ୍ଦ କହିଲେ ଯେ,—ଜ୍ଞାନମିଶ୍ରା ଭକ୍ତିହିଁ ସାଧ୍ୟଶ୍ରେଷ୍ଠ ।

ଏହାର ତାତ୍ପର୍ଯ୍ୟ ଏହି ଯେ ଜୀବବ୍ରହ୍ମୈକ୍ୟଜ୍ଞାନ ଲାଭ ପୂର୍ବକ ଆତ୍ମସ୍ୱରୂପ ଅନୁଭବ ହେତୁ ସୁଖଦୁଃଖାଦିର ଦ୍ୱନ୍ଦ୍ୱଭାବର ତତ୍ତ୍ୱ ଅବଗତ ହେବାଦ୍ୱାରା ଯେ ସମସ୍ତର ସହିତ ଆତ୍ମତତ୍ତ୍ୱର ଯେ

ତଥାହି ଗୀତାୟାମ୍ (୧୮।୫୪)—
ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍କ୍ଷତି ।
ସମଃ ସର୍ବେଷୁ ଭୂତେଷୁ ମଦ୍ଭକ୍ତିଂ ଲଭତେ ପରାମ୍ ।୮।

ପ୍ରଭୁ କହେ—ଏହୋ ବାହ୍ୟ, ଆଗେ କହ ଆର
ରାୟ କହେ—ଜ୍ଞାନଶୂନ୍ୟଭକ୍ତି ସାଧ୍ୟସାର । ୫୮ ।

ବ୍ରହ୍ମାହମସ୍ମିତି ନିଶ୍ଚଲେନାବସ୍ଥାନସ୍ୟଫଳମାହ ବ୍ରହ୍ମେତି,—ବ୍ରହ୍ମଭୂତୋ ବ୍ରହ୍ମଣ୍ୟବସ୍ଥିତଃ ପ୍ରସନ୍ନଚିତ୍ତଃ ନଷ୍ଟଂ ନଶୋଚତି ନଚାପ୍ରାପ୍ତଂ କାଂକ୍ଷତି, ଦେହାଦ୍ୟଭିମାନାଭାବାତ୍, ଅତଏବ ସର୍ବେଷ୍ୱପି ଭୂତେଷୁ ସମଃସନ୍ ରାଗଦ୍ୱେଷାଦିକୃତବିକ୍ଷେପାଭାବାତ୍ ସର୍ବଭୂତେଷୁ ମଦ୍ଭାବଲକ୍ଷଣାଂ ପରାଂ ମଦ୍ଭକ୍ତିଂ ଲଭତେ । ୮ମ ଶ୍ଳୋକ ।

ଏହୋବାହ୍ୟଇତି । ଅତ୍ର ଶୋକାଦିବନ୍ଧେ ସତ୍ୟେ ଭଜନାପ୍ରବୃତ୍ତୌ ଜ୍ଞାନାପେକ୍ଷତ୍ୱାଦ୍‌ଭକ୍ତେରୁ ସା ପୁନର୍ଭଜନ ବିଘ୍ନ ଏବେତି ବାହ୍ୟଂ । ୫୮ । ବି, ଚ,

କୌଣସି ସମ୍ବନ୍ଧ ନାହିଁ ଏହିପ୍ରକାର ଜ୍ଞାନଦ୍ୱାରା ତାହାଙ୍କର ଚିତ୍ତ ପ୍ରସନ୍ନ ହୋଇଥାଏ । ସେଥିରେ ଶୋକ ମୋହ ଜନିତ ମାଳିନ୍ୟ ନ ଥାଏ । ଏହି ଜାତୀୟ ବ୍ୟକ୍ତିମାନଙ୍କର ଏହି ଜାତୀୟ ଜ୍ଞାନ କର୍ମଶୂନ୍ୟ ବା କେବଳ ଜ୍ଞାନ, ଏହି କେବଳ ଜ୍ଞାନଦ୍ୱାରା ବ୍ରହ୍ମାନୁଭବ ହୋଇଥାଏ । ଏହିପ୍ରକାର ବ୍ରହ୍ମାନୁଭବୀମାନଙ୍କର ଯଦି କୃଷ୍ଣଭକ୍ତି ଉଦୟ ହୁଏ, ତେବେ ସେମାନଙ୍କୁ ଶାନ୍ତଭକ୍ତ କୁହାଯାଏ । ଏହି ଶାନ୍ତଭକ୍ତମାନଙ୍କର ଜ୍ଞାନ ମିଶ୍ରାଭକ୍ତି, ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ସ୍ୱରୂପରେ ଅବିଚଳିତ ନିଷ୍ଠା ଓ ସମ୍ଭ୍ରମଜ୍ଞାନ ହୁଏ । ୫୭ ।

ଶ୍ରୀଭଗବାନ୍ ଅର୍ଜୁନଙ୍କୁ କହିଲେ ବ୍ରହ୍ମରେ ଅବସ୍ଥିତ ପ୍ରସନ୍ନଚିତ୍ତ ବ୍ୟକ୍ତି ନଷ୍ଟ ବସ୍ତୁର ଶୋକ ଓ ଲବ୍ଧ ବସ୍ତୁର ଆକାଂକ୍ଷା କରନ୍ତି ନାହିଁ । ସର୍ବପ୍ରାଣୀରେ ସମଦୃଷ୍ଟି ହେବାରୁ ଏବଂ ରାଗଦ୍ୱେଷାଦିକୃତ ବିକ୍ଷେପ ନ ଥିବାରୁ ସର୍ବଭୂତରେ ମଦ୍ଭାବଲକ୍ଷଣଯୁକ୍ତ ମୋର ପରମ ଭକ୍ତି ଲାଭ କରେ । ୮ମ ଶ୍ଳୋକାର୍ଥ ।

ଶ୍ରୀମନ୍ ମହାପ୍ରଭୁ କହିଲେ, ଏହା ମଧ୍ୟ ଭକ୍ତିର ବହିରଙ୍ଗ, ଏହାର ଭାବ ଏହି ଯେ ଶୋକ ଓ ମୋହ ଭକ୍ତି ସାଧନର ବିଘ୍ନ ହେତୁ ଜ୍ଞାନର ଅପେକ୍ଷା କରେ ଅତଏବ ଏପ୍ରକାର ଜ୍ଞାନ-ମିଶ୍ର ଭଜନ ନିର୍ବିଘ୍ନ ନୁହେଁ, କାରଣ ଶୋକ ମୋହ ଉପସ୍ଥିତ ହେଲେ ଏରୂପଭଜନ ଆଉ ହୁଏ ନାହିଁ । ଅତଏବ ଏରୂପ ଭଜନ ନିରପେକ୍ଷ ନ ହୋଇ ଆପେକ୍ଷିକ, ତେଣୁ ଏହା ବାହ୍ୟ ।

ଏହା ଶୁଣି ଶ୍ରୀରାମାନନ୍ଦ ରାୟ କହିଲେ ଏପରିସ୍ଥଳେ ଜ୍ଞାନଶୂନ୍ୟ ଭକ୍ତି ସାଧ୍ୟସାର । ଏହାର ତାତ୍ପର୍ଯ୍ୟ ଏହି ଯେ ଏଥିପୂର୍ବେ କର୍ମମିଶ୍ରା ଭକ୍ତି ସକାମ ହେତୁ ତଦ୍ୱାରା ଭଜନରେ ନିରପେକ୍ଷତା ହୁଏ ନା ବୋଲି ତାହାକୁ ବହିରଙ୍ଗ କୁହା ହୋଇଅଛି । ପୁନଃ ରାୟ କର୍ମର ଅତୀତ କେବଳ ଜ୍ଞାନଯୁକ୍ତ ଭକ୍ତିଦ୍ୱାରା ମଧ୍ୟ ନିରପେକ୍ଷ ଭଜନ ହୁଏ ନା ବୋଲି ତାକୁ ବହିରଙ୍ଗ କୁହାଯିବାରୁ ଜ୍ଞାନର ଅତୀତ ଅର୍ଥାତ୍ ଜ୍ଞାନଶୂନ୍ୟ ବା ବିଶୁଦ୍ଧ ଭକ୍ତିକୁ ସାଧ୍ୟସାର ବୋଲି କହୁଅଛନ୍ତି, ଏହି ବିଶୁଦ୍ଧ ଭକ୍ତିହିଁ କର୍ମ ଓ ଜ୍ଞାନର ଶୃଙ୍ଖଳାରେ ଶୃଙ୍ଖଳିତ ନୁହେଁ, ଏହାଦ୍ୱାରା ଆନୁକୂଲ୍ୟରେ ଶ୍ରୀକୃଷ୍ଣାନୁଶୀଳନ କରାହୁଏ । ୫୮ ।

ତଥାହି (ଭାଃ—୧୦।୧୪।୩)—

ଜ୍ଞାନେ ପ୍ରୟାସମୁଦପାସ୍ୟ ନମନ୍ତ ଏବ,
ଜୀବନ୍ତି ସନ୍ମୁଖରିତାଂ ଭବଦୀୟବାର୍ତ୍ତାମ୍ ।
ସ୍ଥାନସ୍ଥିତାଃ ଶ୍ରୁତିଗତାଂ ତନୁବାଙ୍ମନୋଭି-
ର୍ଯେ ପ୍ରାୟଶୋଽଜିତ ଜିତୋଽପ୍ୟସି
ତୈସ୍ତ୍ରିଲୋକ୍ୟାମ୍ ।୯।

ପ୍ରଭୁ କହେ ଏହୋ ହୟ, ଆଗେ କହ ଆର ।
ରାୟ କହେ—ପ୍ରେମଭକ୍ତି ସର୍ବସାଧ୍ୟସାର । ୫୯ ।

ତଥାହି ପଦ୍ୟାବଲ୍ୟାମ୍ (୧୩)—

ନାନୋପଚାରକୃତପୂଜନମାର୍ତ୍ତବନ୍ଧୋଃ,
ପ୍ରେମ୍ଣୈବ ଭକ୍ତହୃଦୟଂ ସୁଖବିଦ୍ରୁତଂ ସ୍ୟାତ୍
ଯାବତ୍ କ୍ଷୁଦସ୍ତି ଜଠରେ ଜରଠା ପିପାସା,
ତାବତ୍ ସୁଖାୟ ଭବତୋ ନନୁଭକ୍ଷ୍ୟପେୟେ ।୧୦।

ଜ୍ଞାନେ—ଜ୍ଞାନନିମିତ୍ତଂ ଶ୍ରମଂ ଉଦପାସ୍ୟ ଦୂରତଃ ତ୍ୟକ୍ତ୍ୱା ସ୍ଥାନସ୍ଥିତାଃ—ସତାଂ-ନିବାସ ସ୍ଥଳେ ସ୍ୱସ୍ଥାନେ ବା ସ୍ଥିତାଃ ସନ୍ମୁଖରିତାଂ—ସଦ୍ଭିଃ ଭାଗବତଭକ୍ତୈଃ ମୁଖରିତାଂ ସ୍ୱଭାବତ ଏବ ନିତ୍ୟଂ ପ୍ରକଟିତାଂ ଶ୍ରୁତିଗତାଂ ଶ୍ରବଣପ୍ରାପ୍ତାଂ ଭବଦୀୟବାର୍ତ୍ତାଂ କଥାଂ ଯେ ଜନାଃ ତନୁବାଙ୍ମନୋଭିଃ ନମନ୍ତଃ—ସତ୍କୁର୍ବନ୍ତଃ ଏବ ଜୀବନ୍ତି (ହେ) ଅଜିତ ?—କାଲକର୍ମାଦିଭିରଜିତ, ଅପି ପ୍ରାୟଶଃ ତ୍ରିଲୋକ୍ୟାଂ ତୈଃ (ତ୍ୱଂ) ଜିତଃ ବଶୀକୃତଃ ଅସି । ୯ମ ଶ୍ଳୋକ ।

ହେ ଭକ୍ତ ! ଆର୍ତ୍ତବନ୍ଧୋଃ ଶ୍ରୀକୃଷ୍ଣସ୍ୟ ହୃଦୟଂ ପ୍ରେମ୍ଣା ଏବ ନାନୋପଚାରକୃତପୂଜନଂ ସତ୍ସୁଖବିଦ୍ରୁତଂ ସ୍ୟାଦିତ୍ୟନ୍ୱୟଃ । ତତ୍ର ବୈଧର୍ମ୍ୟେ ଦୃଷ୍ଟାନ୍ତମାହ ଯାବଦିତି । ଯାବତ୍ ଜଠରେ ଜରଠା ବଳବତୀ କ୍ଷୁତ୍ ଏବଂ ପିପାସାଽସ୍ତି ତାବତ୍ ଭକ୍ଷ୍ୟପେୟେ ସୁଖାୟ ଭବତଃ, ତଦଭାବେ ତନ୍ନ ଏବଂ ପ୍ରେମାଭାବେ ସୁଖବିଦ୍ରୁତଂ ନେତି ଦୃଷ୍ଟାନ୍ତଃ । ଯଦା ଉପଚାରକୃତପୂଜନଂ ନାନା - ବିନା ପ୍ରେମ୍ଣୈବ ସୁଖବିଦ୍ରୁତଂ ସ୍ୟାଦିତି, ନାନାଶବ୍ଦୋ ବିନାର୍ଥେଽପି, ତଥାଲୋକେ ଦିବ୍ୟାତ୍ । ୧୦ମ ଶ୍ଳୋକ ।

ବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି ଭକ୍ତମାନେ ଜ୍ଞାନଦ୍ୱାରା ଆପଣଙ୍କର ଅନେଷଣ-ରୂପ ବୃଥା ପରିଶ୍ରମ ନ କରି ସ୍ୱଚ୍ଛନ୍ଦରେ ସ୍ୱ ସ୍ୱ ସ୍ଥାନରେ ଅବସ୍ଥାନପୂର୍ବକ ସାଧୁମାନଙ୍କ କର୍ତ୍ତୃକ ସ୍ୱଭାବତଃ ପ୍ରକାଶିତ ଆପଣଙ୍କର ରୂପଗୁଣଲୀଳାଦି ବାର୍ତ୍ତା କାୟ ମନ ଓ ବାକ୍ୟଦ୍ୱାରା ସତ୍କାରପୂର୍ବକ ଶ୍ରବଣ କରି ଯେଉଁମାନେ ଜୀବନଧାରଣ କରନ୍ତି, ଆପଣ ତ୍ରୈଲୋକ୍ୟସ୍ଥ କର୍ମୀ ଓ ଜ୍ଞାନୀମାନଙ୍କର ଶାରୀରିକ ଓ ମାନସିକ ବ୍ୟାପାରର ଅନଧିଗମ୍ୟ ହେତୁ (ସ୍ୱପ୍ରକାଶ ହେତୁ) ଅଜିତ ହେଲେହେଁ ସେହି ପ୍ରକାର ଭକ୍ତମାନଙ୍କଦ୍ୱାରା ବଶୀଭୂତ ହୁଅନ୍ତି; ଅର୍ଥାତ୍ ସର୍ବଦା ସେମାନଙ୍କର କାୟମନୋ-ବାକ୍ୟର ପାର୍ଶ୍ୱରେ ଅବସ୍ଥାନ କରନ୍ତି । ୯ମ ଶ୍ଳୋକାର୍ଥ ।

ଶ୍ରୀମନ୍ ମହାପ୍ରଭୁ କହିଲେ ଏ କଥା ଠିକ ଅର୍ଥାତ୍ ଏହା ବିଶୁଦ୍ଧ ଭକ୍ତି, ଯେହେତୁ ଏହା ଜ୍ଞାନ ଓ କର୍ମର ଆବରଣରହିତ ଏବଂ ଭକ୍ତି ଭିନ୍ନ ଅନ୍ୟ ବସ୍ତୁର ସ୍ପୃହାଶୂନ୍ୟ, ଅତଏବ ଏହାର ପର ଆଉ କଣ ଅଛି କହ, ଏହାର ଭାବ ଏହି ଯେ, ଏହି ଉତ୍ତମ ଭକ୍ତିରେ ଭକ୍ତ ଶ୍ରୀକୃଷ୍ଣଙ୍କୁ ଏକମାତ୍ର ଆଶ୍ରୟତତ୍ତ୍ୱ ବୋଲି ସମ୍ଭ୍ରମର ସହିତ ଅର୍ଚ୍ଚନା କରନ୍ତି । କିନ୍ତୁ ଏତଦ୍ୱାରା ଭକ୍ତର ଶ୍ରୀକୃଷ୍ଣଙ୍କ ସହିତ ମମତା ସମ୍ବନ୍ଧ ଥାଏ ନାହିଁ । ଅର୍ଥାତ୍ ଭକ୍ତର ଏ ଜାତୀୟ ଭଜନରେ ଶ୍ରୀକୃଷ୍ଣଙ୍କର ସୁଖ ତାତ୍ପର୍ଯ୍ୟ ଥାଏ ନାହିଁ, ଏହାଶୁଣି ଶ୍ରୀମନ୍ ରାମାନନ୍ଦରାୟ କହିଲେ—ପ୍ରେମଭକ୍ତିହିଁ ସାଧ୍ୟ ଶ୍ରେଷ୍ଠ । ଏହାର କାରଣ ଏହି ଯେ ପ୍ରେମଭକ୍ତିରେ ଭକ୍ତ ଶ୍ରୀକୃଷ୍ଣଙ୍କ ସହିତ ମମତାବଦ୍ଧ ହୋଇ ଯେଉଁ ଭଜନ କରେ, ସେଥିରେ ଶ୍ରୀକୃଷ୍ଣଙ୍କର ସୁଖହିଁ ତାତ୍ପର୍ଯ୍ୟ । ଏଠାରେ ଏହି ପ୍ରେମ ଭକ୍ତି ସାଧାରଣ ଭାବରେ କହିବାଦ୍ୱାରା ଭାବଭକ୍ତିକୁ ଅର୍ଥାତ୍ ପ୍ରେମର ତାରତମ୍ୟ ଅବସ୍ଥାକୁ ବୁଝାଇ ଅଛି । ୫୯ ।

ତତ୍ରୈବ (୧୪)—

କୃଷ୍ଣଭକ୍ତିରସଭାବିତା ମତିଃ,
କ୍ରୀୟତାଂ ଯଦି କୁତୋଽପି ଲଭ୍ୟତେ
ତତ୍ର ଲୌଲ୍ୟମପି ମୂଲ୍ୟମେକଲଂ,
ଜନ୍ମକୋଟିସୁକୃତୈର୍ନଲଭ୍ୟତେ ।୧୧।

ପ୍ରଭୁ କହେ— ଏହୋ ହୟ, ଆଗେ କହ ଆର
ରାୟ କହେ – ଦାସ୍ୟପ୍ରେମ ସର୍ବସାଧ୍ୟସାର ।

ତଥାହି (ଭାଃ— ୯।୫।୧୬)—

ଯନ୍ନାମଶ୍ରୁତିମାତ୍ରେଣ ପୁମାନ୍ ଭବତି ନିର୍ମଳଃ ।
ତସ୍ୟ ତୀର୍ଥପଦଃ କିଂବା ଦାସାନାମବଶିଷ୍ୟତେ ।୧୨।

---

ଯଦି କୁତୋଽପି କାରଣାତ୍ ସତ୍ସଙ୍ଗରୂପାଦିତ୍ୟର୍ଥ ଲଭ୍ୟତେ ତଦା କୃଷ୍ଣଭକ୍ତିରସେନ ଭାବିତା ତାଦାତ୍ମ୍ୟପ୍ରାପ୍ତା ମତିଃ କ୍ରୀୟତାଂ ତେନୈବମୂଲ୍ୟେନ ଗୃହ୍ୟତାମିତ୍ୟର୍ଥଃ । ନନୂପଯୁକ୍ତମୂଲ୍ୟେନୈବ— ଗ୍ରହୀଷ୍ୟାମୀତ୍ୟାହ — ତତ୍ରେତି, ତତ୍ରତ୍ୟୌ ଏକଳଂ ଲୌଲ୍ୟଂ ସ୍ପୃହୈବାରୂଢଂ ମୂଲ୍ୟମେବ ତଦ୍ବିନା ଜନ୍ମକୋଟିସୁକୃତୈଃ ପୁଣ୍ୟୈଃ ନ ଲଭ୍ୟତେ, କୁତଃ ଉପଯୁକ୍ତଂ ମୂଲ୍ୟଂ, ଅପିଃବାର୍ଥେ । ୧୧ଶ ଶ୍ଳୋକ ।

ହେ ଅମ୍ବରୀଷ ! ଯତ୍ ଯସ୍ୟ ଭଗବତଃ ନାମ ଶ୍ରୁତିମାତ୍ରେଣ ଶ୍ରବଣମାତ୍ରେଣ କର୍ଣ୍ଣେନ ପୁରୁଷୋନିର୍ମଳଃ ସର୍ବୋପାଧିବିନିର୍ମୁକ୍ତଃ ଭବତି ତସ୍ୟ ତୀର୍ଥପଦସ୍ୟ ଭଗବତଃ ଦାସାନାଂ ସେବକାନାଂ କିମ୍ବା ଇତି ବସ୍ତୁନି ଅବଶିଷ୍ୟତେ କିମପି ଅବଶିଷ୍ଟଂ ନାସ୍ତୀତ୍ୟର୍ଥଃ । ୧୨ଶ ଶ୍ଳୋକଃ ।

---

ଏହା ଶ୍ରୀ ରାୟ ରାମାନନ୍ଦଙ୍କ ନିଜକୃତ ଶ୍ଳୋକ, ହେ ଭକ୍ତ ! ପ୍ରେମର ସହିତ ନାନାବିଧ ଉପଚାରଦ୍ୱାରା ପୂଜିତ ହେଲେ ଦୀନବନ୍ଧୁ ଶ୍ରୀକୃଷ୍ଣଙ୍କ ହୃଦୟ ଦ୍ରବୀଭୂତ ହୁଏ । ଯେପରି ଜଠରରେ ବଳବତୀ କ୍ଷୁଧା ଥିବା ପର୍ଯ୍ୟନ୍ତ ଭକ୍ଷ୍ୟ ଓ ପାନୀୟ ଦ୍ରବ୍ୟ ସୁଖଦାୟକ ହୁଏ ।

ଏଠାରେ ଭାବ ଏହି ଯେ ନାନାବିଧ ଉପକରଣଦ୍ୱାରା ପୂଜା କଲେ କଣ ହେବ, ଯଦି ଶ୍ରୀକୃଷ୍ଣଙ୍କ ପ୍ରତି ହୃଦୟରେ ପୂଜକର ବଳବତ୍ ଅନୁରାଗ ନ ଥାଏ । ଯେପରି କି ନାନାବିଧ ଭକ୍ଷ୍ୟ ପାନୀୟ ଦେଲେ କଣ ହେବ, ଯଦି ଖାଦକ ଉଦରରେ କ୍ଷୁଧା ପିପାସା ନ ଥାଏ । ପ୍ରେମର ସହିତ ପୂଜାଦ୍ୱାରାହିଁ ଶ୍ରୀକୃଷ୍ଣ ବଶ ହୁଅନ୍ତି । ୧୦ମ ଶ୍ଳୋକାର୍ଥ ।

ଏହା ଶ୍ରୀରାମାନନ୍ଦରାୟଙ୍କ ନିଜକୃତ ଶ୍ଳୋକ । ଯଦି ସୌଭାଗ୍ୟବଶତଃ ସାଧୁସଙ୍ଗ ମିଳେ, ତେବେ ତାଙ୍କଠାରୁ କୃଷ୍ଣଭକ୍ତିର ସଭାବଯୁକ୍ତ ବୁଦ୍ଧି କ୍ରୟକର, ତାହାର ଅନ୍ୟ ମୂଲ୍ୟ ନାହିଁ, କେବଳ ଲାଳସାରୂପ ମୂଲ୍ୟଦ୍ୱାରା କ୍ରୟ କରା ହୁଏ । ଯେହେତୁ କୋଟିଜନ୍ମାର୍ଜିତ ପୁଣ୍ୟର ବିନିମୟରେ ସୁଦ୍ଧା ତାହା ମିଳେ ନାହିଁ । ୧୧ଶ ଶ୍ଳୋକାର୍ଥ ।

ଏହା ଶୁଣି ଶ୍ରୀମନ୍ ମହାପ୍ରଭୁ କହିଲେ— ଏହା ଠିକ, କିନ୍ତୁ ଏହାର ପ୍ରକଟଣ ବୁଝାଇ ଦିଅ । ଏହାର ଭାବ ଏହି ଯେ, ଶ୍ରୀକୃଷ୍ଣଙ୍କ ପ୍ରତି ମମତାଯୁକ୍ତ ହୋଇ ତଦ୍‌ଭକ୍ତିରସରେ ଲାଳସାଯୁକ୍ତ ହେବାହିଁ ଭାବଭକ୍ତି । ଏହା ପ୍ରେମର ପ୍ରାଥମିକ ଅର୍ଥାତ୍ ତରଳ ଅବସ୍ଥା, ଏହି ଭାବର ଘନୀଭୂତ ପ୍ରେମନ୍, ଶ୍ରୀମନ୍ ମହାପ୍ରଭୁ ଏହି ଭାବର ଘନୀଭୂତ ଉତ୍ତରୋତ୍ତର ରସାସ୍ୱାଦନ ଅଭିଳାଷରେ ଶୁଣିବାକୁ ଇଚ୍ଛା କରିବାରୁ ଶ୍ରୀମନ୍ ରାୟ ରାମାନନ୍ଦ କହିଲେ ଯେ, ଦାସ୍ୟପ୍ରେମହିଁ ସାଧ୍ୟଶ୍ରେଷ୍ଠ । ୨୦ ।

ଶ୍ରୀ ଅମ୍ବରୀଷଙ୍କ ପ୍ରତି ଦୁର୍ବାସା ମୁନି କହୁଅଛନ୍ତି— ଯେଉଁ ଭଗବାନଙ୍କର ନାମ ଶ୍ରବଣ-ମାତ୍ର ଜୀବ ମାୟାବନ୍ଧନରୁ ମୁକ୍ତ ହୁଅନ୍ତି, ସେହି ତୀର୍ଥପଦଙ୍କର ଦାସମାନଙ୍କର ଆଉ ଅଭାବ କଣ ଥାଇ ପାରେ, ଅର୍ଥାତ୍ କିଛି ଅଭାବ ଥାଏ ନାହିଁ । ୧୨ଶ ଶ୍ଳୋକାର୍ଥ ।

ତଥାହି ଯାମୁନମୁନିବରଚିତେ ସ୍ତୋତ୍ରରତ୍ନେ (୪୬)

ଭବନ୍ତମେବାନୁଚରନ୍ନିରନ୍ତରଃ
ପ୍ରଶାନ୍ତନିଃଶେଷ-ମନୋରଥାନ୍ତରଃ ।
କଦାହମୈକାନ୍ତିକନିତ୍ୟ କିଙ୍କରଃ,
ପ୍ରହର୍ଷୟିଷ୍ୟାମି ସନାଥଜୀବିତଂ । ୧୩ ।

ପ୍ରଭୁ କହେ—ଏହୋ ହୟ, ଆଗେ କହ ଆର ।
ରାୟ କହେ – ସଖ୍ୟପ୍ରେମ ସର୍ବସାଧ୍ୟସାର । ୭୧ ।

ତଥାହି (ଭାଃ—୧୦।୧୨।୧୧)—

ଇତ୍ଥଂ ସତାଂ ବ୍ରହ୍ମସୁଖାନୁଭୂତ୍ୟା,
ଦାସ୍ୟଂ ଗତାନାଂ ପରଦୈବତେନ ।
ମାୟାଶ୍ରିତାନାଂ ନରଦାରକେଣ,
ସାର୍ଦ୍ଧଂ ବିଜହ୍ରୁଃ କୃତପୁଣ୍ୟପୁଞ୍ଜାଃ ।୧୪।

ପ୍ରଭୁ କହେ — ଏହୋତ୍ତମ, ଆଗେ କହ ଆର ।
ରାୟ କହେ — ବାତ୍ସଲ୍ୟପ୍ରେମ ସର୍ବସାଧ୍ୟସାର ॥

---

ତାନତିବର୍ଣ୍ଣିତଃ ଶ୍ଲୋକଦ୍ୱୟେ ନାତ୍ୟନନ୍ଦନ୍ତି ଇତ୍ଥମିତି । ସତାଂ ବିଦୁଷାଂ ବ୍ରହ୍ମ ଚ ତତ୍ ସୁଖଂ ଚ ଅନୁଭୂତିଷ୍ଟ ତୟା ସ୍ୱପ୍ରକାଶ ପରମସୁଖେନେତ୍ୟର୍ଥଃ, ଭକ୍ତାନାଂ ପରମଦୈବତେନ ଆତ୍ମ-ପ୍ରଦେନ ନାଥେନ ମାୟାଶ୍ରିତାନାଂ ନରଦାରକତୟା ପ୍ରତୀୟମାନେନ ସହ ବିଜହ୍ରୁଃ କୃତାନାଂ ପୁଣ୍ୟାନାଂ ପୁଞ୍ଜାଃ ରାଶୟଃ ଯେଷାଂ ତେ ବ୍ରହ୍ମବଦାଂ ତଦନୁଭବ ଏବ ଭକ୍ତାନାମତିଗୌରବେଣ ଏବ ଭଜନଂ ଏତେତୁ ତେନ ସହସଖ୍ୟେନ ବିଜହ୍ରୁଃ, ଅହୋ ଭାଗ୍ୟମିତି ଭାବଃ । ୧୪ଶ ଶ୍ଲୋକ ।

---

୧୩ଶ ଶ୍ଲୋକ—ମଧ: ୧ମ: ପର: । ୧୬ଶ ଶ୍ଲୋକର ଅନ୍ୱୟ । ହେ ନାଥ ! ଏହି ଦୀନ-ବ୍ୟକ୍ତି କେବେ ସର୍ବପ୍ରକାରରେ ବିବିଧ ବିଷୟବାସନା ପରିତ୍ୟାଗପୂର୍ବକ ଆପଣଙ୍କର ଐକାନ୍ତିକ ନିତ୍ୟଦାସ ହୋଇ ନିରନ୍ତର ଆପଣଙ୍କର ସେବା କରି ନିଜ ଜୀବନକୁ ଆନନ୍ଦିତ କରିବ । ୧୩ଶ ଶ୍ଲୋକାର୍ଥ ।

ଏହି କଥା ଶୁଣି ଶ୍ରୀମନ୍ ମହାପ୍ରଭୁ କହିଲେ—ଏହା ଅନୁମୋଦନୀୟ, କିନ୍ତୁ ଏହା ସାଧ୍ୟର ଶେଷ ସୀମା ନୁହେ । ଏହାର ଭାବ ଏହି ଯେ—ଦାସ୍ୟପ୍ରେମରେ ଶାନ୍ତର ନିଷ୍ଠା ଓ ଦାସର ସେବାନନ୍ଦ ଥିଲେହେଁ ପ୍ରଭୁ ସମ୍ବନ୍ଧ ହେତୁ ଗୌରବରୂପ କିଛି ସଙ୍କୋଚ ରହିଅଛି । ସେଣୁ ଅସ୍ମୀୟତାର ପୂର୍ଣ୍ଣବିକାଶ ହେଉ ନାହିଁ । ଏହା ଶୁଣି ଶ୍ରୀମନ୍ ରାମରାୟ କହିଲେ, ସଖ୍ୟପ୍ରେମରେ ଆତ୍ମୀୟତାର ପୂର୍ଣ୍ଣବିକାଶ ହେତୁ ତାହା ସାଧ୍ୟଶ୍ରେଷ୍ଠ । ୭୧ ।

ଶ୍ରୀ ଶୁକଦେବ ଶ୍ରୀ ପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି, ଯାହାଙ୍କଠାରୁ ଜ୍ଞାନମାନେ ବ୍ରହ୍ମ-ସୁଖ ଅନୁଭବ କରୁଅଛନ୍ତି, ଯାହାଙ୍କୁ ଭକ୍ତମାନେ ନାଥ ବୋଲି ଆଶ୍ରୟ କରିଅଛନ୍ତି ଏବଂ ଯାହାଙ୍କୁ ମାୟାମୋହିତ ମନୁଷ୍ୟମାନେ ନରବାଳକରୂପରେ ଦେଖୁଅଛନ୍ତି, ସେହି ଶ୍ରୀକୃଷ୍ଣଙ୍କ ସହିତ ବହୁ-ପୁଣ୍ୟଶାଳୀ ଗୋପବାଳକମାନେ ସ୍ୱଚ୍ଛନ୍ଦରେ ବିହାର କରିଥିଲେ, ଏହା ସେମାନଙ୍କର ପରମ-ସୌଭାଗ୍ୟର ବିଷୟ । ୧୪ଶ ଶ୍ଲୋକାର୍ଥ ।

ଏହା ଶୁଣି ଶ୍ରୀମନ୍ ମହାପ୍ରଭୁ କହିଲେ, ଏହା ଉତ୍ତମ, କିନ୍ତୁ ଯଥେଷ୍ଟ ନୁହେ, ଆଉ କଣ ଅଛି କହ । ଏହାର ଭାବ ଏହି ଯେ, ସଖ୍ୟପ୍ରେମରେ ଦାସ୍ୟର ସମ୍ଭ୍ରମ ଗୌରବରୂପ ବାଧା ନ ଥିବାରୁ ଏହା ପୂର୍ଣ୍ଣ ଅର୍ଥାତ୍ ଏଥିରେ ଶାନ୍ତର ନିଷ୍ଠା, ଦାସର ସେବାନନ୍ଦ, ସଖାର ମମତାରୂପ ଅସ୍ମୀୟତାର ପୂର୍ଣ୍ଣତ୍ୱ ଅଛି ସତ୍ୟ, କିନ୍ତୁ ପୂର୍ଣ୍ଣ ପ୍ରେମରାଜ୍ୟରେ ଏହାଠାରୁ ଉତ୍କୃଷ୍ଟ ସ୍ତର ଅଛି । ତାହା ଆସ୍ୱାଦ କରିବା ସକାଶେ ଶ୍ରୀମନ୍ ମହାପ୍ରଭୁ କହିଲେ, ଏହା ଯଥେଷ୍ଟ ନୁହେ । ଏହା ଶୁଣି ଶ୍ରୀରାୟ ରାମାନନ୍ଦ କହିଲେ ଯେ, ବାତ୍ସଲ୍ୟପ୍ରେମ ସାଧ୍ୟଶ୍ରେଷ୍ଠ । ଯେହେତୁ ସେଥିରେ ଶ୍ରୀକୃଷ୍ଣଙ୍କ ସହିତ ସମତା ଅପେକ୍ଷା ତାଙ୍କ ପ୍ରତି ମମତାର ପର୍ଣ୍ଣବିକାଶ ।

ତଥାହି ତତ୍ରୈବ (୧୦।୯।୧୭)—

ନେମଂ ବିରଞ୍ଚୋ ନ ଭବୋ ନ ଶ୍ରୀରପ୍ୟଙ୍ଗସଂଶ୍ରୟା ।
ପ୍ରସାଦଂ ଲେଭିରେ ଗୋପୀ ଯତ୍ତତ୍ପ୍ରାପ
ବିମୁକ୍ତିଦାତ୍ ॥ ୧୬ ॥

ତଥାହି ତତ୍ରୈବ (୧୦।୮।୪୬)—

ନନ୍ଦଃ କିମକରୋଦ୍ ବ୍ରହ୍ମନ୍ ଶ୍ରେୟ ଏବଂ
ମହୋଦୟମ୍ ।
ଯଶୋଦା ବା ମହାଭାଗା ପପୌଯସ୍ୟାଃ ସ୍ତନଂ
ହରିଃ ॥ ୧୫ ॥

ପ୍ରଭୁ କହେ—ଏହୋତ୍ତମ, ଆଗେ କହ ଆର ।
ରାୟ କହେ—କାନ୍ତାପ୍ରେମ ସର୍ବସାଧ୍ୟସାର ॥ ୬୩ ॥

---

ହେ ବ୍ରହ୍ମନ୍ ! ନନ୍ଦଃ ଏବଂ ଇଦୃଶ ମହୋଦୟଂ ମହାନ୍‌ଉଦୟଃ ସର୍ବତଃ ସ୍ନେହୋତ୍କର୍ଷଃ । ଯସ୍ମାତ ତ ଋତ ଶ୍ରେୟଃ କିମକରୋତ୍ । ମହାଭଗା ଯଶୋଦା ବା କିମକରୋତ୍, ହରି ଯସ୍ୟାଃ ସ୍ତନଂ ପପୌ । ୧୫ଶ ଶ୍ଳୋକ ।

ଗୋପୀ ( ଯଶୋଦା ) ବିମୁକ୍ତିଦାତ୍ ( ଶ୍ରୀକୃଷ୍ଣାତ୍ ) ଯତ୍ତତ୍ ପ୍ରାପ, ଇମଂ ପ୍ରସାଦଂ ବିରଞ୍ଚିଃ ନ, ଭବଃ ନ, ଅଙ୍ଗସଂଶ୍ରୟା ଶ୍ରୀଃ—ଲକ୍ଷ୍ମୀଃ ଅପି ନ ଲେଭିରେ । ଭଗବତ୍‌ପ୍ରସାଦଂ ଅନ୍ୟେଽପି ଭକ୍ତାଃ ଲଭନ୍ତେ, ଇଦନ୍ତୁ ତଦ୍‌ବିଲକ୍ଷଣ ପରମାଶ୍ଚର୍ଯ୍ୟମାହ—ନେମମିତି । ବିରଞ୍ଚିଃ ପୁତ୍ରୋଽପି, ଭବଃ ଆତ୍ମାପି, ଶ୍ରୀର୍ଜାୟାପି । ୧୬ଶ ଶ୍ଳୋକ । ଭାବାର୍ଥ ଦୀପିକା ।

---

ମହାରାଜା ପରୀକ୍ଷିତ ସବିସ୍ମୟରେ ଶ୍ରୀଶୁକଦେବଙ୍କୁ ପଚାରୁ ଅଛନ୍ତି ! ହେ ବ୍ରହ୍ମନ୍ ! ବ୍ରଜେଶ୍ୱର ଶ୍ରୀମନ୍ ନନ୍ଦ ସ୍ନେହୋତ୍କର୍ଷୋଦୟକାରୀ ଏମନ୍ତ କି ମଙ୍ଗଳଜନକ କାର୍ଯ୍ୟ କରିଥିଲେ ? ଯେହେତୁ ଶ୍ରୀକୃଷ୍ଣଙ୍କୁ ପୁତ୍ରରୂପରେ ପାଇଲେ ଏବଂ ତାହାଙ୍କଠାରୁ ଅଧିକତର ସୌଭାଗ୍ୟବତୀ ଯଶୋଦା ବା କଣ କରିଥିଲେ ଯେ, ଶ୍ରୀକୃଷ୍ଣ ତାହାଙ୍କର ସ୍ତନ ପାନ କରିଥିଲେ । ୧୫ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ମାତାଙ୍କର ଉଦୁଖଳ ବନ୍ଧନ ରୂପ କ୍ଳେଶ ଦେଖି କୃପା ପରବଶ ହୋଇ ମାତାଙ୍କର ବନ୍ଧନ ଗ୍ରହଣ କଲେ । ଏହିକଥା କହିବା ପରେ ଶ୍ରୀଶୁକଦେବ ଗୋସ୍ୱାମୀ ପ୍ରେମପୁଲକିତାଙ୍ଗ ହୋଇ କହୁଅଛନ୍ତି ।

ଏପ୍ରକାର କୃପା ଯାହା କି ଗୋପୀ ଶ୍ରୀଯଶୋଦା ମୁକ୍ତିଦାତା ଶ୍ରୀକୃଷ୍ଣଙ୍କ ଠାରୁ ଲାଭ କଲେ, ସେରୂପ କୃପା ବ୍ରହ୍ମା (ଭକ୍ତମାନଙ୍କର ଆଦିଗୁରୁ) ଭବ (ବୈଷ୍ଣବମାନଙ୍କର ଆଦର୍ଶ) ଏବଂ ଲକ୍ଷ୍ମୀ (ନିତ୍ୟପ୍ରେୟସୀ) ଯେ କି ସର୍ବଦା ଶ୍ରୀକୃଷ୍ଣଙ୍କର ଅଙ୍ଗକୁ ଆଶ୍ରୟ କରିଅଛନ୍ତି, ଏମାନେ ସୁଦ୍ଧା ଲାଭ କରି ନ ଥିଲେ ।

ତାତ୍ପର୍ଯ୍ୟ—ଶ୍ରୀକୃଷ୍ଣ ଭକ୍ତମାନଙ୍କୁ ସାଧାରଣତଃ ସାରୂପ୍ୟାଦି ମୁକ୍ତି ଦାନ କରନ୍ତି । କ୍ୱଚିତ୍ କାହାରିକୁ ପ୍ରେମଭକ୍ତି ଦିଅନ୍ତି । ବ୍ରହ୍ମା,ଶିବ ଓ ଲକ୍ଷ୍ମୀ ଏମାନେ ପ୍ରେମଭକ୍ତି ଲାଭ କରିଥିଲେ ସୁଦ୍ଧା ଶ୍ରୀମତୀ ଯଶୋଦା ଯେଉଁ ଜାତୀୟ ପ୍ରେମପରମାଧିକ ରୂପ କୃପା ଲାଭ କରିଥିଲେ, ସେ ଜାତୀୟ କୃପା ଏମାନଙ୍କର ଭାଗ୍ୟରେ ଘଟି ନାହିଁ । ୧୬ଶ ଶ୍ଳୋକାର୍ଥ ।

ଶ୍ରୀମନ୍ ମହାପ୍ରଭୁ କହିଲେ, ଏହା ଉତ୍କୃଷ୍ଟ ହେଲେହେଁ ଏହା ଉପରେ ଆଉ କଣ ଅଛି କହ । ଏହାର ଭାବ ଏହି ଯେ—ଏ ବାତ୍ସଲ୍ୟ ପ୍ରେମରେ ସଖ୍ୟ ପ୍ରେମର ମମତା ଅପେକ୍ଷା ଲାଳକ ଓ ପାଳକ ରୂପରେ ମମତାର ବିଶେଷତ୍ୱ ରହିଅଛି ଏବଂ ଏହାର ଅନ୍ତର୍ଗତ ଦାସ୍ୟ-ସଖ୍ୟାଦିଭାବର ସେବା ମଧ୍ୟ ଗୌଣରୂପରେ ରହିଅଛି । ଏଣୁ ଏହା ପୂର୍ଣ୍ଣତର ପ୍ରେମ ହେଲେହେଁ ପରିପୂର୍ଣ୍ଣ ନୁହେ । ଅତଏବ ସେ ଜାତୀୟ ପ୍ରେମର ବିଷୟ କଣ ଜାଣ କହ । ଏହାଶୁଣି ଶ୍ରୀମନ୍ ରାମାନନ୍ଦରାୟ କହିଲେ କାନ୍ତା ପ୍ରେମହିଁ ପରିପୂର୍ଣ୍ଣ ପ୍ରେମ । ୬୩ ।

ତଥାହି ତତ୍ରୈବ (୧୦।୪୮।୬୦)—

ନାୟଂ ଶ୍ରିୟୋଽଙ୍ଗ ଉ ନିତାନ୍ତରତେଃ ପ୍ରସାଦଃ,
ସ୍ୱର୍ଯୋଷିତାଂ ନଳିନଗନ୍ଧରୁଚାଂ କୁତୋଽନ୍ୟାଃ
ରାସୋତ୍ସବେଽସ୍ୟ ଭୁଜଦଣ୍ଡଗୃହୀତକଣ୍ଠ—
ଲବ୍ଧାଶିଷାଂ ଯ ଉଦଗାଦ୍ ବ୍ରଜସୁନ୍ଦରୀଣାମ୍ । ୧୭।

ତଥାହି ତତ୍ରୈବ (୧୦।୩୨।୨)—

ତାସାମାବିରଭୂଚ୍ଛୌରିଃ ସ୍ମୟମାନମୁଖାମ୍ବୁଜଃ ।
ପୀତାମ୍ବରଧରଃ ସ୍ରଗ୍ବୀ ସାକ୍ଷାନ୍ମନ୍ମଥମନ୍ମଥଃ । ୧୮ ।

କୃଷ୍ଣପ୍ରାପ୍ତ୍ୟେର ଉପାୟ ବହୁବିଧ ହୟ ।
କୃଷ୍ଣପ୍ରାପ୍ତ୍ୟେର ତାରତମ୍ୟ ବହୁତ ଆଛୟ ।୭୪।
କିନ୍ତୁ ଯାର ଯେଇ ଭାବ—ସେଇ ସର୍ବୋତ୍ତମ ।
ତଟସ୍ଥ ହଇୟା ବିଚାରିଲେ ଆଛେ ତରତମ ।୭୫

ରାସୋତ୍ସବେ ଅସ୍ୟ— ଶ୍ରୀକୃଷ୍ଣସ୍ୟ ଭୁଜଦଣ୍ଡଗୃହୀତକଣ୍ଠଲବ୍ଧାଶିଷାଂ— ଭୁଜଦଣ୍ଡାଭ୍ୟାଂ ଆଲିଙ୍ଗିତଃ କଣ୍ଠଃ ଯେନ ତେନ ଲବ୍ଧା ଆଶିଷଃ ମନୋରଥାଃ ଯାଭିଃ ତାସାଂ ବ୍ରଜସୁନ୍ଦରୀଣାଂ ଯଃ ଅୟଂ ପ୍ରସାଦଃ ଉଦଗାତ୍-ଆବିର୍ଭୂତ ଅୟଂ ପ୍ରସାଦ ଅଙ୍ଗେ ନଦୀଶସ୍ୟ ଶ୍ରୀକୃଷ୍ଣସ୍ୟ ମୂର୍ତ୍ତିବିଶେଷେ ତସ୍ମିନ୍ ସଂସକ୍ତାୟାଃ ନଳିନଗନ୍ଧରୁଚାଂ ନଳିନସ୍ୟେବ ଗନ୍ଧୋରୁକ୍-କାନ୍ତିଶ୍ଚ ଯାସାଂ ତାସାଂ ସ୍ୱର୍ଯୋଷିତାଂ ବୈକୁଣ୍ଠସ୍ଥାନାଂ ଯୋଷିତାଂ ଭୂର୍ଲୀଳାପ୍ରଭୃତୀନାଂ ମଧ୍ୟେ ଉ ଅହୋ, ନିତାନ୍ତରତେଃ ପରପ୍ରେମଯୁକ୍ତାୟାଃ ଶ୍ରିୟଃ ଲକ୍ଷ୍ମ୍ୟାଅପି ନ-ନାଭୂତ୍ କୁତଃ ଅନ୍ୟାଃ ସର୍ବା ଏବସ୍ତ୍ରୀଜାତୟଃ ଦୂରତ ଏବ ପରାସ୍ତା । ୧୭ଶ ଶ୍ଲୋକ ।

ଶ୍ରୀମତ୍ ଉଦ୍ଧବ ବାକ୍ୟରେ ଗୋପୀମାନଙ୍କ ଭାବକୁ ଲକ୍ଷ୍ୟ କରି କହୁଅଛନ୍ତି ।

ରାସୋତ୍ସବରେ ଶ୍ରୀକୃଷ୍ଣଙ୍କର ଭୁଜଯୁଗଳଦ୍ୱାରା କଣ୍ଠେ ଆଲିଙ୍ଗନରୂପ ମନୋରଥ ଲାଭ-କାରିଣୀ ଶ୍ରୀ ବ୍ରଜଦେବୀମାନେ ଶ୍ରୀକୃଷ୍ଣଙ୍କଠାରୁ ଯେଉଁ ଜାତୀୟ କୃପାଲାଭ କରିଥିଲେ, ଶ୍ରୀକୃଷ୍ଣଙ୍କ ସ୍ୱରୂପ ଶ୍ରୀ ନାରାୟଣଙ୍କ ବୈକୁଣ୍ଠସ୍ଥାପ୍ରେୟସୀ ଭୂଲୀଳା ପ୍ରଭୃତିଙ୍କ ମଧ୍ୟରେ ପରମ ପ୍ରେମବତୀ ହେତୁ ତାଙ୍କର ସର୍ବଦା ବକ୍ଷଃସ୍ଥିତା ଯେ ଲକ୍ଷ୍ମୀଦେବୀ ସେ ସୁଦ୍ଧା ସେ ଜାତୀୟ କୃପାଲାଭ କରି ନାହାନ୍ତି । ଅନ୍ୟାନ୍ୟ ସ୍ତ୍ରୀମାନଙ୍କର କଥା ଆଉ କିଣ କହିବ । ୧୭ଶ ଶ୍ଳୋକାର୍ଥ ।

୧୮ଶ ଶ୍ଳୋକର ଅନ୍ୱୟ—ଆଦିଃ ୫ମ ପରି: ୨୩ଶ ଶ୍ଳୋକ । ସେହି ବିରହକାତରା ଗୋପୀମାନଙ୍କ ମଧ୍ୟରେ ସହାସ୍ୟବଦନ ପୀତାମ୍ବରଧାରୀ ପୁଷ୍ପମାଳାଳଙ୍କୃତ ସାକ୍ଷାତ୍ ଅପ୍ରାକୃତ ମଦନର ମୋହକ ରୂପରେ ଶ୍ରୀକୃଷ୍ଣ ଆବିର୍ଭୂତ ହେଲେ । (ଶ୍ରୀ ଗୋପୀଗୀତା ପରେ ଶ୍ରୀକୃଷ୍ଣଙ୍କ ପୁନର୍ମିଳନ ସମୟର ବିଷୟ) ୧୮ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ପ୍ରେମବଶ ହେତୁ ପ୍ରେମଦ୍ୱାରା ମିଳନ୍ତି । ଏହି ପ୍ରେମ କର୍ମଜ୍ଞାନଦ୍ୱାରା ଅନାବୃତ ଏବଂ ଅନ୍ୟ ବାସନାଶୂନ୍ୟତାମୂଳକ ଅଟେ । ଏହା ଶାନ୍ତରତିଠାରୁ ଆରମ୍ଭ ହୋଇ କାନ୍ତାପ୍ରେମରେ ପରିପୂର୍ଣ୍ଣତା ପ୍ରାପ୍ତ ହୋଇଅଛି । ତାହା ପୂର୍ବୋକ୍ତ ୫୮ ପୟାରର ତୃତୀୟ ପାଦରୁ ଆରମ୍ଭ କରି ୧୮ଶ ଶ୍ଳୋକଦ୍ୱାରା ଶ୍ରୀମତ୍ ରାୟରାମାନନ୍ଦ ନିରୂପଣ କରିଅଛନ୍ତି । ବର୍ତ୍ତମାନ ଏହି ପୟାରଠାରୁ ପରବର୍ତ୍ତୀ ୨୩ଶ ଶ୍ଳୋକ ପର୍ଯ୍ୟନ୍ତ ବିଚାରପୂର୍ବକ ତାହା ଦେଖାଉଅଛନ୍ତି ।

ଅର୍ଥାତ୍ ଶ୍ରୀକୃଷ୍ଣଙ୍କ କୃପାଲାଭ ନିମିତ୍ତ ନାନାପ୍ରକାର ସାଧନରୂପ କୌଶଳ ଅଛି କିନ୍ତୁ ଏ କୌଶଳ ଗୁଡ଼ିକର ଲକ୍ଷ୍ୟ ଏକ ହେଲେହେଁ ଏମାନଙ୍କର ପ୍ରକାର ଭେଦ ଏବଂ ପ୍ରାପ୍ତିର ପ୍ରକାର ଭେଦ ମଧ୍ୟ ଅଛି । ଏହା କେବଳ ନିରପେକ୍ଷଭାବରେ ବିଚାର କଲେ ବୁଝାଯାଏ । କିନ୍ତୁ ସାଧକ ନିଜର କୃତ କୌଶଳକୁ ସର୍ବୋତ୍ତମ ମନେ କରି ଅବଲମ୍ବନ କରିଥିବାରୁ ସେଥିରେ ତାଙ୍କର

ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ
ସ୍ଥାୟିଭାବଲହର୍ଯ୍ୟାମ୍ ( ୨୧ )—
ଯଥୋତ୍ତରମସୌ ସ୍ୱାଦବିଶେଷୋଲ୍ଲାସମୟ୍ୟପି ।
ରତିର୍ବାସନୟା ସ୍ୱାଦ୍ୱୀ ଭାସତେ କାପି
କସ୍ୟଚିତ୍ ॥ ୧୯ ॥
ପୂର୍ବ୍ବ ପୂର୍ବ୍ବ ରସେର ଗୁଣ ପରେ ପରେ ହୟ ।
ଦୁଇ-ତିନ-ଗଣନେ ପଞ୍ଚପର୍ଯ୍ୟନ୍ତ ବାଡୟ ॥୭୬॥
ଗୁଣାଧିକ୍ୟେ ସ୍ୱାଦାଧିକ୍ୟ ବାଢ଼େ ପ୍ରତିରସେ ।
ଶାନ୍ତ-ଦାସ୍ୟ-ସଖ୍ୟ-ବାତ୍ସଲ୍ୟେର ଗୁଣ ମଧୁରେତେ
ବୈସେ ॥ ୭୭ ॥
ଆକାଶାଦିର ଗୁଣ ଯେନ ପରପର ଭୂତେ ।
ଦୁଇ-ତିନ-କ୍ରମେ ବାଢ଼େ ପଞ୍ଚ ପୃଥିବୀତେ ॥୭୮॥
ପରିପୂର୍ଣ୍ଣ-କୃଷ୍ଣପ୍ରାପ୍ତି ଏଇ ପ୍ରେମାହୈତେ ।
ଏଇ ପ୍ରେମାର ବଶ କୃଷ୍ଣ-କହେ ଭାଗବତେ ॥୭୯॥

ପୂର୍ବ୍ବସ୍ୟ ଶାନ୍ତସ୍ୟ କୃଷ୍ଣନିଷ୍ଠବୁଦ୍ଧିଃ ଦାସ୍ୟେ ପୂର୍ବ୍ବସ୍ୟ ଏକଃ ଅସ୍ୟତ୍ତୁ ସେବେତ୍ୟେବଂ ଦ୍ୱୌଦାସ୍ୟେ, ସଖ୍ୟେପୂର୍ବ୍ବୟୋର୍ଦ୍ୱୌ ଅସ୍ୟତ୍ତୁ ବିଶ୍ରମ୍ଭ ଇତ୍ୟେବଂ ତ୍ରୟଃ ସଖ୍ୟେ । ବାତ୍ସଲ୍ୟେ ପୂର୍ବ୍ବେଷାଂ ତ୍ରୟ ଅସ୍ୟତ୍ତୁ ସ୍ନେହ ଇତ୍ୟେବଂ ଚତ୍ୱାରଃ ବାତ୍ସଲ୍ୟେ । ମଧୁରେ ପୂର୍ବ୍ବେଷାଂ ଚତ୍ୱାରଃ ଅସ୍ୟତ୍ତୁ ସ୍ୱାଙ୍ଗଦାନେନ କୃଷ୍ଣସୁଖୋତ୍ପାଦନମିତି ପଞ୍ଚଗୁଣା ମଧୁରେ । ୭୭ । ଚ. ଚ.

ଆକାଶାଦିରିତି । ଆକାଶସ୍ୟ ଗୁଣଃ ଶବ୍ଦଃ ତତୁବାୟୌ ଏତେନ ବାୟୌର୍ଦ୍ୱୌଗୁଣୌ ଶବ୍ଦସ୍ପର୍ଶୌ, ବାୟୋର୍ଦ୍ୱୌଗୁଣୌ ତେଜସି ଏତେନ ତେଜସସ୍ତ୍ରୟୋଗୁଣାଃ ଶବ୍ଦସ୍ପର୍ଶରୂପାଣି, ତେଜସଃ ତ୍ରୟୋଗୁଣାଃ ଜଳେ ଏତେନ ଜଳସ୍ୟ ଚତ୍ୱାରଃ ଗୁଣାଃ ଶବ୍ଦସ୍ପର୍ଶରୂପରସାଃ, ଜଳସ୍ୟ ଚତ୍ୱାରୋ ଗୁଣାଃ ପୃଥିବ୍ୟାଂ ଏତେନ ପୃଥିବ୍ୟାଃ ପଞ୍ଚଗୁଣାଃ ଶବ୍ଦସ୍ପର୍ଶରୂପରସଗନ୍ଧାଃ । ୭୮ । ଚ. ଚ.

ତତ୍ପ୍ରିତି ସର୍ବୋତ୍ତମତା ବିଦ୍ୟମାନ ହେତୁ ତାହାଙ୍କୁ ସେ ସର୍ବୋତ୍ତମ ବୋଲି ଗ୍ରହଣ କରନ୍ତି । ତେଣୁ ସେ ଅନ୍ୟକୌଶଳର ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କରନ୍ତି ନାହିଁ । ଯଦ୍ୟପି ବ୍ୟତୀତ ଦୃଷ୍ଟି ନିକ୍ଷେପ କଲେ ସୁଦ୍ଧା ସେ ସ୍ୱଅଭ୍ୟସ୍ତ କୌଶଳରେ ତୃପ୍ତିର ପରାକାଷ୍ଠା ପ୍ରାପ୍ତି ହେତୁ ତତ୍ପ୍ରତି ଲାଳସାଯୁକ୍ତ ହେବାକୁ ଅସମର୍ଥ ହୁଅନ୍ତି । ତେଣୁ ସାଧକମାନଙ୍କର ଆକାଂକ୍ଷିତ ରସହିଁ ପ୍ରତ୍ୟେକଙ୍କୁ ସର୍ବୋତ୍ତମ ଅଟେ । ଏସବୁସ୍ଥଳେ କେବଳ ନିରପେକ୍ଷ ବିଗ୍ରହକହିଁ ରସର ବୈଶିଷ୍ଟ୍ୟ ବୁଝିବାକୁ ସକ୍ଷମ । ୭୬ ।

୧୯ଶ ଶ୍ଳୋକର ଅନ୍ୱୟ—ଆଦି: ୪ର୍ଥ: ୫ମ ଶ୍ଳୋକ ।

ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର ଏହି ପଞ୍ଚବିଧ ରତିମଧ୍ୟରେ ପ୍ରଥମରୁ ପଶ୍ଚିମ ପର୍ଯ୍ୟନ୍ତ କ୍ରମେ ସ୍ୱାଦୁର ଆଧିକ୍ୟ ହେଲେହେଁ ଅର୍ଥାତ୍ ଶାନ୍ତ ଅପେକ୍ଷା ଦାସ୍ୟରେ ଦାସ୍ୟ ଅପେକ୍ଷା ସଖ୍ୟରେ ସଖ୍ୟ ଅପେକ୍ଷା ବାତ୍ସଲ୍ୟରେ ବାତ୍ସଲ୍ୟ ଅପେକ୍ଷା ଶୃଙ୍ଗାରରେ ସ୍ୱାଦୁର ବିଶେଷତ୍ୱ ହେଲେହେଁ ଭକ୍ତମାନଙ୍କ ରୁଚିଭେଦରେ କୌଣସି ରତି କାହାକୁ ରୁଚିକର ହୋଇଥାଏ । ୧୯ଶ ଶ୍ଳୋକାର୍ଥ ।

ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ଏହି ପଞ୍ଚରସ ମଧ୍ୟରୁ ପ୍ରଥମ ରସ ଶାନ୍ତରେ କେବଳ ଶାନ୍ତରସର ଗୁଣ ଶ୍ରୀକୃଷ୍ଣନିଷ୍ଠା ରହିଅଛି । ଏଥିରେ ଦାସ୍ୟାଦିରସର ଗୁଣ ନାହିଁ । କିନ୍ତୁ ଶାନ୍ତ ରସର ପରବର୍ତ୍ତୀ ଦାସ୍ୟରସରେ ଶାନ୍ତରସର ଗୁଣ କୃଷ୍ଣନିଷ୍ଠା ଏବଂ ତଦତିରିକ୍ତ ଦାସ୍ୟରସର ନିଜଗୁଣ ସେବା ଏହି ଦୁଇଗୁଣ ରହିଅଛି । କିନ୍ତୁ ସେଥିରେ ସଖ୍ୟାଦିର ଗୁଣ ନାହିଁ । ସଖ୍ୟରସରେ ଶାନ୍ତର ଗୁଣ କୃଷ୍ଣନିଷ୍ଠା, ଦାସ୍ୟର ଗୁଣ ସେବା ଏବଂ ଏତଦ୍ୱ୍ୟତୀତ ସଖ୍ୟରସର ନିଜଗୁଣ ଅସଙ୍କୋଚ ମମତା ଏହି ତିନିଗୁଣ ରହିଅଛି । କିନ୍ତୁ ଏଥିରେ ବାତ୍ସଲ୍ୟାଦିର ଗୁଣ ନାହିଁ, ବାତ୍ସଲ୍ୟ ରସରେ ଶାନ୍ତର କୃଷ୍ଣନିଷ୍ଠା, ଦାସ୍ୟର ସେବା, ସଖ୍ୟର ମମତା ଏବଂ ଏତଦ୍ୱ୍ୟତୀତ ବାତ୍ସଲ୍ୟରସର ନିଜଗୁଣ ସ୍ନେହ ବା ଅତ୍ୟନ୍ତିକ ମମତା ଏହି ଚାରିଗୁଣ ରହିଅଛି । କିନ୍ତୁ ଏଥିରେ ମଧୁରରସର ଗୁଣ ନାହିଁ

| | |
|---|---|
| ତଥାହି (ଭାଃ—୧୦।୮୨।୪୪)—<br>ମୟି ଭକ୍ତିର୍ହି ଭୂତାନାମମୃତତ୍ୱାୟ କଳ୍ପତେ । | ଦିଷ୍ଟ୍ୟା ଯଦାସୀନ୍ମତ୍‌ସ୍ନେହୋ ଭବତୀନାଂ<br>ମଦାପନଃ । ୨୦ । |

ମଧୁର ରସରେ ଶାନ୍ତର ନିଷ୍ଠା, ଦାସ୍ୟର ସେବା, ସଖ୍ୟର ମମତା, ବାତ୍ସଲ୍ୟର ମମତା ଏବଂ ଏତଦ୍‌ବ୍ୟତୀତ ମଧୁରରସର ନିଜାଙ୍ଗଦାନେ କୃଷ୍ଣସୁଖୋତ୍ପାଦନ ବା ପରମ ଆତ୍ମୀୟତା ରହିଅଛି ।

ନିରପେକ୍ଷ ଭାବରେ ବିଚାର କଲେ ପୂର୍ବୋକ୍ତ ପ୍ରକାରରେ ପୂର୍ବ ପୂର୍ବ ରସମାନଙ୍କର ଗୁଣ ପର ପର ରସମାନଙ୍କରେ ବିଦ୍ୟମାନ ଥିବା ଦେଖାଯାଏ । ଅର୍ଥାତ୍ ସେମାନଙ୍କ ମଧ୍ୟରେ ତାରତମ୍ୟ ଦେଖାଯାଏ । ଏହି ତାରତମ୍ୟ ଅନୁସାରେ ସ୍ୱାଦୁର ତାରତମ୍ୟ ଯେ ନିଶ୍ଚୟ ରହିଅଛି ତାହା ମଧ୍ୟ ରହିଅଛି । ଯେଉଁ ରସର ଗୁଣ ଯେଉଁ ରସଠାରୁ ଅଧିକ ତାହାର ସ୍ୱାଦୁ ମଧ୍ୟ ଅଧିକ । ଅତଏବ ଶାନ୍ତାଦି ପଞ୍ଚରସ ମଧ୍ୟରେ ମଧୁର ରସରେ ପଞ୍ଚରସର ଗୁଣ ପରିପୂର୍ଣ୍ଣ ରୂପରେ ଥିବାରୁ ତାହାର ସ୍ୱାଦୁ ମଧ୍ୟ ପରିପୂର୍ଣ୍ଣ ଅଟେ ।

ଏହା ଦାର୍ଶନିକ ଉଦାହରଣଦ୍ୱାରା ଦେଖାଉ ଅଛନ୍ତି ଯେ, ଆକାଶ, ବାୟୁ, ଅଗ୍ନି, ଜଳ ଏବଂ ଭୂମି ଏହି ପଞ୍ଚମହାଭୂତ ଏମାନଙ୍କ ମଧ୍ୟରେ ଆକାଶରେ ଶବ୍ଦଗୁଣ ରହିଅଛି । ଏତଦ୍‌ବ୍ୟତୀତ ଅନ୍ୟ କୌଣସି ଗୁଣ ନାହିଁ । ବାୟୁରେ ଆକାଶର ଶବ୍ଦଗୁଣ ଏବଂ ବାୟୁର ସ୍ପର୍ଶଗୁଣ ଏହି ଦୁଇ ଗୁଣ ରହିଅଛି । ଅଗ୍ନିରେ ଆକାଶର ଶବ୍ଦଗୁଣ ବାୟୁର ସ୍ପର୍ଶ ଓ ଅଗ୍ନିର ନିଜଗୁଣ, ତେଜ ବା ରୂପ ଗୁଣ ରହିଅଛି । ଜଳରେ ଆକାଶର ଶବ୍ଦ, ବାୟୁର ସ୍ପର୍ଶ, ଅଗ୍ନିର ରୂପ, ଓ ଜଳର ନିଜଗୁଣ ରସ ଏହି ଚାରିଗୁଣ ରହିଅଛି ଏବଂ ପୃଥିବୀରେ ଆକାଶର ଶବ୍ଦ, ବାୟୁର ସ୍ପର୍ଶ, ଅଗ୍ନିର ରୂପ, ଜଳର ରସ ଏବଂ ପୃଥିବୀର ନିଜ ଗୁଣ ଗନ୍ଧ ଏହି ପଞ୍ଚଗୁଣ ରହିଅଛି । ଏହିହେତୁ ମହାଭୂତମାନଙ୍କ ମଧ୍ୟରେ ପୃଥିବୀ ଶ୍ରେଷ୍ଠ ଭୂତ, ଏହି ପ୍ରକାରରେ ବିଚାରଦ୍ୱାରା ଦେଖାଯାଏ ଯେ, ମଧୁରରସ ବା କାନ୍ତପ୍ରେମ ଭଜନଦ୍ୱାରା ଶ୍ରୀକୃଷ୍ଣ ପରିପୂର୍ଣ୍ଣ ରୂପରେ ମିଳନ୍ତି । ଅର୍ଥାତ୍ ଶ୍ରୀକୃଷ୍ଣ ଏହି ପ୍ରେମର ଅଧୀନ ହୁଅନ୍ତି । ଏହାର ଭାବ ଏହି ଯେ, ପ୍ରତ୍ୟେକ ରସ ନିଜନିଜ ଭାବରେ ପରିପୂର୍ଣ୍ଣ ହେଲେହେଁ ପୂର୍ବ ପୂର୍ବ ରସ ପର ପର ରସର ସହିତ ଅନ୍ତର୍ଭୂକ୍ତ ହେବାରୁ ସେଠାରେ ପରିପୂର୍ଣ୍ଣ ହୁଅନ୍ତି । ଏହିପ୍ରକାରେ ରସମାନଙ୍କର ପୂର୍ଣ୍ଣତା ଓ ପରିପୂର୍ଣ୍ଣତା କ୍ରମଗତରେ ମଧୁର ରସରେ ଶାନ୍ତାଦି ଚାରି ରସ ପରିପୂର୍ଣ୍ଣତା ପ୍ରାପ୍ତ ହୁଅନ୍ତି । ଏବଂ ମଧୁର ରସ ସ୍ୱୟଂ ଅନପେକ୍ଷିତ ହେବାରୁ ଅର୍ଥାତ୍ ଶେଷ ସୀମା ପ୍ରାପ୍ତ ହେବାରୁ ନିଜେ ନିଜର ପୂର୍ଣ୍ଣତାରେ ମଧ୍ୟ ପରିପୂର୍ଣ୍ଣ । ଅତଏବ ମଧୁର ରସ ସର୍ବରସର ଆକର ରୂପରେ ସ୍ୱୟଂ ପରିପୂର୍ଣ୍ଣ । ଏହି ପରିପୂର୍ଣ୍ଣତାଦ୍ୱାରା ଶ୍ରୀକୃଷ୍ଣ ପରିପୂର୍ଣ୍ଣ ରୂପରେ ବା ସର୍ବୋତ୍କୃଷ୍ଟ ରୂପରେ ମିଳନ୍ତି ।୭୭। ୭୮ । ୭୯ ।

୨୦ ଶତ ଶ୍ଳୋକର ଅନ୍ୱୟ—ଆଦିଃ ୪ର୍ଥ ପରିଚ୍ଛେଦ ୩୨ଶ ଶ୍ଳୋକ । ଗୋପୀମାନଙ୍କ ପ୍ରତି ଶ୍ରୀକୃଷ୍ଣ କହୁଅଛନ୍ତି । ପ୍ରାଣିମାନେ ମୋହର ନବବିଧା ଭକ୍ତି ମଧ୍ୟରୁ ଯେ କୌଣସି ଏକ ଅଙ୍ଗ ଭକ୍ତି ଦ୍ୱାରା ସଂସାର ମୋକ୍ଷଲାଭ କରି ଗୋଲୋକକୁ ଯାନ୍ତି । କିନ୍ତୁ ତୁମ୍ଭମାନଙ୍କର ମୋ ପ୍ରତି ଯେଉଁ ସ୍ନେହ ତଦ୍ୱାରା ମୁଁ ଆପଣାକୁ ଭାଗ୍ୟବାନ୍ ମନେ କରେଁ । କାରଣ ମୁଁ ଯେଉଁଠାରେ ଥାଏ ନା କାହିଁକି, ସେ ସ୍ନେହ ମୋତେ ବଳପୂର୍ବକ ଆଣି ତୁମ୍ଭମାନଙ୍କ ସହିତ ମିଳିତ କରାଏ ।

ତାତ୍ପର୍ଯ୍ୟ—ଯେଉଁମାନେ ମୋତେ ଈଶ୍ୱର ଜ୍ଞାନରେ ସଂଭ୍ରମର ସହିତ ଭକ୍ତି କରନ୍ତି, ସେମାନଙ୍କୁ ମୋର ଅଧୀନ କରି ମୋର ଲୋକକୁ ନିଏ । କିନ୍ତୁ ଯେଉଁମାନେ ମୋତେ ପରମ-ଆତ୍ମୀୟ ଭାବରେ ରାଗମାର୍ଗରେ ଭକ୍ତି କରନ୍ତି, ମୁଁ ସେମାନଙ୍କଦ୍ୱାରା ଆକୃଷ୍ଟ ହୋଇ ସେମାନଙ୍କର ଅଧୀନ ହୁଏଁ । ୨୦ଶ ଶ୍ଳୋକାର୍ଥ ।

କୃଷ୍ଣେର ପ୍ରତିଜ୍ଞା ଦୃଢ଼ ସର୍ବକାଲ ଅଛେ ।
ଯେ ଯୈଛେ ଭଜେ କୃଷ୍ଣ ତାରେ ଭଜେ ତୈଛେ ॥
ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ (୪।୧୧)—
ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ
ଭଜାମ୍ୟହମ୍ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ
ସର୍ବଶଃ ।୨୧।

ଏଇ ପ୍ରେମାର ଅନୁରୂପ ନା ପାରେ ଭଜିତେ ।
ଅତଏବ ଋଣୀ ହୟ—କହେ ଭାଗବତେ ।୨୧।

ଶ୍ରୀ ଭଗବାନଙ୍କର ଏହାହିଁ ସନାତନ ପ୍ରତିଜ୍ଞା ଏବଂ ଏହା ଶ୍ରୀମଦ୍‌ଭଗବଦ୍‌ଗୀତାରେ ୪ର୍ଥ ଅଧ୍ୟାୟ ୧୧ଶ ଶ୍ଳୋକରେ ସେ ମଧ୍ୟ ଶ୍ରୀ ଅର୍ଜୁନଙ୍କୁ କହିଅଛନ୍ତି ଯେ ଯେ କୌଣସି ବ୍ୟକ୍ତି ଯେ କୌଣସି ପ୍ରକାରରେ ମୋତେ ଆଶ୍ରୟ କରେ ମୁଁ ସେ ବ୍ୟକ୍ତିର ଭାବ ଅନୁରୂପ ଫଳଦାନ କରେଁ । ଅର୍ଥାତ୍ ଯେ କୌଣସି ବ୍ୟକ୍ତି ଯେ କୌଣସି ବର୍ଣ୍ଣାଶ୍ରମର କି ସମ୍ପ୍ରଦାୟର ଅଧୀନରେ ରହି ଯେ କୌଣସି ଦେବଦେବୀ ରୂପରେ ଆରାଧ୍ୟ ଓ ଭଜନୀୟ ବୋଲି ଯାହାଙ୍କୁ ଯେଉଁ କାମନାରେ ବା ନିଷ୍କାମରେ ବା ଯେ ପ୍ରକାରରେ ଭଜନ କରନ୍ତୁ ନା କାହିଁକି, ତଦ୍ୱାରା ମୋହର ଭଜନ କରାହୁଏ । ମୁଁ ସର୍ବାଶ୍ରୟୀ ହେତୁ ଅଂଶକଳା ଶକ୍ତି ଆବେଶାଦି ରୂପରେ ସେହି ସେହି ଭଜନକାରୀମାନଙ୍କର ଭଜନୀୟ ହୋଇ ସେମାନଙ୍କୁ ସେମାନଙ୍କର ଭଜନଫଳ ଦାନ କରେଁ । ମନୁଷ୍ୟ ଜ୍ଞାନତଃ ହେଉ ବା ଅଜ୍ଞାନତଃ ହେଉ ଯେ ପ୍ରକାର ଭଜନ କରେ ତାହାର ସେହି ପ୍ରକାର ଭଜନ କରେଁ । ଏତଦ୍ୱାରା ପ୍ରତିପାଦିତ ହେଉଅଛି ଯେ, ମନୁଷ୍ୟ ମାତ୍ରହିଁ ଯେ କୌଣସି ପ୍ରକାର କର୍ମଦ୍ୱାରା ଜ୍ଞାନଦ୍ୱାରା ବା ଭକ୍ତିଦ୍ୱାରା ଯାହାକରନ୍ତି ତଦ୍ୱାରା ପରିଣାମରେ ଭଗବାନ୍‌ଙ୍କର ଆରାଧନା କରାହୁଏ ଏବଂ ସେମାନେ ଶ୍ରୀ ଭଗବାନଙ୍କଠାରୁ ତଦନୁରୂପ ଫଳ ପ୍ରାପ୍ତ ହୁଅନ୍ତି ।୨୦।

୨୧ଶ ଶ୍ଳୋକର ଅନ୍ୱୟ ଆଦି: ୪ର୍ଥପରି: ୨୮ ଶ୍ଳୋକ । ହେ ପାର୍ଥ ! ମୁଁ ଏକ ହୋଇ ହେଁ ବହୁରୂପୀ ଏବଂ ସର୍ବେଶ୍ୱର, ଯେଉଁ ମନୁଷ୍ୟ ମୋର ଯେଉଁ ରୂପକୁ ଯେଉଁଭାବରେ ଭଜନା କରେ ମୁଁ ସେହି ରୂପରେ ତାହାର ସେହି ଭାବ ଅନୁଯାୟୀ ଅନୁଗ୍ରହ କରେଁ, ଅତଏବ ମନୁଷ୍ୟମାନେ ସର୍ବପ୍ରକାରରେ ସର୍ବମାର୍ଗଦ୍ୱାରା ମୋତେହିଁ ଭଜନା କରନ୍ତି । ୨୧ଶ ଶ୍ଳୋକାର୍ଥ ।

( ଉପରୋକ୍ତ ପୟାରରେ ମଧ୍ୟ ଏହି ଶ୍ଳୋକର ଅର୍ଥ ପ୍ରକାଶିତ ହୋଇଅଛି )

ଶ୍ରୀମାନ୍ ମହାପ୍ରଭୁଙ୍କର ଉପରୋକ୍ତ ବାକ୍ୟ ଅର୍ଥାତ୍ ସେ ଭଜନାନୁରୂପ ଫଳଦାନ କରନ୍ତି ଏହା ସାର୍ବଜନୀନ ହେଲେହେଁ କାନ୍ତାପ୍ରେମଦ୍ୱାରା ଗୋପୀମାନଙ୍କ ଭଜନର ଅନୁରୂପ ଫଳଦାନ କରିବାକୁ ଅକ୍ଷମ ହୋଇ ଶ୍ରୀକୃଷ୍ଣ ଗୋପୀମାନଙ୍କ ନିକଟରେ ଋଣୀ ରହିଲେ । ଏ କଥା ଶ୍ରୀମଦ୍‌ଭାଗବତରେ ୧୦ମ ସ୍କନ୍ଧ ୩୨ ଅଧ୍ୟାୟ ୨୧ ଶ୍ଳୋକରେ ସେ ନିଜେ ସ୍ୱୀକାର କରିଅଛନ୍ତି ।

ଏଠାରେ ପ୍ରଶ୍ନ ହୋଇପାରେ ଯେ, ଶ୍ରୀକୃଷ୍ଣତ ଗୋପୀମାନଙ୍କର ଭଜନ ଅନୁରୂପ ଫଳ ରାସାଦିଲୀଳାଦ୍ୱାରା ଦେଇଅଛନ୍ତି । ତେବେ ଅନୁରୂପ ଫଳଦାନ ନ କରି ଋଣୀହେବେ କାହିଁକି ଏହି କଥାରି ଉତ୍ତରି ପରବର୍ତ୍ତୀ ଶ୍ଳୋକ ବାହାର କଲେ ଜଣାଯିବ । ୨୧ ।

| | |
|---|---|
| ତଥାହି (ଭାଃ - ୧୦।୩୨।୨୨) —<br>ନ ପାରୟେଽହଂ ନିରବଦ୍ୟସଂଯୁଜାଂ<br>ସ୍ୱସାଧୁକୃତ୍ୟଂ ବିବୁଧାୟୁଷାପି ବଃ । | ଯା ମାଭଜନ୍ ଦୁର୍ଜ୍ଜରଗେହଶୃଙ୍ଖଳାଃ,<br>ସଂବୃଶ୍ଚ୍ୟ ତଦ୍‌ବଃ ପ୍ରତିଯାତୁ ସାଧୁନା । ୨୨ । |

୨୨ଶ ଶ୍ଳୋକର ଅନ୍ୱୟ— ଅଧ: ୪ର୍ଥ ପରିଚ୍ଛେଦ ୨୯ଶ ଶ୍ଳୋକ ।

ଅର୍ଥ— ରାସ ଅନ୍ତର୍ଦ୍ଧାନ ପର ମିଳନରେ ଶ୍ରୀ ଗୋପୀମାନଙ୍କ ପ୍ରତି ଶ୍ରୀକୃଷ୍ଣ କହୁଅଛନ୍ତି, ହେ ଗୋପୀମାନେ ! ତୁମ୍ଭେମାନେ ଦୁଚ୍ଛେଦ୍ୟ ଗୃହରୂପ ଶଙ୍ଖଳ ( ଅର୍ଥାତ୍ ଆତ୍ମୀୟ ସ୍ୱଜନ ଓ ଐହିକ ପାରଲୌକିକ ସ୍ୱଜନର ଲୋକମର୍ଯ୍ୟାଦାଦି ସମ୍ବନ୍ଧ ) ସମ୍ପୂର୍ଣ୍ଣରୂପେ ଛେଦନକରି ମୋତେ ଭଜନ କରିବାଦ୍ୱାରା କଷ୍ଟପଥରେ ( ଅର୍ଥାତ୍ ତୁମ୍ଭମାନଙ୍କର ସୁଖ କାମନା ତ୍ୟାଗ କରି କେବଳ ମୋତେ ସୁଖଦେବା ସକାଶେ ) ଯେ ମୋର ସଙ୍ଗକରୁଅଛ, ଏ ପ୍ରକାର ଯେ ତୁମ୍ଭମାନଙ୍କର ସାଧୁକୃତ୍ୟ (ପ୍ରେମ) ତାହାର ପ୍ରତିଦାନ ମୁଁ ଦେବପରମାୟୁ ପ୍ରାପ୍ତ ହେଲେ ସୁଦ୍ଧା କରିପାରିବି ନାହିଁ, ଏଣୁ ତୁମ୍ଭମାନଙ୍କର ସାଧୁକୃତ୍ୟଦ୍ୱାରା ତୁମ୍ଭମାନଙ୍କର ସାଧୁକୃତ୍ୟର ପ୍ରତିଦାନ ହେଉ । ଅର୍ଥାତ୍ ତୁମ୍ଭମାନଙ୍କର ସାଧୁକୃତ୍ୟର ନିକଟ ମୁଁ ଋଣୀ ରହିଲି ।

ବିଷଦାର୍ଥ— ଶ୍ରୀମଦ୍‌ଭାଗବତ ବର୍ଣ୍ଣିତ ଶରତ୍‌ରାସରେ ଶ୍ରୀକୃଷ୍ଣ ଶ୍ରୀ ଗୋପୀମାନଙ୍କ ସହିତ ମିଳିତ ହୋଇ ଶ୍ରୀ ଯମୁନାପୁଲିନରେ ରାସ ଆରମ୍ଭ କରୁଁ କରୁଁ ଅନ୍ତର୍ହିତ ହେଲେ । ଗୋପୀମାନେ ବହୁ ଅନ୍ୱେଷଣ କରି ତାଙ୍କୁ ନ ପାଇ ଶେଷରେ ପୁଲିନରେ ବସି ତାହାଙ୍କର ରୂପଗୁଣର କୀର୍ତ୍ତନ କରୁ କରୁ ସେ ଆସି ମିଳିତହେଲେ । ଏହି ମିଳନର ପର ଗୋପୀମାନେ ତାହାଙ୍କର ସତ୍କାରପୂର୍ବକ କେତେକ ପ୍ରଶ୍ନ କଲେ । ଶ୍ରୀକୃଷ୍ଣ ସେ ସମସ୍ତ ପ୍ରଶ୍ନର ଉତ୍ତର ଦେଇ ଉପରୋକ୍ତ ଶ୍ଳୋକଦ୍ୱାରା ତାଙ୍କର ବକ୍ତବ୍ୟ ଉପସଂହାରପୂର୍ବକ ପୁନଃ ରାସଲୀଳାରେ ପ୍ରବୃତ୍ତହେଲେ । ଏହି ଶ୍ଳୋକର ପୂର୍ବ ଶ୍ଳୋକରେ ଶ୍ରୀକୃଷ୍ଣ ଗୋପୀମାନଙ୍କୁ କହିଅଛନ୍ତି ଯେ, ତୁମ୍ଭେମାନେ ଯୁକ୍ତାଯୁକ୍ତ ବିବେଚନା ନ କରି ମୋ ସକାଶେ ସ୍ୱର୍ଗାଦିଲୋକର କାମନା ତ୍ୟାଗକରି ଧର୍ମପରୀକ୍ଷା ନ କରି ବେଦ ଧର୍ମକୁ ବିସର୍ଜନ ଦେଇଅଛ ଓ ମତ୍ପ୍ରତି ସ୍ନେହଯୁକ୍ତ ହୋଇ ଆତ୍ମୀୟ ସ୍ୱଜନଆଦି ଦୈହିକ ସମସ୍ତ ତ୍ୟାଗ କରିଅଛ । ଏତଦ୍ଦ୍ୱାରା ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ସକାଶେ ଗୃହଶୃଙ୍ଖଳର ତ୍ୟାଗ ପରିଚୟ ମିଳୁଅଛି । ବର୍ତ୍ତମାନ ଏହି ଉପସଂହାର ଶ୍ଳୋକରେ ଶ୍ରୀକୃଷ୍ଣ କହୁଅଛନ୍ତି ଯେ — ଜୀବ ଯେଉଁ ଦୁସ୍ତ୍ୟାଜ୍ୟ ଗୃହଶୃଙ୍ଖଳା ଅର୍ଥାତ୍ ଦେହଦୈହିକ ସମ୍ବନ୍ଧ ବା ନିଜଦେହ ଓ ଦେହସମ୍ବନ୍ଧୀୟ ଭାବଗାସ୍ତ ବସ୍ତୁରେ ମମତା ତ୍ୟାଗ କରିପାରନ୍ତି ନାହିଁ, ତାହା ତ୍ୟାଗକରି ତୁମ୍ଭେମାନେ ନିରବଚ୍ଛିନ୍ନଭାବରେ ମୋ ପ୍ରତି ଯେପରି ଅନୁରକ୍ତ ହୋଇଅଛ, ଅର୍ଥାତ୍ ମୋ ସାକ୍ଷାତରେ ଏବଂ ମୋର ଅସାକ୍ଷାତ୍‌ରେ ମୋର କୃତସତ୍କାରରେ ବା ଅସତ୍କାରରେ କୌଣସି ପ୍ରକାରରେ ବିଚଳିତ ନ ହୋଇ ଏକ ଭାବରେ ଯେ ମୋପ୍ରତି ଅନୁରାଗଯୁକ୍ତ ହୋଇଅଛ, କେବଳ ତାହାର ପରିଚୟ ପାଇବା ସକାଶେ ମୁଁ ଆତ୍ମଗୋପନ କରି ନିକଟରେ ରହି ତୁମ୍ଭମାନଙ୍କର ସନ୍ତାପ ଶୁଣୁଥିଲି । ତାହା ଶୁଣି ମୁଁ ଏହାହିଁ ସ୍ଥିରକଲି ଯେ ତୁମ୍ଭମାନଙ୍କର ମୋ ପ୍ରତି ଯେଉଁ ପ୍ରେମର ଭଜନ ତାହାର ଅନୁରୂପ ପ୍ରତିଦାନ କରିବାକୁ ମୁଁ ଅକ୍ଷମ, କାରଣ ମୋତେ ଅନେକକାଳ ଭଜନର ଅନୁରୂପ ପ୍ରତିଦାନ କରିବାକୁ ହୁଏ । ସୁତରାଂ ତୁମ୍ଭମାନଙ୍କ ତୁଲ୍ୟ ଏକନିଷ୍ଠତା ମୋଠାରେ ହୋଇପାରୁ ନାହିଁ । ଏଣୁ ତୁମ୍ଭମାନଙ୍କ ନିକଟ ମୁଁ ଋଣୀ ରହିଲି । ( ଏଠାରେ ଆକାଙ୍କ୍ଷା ରହିଲା, ଭଗବାନ୍ ପୂର୍ଣ୍ଣ, ଅତଏବ ତାହାଙ୍କର ସମସ୍ତହିଁ

ଯଦ୍ୟପି କୃଷ୍ଣ ସୌନ୍ଦର୍ଯ୍ୟ — ମାଧୁର୍ଯ୍ୟେର ଧୂର୍ଯ୍ୟ ।
ବ୍ରଜଦେବୀର ସଙ୍ଗେ ତାଁର ବାଢ଼ୟେ ମାଧୁର୍ଯ୍ୟ ।୭୨।
ତଥାହି (ଭାଃ - ୧୦।୩୩।୭)
ତତ୍ରାତିଶୁଶୁଭେ ତାଭିର୍ଭଗବାନ୍ ଦେବକୀସୁତଃ ।
ମଧ୍ୟେ ମଣୀନାଂ ହୈମାନାଂ ମହାମାରକତୋ
ଯଥା । ୩।

ପ୍ରଭୁ କହେ—ଏହି ସାଧ୍ୟାବଧି ସୁନିଶ୍ଚୟ ।
କୃପା କରି କହ ଯଦି ଆଗେ କିଛୁ ହୟ । ୭୩ ।

ତତ୍ର – ରାସମଣ୍ଡଳେ ହୈମାନାଂ-ସ୍ୱର୍ଣ୍ଣରଚିତାନାଂ ମଣୀନାଂ ଦ୍ୱୟୋଃ ଦ୍ୱୟୋର୍ମଧ୍ୟେ ମହାମାରକତଃ ଯଥା-ଇବ ତାଭିଃ-ଗୋପୀଭିଃ ଵୃତଃ ଭଗବାନ୍ ଦେବକୀସୁତଃ ଅତିଶୁଶୁଭେ । ୨୩ ଶ୍ଳୋକ ।

ପୂର୍ଣ୍ଣହେବାର କଥା ତେବେ ଏଠାରେ ଅପୂର୍ଣ୍ଣତା କାହିଁକି ? ) ଏହାର ଉତ୍ତର ଏହି ଯେ,— ଏହି ଶ୍ରୀ ବୃନ୍ଦାବନଲୀଳାରେ ଗୋପୀପ୍ରେମର ଏହାହିଁ ବିଶେଷତ୍ୱ, ଏହି-ଅପୂର୍ଣ୍ଣତା ପରବର୍ତ୍ତି ପୂର୍ଣ୍ଣତାର ଅପେକ୍ଷିକ, ଏହାଦ୍ୱାରା ଜଣାଯାଉ ଯେ ଏହି ଶ୍ରୀ ବ୍ରଜେନ୍ଦ୍ରନନ୍ଦନ ରୂପରେ ଏହି ଅପୂର୍ଣ୍ଣତା ରହିଲା । ଏବଂ ପରେ ଏହା ପୂର୍ଣ୍ଣତା ପ୍ରାପ୍ତହେବ । ତେଣୁ ପରମକାରୁଣିକ ଶ୍ରୀକୃଷ୍ଣ ଏହି ଅପୂର୍ଣ୍ଣତାର ପୂର୍ଣ୍ଣତା ସମ୍ପାଦନାର୍ଥ ଶ୍ରୀଶଚୀନନ୍ଦନ ଗୌରଧାମ ରୂପ ଧାରଣକଲେ । ଏବଂ ତଦ୍ୱାରା ସ୍ୱୟଂ ଏହି ଋଣ ମୁକ୍ତ ଜଗନ୍ମୟରେ ଆଦାୟ ଦେଇ ଏହି କଳିହତ ଜୀବମାନଙ୍କୁ ନାମପ୍ରେମ ପ୍ଳାବନରେ ଆପ୍ଳୁତ କରିଥିଲେ । ବର୍ତ୍ତମାନ ସେହି ପ୍ରେମର କଣାଭିଳାଷରେ ଯେଉଁମାନେ ଧାବିତ ସେମାନେହିଁ ସାଧୁ, ଏବଂ ସେମାନଙ୍କର ଶ୍ରୀଚରଣରେ କୋଟି କୋଟି ପ୍ରଣାମ । ୭୨ଶ ଶ୍ଳୋକାର୍ଥ ।

ଯଦିଚ ଶ୍ରୀକୃଷ୍ଣ ସ୍ୱୟଂ ରସରାଜ ହେତୁ ତାହାଙ୍କର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟରସର କାର୍ଯ୍ୟାପମସ୍ତ ତଥାପି ସେହି ମାଧୁର୍ଯ୍ୟରସର ସାରମୟ ଶ୍ରୀକୃଷ୍ଣଙ୍କ ଶୋଭା ଯାହାଙ୍କ ଅପଙ୍ଗେର୍ବ ତାହା ବ୍ରଜଦେବୀମାନଙ୍କର ସଙ୍ଗଗୁଣରୁ ବୃଦ୍ଧିପ୍ରାପ୍ତ ହୁଏ, ଅର୍ଥାତ୍ ବ୍ରଜଦେବୀମାନଙ୍କର ଭାବର ଉଦ୍ଦୀପନାରେ ଉଦ୍ଦୀପ୍ତ ବା ତରଙ୍ଗାୟିତ ହୁଏ । ୭୨ ।

ଯେପରି ସ୍ୱାଭାବିକସୁନ୍ଦର ଇନ୍ଦ୍ରନୀଳମଣି ସ୍ୱର୍ଣ୍ଣକାନ୍ତି ମଣିମାନଙ୍କ ମଧ୍ୟରେ ଗ୍ରଥିତହେଲେ ମହାମାରକତ ମଣିର ଶୋଭାପ୍ରାପ୍ତ ହୁଏ, ସେହିପରି ସେହି ରାସମଣ୍ଡଳରେ ଦୁଇ ଦୁଇ ଗୋପୀମାନଙ୍କ ମଧ୍ୟରେ ଏକ ଏକ ରୂପରେ ଭଗବାନ୍ ଦେବକୀସୁତ କୃଷ୍ଣ ଶୋଭାପ୍ରାପ୍ତ ହୋଇଥିଲେ ।

ଭାବାର୍ଥ— ସ୍ୱାଭାବିକ ସୁନ୍ଦର ଇନ୍ଦ୍ରନୀଳମଣି ନିଜର କାନ୍ତିରେ ଲୋକମାନଙ୍କର ମନୋହରଣ କରେ, କିନ୍ତୁ ତାହା ଯଦି ସ୍ୱାଭାବିକ ମନୋହାରୀ ସ୍ୱର୍ଣ୍ଣକାନ୍ତି ମଣିମାନଙ୍କ ମଧ୍ୟରେ ବିନ୍ୟସ୍ତ ହୁଏ ତାହାହେଲେ ଉକ୍ତ ଇନ୍ଦ୍ରନୀଳମଣି ସ୍ୱର୍ଣ୍ଣକାନ୍ତି ମଣିମାନଙ୍କ ମଧ୍ୟରେ ପୁଷ୍ଟହୋଇ ଅନିର୍ବଚନୀୟ ମନୋହର କାନ୍ତି ଲାଭକରେ । ସେହିପରି ସର୍ବସୌନ୍ଦର୍ଯ୍ୟସାର ଶ୍ରୀକୃଷ୍ଣ ସର୍ବସୌନ୍ଦର୍ଯ୍ୟମୟୀ ବ୍ରଜଦେବୀମାନଙ୍କଦ୍ୱାରା ଆଲିଙ୍ଗିତ ହେବାରୁ ସେମାନଙ୍କ ସୌନ୍ଦର୍ଯ୍ୟଦ୍ୱାରା ପରିପୁଷ୍ଟ ଶ୍ରୀକୃଷ୍ଣ-ସୌନ୍ଦର୍ଯ୍ୟ ଅତ୍ୟଧିକ ମନୋହର ହୋଇଥିଲା । ୨୩ଶ ଶ୍ଳୋକାର୍ଥ ।

ଶ୍ରୀ ରାମାନନ୍ଦରାୟଙ୍କର ଶ୍ରୀ ବ୍ରଜଦେବୀମାନଙ୍କର ଭଜନୀୟ କାନ୍ତାପ୍ରେମ କଥା ଶୁଣି ଶ୍ରୀମନ୍ ମହାପ୍ରଭୁ କହିଲେ ଯେ —ଏହି ଜାତୀୟ କାନ୍ତାପ୍ରେମ ବା ମଧୁର ଭଜନହିଁ ସାଧ୍ୟର ଅବଧି (ଶ୍ରେଷ୍ଠ) ଏହା ଠିକ୍ କିନ୍ତୁ ହେଲେହେଁ ଏହି ଭାବର ଅତିରିକ୍ତ ଅଣ୍ଡ ଯଦି କିଛୁ ଗୂଢ଼ରହସ୍ୟ ଥାଏ, ତେବେ କୃପାକରି ତାହା ମୋତେ ଶୁଣାଅ । ୭୩ ।

ରାୟ କହେ-ଇହାର ଆଗେ ପୁଛେ ହେନଜନେ।
ଏତଦିନ ନାହି ଜାନି ଆଛୟେ ଭୁବନେ ।୭୪।
ଇହାର ମଧ୍ୟେ ରାଧାର ପ୍ରେମ—ସାଧ୍ୟଶିରୋମଣି ।
ଯାହାର ମହିମା ସର୍ବଶାସ୍ତ୍ରେତେ ବାଖାନି ।୭୫।
ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୪୫)
ପଦ୍ମପୁରାଣ ବଚନମ୍ ।—
ଯଥା ରାଧା ପ୍ରିୟା ବିଷ୍ଣୋସ୍ତସ୍ୟାଃ କୁଣ୍ଡଂ
ପ୍ରିୟଂ ତଥା ।
ସର୍ବଗୋପୀଷୁ ସୈବୈକା ବିଷ୍ଣୋ-
ରତ୍ୟନ୍ତବଲ୍ଲଭା । ୨୪ ।

ତଥାହି (ଭାଃ —୧୦।୩୦।୨୮ )—
ଅନୟାରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ
ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ
ଯାମନୟଦ୍ରହଃ । ୨୫ ।

ଏହା ଶୁଣି ରାୟ ରାମାନନ୍ଦ ବିସ୍ମିତ ହୋଇ କହିଲେ ଯେ,—ମନୁଷ୍ୟମାନଙ୍କ ମଧ୍ୟରେ କେହି କେହି ମହାଭାଗ୍ୟବାନ୍ ଶ୍ରୀକୃଷ୍ଣଙ୍କର କୃପାପାତ୍ର ଭକ୍ତ ଏହି ବ୍ରଜର ମଧୁର ଭଜନ ପର୍ଯ୍ୟନ୍ତ ସାଧ୍ୟନିରୂପଣ କରି ତାହା ସାଧନରୂପରେ ଆଶ୍ରୟ କରନ୍ତି, କିନ୍ତୁ ଏତଦଁତିରିକ୍ତ କୌଣସି ନିଗୂଢ଼ଭାବର ବିଷୟ ଯେ ମନୁଷ୍ୟ ଭାବନାରେ ପ୍ରବେଶ କରିପାରେ ସେ ଜ୍ଞାନ ଏତେକାଳ ମୋର ନ ଥିଲା ।

ଏଠାରେ ଆକାଂକ୍ଷା ଏହି ଯେ ପ୍ରଶ୍ନକର୍ତ୍ତା ସ୍ୱୟଂ ଭଗବାନ୍ ହେତୁ ଏହି ନିଗୂଢ଼ରସର ଅବଗାହୀ, ତେଣୁ ଏହା ଆସ୍ୱାଦନ କରିବାକୁ ଇଚ୍ଛା ପ୍ରକାଶ କରିଅଛନ୍ତି । ଏହାଭିନ୍ନ ରାୟ ରାମାନନ୍ଦ ଉକ୍ତ ପ୍ରଶ୍ନର ଉତ୍ତର ଦେଲେ । ୭୪ ।

ଏହି ବ୍ରଜଭାବର କାନ୍ତାପ୍ରେମ ମଧ୍ୟରେ ଶ୍ରୀମତୀ ଶ୍ରୀରାଧାଙ୍କର ପ୍ରେମହିଁ ସର୍ବଶ୍ରେଷ୍ଠ ସାଧ୍ୟ ବସ୍ତୁ । ୭୫ ।

୨୪ଶ ଶ୍ଲୋକର ଅନ୍ୱୟ—ଆଦିଃ ୪ର୍ଥ ପରିଚ୍ଛେଦ ୩୯ଶ ଶ୍ଲୋକ ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଯେପରି ପ୍ରିୟ, ତାହାଙ୍କ କୁଣ୍ଡ ମଧ୍ୟ ( ଶ୍ରୀ ରାଧାକୁଣ୍ଡ ) ଶ୍ରୀକୃଷ୍ଣଙ୍କର ସେହିପରି ପ୍ରିୟ, ଯେହେତୁ ସମସ୍ତ ଗୋପୀମାନଙ୍କ ମଧ୍ୟରେ ଏକା ରାଧାହିଁ ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ପ୍ରିୟ । ୨୪ଶ ଶ୍ଲୋକାର୍ଥ ।

୨୫ଶ ଶ୍ଲୋକର ଅନ୍ୱୟ—ଆଦିଃ ୪ର୍ଥ ପରିଚ୍ଛେଦ ୧୪ଶ ଶ୍ଲୋକ ।

ଶ୍ରୀକୃଷ୍ଣଙ୍କ ଉତ୍କୃଷ୍ଟ ଆରାଧନା ହେତୁ ଶ୍ରୀମତୀ ବୃଷଭାନୁସୁତାଙ୍କର ରାଧାନାମ ହୋଇ ଥିବାରୁ ସ୍ୱହୃତ୍ପକ୍ଷ ଗୋପୀମାନେ ବିପକ୍ଷଦଳ ଗୋପୀମାନଙ୍କ ସହିତରେ ରାଧାନାମ ନ କହି ଶ୍ରୀ ଯଶୋଦାନନ୍ଦନ ଶ୍ରୀ ଗୋବିନ୍ଦଙ୍କର ପ୍ରେୟସୀ ଶ୍ରେଷ୍ଠତ୍ୱ ଜଣାଇବା କାରଣ ଛଳରେ ଏହି ପ୍ରକାର ଗୁଣବର୍ଣ୍ଣନାଦ୍ୱାରା ଶ୍ରୀରାଧାଙ୍କର ନାମ ବ୍ୟକ୍ତ କରୁଅଛନ୍ତି, ଯଥା—

ଭଗବାନ୍ ଈଶ୍ୱର ହରି ( ସର୍ବଦୁଃଖହାରୀ ) ନିଶ୍ଚୟ ଏହାଙ୍କ ଆରାଧନାଦ୍ୱାରା ବଶୀଭୂତ ହୋଇଅଛନ୍ତି । ଯେହେତୁ ଶ୍ରୀ ଯଶୋଦାନନ୍ଦନ ଗୋବିନ୍ଦ ପ୍ରୀତ ହୋଇ ଆମ୍ଭମାନଙ୍କୁ ତ୍ୟାଗକରି ଏହାଙ୍କୁ (ଶ୍ରୀରାଧାଙ୍କୁ) ଆମ୍ଭମାନଙ୍କର ଦୁର୍ଗମ୍ୟ ଏକାନ୍ତ ସ୍ଥାନକୁ ନେଇଅଛନ୍ତି । ୨୫ଶ ଶ୍ଲୋକାର୍ଥ ।

ପ୍ରଭୁ କହେ-ଆଗେ କହ, ଶୁନି ପାଇଯେ ସୁଖେ ।
ଅପୂର୍ବ ଅମୃତନଦୀ ବହେ ତୋମାର ମୁଖେ ।୭୬।
ଚୁରି କରି ରାଧାକେ ନିଲ ଗୋପୀଗଣେର ଡରେ ।
ଅନ୍ୟାପେକ୍ଷା ହୈଲେ ପ୍ରେମର ଗାଢ଼ତା ନା
ସ୍ଫୁରେ । ୭୭।
ରାଧା-ଲାଗି ଗୋପୀରେ ଯଦି ସାକ୍ଷାତ କରେ ତ୍ୟାଗ ।
ତବେ ଜାନି ରାଧାୟ କୃଷ୍ଣେର ଗାଢ଼ ଅନୁରାଗ ।୭୮
ରାୟ କହେ—ତାହା ଶୁନ ପ୍ରେମେର ମହିମା ।
ତ୍ରିଜଗତେ ନାହି ରାଧାପ୍ରେମେର ଉପମା । ୭୯ ।
ଗୋପୀଗଣେର ରାସନୃତ୍ୟ-ମଣ୍ଡଲୀ ଛାଡ଼ିୟା ।
ରାଧା ଚାହି ବନେ ଫିରେ ବିଲାପ କରିୟା ।୮୦।

ଶ୍ରୀରାୟ ରାମାନନ୍ଦ ଉପରୋକ୍ତ ଶ୍ଳୋକଦ୍ୱୟ ଦ୍ୱାରା ଶ୍ରୀମତୀ ରାଧା ଯେ ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ପ୍ରିୟା ଅର୍ଥାତ୍ ଶ୍ରୀରାଧାଙ୍କର ପ୍ରେମ ଯେ ସମସ୍ତ ଗୋପୀପ୍ରେମ ଅପେକ୍ଷା ଶ୍ରେଷ୍ଠ ତାହା ପ୍ରତିପାଦନ କଲେ । ଶ୍ରେଷ୍ଠ ଦୁଇପ୍ରକାରରେ ହୁଏ ଯଥା—ତୁଳନାରେ କ୍ରମଉତ୍କର୍ଷ ଯାହାର ସର୍ବଶେଷ ତାହାହିଁ ଶ୍ରେଷ୍ଠ, କିନ୍ତୁ ତାହା ଅନ୍ୟାପେକ୍ଷିତ ଅର୍ଥାତ୍ ଅନ୍ୟ ସହିତ ତୁଳନା କଲେ ଜଣାଯାଏ ବୋଲି ସେହି ଶ୍ରେଷ୍ଠତା ଅନ୍ୟର ଅପେକ୍ଷା କରେ । ଦ୍ୱିତୀୟପ୍ରକାର ଶ୍ରେଷ୍ଠତ୍ୱ ଅତୁଳନୀୟ, ଯାହାକି ତୁଳନାକୁ ଅପେକ୍ଷା କରେନା, ଅର୍ଥାତ୍ ସ୍ୱୟଂ ସିଦ୍ଧ ; ଏଠାରେ ଶ୍ରୀରାଧାଙ୍କର ଯେ ପ୍ରେମ ତାହି ଉପରୋକ୍ତ ୨୪ଶ ଶ୍ଳୋକଦ୍ୱାରା ତୁଳନାରେ ଶ୍ରେଷ୍ଠତ୍ୱ ଲାଭ କରିଅଛି, ଏବଂ ୨୫ଶ ଶ୍ଳୋକଦ୍ୱାରା ତାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଅନୁରାଗମଧ ତୁଳନାରେ ଶ୍ରେଷ୍ଠତ୍ୱ ଲାଭକଲା । ଅର୍ଥାତ୍ ୨୫ ଶ୍ଳୋକର ଭାବ ଏହି ଯେ କାଳେ ଗୋପୀମାନେ ମନରେ ଦୁଃଖ କରିବେ ଏହିହେତୁ ସେମାନଙ୍କ ଅଜ୍ଞାତସାରରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ରାସମଣ୍ଡଳରୁ ହରଣ କରିନେଇ ନିଭୃତକ୍ରୀଡ଼ା କରିଥିଲେ, ଏତଦ୍ୱାରା ଶ୍ରୀରାଧାପ୍ରେମ ଓ ଶ୍ରୀକୃଷ୍ଣଅନୁରାଗ ଅନ୍ୟାପେକ୍ଷିତ ପ୍ରମାଣିତ ହେଲେ । କେହି ଅନ୍ୟାନପେକ୍ଷିତ କିମ୍ବା ଅତୁଳନୀୟ ପ୍ରମାଣିତ ହେଲେ ନାହିଁ । କିନ୍ତୁ ଶ୍ରୀରାଧାପ୍ରେମ ବାସ୍ତବିକ ତୁଳନାରେ ଶ୍ରେଷ୍ଠ କି ସ୍ୱୟଂସିଦ୍ଧ ଶ୍ରେଷ୍ଠ, ଏହି ଗୂଢ଼ରହସ୍ୟ ଏହି କ୍ଷୁଦ୍ରମନୁଷ୍ୟମାନଙ୍କୁ ଜଣାଇବା ସକାଶେ ପରମ କୃପାମୟ ଶ୍ରୀମହାପ୍ରଭୁ ଶ୍ରୀଳରାମରାୟଙ୍କୁ କହିଲେ ଯେ, ତୁମ୍ଭର ମୁଖରୁ ଅପୂର୍ବ ଅମୃତ ସ୍ରୋତ ନିର୍ଗତ ହେଉଅଛି । ଅତଏବ ଶ୍ରୀରାଧାପ୍ରେମ ବିଷୟ ସ୍ଫୁଟଭାବରେ କୁହ । ତୁମ୍ଭର ପ୍ରମାଣିତ ଶ୍ଳୋକଦ୍ୱାରା ଦେଖାଯାଏ ଯେ ଶ୍ରୀରାଧା ପ୍ରେମ ଅନ୍ୟାପେକ୍ଷିତ ଅର୍ଥାତ୍ ତୁଳନାରେ ଶ୍ରେଷ୍ଠ, ଯେହେତୁ ଅପରାପର ଗୋପୀମାନଙ୍କର ପ୍ରେମ-କ୍ଷୋଭ ଭୟରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ଶ୍ରୀରାସମଣ୍ଡଳରୁ ଚୋରି କରିନେଲେ । ଏତଦ୍ୱାରା ଶ୍ରୀରାଧାଙ୍କ ପ୍ରେମର ଓ ଶ୍ରୀକୃଷ୍ଣଙ୍କ ଅନୁରାଗର ଗାଢ଼ତା ଅର୍ଥାତ୍ ସାହଜକଭାବର ବୈଶିଷ୍ଟ୍ୟ ପ୍ରକାଶ ହେଲା ନାହିଁ ଶ୍ରୀରାଧାପ୍ରେମ ଓ ଶ୍ରୀକୃଷ୍ଣଙ୍କର ଅନୁରାଗ ଏ ଉଭୟହିଁ ଯଦି ଅନନ୍ୟାପେକ୍ଷିତ ହୁଅନ୍ତି, ତେବେ ଶ୍ରୀରାଧାପ୍ରେମର ସାଧ ସର୍ବୋତ୍କର୍ଷ ସ୍ୱୀକୃତ ହେବ । ଅତଏବ ଶ୍ରୀକୃଷ୍ଣ ଯଦି ଶ୍ରୀରାଧାଙ୍କ ସକାଶେ ସମସ୍ତ ଗୋପୀମାନଙ୍କୁ ସେମାନଙ୍କ ଜ୍ଞାତସାରରେ ରାସମଣ୍ଡଳରୁ ଛାଡ଼ି ଚାଲିଯାନ୍ତି ତାହାହେଲେ ରାଧା ପ୍ରେମର ଅତୁଳନୀୟ ଶ୍ରେଷ୍ଠତ୍ୱ ପ୍ରତିପାଦିତ ହେବ । ଏ ସମ୍ବନ୍ଧରେ ଆପଣ କିଛି ଜାଣନ୍ତି କି ? ଶୁଣାଇ ସୁଖୀ କରନ୍ତୁ । ୭୬।୭୭।୭୮।

ଶ୍ରୀମାନ୍ ମହାପ୍ରଭୁଙ୍କର ଏ ପ୍ରଶ୍ନ ଶୁଣି ଶ୍ରୀରାୟ ରାମାନନ୍ଦ କହିଲେ ଶ୍ରୀରାଧାପ୍ରେମ ସ୍ୱାଭାବିକ ଅତୁଳନୀୟ । ତ୍ରିଜଗତରେ ଏପରି କୌଣସି ବସ୍ତୁ ନାହିଁ, ଯାହାକି ସେ ପ୍ରେମର ସହିତ ଉପମା ସ୍ୱରୂପରେ ସ୍ୱତା ବ୍ୟବହାର ହୋଇପାରେ ଅର୍ଥାତ୍ ସେ ପ୍ରେମ ଅନୁପମ, ତାହାର ସେହିହିଁ ଉପମା, ଏହାର ପ୍ରମାଣ ଏହି ଯେ ବସନ୍ତରାସରେ ଶ୍ରୀକୃଷ୍ଣ ଶ୍ରୀରାଧା ଓ ଗୋପୀମଣ୍ଡଳୀ ସହିତ ନୃତ୍ୟ କରୁଥିଲେ, ଏହିସମୟରେ ଶ୍ରୀରାଧା ମାନରେ ରାସମଣ୍ଡଳୀ ଛାଡ଼ି ଚାଲିଗଲେ, ଶ୍ରୀକୃଷ୍ଣ ତାହା ଦେଖି ରାସସ୍ଥଳୀରେ ଗୋପୀମାନଙ୍କୁ ଛାଡ଼ି ଶ୍ରୀରାଧାଙ୍କୁ ଅନ୍ୱେଷଣ କରି ବନେ ବନେ ବିଳାପ କରିବାକୁ ଲାଗିଲେ ।୭୯।୮୦।

ତଥାହି ଶ୍ରୀଗୀତଗୋବିନ୍ଦେ (୩।୧।୨)—
କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଲାମ୍ ।
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ ।୨୭।
ଇତସ୍ତତସ୍ତାମନୁସୃତ୍ୟ ରାଧିକା-
ମନଙ୍ଗବାଣବ୍ରଣଖିନ୍ନମାନସଃ ।
କୃତାନୁତାପଃ ସ କଳିନ୍ଦନନ୍ଦିନୀ-
ତଟାନ୍ତକୁଞ୍ଜେ ବିଷସାଦ ମାଧବଃ ।୨୮।

ଏ ଦୁଇ ଶ୍ଳୋକେର ଅର୍ଥ ବିଚାରିଲେ ଜାନି ।
ବିଚାରିତେ ଉଠେ ଯେନ ଅମୃତେର ଖନି ୮୧।

ଅନଙ୍ଗବାଣବ୍ରଣଖିନ୍ନମାନସଃ—କାମବାଣ ବ୍ରଣେନଖିନ୍ନଂ ମାନସଂ ଯସ୍ୟ ସଃ, କୃତାନୁତାପଃ—ଅହୋଃତସ୍ୟା ସର୍ବୋତ୍ତମତାଂ ଜାନତାପି ମୟାଧୟାମଧ୍ୟା କଥମେବଂ କୃତଂ ଏବଂ କୃତ ପଶ୍ଚାତ୍ତାପା ଯେନ ସଃ, ସଃ (ଏବ) ମାଧବଃ ରାଧାନୁରାଗଭଙ୍ଗଚନ୍ତାକୁଳଃ ଇତସ୍ତତଃ ତାଂ ରାଧିକାଂ ଅନୁସୃତ୍ୟ-ଅନ୍ୱିଷ୍ୟ କଳିନ୍ଦନନ୍ଦିନୀତଟାନ୍ତକୁଞ୍ଜେ-କଳିନ୍ଦନନ୍ଦିନ୍ୟାଃ ଯମୁନାୟାଃ ତଟପ୍ରାନ୍ତକୁଞ୍ଜେ ବିଷସାଦ—ବିଷାଦଂ ଚକାର। ୨୮ଶ ଶ୍ଳୋକ।

୨୭ଶ ଶ୍ଳୋକର ଅନ୍ୱୟ—ଆଦି: ୪ର୍ଥପରି: ୪୦ଶ ଶ୍ଳୋକ ।

ଅର୍ଥ—ଶ୍ରୀରାଧିକା ଯେପରି ଶ୍ରୀକୃଷ୍ଣଙ୍କ ସକାଶେ ଉତ୍କଣ୍ଠିତା ହୋଇଥିଲେ ତାହା ବର୍ଣ୍ଣନ କଲାପରି ଶ୍ରୀକୃଷ୍ଣ ଯେ ଶ୍ରୀରାଧାଙ୍କ ସକାଶେ ସେହିପରି ଉତ୍କଣ୍ଠିତ ତାହା ଦେଖାଇବା ସକାଶେ କବି ଶ୍ରୀ ଜୟଦେବ କହୁଅଛନ୍ତି, ଯେ—

ଶ୍ରୀକୃଷ୍ଣଙ୍କ ରାସ ଅଭିଳାଷ ବନ୍ଧନରେ ଶୃଙ୍ଖଳାରୂପା ଅର୍ଥାତ୍ ରାସକ୍ରୀଡ଼ାରେ ଏକମାତ୍ର କାରଣଭୂତା ସେହି ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣ ହୃଦୟରେ ଧାରଣପୂର୍ବକ ଅପର ଗୋପୀମାନଙ୍କୁ ପରିତ୍ୟାଗ କରି ଚାଲିଗଲେ । ୨୭ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ରାସମଣ୍ଡଳରୁ ହରାଇ ଅନୁତାପ ପୂର୍ବକ ବନ ଅନ୍ୱେଷଣ କରି ଏବଂ ଶ୍ରୀରାଧାଙ୍କର ସ୍ମୃତି ହେତୁ କାମକ୍ଲିଷ୍ଟ ହୋଇ ଶ୍ରୀରାଧାଙ୍କୁ ନପାଇ ଯମୁନାତଟ କୁଞ୍ଜରେ ବସି ବିଷାଦ କରିବାକୁ ଲାଗିଲେ । ୨୮ଶ ଶ୍ଳୋକାର୍ଥ ।

ଶ୍ରୀରାୟ ରାମାନନ୍ଦ କହିଲେ, ଯେପରି ଖଣି ଖୋଳୁ ଖୋଳୁ କ୍ରମେ କ୍ରମେ ଉତ୍କୃଷ୍ଟ ରତ୍ନ ମିଳେ, ସେହିପରି ଏହି ଉପରୋକ୍ତ ଦୁଇଟି ଶ୍ଳୋକକୁ ବିଚାର କଲେ ତଦ୍ଦ୍ୱାରା କ୍ରମେ କ୍ରମେ ପ୍ରେମାମୃତର ଉତ୍କୃଷ୍ଟତା ଲାଭ ହେବ । ୮୧ ।

ଶତକୋଟି-ଗୋପୀସଙ୍ଗେ ରାସବିଲାସ ।
ତାର ମଧ୍ୟେ ଏକ ମୂର୍ତ୍ତି ରହେ ରାଧାପାଶ ।୮୨।
ସାଧାରଣ ପ୍ରେମ ଦେଖି ସର୍ବତ୍ର ସମତା ।
ରାଧାର କୁଟିଲ ପ୍ରେମ ହଇଲ ବାମତା ।୮୩।

ତଥାହି ଉଜ୍ଜ୍ୱଳନୀଳମଣୌ, ଶୃଙ୍ଗାରଭେଦ-କଥନେ । ୪୬ ।
ଅହେରିବ ଗତିଃ ପ୍ରେମ୍ଣଃ ସ୍ୱଭାବକୁଟିଲା ଭବେତ୍ ।
ଅତୋ ହେତୋରହେତୋଶ୍ଚ ଯୂନୋର୍ମାନ ଉଦଞ୍ଚତି । ୨୮ ।

---

ପ୍ରେମ୍ଣୋ ଗତି-ସ୍ୱଭାବଃ କୁଟିଲା-ବକ୍ରା ଭବେତ୍, ଅହେରିବ-ମହାନାଗବତ୍ ଅତୋଽସ୍ମାତ୍ ସକାଶାତ୍ ଯୂନୋଃ ନାୟକନାୟିକୟୋଃ ମାନଃ ଉଦଞ୍ଚତି, ଉଦ୍‌ଗମୋ ଭବତି, ହେତୋରହେତୋଶ୍ଚ କାରଣାକାରଣାଭ୍ୟାଂ ମାନୋ ଭବେଦିତ୍ୟର୍ଥଃ । ୨୮ ଶ୍ଳୋକ ।

ଏକମୂର୍ତ୍ତି ଇତ୍ୟସ୍ୟ କୋଽଭିପ୍ରାୟ ଇତ୍ୟାହ ପ୍ରକାଶଭେଦେନ ଶ୍ରୀକୃଷ୍ଣସ୍ୟ ସର୍ବତ୍ରାବସ୍ଥିତଃ କାମ୍ପା ଏକସ୍ୟାମୂର୍ତ୍ତ୍ୟା ଅର୍ବୈବସ୍ଥିତଃ ନାନ୍ୟତ୍ର ଇତି । ତତୋଦେ୍ୟ ଏକଦୈବ ସର୍ବସ୍ମିତଂ ଦୃଷ୍ଟ୍ୱା ଶ୍ରୀରାଧାୟା ବାମତ୍ୱେ ତସ୍ୟ ଐଶ୍ୱର୍ଯ୍ୟଜ୍ଞାନେନ ବାମତା ନସ୍ୟାତ୍ । ଅନ୍ୟେ ସ୍ୱନିକଟସ୍ଥିତ ଜ୍ଞାନେନ କୁତୋ ବାମତା, ଅତ ଉଚ୍ୟତେ ଅନ୍ୟାଭିଃ ସାର୍ଦ୍ଧଂ ସାଧାରଣଂ ଶ୍ରୀକୃଷ୍ଣ ଦୃଷ୍ଟ୍ୱା । ଅଂ ସ୍ୟୋଦସ୍ୟାତ୍ ସ୍ୱପାର୍ଶ୍ୱ ସ୍ଥଂ ଦୃଷ୍ଟ୍ୱା । ଅଧୁନୈବ ଆଗତ୍ୟ ମତ୍ପାର୍ଶ୍ୱେ ଗୋଽୟମିତ୍ୟେବେ ମହାମାୟାବାଦି ଜ୍ଞାନମିତି ସର୍ବଂ ସଙ୍ଗତଂ । ୮୨ । ଚ. ଚ. ।

ରାଧାର ଇତି— ରାଧାୟା ବାମତାଽଭୂତ୍ ଯତଃ ପ୍ରେମାକୁଟିଳଃ, ପ୍ରେମେ ଇତି ପାଠେ ତଦା-କୁଟିଳପ୍ରେମ୍ଣା ବାମତାଭୂଦିତ୍ୟର୍ଥଃ ।୮୩ । ଚ. ଚ. ।

---

ଶ୍ରୀକୃଷ୍ଣ ଶତ କୋଟି ଗୋପୀ ସଙ୍ଗ ବସନ୍ତକାଳରେ ରାସକ୍ରୀଡ଼ା କରୁଥିଲେ । ଶ୍ରୀରାଧା ଉଚ୍ଚ ସ୍ଥାନ ନିକଟରେ ରହି ଶ୍ରୀକୃଷ୍ଣ ଏବଂ ଗୋପୀମାନଙ୍କର ରାସକ୍ରୀଡ଼ା ଦେଖୁଥିଲେ । ଶ୍ରୀକୃଷ୍ଣ ମହାପ୍ରକାଶଦ୍ୱାରା (ଅର୍ଥାତ୍ ପ୍ରତ୍ୟେକ ଗୋପୀମାନଙ୍କ ନିକଟ ଏକ ମୂର୍ତ୍ତିରେ ରହି) ରାସକ୍ରୀଡ଼ା କରୁଥିବାରୁ ଶ୍ରୀରାଧାଙ୍କ ନିକଟ ମଧ୍ୟ ଯୁଗପତ୍ ଏକମୂର୍ତ୍ତିରେ ଥିଲେ । କିନ୍ତୁ ରାଧା ପ୍ରେମବିହ୍ୱଳା ହେତୁ ତାଙ୍କଠାରେ ଯେ ଶ୍ରୀକୃଷ୍ଣ ବିଦ୍ୟମାନ, ଏ ଜ୍ଞାନ ନ ଥିଲା । ସୁତରାଂ ସେ ଶ୍ରୀକୃଷ୍ଣଙ୍କୁ ଏକମୂର୍ତ୍ତିରେ ଅନ୍ୟାନ୍ୟ ଗୋପୀମାନଙ୍କ ସହିତ କ୍ରୀଡ଼ାପରାୟଣ ଦେଖି ଏବଂ ନିଜ ସମ୍ବନ୍ଧରେ ଦୃଷ୍ଟି ନ ଥିବାରୁ ଶ୍ରୀକୃଷ୍ଣ ଯେ ଏକମୂର୍ତ୍ତିରେ ତାଙ୍କ ନିକଟରେ ବିଦ୍ୟମାନ, ତାହା ସେ ଜାଣି ନ ପାରି ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ବିହାର ଦେଖୁ ଦେଖୁ ଆପଣା ଆଡ଼କୁ ଦୃଷ୍ଟି ନିକ୍ଷେପ କରି ନିଜ ପାର୍ଶ୍ୱରେ ଶ୍ରୀକୃଷ୍ଣଙ୍କୁ ଦେଖି ମନେ କଲେ ଯେ, ଏ ବଡ଼ ମାୟାବୀ । ଏ ଏହିକ୍ଷଣି ଅନ୍ୟାନ୍ୟ ଗୋପୀମାନଙ୍କ ସହିତ ସାଧାରଣ ଭାବରେ କ୍ରୀଡ଼ା କରୁଥିଲେ । କିନ୍ତୁ ହଠାତ୍ ମୋତେ ଦେଖି ମୋର ମନ ତୁଷ୍ଟି କରିବା ସକାଶେ ମୋ ପାଶରେ ଆସି ଉପସ୍ଥିତ ହେଲେ । ଅତଏବ ମୋର ସହିତ ସାଧାରଣ ନାୟିକା ପରି ବ୍ୟବହାର କରୁଅଛନ୍ତି, ଏହି ଭାବରେ ଶ୍ରୀରାଧାଙ୍କ ମାନ ହେଲା । ଅର୍ଥାତ୍ ପ୍ରେମ ସ୍ୱାଭାବିକ କୁଟିଳ ହେତୁ ସେଥିରେ ଅକାରଣରେ ବାମତା ହୁଏ । ଏଠାରେ କାରଣର ଛାୟାସ୍ପର୍ଶ ମାତ୍ର, ଶ୍ରୀରାଧାଙ୍କ ସ୍ୱାଭାବିକ କୁଟିଳ ପ୍ରେମରେ ବାମତା ଜାତ ହେଲା । ୮୨ ।

ମହାନାଗର ଗତି ତୁଲ୍ୟ ପ୍ରେମର ସ୍ୱଚ୍ଛନ୍ଦଗତିହିଁ ସ୍ୱଭାବତଃ ବକ୍ର । ଏ ହେତୁ ମାନର କାରଣ ଥାଉ ବା ନ ଥାଉ, ନାୟକ ନାୟିକାଙ୍କ ମଧ୍ୟରେ ମାନ ଉଦୟ ହୋଇଥାଏ । ୨୮ଶ୍ଳୋକାର୍ଥ ।

କ୍ରୋଧ କରି ରାସ ଛାଡ଼ି ଗେଲା ମାନ କରି ।
ତାଁରେ ନା ଦେଖିୟା ବ୍ୟାକୁଳ ହଇଲା ଶ୍ରୀହରି ।
ସମ୍ୟକ୍ ବାସନା କୃଷ୍ଣେର ଇଚ୍ଛା ରାସଲୀଲା ।
ରାସଲୀଲା-ବାସନାତେ ରାଧିକା ଶୃଙ୍ଖଲା ।୮୫।
ତାହା ବିନୁ ରାସଲୀଲା ନାହି ଭାୟ ଚିତ୍ତେ ।
ମଣ୍ଡଲୀ ଛାଡ଼ିୟା ଗେଲା ରାଧା ଅନ୍ୱେଷିତେ ।୮୬।
ଇତସ୍ତତଃ ଭ୍ରମି କାହାଁ ରାଧା ନା ପାଇୟା ।
ବିଷାଦ କରେନ କାମ-ବାଣେ ଖିନ୍ନ ହୈୟା ।୮୭।
ଶତକୋଟି ଗୋପୀତେ ନହେ କାମ-ନିର୍ବାପଣ ।
ଇହାତେଇ ଅନୁମାନି ଶ୍ରୀରାଧିକାର ଗୁଣ ।୮୮।
ପ୍ରଭୁ କହେ— ଯେ ଲାଗି ଆଇଲାଙ ତୋମା-ସ୍ଥାନେ
ସେଇ-ସବ-ରସବସ୍ତୁତତ୍ତ୍ୱ ହୈଲ ଜ୍ଞାନେ ।୮୯।

ଏବେ ସେ ଜାନିଲ ସେବ୍ୟ-ସାଧ୍ୟେର ନିର୍ଣ୍ଣୟ ।
ଆଗେ ଆର କିଛୁ ଶୁନିବାର ମନ ହୟ ।୯୦।
କୃଷ୍ଣେର ସ୍ୱରୂପ କହ— ରାଧିକା ସ୍ୱରୂପ ।
ରସ କୋନ୍ ତତ୍ତ୍ୱ, ପ୍ରେମ କୋନ୍ ତତ୍ତ୍ୱରୂପ ? ।୯୧।
କୃପା କରି ଏଇ ତତ୍ତ୍ୱ କହ ତ ଆମାରେ ।
ତୋମା ବିନା କେହୋ ଇହା ନିରୂପିତେ ନାରେ ।୯୨।
ରାୟ କହେ— ଇହା ଆମି କିଛୁଇ ନା ଜାନି ।
ଯେ ତୁମି କହାଓ ସେଇ କହି ଆମି ବାଣୀ ।୯୩।
ତୋମାର ଶିକ୍ଷାୟ ପଡ଼ି— ଯେନ ଶୁକେର ପାଠ ।
ସାକ୍ଷାତ୍ ଈଶ୍ୱର ତୁମି, କେ ବୁଝେ ତୋମାର
ନାଟ ? ।୯୪।
ହୃଦୟେ ପ୍ରେରଣ କର, ଜିହ୍ୱାୟ କହାଓ ବାଣୀ ।
କି କହିୟେ— ଭାଲ-ମନ୍ଦ କିଛୁଇ ନା ଜାନି ।୯୫।

ଉପରୋକ୍ତ କାରଣରୁ ଶ୍ରୀରାଧା ମାନିନୀ ହୋଇ ରାସମଣ୍ଡଳୀରୁ ଚାଲିଗଲେ । ଶ୍ରୀକୃଷ୍ଣ ରାଧାଙ୍କୁ ନ ଦେଖି ବ୍ୟାକୁଳ ହେଲେ, କାରଣ ଶ୍ରୀରାଧିକାହିଁ ଶ୍ରୀକୃଷ୍ଣଙ୍କର ରାସଲୀଳାବିଷୟକ ବାସନାର ସମ୍ୟକ୍ ସାର ବା ଲକ୍ଷ୍ୟ ବସ୍ତୁ ଏବଂ ଏହି ହେତୁ ଶ୍ରୀରାଧାହିଁ ଏକା ଶ୍ରୀକୃଷ୍ଣଙ୍କ ରାସଲୀଳା ବାସନାର ଶୃଙ୍ଖଳା । ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ରାସଲୀଳା କରିବାର ଯେ ବାସନା ସେ ଏକା ରାଧାଙ୍କ ଠାରେ ଶୃଙ୍ଖଳିତ ବା ଆବଦ୍ଧ । ଅର୍ଥାତ୍ ଶ୍ରୀରାଧାଙ୍କୁ ଅବଲମ୍ବନ କରି ରାସଲୀଳା ହୋଇ ପାରେ, ତାହାଙ୍କ ଛଡ଼ା ହୋଇ ପାରେ ନାହିଁ । ଏହେତୁ ଶ୍ରୀରାଧା ରାସସ୍ଥଳୀ ଛାଡ଼ି ଚାଲିଯିବାରୁ ଅପରାପର ଶତକୋଟି ଗୋପୀମାନଙ୍କ ସହିତ ବିହାର କରିବାଦ୍ୱାରା ଶ୍ରୀକୃଷ୍ଣଙ୍କ ରାସବାସନା ତୃପ୍ତ ହେଲା ନାହିଁ । ତେଣୁ ଶ୍ରୀକୃଷ୍ଣ ଗୋପୀମାନଙ୍କୁ ତ୍ୟାଗ କରି ସେମାନଙ୍କର ମଣ୍ଡଳୀ ଛାଡ଼ି ଶ୍ରୀରାଧାଙ୍କୁ ଅନ୍ୱେଷଣ କରିବାକୁ ଗଲେ । ଇତସ୍ତତଃ ଅନ୍ୱେଷଣ କରି ଶ୍ରୀରାଧାଙ୍କୁ ନ ପାଇ ଶ୍ରୀକୃଷ୍ଣ ଯମୁନାକୂଳରେ ଏକ ନିଭୃତ କୁଞ୍ଜରେ ବସି ଶ୍ରୀରାଧାଙ୍କ ଭାବନାରେ କାମବାଣରେ ଖିନ୍ନ ହୋଇ ବିଷଣ୍ଣଚିତ୍ତରେ ବିଳାପ କରିବାକୁ ଲାଗିଲେ । ୮୪ରୁ ୮୭ ।

୮୭ ଶ୍ଳୋକର ଏହି ଅର୍ଥ ବିସ୍ତାର କରି ଶ୍ରୀରାୟ ରାମାନନ୍ଦ ଉପସଂହାରରେ କହୁଅଛନ୍ତି ଯେ, ଯେଉଁ ଶ୍ରୀକୃଷ୍ଣଙ୍କର ଶତକୋଟୀ ଗୋପୀ ସହ ଯୁଗପତ୍ ରାସବିଳାସରେ କାମତୃପ୍ତ ହୁଏ ନାହିଁ ଏବଂ ତାହା କେବଳ ଏକା ଶ୍ରୀରାଧାଙ୍କଦ୍ୱାରା ତୃପ୍ତ ହୁଏ । ଏତଦ୍ୱାରା ଶ୍ରୀରାଧାଙ୍କର ଅତୁଳନୀୟ ଗୁଣର ପରିଚୟ ମିଳୁଅଛି । ଅର୍ଥାତ୍ ଶ୍ରୀରାଧାପ୍ରେମହିଁ ଅତୁଳନୀୟ । ୮୮ ।

ସେବ୍ୟସାଧ୍ୟ ନିର୍ଣ୍ଣୟ—ସାଧନାର ଚରମ ଲକ୍ଷ୍ୟ ଯାହା, ତାହାହିଁ ସେବ୍ୟସାଧ୍ୟ । ତାହାର ନିରୂପଣ ଅର୍ଥାତ୍ ତତ୍ତ୍ୱସମ୍ବନ୍ଧୀୟ ଜ୍ଞାନ । ୯୦ ।

ଶୁକେରପାଠ – ଶୁକକୁ ପ୍ରଥମେ ଭଗବତ୍ ନାମ ଶିକ୍ଷା ଦେଇ ପରେ ତାହାଠାରୁ ସେହି ନାମ ଶୁଣି ଭକ୍ତମାନେ ସୁଖଲାଭ କରନ୍ତି । ଶ୍ରୀ ରାୟରାମାନନ୍ଦ ଏହି ଉଦାହରଣଦ୍ୱାରା ପ୍ରକାଶ କରୁଅଛନ୍ତି ଯେ—ଅନ୍ତର୍ଯ୍ୟାମୀରୂପରେ ମୋର ଚିତ୍ତରେ ଯେ ସବୁ ତତ୍ତ୍ୱ ବିଷୟ ଉଦ୍ଦୀପନ କରୁଅଛନ୍ତି, ତାହାହିଁ ମୋ ମୁହଁରୁ ଶୁଣୁଅଛନ୍ତି । ଏହାର କାରଣ ଏହି ଯେ—ଆପଣ ସାକ୍ଷାତ୍ ଈଶ୍ୱର ଅର୍ଥାତ୍ ସ୍ୱୟଂ ଭଗବାନ୍ ଏବଂ ଏ ପ୍ରକାର ଉଦ୍ଦୀପନ ଏବଂ ଶ୍ରବଣ ଆପଣଙ୍କର ଗୋଟିଏ ନାଟ (ଲୀଳା) ୯୪।୯୫ ।

ପ୍ରଭୁ କହେ—ମାୟାବାଦୀ ଆମେ ତ ସନ୍ନ୍ୟାସୀ ।
ଭକ୍ତିତତ୍ତ୍ୱ ନାହି ଜାନି, ମାୟାବାଦେ ଭାସି ।୯୬।
ସାର୍ବଭୌମ-ସଙ୍ଗେ ମୋର ମନ ନିର୍ମଳ ହୈଲ ।
କୃଷ୍ଣଭକ୍ତି ତତ୍ତ୍ୱକଥା * ତାହାରେ ପୁଛିଲ ।୯୭।
ତେହୋ କହେ—ଆମି ନାହି ଜାନି କୃଷ୍ଣକଥା ।
ସବେ ରାମାନନ୍ଦ ଜାନେ, ତେହୋ ନାହି ଏଥା ।।
ତୋମାର ଠାଇ ଆଇଲାଙ ତୋମାର ମହିମା ଶୁନିଞା ।
ତୁମି ମୋରେ ସ୍ତୁତି କର ସନ୍ନ୍ୟାସୀ ଜାନିଞା ।୯୯।
କିବା ବିପ୍ର କିବା ନ୍ୟାସୀ ଶୂଦ୍ର କେନେ ନୟ ।
ଯେଇ କୃଷ୍ଣ-ତତ୍ତ୍ୱ-ବେତ୍ତା – ସେଇ ଗୁରୁ ହୟ ।।

ସନ୍ନ୍ୟାସୀ ବଲିୟା ମୋରେ ନା କର ବଞ୍ଚନ ।
ରାଧାକୃଷ୍ଣତତ୍ତ୍ୱ କହି ପୂର୍ଣ୍ଣ କର ମନ ।୧୦୧।
ଯଦ୍ୟପି ରାୟ ପ୍ରେମୀ ମହାଭାଗବତେ ।
ତାଁର ମନ କୃଷ୍ଣମାୟା ନାରେ ଆଚ୍ଛାଦିତେ ।୧୦୨।
ତଥାପି ପ୍ରଭୁର ଇଚ୍ଛା ପରମ ପ୍ରବଲ ।
ଜାନିତେହ ରାୟେର ମନ ହୈଲ-ଟଲମଲ ।
ରାୟ କହେ—ଆମି ନଟ, ତୁମି ସୂତ୍ରଧାର ।
ଯେମତ ନାଚାହ, ତୈଛେ ଚାହି ନାଚିବାର ।୧୦୪।
ମୋର ଜିହ୍ୱା ବୀଣା-ଯନ୍ତ୍ର, ତୁମି ବୀଣାଧାରୀ ।
ତୋମାର ମନେ ଯେଇ ଉଠେ-ତାହାଇ ଉଚାରି ।

ଏହା ମହାପ୍ରଭୁଙ୍କର ଭଙ୍ଗୀସହ ଦୈନ୍ୟୋକ୍ତି । ୯୬ରୁ୯୯ । ଶ୍ରୀମନ୍ ମହାପ୍ରଭୁ ଉପରୋକ୍ତ ଦୈନ୍ୟୋକ୍ତିଦ୍ୱାରା ପ୍ରକାଶକଲେ ଯେ - ଶ୍ରୀରାୟ ରାମାନନ୍ଦ ପରମଭାଗବତ ଓ କୃଷ୍ଣଭକ୍ତିତତ୍ତ୍ୱର ସମ୍ପୂର୍ଣ୍ଣ ଅଭିଜ୍ଞ, ଅର୍ଥାତ୍ ସେ ସମ୍ପୂର୍ଣ୍ଣ ତତ୍ତ୍ୱଜ୍ଞ ଓ ମହତ୍ ସାଧୁ । ଶ୍ରୀରାୟ ରାମାନନ୍ଦଙ୍କ ଏହି ଗୁଣକୁ ଅବଲମ୍ବନ କରି ଶ୍ରୀମାନ୍ ମହାପ୍ରଭୁ ଶ୍ରୀଗୁରୁତତ୍ତ୍ୱର ମହତ୍ତ୍ୱବିଷୟ ଜଗତ୍ ଶିକ୍ଷା ସକାଶେ କହୁଅଛନ୍ତି ଯେ—ଯେଉଁ ବ୍ୟକ୍ତି ଶ୍ରୀକୃଷ୍ଣତତ୍ତ୍ୱ ଅବଗାହୀ, ଅର୍ଥାତ୍ ଶ୍ରୀକୃଷ୍ଣତତ୍ତ୍ୱ ଉତ୍ତମରୂପେ ଜାଣି ସେଥିରେ ପ୍ରକୃଷ୍ଟରୂପରେ ସାଧନପରାୟଣ ହୁଅନ୍ତି, ସେ ବ୍ୟକ୍ତି ବ୍ରାହ୍ମଣ ହୋଇନ୍ତୁ ଅର୍ଥାତ ସର୍ବୋତ୍କୃଷ୍ଟ ବର୍ଣ୍ଣ ହୋଇନ୍ତୁ ସନ୍ନ୍ୟାସୀ ଅର୍ଥାତ୍ ସର୍ବୋତ୍କୃଷ୍ଟ ଆଶ୍ରମୀ ହୋଇନ୍ତୁ କିମ୍ବା ବର୍ଣ୍ଣ ଆଶ୍ରମରେ ସର୍ବନିକୃଷ୍ଟ ଶୂଦ୍ର ହୋଇନ୍ତୁ ତଥାପି ସେହି ବ୍ୟକ୍ତିହିଁ ହରିଭକ୍ତି ମାର୍ଗରେ ଗୁରୁ ଅତଏବ ଆପଣ ଜୀବମାନଙ୍କର ଗୁରୁସ୍ଥାନୀୟ, ଏଣୁ ଇଷ୍ଟ ଗୋଷ୍ଠୀଦ୍ୱାରା ଆପଣଙ୍କ ମୁଖରୁ ଶ୍ରୀରାଧାକୃଷ୍ଣଙ୍କର ରସତତ୍ତ୍ୱ ଆସ୍ୱାଦନ କରିବାକୁ ଇଚ୍ଛୁକ ହୋଇଅଛି । ଆପଣ ମୋତେ ସନ୍ନ୍ୟାସ ଆଶ୍ରମୋଚିତ ବେଶାବଲମ୍ବୀ ଦେଖି ସେ ରସରୁ ବଞ୍ଚିତ କରୁଅଛନ୍ତି । ଶ୍ରୀରାଧାକୃଷ୍ଣଙ୍କର ରସତତ୍ତ୍ୱ ବର୍ଣ୍ଣନା କରି ମୋର କାମନା ପୂର୍ଣ୍ଣ କରନ୍ତୁ । ୧୦୦।୧୦୧।

ଏଠାରେ ଏପରି ସଂଶୟ ହୋଇ ପାରେ ଯେ, ଶ୍ରୀରାୟ ରାମାନନ୍ଦ ଶ୍ରୀମନ୍ ମହାପ୍ରଭୁଙ୍କର ଉପରୋକ୍ତ ଭଙ୍ଗୀକୃତ ସ୍ତୁତିବାକ୍ୟ ଶୁଣି ଆପଣାକୁ କୃଷ୍ଣତତ୍ତ୍ୱବେତ୍ତା ଅବଧାରଣ କରି ଏବଂ ଶ୍ରୀମନ୍ ମହାପ୍ରଭୁଙ୍କୁ ମାୟାବାଦୀ ସନ୍ନ୍ୟାସୀ ମନେ କରି ଉପରୋକ୍ତ ୯୧ ପୟାର ବିଷୟ ଶ୍ରୀମନ୍ ମହାପ୍ରଭୁଙ୍କ ପ୍ରଶ୍ନର ଉତ୍ତର ଦେଉଥିଲେ ।

ଏହି ସଂଶୟ ନିରାକରଣ କରିବା ସକାଶେ ଗ୍ରନ୍ଥକର୍ତ୍ତା କହୁଅଛନ୍ତି ଯେ—ଶ୍ରୀରାୟ ରାମାନନ୍ଦ ମହାଶୟ ମହାଭାଗବତମାନଙ୍କ ମଧ୍ୟରେ ପ୍ରେମୀ ଅର୍ଥାତ୍ ଶ୍ରୀକୃଷ୍ଣ ପ୍ରେମରସରେ ସର୍ବଦା ତାହାଙ୍କର ହୃଦୟ ଆପ୍ଲୁତ । ଏଣୁ ଅର୍ଥାତ୍ ସେ ସର୍ବଦା ଶ୍ରୀକୃଷ୍ଣଙ୍କ ସ୍ୱରୂପାନୁଭବ କରୁଥିବାରୁ ଯଦ୍ୟପି ଶ୍ରୀକୃଷ୍ଣଙ୍କର ତଥା ଶ୍ରୀମନ୍ ମହାପ୍ରଭୁଙ୍କର ସ୍ୱରୂପଗତମାୟା ଅର୍ଥାତ୍ ପୂର୍ବୋକ୍ତ ଭଙ୍ଗୀକୃତ ସ୍ତୁତିବାକ୍ୟ ତାହାଙ୍କର ମନ ଓ ଶ୍ରୀକୃଷ୍ଣାନୁଭବ ଏ ଉଭୟର ବ୍ୟବଧାନ ହୋଇ ନ ପାରେ ଅର୍ଥାତ୍ ରାୟଙ୍କର ମନକୁ ଆଚ୍ଛାଦନ କରି ନ ପାରେ । ତଥାପି ରାୟ ମହାଶୟ ଅତ୍ୟନ୍ତ ଆଗ୍ରହର ସହିତ ଶ୍ରୀମାନ୍ ମହାପ୍ରଭୁଙ୍କର ପ୍ରଶ୍ନମାନଙ୍କର ଯେ ଉତ୍ତର ଦେଲେ, ତାହାର କାରଣ ଏହି ଯେ, ରାୟ ମହାଶୟ ଶ୍ରୀମନ୍ ମହାପ୍ରଭୁଙ୍କର ଭଙ୍ଗୀକୃତ ବଚନ ଶୁଣି ଜାଣିଲେ ଯେ, ଏହି ବଚନର ମୂଳରେ ଶ୍ରୀମନ୍

ଈଶ୍ୱର ପରମ କୃଷ୍ଣ ସ୍ୱୟଂ ଭଗବାନ୍ ।
ସର୍ବ-ଅବତାରୀ ସର୍ବ-କାରଣ ପ୍ରଧାନ ।୧୦୬
ଅନନ୍ତ ବୈକୁଣ୍ଠ ଆଉ ଅନନ୍ତ ଅବତାର ।
ଅନନ୍ତ ବ୍ରହ୍ମାଣ୍ଡ ଇହାଁ ସଭାର ଆଧାର ।୧୦୭।
ସଚ୍ଚିଦାନନ୍ଦତନୁ ବ୍ରଜେନ୍ଦ୍ରନନ୍ଦନ ।
ସର୍ବୈଶ୍ୱର୍ଯ୍ୟ ସର୍ବଶକ୍ତି-ସର୍ବରସପୂର୍ଣ୍ଣ । ୧୦୮ ।

---

ସ୍ୱୟମିତି, ଅନନ୍ୟାପେକ୍ଷୀ ଯଦ୍‌ରୂପଂ ସ୍ୱୟଂରୂପଃ ସ ଉଚ୍ୟତେ । ୧୦୬ । ଲ. ଭ. ।

---

ମହାପ୍ରଭୁଙ୍କ ର ପ୍ରଶ୍ନମାନଙ୍କର ଉତ୍ତର ଶୁଣିବାରେ ଇଚ୍ଛା ବଳବତୀ ହୋଇ ରହିଅଛି । ଏହି ଇଚ୍ଛା-ପୂରଣ କରିବା ସକାଶେ ପ୍ରେମିକ ଭକ୍ତ ରାୟ ମହାଶୟଙ୍କର ମନ ଉଦ୍‌ବେଳିତ ହେଲା । ତେଣୁ ସେ କହିଲେ, ପ୍ରଭୋ ! ମୁଁ ଆପଣଙ୍କର ଇଚ୍ଛାଧୀନ ପିତୁଳା ତୁଲ୍ୟ, ଆପଣ ନଚାଇବା ବ୍ୟକ୍ତି । ମୁଁ ଯନ୍ତ୍ର-ରୂପୀ, ଆପଣ ବାଦକ । ଆପଣ ଯାହା ବଜାଉ ଅଛନ୍ତି ଏ ଯନ୍ତ୍ରରୁ ତାହା ବାହାରୁଅଛି । ଅତଏବ ଆପଣ ଆପଣଙ୍କ ପ୍ରଶ୍ନମାନଙ୍କର ଯେପରି ଉତ୍ତର ମୋ ଜିହ୍ୱାରେ ନ୍ୟସ୍ତ କରୁଅଛନ୍ତି ସେହି ସମସ୍ତ ଏ ଜିହ୍ୱାରୁ ଉଚ୍ଚାରିତ ହେଉଅଛି, ତାହା ଶୁଣନ୍ତୁ । ୧୦୨ରୁ ୧୦୫ ।

ଏହି ପୟାରଠାରୁ ଶ୍ରୀରାୟ ରାମାନନ୍ଦ ଶ୍ରୀମାନ୍ ମହାପ୍ରଭୁଙ୍କର କୃତ ପ୍ରଥମ ପ୍ରଶ୍ନର ( କୃଷ୍ଣେର ସ୍ୱରୂପ ) ଉତ୍ତର ଦେଇଅଛନ୍ତି ।

ଶ୍ରୀକୃଷ୍ଣ ତତ୍ତ୍ୱତଃ ସ୍ୱୟଂ ଭଗବାନ୍ ଅର୍ଥାତ୍ ଯାହାଙ୍କର ଭଗବତ୍ତା ଅନ୍ୟକୁ ଅପେକ୍ଷା କରେନା ଏବଂ ଯାହାଙ୍କର ଭଗବତ୍ତାରୁ ଅନ୍ୟର ଭଗବତ୍ତା ସିଦ୍ଧ ହୁଏ ସେ ପରମେଶ୍ୱର ଅର୍ଥାତ୍ ଈଶ୍ୱରମାନଙ୍କର—( ବ୍ରହ୍ମାଣ୍ଡ ସୃଷ୍ଟିକାରୀ ତତ୍ତ୍ୱପୁରୁଷାବତାରମାନଙ୍କର, ଗୁଣବତାରମାନଙ୍କର ଓ ଯେମାନଙ୍କର ଅବତାରୀ ଶ୍ରୀ ବୈକୁଣ୍ଠନାଥଙ୍କମାନଙ୍କର ) ମୂଳହେତୁ ପରମେଶ୍ୱର ବା ସର୍ବଶ୍ରେଷ୍ଠ ମୂଳ ଈଶ୍ୱର, ଅତଏବ ପରବ୍ୟୋମସ୍ଥ ଓ ବ୍ରହ୍ମାଣ୍ଡସ୍ଥ ସମସ୍ତ ଅବତାରମାନଙ୍କର ମୂଳହେତୁ । ସର୍ବ ଅବତାରୀ ଏବଂ ସର୍ବକାରଣର ହେତୁ, ଅର୍ଥାତ୍ ପ୍ରାକୃତାପ୍ରାକୃତ ସୃଷ୍ଟି ଏବଂ ଅବତାରମାନଙ୍କର ମୂଳ । ଅର୍ଥାତ୍ ଅନନ୍ତ ବୈକୁଣ୍ଠ ଅନନ୍ତ ଅବତାର ଓ ଅନନ୍ତବ୍ରହ୍ମାଣ୍ଡ ଏସମସ୍ତଙ୍କର ଆଧାର ବା ପ୍ରକାଶକ । ତାହାଙ୍କ ଶ୍ରୀବିଗ୍ରହ ସଚ୍ଚିଦାନନ୍ଦମୟ ବା ସେ ସଚ୍ଚିଦାନନ୍ଦ ଘନମୂର୍ତ୍ତି, ( ସତ୍—ସ୍ୱପ୍ରକାଶ ଆଧାର ଶକ୍ତି, ଚିତ୍—ଜ୍ଞାନ, ଆନନ୍ଦ—ହ୍ଲାଦିନୀ ଶକ୍ତି । ଏହି ତିନିଶକ୍ତିର ଏକତ୍ର ସମାବେଶଘନମୂର୍ତ୍ତି, ଅର୍ଥାତ୍ ଶ୍ରୀକୃଷ୍ଣ ସ୍ୱପ୍ରକାଶ, ଅନ୍ୟ କାହାଦ୍ୱାରା ପ୍ରକାଶିତ ହୁଅନ୍ତିନାହିଁ । ସ୍ୱୟଂ ଜ୍ଞାନଘନ, ଏବଂ ଆନନ୍ଦଘନ, ତାହାଙ୍କଠାରୁ ସମସ୍ତ ବସ୍ତୁ ପ୍ରକାଶିତ ହୁଅନ୍ତି, ଜ୍ଞାନଲାଭ କରନ୍ତି ଓ ଆନନ୍ଦଲାଭ କରନ୍ତି କିନ୍ତୁ ସେ ସ୍ୱଜ୍ଞାନ ଓ ସ୍ୱାନନ୍ଦରେ ପୂର୍ଣ୍ଣରୂପେ ସ୍ୱୟଂପ୍ରକାଶ, ଏହାହିଁ ତାହାଙ୍କର ଶ୍ରୀମୂର୍ତ୍ତି ) ଏବଂ ତାହା ବ୍ରଜେନ୍ଦ୍ରନନ୍ଦନ ଅର୍ଥାତ୍ ଶ୍ରୀନନ୍ଦନନ୍ଦନ ଶ୍ୟାମସୁନ୍ଦର ଦ୍ୱିଭୁଜ ମୁରଲୀଧର ନବକିଶୋର ନଟବର, ଏହାହିଁ ତାହାଙ୍କର ସ୍ୱାଭାବିକ ରୂପ, ସେ ଷଡ଼ବିଧଐଶ୍ୱର୍ଯ୍ୟ ଅନ୍ତରଙ୍ଗାଦି ସମସ୍ତ ଶକ୍ତି ଏବଂ ଶୃଙ୍ଗାରାଦି ସମସ୍ତରସରେ ପରିପୂର୍ଣ୍ଣ । ୧୦୬ରୁ ୧୦୮ ।

ତଥାହି ବ୍ରହ୍ମସଂହିତାୟାମ୍ (୫।୧)—

ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ।
ଅନାଦିରାଦିର୍ଗୋବିନ୍ଦଃ ସର୍ବକାରଣକାରଣମ୍ ।୨୯।

ବୃନ୍ଦାବନେ ଅପ୍ରାକୃତ ନବୀନ ମଦନ ।
କାମଗାୟତ୍ରୀ କାମବୀଜେ ଯାଁର ଉପାସନ ।୧୦୯।
ପୁରୁଷ ଯୋଷିତ୍ କିବା ସ୍ଥାବର ଜଙ୍ଗମ ।
ସର୍ବଚିତ୍ତାକର୍ଷକ ସାକ୍ଷାତ୍ ମନ୍ମଥ-ମଦନ ।୧୧୦ ।

ତଥାହି (ଭାଃ—୧୦।୩୨।୨)—

ତାସାମାବିରଭୂଚ୍ଛୌରିଃ ସ୍ମୟମାନ ମୁଖାମ୍ବୁଜଃ ।
ପୀତାମ୍ବରଧରଃ ସ୍ରଗ୍ୱୀ ସାକ୍ଷାନ୍ମନ୍ମଥମନ୍ମଥଃ ।୩୦ ।

ନାନା ଭକ୍ତେର ରସାମୃତ ନାନାବିଧ ହୟ ।
ସେଇ ସବ-ରସାମୃତେର ବିଷୟ-ଆଶ୍ରୟ ।୧୧୧।

କାମେତି, କାମଗାୟତ୍ର୍ୟା କାମବୀଜେନଚ ଯସ୍ୟୋପାସ୍ୟତେଇତ୍ୟର୍ଥ । ୧୦୯ । ବି. ଚ. ।

ସର୍ବେତି, ସର୍ବଚିତ୍ତାକର୍ଷକତ୍ୱନ୍ତୁ ତତ୍ତଦ୍‌ଭାବାନୁସାରେଣେତ୍ୟର୍ଥଃ ସର୍ବାକର୍ଷଣଂ ମଦନସ୍ୱରୂପଂ ୧୧୦ । ବି: ଚ: ।

୨୯ଶ ଶ୍ଳୋକର ଅନ୍ୱୟ—ଆଦି: ୨ୟ ପରିଚ୍ଛେଦ ୧୮ଶ ଶ୍ଳୋକ ।

ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଈଶ୍ୱରମାନଙ୍କର ଶ୍ରେଷ୍ଠ, ଏଣୁ ପରମେଶ୍ୱର, ସଚ୍ଚିଦାନନ୍ଦବିଗ୍ରହ ( ସଚ୍ଚିଦାନନ୍ଦମୟରୂପ ) ସ୍ୱୟଂ ଅନାଦି ( ସ୍ୱପ୍ରକାଶ ) ଏବଂ ଆଦି ( ସର୍ବତତ୍ତ୍ୱର ପ୍ରକାଶକ ବା ମୂଳାଶ୍ରୟ ) ଏବଂ ସର୍ବକାରଣର କାରଣ, ( ବୀଜସ୍ୱରୂପ ) ଗୋବିନ୍ଦ (ଗୋପାଳ) ୨୯ଶ ଶ୍ଳୋକାର୍ଥ ।

ସଚ୍ଚିଦାନନ୍ଦବିଗ୍ରହ ଶ୍ରୀକୃଷ୍ଣଙ୍କର ଲୀଳାରୂପ ବିଷୟ କହୁଅଛନ୍ତି ଯେ, ସେ ଶ୍ରୀବ୍ରଜଧାମର ଶ୍ରୀବୃନ୍ଦାବନସ୍ଥ ଅପ୍ରାକୃତ (ମାୟାତୀତ) ନବୀନ (ଅଭିନବ ବା ଅଙ୍କୁର ) ମଦନ ( କାମଦେବ ) ଅର୍ଥାତ୍ ବ୍ରହ୍ମାଣ୍ଡାନ୍ତର୍ଗତ କାମମାନେ ପ୍ରାକୃତ କାମ । ବ୍ରହ୍ମାଣ୍ଡାତୀତ ପରବ୍ୟୋମସ୍ଥ ବୈକୁଣ୍ଠମାନଙ୍କରେ ଚତୁର୍ବ୍ୟୂହ ଅନ୍ତର୍ଗତ ପ୍ରଦ୍ୟୁମ୍ନାଖ୍ୟ କାମମାନେ ଅପ୍ରାକୃତ କାମ ଏ ଉଭୟବିଧ କାମମାନଙ୍କର ଯେ ମୂଳ ବା ଅଙ୍କୁର ସେହି ଅଭିନବ ଅପ୍ରାକୃତ ମଦନ ଶ୍ରୀ ବ୍ରଜେନ୍ଦ୍ରନନ୍ଦନ ଶ୍ରୀ ବୃନ୍ଦାବନବିହାରୀ ଶ୍ରୀକୃଷ୍ଣ । ଆଗମଗ୍ରନ୍ଥରେ କାମବୀଜ ଓ କାମଗାୟତ୍ରୀଦ୍ୱାରା ତାହାଙ୍କର ଭଜନହୁଏ । ବ୍ରହ୍ମାଣ୍ଡସ୍ଥ ପ୍ରାକୃତ କାମମାନେ ଅସାକ୍ଷାତ୍ କାମ, କିନ୍ତୁ ବୈକୁଣ୍ଠସ୍ଥ ପ୍ରଦ୍ୟୁମ୍ନାଖ୍ୟ କାମମାନେ ସାକ୍ଷାତ୍ କାମ, ସେମାନଙ୍କର ମନକୁ ଯେ ମଥନ କରନ୍ତି—ଅର୍ଥାତ୍ ସେମାନଙ୍କର ଯେ ମୂଳ ସେହି ଶ୍ରୀକୃଷ୍ଣ । ସେହିହେତୁ ସାକ୍ଷାତ୍ ମନ୍ମଥମନ୍ମଥ; ସାକ୍ଷାତ୍ ମନ୍ମଥ—ମଦନ, ଏ ନିଜର ଅଭିନବସ୍ୱରୂପ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟଦ୍ୱାରା କିବା ପୁରୁଷ କିବା ସ୍ତ୍ରୀ ସମସ୍ତ ଜୀବଜଗତ୍ ଏପରି ସମସ୍ତ ଜଡ଼ଜଗତ୍‌ର (ସ୍ଥାବରର) ଚିତ୍ତ ଆକର୍ଷଣ କରନ୍ତି, ଅର୍ଥାତ୍ ପ୍ରତ୍ୟେକର ଭାବଅନୁସାରେ ସେମାନଙ୍କର ଚିତ୍ତ ଆକର୍ଷଣ କରନ୍ତି । ୧୦୯।୧୧୦ ।

୩୦ଶ ଶ୍ଳୋକର ଅନ୍ୱୟ – ଆଦି: ୫ମ ପରିଚ୍ଛେଦ ୨୩ଶ ଶ୍ଳୋକ ।

ଅର୍ଥ—ସେହି ରୋଦନପରାୟଣା ଗୋପୀମାନଙ୍କମଧ୍ୟରେ ସହାସ୍ୟବଦନ ପୀତାମ୍ବରଧାରୀ ପୁଷ୍ପମାଳାଲଙ୍କୃତ ସାକ୍ଷାତ୍ ଅପ୍ରାକୃତମଦନର ମୋହକ ରୂପରେ ଶ୍ରୀକୃଷ୍ଣ ଆବିର୍ଭୂତହେଲେ । ( ଶ୍ରୀଗୋପୀଗୀତାପର ଶ୍ରୀକୃଷ୍ଣଙ୍କର ପୁନର୍ମିଳନ ସମୟର ବିଷୟ ) ୩୦ଶ ଶ୍ଳୋକାର୍ଥ ।

ନାନାବିଧ ଭକ୍ତ ଶାନ୍ତାଦି ଦ୍ୱାଦଶରସର ଆଶ୍ରୟରେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି ଏଣୁ ଶ୍ରୀକୃଷ୍ଣ ସେହି ସମସ୍ତ ରସମାନଙ୍କର ଯୁଗପତ୍ ବିଷୟ ( ଉପାଦାନ ) ଏବଂ ଆଶ୍ରୟ ( ଆଧାର ବା ଅବଲମ୍ବନ ) ଅର୍ଥାତ୍ ତାବତୀୟ ରସନିର୍ଯ୍ୟାସମୟ ପରମାନନ୍ଦମୂର୍ତ୍ତି, ଯାହାଙ୍କର ସେହି ଶ୍ରୀକୃଷ୍ଣହିଁ ବିଭିନ୍ନଭାବମୟ, ଭକ୍ତମାନଙ୍କର ଭାବ ନାନୁରୂପ ତତ୍ତତ୍ ରସାମୃତର ଆସ୍ୱାଦ୍ୟ ଅଟନ୍ତି । ଏହି ପୟାରଟିକୁ ଉପରୋକ୍ତ ୯୧ ପୟାରୋକ୍ତ "ରସକୋନାତତ୍ତ୍ୱ" ଏଥିର ମଧ୍ୟ ବ୍ୟାଖ୍ୟା ହୋଇଅଛି । ୧୧୧ ।

ତଥାହି ଭକ୍ତିରସାମୃତସିନ୍ଧୌ ପୂର୍ବବିଭାଗେ
ସାମାନ୍ୟଭକ୍ତିଲହର୍ଯ୍ୟାମ୍ (୧)—
ଅଖିଳରସାମୃତମୂର୍ତ୍ତିଃ, ପ୍ରସୃମରରୁଚିରୁଦ୍ଧତାରକା-
ପାଳିଃ ।
କଳିତଶ୍ୟାମାଲଳିତୋ, ରାଧାପ୍ରେୟାନ୍
ବିଧୁର୍ଜୟତି । ୩୧ ।

ଶୃଙ୍ଗାରରସରାଜମୟ-ମୂର୍ତ୍ତିଧର ।
ଅତଏବ ଆତ୍ମାପର୍ଯ୍ୟନ୍ତ ସର୍ବଚିତ୍ତହର ।୧୧୨।

---

ଅଖିଳରସାମୃତମୂର୍ତ୍ତିଃ— ଅଖିଳାଃ ରସାଃ ବକ୍ଷ୍ୟମାଣଶାନ୍ତ୍ୟାଦ୍ୟାଃ ଦ୍ୱାଦଶରସାଃ ଯସ୍ମିନ୍ ତାଦୃଶଂ ଅମୃତଂ ପରମାନନ୍ଦଃ ଏବ ମୂର୍ତ୍ତିର୍ଯସ୍ୟସି, ପ୍ରସୃମରରୁଚିରୁଦ୍ଧତାରକାପାଳିଃ— ପ୍ରସୃମରାଭିଃ ପ୍ରସରଣଶୀଳାଭିଃ ରୁଚିଭିଃ କାନ୍ତିଭିଃ ରୁଦ୍ଧେ ବଶୀକୃତେ ତାରକାପାଳୀ ଯେନ ସଃ କଳିତଶ୍ୟାମାଲଳିତଃ—କଳିତେ ଆତ୍ମାସାତ୍କୃତେ ଶ୍ୟାମା—ଶ୍ୟାମାଳା, ଲଳିତା ଚ ଯେନ ସଃ । ରାଧାପ୍ରେୟାନ୍—ରାଧାୟାଃ ପ୍ରେୟାନ୍ ଅତିଶୟେନ ପ୍ରୀତିକର୍ତ୍ତା ବିଧୁଃ—ବିଧ୍ନୋତି ଖଣ୍ଡୟତି ସର୍ବଦୁଃଖଂ ଅତିକ୍ରାମତି ସର୍ବଶ୍ରେଷ୍ଠତି; ଯଦ୍ ବାଦଧାତି - କରୋତି ସର୍ବସୁଖଂ ସର୍ବଶ୍ରେଷ୍ଠତି, ଜୟତି ।

ଶ୍ଳେଷାର୍ଥ—ଅଖିଳରସାମୃତମୂର୍ତ୍ତିଃ—ଅଖିଳଃ ଅଖଣ୍ଡଃ ରସଃ ଅସ୍ୱାଦଃ ଯତ୍ର ତାଦୃଶଂ ଅମୃତଂ ପୀୟୂଷଂ ତଦାତ୍ମିକେବ ମୂର୍ତ୍ତିଃ ମଣ୍ଡଳଂ ଯସ୍ୟ ସଃ । ପ୍ରସୃମରରୁଚିରୁଦ୍ଧତାରକାପାଳିଃ— ପ୍ରସୃମରାଭିଃ ରୁଚିଭିଃ—କାନ୍ତିଭିଃ ରୁଦ୍ଧା ଆବୃତା ତାରକାଣାଂ ପାଳିଃଶ୍ରେଣୀ ଯେନ ସଃ । ଇତି ପୂର୍ବବତ୍ ନିଜକାନ୍ତିବଶୀକୃତକାନ୍ତିମତୀଗଣବିରାଜମାନତ୍ୱାଂଶେନାପି ଶ୍ଳେଷଃ । କଳିତଶ୍ୟାମାଲଳିତଃ—କଳିତଂ —ଉରୀକୃତଂ ଶ୍ୟାମାୟାଃ-ରାତ୍ରେଃ ଲଳିତଂ ବିଳାସଃ ଯେନ ସ ଇତି ରାତ୍ରିବିଳାସିତ୍ୱେନାପି ଶ୍ଳେଷଃ । ରାଧାପ୍ରେୟାନ୍—ରାଧାୟାଂ ବିଶାଖାନାମ୍ନ୍ୟାଂ ତାରାୟାଂ ପ୍ରେୟାନ୍—ଅଧିକପ୍ରୀତିମାନ୍, ଋତୁରାଜପୂର୍ଣ୍ଣିମାୟାଂ ତଦନୁଗାମିତ୍ୱାତ୍ ଇତି ତଦନୁଗତୈଶ୍ୱର୍ଯ୍ୟା ଧ ସ୍ୱବୈଭବ—ବିଜ୍ଞତ୍ୱାଂଶେନାପି ଶ୍ଳେଷଃ । ବିଧୁଃ—ପୂର୍ଣ୍ଣଚନ୍ଦ୍ରଃ ଜୟତି—ସର୍ବୋତ୍କର୍ଷେଣ ବର୍ତ୍ତତେ । ୩୧ଶ ଶ୍ଳୋକ ।

ଆତ୍ମା—ଶ୍ରୀକୃଷ୍ଣ । ଅବ ସର୍ବପଦେନ ଶୃଙ୍ଗାରରସଭାବିତାନ୍ତଃକରଣା ଏବ ଗୃହ୍ୟନ୍ତେ ନନ୍ୱନ୍ୟରସାସ୍ୱାଦପରାଃ, ତସ୍ୟ ଶୃଙ୍ଗାରରସରାଜସ୍ୟାକର୍ଷିତୁଜନରହିତ୍ୱାତ୍ । ୧୧୨ । ବି: ଚ.

---

ଯାହାଙ୍କର ଆନନ୍ଦମୟ ମୂର୍ତ୍ତି ଶାନ୍ତ ପ୍ରଭୃତି ଦ୍ୱାଦଶ ରସର (ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଓ ମଧୁର, ଏବଂ ହାସ୍ୟ, କରୁଣ, ବୀର, ରୌଦ୍ର, ଭୟାନକ, ଅଦ୍ଭୁତ ଓ ବିଭତ୍ସ) ଆଶ୍ରୟ-ସ୍ୱରୂପ ଯାହାଙ୍କର ଅତୁଳକାନ୍ତି ବିସ୍ତାର ଅବଲୋକନ କରି ତାରକା ଏବଂ ପାଳିକା ନାମକ ଗୋପୀ ଯୁଗଳ ବିମୁଗ୍ଧ ହୋଇଅଛନ୍ତି, ଏବଂ ଯେ ଶ୍ୟାମା ଓ ଲଳିତାଙ୍କୁ ଆତ୍ମସାତ୍ କରିଅଛନ୍ତି, ଶ୍ରୀ ରାଧିକାଙ୍କର ପରମପ୍ରଣୟଭାଜନ ନିଖିଳସୁଖ ବିଧାନକାରୀ ସେହି ଶ୍ରୀକୃଷ୍ଣ ଜୟଯୁକ୍ତ ହେଉନ୍ତୁ ।

ଅନ୍ୟାର୍ଥ - ଯାହାଙ୍କର ମୂର୍ତ୍ତିନିଃସୃତ ଅମୃତଧାରା ଜୀବଗଣ ଅଖଣ୍ଡରୂପେ ଆସ୍ୱାଦନ କରନ୍ତି, ଯେ ନିଜ ପ୍ରସରଣଶୀଳ କିରଣଦ୍ୱାରା ତାରକାମାନଙ୍କୁ ଆବୃତ କରନ୍ତି, ଏବଂ ଯେ ଯାମିନୀରୂପ କାମିନୀର ସହିତ ବିଳାସ ଅଙ୍ଗୀକାର କରିଅଛନ୍ତି, ତାରାସୁନ୍ଦରୀ ବିଶାଖାଙ୍କର ପରମ-ପ୍ରେମାସ୍ପଦ ସେହି ପୂର୍ଣ୍ଣଚନ୍ଦ୍ର ଜ୍ୟୋତିଷ୍କଗଣମଧ୍ୟରେ ଶ୍ରେଷ୍ଠ । ୩୧ ଶ୍ଳୋକାର୍ଥ ।

ଅପ୍ରାକୃତ ନବୀନ ମଦନ ଯାହାଙ୍କର ରୂପ ବୋଲି କହିଅଛନ୍ତି, ତାହାଙ୍କ ବିଳାସମୟ ରୂପର ବର୍ଣ୍ଣନା କରୁଅଛନ୍ତି । ଶ୍ରୀକୃଷ୍ଣ ରସରାଜ ଶୃଙ୍ଗାରମୟମୂର୍ତ୍ତି ଅର୍ଥାତ୍ କେବଳ ମାଧୁର୍ଯ୍ୟମୟମୂର୍ତ୍ତି (ଏହାର କାରଣ ଏହି ଯେ, ଶୃଙ୍ଗାରରସହିଁ ଆଦି ରସ ସେହିହେତୁ ସମସ୍ତ ରସମାନଙ୍କର ମୂଳ,

ତଥାହି ଗୀତଗୋବିନ୍ଦେ (୧।୧୧ ଅଥବା ୧।୪୮)—

ବିଶ୍ୱେଷାମନୁରଞ୍ଜନେନ ଜନୟନ୍ନାନନ୍ଦ-ମିନ୍ଦୀବର-
ଶ୍ରେଣୀଶ୍ୟାମଳକୋମଳୈରୁପନୟନ୍ନଙ୍ଗୈ-ରନଙ୍ଗୋତ୍ସବମ୍ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗ-ମାଲିଙ୍ଗିତଃ
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡ଼ତି । ୬୨ ।

ଲକ୍ଷ୍ମୀକାନ୍ତ ଆଦି ଅବତାରେର ହରେ ମନ ।
ଲକ୍ଷ୍ମୀ ଆଦି ନାରୀଗଣେର କରେ ଆକର୍ଷଣ ।୧୧୩।

---

ଲକ୍ଷ୍ମୀ ଇତି । ଶ୍ରୀଃ ପ୍ରେକ୍ଷ୍ୟ କୃଷ୍ଣସୌନ୍ଦର୍ଯ୍ୟଂ ତଦ ଲବ୍ଧ୍ୱା ତତସ୍ତପଃ ।
କୁର୍ବତୀଂ ପ୍ରାହ ତାଂ କୃଷ୍ଣଃ କିଂତେ ତପସି କାରଣଂ ।
ବିଜିହୀର୍ଷେତ୍ୱୟା ଗୋଷ୍ଠେ ଗୋପୀରୂପେତିବା ବ୍ରବୀତୁ ।
ତଦ୍ଦୁର୍ଲଭମିତିପ୍ରୋକ୍ତା ଲକ୍ଷ୍ମୀସ୍ତଂ ପୁନରବ୍ରବୀତ୍ ।
ସ୍ୱର୍ଣ୍ଣରେଖେବ ତେନାଥ ବସ୍ତୁମିଚ୍ଛାମି ବକ୍ଷସି ।
ଏବମସ୍ତ୍ୱିତି ସା ତସ୍ୟ ତଦ୍ରୂପା ବକ୍ଷସିସ୍ଥିତା ।
ସଦା ବକ୍ଷ୍ୟସ୍ଥଲସ୍ଥାପି ବୈକୁଣ୍ଠେଶିତୁରିନ୍ଦିରା ।
କୃଷ୍ଣୋରଃସ୍ଥ ହେମ୍ନା ସୈବରୂପଂ ବର୍ଣ୍ଣୁତେଽଧିକଂ । ୧୧୩ । ବି. ଟୀ

---

ଅତଏବ ରସରାଜ ଏହିରସଦ୍ୱାରା ସର୍ବରସ ଆବୃତ, କିନ୍ତୁ ଏ କାହାରଦ୍ୱାରା ଆବୃତ ନୁହେଁ ବୋଲି ଅନାବୃତ) ଶ୍ରୀକୃଷ୍ଣଙ୍କର ଶୃଙ୍ଗାରରସରାଜମୟମୂର୍ତ୍ତି ସମସ୍ତଙ୍କର ଚିତ୍ତହରଣକାରୀ ଏପରି କି ନିଜର ଚିତ୍ତପର୍ଯ୍ୟନ୍ତ ହରଣ କରନ୍ତି । ଏଠାରେ ସର୍ବପଦ ଶୃଙ୍ଗାରରସଭାବିତାନ୍ତଃକରଣମାନଙ୍କୁ ବୁଝାଉ ଅଛି । ୧୧୨ ।

୬୨ଶ ଶ୍ଲୋକର ଅନ୍ୱୟ—ଅଦି. ୪ର୍ଥ ପରି. ୪୧ ଶ୍ଲୋକ ।

ଅର୍ଥ—ହେ ସଖି ! ଅଭିଳାଷାତିରିକ୍ତ ରସଦାନଦ୍ୱାରା ଗୋପୀମାନଙ୍କର ଆନନ୍ଦବର୍ଦ୍ଧନ ତଥା ଏବଂ ନୀଳ ପଦ୍ମସମୂହର ସଦୃଶ କୋମଳ ଶ୍ୟାମାଙ୍ଗଦ୍ୱାରା ସେମାନଙ୍କର ଆନନ୍ଦୋତ୍ସବ ସମ୍ପାଦନ ପୂର୍ବକ ଅସଙ୍କୋଚରେ ସେମାନଙ୍କଦ୍ୱାରା ପ୍ରତିଅଙ୍ଗରେ ଆଲିଙ୍ଗିତ ହୋଇ ମୂର୍ତ୍ତିମାନ ଶୃଙ୍ଗାରରସ-ସ୍ୱରୂପ ମୁଗ୍ଧ ଶ୍ରୀକୃଷ୍ଣ ବସନ୍ତକାଳରେ କ୍ରୀଡ଼ା କରୁଅଛନ୍ତି । ୬୨ଶ ଶ୍ଲୋକାର୍ଥ ।

( ଏ ଶ୍ଳୋକ ରସରାଜଶୃଙ୍ଗାରମୟ ମୂର୍ତ୍ତିର ଉଦାହରଣ )

ଆତ୍ମପର୍ଯ୍ୟନ୍ତ ସର୍ବଚିତ୍ତହରଣର ବ୍ୟାଖ୍ୟା କରୁଅଛନ୍ତି । ଯଥା—

ଶ୍ରୀଲକ୍ଷ୍ମୀକାନ୍ତ ନାରାୟଣାଦି ଅବତାରମାନଙ୍କର ମନୋହରଣ କରନ୍ତି, ତାହାର ପ୍ରମାଣ ନିମ୍ନଲିଖିତ ଶ୍ଳୋକରେ ବର୍ଣ୍ଣିତ । ୧୧୩ ।

ତଥାହି (ଭାଃ—୧୦।୮୯।୫୮) —

ଦ୍ୱିଜାତ୍ମଜା ମେ ଯୁବୟୋର୍ଦିଦୃକ୍ଷୁଣା,
ମୟୋପନୀତା ଭୁବି ଧର୍ମଗୁପ୍ତୟେ ।
କଳାବତୀର୍ଣ୍ଣାବବନେର୍ଭରାସୁରାନ୍,
ହତ୍ୱେହ ଭୂୟସ୍ତ୍ୱରୟେତମନ୍ତି ମେ । ୩୩ ।

ତତ୍ରୈବ (୧୦।୧୬।୩୬)—

କସ୍ୟାନୁଭାବୋଽସ୍ୟ ନ ଦେବ ବିଦ୍ମହେ,
ତବାଙ୍ଘ୍ରିରେଣୁସ୍ପର୍ଶାଧିକାରଃ ।
ଯଦ୍‌ବାଞ୍ଛୟା ଶ୍ରୀର୍ଲଲନାଚରତ୍ତପୋ,
ବିହାୟ କାମାନ୍ ସୁଚିରଂ ଧୃତବ୍ରତା । ୩୪ ।

ଆପନ ମାଧୁର୍ଯ୍ୟେ ହରେ ଆପନାର ମନ ।
ଆପନେ ଆପନା ଚାହେ କରିତେ ଆଲିଙ୍ଗନ ॥

---

ଧର୍ମଗୁପ୍ତୟେ କଳାବତୀର୍ଣ୍ଣୌ କଳାଭିଃ ସର୍ବାଭିଃ ଶକ୍ତିଭିଃ ଯୁକ୍ତାବବତୀର୍ଣ୍ଣୌ—ସର୍ବାଂଶ-ସମ୍ବଳିତତୟା ପ୍ରକଟିତୌ, ଯୁବୟୋଃ-ଯୁବାଂ ଦିଦୃକ୍ଷୁଣା ମେ-ମମ ଭୁବି-ଧାମ୍ନି ଦ୍ୱିଜାତ୍ମଜାଃ ମୟା ଉପନୀତା-ଆନୀତା, ଭୂୟଃ-ପୁନରପି ଅବନେଃ ଅବଶିଷ୍ଟାନ୍ ଭରାସୁରାନ୍ ହତ୍ୱା ଇହ ମେ-ମମ ଅନ୍ତିମ ସମୀପାୟ ତ୍ୱରୟେତଂ ଶୀଘ୍ରଂ ପ୍ରସ୍ଥାପୟେତଂ । ୩୩ଶ ଶ୍ଳୋକ ।

ଯଦ୍ୱାଞ୍ଛୟା—ଯସ୍ୟ ତ୍ୱଦଙ୍ଘ୍ରିରେଣୁ ସ୍ପର୍ଶାଧିକାରସ୍ୟ ବାଞ୍ଛୟା ଶ୍ରୀର୍ଲଲନା ଶ୍ରୀରେବ ଲଲନା ଉତ୍ତମାସ୍ତ୍ରୀ ସର୍ବାନ୍ କାମାନ୍ ବିହାୟ ଧୃତବ୍ରତା (ସତୀ) ସୁଚିରଂ ତପଃଅଚରତ୍, ଅସ୍ୟ—ନାଗସ୍ୟ ଅପି ତବଅଙ୍ଘ୍ରିରେଣୁ ସ୍ପର୍ଶାଧିକାରଃ କସ୍ୟ-ତପଅଦେଃ ସୁକୃତସ୍ୟ ଅନୁଭାବ-ଫଳଂ ଇତି ବିଶେଷତଃ ନ ବିଦ୍ମହେ । ୩୪ଶ ଶ୍ଳୋକ ।

---

ଭୂମାପୁରୁଷ ଶ୍ରୀମନ୍ନାରାୟଣ ଶ୍ରୀକୃଷ୍ଣାର୍ଜୁନଙ୍କୁ କହୁଅଛନ୍ତି – ହେ ଶ୍ରୀକୃଷ୍ଣାର୍ଜୁନ ! ତୁମ୍ଭେମାନେ ଧର୍ମରକ୍ଷାର୍ଥ ନିଖିଳ ଶକ୍ତିଗଣ ସହ ପୂର୍ଣ୍ଣରୂପରେ ଅବତୀର୍ଣ୍ଣ ହୋଇଅଛ । ତୁମ୍ଭମାନଙ୍କ ଦର୍ଶନ ଲାଳସାରେ ମୁଁ ଦ୍ୱିଜବାଳକମାନଙ୍କୁ ଏଠାକୁ ଆଣିଅଛି । ପୁନର୍ବାର ଅବଶିଷ୍ଟ ଅବନୀର ଭାରସ୍ୱରୂପ ଅସୁରମାନଙ୍କୁ ବଧ କରି ଶୀଘ୍ର ମୋ ନିକଟ ପ୍ରେରଣ କର । (ଲକ୍ଷ୍ମୀକାନ୍ତଙ୍କର ମନୋହାରିତ୍ୱ ବିଷୟରେ ଏହି ଶ୍ଳୋକ ପ୍ରମାଣ । ୭୩୩ଶ ଶ୍ଳୋକାର୍ଥ ।

ନାଗପତ୍ନୀଗଣ କାଳୀୟନାଗର ଶିରୋଦେଶାରୂଢ଼ ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—

ହେ ଦେବ ! ତୁମ୍ଭର ଯେଉଁ ଚରଣରେଣୁ ସ୍ପର୍ଶକାମନାରେ ଲଳନାଶ୍ରେଷ୍ଠ ଲକ୍ଷ୍ମୀଠାକୁରାଣୀ ସର୍ବକାମନା ପରିତ୍ୟାଗପୂର୍ବକ ବ୍ରତ ଧାରଣ କରି ବହୁକାଳ ତପସ୍ୟା କରିଅଛନ୍ତି, ଏହି ନୀଚ କାଳୀୟ ନାଗ ଆପଣଙ୍କର ତାଦୃଶ ଶ୍ରୀଚରଣରେଣୁର ସ୍ପର୍ଶାଧିକାର କେଉଁ ସୁକୃତ ବଳରେ ଲାଭ କଲା, ତାହା ଆମ୍ଭେମାନେ ଜାଣି ପାରୁନାହୁଁ । ଲକ୍ଷ୍ମୀଆଦି ନାରୀଗଣମନୋହାରିତ୍ୱର ଏହି ଶ୍ଳୋକ ପ୍ରମାଣ । ୩୪ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ନିଜର ମାଧୁର୍ଯ୍ୟରେ ବିମୁଗ୍ଧ ହୋଇ ଆଗେ ଆପଣାକୁ ଆଲିଙ୍ଗନ କରିବାର ଇଚ୍ଛା କରନ୍ତି । ଯଥା—୧୧୪ ।

ତଥାହି ଲଳିତମାଧବେ (୮।୩୨) —
ଅପରିକଳିତପୂର୍ବ୍ବଃ କଶ୍ଚମତ୍କାରକାରୀ,
ସ୍ଫୁରତି ମମ ଗରୀୟାନେଷ ମାଧୁର୍ଯ୍ୟପୂରଃ ।
ଅୟମହମପି ହନ୍ତ ପ୍ରେକ୍ଷ୍ୟ ଯଂ ଲୁବ୍ଧଚେତାଃ,
ସରଭସମୁପଭୋକ୍ତୁଂ କାମୟେ ରାଧିକେବ ।୩୫
ସଂକ୍ଷେପେ କହିଲ ଏଇ କୃଷ୍ଣେର ସ୍ୱରୂପ ।
ଏବେ ସଂକ୍ଷେପେ କହି ଶୁନ ରାଧାତତ୍ତ୍ୱରୂପ ।୧୧୫।
କୃଷ୍ଣେର ଅନନ୍ତଶକ୍ତି, ତାତେ ତିନ ପ୍ରଧାନ — ।
ଚିଚ୍ଛକ୍ତି, ମାୟାଶକ୍ତି — ଜୀବଶକ୍ତି ନାମ ।୧୧୬ ।
ଅନ୍ତରଙ୍ଗା ବହିରଙ୍ଗା ତଟସ୍ଥା କହି ଯାରେ ।
ଅନ୍ତରଙ୍ଗା ସ୍ୱରୂପଶକ୍ତି — ସଭାର ଉପରେ ।୧୧୭।

ତଥାହି ବିଷ୍ଣୁପୁରାଣେ (୬।୭।୬୧)

ବିଷ୍ଣୁଶକ୍ତିଃ ପରା ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥାପରା
ଅବିଦ୍ୟାକର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ ।୩୬
ସଚ୍ଚିତ୍-ଆନନ୍ଦମୟ — କୃଷ୍ଣେର ସ୍ୱରୂପ ।
ଅତଏବ ସ୍ୱରୂପଶକ୍ତି ହୟ ତିନ ରୂପ — ।୧୧୮।

ଅନ୍ତରଙ୍ଗା ସୂର୍ଯ୍ୟମଣ୍ଡଳସ୍ଥାନୀୟା, ବହିରଙ୍ଗା ପ୍ରତିଚ୍ଛବିଗତବର୍ଣ୍ଣଶାବଲ୍ୟସ୍ଥାନୀୟା, ତଟସ୍ଥା ରଶ୍ମିସ୍ଥାନୀୟା । ୧୧୭ । ଚ. ଚ.

୩୫ଶ ଶ୍ଳୋକର ଅନ୍ୱୟ ଅ: ୪ର୍ଥ ପରି: ୨୦ଶ ଶ୍ଳୋକ ।

ଅର୍ଥ — ଶ୍ରୀକୃଷ୍ଣ ନବବୃନ୍ଦାଙ୍କ ସହିତ ଦ୍ୱାରକାସ୍ଥ ନବବୃନ୍ଦାବନରେ ଭ୍ରମଣ କରୁଁ କରୁଁ ମଣି ଭିତରେ ନିଜର ପ୍ରତିବିମ୍ବ ଦର୍ଶନ କରି ହଠାତ୍ ଭ୍ରମରେ ତାହା କୌଣସି ପୁରୁଷ ମନେ କରି ନବବୃନ୍ଦାଙ୍କୁ କହିଲେ, ଏ କିଏ ? ମାଧୁର୍ଯ୍ୟଦ୍ୱାରା ମୋର ମନ ହରଣ କରି ମଣି ଭିତ୍ତି ଅବଲମ୍ବରେ ବିରାଜ କରୁଅଛି । ପୁନର୍ବାର ଭଲରୂପେ ନିରୀକ୍ଷଣ କରି କହିଲେ, କି ଚମତ୍କାର, ଏ ଯେ ମୋର ପ୍ରତିବିମ୍ବ । ଏହା ପରେ କହୁଅଛନ୍ତି, ଯଥା —

ଏହି ଅଗ୍ରବର୍ତ୍ତୀ ମୋର ମାଧୁର୍ଯ୍ୟ କି ଗୁରୁତର ଓ ଆଶ୍ଚର୍ଯ୍ୟ, ଯାହା ମୁଁ ପୂର୍ବେ କେବେ ଦେଖି ନାହିଁ, (ଅନୁଭବ କରି ନାହିଁ) ଏବଂ ଏହା ଦେଖି ଏ ମାଧୁର୍ଯ୍ୟ ଆସ୍ୱାଦ କରିବା ପକାଶେ ମୋର ବଡ଼ ଲୋଭ ଜନ୍ମୁଅଛି । ତେଣୁ ଶ୍ରୀରାଧାଙ୍କ ତୁଲ୍ୟ ଏହା ଉପଭୋଗ କରିବା ନିମିତ୍ତ ମୋର କୌତୂହଳ ହେଉଅଛି । ୩୫ଶ ଶ୍ଳୋକାର୍ଥ ।

ଶ୍ରୀରାଧାଙ୍କର ତତ୍ତ୍ୱରୂପ ବର୍ଣ୍ଣନ କରୁଅଛନ୍ତି — ଶ୍ରୀକୃଷ୍ଣଙ୍କର ଅନନ୍ତ ଶକ୍ତି ମଧ୍ୟରେ ତିନ ଗୋଟି ପ୍ରଧାନ ଶକ୍ତି, ଯଥା — ଚିତ୍‌ଶକ୍ତି, ମାୟାଶକ୍ତି ଓ ଜୀବଶକ୍ତି । ଚିତ୍‌ଶକ୍ତିଙ୍କ ନାମ ଅନ୍ତରଙ୍ଗା, ମାୟାଶକ୍ତିଙ୍କ ନାମ ବହିରଙ୍ଗା ଏବଂ ଜୀବଶକ୍ତିଙ୍କ ନାମ ତଟସ୍ଥା । ଏହି ଅନ୍ତରଙ୍ଗା ହିଁ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତି, ଏହି ତିନ ଶକ୍ତି ଉପମାଦ୍ୱାରା ଏହିପରି ବୁଝାଯାଏ ଯେ, ଅନ୍ତରଙ୍ଗା ସୂର୍ଯ୍ୟମଣ୍ଡଳସ୍ଥାନୀୟା, ବହିରଙ୍ଗା ପ୍ରତିଚ୍ଛବିଗତବର୍ଣ୍ଣଶାବଲ୍ୟସ୍ଥାନୀୟା ଓ ତଟସ୍ଥା ରଶ୍ମିସ୍ଥାନୀୟା । ୧୧୬।୧୧୭ ।

୩୬ ଶ୍ଳୋକ ଅନ୍ୱୟ — ଅ: ୬ମ ପରି. ୭ମ ଶ୍ଳୋକ ।

ବିଷ୍ଣୁଙ୍କର ତିନଗୋଟି ଶକ୍ତିର ଉପଲବ୍ଧି ହୁଏ, ଯେଉଁମାନଙ୍କ ମଧ୍ୟରୁ ପରା (ସର୍ବଶ୍ରେଷ୍ଠା) ଚିତ୍-ସ୍ୱରୂପା (ଅନ୍ତରଙ୍ଗା) ପ୍ରଥମ, ଅପରା (ଅନ୍ତରଙ୍ଗା ଶକ୍ତିଠାରୁ ପୃଥକ୍) କ୍ଷେତ୍ରଜ୍ଞାନାମ୍ନୀ ଶକ୍ତି (ଜୀବଶକ୍ତି) ଦ୍ୱିତୀୟ ଏବଂ ଅନ୍ୟା (ଅନ୍ତରଙ୍ଗା ଓ କ୍ଷେତ୍ରଜ୍ଞା ବ୍ୟତୀତ ଅନ୍ୟା) କର୍ମନାମ୍ନୀ ଅବିଦ୍ୟା (ମାୟା ବା ବହିରଙ୍ଗା) ଶକ୍ତି ତୃତୀୟ । ୩୬ ଶ୍ଳୋକାର୍ଥ ।

ସ୍ୱରୂପଶକ୍ତିର ବିଷୟ କହୁଅଛନ୍ତି :—

ଶ୍ରୀକୃଷ୍ଣଙ୍କର ସ୍ୱରୂପ ସଚ୍ଚିଦାନନ୍ଦଘନମୂର୍ତ୍ତି ଏଣୁ ଏ ସ୍ୱରୂପଶକ୍ତି ତିନରୂପରେ ପ୍ରକାଶିତ ଯଥା — ଆନନ୍ଦଅଂଶର ନାମ ହ୍ଲାଦିନୀ, ସତ୍‌ଅଂଶର ନାମ ସନ୍ଧିନୀ (ଆଧାରଶକ୍ତି ବା ସ୍ୱପ୍ରକାଶଶକ୍ତି) ଚିତ୍ ଅଂଶର ନାମ ସମ୍ବିତ୍ (ଅଦ୍ୱୟଜ୍ଞାନ) ୧୧୮

| | |
|---|---|
| ଆନନ୍ଦାଂଶେହ୍ଲ ଦିନୀ, ସଦଂଶେ ସନ୍ଧିନୀ । | କୃଷ୍ଣକେ ଆହ୍ଲାଦେ,—ତାତେ ନାମ ହ୍ଲାଦିନୀ । |
| ଚିଦଂଶେ ସଂବିତ୍—ଯାରେ 'ଜ୍ଞାନ' କରି ମାନି । | ସେଇ-ଶକ୍ତିଦ୍ୱାରେ ସୁଖ ଆସ୍ୱାଦେ ଆପନି ।୧୨୦ |
| | ସୁଖରୂପ କୃଷ୍ଣ କରେ ସୁଖ-ଆସ୍ୱାଦନ । |
| ତଥାହି ବିଷ୍ଣୁପୁରାଣେ (୧।୧୨।୬୯)— | ଭକ୍ତଗଣେ ସୁଖ ଦିତେ ହ୍ଲାଦିନୀ କାରଣ ।୧୨୧। |
| ହ୍ଲାଦିନୀ ସନ୍ଧିନୀ ସଂବିତ୍ତ୍ୱୟ୍ୟେକା ସର୍ବସଂଶ୍ରୟେ । | ହ୍ଲାଦିନୀର ସାର ଅଂଶ—ତାର 'ପ୍ରେମ' ନାମ । |
| ହ୍ଲାଦତାପକରୀ ମିଶ୍ରା ତ୍ୱୟି ନୋ ଗୁଣବର୍ଜିତେ ॥୬୭ | ଆନନ୍ଦ-ଚିନ୍ମୟ ରସ-ପ୍ରେମେର ଆଖ୍ୟାନ ।୧୨୨। |

ସୁଖରୂପକୃଷ୍ଣକରେ ଇତ୍ୟନେନ କୃଷ୍ଣସ୍ୟ ସୁଖରୂପତ୍ୱଂପ୍ରଗତସ୍ୟତେ, ତଦ୍ଭକ୍ତସ୍ୟ ସୁଖ-ପ୍ରଗତତ୍ୱମିତ୍ୟପେକ୍ଷ୍ୟାହ ଭକ୍ତଗଣେତି । ନନୁ ତର୍ହି କଥଂ କୃଷ୍ଣକେଆହ୍ଲାଦେ ତାତେନାମ ଅହ୍ଲାଦିନୀ, ଇତି ଭାଷା, ନତଭକ୍ତସୁଖଦାନେନ ତାଦୃସଖଦାନମିତିବାଚ୍ୟଂ, ତଥାପି ତତ୍ସୁଖସ୍ୟ ଜନ୍ୟତ୍ୱାପତ୍ତିଃ-ସ୍ୟାଦିତି । ଅତ୍ରୋଚ୍ୟତେ, ଶ୍ରୀକୃଷ୍ଣସ୍ୟ ନିତ୍ୟସୁଖରୂପତ୍ୱେଽପି ନବଲୀଳାନୁକରଣେନ ଜନ୍ୟତ୍ୱମେବ ତେନୈବ ଶ୍ରୀକୃଷ୍ଣେନ ପ୍ରକାଶ୍ୟତେ, ଇତି ନ କଶ୍ଚିଦ୍ଦୋଷଃ । ୧୨୧ । ଚ. ଚ.

ଆନନ୍ଦେତି । ଆନନ୍ଦାନୁଭବରୂପରସାସ୍ୱାଦ ଏବ ପ୍ରେମ୍ଣଃ ଖ୍ୟାତିରିତ୍ୟର୍ଥଃ, ଯଥାଶ୍ରୁତ-ବ୍ୟାଖ୍ୟାୟାଂ ପ୍ରେମ୍ଣୋ ହ୍ଲାଦିନୀସାରାଂଶତ୍ୱେ ଚିନ୍ମୟତ୍ୱରୂପେଣ ନିରର୍ଥକଂ ସ୍ୟାଦିତି । ୧୨୨ । ଚ. ଚ.

---

୬୭ଶ ଶ୍ଳୋକର ଅନ୍ୱୟ—ଆଦି- ୪ର୍ଥ ପରି- ୯ମ ଶ୍ଳୋକ ।

ଅର୍ଥ - ହେ ଭଗବନ୍ ! ମୁଖ୍ୟା ଅବ୍ୟଭିଚାରିଣୀ ଆପଣଙ୍କର ସ୍ୱରୂପଭୂତା ହ୍ଲାଦିନୀ, ସନ୍ଧିନୀ, ଓ ସମ୍ବିତ୍ ଏହି ଶକ୍ତି ତ୍ରୟ ସର୍ବାଧିଷ୍ଠାନଭୂତ ଆପଣଙ୍କଠାରେ ବିରାଜ କରୁଅଛନ୍ତି । ତ୍ରିଗୁଣା ପ୍ରକୃତିରୁ ହ୍ଲାଦକରୀ ଅର୍ଥାତ୍ ମନଃପ୍ରସାଦଜନକତା ସାତ୍ତ୍ୱିକୀ, ତାପକରୀ ଅର୍ଥାତ୍ ବିଷୟ ବିଯୋଗାଦିରେ ତାପଦାୟିନୀ ତାମସୀ, ଏବଂ ପ୍ରସାଦ ଓ ତାପ ଉଭୟମିଶ୍ରା ବିଷୟଜନ୍ୟା ରାଜସୀ ଏ ତ୍ରିବିଧଶକ୍ତି ପ୍ରାକୃତସତ୍ତ୍ୱାଦିଗୁଣବର୍ଜିତ ଆପଣଙ୍କଠାରେ ନାହାନ୍ତି । ଅର୍ଥାତ୍ ତାହା ଜୀବମାନଙ୍କ-ଠାରେ ରହିଅଛି । ୬୭ ।

(ଉଲ୍ଲିଖିତ ଶ୍ଳୋକର ବିଶେଷାର୍ଥ ଆଦି ୪ର୍ଥ ପରିଚ୍ଛେଦ ୯ମ ଶ୍ଳୋକରେ ବିବୃତ ହୋଇଅଛି ।)

ଶ୍ରୀକୃଷ୍ଣଙ୍କ ସ୍ୱରୂପର ହ୍ଲାଦିନୀ ଅଂଶବିଶେଷ୍ୟ କହୁଅଛନ୍ତି; ଏହି ହ୍ଲାଦିନୀ ଶ୍ରୀକୃଷ୍ଣଙ୍କୁ ଆହ୍ଲାଦ ବା ଆନନ୍ଦ ରସଆସ୍ୱାଦନ କରାନ୍ତି ବୋଲି ଏହାଙ୍କର ନାମ ହ୍ଲାଦିନୀ, ଶ୍ରୀକୃଷ୍ଣ ନିଜେ ସୁଖରୂପ ହେଲେହେଁ ହ୍ଲାଦିନୀଙ୍କଠାରୁ ସୁଖଆସ୍ୱାଦନ କରନ୍ତି ଏବଂ ଭକ୍ତମାନେ ମଧ୍ୟ ହ୍ଲାଦିନୀଙ୍କ ଦ୍ୱାରା ଶ୍ରୀକୃଷ୍ଣ ସୁଖ ଲାଭ କରନ୍ତି ।

ହ୍ଲାଦିନୀର ସାରଅଂଶର ନାମ ପ୍ରେମ, ଉପରୋକ୍ତ ୯୧ ପୟାରୋକ୍ତ "ପ୍ରେମ କୋନ ତତ୍ତ୍ୱରୂପ" ଏହାର ଅର୍ଥ ଏତଦ୍ଦ୍ୱାରା ପ୍ରକାଶ କରାଗଲା ।

ଏହି ପ୍ରେମ ଆନନ୍ଦଚିନ୍ମୟରସ ଆସ୍ୱାଦନ କରାନ୍ତି ଏହାହିଁ ତାହାଙ୍କର ଆଖ୍ୟାନ (ଖ୍ୟାତି) ଏହାର ଭାବାର୍ଥ ଏହି ଯେ—ଶ୍ରୀକୃଷ୍ଣ ସ୍ୱୟଂ ସଚ୍ଚିଦାନନ୍ଦବିଗ୍ରହ, ସେ ତାଙ୍କର ହ୍ଲାଦିନୀ ଶକ୍ତିଦ୍ୱାରା ସ୍ୱାନନ୍ଦସୁଖ ଆସ୍ୱାଦନ କରନ୍ତି । ଏବଂ ସେହି ଶକ୍ତି ଦ୍ୱାରା ସର୍ବପ୍ରଧାନଭକ୍ତମାନଙ୍କୁ ସେମାନଙ୍କ ଭାବାନୁ-ଯାୟୀ ତତ୍ତତ୍ ସୁଖ ଆସ୍ୱାଦନ କରାନ୍ତି । ଏହି ହ୍ଲାଦିନୀ ଶକ୍ତିଙ୍କର ସାରାଂଶ (ପ୍ରେମ) ଦ୍ୱାରା ଚିନ୍ମୟ-ଆନନ୍ଦରସ ତଦ୍ଭାବଭାବିତଭକ୍ତମାନଙ୍କୁ ଆସ୍ୱାଦନ କରାନ୍ତି । ଏହି ଚିନ୍ମୟଆନନ୍ଦରସ ଅପ୍ରାକୃତ । ଏହି ଅପ୍ରାକୃତ ବସ୍ତୁ ଅପ୍ରାକୃତ ପ୍ରଭୁ ଶ୍ରୀକୃଷ୍ଣଙ୍କର କେବଳ କୃପାଦତ୍ତ । ନଚେତ୍ ଜୀବର ସାଧ୍ୟାୟତ୍ତ ନୁହେଁ । ଜଡ଼ୀୟ ଆନନ୍ଦାଭାସ ଜୀମ ଏହାର ସମ୍ପୂର୍ଣ୍ଣ ବିପରୀତ, ୧୨୦ । ୧୨୧ । ୧୨୨

ପ୍ରେମେର ପରମ ସାର—'ମହାଭାବ' ଜାନି ।
ସେଇ ମହାଭାବରୂପା ରାଧାଠାକୁରାଣୀ ।୧୨୩।
ତଥାହି ଉଜ୍ଜ୍ୱଳନୀଲମଣୌ—ରାଧାଚନ୍ଦ୍ରାବଲ୍ୟୋଃ
ଶ୍ରେଷ୍ଠତାକଥନେ । (୨)
ତୟୋରପ୍ୟୁଭୟୋର୍ମଧ୍ୟେ ରାଧିକା ସର୍ବଥାଧିକା ।
ମହାଭାବସ୍ୱରୂପେୟଂ ଗୁଣୈରତିବରୀୟସୀ ।୩୮।
ପ୍ରେମେର ସ୍ୱରୂପ—ଦେହ ପ୍ରେମବିଭାବିତ ।
କୃଷ୍ଣେର ପ୍ରେୟସୀଶ୍ରେଷ୍ଠ ଜଗତେ ବିଦିତ ।୧୨୪।

ତଥାହି ବ୍ରହ୍ମସଂହିତାୟାମ (୫।୩୭)—
ଆନନ୍ଦଚିନ୍ମୟରସପ୍ରତିଭାବିତାଭି-
ସ୍ତାଭିର୍ଯ ଏବ ନିଜରୂପତୟା କଲାଭିଃ ।
ଗୋଲୋକ ଏବ ନିବସତ୍ୟଖିଲାତ୍ମଭୂତୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ।୩୯।
ସେଇ ମହାଭାବ ହୟ ଚିନ୍ତାମଣିସାର ।
କୃଷ୍ଣବାଞ୍ଛାପୂର୍ଣ୍ଣ କରେ-ଏଇ କାର୍ଯ୍ୟ ଯାର ।୧୨୫।

ସେଇ ଇତି । ହ୍ଲାଦିନୀ ଯା ମହାଶକ୍ତିଃ ସର୍ବଶକ୍ତିବରୀୟସୀ, ତତ୍ସାରଭାବରୂପେୟଂ ଇତିତନ୍ତ୍ରେ ପ୍ରତିଷ୍ଠିତା । ୧୨୩ । ଚ. ର.

ପ୍ରେମବିଭାବିତ—ପ୍ରେମ୍ନୈବ ପ୍ରକାଶିତ ଇତ୍ୟର୍ଥଃ । ୧୨୪ । ଚ. ର.

ପ୍ରେମର ସର୍ବୋତ୍କୃଷ୍ଟ ସାରାଂଶ ଅର୍ଥାତ୍ ଯାହାର ସମାନ ବା ଯାହାଠାରୁ ଅଧିକ ଆଉ ହୋଇପାରେ ନା, ତାହାର ନାମ ମହାଭାବ । ଶ୍ରୀମତୀ ରାଧାଠାକୁରାଣୀହିଁ ସେହି ମୂର୍ତ୍ତିମତୀ ମହାଭାବ । ୧୨୩ ।

୩୮ ଶ୍ଳୋକର ଅନ୍ୱୟ—ଆଦି: ୪ର୍ଥ ପରି: ୧୧ଶ ଶ୍ଳୋକ ।

ଅର୍ଥ—ଶ୍ରୀରାଧିକା ଓ ଶ୍ରୀଚନ୍ଦ୍ରାବଳୀ ଏହି ଉଭୟଙ୍କ ମଧ୍ୟରେ ଶ୍ରୀରାଧିକା ସର୍ବପ୍ରକାରେ (ରୂପ ମାଧୁର୍ଯ୍ୟ ଓ ଶ୍ରୀକୃଷ୍ଣ ପ୍ରୀତ୍ୟାଦିରେ) ଅଧିକା, ଯେହେତୁ ସେ ମହାଭାବସ୍ୱରୂପା, ଏବଂ ଦୟାଦାକ୍ଷିଣ୍ୟାଦି ଗୁଣରେ ଅତି ପ୍ରଧାନା, ଅର୍ଥାତ୍ ସମସ୍ତ ଗୋପୀମାନଙ୍କ ମଧ୍ୟରେ ଶ୍ରୀଚନ୍ଦ୍ରାବଳୀ ପ୍ରଧାନା, କିନ୍ତୁ ଶ୍ରୀରାଧା ତାଙ୍କ ଅପେକ୍ଷା ଶ୍ରେଷ୍ଠହେତୁ ସର୍ବପ୍ରଧାନା । ୩୮ଶ ଶ୍ଳୋକାର୍ଥ ।

ଉପରୋକ୍ତ ଶ୍ଳୋକରେ ଶ୍ରୀରାଧା 'ସର୍ବଥାଧିକା' ଏତଦ୍ଦ୍ୱାରା ସେ ଶ୍ରୀକୃଷ୍ଣପ୍ରେୟସୀ ଗୋପୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଏହା ବ୍ୟକ୍ତ ହେଲା । ଏବଂ ସେ ମହାଭାବ ସ୍ୱରୂପିଣୀହେତୁ ତାହାଙ୍କର ଅନ୍ତର୍ବାହ୍ୟ ସମସ୍ତ ଅର୍ଥାତ୍ ଚିତ୍ତେନ୍ଦ୍ରିୟକାୟ ସର୍ବଦା ଶ୍ରୀକୃଷ୍ଣପ୍ରେମରେ ବିଭାବିତ । କାରଣ ସେ ଶ୍ରୀକୃଷ୍ଣପ୍ରେମର ଶ୍ରୀମୂର୍ତ୍ତି । ୧୨୪ ।

୩୯ ଶ୍ଳୋକର ଅନ୍ୱୟ – ଆଦି: ୪ର୍ଥ: ପରି: ୧୨ଶ ଶ୍ଳୋକ ।

ଅର୍ଥ—ଗୋକୁଳସ୍ଥ ଓ ଅପରାପର ପ୍ରିୟଜନମାନଙ୍କର ପରମପ୍ରିୟ ଗୋବିନ୍ଦ ଯେଉଁ ତାହାଙ୍କର ପରମଚିଦାନନ୍ଦମୟ ମଧୁରରସରୁ ସଞ୍ଜାତ ଏବଂ ହ୍ଲାଦିନୀ ନାମ୍ନୀ ସ୍ୱରୂପଶକ୍ତିର ବୃତ୍ତିରୂପା ଗୋପୀମାନଙ୍କ ସହିତ ସ୍ୱପରିତରୂପରେ ଗୋଲୋକ ନାମକ ସ୍ୱଧାମରେ ବାସକରନ୍ତି, ସେହି ଆଦି-ପୁରୁଷ (ମୂଳ) ଗୋବିନ୍ଦଙ୍କୁ ମୁଁ (ବ୍ରହ୍ମା) ଭଜନା କରେଁ । ୩୯ଶ ଶ୍ଳୋକାର୍ଥ ।

ଏହି ଶ୍ଳୋକଦ୍ୱାରା ପ୍ରକାଶ ପାଉଅଛି ଯେ, ଶ୍ରୀକୃଷ୍ଣପ୍ରିୟା ଗୋପୀମାନେ ଆନନ୍ଦଚିନ୍ମୟରସ ପ୍ରତିଭାବିତା ଅର୍ଥାତ୍ ପରମପ୍ରେମମୟ ଉଜ୍ଜ୍ୱଳ ନାମକ ରସର ମୂର୍ତ୍ତି । ସେମାନଙ୍କ ମଧ୍ୟରେ ଶ୍ରେଷ୍ଠତମା ଶ୍ରୀରାଧାଠାକୁରାଣୀ ଉକ୍ତରସର ପରମନିର୍ଯାସ ଅର୍ଥାତ୍ ମୂର୍ତ୍ତିମତୀ ମୂଳବସ୍ତୁ (ମହାଭାବ ମୂର୍ତ୍ତି)।

ପ୍ରେମର ପରମସାର ଯେ ମହାଭାବ ତାହା ଚିନ୍ତାମଣିସାର ଏବଂ ତାହାଙ୍କର କାର୍ଯ୍ୟ ଶ୍ରୀକୃଷ୍ଣଙ୍କର ସର୍ବବିଧବାସନା ପୂର୍ଣ୍ଣକରି । ଏହାର ତାତ୍ପର୍ଯ୍ୟ ଏହି ଯେ—ମୂଳ ଶମାବ -ଯେ ସମସ୍ତ

| | |
|---|---|
| ମହାଭାବଚିନ୍ତାମଣି— ରାଧାର ସ୍ୱରୂପ । ଲଳିତାଦି ସଖୀ ତାଁର କାୟବ୍ୟୂହରୂପ । ୧୨୬ । | ରାଧାପ୍ରତି କୃଷ୍ଣସ୍ନେହ ସୁଗନ୍ଧି-ଉଦ୍ୱର୍ତ୍ତନ । ତାତେ ଅତି ସୁଗନ୍ଧ ଦେହ ଉଜ୍ଜ୍ୱଳବରଣ ।୧୨୭। |

ରାଧାପ୍ରତି ଇତ୍ୟାଦି ।—

ରାଧାଭିବୋଜ୍ଜ୍ୱଳଚିନ୍ତାମଣିରୋଦ୍ଭାବିତଵିଗ୍ରହାଂ । ସଖୀପ୍ରଣୟସଦ୍‌ଗନ୍ଧବରୋଦ୍‌ବର୍ତ୍ତନ-ସୁପ୍ରଭାଂ । ୧ । କାରୁଣ୍ୟାମୃତଵୀଚିଭିଂ ତାରୁଣ୍ୟାମୃତଧାରୟା, ଲାବଣ୍ୟାମୃତବନ୍ୟାଭିଃ ସ୍ନାପିତାଂ ଗ୍ଲପି-ତେନ୍ଦିରାଂ । ୨ । ହ୍ରୀପଟ୍ଟବସ୍ତ୍ରଗୁପ୍ତାଙ୍ଗୀଂ ସୌନ୍ଦର୍ଯ୍ୟଘୁସୃଣାଞ୍ଚିତାଂ । ଶ୍ୟାମଳୋଜ୍ଜ୍ୱଳକସ୍ତୁରୀବିଚିତ୍ରିତ-କଳେବରା ।୩। କମ୍ପାଶ୍ରୁପୁଲକସ୍ତମ୍ଭସ୍ୱେଦଗଦ୍‌ଗଦରକ୍ତତା । ଉନ୍ମାଦୋଜାଡ୍ୟମିତ୍ୟେତୈଃ ରତ୍ନୈର୍ନବଭିରୁତ୍ତମୈଃ । ୪ । କ୍ଲୃପ୍ତାଳଙ୍କୃତିସଂଶ୍ଲିଷ୍ଟାଗୁଣାଳୀପୁଷ୍ପମାଳିନୀଂ । ଧୀରାଧୀରାତ୍ୱସଦ୍ୱାସ-ପଟ୍ଟବାସୈଃ ପରିଷ୍କୃତାଂ । ୫ । ପ୍ରଚ୍ଛନ୍ନମାନଧମ୍ମିଲ୍ଲାଂ ସୌଭାଗ୍ୟତିଲକୋଜ୍ଜ୍ୱଲାଂ । କୃଷ୍ଣନାମଯଶଃଶ୍ରାବ-ବତଂସୋଲ୍ଲାସିକର୍ଣ୍ଣିକାଂ । ୬ । ସୌରଭାନ୍ତଃପୁରେଗର୍ବପର୍ଯ୍ୟଙ୍କୋପରିଲୀଳୟା । ନିବିଷ୍ଟାଂ ପ୍ରେମବୈଚିତ୍ତ୍ୟ-ବିଚଲତ୍ତରଳାଞ୍ଚିତାଂ ।୭। ପ୍ରଣୟକ୍ରୋଧସଚ୍ଚୋଳୀବନ୍ଧଗୁପ୍ତୀକୃତସ୍ତନାଂ । ସପତ୍ନୀବକ୍ତ୍ରହୃଚ୍ଛୋଷି-ଯଶଃଶ୍ରୀକଚ୍ଛପୀରବାଂ । ୮ । ମଧ୍ୟତାତ୍ମସଖୀସ୍କନ୍ଧଲୀଳାନ୍ୟସ୍ତକରାମ୍ବୁଜାଂ । ଶ୍ୟାମାଂ ଶ୍ୟାମସ୍ମରାମୋଦମଧୁଳୀ-ପରିବେଶିକାଂ । ୯ । ତ୍ୱାଂ ନତ୍ୱାଯାଚତେଧୃତ୍ୱାତୃଣଂଦନ୍ତୈରୟଂ ଜନଃ । ସ୍ୱଦାସ୍ୟାମୃତସେକେନ ଜୀବୟାମୁଂ ସୁଦୁଃଖିତଂ । ୧୦ । ନ ମୁଞ୍ଚେଚ୍ଛରଣାୟାତମପି ଦୁଷ୍ଟଂ ଦୟାମୟଃ । ଅତୋ ଗାନ୍ଧର୍ବିକେହାହା-ମୁଞ୍ଚୈନଂ ନୈବତାଦୃଶଂ ।୧୧। ପ୍ରେମାମ୍ଭୋଜମରନ୍ଦାଖ୍ୟଂ ସ୍ତବରାଜମିଦଂ ଜନଃ । ଶ୍ରୀରାଧିକା କୃପା-ହେତୁଂ ପଠଂ ସ୍ତଦାସ୍ୟମାପ୍ନୁୟାତ୍ । ଇତି ଶ୍ରୀରାଧିକା ପ୍ରେମାମ୍ଭୋଜମରନ୍ଦାଖ୍ୟସ୍ତବରାଜଃ, କୃତରାଗ-ତାମ୍ବୂଳରକ୍ତୋଷ୍ଠୀପ୍ରେମକୌଟିଲ୍ୟକଜ୍ଜ୍ୱଲାଂ ଇତ୍ୟଧିକଃ ପାଠଃ । ୧୨୬ । ଚି. ଚ.

---

ଅଭିଳାଷ ପୂର୍ଣ୍ଣ କରନ୍ତି, ତାହାକୁ ଚିନ୍ତାମଣି କୁହାଯାଏ । ଶ୍ରୀକୃଷ୍ଣ ଜଗତ୍‌ଚିନ୍ତାମଣି; କାରଣ ପ୍ରାକୃତ-ପ୍ରାକୃତ ସମସ୍ତ ଜଗତ୍‌ବାସୀମାନଙ୍କର ସ୍ମରଣମାତ୍ର ସେ ସମସ୍ତ ବାଞ୍ଛା ପୂର୍ଣ୍ଣ କରନ୍ତି । ସେହି ଜଗତ୍-ଚିନ୍ତାମଣିଙ୍କର ସମସ୍ତ ବାଞ୍ଛା ପୂର୍ଣ୍ଣ କରନ୍ତି ବୋଲି ଶ୍ରୀରାଧାଠାକୁରାଣୀ ଚିନ୍ତାମଣିସାର ଅଟନ୍ତି ଅର୍ଥାତ୍ ଚିନ୍ତାମଣିର ଚିନ୍ତାମଣି ଅଟନ୍ତି ।୧୨୫।

ଉପରୋକ୍ତ କାରଣରୁ ଶ୍ରୀମତୀ ଜଡ଼ ମୂର୍ତ୍ତିମତୀ-ମହାଭାବଚିନ୍ତାମଣିସ୍ୱରୂପିଣୀ ଏବଂ ଶ୍ରୀଲଳିତାଦି ବ୍ରଜଦେବୀମାନେ ତାହାଙ୍କର କାୟବ୍ୟୂହରୂପା ଅର୍ଥାତ୍ ପ୍ରକାରରୂପା ଅଟନ୍ତି । ଏ ବିଷୟ ଆଦିଲୀଳା ୪ର୍ଥ ପରିଚ୍ଛେଦରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ୧୨୬ ।

ଯେପରି ବିଳାସୀଲୋକମାନେ ଶରୀରକୁ ସୁଗନ୍ଧଯୁକ୍ତ କରିବା ସକାଶେ ନାନାପ୍ରକାର ସୁଗନ୍ଧଯୁକ୍ତପ୍ରଲେପ ଦେହରେ ମର୍ଦ୍ଦନ କରନ୍ତି ଏହି ଉପମାରେ ଗ୍ରନ୍ଥକାର କହୁଅଛନ୍ତି ଯେ, ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଯେ ସ୍ନେହ ତାହା ସୁଗନ୍ଧ ପ୍ରଲେପ ତୁଲ୍ୟ ତଦ୍ଦ୍ୱାରା ଶ୍ରୀରାଧାଙ୍କର ସ୍ୱାଭାବିକ ସୁଗନ୍ଧଯୁକ୍ତ ଉଜ୍ଜ୍ୱଳଦେହ ଅତିଶୟ ସୁଗନ୍ଧଯୁକ୍ତ ଓ ସମୁଜ୍ଜ୍ୱଳ ହୁଏ । ୧୨୭ ।

ମହାଭାବ ଚିନ୍ତାମଣିସାର ଶ୍ରୀମତୀ ରାଧାଠାକୁରାଣୀଙ୍କର ମହାଭାବମୟୀରୂପର ବର୍ଣ୍ଣନା ରୂପକଭାବରେ କରୁଅଛନ୍ତି । ଯେପରି ଉତ୍ତମା ନାୟିକା ନାୟକସମ୍ମିଳନ ନିମିତ୍ତ ସ୍ନାନ ଓ ବେଶ-ଭୂଷା ଧାରଣ କରନ୍ତି ଏବଂ ଅଭିସାର କରନ୍ତି ସେହି ଭାବରେ ରୂପକଛଳରେ ବର୍ଣ୍ଣନା କରୁ-ଅଛନ୍ତି ।

କାରୁଣ୍ୟାମୃତଧାରାୟ ସ୍ନାନ ପ୍ରଥମ ।
ତାରୁଣ୍ୟାମୃତଧାରାୟ ସ୍ନାନ ମଧ୍ୟମ । ୧୨୮ ।
ଲାବଣ୍ୟାମୃତଧାରାୟ ତଦୁପରି ସ୍ନାନ ।
ନିଜଲଜ୍ଜା-ଶ୍ୟାମ-ପଟ୍ଟଶାଟୀ ପରିଧାନ । ୧୨୯ ।
କୃଷ୍ଣ ଅନୁରାଗେ ରକ୍ତ ଦ୍ୱିତୀୟ ବସନ ।
ପ୍ରଣୟ ମାନ-କଞ୍ଚୁଲିକାୟ ବକ୍ଷଃ ଅଚ୍ଛାଦନ ।୧୩୦।
ସୌନ୍ଦର୍ଯ୍ୟ କୁଙ୍କୁମ, ସଖୀପ୍ରଣୟ ଚନ୍ଦନ ।
ସ୍ମିତ-କାନ୍ତି କର୍ପୂର—ତିନେ ଅଙ୍ଗ ବିଲେପନ ।
କୃଷ୍ଣେର ଉଜ୍ଜ୍ୱଲ ରସ ମୃଗମଦଭର ।
ସେଇ ମୃଗମଦେ ବିଚିତ୍ରିତ କଲେବର ।୧୩୧।
ପ୍ରଚ୍ଛନ୍ନ ମାନ-ବାମ୍ୟ ଧମ୍ମିଲ୍ଲ-ବିନ୍ୟାସ ।
ଧୀରାଧୀରାତ୍ମକ-ଗୁଣ ଅଙ୍ଗେ ପଟ୍ଟବାସ । ୧୩୨ ।
ରାଗ-ତାମ୍ବୂଲରାଗେ ଅଧର ଉଜ୍ଜ୍ୱଲ ।
ପ୍ରେମକୌଟିଲ୍ୟ ନେତ୍ରଯୁଗଲେ କଜ୍ଜ୍ୱଲ । ୧୩୩ ।
ସୂଦ୍ଦୀପ୍ତ ସାତ୍ତ୍ୱିକଭାବ ହର୍ଷାଦି ସଞ୍ଚାରୀ ।
ଏଇ ସବ ଭାବ-ଭୂଷଣ ସବ ଅଙ୍ଗେ ଭରି ।୧୩୪।
କିଲକିଞ୍ଚିତାଦି ଭାବ-ବିଂଶତି-ଭୂଷିତ ।
ଗୁଣଶ୍ରେଣୀ-ପୁଷ୍ପମାଲା ସର୍ବାଙ୍ଗେ ପୂରିତ । ୧୩୫ ।
ସୌଭାଗ୍ୟତିଲକ ଚାରୁ ଲଲାଟେ ଉଜ୍ଜ୍ୱଲ ।
ପ୍ରେମବୈଚିତ୍ତ୍ୟ ରତ୍ନ ହୃଦୟେ ତରଳ । ୧୩୬ ।
ମଧ୍ୟବୟସ୍ଥିତା-ସଖୀ ସ୍କନ୍ଧେ କର-ନ୍ୟାସ ।
କୃଷ୍ଣଲୀଳା ମନୋବୃତ୍ତି ସଖୀ ଆଶ-ପାଶ ।୧୩୭।
ନିଜାଙ୍ଗ ସୌରଭାଲୟେ ଗର୍ବ ପର୍ଯ୍ୟଙ୍କ ।
ତାତେ ବସିଯାଛେ ସଦା ଚିନ୍ତେ କୃଷ୍ଣସଙ୍ଗ ।୧୩୮।
କୃଷ୍ଣ-ନାମ-ଗୁଣ-ଯଶ ଅବତଂସ କାଣେ ।
କୃଷ୍ଣ-ନାମ-ଗୁଣ-ଯଶ-ପ୍ରବାହ ବଚନେ ।୧୪୦।
କୃଷ୍ଣକେ କରାୟ ଶ୍ୟାମ-ରସ ମଧୁପାନ ।
ନିରନ୍ତର ପୂର୍ଣ୍ଣ କରେ କୃଷ୍ଣେର ସର୍ବକାମ ।
କୃଷ୍ଣେର ବିଶୁଦ୍ଧପ୍ରେମ-ରତ୍ନେର ଆକର ।
ଅନୁପମ-ଗୁଣଗଣ-ପୂର୍ଣ୍ଣ କଲେବର ।୧୪୧।

କାରୁଣ୍ୟେତି, କୃଷ୍ଣସ୍ୟକାରୁଣ୍ୟଂ, କୃଷ୍ଣଂପ୍ରତି ତସ୍ୟାକାରୁଣ୍ୟଂ ବା ତାରୁଣ୍ୟନବନବାମ୍ବୁମାନଂ । ୧୨୮ । ବି, ଚ,

ଆଦୌ ପ୍ରଧାନଂ ଭାବୋୟସ୍ୟ ତତ ତତ୍ର ବିଂଶତିଭୂଷିତଂ ଚେତିବିଗ୍ରହଃ ବିଂଶତିଭୂଷିତେନୈବ କିଲକିଞ୍ଚିତେଲବ୍ଧେଽପି ପୁନରୁକ୍ତି, ସ୍ୱଲକ୍ଷଣାନ୍ୟବାର୍ଥ୍ୟଚମତ୍କାରଦ୍ୟୋତନେତିଜ୍ଞାତବ୍ୟା ।୧୩୫।

ଶ୍ୟାମରସଃ ଶୃଙ୍ଗାରଃ ପାନଂଆସ୍ୱାଦେନାନୁଭବଃ । ୧୪୧ । ବି· ଚ·

ଶ୍ରୀକୃଷ୍ଣ କାରୁଣ୍ୟାମୃତ, ଲାବଣ୍ୟାମୃତ ଓ ତାରୁଣ୍ୟାମୃତପାରାବାର । ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ସ୍ନେହ ସୁବଳିତ ତନୁ ଏବଂ ଚିନ୍ତାମଣି ହେତୁ ଲୌକିକଭାବରେ ନିତ୍ୟ ସନ୍ଧ୍ୟାସ୍ନାନ ତୁଲ୍ୟ କାରୁଣ୍ୟାମୃତପାରାବାରରେ ତତ୍ପରେ ତାରୁଣ୍ୟାମୃତପାରାବାରରେ ଓ ଶେଷରେ ଲାବଣ୍ୟାମୃତପାରାବାରରେ ସ୍ନାତ ହୋଇଅଛନ୍ତି । ଏହାର ଭାବ ଏହି ଯେ, ଶ୍ରୀରାଧାଙ୍କ ଶ୍ରୀମୂର୍ତ୍ତି କାରୁଣ୍ୟାମୃତ, ତାରୁଣ୍ୟାମୃତ ଓ ଲାବଣ୍ୟାମୃତରେ ଯଥାକ୍ରମ ବିଭୂଷିତ ଅର୍ଥାତ୍ ସେ ଅପୂର୍ବ କରୁଣାମୟୀ, ନବନବାମ୍ବୁମାନଯୌବନସମନ୍ୱିତା ଏବଂ ଅପୂର୍ବ ଲାବଣ୍ୟମୟୀ ମୂର୍ତ୍ତି । ସେ ତାଙ୍କ ଭାବରୂପ ଭୂଷଣମାନଙ୍କରେ ଭୂଷିତା ଅର୍ଥାତ୍ ସ୍ତ୍ରୀମାନେ ଲଜ୍ଜାନିବାରଣ ସକାଶେ ଶାଢ଼ୀ ପିନ୍ଧନ୍ତି, ଏଠାରେ—ଶ୍ରୀମତୀଙ୍କର ଲଜ୍ଜାବନମ୍ରତାହିଁ ଶ୍ୟାମପଟ୍ଟଶାଢ଼ୀ, ସ୍ତ୍ରୀଲୋକମାନେ ଉତ୍ତରୀୟଦ୍ୱାରା ମସ୍ତକ ଶରୀର ଆବୃତ କରନ୍ତି, ଶ୍ରୀମତୀଜୀଉଙ୍କର ଶ୍ରୀକୃଷ୍ଣ ଅନୁରାଗହିଁ—ରକ୍ତବର୍ଣ୍ଣ ଉତ୍ତରୀୟ ବସନ, ସ୍ତ୍ରୀଲୋକମାନେ କାଞ୍ଚୁଲି ପିନ୍ଧନ୍ତି, ଶ୍ରୀମତୀଜୀଉଙ୍କର ପ୍ରଣୟ ଓ ମାନ ଏହାହିଁ କାଞ୍ଚୁଲି, ସ୍ତ୍ରୀ ଲୋକମାନେ ହଳଦୀ ( କୁଙ୍କୁମ ) ଲଗାନ୍ତି । ଦେହରେ କର୍ପୂରସହ ଚନ୍ଦନ ଲେପନ କରନ୍ତି । ଶ୍ରୀମତୀଜୀଉଙ୍କର ଶ୍ରୀମୂର୍ତ୍ତିର ସୌନ୍ଦର୍ଯ୍ୟହିଁ ହଳଦୀ, ସଖୀମାନଙ୍କର ପ୍ରଣୟ ଚନ୍ଦନ ଏବଂ ତାହାଙ୍କର ( ଶ୍ରୀମତୀଙ୍କର ) ସୁମଧୁର ହାସ୍ୟଛଟାହିଁ କର୍ପୂର, ସ୍ତ୍ରୀ ଲୋକମାନେ କସ୍ତୁରୀଦ୍ୱାରା ଅଙ୍ଗ ଚର୍ଚ୍ଚିତ କରନ୍ତି, ଶ୍ରୀମତୀଜୀଉଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର (ଉଜ୍ଜ୍ୱଳରସ)

ହେମନ୍ତି ଉତ୍ତରୀୟବସନ୍ତି । ସ୍ତ୍ରୀଲୋକମାନେ ମସ୍ତକରେ ଖୋପା ପକାନ୍ତି । ଶ୍ରୀମତୀଙ୍କର ଚଞ୍ଚଳମାନଜନକ ବାମ୍ୟଭାବହିଁ ତାହାଙ୍କର ଖୋପାତୁଲ୍ୟ ( ଧମ୍ମିଲ୍ଲ ), ଶ୍ରୀମତୀଙ୍କର ଧୀରାଧୀରାତ୍ମକଗୁଣହିଁ ତାଙ୍କ ଶ୍ରୀଅଙ୍ଗରେ ବଲେପିତ ସୁଗନ୍ଧପୂର୍ଣ୍ଣ ପଟ୍ଟବାସ । ତାଙ୍କର କୃଷ୍ଣାନୁରାଗହିଁ ଅଧର ତାମ୍ବୁଳରାଗ ତୁଲ୍ୟ; ତାହାଙ୍କର ପ୍ରେମକୌଟିଲ୍ୟହିଁ ପ୍ରେମଯୁଗଳର କଜ୍ଜ୍ୱଳତୁଲ୍ୟ; ସୁଦୀପ୍ତ ଅଷ୍ଟସାତ୍ତ୍ୱିକଭାବ ହର୍ଷାଦି ୩୩ ସଞ୍ଚାରୀଭାବ ଏବଂ କିଳକିଞ୍ଚିତାଦି ବିଂଶତି ବ୍ୟଭିଚାରୀଭାବରୂପ ଭୂଷଣଦ୍ୱାରା ତାହାଙ୍କର ସର୍ବାଙ୍ଗ ଉତ୍ତମରୂପେ ବିଭୂଷିତ । ତାଙ୍କର ସମସ୍ତ ଗୁଣ ପୁଷ୍ପମାଳାରୂପେ ସର୍ବାଙ୍ଗରେ ଉତ୍ତମରୂପେ ବିଭୂଷିତ । ତାହାଙ୍କର ସୌଭାଗ୍ୟ ମନୋହର ଲଲାଟଦେଶରେ ଉଜ୍ଜ୍ୱଳ ତିଳକତୁଲ୍ୟ, ତାହାଙ୍କର ପ୍ରେମବୈଚିତ୍ତ୍ୟଭାବହିଁ ଗଳାରେ ବିଲମ୍ବିତ ଉତ୍କୃଷ୍ଟହାରର ମଧ୍ୟମଣିତୁଲ୍ୟ, ଏହିପ୍ରକାରରେ ବିଭୂଷିତ ଶ୍ରୀମତୀଜୀଉ ମଧ୍ୟବୟଃସ୍ଥିତା ସଖୀଙ୍କ ସ୍କନ୍ଧରେ ହସ୍ତ ଦେଇଅଛନ୍ତି ଏବଂ ଶ୍ରୀକୃଷ୍ଣଲୀଳାରସରେ ଯେଉଁମାନଙ୍କର ମନୋବୃତ୍ତି ଲିପ୍ତ ରହିଅଛି, ସେହି ସଖୀମାନେ ତାଙ୍କର ଗୃହ ପାଶରେ ରହିଅଛନ୍ତି, ସେ ନିଜ ଦେହରୂପଗୃହରେ ନିଜର ଗର୍ବରୂପପର୍ଯ୍ୟଙ୍କରେ ବସି ସର୍ବଦା ଶ୍ରୀକୃଷ୍ଣସଙ୍ଗ ଚିନ୍ତା କରୁଅଛନ୍ତି । ଶ୍ରୀକୃଷ୍ଣଙ୍କର ନାମଗୁଣଯଶ ଶ୍ରବଣହିଁ ତାହାଙ୍କର କର୍ଣ୍ଣର ଭୂଷଣସ୍ୱରୂପ, ଏବଂ ଶ୍ରୀକୃଷ୍ଣଙ୍କର ନାମଗୁଣଯଶହିଁ ତାହାଙ୍କର ସର୍ବ ପ୍ରକାର ବକ୍ତବ୍ୟ ବିଷୟ । ଏହିପ୍ରକାର ରୂପଗୁଣ ଓ କ୍ରିୟାଯୁକ୍ତା ଶ୍ରୀମତୀଜୀଉ ଶ୍ରୀକୃଷ୍ଣଙ୍କୁ ଶୃଙ୍ଗାରରସ (ଶ୍ୟାମରସ) ଆସ୍ୱାଦନଦ୍ୱାରା ସୁଖ ଅନୁଭବ କରାନ୍ତି (ମଧୁପାନକରାନ୍ତି) ଏବଂ ଶ୍ରୀକୃଷ୍ଣଙ୍କର ସର୍ବବିଧ ବାସନା ସର୍ବଦା ପୂର୍ଣ୍ଣ କରନ୍ତି । ଏଣୁ ସେ ଶ୍ରୀକୃଷ୍ଣଙ୍କର ପ୍ରେମରତ୍ନର ନିଙ୍କର ଖଣିତୁଲ୍ୟ ଏବଂ ତାହାଙ୍କର କଳେବର ଅନୁପମଗୁଣମାନଙ୍କଦ୍ୱାରା ପୂର୍ଣ୍ଣ ।

ପ୍ରଣୟ—ଯେଉଁ ମାନରେ ପ୍ରିୟଜନ ସହିତ ଆପଣାକୁ ଅଭେଦ ମନେ କରାଯାଏ ତାହାକୁ ପ୍ରଣୟ ବୋଲଯାଏ ।

(ଉଜ୍ଜ୍ୱଳରେ ସ୍ଥାୟୀଭାବପ୍ରକରଣର ୭୦ ଶ୍ଳୋକ)

ମାନ—ଯେଉଁ ସ୍ନେହ ଉତ୍କୃଷ୍ଟତା ପ୍ରାପ୍ତିହେତୁ ପୂର୍ବାନୁଭୂତ ମାଧୁର୍ଯ୍ୟକୁ ନୂତନରୂପରେ ଅନୁଭୂତ କରାଇ ବାହାରେ କୌଟିଲ୍ୟଧାରଣ କରାଏ ତାହାକୁ ମାନ ବୋଲଯାଏ । (ଉ.ସ୍ଥା.୭୧)

ଧୀରାଧୀରତ୍ୱଗୁଣ—ଯେଉଁ ନାୟିକା ଅଶ୍ରୁମୋଚନପୂର୍ବକ ପ୍ରିୟତମ ପ୍ରତି ବକ୍ରୋକ୍ତି କଥା କହେ, ତାହାକୁ ଧୀରାଧୀରା ବୋଲଯାଏ । (ଉ. ନାୟିକାଭେଦପ୍ରକରଣ ୨୨ ଶ୍ଳୋକ)

ରାଗ—ପ୍ରଣୟର ଉତ୍କର୍ଷହେତୁ ଯାହାଦ୍ୱାରା ଅଧିକ ଦୁଃଖ ମଧ୍ୟ ସୁଖରୂପେ ଅନୁଭୂତ ହୁଏ ତାହାକୁ ରାଗ କୁହାଯାଏ । (ଉ. ସ୍ଥା. ୮୪ ଶ୍ଳୋକ)

ପ୍ରେମ—ଧ୍ୱଂସର କାରଣଥିଲେ ମଧ୍ୟ ଯାହାର ଧ୍ୱଂସ ହୁଏ ନା, ଯୁବକଯୁବତୀଙ୍କର ପରସ୍ପର ଏରୂପ ଭାବବନ୍ଧନକୁ ପ୍ରେମ ବୋଲଯାଏ । (ଉ. ସ୍ଥା. ୪୬ ଶ୍ଳୋକ)

ସାତ୍ତ୍ୱିକଭାବ—ସାକ୍ଷାତଭାବରେ ହେଉ ବା କିଞ୍ଚିତ ବ୍ୟବଧାନରେ ହେଉ କୃଷ୍ଣସମ୍ବନ୍ଧ ଭାବରେ ଆକ୍ରାନ୍ତଚିତ୍ତକୁ ସତ୍ତ୍ୱ ବୋଲଯାଏ, ସେହି ସତ୍ତ୍ୱରୁ ଉତ୍ପନ୍ନ ଭାବକୁ ସାତ୍ତ୍ୱିକଭାବ ବୋଲଯାଏ । ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭେଦ, ବେପଥୁ (କମ୍ପ) ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ, ସାତ୍ତ୍ୱିକଭାବ ଏହି ଆଠପ୍ରକାର ।

ସେହି ଭାବମାନଙ୍କ ମଧ୍ୟରୁ ତିନ ବା ଚାରି ବା ପଞ୍ଚଗୋଟି ଭାବ ଯଦି ଏକକାଳରେ ଅଧିକରୂପେ ବ୍ୟକ୍ତହୁଏ ଓ ତାହା ସମ୍ବରଣ କରି ନ ହୁଏ ତାହାକୁ ଦୀପ୍ତ ସାତ୍ତ୍ୱିକଭାବ ବୋଲଯାଏ । ପାଞ୍ଚ କିମ୍ବା ତତୋଽଧିକ ସାତ୍ତ୍ୱିକଭାବ ଏକକାଳରେ ବ୍ୟକ୍ତ ହୋଇ ପରମୋତ୍କର୍ଷ ପ୍ରାପ୍ତ ହେଲେ ତାହାକୁ ଉଦ୍ଦୀପ୍ତ ସାତ୍ତ୍ୱିକଭାବ ବୋଲଯାଏ ।

ତଥାହି ଶ୍ରୀଗୋବିନ୍ଦଲୀଲାମୃତେ (୧୧।୧୨୨) -

କା କୃଷ୍ଣସ୍ୟ ପ୍ରଣୟଜନିଭୂଃ ଶ୍ରୀମତୀ ରାଧିକୈକା, କାସ୍ୟ ପ୍ରେୟସ୍ୟନୁପମଗୁଣା ରାଧିକୈକା ନ ଚାନ୍ୟା । କୈହ୍ମ୍ୟଂ କେଶେ ଦୃଶି ତରଳତା ନିଷ୍ଠୁରତ୍ୱଂ କୁଚେଽସ୍ୟା ବାଞ୍ଛାପୂର୍ତ୍ତ୍ୟୈ ପ୍ରଭବତି ହରେ ରାଧିକୈକା ନ ଚାନ୍ୟା । ୪୦ ।

କୃଷ୍ଣସ୍ୟ ପ୍ରଣୟଜନିଭୂଃ—ପ୍ରଣୟସ୍ୟ ଉତ୍ପତ୍ତିଭୂମିଃ କା ? ଏକା ଶ୍ରୀମତୀ ରାଧିକା, ଅସ୍ୟ-କୃଷ୍ଣସ୍ୟପ୍ରେୟସୀ କା ? ଅନୁପମଗୁଣା ଏକା ରାଧିକା, ନ ଚ ଅନ୍ୟାଅସ୍ୟାଃ-ରାଧାୟାଃ କେଶେ କୈହ୍ମ୍ୟଂ-କୌଟିଲ୍ୟଂ ଦୃଶି-ନୟନେ ତରଳତା ଚଞ୍ଚଳତା କୁଚେ ନିଷ୍ଠୁରତ୍ୱଂ-କାଠିନ୍ୟଂ ଯତ୍ର ବର୍ତ୍ତତେ, ତସ୍ମାତ୍ ଏକା ରାଧିକା ହରେଃ ବାଞ୍ଛାପୂର୍ତ୍ତ୍ୟୈ ବାଞ୍ଛାଂ ପୂରୟିତୁଂ ପ୍ରଭବତି ନ ଚ ଅନ୍ୟାକାପି । ୪୦ ଶ୍ଳୋକ ।

---

ମହାଭାବରେ ଉକ୍ତ ଉଦ୍ଦୀପ୍ତଭାବ ଚରମସୀମା ପ୍ରାପ୍ତ ହେଲେ ତାହାକୁ ସୁଦ୍ଦୀପ୍ତ ସାତ୍ତ୍ୱିକଭାବ ବୋଲଯାଏ ।

ସଞ୍ଚାରୀ—ବାକ୍ୟ, ଭ୍ରୂନେତ୍ରାଦ ଅଙ୍ଗ ଓ ସତ୍ତ୍ୱୋତ୍ପନ୍ନ ଅନୁଭାବଦ୍ୱାରା ପ୍ରକାଶିତ ଭାବକୁ ବ୍ୟଭିଚାରୀ ଭାବ ବୋଲଯାଏ । ସ୍ଥାୟୀଭାବ ପ୍ରତି ବିଶେଷରୂପେ ଚରଣ ହେତୁ ତାହାର ନାମ ବ୍ୟଭିଚାରୀ ଏବଂ ତାହା ଭାବର ଗତିକୁ ସଞ୍ଚାରଣ କରାଏ ବୋଲି ତାହାକୁ ସଞ୍ଚାରୀ ଭାବ ମଧ୍ୟ କୁହା-ଯାଏ । ସେ ସଞ୍ଚାରୀ ବା ବ୍ୟଭିଚାରୀଭାବ ୩୩ ଗୋଟି ଅଛି ।

ଯଥା—ନିର୍ବେଦ, ବିଷାଦ, ଦୈନ୍ୟ, ଗ୍ଲାନି, ଶ୍ରମ, ମଦ, ଗର୍ବ, ଶଙ୍କା, ତ୍ରାସ, ଆବେଗ, ଉନ୍ମାଦ, ଅପସ୍ମୃତି, ବ୍ୟାଧି, ମୋହ, ମୃତି, ଆଳସ୍ୟ, ଜାଡ୍ୟ, ବ୍ରୀଡ଼ା, ଅବହିତ୍ଥା, ସ୍ମୃତି, ବିତର୍କ, ଚିନ୍ତା, ମତି, ଧୃତି, ହର୍ଷ, ଔତ୍ସୁକ୍ୟ, ଔଗ୍ର୍ୟ, ଅମର୍ଷ, ଅସୂୟା, ଚାପଲ୍ୟ, ନିଦ୍ରା, ସୁପ୍ତି ଓ ବୋଧ ।

ବିଂଶତି ଅଳଙ୍କାର—ଭାବ, ହାବ, ହେଲା (ଏହି ତିନି ଅଙ୍ଗଜ) ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ପ୍ରଗଲ୍ଭତା, ଔଦାର୍ଯ୍ୟ ଓ ଧୈର୍ଯ୍ୟ, ଏହି ସାତୋଟି ଅଯତ୍ନସିଦ୍ଧ ଅର୍ଥାତ୍ ଚେଷ୍ଟା ଓ ଯତ୍ନର ଅଭାବରେ ମଧ୍ୟ ଏମାନେ ପ୍ରକାଶ ପାନ୍ତି । ଲୀଳା, ବିଳାସ, ବିଚ୍ଛିତ୍ତି, ବିଭ୍ରମ, କିଲକିଞ୍ଚିତ, ମୋଟ୍ଟାୟିତ କୁଟ୍ଟମିତ, ବିବ୍ବୋକ, ଲଳିତ, ବିକୃତ, ଏହି ଦଶଟି ସ୍ୱଭାବଜାତ; କିଲକିଞ୍ଚିତ ଅର୍ଥାତ୍ ହର୍ଷ ହେତୁ, ଗର୍ବ, ଅଭିଳାଷ, ରୋଦନ, ସ୍ମିତ, ଅସୂୟା, ଭୟ ଓ କ୍ରୋଧ ଏମାନଙ୍କର ଏକକାଳୀନ ଉଦୟକୁ କିଲକିଞ୍ଚିତ ବୋଲଯାଏ ।

ଅପର ଅଳଙ୍କାର ଉଜ୍ଜ୍ୱଳନୀଳମଣି ଦ୍ରଷ୍ଟବ୍ୟ । ୧୨୮ ଠାରୁ ୧୪୧ ।

ଶ୍ରୀରାଧାଙ୍କର ସଖୀମାନଙ୍କ ମଧ୍ୟରେ ପରସ୍ପର କଥୋପକଥନ ।

ପ୍ରଶ୍ନ—ଶ୍ରୀକୃଷ୍ଣଙ୍କର ପ୍ରଣୟୋତ୍ପତ୍ତିସ୍ଥାନ କିଏ ?

ଉତ୍ତର—ଶ୍ରୀମତୀ ଏକା ରାଧିକା ।

ପ୍ରଶ୍ନ—ଶ୍ରୀକୃଷ୍ଣଙ୍କର ପ୍ରିୟତମା କିଏ ?

ଉତ୍ତର—ଅନୁପମଗୁଣା ଏକା ଶ୍ରୀରାଧିକା, ଅନ୍ୟ କେହି ନୁହନ୍ତି । ଏହାଙ୍କର କେଶରେ କୁଟିଳତା, ଚକ୍ଷୁରେ ତରଳତା, ଏବଂ କୁଚରେ କାଠିନ୍ୟ ସୁତରାଂ ଏକା ଶ୍ରୀରାଧିକାହିଁ ଶ୍ରୀକୃଷ୍ଣଙ୍କର ବାଞ୍ଛା-ପୂରଣରେ ସମର୍ଥା, ଅନ୍ୟ କେହି ନୁହନ୍ତି । ୪୦ ଶ୍ଳୋକାର୍ଥ ।

ଯାଁହାର ସୌଭାଗ୍ୟଗୁଣ ବାଞ୍ଛେ ସତ୍ୟଭାମା ।
ଯାଁର ଠାଇଁ କଳା-ବିଳାସ ଶିଖେ ବ୍ରଜରାମା ।୧୪୩।
ଯାଁର ସୌନ୍ଦର୍ଯ୍ୟାଦି ଗୁଣ ବାଞ୍ଛେ ଲକ୍ଷ୍ମୀ-ପାର୍ବତୀ ।
ଯାଁର ପତିବ୍ରତା-ଧର୍ମ ବାଞ୍ଛେ ଅରୁନ୍ଧତୀ । ୧୪୪ ।
ଯାଁର ସଦ୍‌ଗୁଣଗଣେର କୃଷ୍ଣ ନା ପାନ ପାର ।
ତାଁର ଗୁଣ ଗଣିବେ କେମନେ ଜୀବ ଛାର ? ।
ପ୍ରଭୁ କହେ—ଜାନିଲ କୃଷ୍ଣରାଧା ପ୍ରେମତତ୍ତ୍ୱ ।
ଶୁନିତେ ଚାହିୟେ ଦୌହାର ବିଲାସ-ମହତ୍ତ୍ୱ ।୧୪୫।
ରାୟ କହେ—କୃଷ୍ଣ ହୟେ ଧୀରଲଲିତ ।
ନିରନ୍ତର କାମକ୍ରୀଡ଼ା ଯାଁହାର ଚରିତ । ୧୪୬ ।
ତଥାହି ଭକ୍ତିରସାମୃତସିନ୍ଧୌ, ଦକ୍ଷିଣବିଭାଗେ,
ବିଭାବଲହର୍ଯ୍ୟାମ୍ ( ୧୨୩ ) —
ବିଦଗ୍ଧୋ ନବତାରୁଣ୍ୟଃ ପରିହାସବିଶାରଦଃ ।
ନିଶ୍ଚିନ୍ତୋ ଧୀରଲଲିତଃ ସ୍ୟାତ୍ ପ୍ରାୟଃ ପ୍ରେୟସୀବଶଃ । ୪୧ ।
ରାତ୍ରିଦିନ କୁଞ୍ଜକ୍ରୀଡ଼ା କରେ ରାଧା ସଙ୍ଗେ ।
କୈଶୋରବୟସ ସଫଲ କୈଲ କ୍ରୀଡ଼ାରଙ୍ଗେ ।

ପତିବ୍ରତାୟା ଧର୍ମଃ ନ ତୁ ପାତିବ୍ରତ୍ୟଂ ସ ତୁ ଧର୍ମୋହତ୍ର୍ୟୁ ସୁଖାଦୌନ ସ୍ୱସ୍ୱାଦଦାତ୍ୟାଂ ଗ୍ରହଃ । ତଥାଚ ମେଦିନୀ, ଧର୍ମୋଽସ୍ତ୍ରୀ ପୁଣ୍ୟଆଗ୍ରହ ସ୍ୱଭାବୋପମୟୋଃ କ୍ରତୌ ଇତି । ୧୪୪ ।

ବିଦଗ୍ଧଃ— କଳାବିଳାସଦିଗ୍ଧଃ ନବତାରୁଣ୍ୟ—ନବଯୌବନାନ୍ୱିତଃ, ନିତ୍ୟ ନୂତନଃ ପରିହାସବିଶାରଦଃ ନିଶ୍ଚିନ୍ତଃ—ଚିନ୍ତାନ୍ତରରହିତଶ୍ଚ ଧୀରଲଲିତଃ ନାୟକଃ ପ୍ରାୟଃ ପ୍ରେୟସୀବଶଃ—ପ୍ରେୟସୀନାଂ ପ୍ରେମବିଶେଷଯୁକ୍ତାନାଂ ତାରତମ୍ୟେନ ବଶୀଭୂତଃସ୍ୟାତ୍ । ୪୧ ଶ୍ଳୋକ ।

ଶ୍ରୀରାଧାଙ୍କର ଅନୁପମ ରୂପଗୁଣର ବିଷୟ କହୁଅଛନ୍ତି । ଶ୍ରୀମତୀ ସତ୍ୟଭାମା ଦେବୀ ଯେ ଦ୍ୱାରକାସ୍ଥ ୧୬୧୦୮ ଶ୍ରୀକୃଷ୍ଣ ମହିଷୀମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କର ପରମସୋହାଗିନୀ ତେଣୁ ଶ୍ରେଷ୍ଠ ସୌଭାଗ୍ୟବତୀ, ସେ ମଧ୍ୟ ଶ୍ରୀରାଧାଙ୍କର ସୌଭାଗ୍ୟ ସୁଖର କଥା ଶୁଣିଥିରେ ଲୋଭଯୁକ୍ତ ହୋଇ ତାଦୃଶ ସୌଭାଗ୍ୟସୁଖ କାମନା କରନ୍ତି । ଶ୍ରୀବ୍ରଜଗୋପୀମାନେ ୬୪ କଳାବିଳାସରେ ପଣ୍ଡିତା ହୋଇ ସ୍ୱୟଂ ଶ୍ରୀରାଧାଙ୍କଠାରୁ ସେଥିର ବିଶେଷ କୌଶଳ ଶିକ୍ଷା କରନ୍ତି ।

ଶ୍ରୀନାରାୟଣଙ୍କ ପ୍ରେୟସୀ ଲକ୍ଷ୍ମୀ ଦେବୀ ଓ ମହାଦେବଙ୍କର ପ୍ରେୟସୀ ପାର୍ବତୀ ଦେବୀ ପରମସୌନ୍ଦର୍ଯ୍ୟବତୀ ଓ ଗୁଣବତୀ ହେଲେ ମଧ୍ୟ ଶ୍ରୀରାଧାଙ୍କର ସୌନ୍ଦର୍ଯ୍ୟ ଦେଖି ଓ ଗୁଣ ଅବଗତ ହୋଇ ତତ୍ତୁଲ୍ୟ ସୌନ୍ଦର୍ଯ୍ୟ ଓ ଗୁଣର କାମନା କରନ୍ତି ଏବଂ ବଶିଷ୍ଠପତ୍ନୀ ଅରୁନ୍ଧତୀ ପତିବ୍ରତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେହେଁ ଶ୍ରୀରାଧାଙ୍କର ପତିବ୍ରତା ଧର୍ମ ଅର୍ଥାତ୍ ପତିସୁଖ ଆଦରେ ପତିର ସୁଖ ଆଦି ସେହି ଆଚରଣର ଉତ୍କୃଷ୍ଟତା ଅବଗତ ହୋଇ ତତ୍ତୁଲ୍ୟ ପତିବ୍ରତା ଧର୍ମ ବାଞ୍ଛା କରନ୍ତି । ଶ୍ରୀରାଧା ଅନନ୍ତ ସଦ୍‌ଗୁଣର ଆକର ଏବଂ ଶ୍ରୀକୃଷ୍ଣ ସର୍ବଜ୍ଞ ହୋଇ ସ୍ୱୟଂ ଯେ ଗୁଣମାନଙ୍କ ଅନ୍ତ ପାଆନ୍ତି ନାହିଁ ଏହା ହେତୁ ଶ୍ରୀରାୟରାମାନନ୍ଦ କହୁଅଛନ୍ତି ପ୍ରଭୋ ! ଈଦୃଶ ଗୁଣବତୀ ଶ୍ରୀରାଧାଙ୍କ ଗୁଣମାନଙ୍କର ଗଣନା ମୋ ପରି କ୍ଷୁଦ୍ରଜୀବ କାହୁଁ କରିବ ।୧୪୩।୧୪୪।୧୪୫ ।

ବିଳାସ— କ୍ରୀଡ଼ାମହତ୍ତ୍ୱ —ସର୍ବୋତ୍କୃଷ୍ଟତ୍ୱ । ୧୪୬ ।

ନିରନ୍ତର – ପ୍ରତିଦିନ ଯଥା ସମୟରେ ।

କାମକ୍ରୀଡ଼ା—ମଧୁର ରସକ୍ରୀଡ଼ା । ୧୪୭ ।

କଳାବିଳାସାଦିରେ ନିପୁଣ ନବଯୁବା ପରିହାସ ସୁପଣ୍ଡିତ ନିଶ୍ଚିନ୍ତ ବ୍ୟକ୍ତିହିଁ ଧୀର-ଲଳିତ ନାୟକ । ସେ ପ୍ରେୟସୀମାନଙ୍କର ପ୍ରେମ ଅନୁରୂପ ବଶୀଭୂତ ହୁଅନ୍ତି । ୪୧ ଶ୍ଳୋକାର୍ଥ ।

ରାତ୍ରିଦିନ—ଦିବାରାତ୍ରି ଯଥା ସମୟରେ ।

କୈଶୋରବୟସ—ଦଶବର୍ଷ ଠାରୁ ୧୬ଶ ଅରମ୍ଭ ପର୍ଯ୍ୟନ୍ତ । ୧୪୮ ।

ତଥାହି ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ,
୧ମ ବିଭାବଲହର୍ଯ୍ୟାମ୍ ( ୧୧୪ )—

ବାଚା ସୂଚିତଶର୍ବରୀରତିକଳାପ୍ରାଗଲ୍ଭ୍ୟୟା ରାଧିକାଂ
ବ୍ରୀଡ଼ାକୁଞ୍ଚିତଲୋଚନାଂ ବିରଚୟନ୍ନଗ୍ରେ ସଖୀନାମସୌ
ତଦ୍ବକ୍ଷୋରୁହଚିତ୍ରକେଳିମକରୀପାଣ୍ଡିତ୍ୟପାରଂ ଗତଃ
କୈଶୋରଂ ସଫଳୀକରୋତି କଳୟନ୍ କୁଞ୍ଜେ ବିହାରଂ ହରିଃ ॥ ୪୨ ॥

ପ୍ରଭୁ କହେ—ଏହି ହୟ, ଆଗେ କହ ଆର ।
ରାୟ କହେ—ଇହା ବଇ ବୁଦ୍ଧି ଗତି ନାହିଁ ଆର ।
ଯେବା ପ୍ରେମବିଲାସ-ବିବର୍ତ୍ତ ଏକ ହୟ ।
ତାହା ଶୁନି ତୋମାର ସୁଖ ହୟ କି ନା ହୟ ।୧୫୦।
ଏତ କହି ଆପନକୃତ ଗୀତ ଏକ ଗାଇଲ ।
ପ୍ରେମେ ପ୍ରଭୁ ସ୍ୱହସ୍ତେ ତାର ମୁଖ ଆଚ୍ଛାଦିଲ ।୧୫୧

ବିବର୍ତ୍ତ—ବିପର୍ଯ୍ୟାସଃ । ୧୫୦ । ବ. ଚ.
ଗାନାନନ୍ତରମେବ ମୁଖାଚ୍ଛାଦନଂ ବିଚ୍ଛେଦାସମ୍ଭାବିତବିଚ୍ଛେଦକଥନାସହିଷ୍ଣୁତ୍ୱାତ୍ । ୧୫୧ । ବ. ଚ. ।

୪୨ ଶ୍ଳୋକଅନ୍ୱୟ—ଅଦଃ ୪ର୍ଥଃ ପର ୧୬ଶ ଶ୍ଳୋକ ।

ଶ୍ରୀକୃଷ୍ଣ ରାତିର ରତିକଳାପ୍ରକାଶକ ଔଦ୍ଧତ୍ୟବାକ୍ୟଦ୍ୱାରା ସଖୀମାନଙ୍କ ନିକଟ ଶ୍ରୀରାଧାଙ୍କ ଲଜ୍ଜାରେ ବକ୍ରନୟନା କରି ତାହାଙ୍କର ସ୍ତନମଣ୍ଡଳରେ ମକରୀପତ୍ର ଚିତ୍ରନୈପୁଣ୍ୟର ପରାକାଷ୍ଠା ପ୍ରଦର୍ଶନପୂର୍ବକ କୁଞ୍ଜରେ ବିହାର କରି ସ୍ୱୀୟ କୈଶୋରବୟସ ସଫଳ କରୁଅଛନ୍ତି । ୪୨ ଶ୍ଳୋକାର୍ଥ । ।

ବିବର୍ତ୍ତ— ଭ୍ରମ, ଯଥା ରଜ୍ଜୁରେ ସର୍ପଭ୍ରମ ଶ୍ରୀଜୀବଗୋସ୍ୱାମୀଙ୍କର ମତରେ ଏହାର ଅର୍ଥ ପାକକରି ଅର୍ଥାତ୍ ସ୍ୱଚ୍ଛନ୍ଦ ଭୋଜନ ସୁଖପର ତାହା ପରିପାକ କାଳରେ ଯେଉଁ ସୁଖ ହୁଏ ତାହା ଭୋଜନବିଳାସବିବର୍ତ୍ତ । ଏଠାରେ ପ୍ରେମବିଳାସବିବର୍ତ୍ତ ଅର୍ଥାତ୍ ପ୍ରେମବିଳାସ ମହତ୍ତ୍ୱର ଚୂଡ଼ାନ୍ତାନୁଭୂତି । ୧୫୦ ।

ଶ୍ରୀରାୟରାମାନନ୍ଦ କହିଲେ ପ୍ରଭୋ ! ଶ୍ରୀରାଧାମାଧବଙ୍କର ଚିତ୍ତଗତ ପାର୍ଥକ୍ୟର ସହିତ ଯେ ଅତୁଳନୀୟ ପ୍ରେମବିଳାସର ମହତ୍ତ୍ୱ ତାହା ଆପଣଙ୍କୁ ଶୁଣାଇଲି । ଆପଣ ଏତଦତିରିକ୍ତ ଯାହା ଶୁଣିବାକୁ ଇଚ୍ଛା କରୁଅଛନ୍ତି ଏବଂ ମୋହ ଜାଣିବାରେ ମୁଁ ଯାହା କହିବାକୁ ଯାଉଅଛି ତାହା ଶ୍ରୀରାଧାମାଧବଙ୍କ ପ୍ରେମବିଳାସବିବର୍ତ୍ତ ଅର୍ଥାତ୍ ଚିତ୍ତଗତପାର୍ଥକ୍ୟରହିତ ଅବସ୍ଥାର ବିଷୟ, ତାହା ଆପଣଙ୍କର ସୁଖ-ଦାୟକ ହେବ କି ନା ମୁଁ ବୁଝିପାରୁ ନାହିଁ । ଏହା କହି ସ୍ୱକୃତ "ପହିଲହିଁ ରାଗ" ଗୀତଟି ଗାଇଲେ । ଏହି ଗୀତ ଶୁଣି ଶ୍ରୀମନ୍ ମହାପ୍ରଭୁ ଅବେଶରେ ଶ୍ରୀରାମରାୟଙ୍କର ମୁଖ ଆଚ୍ଛାଦନ କଲେ । ଏହି ଆଚ୍ଛାଦନ ଭାବକୁ ଶ୍ରୀକବିକର୍ଣ୍ଣପୂର ଗୋସ୍ୱାମୀ ତାଙ୍କ ଶ୍ରୀଚୈତନ୍ୟଚନ୍ଦ୍ରୋଦୟ ନାଟକରେ ନିରୂପଣ କରିଅଛନ୍ତି ଯେ, ଏହି ଗୀତରେ ନିରୁପାଧି ପ୍ରେମବିଷୟ ପ୍ରଥମ ଅର୍ଦ୍ଧରେ ବର୍ଣ୍ଣିତ ହୋଇଅଛି । ତତ୍ପର ବର୍ଣ୍ଣନା ଉପାଧିକୁ ସ୍ପର୍ଶ କରିଅଛି । ଶ୍ରୀମନ୍ ମହାପ୍ରଭୁ ରାଧାକୃଷ୍ଣଙ୍କର ନିରୁପାଧି ପ୍ରେମବିଷୟ ଶୁଣି ତାହାକୁ ସର୍ବଶ୍ରେଷ୍ଠ ଜ୍ଞାନ କରି ସେହି ରହସ୍ୟ ପ୍ରକାଶଯୋଗ୍ୟ ନୁହେଁ ବୋଲି ଏବଂ ତତ୍ପରେ ସୋପାଧିଭାବ ବ୍ୟକ୍ତ ହେଉଅଛି ବୋଲି ସେ ଅତିଶୀଘ୍ର ସେ ଗୀତ ବନ୍ଦ କରିବା ସକାଶେ ନିଜେ ସ୍ୱହସ୍ତରେ ରାମରାୟଙ୍କ ମୁଖାଚ୍ଛାଦନ କଲେ । ୧୫୧ ।

ତଥାହି ଗୀତମ୍ ।—

ପହିଲହି ରାଗ ନୟନଭଙ୍ଗ ଭେଲ ।
ଅନୁଦିନ ବାଢ଼ଲ—ଅବଧି ନା ଗେଲ ।
ନା ସୋ ରମଣ ନା ହାମ ରମଣୀ ।
ଦୁହୁଁ ମନ ମନୋଭବ ପେଷଲ ଜାନି ।
ଏ ସଖି ! ସେ-ସବ ପ୍ରେମକାହିନୀ ।
କାନୁଠାମେ କହବି, ବିଛୁରଲ ଜାନି ।
ନା ଖୋଜଲୁଁ ଦୂତୀ, ନା ଖୋଜଲୁଁ ଆନ ।
ଦୁହୁଁକେରି ମିଲନେ ମଧ୍ୟତ ପଞ୍ଚବାଣ ।
ଅବ ସୋଇ ବିରାଗ, ତୁହୁଁ ଭେଲି ଦୂତୀ ।
ସୁପୁରୁଖ-ପ୍ରେମକ ଐଛନ ରୀତି ।

---

ଗୀତ 'ପହିଲହି'—
୧ମପାଦ-ପହିଲହି—ପ୍ରଥମେ ରାଗ—ପ୍ରେମର ପ୍ରଥମସୋପାନ ।
ନୟନଭଙ୍ଗ—ଆଖିଠାରି, ଭେଲ—ହେଲା ।
ଅନୁଦିନ ବାଢ଼ଲ—ପ୍ରତିଦିନ ବଢ଼ିବାକୁ ଲାଗିଲା ।
ଅବଧି ନା ଗେଲ—ଶେଷସୀମା ପ୍ରାପ୍ତ ହେଲାନାହିଁ ।
୨ୟପାଦ—ନା ସୋ ରମଣ—ସେ ନାୟକ ନୁହନ୍ତି ।
ନା ହାମ ରମଣୀ—ମୁଁ ନାୟିକା ନୁହେଁ ।
ଦୁହୁଁ ମନ—ଆମ୍ଭ ଦୁହିଁଙ୍କର ମନ । ମନୋଭବ—କନ୍ଦର୍ପ ।
ପେଷଲ—ନିଷ୍ପେଷଣ କଲେ । ଜାନି—ଅନୁମାନକରେଁ ।
୩ୟପାଦ—ଏ ସଖି—ହେ ସଖି ।
ସେ ସବ ପ୍ରେମ କାହିନୀ—ସେ ସମସ୍ତ ପ୍ରେମକାହାଣୀ ।
କାନୁଠାମେ କହବି—କାହ୍ନୁଠାରେ କହିବୁ ।
ବିଛୁରଲ ଜାନି—ମୁଁ ମନେକରୁଛି ସେ ପାସୋରି ପକାଇଛନ୍ତି ପରା ।
୪ର୍ଥପାଦ—ନା ଖୋଜଲୁଁ ଦୂତୀ—ଦୂତୀ ଖୋଜି ନଥିଲୁଁ ।
ଦୁହୁଁକେରି ମିଲନେ—ଆମ୍ଭଦୁହିଙ୍କର ମିଳନରେ ।
ମଧ୍ୟତ ପଞ୍ଚବାଣ—କନ୍ଦର୍ପ ମଧ୍ୟସ୍ଥ ହୋଇଥିଲେ ।
୫ମପାଦ—ଅବ ସୋଇ ବିରାଗ—ବର୍ତ୍ତମାନ ସେ ପୁଣି ବିରକ୍ତ ବା ପରାଙ୍ମୁଖ ହୋଇଛନ୍ତି ।
ତୁହୁଁ ଭେଲି ଦୂତୀ—ତୁ ଦୂତୀହେଲୁ । ସୁପୁରୁଖ ପ୍ରେମକ—ସୁପୁରୁଷ ପ୍ରେମର ।
ଐଛନ ରୀତି—ଏହି ରୀତି ।

ଶ୍ରୀକୃଷ୍ଣ ମଥୁରାରେ ଥିବାସମୟରେ ଶ୍ରୀମତୀ ବିରହବ୍ୟାକୁଳା ହୋଇ ତାଙ୍କ ନିକଟ ନିଜର କୌଣସି ପ୍ରିୟସଖୀଙ୍କଦ୍ୱାରା ଯେଉଁ ବାର୍ତ୍ତା ପଠାଇଅଛନ୍ତି, ତାହାହିଁ ଏହିଗୀତରେ ପ୍ରକାଶ ହୋଇଅଛି ।

ଶ୍ରୀମତୀ କହୁଅଛନ୍ତି, ସଖି ? ଦେଖ କାହ୍ନୁଙ୍କ ସଙ୍ଗେ ମୋର ପ୍ରଥମେ ଦୃଷ୍ଟିବିନିମୟ ହେବା-ମାତ୍ରେ ପ୍ରୀତି ଉଦ୍ଭବ ହେଲା । ସେହି ପ୍ରୀତି ଦିନକୁଦିନ ଏପରି ନବନବଭାବରେ ବଢ଼ିବାକୁ ଲାଗିଲା

ଯେ, ସେଥିରେ ଆଉ କଦାପି ତୃପ୍ତି ହେଉନାହିଁ । କ୍ରମେ ମୋ ମନରେ ଏପରିଭାବ ହେଲା ଯେ, ସେ ଯେ ପୁରୁଷ ଓ ମୁଁ ଯେ ସ୍ତ୍ରୀ ଏପରି ଭେଦ ବୁଦ୍ଧି ରହିଲା ନାହିଁ । ଏପ୍ରକାର ଭାବ କାହିଁକି ହେଲା ? ଏହାର କାରଣ ମୁଁ ଅନୁମାନ କରୁଛି ଯେ, କନ୍ଦର୍ପରାଜ ଆମ୍ଭଦୁହିଁଙ୍କର ମନ ଦୁଇଟିକୁ ଏପରିଭାବରେ ପେଷଣ କରି ଏକକରି ଦେଲେ ଯେ, ସେଥିରେ ପାର୍ଥକ୍ୟର ଗନ୍ଧ ରହିଲାନାହିଁ । ସଖି ? ଏହାହିଁ ଆମ୍ଭମାନଙ୍କର ପ୍ରେମର କାହାଣୀ । ତୁତ ଶୁଣିଲୁ । ଏକଥା କାହାକୁ କହିବୁ । ସେ କଣ ଏକଥା ଭୁଲିଗଲେ କି ? ତାଙ୍କୁ ସ୍ମରଣ କରାଇ ଦବୁ ଯେ ଆମ୍ଭଦୁହିଁଙ୍କର ପ୍ରେମମିଳନ କୌଣସି ଦୂତଦ୍ୱାରା କିମ୍ବା ଅପର କୌଣସି ଉପାଦାନଦ୍ୱାରା ତାହା ଘଟି ନ ଥିଲା । କିନ୍ତୁ ବର୍ତ୍ତମାନ ମୋର ଦୁର୍ଭାଗ୍ୟ ଏହି ଯେ ସେ ମୋତେ ନପରିଗ୍ରହ ଛାଡ଼ିଦେଇ ବିଦେଶରେ ରହିଲେ ଆଉ ତାଙ୍କୁ ମେ କଥା ଜଣାଇବାପାଇଁ ତୁ ପୁଣି ଦୂତ ହେଲୁ । ସଖି ? କାହାକୁ ପରିହରି ଯେ ସ୍ୱପ୍ରତ୍ୟୁଷର ପ୍ରେମିକ ଏହିପରି ।

ଶ୍ରୀମତୀ ମଥୁରାଗତ ଶ୍ରୀକୃଷ୍ଣବିରହରେ ଉନ୍ମାଦ ଅବସ୍ଥାରେ ତାହାଙ୍କର ନିରୁପାଧି ଶ୍ରୀକୃଷ୍ଣ-ପ୍ରେମର ସ୍ୱସଂବେଦ୍ୟ ଭାବ ଯାହାକି ଅପର କେହି ଜାଣନ୍ତି ନାହିଁ ଅର୍ଥାତ୍ ତାହାଙ୍କର କୃଷ୍ଣପ୍ରଣୟ ସଂଯୋଗ ସ୍ୱରୂପ ହୋଇଥିଲା ଶ୍ରୀକୃଷ୍ଣଙ୍କ ସହିତ ତାଙ୍କର ଚିତ୍ତଗତ ଐକ୍ୟ ନିରୂପ ତାହା ପ୍ରଳାପ ଦ୍ୱାରା ଏହିପଦ୍ୟରେ ପ୍ରକାଶ କରୁଅଛନ୍ତି ।

ଏହି ଗୀତର ପ୍ରଥମପାଦରେ ଶ୍ରୀରାଧାଗୋବିନ୍ଦଙ୍କର ପ୍ରେମବିଳାସମହତ୍ତ୍ୱ ପ୍ରକାଶ ହୋଇ-ଅଛି । ଅର୍ଥାତ୍ ସେ ଦୁହିଙ୍କର ପ୍ରେମ ପ୍ରତ୍ୟହ ଏପରି ବୃଦ୍ଧି ହେବାକୁ ଲାଗିଲା ଯେ; ସେଥିରେ ସେ ଦୁହିଙ୍କର ତୃପ୍ତି ହେଉନାହିଁ । ୨ୟପାଦରେ ସେହି ମହାନ୍ ପ୍ରେମର ବିବର୍ତ୍ତ (ପରିପାକ ଅବସ୍ଥା ବା ନିରୁପାଧିତ୍ୱ) ପ୍ରକାଶ ହୋଇଅଛି । ଅର୍ଥାତ୍ ସେହି ଅତ୍ୟୁଚ୍ଚପ୍ରେମରେ ଚିତ୍ତଗତ ଐକ୍ୟ ଆସି ଉପସ୍ଥିତ ହେଲା । ସେହି ଐକ୍ୟରେ ପ୍ରଥମ ଅବଲମ୍ବନ ନାୟକନାୟିକାଭାବ ଲୋପହୋଇ ଚିତ୍ତ ଏକ ଅଦ୍ୱୈତ ଚିନ୍ମୟଭାବକୁ ଆଶ୍ରୟକଲା । ଏହି ଭାବହିଁ ନିରୁପାଧିପ୍ରେମ, ଯାହାକୁ ଶ୍ରୀମନ୍ ମହାପ୍ରଭୁ ଅତି ପ୍ରଶଂସନୀୟ ଏବଂ ଅପ୍ରକାଶ୍ୟ ମନେକରି ଶ୍ରୀମନ୍ ରାମରାୟଙ୍କର ମୁଖାଚ୍ଛାଦନ କରିଥିଲେ । ଶ୍ରୀରାଧାଗୋବିନ୍ଦଙ୍କର ଚିତ୍ତଗତ ଏହି ଅବସ୍ଥାକୁ ଜୀବପକ୍ଷରେ ଶ୍ରୀମନ୍ କର୍ଣ୍ଣପୂର ଗୋସ୍ୱାମୀ (ପରୈକ୍ୟ-ଦ୍ୟୋତକ) ବୋଲି ନିରୂପଣ କରିଅଛନ୍ତି । ଏବଂ ଶ୍ରୀରୂପଗୋସ୍ୱାମୀ ପରବର୍ତ୍ତୀ ଶ୍ଳୋକରେ (ନିର୍ଧୂତ-ଭେଦଭ୍ରମ) ଏବଂ ତାହାର ଟୀକାରେ ଶ୍ରୀଜୀବଗୋସ୍ୱାମୀ (ପରିଷ୍କୃତମଭିନ୍ନଚିତ୍ତତ୍ୱ) ବୋଲି ନିରୂପଣ କରିଅଛନ୍ତି ।

ଶ୍ରୀରାଧ ଗୋବିନ୍ଦଙ୍କର ଏହି ଅବସ୍ଥାହିଁ ଗୂଢ଼ାନ୍ତ ସାଧ୍ୟବସ୍ତୁ ।

ଏହି ସର୍ବୋତ୍କୃଷ୍ଟ ନିରୁପାଧି ଭାବର ପରି ଗୀତର ୩ୟ ପାଦଠାରୁ ସୋପାଧିଭାବ ପ୍ରକାଶ ହୋଇଅଛି । ଅର୍ଥାତ୍ କାହ୍ନୁ ଓ ମୁଁ ଏହି ଦୁଇ ଉପାଧିଯୁକ୍ତ ହୋଇଅଛି ବୋଲି ଏହି ଅଂଶ (ନିରୁପାଧି ପରେ ସୋପାଧିପ୍ରେମ ପ୍ରକାଶ କାରଣ) ଶ୍ରୀମନ୍ ମହାପ୍ରଭୁଙ୍କର ମନୋମତ ନ ହେବାରୁ ଏଥିପାଇଁ ମଧ୍ୟ ସେ ଶ୍ରୀରାମରାୟଙ୍କର ମୁଖାଚ୍ଛାଦନ କରିଥିଲେ । ୧୫୦ ୧୫୧ ।

ତଥାହି ଉଜ୍ଜ୍ୱଳନୀଳମଣୌ ସ୍ଥାୟିଭାବ-
କଥନେ ( ୧୯୦ )—

ରାଧାୟା ଭବତଶ୍ଚ ଚିତ୍ତଜତୁନୀ ସ୍ୱେଦୈର୍ବିଲାପ୍ୟ-
କ୍ରମାଦ୍,
ଯୁଞ୍ଜନ୍ନଦ୍ରିନିକୁଞ୍ଜକୁଞ୍ଜରପତେ ନିର୍ଦ୍ଧୂତଭେଦଭ୍ରମମ୍ ।
ଚିତ୍ରାୟ ସ୍ୱୟମନ୍ୱରଞ୍ଜୟଦିହ ବ୍ରହ୍ମାଣ୍ଡହର୍ମ୍ମ୍ୟୋଦରେ ।
ଭୂୟୋଭିର୍ନବରାଗହିଙ୍ଗୁଳଭରୈଃ
ଶୃଙ୍ଗାରକାରୁଃ କୃତୀ । ୪୩ ।

ପ୍ରଭୁ କହେ—ସାଧ୍ୟବସ୍ତୁ ଅବଧି ଏଇ ହୟ ।
ତୋମାର ପ୍ରସାଦେ ଇହା ଜାନିଲ ନିଶ୍ଚୟ ।୧୯୨।
ସାଧ୍ୟବସ୍ତୁ ସାଧନ-ବିନୁ କେହୋ ନାହି ପାୟ ।
କୃପା କରି କହ ଇହା ପାବାର ଉପାୟ ।୧୯୩।
ରାୟ କହେ —ଯେ କହାଓ ସେଇ କହି ବାଣୀ ।
କି କହିୟେ—ଭଲ-ମନ୍ଦ କିଛୁଇ ନା ଜାନି ॥
ତ୍ରିଭୁବନ ମଧ୍ୟେ ଐଛେ ଅଛେ କୋନ ଧୀର ।
ଯେ ତୋମାର ମାୟାନାଟେ ହଇବେକ ସ୍ଥିର ? ॥
ମୋର ମୁଖେ ବକ୍ତା ତୁମି, ତୁମିହଓ ଶ୍ରୋତା ।
ଅତ୍ୟନ୍ତ ରହସ୍ୟ ଶୁନ ସାଧନେର କଥା-।୧୯୬।
ରାଧାକୃଷ୍ଣେର ଲୀଲା ଏଇ ଅତି ଗୂଢ଼ତର ।
ଦାସ୍ୟବାତ୍ସଲ୍ୟାଦିଭାବେର ନା ହୟ ଗୋଚର ॥
ସବେ ଏକ ସଖୀଗଣେର ଇହାଁ ଅଧିକାର ।
ସଖୀ ହୈତେ ହୟ ଏଇ ଲୀଲାର ବିସ୍ତାର ।୧୯୮।
ସଖୀ-ବିନୁ ଏଇ ଲୀଲା ପୁଷ୍ଟି ନାହି ହୟ ।
ସଖୀ ଲୀଲା ବିସ୍ତାରିୟା ସଖୀ ଆସ୍ୱାଦୟ । ୧୯୯ ।
ସଖୀ-ବିନୁ ଏଇ ଲୀଲାୟ ନାହି ଅନ୍ୟେର ଗତି ।
ସଖୀଭାବେ ତାଁରେ ଯେଇ କରେ ଅନୁଗତି ॥
ରାଧାକୃଷ୍ଣକୁଞ୍ଜସେବା-ସାଧ୍ୟ ସେଇ ପାୟ ।
ସେଇ ସାଧ୍ୟପାଇତେ ଆର ନାହିକ ଉପାୟ ।୨୦୧।

(ହେ) ଅଦ୍ରିନିକୁଞ୍ଜକୁଞ୍ଜରପତେ, ଶୃଙ୍ଗାରକାରୁଃ କୃତୀ—ନିପୁଣଃ ରାଧାୟାଃ ଭବତଶ୍ଚ ଚିତ୍ତଜତୁନୀ—ଚିତ୍ତେ ଏବ ଜତୁନୀ ଲାକ୍ଷେ, ସ୍ୱେଦୈଃ ତଦାଖ୍ୟସାତ୍ତ୍ୱିକବିଶେଷବୃତ୍ତିଭିଃ ଅନ୍ତର୍ବହିର୍ବିରୂପାଭିଃ ପକ୍ଷେ ମୃଦ୍ବଗ୍ନିତାପୈଃ କ୍ରମାତ୍—ଶନୈଃ ଶନୈଃ ନିର୍ଦ୍ଧୂତଭେଦଭ୍ରମଂ—ନିର୍ଦ୍ଧୂତଃ ଭେଦ ଏବ ଭ୍ରମଃ ଯସ୍ମିନ୍ ତଥାଭୂତଂ ଯଥାସ୍ୟାତ୍ତଥା, ଯୁଞ୍ଜନ୍—ଏକୀଭାବେନ ମେଲୟନ୍ ଇହବ୍ରହ୍ମାଣ୍ଡହର୍ମ୍ମ୍ୟୋଦରେ—ବ୍ରହ୍ମାଣ୍ଡମେବ ହର୍ମ୍ମ୍ୟଂ ତସ୍ୟ ଉଦରେ ଯଦ୍ୱା ବ୍ରହ୍ମାଣ୍ଡେଷୁ ଯାନି ହର୍ମ୍ମ୍ୟାଣି ଧନିନାଂ ବାସାଃ ତଦୁଦରେ—ତଦ୍ଧନିଜନହୃଦୟେ ଅତିଶୟୋକ୍ତ୍ୟା ଭକ୍ତଜନାନ୍ତଃକରଣେଷୁ, ଚିତ୍ରାୟ—ଚିତ୍ରଲେଖାୟ ପକ୍ଷେ ଆଶ୍ଚର୍ଯ୍ୟାୟ, ଭୂୟୋଭିଃ—ବହୁତରୈଃ ନବରାଗହିଙ୍ଗୁଳଭରୈଃ ସ୍ୱୟଂ ଅନ୍ୱରଞ୍ଜୟତ୍ । ୪୩ ଶ୍ଳୋକ ।

ଶ୍ରୀବୃନ୍ଦାଦେବୀ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି । ହେ ଗୋବର୍ଦ୍ଧନନିକୁଞ୍ଜକୁଞ୍ଜରରାଜ ଶୃଙ୍ଗାର-ରସରୂପସ୍ୱପଣ୍ଡିତଶିଳ୍ପୀ ଅନ୍ତର୍ବହିର୍ଦ୍ଦ୍ୱାରା ସ୍ୱେଦାଖ୍ୟ ସାତ୍ତ୍ୱିକବୃତ୍ତିସମୂହର ଉଷ୍ଣତାଦ୍ୱାରା ଶ୍ରୀରାଧାଙ୍କର ଏବଂ ତୁମ୍ଭର ଚିତ୍ତରୂପ ଲାକ୍ଷାକୁ ଦ୍ରବୀଭୂତ ଏବଂ ଅଭିନ୍ନରୂପେ ସଂଯୋଜିତ କରି ବ୍ରହ୍ମାଣ୍ଡରୂପ ହର୍ମ୍ମ୍ୟ ମଧ୍ୟ ଚିତ୍ରିତ କରିବା ନିମିତ୍ତ ତାହା ନବରାଗହିଙ୍ଗୁଳଦ୍ୱାରା ଅନୁରଞ୍ଜିତ କରିଅଛନ୍ତି । ୪୩ ଶ୍ଳୋକାର୍ଥ ।

ଏଇ—ମହାଭାବଜନିତ ଚିତ୍ତଗତ ଅଭିନ୍ନତ୍ୱ ବା ପ୍ରେମବିଳାସବିବର୍ତ୍ତ ।

ସାଧ୍ୟବସ୍ତୁର ଅବଧି—ସର୍ବଶ୍ରେଷ୍ଠ ସାଧ୍ୟବସ୍ତୁ । ୧୯୨ ।

ଶ୍ରୀରାଧାକୃଷ୍ଣଙ୍କର ମଧୁରରସାତ୍ମକଲୀଳା ଯାହା ମହାଭାବମୟୀ ହେତୁ ପରୈକ୍ୟଦ୍ୟୋତକ ଏବଂ ସର୍ବଶ୍ରେଷ୍ଠ ସାଧ୍ୟବସ୍ତୁ ତାହା ଦାସ୍ୟ, ସଖ୍ୟ, ବାତ୍ସଲ୍ୟର ଅଧିଗମ୍ୟ ନୁହେ । ତାହା କେବଳ ମଧୁରରସଭାବିତା ଶ୍ରୀରାଧାଙ୍କର ସଖୀମାନଙ୍କର ଅଧିଗମ୍ୟ । ସଖୀମାନେ ଏହି ଲୀଳା ବିସ୍ତାର କରନ୍ତି, ପୁଷ୍ଟି କରନ୍ତି, ଆସ୍ୱାଦନ କରନ୍ତି । ସଖୀଭାବବ୍ୟତୀତ ଅନ୍ୟ କୌଣସି ଭାବର ଏହି ଲୀଳାବିଷୟରେ

ତଥାହି ଗୋବିନ୍ଦଲୀଳାମୃତେ (୧୦।୧୧)—

ବିଭୁରପି ସୁଖରୂପଃ ସ୍ୱପ୍ରକାଶୋଽପି ଭାବଃ
କ୍ଷଣମପି ନ ହି ରାଧାକୃଷ୍ଣୟୋର୍ଯା ଋତେ ସ୍ୱାଃ ।
ପ୍ରବହତି ରସପୁଷ୍ଟିଂ ଚିଦ୍‌ବିଭୂତୀରିବେଶଃ
ଶ୍ରୟତି ନ ପଦମାସାଂ କଃ ସଖୀନାଂ ରସଜ୍ଞଃ ।୪୪।

ସଖୀର ସ୍ୱଭାବ ଏକ ଅକଥ୍ୟକଥନ ।
କୃଷ୍ଣସହ ନିଜଲୀଳାୟ ନାହି ସଖୀର ମନ ।୧୬୨।
କୃଷ୍ଣସହ ରାଧିକାର ଲୀଳା ଯେ କରାୟ ।
ନିଜକେଳି ହୈତେ ତାହେ କୋଟି ସୁଖ ପାୟ ।
ରାଧାର ସ୍ୱରୂପ—କୃଷ୍ଣପ୍ରେମକଳ୍ପଲତା ।
ସଖୀଗଣ ହୟ ତାର ପଲ୍ଲବ ପୁଷ୍ପ ପାତା ।୧୬୪।
କୃଷ୍ଣଲୀଳାମୃତେ ଯଦି ଲତାକେ ସିଞ୍ଚୟ ।
ନିଜସେକ ହୈତେ ପଲ୍ଲବାଦ୍ୟେର କୋଟିସୁଖ ହୟ ।

---

ଭବଃ— ଈଶ୍ୱରୀ, ଚିଦ୍‌ବିଭୂତିଂ (ବିନା ଯଥା ପୁଷ୍ଟିଂ ନ ପ୍ରାପ୍ନୋତି ତତ୍) ଇବ ରାଧାକୃଷ୍ଣୟୋଃ ଭାବଃ ବିଭୂଃ-ପରମମହାନ୍ ଅପି ସୁଖରୂପଃ (ଅନନ୍ଦଘନଃ) ସ୍ୱପ୍ରକାଶଃ (ସ୍ୱୟଂ ପ୍ରକାଶରୂପଃ) ଅପି ସ୍ୱାଃ (ସ୍ୱୀୟାଃ ତୟୋଃ ରାଧାକୃଷ୍ଣୟୋଃ ସ୍ୱରୂପାଃ) ଯାଃ ( ସଖୀଃ ତାଃ ) ଋତେ (ବିନା) ରସପୁଷ୍ଟିଂ ନହି ପ୍ରବହତି ।(ଅତଃ) ଆସାଂ ସଖୀନାଂ ପଦଂ କଃ (ରସଜ୍ଞଃ ଭକ୍ତଃ) ନ ଶ୍ରୟତି? ଅପିତୁ ସର୍ବେ ଏବ ଅଶ୍ରୟନ୍ତୀ-ତ୍ୟର୍ଥଃ । ୪୪ ଶ୍ଳୋକ ।

---

ପ୍ରବେଶାଧିକାର ନାହିଁ । ଏହି ହେତୁ ଯେଉଁ ଭକ୍ତ ନିତ୍ୟସିଦ୍ଧ ସଖୀଗଣଙ୍କର ଅନୁଗତ ହୋଇ ସେହି ଲୀଳାର ଅନୁସରଣ କରନ୍ତି ଅର୍ଥାତ୍ ମାନସିକରେ ଭାବନା କରନ୍ତି, ସେହି ସୌଭାଗ୍ୟବାନ୍ ବ୍ୟକ୍ତି ସାଧନର ସିଦ୍ଧ ଅବସ୍ଥାରେ ସିଦ୍ଧଦେହରେ ଶ୍ରୀରାଧାଗୋବିନ୍ଦଙ୍କର କୁଞ୍ଜସେବାରୂପ ସାଧ୍ୟବସ୍ତୁ ଅର୍ଥାତ୍ ଚରମଲକ୍ଷ୍ୟ ବସ୍ତୁ ଲାଭ କରନ୍ତି । ଏହି ପ୍ରକ୍ରିୟାବ୍ୟତୀତ ଅନ୍ୟ କୌଣସି ପ୍ରକ୍ରିୟାଦ୍ୱାରା ଉକ୍ତ ସାଧ୍ୟ ବସ୍ତୁ କଦାପି ଲାଭ ହୋଇ ନ ପାରେ । ୧୫୭।୧୬୧ ।

ନାନ୍ଦୀମୁଖୀ ଶ୍ରୀବୃନ୍ଦାଙ୍କୁ କହୁଅଛନ୍ତି— ଈଶ୍ୱର ଚିତ୍‌ଶକ୍ତି ବ୍ୟତୀତ ଯେପରି ପୁଷ୍ଟିଲାଭ କରନ୍ତି ନାହିଁ, ସେହିପରି ଶ୍ରୀରାଧାକୃଷ୍ଣଙ୍କର ଭାବ ଅତି ବୃହତ୍ ସୁଖରୂପ ଓ ସ୍ୱପ୍ରକାଶ ହେଲେ ସ୍ୱୀୟ ନିଜର ସଖୀ ବ୍ୟତୀତ କ୍ଷଣକାଳ ମଧ୍ୟ ରସ ପୋଷଣ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଅତଏବ ସେହି ସଖୀମାନଙ୍କର ପଦ କେଉଁ ରସଜ୍ଞ ବ୍ୟକ୍ତି ଆଶ୍ରୟ ନ କରନ୍ତି । ୪୪ ଶ୍ଳୋକାର୍ଥ ।

ଗ୍ରନ୍ଥକାର ରୂପକଭାବରେ କହୁଅଛନ୍ତି ଯେ, ଶ୍ରୀରାଧା କୃଷ୍ଣପ୍ରେମରୂପକଳ୍ପଲତାସ୍ୱରୂପ, ଅର୍ଥାତ୍ ସର୍ବାଭୀଷ୍ଟପ୍ରଦା ଲତାବିଶେଷ, ସଖୀମାନେ ସେହି ଲତାର ପତ୍ରପୁଷ୍ପସ୍ଥାନୀୟ ଅର୍ଥାତ୍ ପ୍ରତ୍ୟଙ୍ଗ । ଯେପରି ଲତାର ମୂଳଦେଶରେ ଜଳ ସେଚନ କଲେ ପତ୍ରପୁଷ୍ପାଦିର ସମ୍ୟକ୍ ପୁଷ୍ଟି ଓ ପ୍ରଫୁଲ୍ଲତା ହୁଏ, କିନ୍ତୁ ମୂଳରେ ଜଳ ସେଚନ ନ କରି ପତ୍ରପୁଷ୍ପରେ ସେଚନ କଲେ ସେପରି ହୁଏ ନାହିଁ, ସେହିପରି ଲତାର ମୂଳସ୍ୱରୂପା ଶ୍ରୀରାଧାଠାକୁରାଣୀ ଶ୍ରୀକୃଷ୍ଣଲୀଳାମୃତ ଦ୍ୱାରା ଅଭିଷିକ୍ତ ହେଲେ ସମସ୍ତ ସଖୀମାନଙ୍କର ଅତ୍ୟୁତ୍କୃଷ୍ଟ ପ୍ରଫୁଲ୍ଲତା ହୁଏ । ଯାହା କି ସେମାନେ ନିଜେ ନିଜେ ଶ୍ରୀକୃଷ୍ଣଲୀଳାଦ୍ୱାରା ଅଭିଷିକ୍ତ ହୋଇ ଆଂଶିକ ସୁଖ ଲାଭ କରନ୍ତି ନାହିଁ । ୧୬୫ ।

ତଥାହି ଗୋବିନ୍ଦଲୀଳାମୃତେ (୧୦।୧୬)—

ସଖ୍ୟଃ ଶ୍ରୀରାଧିକାୟା ବ୍ରଜକୁମୁଦବିଧୋର୍ହ୍ଲାଦିନୀ-
ନାମଶକ୍ତେଃ,
ସାରାଂଶପ୍ରେମବଲ୍ଲ୍ୟାଃ କିସଲୟଦଲପୁଷ୍ପାଦିତୁଲ୍ୟାଃ
ସ୍ୱତୁଲ୍ୟାଃ ।
ସିକ୍ତାୟାଂ କୃଷ୍ଣଲୀଳାମୃତରସନିଚୟୈରୁଲ୍ଲସନ୍ତ୍ୟାମମୁଷ୍ୟାଂ
ଜାତୋଲ୍ଲାସାଃ ସ୍ୱସେକାଚ୍ଛତଗୁଣମଧିକଂ ସନ୍ତି
ଯତ୍ତନ୍ନ ଚିତ୍ରମ୍ । ୪୫ ।

ଯଦ୍ୟପି ସଖୀର କୃଷ୍ଣସଙ୍ଗମେ ନାହି ମନ ।
ତଥାପି ରାଧିକା ଯତ୍ନେ କରାୟ ସଙ୍ଗମ । ୧୬୬ ।

ନାନା-ଛଳେ କୃଷ୍ଣେ ପ୍ରେରି ସଙ୍ଗମ କରାୟ ।
ଆତ୍ମକୃଷ୍ଣସଙ୍ଗ ହୈତେ କୋଟି ସୁଖ ପାୟ ।୧୬୭।
ଅନ୍ୟୋନ୍ୟେ ବିଶୁଦ୍ଧ ପ୍ରେମେ କରେ ରସ ପୁଷ୍ଟ ।
ତା-ସଭାର ପ୍ରେମ ଦେଖି କୃଷ୍ଣ ହୟ ତୁଷ୍ଟ ।୧୬୮।
ସହଜେ ଗୋପୀର ପ୍ରେମ—ନହେ ପ୍ରାକୃତ-କାମ।
କାମକ୍ରୀଡ଼ା-ସାମ୍ୟେ ତାର କହି କାମ-ନାମ ।୧୬୯।

ତଥାହି ଭକ୍ତିରସାମୃତସିନ୍ଧୌ ପୂର୍ବବିଭାଗେ
ସାଧନଭକ୍ତିଲହର୍ଯ୍ୟାମ୍ (୧.୪୩)—

ପ୍ରେମୈବ ଗୋପରାମାଣାଂ କାମ ଇତ୍ୟଗମତ୍ ପ୍ରଥାମ୍
ଇତ୍ୟୁଦ୍ଧବାଦୟୋଽପ୍ୟେତଂ ବାଞ୍ଛନ୍ତି ଭଗବତ୍-
ପ୍ରିୟାଃ ।

---

ଶ୍ରୀରାଧିକାୟାଃ ନିବୃତୌ ସତ୍ୟାଂ ସଖୀନାଂ ନିବୃତିଃ ସ୍ୟାତ୍ । ତତ୍ର ତସ୍ୟା ସହ ଆସାଂ ଅଭେଦ ଏବ କାରଣମିତ୍ୟାହ ସଖ୍ୟ ଇତି । ବ୍ରଜରୂପକୁମୁଦାନାଂ ବିଧୋଃ ଚନ୍ଦ୍ରସ୍ୟ ହ୍ଲାଦିନୀ ନାମ ଯା ଶକ୍ତିଃ ତସ୍ୟାଃ ସାରାଂଶୋ ଯଃ ପ୍ରେମା ସ ଏବ ବଲ୍ଲୀ ଲତା ତସ୍ୟାଃ ଶ୍ରୀରାଧିକାୟାଃ ସଖ୍ୟଃ କିସଲୟଦଲ-ପୁଷ୍ପାଦିତୁଲ୍ୟାଃ ସ୍ୱତୁଲ୍ୟାଃ ଶ୍ରୀରାଧିକାତୁଲ୍ୟାଶ୍ଚ ଅତଃ ଶ୍ରୀକୃଷ୍ଣଲୀଳାମୃତରସସ୍ୟ ନିଚୟୈଃ ସମୂହୈଃ ଅମୁଷ୍ୟାଂ ରାଧାୟାଂ ସିକ୍ତାୟାଂ ଉଲ୍ଲସନ୍ତ୍ୟାଂ ଚ ସତ୍ୟାଂ ତାଃ ସଖ୍ୟଃ ସ୍ୱସେକାଚ୍ଛତଗୁଣାଂ ଅଧିକଂ ଜାତୋଲ୍ଲାସାଃ ଭବନ୍ତି ଇତି ଯତ୍ତୁ ତତ୍ ଚିତ୍ରଂ ନ । ୪୫ ଶ୍ଳୋକ ।

---

ଶ୍ରୀନାନ୍ଦୀମୁଖୀ ଶ୍ରୀବୃନ୍ଦାଙ୍କୁ କହୁଅଛନ୍ତି—ଶ୍ରୀରାଧିକା ନନ୍ଦବ୍ରଜକୁଳଚନ୍ଦ୍ର ଶ୍ରୀକୃଷ୍ଣଙ୍କର ଆହ୍ଲାଦିନୀ ନାମ ଶକ୍ତିର ସାରାଂଶରୂପ ପ୍ରେମଲତା । ସଖୀମାନେ ସେହି ଲତାର ନବପଲ୍ଲବ ଓ ପୁଷ୍ପାଦିରୂପ ଅତଏବ ଶ୍ରୀରାଧାଙ୍କ ତୁଲ୍ୟ । ଅତଏବ ଶ୍ରୀକୃଷ୍ଣଲୀଳାମୃତରୂପ ଜଳଦ୍ୱାରା ରାଧାରୂପ ଲତା ସିକ୍ତ ହୋଇ ଉଲ୍ଲସିତ ହେଲେ ସଖୀରୂପ ପଲ୍ଲବାଦି ନିଜସେକ ଅପେକ୍ଷା ଯେ ଶତଗୁଣ ଅଧିକ ଉଲ୍ଲସିତ ହୁଅନ୍ତି ଏହା କିଛିମାତ୍ର ଆଶ୍ଚର୍ଯ୍ୟ ନୁହେ । ୪୫ ଶ୍ଳୋକାର୍ଥ ।

ଆତ୍ମ – ଶ୍ରୀରାଧା ନିଜେ । ୧୬୭ ।

ଅନ୍ୟୋନ୍ୟେ—ଶ୍ରୀରାଧା ଓ ସଖୀମାନେ ପରସ୍ପର । ୧୬୮ ।

ପ୍ରାକୃତକାମ—ଆତ୍ମସୁଖ ଇଚ୍ଛାମୟୀ । ୧୬୯ ।

୪୬ ଶ୍ଳୋକର ଅନ୍ୱୟ—ଆଦି, ୪ର୍ଥପରି. ୨୫ଶ ଶ୍ଳୋକ ।

ଅର୍ଥ—ବ୍ରଜଗୋପୀମାନଙ୍କର ପ୍ରେମହିଁ 'କାମ' ଏହି ଖ୍ୟାତି ପ୍ରାପ୍ତ ହୋଇଅଛି । ଅର୍ଥାତ୍ କ୍ରୀଡ଼ାମାନଙ୍କର ଆଦିକାରଣ ପ୍ରଯୁକ୍ତ କାମ କୁହାଯାଏ । କିନ୍ତୁ ସ୍ୱରୂପତଃ ତାହା କାମ ନୁହେ । ଏହି ହେତୁ ଉଦ୍ଧବାଦି ଭଗବତ୍ପ୍ରିୟ ଭକ୍ତମାନେ ସେହି ପ୍ରେମ (ଗୋପୀପ୍ରେମ) ବାଞ୍ଛା କରନ୍ତି । ୪୬ ଶ୍ଳୋକାର୍ଥ ।

ନିଜେନ୍ଦ୍ରିୟ-ସୁଖହେତୁ କାମେର ତାତ୍ପର୍ଯ୍ୟ ।
କୃଷ୍ଣସୁଖେର ତାତ୍ପର୍ଯ୍ୟ ଗୋପୀଭାବବର୍ଯ୍ୟ ।୧୭୦।
ନିଜେନ୍ଦ୍ରିୟ-ସୁଖବାଞ୍ଛା ନାହି ଗୋପିକାର ।
କୃଷ୍ଣେ ସୁଖ ଦିତେ କରେ ସଙ୍ଗମ-ବିହାର ।୧୭୧

ତଥାହି ( ଭାଃ—୧୦।୩୧।୧୯ )—

ଯତ୍ତେ ସୁଜାତଚରଣାମ୍ବୁରୁହଂ ସ୍ତନେଷୁ
ଭୀତାଃ ଶନୈଃ ପ୍ରିୟ ଦଧୀମହି କର୍କଶେଷୁ ।
ତେନାଟବୀମଟସି ତଦ୍‌ବ୍ୟଥତେ ନ କିଂସ୍ୱିତ୍,
କୂର୍ପାଦିଭିର୍ଭ୍ରମତି ଧୀର୍ଭବଦାୟୁଷାଂ ନଃ । ୪୭ ।

ସେଇ ଗୋପୀଭାବାମୃତେ ଯାର ଲୋଭ ହୟ ।
ବେଦଧର୍ମ ସର୍ବ ତେଜି ସେଇ କୃଷ୍ଣେ ଭଜୟ ।୧୭୨
ରାଗାନୁଗାମାର୍ଗେ ତାରେ ଭଜେ ଯେଇ ଜନ ।
ସେଇ ଜନ ପାୟ ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ।୧୭୩।
ବ୍ରଜଲୋକେର କୋନ ଭାବ ଲଞା ଯେଇ ଭଜେ ।
ଭାବଯୋଗ୍ୟ ଦେହ ପାଞା କୃଷ୍ଣେ ପାୟ ବ୍ରଜେ ।
ତାହାତେ ଦୃଷ୍ଟାନ୍ତ— ଉପନିଷଦ୍ ଶ୍ରୁତିଗଣ ।
ରାଗମାର୍ଗେ ଭଜି ପାଇଲ ବ୍ରଜେନ୍ଦ୍ରନନ୍ଦନ ।୧୭୫।

ଗ୍ରନ୍ଥକାର ପ୍ରାକୃତ କାମର ଅର୍ଥ କରୁଅଛନ୍ତି । ପ୍ରାକୃତ କାମର ଲକ୍ଷ୍ୟ ଆପଣାର ଇନ୍ଦ୍ରିୟ-ସୁଖଲାଭ । କିନ୍ତୁ ଗୋପୀଭାବ ଯାହାକି ସର୍ବଶ୍ରେଷ୍ଠ ବା ସାଧବର୍ଯ୍ୟ ତାହାର ଲକ୍ଷ୍ୟ ଶ୍ରୀକୃଷ୍ଣଙ୍କୁ ସୁଖଦାନ କରିବା । ଅତଏବ ଗୋପୀମାନେ ଶ୍ରୀକୃଷ୍ଣଙ୍କ ସହିତ ଯେ ବିହାର କରନ୍ତି ଶ୍ରୀକୃଷ୍ଣଙ୍କୁ ସୁଖୀ କରିବାହିଁ ସେମାନଙ୍କର ଲକ୍ଷ୍ୟ । ସେଥିରେ ନିଜର ସୁଖଲାଭର ଲାଳସା କିଞ୍ଚିନ୍ମାତ୍ର ନାହିଁ । ୧୭୦।୧୭୧ ।

୪୭ ଶ୍ଳୋକର ଅନ୍ୱୟ—ଆଦି: ୪ର୍ଥ ପରିଚ୍ଛେଦ ୨୭ଶ ଶ୍ଳୋକ ।

ଅର୍ଥ— ମହାରାସରେ ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ପରେ ଶ୍ରୀ ଗୋପୀମାନେ ତାହାଙ୍କୁ ଅନ୍ୱେଷଣ-ପୂର୍ବକ ରୋଦନ କରି କହୁଅଛନ୍ତି—ହେ ପ୍ରିୟ ! ତୁମ୍ଭର ସୁକୁମାର ଚରଣକମଳରେ ଆଘାତ ଲାଗିବା ଭୟରେ ଆମ୍ଭେମାନେ ତାହା ଧୀରେ ଧୀରେ ଆମ୍ଭମାନଙ୍କର କଠିଣ ସ୍ତନଯୁଗଳରେ ଧାରଣ କରୁଁ । କିନ୍ତୁ ତୁମ୍ଭେ ସେହି ଚରଣରେ ବନଭ୍ରମଣ କରୁଅଛ ଏବଂ ସେଥିରେ କ୍ଷୁଦ୍ର କ୍ଷୁଦ୍ର ଶିଳାଖଣ୍ଡମାନଙ୍କ ଆଘାତରେ ଅବଶ୍ୟ ବ୍ୟଥା ହେଉଅଛି ଭାବି ତ୍ୱଦ୍‌ଗତଜୀବନ ଆମ୍ଭମାନଙ୍କର ଚୈତନ୍ୟ ଲୋପ ହେଉଅଛି । ୪୭ ଶ୍ଳୋକାର୍ଥ ।

ଗୋପୀମାନେ ଅଖିଳରସାମୃତମୂର୍ତ୍ତି ରସରାଜ ଶ୍ରୀକୃଷ୍ଣଙ୍କୁ ଉପରୋକ୍ତ ରୂପେ ଭାବାମୃତଦ୍ୱାରା ସେବା କରନ୍ତି । ଯେଉଁ ସୌଭାଗ୍ୟବାନ୍ ବ୍ୟକ୍ତିର ଏହି ଭାବାମୃତ ଅନୁସରଣରେ ରସରାଜ ଶ୍ରୀକୃଷ୍ଣଙ୍କୁ ସେବା କରିବାର ଲୋଭ ହୁଏ, ସେ ବ୍ୟକ୍ତି ବିଧିନିଷେଧମାର୍ଗ ଓ ଲୋକାଚାର, ଏ ସମସ୍ତ ପ୍ରତି ଲକ୍ଷ୍ୟ ନ ରଖି କୃଷ୍ଣୈକଶରଣ ହୋଇ ସର୍ବଭାବରେ ଏକାନ୍ତ ଶ୍ରୀକୃଷ୍ଣଭଜନ କରନ୍ତି । ଏହିମାର୍ଗ ଅର୍ଥାତ୍ ଗୋପୀଦେହାନୁସରଣ ମାର୍ଗହିଁ ରାଗାନୁଗା ମାର୍ଗ । ଏଥିରେ ଯେଉଁ ବ୍ୟକ୍ତି ଶ୍ରୀକୃଷ୍ଣଭଜନ କରନ୍ତି, ସେହି ବ୍ୟକ୍ତିଙ୍କର ଶ୍ରୀକୃଷ୍ଣକୃପାଲାଭଦ୍ୱାରା ସିଦ୍ଧାବସ୍ଥାରେ ଶ୍ରୀ ବ୍ରଜଧାମରେ ଶ୍ରୀ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ସେବାନନ୍ଦ ଲାଭହୁଏ । ୧୭୨। ୭୩।

କେବଳ ଯେ ଗୋପୀଭାବର ଅନୁଗମନରେ ଶ୍ରୀବ୍ରଜଧାମରେ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ସେବାନନ୍ଦ ଲାଭ ହୁଏ ତାହା ନୁହେ ବ୍ରଜଜନମାନଙ୍କର ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଦାସ, ସଖା, ଗୁରୁଜନ ଓ କାନ୍ତାମାନଙ୍କ ମଧ୍ୟରୁ ଯେ କୌଣସି ଭାବର ଅନୁସରଣ କରି ଶ୍ରୀକୃଷ୍ଣଭଜନ କଲେ ଶ୍ରୀକୃଷ୍ଣକୃପାରୁ ଭାବାନୁରୂପସିଦ୍ଧଦେହରେ ଶ୍ରୀବ୍ରଜଧାମରେ ଶ୍ରୀକୃଷ୍ଣସେବାନନ୍ଦ ଲାଭ ହୁଏ । ଏହାର ପ୍ରମାଣ ଶ୍ରୀମଦ୍ ଭାଗବତରେ ଶ୍ରୁତିଗୀତାରୁ ଦେଖାଯାଏ, ଯେ ଶ୍ରୁତିମାନେ ରାଗମାର୍ଗରେ ଶ୍ରୀକୃଷ୍ଣଭଜନ କରି ସିଦ୍ଧ ଅବସ୍ଥାରେ ଗୋପୀଦେହ ଲାଭ କରି ଶ୍ରୀ ବ୍ରଜଧାମରେ ଶ୍ରୀକୃଷ୍ଣଙ୍କର ସେବାନନ୍ଦ ଲାଭ କରିଥିଲେ । ୧୭୪।୧୭୫ ।

ତଥାହି ( ଭାଃ— ୧୦।୮୭।୨୩ ) —

ନିଭୃତମରୁନ୍ମନୋଽକ୍ଷଦୃଢ଼ଯୋଗଯୁଜୋ ହୃଦି ଯ-
ନ୍ମୁନୟ ଉପାସତେ ତଦରୟୋଽପି ଯଯୁଃ ସ୍ମରଣାତ୍ ।
ସ୍ତ୍ରିୟ ଉରଗେନ୍ଦ୍ରଭୋଗଭୁଜଦଣ୍ଡବିଷକ୍ତଧିୟୋ
ବୟମପି ତେ ସମାଃ ସମଦୃଶୋଽଙ୍ଘ୍ରିସରୋଜ-
ସୁଧାଃ । ୪୮ ।

'ସମଦୃଶ'-ଶବ୍ଦେ କହେ ସେଇଭାବେ ଅନୁଗତି ।
'ସମା'-ଶବ୍ଦେ କହେ ଶ୍ରୁତିର ଗୋପୀଦେହପ୍ରାପ୍ତି ।
'ଅଙ୍ଘ୍ରିପଦ୍ମସୁଧା' କହେ କୃଷ୍ଣସଙ୍ଗାନନ୍ଦ ।
ବିଧିମାର୍ଗେ ନା ପାଇୟେ ବ୍ରଜେ କୃଷ୍ଣଚନ୍ଦ୍ର ।୧୭୭

---

ନିଭୃତମରୁନ୍ମନୋଽକ୍ଷଦୃଢ଼ଯୋଗଯୁଜଃ ( ନିଭୃତାନି ସଂଯମିତାନି ମରୁତ୍ ମନଃ ଅକ୍ଷାଣି ଯୈଃ ତେ ନିଭୃତମରୁନ୍ମନୋଽକ୍ଷାଃ, ତେ ଚ ତେ ଦୃଢ଼ଯୋଗଂ ଯୁଞ୍ଜନ୍ତି ଇତି ଦୃଢ଼ଯୋଗଯୁଜଃ ଚ ତେ ) ମୁନୟଃ ଯତ୍ ( ନିର୍ବିଶେଷାବିର୍ଭାବବିଶେଷଂ ବ୍ରହ୍ମାଖ୍ୟଂ ତତ୍ତ୍ୱଂ ) ହୃଦି ଉପାସତେ (ଧ୍ୟାୟନ୍ତି ଅନୁଭବନ୍ତି ତୁ ତଦେବ ) ତତ୍ (ଏବ ତତ୍ତ୍ୱଂ) ଅରୟଃ ଅପି ସ୍ମରଣାତ୍ ( ସ୍ମରଣମାତ୍ରାତ୍ ତେଭ୍ୟଃ ପ୍ରଥମମେବ ) ଯଯୁଃ ( ପ୍ରାପୁଃ ତତ୍ର ଲୀନାଃ ବଭୂବୁଃ ) ଉରଗେନ୍ଦ୍ରଭୋଗଭୁଜଦଣ୍ଡବିଷକ୍ତଧିୟଃ (ଉରଗେନ୍ଦ୍ରସ୍ୟ ଶେଷସ୍ୟ ଭୋଗଃ ଦେହଃ ତତ୍ ସଦୃଶୟୋଃ ଭୁଜଦଣ୍ଡୟୋଃ ବିଷକ୍ତା ଧୀର୍ଯାସାଂ ତାଃ) ସ୍ତ୍ରିୟଃ ( ତବ ନିତ୍ୟପ୍ରେୟସ୍ୟଃ ଶ୍ରୀରାଧାଦୟଃ ) ଯତ୍ ( ଯାଃ ) ତେ ( ତବ ) ଅଂଘ୍ରିସରୋଜସୁଧାଃ ( ସ୍ପର୍ଶମାଧୁର୍ଯ୍ୟାଣି ସାକ୍ଷାତ୍ ଭଜତେ) ବୟଂ ଅପି ସମାଃ (ଶ୍ରୀମନ୍ନନ୍ଦବ୍ରଜଗୋପୀତ୍ୱପ୍ରାପ୍ତ୍ୟା କାୟବ୍ୟୂହେନ ତତ୍ତୁଲ୍ୟରୂପାଃ ) ସମଦୃଶଃ (ତଦ୍ଭାବାନୁଗତଭାବାଶ୍ଚ ସତ୍ୟଃ ) ତାଃ ଯୁଜିମ । ୪୮ ଶ୍ଳୋକ ।

---

ପ୍ରଳୟପୟୋଧିସ୍ଥ ଶ୍ରୀମନ୍ନାରାୟଣଙ୍କୁ ଶ୍ରୁତିମାନେ ସ୍ତୁତିଦ୍ୱାରା କହୁଅଛନ୍ତି—ହେ ପ୍ରଭୋ ! ପ୍ରାଣ, ମନ ଓ ଇନ୍ଦ୍ରିୟ ସଂଯମପୂର୍ବକ ଦୃଢ଼ଯୋଗଯୁକ୍ତ ମୁନିମାନେ ଯେଉଁ ତତ୍ତ୍ୱ ( ଆପଣଙ୍କର ଆବିର୍ଭାବବିଶେଷ ବ୍ରହ୍ମାଖ୍ୟ ତତ୍ତ୍ୱ) ହୃଦୟରେ ଉପାସନା କରନ୍ତି ଶତ୍ରୁମାନେ ଆପଣଙ୍କୁ ଶତ୍ରୁଭାବରେ ସ୍ମରଣ କରିବାଦ୍ୱାରା ତାହାହିଁ ପାଇଅଛନ୍ତି ଅର୍ଥାତ୍ ବ୍ରହ୍ମସାଯୁଜ୍ୟ ପ୍ରାପ୍ତହୋଇ ଅଛନ୍ତି । ଏବମ୍ବିଧ ଆପଣଙ୍କର ସର୍ପଦେହାକୃତି ଭୁଜଦଣ୍ଡରେ ଅତିଶୟ ଆସକ୍ତଚିତ୍ତ ଶ୍ରୀରାଧାଦି ଗୋପୀମାନେ ଆପଣଙ୍କ ସ୍ପର୍ଶମାଧୁର୍ଯ୍ୟ ସାକ୍ଷାତ୍ ବକ୍ଷସ୍ଥଳରେ ଭଜନକରନ୍ତି । ଶ୍ରୁତ୍ୟଭିମାନୀ ଦେବତା ଆମ୍ଭେମାନେ ଏହି ଦେହରେ ତାହା ପ୍ରାପ୍ତିର ଅଯୋଗ୍ୟ ହେଲେହେଁ ନନ୍ଦଗୋପରେ ଗୋପୀ-ଜନ୍ମପ୍ରାପ୍ତିପୂର୍ବକ କାୟବ୍ୟୂହରେ ସେମାନଙ୍କର (ଶ୍ରୀରାଧାଦିଙ୍କର) ସଦୃଶ ହୋଇ ସେମାନଙ୍କର ଭାବର ଅନୁଗମନପୂର୍ବକ ଆପଣଙ୍କର ସ୍ପର୍ଶମାଧୁର୍ଯ୍ୟ ଅନୁଭବ କରିବୁଁ । ୪୮ ଶ୍ଳୋକାର୍ଥ ।

ଗ୍ରନ୍ଥକାର ଉପରୋକ୍ତ ଶ୍ଳୋକସ୍ଥ ଶେଷଚରଣୋକ୍ତ 'ସମଦୃଶ' ଶବ୍ଦର ଅର୍ଥ କରୁଅଛନ୍ତି, ସେହି ଭାବର ଅର୍ଥାତ୍ ଗୋପୀଭାବର ଅନୁସରଣ ଏବଂ ସମଶବ୍ଦର ଅର୍ଥ ଶ୍ରୀମନ୍ନନ୍ଦବ୍ରଜରେ ଗୋପୀ-ଦେହ-ପ୍ରାପ୍ତି, ଅଙ୍ଘ୍ରିସରୋଜସୁଧା ଅର୍ଥ ଶ୍ରୀକୃଷ୍ଣଙ୍କର ସ୍ପର୍ଶମାଧୁର୍ଯ୍ୟ ବା ସଙ୍ଗସୁଖ, ଏହା କେବଳ ରାଗ-ମାର୍ଗଦ୍ୱାରା ପ୍ରାପ୍ତ ହୁଏ । ବିଧିମାର୍ଗଦ୍ୱାରା ଶ୍ରୀବ୍ରଜଧାମରେ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ସଙ୍ଗ-ସେବା-ସାଧନ ହୁଏ ନା । ୧୭୭ ।

ତଥାହି ତତ୍ରୈବ ( ୧୦।୯।୨୧ )—
ନାୟଂ ସୁଖାପୋ ଭଗବାନ୍ ଦେହିନାଂ ଗୋପୀକାସୁତଃ ।
ଜ୍ଞାନିନାଞ୍ଚାତ୍ମଭୂତାନାଂ ଯଥା ଭକ୍ତିମତାମିହ । ୪୯ ।

ଅତଏବ ଗୋପୀଭାବ କର ଅଙ୍ଗୀକାର ।
ରାତ୍ରିଦିନେ ଚିନ୍ତେ ରାଧାକୃଷ୍ଣେର ବିହାର ।୧୭୮।
ସିଦ୍ଧଦେହ ଚିନ୍ତି କରେ ତାହାଁଇ ସେବନ ।
ସଖୀଭାବେ ପାୟ ରାଧାକୃଷ୍ଣେର ଚରଣ । ୧୭୯ ।
ଗୋପୀ-ଅନୁଗତ-ବିନା ଐଶ୍ୱର୍ୟ୍ୟ-ଜ୍ଞାନେ ।
ଭଜିଲେହ ନାହିଁ ପାୟ ବ୍ରଜେନ୍ଦ୍ରନନ୍ଦନେ ।୧୮୦।
ତାହାତେ ଦୃଷ୍ଟାନ୍ତ— ଲକ୍ଷ୍ମୀ କରିଲ ଭଜନ ।
ତଥାପି ନା ପାଇଲ ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ।୧୮୧।

---

ଅୟଂ ଗୋପିକାସୁତଃ ଭଗବାନ୍ ଇହ —ଗୋପିକାସୁତେ ଭକ୍ତିମତାଂ ଯଥା ସୁଖାପଃ — ସୁଖେନ ଆପ୍ୟତେ ଇତି, ଦେହିନାଂ—ଦେହାଭିମାନିନାଂ ତପଆଦୀନାଂ ଜ୍ଞାନିନାଂ ନିବୃତ୍ତାଭିମାନିନାଂ, ଆତ୍ମଭୂତାନାଂ ଆତ୍ମଜ୍ଞାନିନାଂ ଚ ତଥା ସୁଖାପଃ ନ । ୪୯ଶ୍ଳୋକ ।

---

ଶ୍ରୀଶୁକଦେବ ଗୋସ୍ୱାମୀ ପରୀକ୍ଷିତଙ୍କୁ କହୁଅଛନ୍ତି—ଏହି ଗୋପୀକାସୁତ (ଯଶୋଦାନନ୍ଦନ) ଭଗବାନ୍ ( ସ୍ୱୟଂଭଗବାନ୍ ଶ୍ରୀକୃଷ୍ଣ ) ଶ୍ରୀଯଶୋଦାନନ୍ଦନରୂପରେ ତାଙ୍କୁ ଯେଉଁମାନେ ଭକ୍ତି କରନ୍ତି, ସେ ପ୍ରକାର ଭକ୍ତମାନଙ୍କର ଯେପରି ସୁଖଲଭ୍ୟ, ଦେହାଭିମାନୀତାପସମାନଙ୍କର କିମ୍ବା ଆତ୍ମଜ୍ଞାନୀମାନଙ୍କର ସେପରି ସୁଖଲଭ୍ୟ ନୁହନ୍ତି ।

ତାତ୍ପର୍ଯ୍ୟ— ବ୍ରଜରସଭାବିତ ଅନୁରାଗୀ ଭକ୍ତମାନଙ୍କ ପକ୍ଷରେ ବ୍ରଜରାଜନନ୍ଦନ ଅଖିଳ-ରସାମୃତମୂର୍ତ୍ତି ଶ୍ରୀକୃଷ୍ଣ ଯେପରି ସୁଲଭ୍ୟ ଓ ସୁଖସେବ୍ୟ କର୍ମଯୋଗୀ ଓ ଜ୍ଞାନଯୋଗୀମାନଙ୍କ ପକ୍ଷରେ ଏପରି କି ବିଧିମାର୍ଗ ଭକ୍ତମାନଙ୍କ ପକ୍ଷରେ ମଧ୍ୟ ସେପରି ସୁଖଲଭ୍ୟ ଓ ସୁଖସେବ୍ୟ ନୁହନ୍ତି । ତେବେ ଏ ଜାତୀୟ ବ୍ୟକ୍ତିମାନେ ଯଦି ସୌଭାଗ୍ୟବଶତଃ ପ୍ରଥମୋକ୍ତ ଭକ୍ତମାନଙ୍କର ସଙ୍ଗଲାଭ କରି ସେମାନଙ୍କର ଭଜନପ୍ରଣାଳୀର ଅନୁସରଣ କରନ୍ତି ତେବେ କ୍ରମେ ଭଜନବୃତ୍ତି ଅନୁଯାୟୀ ଶ୍ରୀକୃଷ୍ଣ ସେମାନଙ୍କର ସୁଲଭ୍ୟ ଓ ସୁଖସେବ୍ୟ ହୁଅନ୍ତି । ୪୯ ଶ୍ଳୋକାର୍ଥ ।

ପୂର୍ବୋକ୍ତ ୧୭୪ ପୟାର ଯେ ବ୍ରଜଲୋକର କୌଣସି ଭାବ ନେଇ ଭଜନବିଷୟ କହି-ଅଛନ୍ତି ସେହି ବ୍ରଜଭାବର ସର୍ବଶ୍ରେଷ୍ଠ ଭାବ ଯେ ଗୋପୀଭାବ ଓ ଯଦ୍ଦ୍ୱାରା ପରିପୂର୍ଣ୍ଣ କୃଷ୍ଣ ପ୍ରାପ୍ତି ହୁଏ ସେହି ଭାବର ସାଧନ ପ୍ରଣାଳୀ ସ୍ୱରୂପରେ କହୁଅଛନ୍ତି ଯେ ସାଧକଭକ୍ତ ଗୋପୀଭାବକୁ ଆଶ୍ରୟ କରି ଦିବାରାତ୍ର ଶ୍ରୀରାଧାକୃଷ୍ଣଙ୍କର ବିଳାସମାଧୁର୍ଯ୍ୟ ଭାବନା କରିବେ ସେହି ଗୋପୀ ବ୍ୟୂହରେ ନିଜ ନିଜର ଅଭିଲଷିତ ସିଦ୍ଧଦେହ ଚିନ୍ତା କରି ଶ୍ରୀବୃନ୍ଦାବନରେ ଶ୍ରୀରାଧାକୃଷ୍ଣଙ୍କୁ ସଖୀଭାବ ଅନୁଗମନରେ ମାନସରେ ସେବା କରିବେ, ତାହାହେଲେ ସେ ଶ୍ରୀରାଧାକୃଷ୍ଣଙ୍କର କୃପାବଶତଃ ସିଦ୍ଧ ଦେହରେ ସେମାନଙ୍କର ଯୁଗଳଚରଣସେବା ଲାଭ କରିବେ । ୧୭୮।୭୯ ।

ଗୋପୀଭାବ ଅନୁଗତବ୍ୟତୀତ ଯେ ଶ୍ରୀରାଧାକୃଷ୍ଣଙ୍କର କୁଞ୍ଜସେବା ମିଳେ ନାହିଁ ସେ ବିଷୟରେ କହୁଅଛନ୍ତି, ଐଶ୍ୱର୍ଯ୍ୟ ଜ୍ଞାନରେ ଶ୍ରୀକୃଷ୍ଣଙ୍କୁ ଭଜନ କଲେହେଁ ତାହାଙ୍କୁ ରସରାଜ ଶ୍ରୀବ୍ରଜେନ୍ଦ୍ରନନ୍ଦନରୂପରେ ଲାଭ କରାଯାଏ ନାହିଁ । ଏହାର ଦୃଷ୍ଟାନ୍ତ ସ୍ୱରୂପ କହୁଅଛନ୍ତି ଯେ, ଲକ୍ଷ୍ମୀ-ଠାକୁରାଣୀ ଶ୍ରୀରାସବିଳାସରେ ଲୋଭଯୁକ୍ତ ହୋଇ ବହୁକାଳ ତପସ୍ୟା କରି ସୁଦ୍ଧା ରସରାଜ ଶ୍ରୀବ୍ରଜେନ୍ଦ୍ର-ନନ୍ଦନଙ୍କର ଶ୍ରୀବୃନ୍ଦାବନସଙ୍ଗସୁଖଲାଭ କରି ପାରି ନାହାନ୍ତି । ୧୮୦ ।

ତଥାହି ଭକ୍ତିରେ ( ୧୦।୪୭।୬୦ )—

ନାୟଂ ଶ୍ରିୟୋଽଙ୍ଗ ଉ ନିତାନ୍ତରତେଃ ପ୍ରସାଦଃ,
ସ୍ୱର୍ଯୋଷିତାଂ ନଳିନଗନ୍ଧରୁଚାଂ କୁତୋଽନ୍ୟାଃ ।
ରାସୋତ୍ସବେଽସ୍ୟ ଭୁଜଦଣ୍ଡଗୃହୀତକଣ୍ଠ-
ଲବ୍ଧାଶିଷାଂ ଯ ଉଦଗାଦ୍‌ବ୍ରଜସୁନ୍ଦରୀଣାମ୍ । ୫୦ ।

ଏତ ଶୁନି ପ୍ରଭୁ ତାଁରେ କୈଲ ଆଲିଙ୍ଗନ ।
ଦୁଇଜନେ ଗଲାଗଲି କରେନ କ୍ରନ୍ଦନ ।୧୮୨।
ଏଇମତ ପ୍ରେମାବେଶେ ରାତ୍ରି ଗୋଙାଇଲା ।
ପ୍ରାତଃକାଲେ ନିଜନିଜ କାର୍ଯ୍ୟେ ଦୋଁହେ ଗେଲା ।
ବିଦାୟ ସମୟେ ପ୍ରଭୁର ଚରଣେ ଧରିୟା ।
ରାମାନନ୍ଦରାୟ କହେ ମିନତି କରିୟା— ।୧୮୪।
ମୋରେ କୃପା କରିତେ ପ୍ରଭୁର ଇହାଁ ଆଗମନ ।
ଦିନ ଦଶ ରହି ଶୋଧ ମୋର ଦୁଷ୍ଟ ମନ ।୧୮୫।
ତୋମା ବିନା ଅନ୍ୟ ନାହି ଜୀବ ଉଦ୍ଧାରିତେ ।
ତୋମା ବିନା ଅନ୍ୟ ନାହି କୃଷ୍ଣପ୍ରେମ ଦିତେ ।
ପ୍ରଭୁ କହେ —ଆଇଲାଙ୍ଗ୍ ଶୁନି ତୋମାର ଗୁଣ ।
କୃଷ୍ଣକଥା ଶୁନି ଶୁଦ୍ଧ କରାଇତେ ମନ । ୧୮୭ ।
ଯୈଛେ ଶୁନିଲ, ତୈଛେ ଦେଖିଲ ତୋମାର ମହିମା
ରାଧାକୃଷ୍ଣ-ପ୍ରେମରସଜ୍ଞାନେର ତୁମି ସୀମା ।୧୮୮।
ଦଶଦିନେର କା କଥା, ଯାବତ୍ ଆମି ଜୀବ ।
ତାବତ୍ ତୋମାର ସଙ୍ଗ ଛାଡ଼ିତେ ନାରିବ ।୧୮୯।
ନୀଳାଚଲେ ତୁମି ଆମି ରହିବ ଏକସଙ୍ଗେ ।
ସୁଖେ ଗୋଙାଇବ କାଲ କୃଷ୍ଣକଥା-ରଙ୍ଗେ ।
ଏତ ବଲି ଦୋଁହେ ନିଜନିଜ କାର୍ଯ୍ୟେ ଗେଲା ।
ସନ୍ଧ୍ୟାକାଲେ ରାୟ ପୁନ ଆସିୟା ମିଲିଲା ।୧୯୧ ।
ଅନ୍ୟୋନ୍ୟେ ମିଲିୟା ଦୋଁହେ ନିଭୃତେ ବସିୟା ।
ପ୍ରଶ୍ନୋତ୍ତରଗୋଷ୍ଠୀ କରେ ଆନନ୍ଦିତ ହଞା ।୧୯୨।
ପ୍ରଭୁ କହେ, ରାମାନନ୍ଦ କରେନ ଉତ୍ତର ।
ଏଇମତ ସେଇ ରାତ୍ରି କଥା ପରସ୍ପର । ୧୯୩ ।
ପ୍ରଭୁ କହେ — କୋନ ବିଦ୍ୟା ବିଦ୍ୟା ମଧ୍ୟେ ସାର ?
ରାୟ କହେ - କୃଷ୍ଣଭକ୍ତିବିନା ବିଦ୍ୟା ନାହି ଆର ।

---

ଏହି ଅଷ୍ଟମ ଅଧ୍ୟାୟ ୧୭ଶ ଶ୍ଳୋକରେ ୫୦ ଶ୍ଳୋକର ଅନ୍ୱୟ ଦ୍ରଷ୍ଟବ୍ୟ ।

ଅର୍ଥ—ଶ୍ରୀମାନ୍ ଉଦ୍ଧବ ବିସ୍ମୟରେ ଶ୍ରୀଗୋପୀମାନଙ୍କର ଭାବକୁ ଲକ୍ଷ୍ୟ କରି କହୁଅଛନ୍ତି, ରାସୋତ୍ସବରେ ଶ୍ରୀକୃଷ୍ଣଙ୍କର ଭୁଜଯୁଗଳଦ୍ୱାରା କଣ୍ଠ ଆଲିଙ୍ଗନ ରୂପ ମନୋରଥ ଲାଭକାରିଣୀ ଶ୍ରୀବ୍ରଜ-ଦେବୀମାନେ ଶ୍ରୀକୃଷ୍ଣଙ୍କଠାରୁ ଯେଉଁ ଜାତୀୟ କୃପା ଲାଭ କରିଥିଲେ ଶ୍ରୀକୃଷ୍ଣଙ୍କ ସ୍ୱରୂପ ଶ୍ରୀନାରାୟଣ-ଙ୍କର ବୈକୁଣ୍ଠସ୍ଥା ପ୍ରେୟସୀ ଭୂଲୀଳାପ୍ରଭୃତିଙ୍କ ମଧ୍ୟରେ ପରମ ପ୍ରେମବତୀ ହେତୁ ତାହାଙ୍କର ସର୍ବଦା ବକ୍ଷଃସ୍ଥଳସ୍ଥିତା ଯେ ଲକ୍ଷ୍ମୀଦେବୀ ସେ ମଧ୍ୟ ସେ ଜାତୀୟ କୃପା ଲାଭ କରି ନାହାନ୍ତି । ଅନ୍ୟାନ୍ୟ ସ୍ତ୍ରୀମାନଙ୍କର କଥା ଆଉ କଅଣ କହିବି । ୫୦ ଶ୍ଳୋକାର୍ଥ ।

ଗଳାଗଳି—ବେକ ଧରାଧରି ହୋଇ । ୧୮୨ ।

ଗୋଙାଇଲା — କଟାଇଲେ । ୧୮୩ ।

ଯାବତ୍‌ଆମିଜୀବ —ଆଜୀବନ । ୧୮୯ ।

ଶ୍ରୀମାନ୍ ମହାପ୍ରଭୁ ପ୍ରଶ୍ନ କଲେ ଯେ, କେଉଁ ବିଦ୍ୟା ବିଦ୍ୟାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଅର୍ଥାତ ଏହି ଯେ ଲୌକିକ ଅଷ୍ଟାଦଶ ବିଦ୍ୟା ଅଛି, ସେଥିମଧ୍ୟରେ କେଉଁ ଶ୍ରେଷ୍ଠ କି ? ଅଷ୍ଟାଦଶବିଦ୍ୟା ଯଥା—(ଷଡ଼ଙ୍ଗ) ୧ ଶିକ୍ଷା, ୨ କଳ୍ପ, ୩ ବ୍ୟାକରଣ, ୪ ନିରୁକ୍ତ, ୫ ଜ୍ୟୋତିଷ, ୬ଛନ୍ଦ, ୭ ଋକ୍, ୮ ସାମ, ୯ ଯଜୁ, ୧୦ ଅଥର୍ବ, ୧୧ ମୀମାଂସା, ୧୨ ନ୍ୟାୟ, ୧୩ ଧର୍ମଶାସ୍ତ୍ର, ୧୪ ପୁରାଣ, ୧୫ ଆୟୁର୍ବେଦ, ୧୬ ଧନୁର୍ବେଦ, ୧୭ ଗାନ୍ଧର୍ବ, ଓ ୧୮ ଅର୍ଥଶାସ୍ତ୍ର) ଏହା ଶୁଣି ଶ୍ରୀ ରାୟ ରାମାନନ୍ଦ କହିଲେ, ପ୍ରଭୋ ! କୃଷ୍ଣଭକ୍ତି ବ୍ୟତୀତ କୌଣସି ବିଦ୍ୟା ନୁହନ୍ତି । ଅର୍ଥାତ୍ ଏହି ଯେ ଆମ୍ଭମାନଙ୍କର ୧୮ଶ ବିଦ୍ୟା ଅଛି ତାହା ପରାବିଦ୍ୟା ବା ସାରବିଦ୍ୟା ନୁହେ । କେବଳ ଶ୍ରୀକୃଷ୍ଣଙ୍କଠାରେ ଯେ ଭକ୍ତି, ତାହାହିଁ ପରା

କୀର୍ତ୍ତିଗଣ ମଧ୍ୟେ ଜୀବେର କୋନ ବଡ଼ କୀର୍ତ୍ତି ?
କୃଷ୍ଣପ୍ରେମଭକ୍ତ ବଲି ଯାର ହୟ ଖ୍ୟାତି । ୧୯୫ ।
ସମ୍ପତ୍ତି ମଧ୍ୟେ ଜୀବେର କୋନ ସମ୍ପତ୍ତି ଗଣି ?
ରାଧାକୃଷ୍ଣପ୍ରେମ ଯାର ସେଇ ବଡ଼ ଧନୀ । ୧୯୬ ।
ଦୁଃଖ ମଧ୍ୟେ କୋନ ଦୁଃଖ ହୟ ଗୁରୁତର ?
କୃଷ୍ଣଭକ୍ତ-ବିରହ ବିନୁ ଦୁଃଖ ନାହି ଆର । ୧୯୭ ।
ମୁକ୍ତ ମଧ୍ୟେ କୋନ ଜୀବ ମୁକ୍ତ କରି ମାନି ?
କୃଷ୍ଣପ୍ରେମ ଯାର ସେଇ ମୁକ୍ତ-ଶିରୋମଣି । ୧୯୮ ।
ଗାନ ମଧ୍ୟେ କୋନ ଗାନ ଜୀବେର ନିଜଧର୍ମ ?
ରାଧାକୃଷ୍ଣେର ପ୍ରେମକେଲି ଯେ ଗୀତେର ମର୍ମ । ୧୯୯

---

ବିଦ୍ୟା, କାରଣ ଭଗବାନ୍ କେବଳ ଭକ୍ତିଗ୍ରାହ୍ୟ, ଏତଦବ୍ୟତୀତ ଅଷ୍ଟାଦଶ ବିଦ୍ୟାଦ୍ୱାରା ଭଗବାନଙ୍କୁ ଲାଭ କରାଯାଏ ନାହିଁ । ଶ୍ରୀହରି-ଭକ୍ତି-ପରାୟଣ ବ୍ୟକ୍ତିହିଁ ପ୍ରକୃତ ବିଦ୍ୱାନ୍, ହରିଭକ୍ତି-ବିହୀନ ଶାସ୍ତ୍ରବିତ୍ ପଣ୍ଡିତ ବିଦ୍ୱାନ୍ ନୁହେ । ୧୯୪ ।

ଶ୍ରୀମନ୍ ମହାପ୍ରଭୁ ପ୍ରଶ୍ନକଲେ ଯେ, ମନୁଷ୍ୟମାନେ ନାନାପ୍ରକାର କୀର୍ତ୍ତି କରନ୍ତି, ସେଥି ମଧ୍ୟରେ ଶ୍ରେଷ୍ଠ କିଏ ?

ଶ୍ରୀରାୟ ରାମାନନ୍ଦ କହିଲେ, ଯେଉଁ ବ୍ୟକ୍ତିଙ୍କୁ ଲୋକେ ଶ୍ରୀକୃଷ୍ଣଙ୍କର ପ୍ରେମିକଭକ୍ତ ବୋଲି କହନ୍ତି ତାହାଙ୍କର ପ୍ରେମଭକ୍ତିଲାଭହିଁ ଶ୍ରେଷ୍ଠ କୀର୍ତ୍ତି । ୧୯୫ ।

ମନୁଷ୍ୟର ଯେତେ ପ୍ରକାର ସମ୍ପତ୍ତି ଅଛି, ସେ ସମସ୍ତ ଅନିତ୍ୟ, କିନ୍ତୁ ନିତ୍ୟଲୀଳାବିଳାସୀ ଶ୍ରୀରାଧାକୃଷ୍ଣଙ୍କର ପ୍ରେମିକ ସେବାପରାୟଣ ଭକ୍ତ ଯେଉଁ ପ୍ରେମସମ୍ପତ୍ତି ପାଆନ୍ତି ତାହା ନିତ୍ୟ, ଅତଏବ ସେହି ପ୍ରେମସମ୍ପତ୍ତି ଯେ ଲାଭ କରିଅଛନ୍ତି, ସେ ଶ୍ରେଷ୍ଠ ଧନୀ । ୧୯୬ ।

ଜୀବର ଦେହଦୈହିକ ସମ୍ବନ୍ଧ ଅନିତ୍ୟ; ଏବଂ ତେଣୁ ତଜ୍ଜାତ ଦୁଃଖ ମଧ୍ୟ ଅନିତ୍ୟ, ଜୀବନିତ୍ୟ କୃଷ୍ଣଦାସ ଏଣୁ ଶ୍ରୀକୃଷ୍ଣସେବାହିଁ ଜୀବର ନିତ୍ୟ କର୍ତ୍ତବ୍ୟ, ଶ୍ରୀକୃଷ୍ଣଙ୍କର ଭକ୍ତଙ୍କ ସହବାସରେ ସେହି କୃଷ୍ଣଚର୍ଚ୍ଚା ଓ କୃଷ୍ଣଆରାଧନାରୂପ ପରମାନନ୍ଦ ଲାଭ ହୁଏ । ଏହି ଭକ୍ତ ବିରହରେ ଏହି ପରମାନନ୍ଦର ଅଭାବ ଘଟେ, ତେଣୁ ଭକ୍ତ ବିରହହିଁ ଜୀବ ପକ୍ଷରେ ଗୁରୁତମ ଦୁଃଖ ୧୯୭ ।

କୃଷ୍ଣ ପ୍ରେମ ଲାଭବାନ୍ ବ୍ୟକ୍ତିହିଁ ଶ୍ରେଷ୍ଠ ମୁକ୍ତ ପୁରୁଷ କାରଣ ସେହିବ୍ୟକ୍ତି ବିଷୟ ସଙ୍ଗ ତ୍ୟାଗକରି ଶ୍ରୀକୃଷ୍ଣ ଚରଣାନୁରକ୍ତ ଭକ୍ତଗଣଙ୍କର ସଙ୍ଗ କରନ୍ତି । କର୍ମ ଜ୍ଞାନ ସିଦ୍ଧି ଆଦିକୁ ତ୍ୟାଗକରି ଶ୍ରୀକୃଷ୍ଣଙ୍କ ଭକ୍ତିଯୋଗ ପ୍ରୀତିର ସହିତ ଅନୁଶୀଳନ କରନ୍ତି । ଗୁଣମୟୀ ଜଡ଼ଦେହର ପ୍ରତି ଆସ୍ଥା ନ କରି ଶ୍ରୀରାଧାକୃଷ୍ଣଙ୍କର ପ୍ରେମସେବା ଯୋଗ୍ୟ ସିଦ୍ଧ-ଦେହ ପ୍ରତି ଆସ୍ଥା କରନ୍ତି । ଏହି ପ୍ରକାର ସରସ ପ୍ରକୃତ ବ୍ୟକ୍ତିମାନେ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ପ୍ରେମିକ ଭକ୍ତମାନେହିଁ ମୁକ୍ତ । ୧୯୮ ।

ନିରୁପାଧି ଜୀବର ସ୍ୱରୂପ ଚିତ୍କଣ ବା ସଚ୍ଚିଦାନନ୍ଦଘନ ଭଗବାନ୍‌ଙ୍କର ଅଂଶ । ସଚ୍ଚିଦାନନ୍ଦଘନ ବିଗ୍ରହ ଶ୍ରୀକୃଷ୍ଣଙ୍କର ନିଜ ଆନନ୍ଦାଂଶର ପରମସାରରୂପିଣୀ ଶ୍ରୀମତୀ ରାଧାଙ୍କ ସହିତ ଯେ ଲୀଳାମୟ ପ୍ରେମକେଳି ତାହା ପରମାନନ୍ଦମୟୀ ଓ ସାଧଶିରୋମଣି, ଜୀବର ସ୍ୱରୂପଗତ ଭଗବତ୍ ଆନନ୍ଦାଂଶହିଁ ସ୍ୱଧର୍ମ, ଅତଏବ ଜୀବର ଲକ୍ଷୀକୃତ ପରାନନ୍ଦସମ୍ବନ୍ଧୀୟ ଅର୍ଥାତ୍ ଶ୍ରୀରାଧାକୃଷ୍ଣଙ୍କର ପ୍ରେମକେଳି ସମ୍ବନ୍ଧୀୟ ଗୀତହିଁ ଜୀବର ସ୍ୱଧର୍ମଜାତ ଗାନ । ୧୯୯ ।

ଶ୍ରେୟୋମଧ୍ୟେ କୋନ ଶ୍ରେୟଃ ଜୀବେର ହୟ ସାର?
କୃଷ୍ଣଭକ୍ତ ସଙ୍ଗ-ବିନା ଶ୍ରେୟଃ ନାହିଁ ଆର ।୨୦୦।
କାହାର ସ୍ମରଣ ଜୀବ କରେ ଅନୁକ୍ଷଣ ?
କୃଷ୍ଣନାମ-ଗୁଣ-ଲୀଳା ପ୍ରଧାନ ସ୍ମରଣ । ୨୦୧ ।
ଧ୍ୟେୟମଧ୍ୟେ ଜୀବେର କର୍ତ୍ତବ୍ୟ କୋନ ଧ୍ୟାନ ?
ରାଧାକୃଷ୍ଣପଦାମ୍ବୁଜ-ଧ୍ୟାନ ପ୍ରଧାନ । ୨୦୨ ।
ସର୍ବ ତ୍ୟଜି ଜୀବେର କର୍ତ୍ତବ୍ୟ କାହାଁ ବାସ ?
ବ୍ରଜଭୂମି ବୃନ୍ଦାବନ—ଯାହାଁ ଲୀଲା ରାସ ।୨୦୩।
ଶ୍ରବଣ ମଧ୍ୟେ ଜୀବେର କୋନ ଶ୍ରେଷ୍ଠ ଶ୍ରବଣ ?
ରାଧାକୃଷ୍ଣପ୍ରେମକେଳି କର୍ଣ୍ଣରସାୟନ । ୨୦୪ ।
ଉପାସ୍ୟେର ମଧ୍ୟେ କୋନ ଉପାସ୍ୟ ପ୍ରଧାନ ?
ଶ୍ରେଷ୍ଠ ଉପାସ୍ୟ—ଯୁଗଳ ରାଧାକୃଷ୍ଣ ନାମ ।୨୦୫।
ମୁକ୍ତି-ଭୁକ୍ତି ବାଞ୍ଛେ ଯେଇ କାହାଁ ଦୋହାର ଗତି ।
ସ୍ଥାବରଦେହ ଦେବଦେହ ଯୈଛେ ଅବସ୍ଥିତି ।
ଅରସଜ୍ଞ କାକ ଚୁଷେ ଜ୍ଞାନ-ନିମ୍ବଫଳେ ।
ରସଜ୍ଞ କୋକିଳ ଖାୟ ପ୍ରେମାମ୍ର-ମୁକୁଳେ ।୨୦୭।
ଅଭାଗିୟା ଜ୍ଞାନୀ ଆସ୍ୱାଦୟେ ଶୁଷ୍କଜ୍ଞାନ ।
କୃଷ୍ଣପ୍ରେମାମୃତପାନ କରେ ଭାଗ୍ୟବାନ । ୨୦୮ ।

ଯେ ମୁକ୍ତିଂ ଭକ୍ତିଂ ବାଞ୍ଛନ୍ତି ତେଷାଂ କାଂ ପ୍ରକାରା ଗତିରିତ୍ୟର୍ଥଃ । ୨୦୭ । ବି. ଚ. ।

ମାୟାହତ ଜୀବ ଦେହଦୈହିକ ସମ୍ବନ୍ଧକୁ ମଙ୍ଗଳଜନକ ମନେ କରନ୍ତି, କିନ୍ତୁ ତାହା ଅନିତ୍ୟ ହେତୁ ଓ ନିରୁପାଧି ଜୀବର ବନ୍ଧନଜନକ ହେତୁ ପ୍ରକୃତରେ ମଙ୍ଗଳଜନକ ନୁହେ, ଶ୍ରୀକୃଷ୍ଣଙ୍କର ଭକ୍ତସଙ୍ଗହିଁ ଜୀବର ଏକମାତ୍ର ମଙ୍ଗଳଜନକ କାର୍ଯ୍ୟ, କାରଣ ଭକ୍ତଙ୍କ ହୃଦୟରେ ଭଗବାନ୍ ସତତ ବିଶ୍ରାମ କରନ୍ତି । ଏହି ହେତୁ ଭକ୍ତସଙ୍ଗଦ୍ୱାରା ଶ୍ରୀଭଗବତ୍ ସଙ୍ଗ ଲାଭ ହୁଏ । ପରନ୍ତୁ ଭକ୍ତ ସଙ୍ଗରେ ଶ୍ରୀକୃଷ୍ଣଙ୍କର ନାମ, ରୂପ, ଓ ଗୁଣ ପ୍ରଭୃତି ଶ୍ରବଣ କୀର୍ତ୍ତନ ଆଦି ଅନୁକୂଳ ଅନୁଶୀଳନଦ୍ୱାରା ଜୀବ ଶ୍ରୀକୃଷ୍ଣରସ ଲାଭ କରେ ଓ କୃଷ୍ଣାନୁରକ୍ତ ହୁଏ, ଅର୍ଥାତ୍ ନିତ୍ୟପ୍ରଭୁଙ୍କର ନିତ୍ୟ ସେବାନୁରାଗୀ ହୁଏ । ୨୦୦ ।

ଜୀବର ଅନୁକ୍ଷଣ ଶ୍ରୀକୃଷ୍ଣଙ୍କର ନାମଲୀଳାଗୁଣାଦି ସ୍ମରଣ କରିବା ଅବଶ୍ୟ କର୍ତ୍ତବ୍ୟ ।୨୦୧।

ଯେଉଁ ବ୍ୟକ୍ତି ଶ୍ରୀକୃଷ୍ଣଙ୍କ ସେବା ନିମିତ୍ତ ସଂସାରାଶ୍ରମ ତ୍ୟାଗ କରନ୍ତି ତାହାଙ୍କର ଶ୍ରୀବୃନ୍ଦାବନରେ ବାସ କରି ଶ୍ରୀକୃଷ୍ଣଙ୍କର ସେବା କରିବା କର୍ତ୍ତବ୍ୟ । ୨୦୩ ।

ଶ୍ରୀ ରାଧାକୃଷ୍ଣଙ୍କର ପ୍ରେମକେଳିସମ୍ବନ୍ଧୀୟ ଗାନହିଁ ଜୀବର ସ୍ୱଧର୍ମଗତ ଗାନ । ତେଣୁ ତାହା ଜୀବର ଶ୍ରବଣ ସୁଖଦାୟକ । ୨୦୪ ।

ଯେଉଁମାନେ ମୁକ୍ତି କାମନା କରନ୍ତି ଓ ଯେଉଁମାନେ ଭକ୍ତି ( ଶ୍ରୀକୃଷ୍ଣସେବା ) ବାଞ୍ଛା କରନ୍ତି, ସେମାନଙ୍କର କି ପ୍ରକାର ଗତି ହୁଏ ଏହିପ୍ରକାର ପ୍ରଶ୍ନର ଉତ୍ତରରେ ଶ୍ରୀରାୟରାମାନନ୍ଦ କହିଲେ ଯେ,—ମୁକ୍ତିକାମିମାନଙ୍କର ମୁକ୍ତି ଅବସ୍ଥାରେ ସ୍ଥାବରଦେହିମାନଙ୍କର ଅର୍ଥାତ୍ ପାଷାଣ-ଆଦିଙ୍କ ତୁଲ୍ୟ କୌଣସି ପ୍ରକାର ଅନୁଭୂତିଶୂନ୍ୟଅବସ୍ଥା ପ୍ରାପ୍ତ ହୁଏ । ଭକ୍ତିପ୍ରାର୍ଥିମାନେ ସିଦ୍ଧ ଅବସ୍ଥାରେ ଦେବଦେହୀତୁଲ୍ୟ ଅର୍ଥାତ୍ ସର୍ବଶ୍ରେଷ୍ଠ ଭୋଗୀଦେହୀତୁଲ୍ୟ ଅବସ୍ଥା ପ୍ରାପ୍ତହୋଇ ଶ୍ରୀକୃଷ୍ଣଙ୍କର ପ୍ରେମାନନ୍ଦରସ ନାନା ପ୍ରକାରରେ ଉପଭୋଗ କରନ୍ତି ଅର୍ଥାତ୍ ମୁକ୍ତିକାମୀ ଜ୍ଞାନିମାନେ ରସ-ଅନଭିଜ୍ଞ ହେତୁ କାକତୁଲ୍ୟ ଜ୍ଞାନରୂପ ନିମ୍ବଫଳ ଚୁଷନ୍ତି । କିନ୍ତୁ ରସଜ୍ଞ ଭକ୍ତିଅଭିଳାଷୀ ବ୍ୟକ୍ତି-ମାନେ କୋକିଳତୁଲ୍ୟ କୃଷ୍ଣ ପ୍ରେମରୂପ ଆମ୍ରମୁକୁଳ ଖାଆନ୍ତି । ଏତଦ୍ଦ୍ୱାରା ଜଣାଯାଏ ଯେ, ଜ୍ଞାନିମାନେ ରସଶୂନ୍ୟ ଶୁଷ୍କଜ୍ଞାନ ଚାଖନ୍ତି । ଅତଏବ ସେମାନେ ଭାଗ୍ୟହୀନ, କିନ୍ତୁ ଭକ୍ତମାନେ ଶ୍ରୀକୃଷ୍ଣ ପ୍ରେମାମୃତ ତୃପ୍ତିର ସହିତ ପାନକରନ୍ତି । ଅତଏବ ସେମାନେ ଭାଗ୍ୟବାନ୍ । ୨୦୫।୨୦୮ ।

ଏଇମତ ଦୁଇଜନ କୃଷ୍ଣକଥାରସେ ।
ନୃତ୍ୟ-ଗୀତ-ରୋଦନେ ହଇଲ ରାତ୍ରିଶେଷେ ॥
ଦୋଁହେ ନିଜ ନିଜ କାର୍ଯ୍ୟେ ଚଲିଲା ବିହାନେ ।
ସନ୍ଧ୍ୟାକାଲେ ରାୟ ଆସି ମିଲିଲା ଆପନେ ।୨୧୦।
ଇଷ୍ଟଗୋଷ୍ଠୀ କୃଷ୍ଣକଥା କହି କଥୋକ୍ଷଣ ।
ପ୍ରଭୁପଦେ ଧରି ରାୟ କରେ ନିବେଦନ ।୨୧୧।
କୃଷ୍ଣତତ୍ତ୍ୱ ରାଧାତତ୍ତ୍ୱ ପ୍ରେମତତ୍ତ୍ୱ ସାର ।
ରସତତ୍ତ୍ୱ ଲୀଲାତତ୍ତ୍ୱ ବିବିଧପ୍ରକାର ।୨୧୨।
ଏତ ତତ୍ତ୍ୱ ମୋର ଚିତ୍ତେ କୈଲେ ପ୍ରକାଶନ ।
ବ୍ରହ୍ମାରେ ବେଦ ଯେନ ପଢ଼ାଇଲ ନାରାୟଣ ।
ଅନ୍ତର୍ଯାମି-ଈଶ୍ୱରେର ଏଇ ରୀତି ହୟେ ।
ବାହିରେ ନା କହେ ବସ୍ତୁ ପ୍ରକାଶେ ହୃଦୟେ ।

ତଥାହି ( ଭାଃ ୧।୧।୧ )—

ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍ ।
ତେନେ ବ୍ରହ୍ମ ହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ସୂରୟଃ ।
ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋ ମୃଷା ।
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି । ୫୧ ।

ଏକ ସଂଶୟ ମୋର ଆଛୟେ ହୃଦୟେ ।
କୃପା କରି କହ ମୋରେ ତାହାର ନିଶ୍ଚୟେ ।୨୧୪।

ଅର୍ଥେଷୁ—କାର୍ଯ୍ୟମାତ୍ରେଷୁ ଅନ୍ୱୟାତ୍ ଇତରତଶ୍ଚ ଅନ୍ୱୟବ୍ୟତିରେକାଭ୍ୟାଂ, ଅସ୍ୟ—ପ୍ରତ୍ୟକ୍ଷାଦିପ୍ରମାଣସିଦ୍ଧସ୍ୟ ଅନନ୍ତକୋଟିବ୍ରହ୍ମାଣ୍ଡାତ୍ମକସ୍ୟ ଜଗତଃ, ଜନ୍ମାଦି—ଜନ୍ମସ୍ଥିତିଭଙ୍ଗମ୍ ଯତଃ ନିମିତ୍ତୋପାଦାନସ୍ୱରୂପାତ୍ ପରମେଶ୍ୱରାତ୍ ଭବତି । ଅଭିଜ୍ଞଃ—ଅଭିତଃ— ସର୍ବପ୍ରକାରେଣ ସାମାନ୍ୟତଃ ବିଶେଷତଶ୍ଚ ସର୍ବଂ ଜାନାତି ଯଃ ସଃ, ସ୍ୱରାଟ୍—ସ୍ୱେନୈବ ରାଜତେଇତି ସ୍ୱତଃସିଦ୍ଧଜ୍ଞାନଃ, ଯତ—ଯସ୍ମିନ୍ ବ୍ରହ୍ମଣି ବେଦେ ସୂରୟଃ—ଜ୍ଞାନିନଃ ବ୍ରହ୍ମାଦୟଃ ଅପି ମୁହ୍ୟନ୍ତି—ମୋହଂ ପ୍ରାପ୍ନୁବନ୍ତି ତତ୍ ବ୍ରହ୍ମ ବେଦଂ, ଆଦିକବୟେ—ବ୍ରହ୍ମଣେ ହୃଦା—ମନସା, ଯଃ (ସ) ତେନେ—ପ୍ରକାଶିତବାନ୍ । ଯଥା ତେଜୋବାରିମୃଦାଂ ବିନିମୟଃ—ବ୍ୟତ୍ୟୟଃ ଅନ୍ୟସ୍ମିନ ଅନ୍ୟାବଭାସଃ, ତ୍ରିସର୍ଗଃ—ତ୍ରୟାଣାଂ ମାୟାଗୁଣାନାଂ ତମୋରଜ ସତ୍ତ୍ୱାନାଂ ସର୍ଗଃ—ଭୂତେନ୍ଦ୍ରିୟଦେବତାରୂପଃ ଯତ୍ର—ଶୁଦ୍ଧେ ଭଗବତ୍‌ସ୍ୱରୂପେ ଅମୃଷା—ସତ୍ୟଃ, ମୃଷା—ମିଥ୍ୟା ବା, ତଂ ସ୍ୱେନ ଧାମ୍ନା-ମହିମ୍ନା ସଦାନିରସ୍ତକୁହକଂ ନିରସ୍ତଂ କୁହକଂ କପଟଂ ଯସ୍ମିନ୍ ଯେନବା ତଂ ସତ୍ୟଂ—ସତ୍ୟସ୍ୱରୂପଂ—ପରଂ ପରମେଶ୍ୱରଂ ଧୀମହି ଧ୍ୟାୟେମ । ୫୧ ଶ୍ଳୋକ ।

ବିହାନେ—ପ୍ରାତଃକାଳେ । ୨୧୦ ।

ଇଷ୍ଟଗୋଷ୍ଠୀ—ଏକତ୍ରରେ ଅଭୀଷ୍ଟବସ୍ତୁର ଅନୁକୂଳ ଆଲୋଚନା । ୨୧୧ ।

ଶ୍ରୀମାନ୍ ରାମରାୟ କହିଲେ, ପ୍ରଭୋ ! ଶ୍ରୀ ରାଧାକୃଷ୍ଣରସ ଓ ପ୍ରେମତତ୍ତ୍ୱ ବିଷୟର ପୂର୍ବାକ ନିରୂପଣ କରିବାକୁ ମୁଁ ଅକ୍ଷମ ଥିଲି । କିନ୍ତୁ ଆପଣଙ୍କ ଶ୍ରୀଚରଣ ଦର୍ଶନ ପ୍ରଭାବରୁ ଏବଂ ଆପଣଙ୍କ ଶୁଣିବାର ସଂକଳ୍ପ ମାତ୍ର ମୋ ହୃଦୟରେ ଯେ ସମସ୍ତ ସିଦ୍ଧାନ୍ତ ପ୍ରକାଶ କରାଇ ଆପଣ ଶ୍ରବଣ କଲେ ଏହା ଠିକ୍ ଶ୍ରୀମନ୍ନାରାୟଣଙ୍କ ସଂକଳ୍ପ ମାତ୍ର ବ୍ରହ୍ମାଙ୍କ ହୃଦୟରେ ବେଦସ୍ଫୂର୍ତ୍ତି କରାଇବାତୁଲ୍ୟ ହେଲା । ବାସ୍ତବିକ ଅନ୍ତର୍ଯ୍ୟାମୀ ଭଗବାନ୍ ସାକ୍ଷାତରେ କିଛି ନ କହି ହୃଦୟମଧ୍ୟରେ ତାଙ୍କର ତତ୍ତ୍ୱ ପ୍ରକାଶ କରାନ୍ତି । ଏହାହିଁ ତାଙ୍କର ଐଶ୍ୱର୍ଯ୍ୟ । ୨୧୨।୨୧୩।୨୧୪ ।

ଯେ ସୃଷ୍ଟବସ୍ତୁମାନଙ୍କରେ ସତ୍‌ସ୍ୱରୂପରେ ବର୍ତ୍ତମାନ ଅଛନ୍ତି ବୋଲି ତାହାର ଅସ୍ତିତ୍ୱ ପ୍ରତୀତ ହେଉଅଛି ଏବଂ ଅବସ୍ତୁ—ଅର୍ଥାତ୍ ଆକାଶକୁସୁମାଦି ଅଳୀକପଦାର୍ଥରେ ଯାହାଙ୍କର ସମ୍ବନ୍ଧ ନାହିଁ ସେମାନଙ୍କର ଉପଲବ୍ଧି ହେଉନାହିଁ, ସୁତରାଂ ଯେ ଏହିପରି ଦୃଶ୍ୟମାନ ଜଗତର ସୃଷ୍ଟିସ୍ଥିତି ଓ

ପହିଲେ ଦେଖିଲି ତୋମା ସନ୍ନ୍ୟାସୀସ୍ୱରୂପ ।
ଏବେ ତୋମା ଦେଖି ମୁଞି ଶ୍ୟାମଗୋପରୂପ ।
ତୋମାର ସମ୍ମୁଖେ ଦେଖୋଁ କାଞ୍ଚନ-ପଞ୍ଚାଲିକା ।
ତାର ଗୌରକାନ୍ତ୍ୟେ ତୋମାର ସର୍ବ ଅଙ୍ଗ ଢାକା ।
ତାହାତେ ପ୍ରକଟ ଦେଖି ସବଂଶୀବଦନ ।
ନାନାଭାବେ ଚଞ୍ଚଳ ତାହେ କମଲନୟନ ।୨୧୮।
ଏଇମତ ତୋମା ଦେଖି ହୟ ଚମତ୍କାର ।
ଅକପଟେ କହ ପ୍ରଭୁ ! କାରଣ ଇହାର ॥
ପ୍ରଭୁ କହେ—କୃଷ୍ଣେ ତୋମାର ଗାଢ଼ପ୍ରେମ ହୟ ।
ପ୍ରେମାର ସ୍ୱଭାବ ଏଇ ଜାନିହ ନିଶ୍ଚୟ । ୨୨୦ ।
ମହାଭାଗବତ ଦେଖେ ସ୍ଥାବର-ଜଙ୍ଗମ ।
ତାହାଁ ତାହାଁ ହୟ ତାଁର ଶ୍ରୀକୃଷ୍ଣ-ସ୍ଫୁରଣ ।
ସ୍ଥାବର ଜଙ୍ଗମ ଦେଖେ, ନା ଦେଖେ ତାର ମୂର୍ତ୍ତି
ସର୍ବତ୍ର ହୟ ନିଜ-ଇଷ୍ଟଦେବସ୍ଫୂର୍ତ୍ତି । ୨୨୨ ।

ସତ୍ୟଂ ପରଂ ଧୀମହି ଶ୍ଳୋକର ଟୀକାର ଅବଶିଷ୍ଟାଂଶ ସହିତ ଯୋଡ଼ା ନାହିଁ—

ହୁଳୟ କାରଣ, ଯେ ସର୍ବଜ୍ଞ ଓ ସ୍ୱତଃସିଦ୍ଧଜ୍ଞାନ ସ୍ୱରୂପ, ଏବଂ ଯେଉଁ ବେଦରେ ଜ୍ଞାନୀମାନେ ମଧ୍ୟ ମୁଗ୍ଧ ହୁଅନ୍ତି ସେହିବେଦ ଯେ ଆଦିକବି ବ୍ରହ୍ମାଙ୍କ ହୃଦୟରେ ସଂକଳ୍ପମାତ୍ର ପ୍ରକାଶ କରିଅଛନ୍ତି ଏବଂ ତେଜ, ଜଳ ଓ ମୃତ୍ତିକାଦିର ବିକାର ସ୍ୱରୂପ କାଚ୍ୟାଦିରେ ଏକବସ୍ତୁରେ ଅନ୍ୟ ବସ୍ତୁର ଭ୍ରମ ଯେରୂପ ଅଧିଷ୍ଠାନର ସତ୍ୟତ୍ୱହେତୁ ସତ୍ୟବୋଲି ପ୍ରତୀତ ହୁଏ ତଦ୍ରୂପ ଯାହାଙ୍କର ସତ୍ୟତାରେ ସତ୍ତ୍ୱ ରଜ ଓ ତମ ଏହି ତିନିଗୁଣର ସୃଷ୍ଟି—ଭୂତ ଇନ୍ଦ୍ରିୟ ଓ ଦେବତା ବସ୍ତୁତଃ ମିଥ୍ୟା ହୋଇ ମଧ୍ୟ ସତ୍ୟରୂପରେ ପ୍ରତୀତ ହେଉଅଛନ୍ତି, ଅଥବା ତେଜରେ ଜଳଭ୍ରମାଦି ଯେରୂପ ବସ୍ତୁତଃ ମିଥ୍ୟା ତଦ୍ରୂପ ଯାହାଙ୍କ ବ୍ୟତୀତ ଗୁଣତ୍ରୟର ସୃଷ୍ଟି ସମସ୍ତ ମିଥ୍ୟା (ଯାହାଙ୍କର ପରମାର୍ଥ ସତ୍ୟତ୍ୱପ୍ରତିପାଦନ ନିମିତ୍ତ ଅଦ୍ୟାନ୍ତଯୁକ୍ତ ଅସାର ବିଶ୍ୱର ବସ୍ତୁତଃ ମିଥ୍ୟାତ୍ୱ ନ ହେଲେହେଁ ମିଥ୍ୟାତ୍ୱ ଉକ୍ତ ହୋଇଅଛି) ଏବଂ ନିଜର ତେଜ ପ୍ରଭାବରେ ଯାହାଙ୍କଠାରେ କୁହକ ଅର୍ଥାତ୍ ମାୟିକ ଉପାଧିସମ୍ବନ୍ଧ ନିରସ୍ତ ହୋଇଅଛି, ସେହି ସତ୍ୟସ୍ୱରୂପ ପରମେଶ୍ୱରଙ୍କୁ ଧ୍ୟାନକରୁଁ । ୫୧ ଶ୍ଳୋକାର୍ଥ ।

ରାୟରାମାନନ୍ଦ କହିଲେ ପ୍ରଭୋ ! ମୋ ମନରେ ଗୋଟିଏ ସଂଶୟ ଅଛି, ଆପଣ କୃପା-ପୂର୍ବକ ତାହା ଛେଦନ କରି ପ୍ରକୃତ ବିଷୟ ଯାହା ତାହା କହନ୍ତୁ । ସଂଶୟ ଏହି ଯେ, ମୁଁ ଆପଣଙ୍କୁ ପ୍ରଥମ ସାକ୍ଷାତରେ ଗୋଟିଏ ସନ୍ନ୍ୟାସାଶ୍ରମୀ ମନୁଷ୍ୟ ପରି ଦେଖିଲି । ବର୍ତ୍ତମାନ ମୁଁ ଦେଖୁଛି ଯେ, ଆପଣ ଶ୍ୟାମବର୍ଣ୍ଣ ଗୋପରୂପୀ ଶ୍ରୀକୃଷ୍ଣ, ଆପଣଙ୍କ ସମ୍ମୁଖରେ ସୁବର୍ଣ୍ଣର ପ୍ରତିମା (ଶ୍ରୀରାଧା) ରହିଅଛନ୍ତି । ତାଙ୍କର ଗୌରବର୍ଣ୍ଣ ରୂପଛଟାରେ ଆପଣଙ୍କ ଶ୍ୟାମରୂପ ଆବୃତ ହୋଇଅଛି । ଏହି ପ୍ରକାରରେ ଗୌରରୂପୀ ହୋଇ ଆପଣ ଅଧରରେ ମୁରଲୀଧାରଣ କରିଅଛନ୍ତି ଏବଂ ଆପଣଙ୍କର ନୟନ ଓ ମନ ନାନାଭାବରେ ଚଞ୍ଚଳ ହେଉଅଛି । ଏହା ଦେଖି ମୁଁ ବଡ଼ ବିସ୍ମିତ ହେଉଅଛି । ଏହାର କାରଣ କଣ ? ପ୍ରଭୁ ମୋତେ ଅମାୟାରେ କହନ୍ତୁ । ୨୧୫।୨୧୯ ।

ଶ୍ରୀମନ୍ ରାୟ ରାମାନନ୍ଦ ଶ୍ରୀମନ୍ ମହାପ୍ରଭୁଙ୍କର ଚମତ୍କାରକାରୀ ଶ୍ୟାମରୂପର ଗୌରରୂପଭୁକ୍ତ ହେବାର କାରଣ ଅମାୟାରେ କହିବା ସକାଶେ ଶ୍ରୀମନ୍ ମହାପ୍ରଭୁଙ୍କୁ ଅନୁରୋଧ କଲେ ସୁଦ୍ଧା ଶ୍ରୀମନ୍‌ମହାପ୍ରଭୁ ଶ୍ରୀମନ୍‌ରାମରାୟଙ୍କର ପରମପ୍ରେମରସ ଆସ୍ୱାଦନ କରିବାର ଅବସର ପାଇ ଆତ୍ମ-ଗୋପନଛଳରେ ଶ୍ରୀମନ୍‌ରାମରାୟଙ୍କ ପ୍ରେମଭାବ ଆସ୍ୱାଦ କରୁଅଛନ୍ତି । ଯଥା—

ଶ୍ରୀମନ୍ ମହାପ୍ରଭୁ କହିଲେ, ଯେଉଁମାନେ ପରମ ଭାଗବତ (ଶ୍ରୀକୃଷ୍ଣଙ୍କର ପ୍ରେମିକଭକ୍ତ,) ସେମାନେ ସ୍ଥାବର ଜଙ୍ଗମ ଦେଖିଲେ ସୁଦ୍ଧା ତତ୍ତତ୍ ବସ୍ତୁରେ ସେମାନଙ୍କର ଇଷ୍ଟ ସ୍ଫୂର୍ତ୍ତି ହୁଏ । ସେହିହେତୁ ସେମାନେ ସ୍ଥାବର ଜଙ୍ଗମମାନଙ୍କର ମୂର୍ତ୍ତି ନଦେଖି ତତ୍ତତ୍‌ବସ୍ତୁରେ ନିଜଇଷ୍ଟମୂର୍ତ୍ତି ଶ୍ରୀକୃଷ୍ଣଙ୍କୁ ଦର୍ଶନ କରନ୍ତି । ୨୨୦।୨୨୧।୨୨୨।

ତଥାହି ( ଭାଃ ୧୧।୨।୪୫ )—

ସର୍ବଭୂତେଷୁ ଯଃ ପଶ୍ୟେତ୍ ଭଗବଦ୍ଭାବମାତ୍ମନଃ ।
ଭୂତାନି ଭଗବତ୍ୟାତ୍ମନ୍ୟେଷ ଭଗବତୋ-
ତ୍ତମଃ । ୫୨ ।

ତଥାହି ତତ୍ରୈବ ( ୧୦।୩୫।୯ )—

ବନଲତାସ୍ତରବ ଆତ୍ମନି ବିଷ୍ଣୁଂ,
ବ୍ୟଞ୍ଜୟନ୍ତ୍ୟ ଇବ ପୁଷ୍ପଫଲାଢ୍ୟାଃ ।
ପ୍ରଣତଭାରବିଟପା ମଧୁଧାରାଃ,
ପ୍ରେମହୃଷ୍ଟତନବୋ ବବୃଷୁଃ ସ୍ମ । ୫୩ ।

ରାଧାକୃଷ୍ଣେ ତୋମାର ମହାପ୍ରେମ ହୟ ।
ଯାହାଁ ତାହାଁ ରାଧାକୃଷ୍ଣ ତୋମାରେ ସ୍ଫୁରୟ । ୨୨୩ ।
ରାୟ କହେ—ତୁମି ପ୍ରଭୁ ! ଛାଡ଼ ଭାରଭୂରି !
ମୋର ଆଗେ ନିଜ-ରୂପ ନା କରିହ ଚୁରି ।
ରାଧିକାର ଭାବକାନ୍ତି କରି ଅଙ୍ଗୀକାର ।
ନିଜରସ ଆସ୍ୱାଦିତେ କରିଯାଛ ଅବତାର ॥
ନିଜ ଗୂଢ଼କାର୍ଯ୍ୟ ତୋମାର ପ୍ରେମ-ଆସ୍ୱାଦନ ।
ଆନୁଷଙ୍ଗେ ପ୍ରେମମୟ କୈଲେ ତ୍ରିଭୁବନ ॥
ଆପନେ ଆଇଲେ ମୋରେ କରିତେ ଉଦ୍ଧାର ।
ଏବେ କପଟ କର, ତୋମାର କୋନ ବ୍ୟବହାର ?

---

ଯଃ ସର୍ବଭୂତେଷୁ ଆତ୍ମନଃ ଭଗବଦ୍ଭାବଂ ପଶ୍ୟେତ୍—ଅନୁଭବିତ, ଆତ୍ମନି ଭଗବତି ଭୂତାନି (ଚ) ଏଷ ଭାଗବତୋତ୍ତମଃ । ୫୨ଶ୍ଳୋକ ।

ପୁଷ୍ପଫଲାଢ୍ୟାଃ ପ୍ରଣତଭାରବିଟପାଃ ପ୍ରେମହୃଷ୍ଟତନବଃ ବନଲତାଃ ଆତ୍ମନି ବିଷ୍ଣୁଂ ବ୍ୟଞ୍ଜୟନ୍ତ୍ୟଇବ ମଧୁଧାରାଃ ବବୃଷୁଃ ସ୍ମ ( ବବର୍ଷୁଃ ) ତରବଃ—ତରବୋଽପି ମଧୁଧାରାଃ ବବୃଷୁଃ । ୫୩ ଶ୍ଳୋକ ।

---

ଶ୍ରୀଜନକଙ୍କ ପ୍ରତି ହରି କହୁଅଛନ୍ତି ।—

ଯେଉଁବ୍ୟକ୍ତି ସ୍ଥାବରଜଙ୍ଗମାଦି ସମସ୍ତ ପଦାର୍ଥରେ ସନ୍ନିହିତରୂପେ ଶ୍ରୀହରିଙ୍କର ଅପରିଚ୍ଛିନ୍ନ ଐଶ୍ୱର୍ଯ ଦର୍ଶନ କରନ୍ତି ଅର୍ଥାତ୍ ପଦାର୍ଥ ବିଶେଷରେ ତାରତମ୍ୟ ଦେଖନ୍ତି ନାହିଁ ଏବଂ ଶ୍ରୀହରିଙ୍କଠାରେ ସମସ୍ତ ପଦାର୍ଥ ଦେଖନ୍ତି, ସେ ପରମଭାଗବତ । ୫୨ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଗୋପୀମାନେ କହୁଅଛନ୍ତି । ଫଳପୁଷ୍ପ ପରିପୂର୍ଣ୍ଣା ନମ୍ରଶାଖା ଏବଂ ପ୍ରେମପୁଲକିତଦେହା ବନଲତା ସମସ୍ତ, ନିଜନିଜ ମଧ୍ୟରେ ବିଷ୍ଣୁ ବିରାଜକରୁଅଛନ୍ତି ଏହି କଥା ପ୍ରକାଶକରି ଅବା ଆନନ୍ଦରେ ମଧୁଧାରା ବର୍ଷଣ କରୁଅଛନ୍ତି, ଏବଂ ସେହିଲତାମାନଙ୍କର ପତି ତରୁଗଣମଧ୍ୟ ଲତାମାନଙ୍କ ତୁଲ୍ୟ ଆନନ୍ଦ ପ୍ରକାଶ କରୁଅଛନ୍ତି । ୫୩ ଶ୍ଳୋକାର୍ଥ ।

ଶ୍ରୀମନ୍ ମହାପ୍ରଭୁକହିଲେ, ଉକ୍ତପ୍ରକାରରେ ତୁମ୍ଭର ଶ୍ରୀରାଧା କୃଷ୍ଣଙ୍କ ଶ୍ରୀଚରଣରେ ପ୍ରଗାଢ଼ ପ୍ରେମହେତୁ ତୁମ୍ଭର ସର୍ବତ୍ର ରାଧାକୃଷ୍ଣ ସ୍ଫୂର୍ତ୍ତି ହେଉଅଛି । ଅର୍ଥାତ୍ ମୋତେ ଦେଖି ତୁମ୍ଭେ ରାଧାକୃଷ୍ଣ ବୋଲି ନିର୍ଣ୍ଣୟ କରୁଅଛ (ଶ୍ୟାମଗୋପ ଶ୍ରୀକୃଷ୍ଣ ଓ କାଞ୍ଚନ ପଞ୍ଚାଳିକା-ଶ୍ରୀରାଧା) । ୨୨୬ ।

ଭାରଭୂରି—ଆତ୍ମଗୋପନ । ନିଜରୂପ—ଶ୍ରୀରାଧାକୃଷ୍ଣରୂପ ।

ନାକରିହ ଚୁରି—ବଚନ ଭଙ୍ଗିଦ୍ୱାରା ମୋତେ ଭୁଲାଇଦିଅନାହିଁ । ୨୨୪ ।

ତବେ ହାସି ତାରେ ପ୍ରଭୁ ଦେଖାଇଲ ସ୍ୱରୂପ—
ରସରାଜ ମହାଭାବ ଦୁଇ ଏକରୂପ । ୧୨୮ ।
ଦେଖି ରାମାନନ୍ଦ ହେଲା ଆନନ୍ଦେ ମୂର୍ଚ୍ଛିତେ ।
ଧରିତେ ନା ପାରେ ଦେହ—ପଡ଼ିଲା ଭୂମିତେ ।
ପ୍ରଭୁ ତାରେ ହସ୍ତ ସ୍ପର୍ଶି କରାଇଲ ଚେତନ ।
ସନ୍ନ୍ୟାସୀର ବେଶ ଦେଖି ବିସ୍ମିତ ହୈଲ ମନ ॥
ଆଲିଙ୍ଗନ କରି ପ୍ରଭୁ କୈଲ ଆଶ୍ୱାସନ ।
ତୋମା ବିନା ଏଇରୂପ ନା ଦେଖେ କୋନଜନ ।
ମୋର ତତ୍ତ୍ୱଲୀଲା-ରସ ତୋମାର ଗୋଚରେ ।
ଅତଏବ ଏଇରୂପ ଦେଖାଇଲ ତୋମାରେ । ୧୩୨
ଗୌର-ଅଙ୍ଗ ନହେ ମୋର ରାଧାଙ୍ଗସ୍ପର୍ଶନ ।
ଗୋପେନ୍ଦ୍ରସୁତ ବିନା ତେହୋଁ ନା ସ୍ପର୍ଶେ ଅନ୍ୟ
ଜନ । ୧୩୩ ।
ତାଁର ଭାବେ ଭାବିତ ଆମି କରି ଆତ୍ମମନ ।
ତବେ ନିଜମାଧୁର୍ଯ୍ୟ-ରସ କରି ଆସ୍ୱାଦନ । ୧୩୪ ।
ତୋମାର ଠାଞି ଆମାର କିଛୁ ଗୁପ୍ତ ନାହିଁ କର୍ମ ।
ଲୁକାଇଲେ ପ୍ରେମବଲେ ଜାନ ସର୍ବମର୍ମ । ୧୩୫ ।
ଗୁପ୍ତେ ରାଖିହ, କାହାଁ ନା କରିହ ପ୍ରକାଶ ।
ଆମାର ବାତୁଲଚେଷ୍ଟା—ଲୋକେ ଉପହାସ ।
ଆମି ଏକ ବାତୁଲ, ତୁମି ଦ୍ୱିତୀୟ ବାତୁଲ ।
ଅତଏବ ତୋମାୟ ଆମାୟ ହଇ ସମତୁଲ । ୧୩୬ ।
ଏଇରୂପ ଦଶରାତ୍ରି ରାମାନନ୍ଦ ସଙ୍ଗେ ।
ସୁଖେ ଗୋଙାଇଲା ପ୍ରଭୁ କୃଷ୍ଣକଥା-ରଙ୍ଗେ । ୧୩୮
ନିଗୂଢ଼ ବ୍ରଜେର ରସ ଲୀଲାର ବିଚାର ।
ଅନେକ କହିଲ-ତାର ନା ପାଇଲ ପାର । ୧୩୯ ।
ତାମା କାଁସା ରୂପା ସୋନା ରତ୍ନ-ଚିନ୍ତାମଣି ।
କେହୋ ଯେନ ପୋଁତା କାହାଁ ପାୟ ଏକଖାନି ॥
କ୍ରମେ ଉଠାଇତେ ଯେନ ଉତ୍ତମବସ୍ତୁ ପାୟ ।
ଐଛେ ପ୍ରଶ୍ନୋତ୍ତର କୈଲ ପ୍ରଭୁ ରାମରାୟ । ୧୪୦ ।
ଆରଦିନ ରାୟ-ପାଶେ ବିଦାୟ ମାଗିଲା ।
ବିଦାୟେର କାଲେ ତାରେ ଏଇ ଆଜ୍ଞା ଦିଲା— ।
ବିଷୟ ଛାଡ଼ିୟା ତୁମି ଯାହ ନୀଳାଚଲେ ।
ଆମି ତୀର୍ଥ କରି ତାହାଁ ଆସିବ ଅଳ୍ପ କାଲେ । ୧୪୧ ।
ଦୁଇଜନେ ନୀଳାଚଲେ ରହିବ ଏକସଙ୍ଗେ ।
ସୁଖେ ଗୋଙାଇବ କାଲ, କୃଷ୍ଣକଥାରଙ୍ଗେ ॥

---

ଶ୍ରୀରାୟରାମାନନ୍ଦଙ୍କ ପ୍ରାର୍ଥନାସତ୍ତ୍ୱେ ଶ୍ରୀମନ୍ ମହାପ୍ରଭୁ ଆତ୍ମଗୋପନର ଚେଷ୍ଟା ପ୍ରକାଶ କରିବାରୁ ଶ୍ରୀମନ୍ ରାୟ ରାମାନନ୍ଦ ମହାପ୍ରଭୁଙ୍କୁ ସପ୍ରେମ ଭର୍ତ୍ସନା ପୂର୍ବକ ଅବତାରର କାରଣ ପ୍ରକାଶ କରି କହିବାରୁ ଶ୍ରୀମନ୍ ମହାପ୍ରଭୁ ଶ୍ରୀମନ୍ ରାମାନନ୍ଦଙ୍କ ନିକଟ ପୁନରାୟ ଚେଷ୍ଟା କରିବା ନିଷ୍ପ୍ରୟୋଜନ ଭାବି ଏକାଧାରରେ ରସରାଜମହାଭାବର ଯୁଗପତ୍ ଅଧିଷ୍ଠାନରୂପ କୌଣସିକାଳରେ ଅନନୁଭୂତ ଅପୂର୍ବସ୍ୱରୂପ ଦର୍ଶନ କରାଇଲେ, ଯାହା ଦର୍ଶନକରି ରାୟରାମାନନ୍ଦ ପ୍ରେମରେ ମୂର୍ଚ୍ଛିତ ହୋଇ ପଡ଼ିଲେ । ୧୨୮।୧୨୯।

ଏଇରୂପ—ଏକାଧାରେ ରସରାଜ ମହାଭାବରୂପ । ୧୩୧ ।

ଶ୍ରୀମନ୍ ମହାପ୍ରଭୁ କହିଲେ, ଏହି ଯେ ଗୌରରୂପ ମୋର ଦେଖୁଅଛ ତାହା ମୋର ସ୍ୱାଭାବିକ ରୂପନୁହେ । ମୁଁ ଗୋପେନ୍ଦ୍ର ସୁତ ଶ୍ୟାମରୂପୀ ଶ୍ରୀକୃଷ୍ଣ, ମୋର ଏହି ଗୌରରୂପ ଶ୍ରୀରାଧାଙ୍କ ଅଙ୍ଗ ସ୍ପର୍ଶରୁ ହୋଇଅଛି । ଯେହେତୁ ସେ ଗୋପେନ୍ଦ୍ରସୁତ ବ୍ୟତୀତ ଅନ୍ୟକାହାରିକୁ ସ୍ପର୍ଶ କରନ୍ତି ନାହିଁ, ଅର୍ଥାତ୍ ମୁଁ ଶ୍ରୀରାଧାଙ୍କ ଅଙ୍ଗକାନ୍ତିରେ ଆବୃତ ହୋଇ ଗୌରବର୍ଣ୍ଣ ହୋଇଅଛି । ୧୩୩ ।

ସମତୁଲ—ସମତା ବା ଏକାତ୍ମତା । ୧୩୬ ।

ପାର—ସୀମା । ୧୩୯ ।

ଏତ ବଲି ରାମାନନ୍ଦେ କରି ଆଲିଙ୍ଗନ ।
ତାରେ ଘରେ ପଠାଇୟା କରିଲ ଶୟନ ।୧୪୫।
ପ୍ରାତଃକାଲେ ଉଠି ପ୍ରଭୁ ଦେଖି ହନୂମାନ୍ ।
ତାରେ ନମସ୍କରି ପ୍ରଭୁ କରିଲା ପ୍ରୟାଣ ।୧୪୬।
ବିଦ୍ୟାପୁରେ ନାନାମତ ଲୋକ ବୈସେ ଯତ ।
ପ୍ରଭୁ ଦର୍ଶନେ ବୈଷ୍ଣବ ହୈଲ ଛାଡ଼ି ନିଜମତ ।
ରାମାନନ୍ଦ ହୈଲା ପ୍ରଭୁର ବିରହେ ବିହ୍ୱଲ ।
ପ୍ରଭୁର ଧ୍ୟାନେ ରହେ ବିଷୟ ଛାଡ଼ିୟା ସକଲ ।୧୪୮
ସଂକ୍ଷେପେ କହିଲ ରାମାନନ୍ଦେର ମିଲନ ।
ବିସ୍ତାରି ବର୍ଣ୍ଣିତେ ନାରେ ସହସ୍ରବଦନ ।୧୪୯।
ସହଜେ ଚୈତନ୍ୟଚରିତ ଘନ-ଦୁଗ୍ଧପୂର ।
ରାମାନନ୍ଦ-ଚରିତ ତାହେ ଖଣ୍ଡ ପ୍ରଚୁର ।୧୫୦।
ରାଧାକୃଷ୍ଣଲୀଲା ତାହେ କର୍ପୂର ମିଲନ ।
ଭାଗ୍ୟବାନ୍ ଯେଇ, ସେଇ କରେ ଆସ୍ୱାଦନ ।
ଯେ ଇହା ଏକବାର ପିୟେ କର୍ଣ୍ଣଦ୍ୱାରେ ।
ତାର କର୍ଣ୍ଣ ଲୋଭେ ଇହା ଛାଡ଼ିତେ ନା ପାରେ ।
ସର୍ବତତ୍ତ୍ୱଜ୍ଞାନ ହୟ ଇହାର ଶ୍ରବଣେ ।
ପ୍ରେମଭକ୍ତି ହୟ ରାଧାକୃଷ୍ଣେର ଚରଣେ ।୧୫୧।
ଚୈତନ୍ୟେର ଗୂଢ଼ତତ୍ତ୍ୱ ଜାନି ଇହା ହୈତେ ।
ବିଶ୍ୱାସ କରି ଶୁନ, ତର୍କ ନା କରିହ ଚିତ୍ତେ ।
ଅଲୌକିକ ଲୀଲା ଏଇ ପରମନିଗୂଢ଼ ।
ବିଶ୍ୱାସେ ପାଇୟେ ତର୍କେ ହୟ ବହୁଦୂର ।
ଶ୍ରୀଚୈତନ୍ୟ-ନିତ୍ୟାନନ୍ଦ-ଅଦ୍ୱୈତ-ଚରଣ ।
ଯାହାର ସର୍ବସ୍ୱ—ତାରେ ମିଲେ ଏଇ ଧନ ।୧୫୨
ରାମାନନ୍ଦରାୟେ ମୋର କୋଟି ନମସ୍କାର ।
ଯାଁର ମୁଖେ କୈଲ ପ୍ରଭୁ ରସେର ବିସ୍ତାର ।୧୫୩
ଦାମୋଦର ସ୍ୱରୂପେର କଡ଼ଚା ଅନୁସାରେ ।
ରାମାନନ୍ଦମିଲନଲୀଲା କରିଲ ପ୍ରବନ୍ଧେ ।୧୫୪।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣ ଦାସ ।୧୫୫।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ରାମାନନ୍ଦରାୟସଙ୍ଗୋତ୍ସବୋ ନାମ
ଅଷ୍ଟମ ପରିଚ୍ଛେଦଃ ।



ହନୂମାନ—ବିଦ୍ୟାନଗରର ପ୍ରସିଦ୍ଧ ଦେବତା । ୧୪୬ ।

ଖଣ୍ଡ—ନବାତ । ୧୫୦ ।

ଏହି ଯେ ଶ୍ରୀଚୈତନ୍ୟଲୀଲା ତାହା ପରମନିଗୂଢ଼ ଅପ୍ରାକୃତ ଲୀଳା । କୃପାମୟ ମହାପ୍ରଭୁ ପରମକୃପାପୂର୍ବକ ତାହା ଏହି ଲୋକରେ ଲୌକିକବତ୍ ପ୍ରକଟ କରିଅଛନ୍ତି । ଏହିଲୀଳାର ରସାସ୍ୱାଦନପାଇବା ସମ୍ପୂର୍ଣ୍ଣ ବିଶ୍ୱାସ ଉପରେ ନିର୍ଭର କରେ, ସେଥିରେ ତର୍କ ଯୋଜନା କଲେ ଏ ଲୀଳାର ଆଭାସ ପର୍ଯ୍ୟନ୍ତ ସ୍ପର୍ଶ ହେବନାହିଁ । ୧୫୪ ।

ମଧ୍ୟଲୀଳା ଅଷ୍ଟମ ପରିଚ୍ଛେଦ ସମାପ୍ତ ।



# ନବମ ପରିଚ୍ଛେଦ ।



ନାନାମତଗ୍ରାହଗ୍ରସ୍ତାନ୍ ଦାକ୍ଷିଣାତ୍ୟଜନଦ୍ୱିପାନ୍ ।
କୃପାରିଣା ବିମୁଚ୍ୟୈତାନ୍ ଗୌରଶ୍ଚକ୍ରେ ସ ବୈଷ୍ଣବାନ ।୧।

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଦକ୍ଷିଣଗମନ ପ୍ରଭୁର ଅତି ବିଲକ୍ଷଣ ।
ସହସ୍ର ସହସ୍ର ତୀର୍ଥ କୈଲ ଦରଶନ । ୨ ।
ସେଇ ସବ ତୀର୍ଥସ୍ପର୍ଶି ମହାତୀର୍ଥ କୈଲ ।
ସେଇଛଲେ ସେଇ ଦେଶେର ଲୋକ ନିସ୍ତାରିଲ ।
ତୀର୍ଥଯାତ୍ରାୟ ତୀର୍ଥକ୍ରମ କହିତେ ନା ପାରି ।
ଦକ୍ଷିଣ-ବାମେ ତୀର୍ଥଗମନ ହୟ ଫେରଫେର ।୪।
ଅତଏବ ନାମମାତ୍ର କରିୟେ ଗଣନ ।
କହିତେ ନା ପାରି ତାର ଯଥା ଅନୁକ୍ରମ । ୫ ।
ପୂର୍ବବତ୍ ପଥେ ଯାଇତେ ଯେ ପାୟ ଦର୍ଶନ ।
ଯେ ଗ୍ରାମେ ଯାୟ ସେଇ ଗ୍ରାମେର ଯତଜନ ।୬।
ସଭେଇ ବୈଷ୍ଣବ ହୟ—କହେ 'କୃଷ୍ଣହରି' ।
ଅନ୍ୟ ଗ୍ରାମ ନିସ୍ତାରୟେ ସେଇ ବୈଷ୍ଣବ କରି ।୭।

# ନବମ ପରିଚ୍ଛେଦ ।



ସଃ-ଗୌରଃ ନାନାମତଗ୍ରାହଗ୍ରସ୍ତାନ୍ (ନାନା—ବହୁବିଧାନି ମତାନ୍ୟେବ ଗ୍ରାହାଃ-ନକ୍ରାଃ ତୈଃ ଗ୍ରସ୍ତାନ୍—ଗିଲିତାନ୍ ) ଦାକ୍ଷିଣାତ୍ୟଜନଦ୍ୱିପାନ୍—( ଦାକ୍ଷିଣାତ୍ୟଜନାଃ ଏବ ଦ୍ୱିପାଃଗଜାଃ ତାନ୍ ) କୃପାରିଣା—କୃପାଚକ୍ରେଣ (ଗ୍ରାହେଭ୍ୟଃ) ବିମୁଚ୍ୟ ଏତାନ୍ ବୈଷ୍ଣବାନ୍ ଚକ୍ରେ । ୧ମ ଶ୍ଲୋକ ।

---

ସେହି ଚୈତନ୍ୟ ପ୍ରଭୁ ନାନାମତରୂପକୁମ୍ଭୀରଗିଳିତ ଦକ୍ଷିଣଦେଶବାସୀରୂପ ହସ୍ତୀମାନଙ୍କୁ କୃପାରୂପ ଚକ୍ରଦ୍ୱାରା ବିମୁକ୍ତକରି ସେମାନଙ୍କୁ ବୈଷ୍ଣବ କରିଥିଲେ । ଅର୍ଥାତ୍ ଶ୍ରୀମନ୍‌ମହାପ୍ରଭୁ ଦକ୍ଷିଣଦେଶବାସିମାନଙ୍କର ନାନାମତ ଖଣ୍ଡନକରି ସେମାନଙ୍କୁ ବୈଷ୍ଣବ କରିଥିଲେ । ୧ମ ଶ୍ଲୋକାର୍ଥ।

ବିଲକ୍ଷଣ—ଶ୍ରୀମନ୍ ମହାପ୍ରଭୁଙ୍କର ଦକ୍ଷିଣ ଭ୍ରମଣର ବୈଶିଷ୍ଟ୍ୟ ଏହି ଯେ ସେ ସ୍ୱୟଂ ଭଗବାନ୍ ହୋଇସୁଦ୍ଧା ପଦବ୍ରଜରେ ସହସ୍ର ସହସ୍ର ତୀର୍ଥ ଦର୍ଶନକରି ଶ୍ରୀଚରଣ ସ୍ପର୍ଶଦ୍ୱାରା ସେମାନଙ୍କୁ ମହାତୀର୍ଥ କଲେ, ଏବଂ ସେହି ଦେଶବାସୀ ପତିତଜୀବମାନଙ୍କୁ ଉଦ୍ଧାର କଲେ । ୨ୟ ପୟାର ।

ତୀର୍ଥକ୍ରମ—ଧାରାବାହିକରୂପେ ଏକରପରଅନ୍ୟ । ୪ ।

ଗ୍ରନ୍ଥକାର ଶ୍ରୀମନ୍ ମହାପ୍ରଭୁଙ୍କର ଦର୍ଶନପ୍ରଭାବ ଉପରୋକ୍ତ ସପ୍ତମ ପରିଚ୍ଛେଦରେ ଯାହା କହିଅଛନ୍ତି ସେ ବିଷୟ ପୁନର୍ବାର କହୁଅଛନ୍ତି । ଯଥା; ଶ୍ରୀମନ୍‌ମହାପ୍ରଭୁ ବାଟରେ ଯାଉଁ ଯାଉଁ ଯେଉଁ ପଥିକ ତାଙ୍କୁ ଦର୍ଶନ କରେ ଏବଂ ସେ କୌଣସି ଗ୍ରାମକୁ ଗଲେ ବା କୌଣସି ଗ୍ରାମରେ ରହିଲେ ଯେଉଁମାନେ ତାଙ୍କର ଦର୍ଶନ ପାଆନ୍ତି, ସେମାନେ ସମସ୍ତେ ବୈଷ୍ଣବ ହୋଇ ଶ୍ରୀହରିନାମ ଗ୍ରହଣ କରନ୍ତି ଏବଂ ଏହି ବ୍ୟକ୍ତିମାନେ ଅନ୍ୟ ଗ୍ରାମକୁ ଯାଇ ସେ ଗ୍ରାମବାସୀମାନଙ୍କୁ ବୈଷ୍ଣବ କରି ଉଦ୍ଧାର କରନ୍ତି । ୬।୭ ।

ଦକ୍ଷିଣଦେଶେର ଲୋକ ଅନେକ ପ୍ରକାର ।
କେହୋ ଜ୍ଞାନୀ, କେହୋ କର୍ମୀ,ପାଷଣ୍ଡୀ ଅପାର ॥
ସେଇ ସବ ଲୋକ ପ୍ରଭୁର ଦର୍ଶନ ପ୍ରଭାବେ ।
ନିଜ ନିଜ ମତ ଛାଡ଼ି ହଇଲ ବୈଷ୍ଣବେ ॥
ବୈଷ୍ଣବେର ମଧ୍ୟେ ରାମ-ଉପାସକ ସବ ।
କେହୋ ତତ୍ତ୍ୱବାଦୀ, କେହୋ ହୟ ଶ୍ରୀବୈଷ୍ଣବ ॥
ସେଇ ସବ ବୈଷ୍ଣବ ମହାପ୍ରଭୁର ଦରଶନେ ।
କୃଷ୍ଣ-ଉପାସକ ହୈଲ—ଲୟ କୃଷ୍ଣନାମେ ।୧୧।

ତଥାହି—

ରାମ ରାଘବ ରାମ ରାଘବ ରାମ ରାଘବ ପାହିମାମ୍ ।
କୃଷ୍ଣ କେଶବ କୃଷ୍ଣ କେଶବ କୃଷ୍ଣ କେଶବ
ରକ୍ଷମାମ୍ । ୨ ।

ଏଇ ଶ୍ଳୋକ ପଥେ ପଢ଼ି କରିଲ ପ୍ରୟାଣ ।
ଗୌତମୀ ଗଙ୍ଗାୟ ଯାଇ କୈଲ ତାହାଁ ସ୍ନାନ ।୧୨।
ମଲ୍ଲିକାର୍ଜ୍ଜୁନତୀର୍ଥେ ଯାଇ ମହେଶ ଦେଖିଲ ।
ତାହାଁ ସବ ଲୋକେ କୃଷ୍ଣନାମ ଲୱୟାଇଲ ।୧୩।
ଦାସରାମମହାଦେବେ କରିଲ ଦର୍ଶନ ।
ଅହୋବଲ-ନୃସିଂହେରେ କରିଲା ଗମନ । ୧୪ ।
ନୃସିଂହ ଦେଖିୟା ତାଁରେ କୈଲ ନତି-ସ୍ତୁତି ।
ସିଦ୍ଧିବଟ ଗେଲା – ଯାହାଁ ମୂର୍ତ୍ତି ସୀତାପତି ।୧୫।
ରଘୁନାଥ ଦେଖି କୈଲ ପ୍ରଣତି ସ୍ତବନ ।
ତାହାଁ ଏକ ବିପ୍ର ତାଁରେ କୈଲ ନିମନ୍ତ୍ରଣ ।୧୬।
ସେଇ ବିପ୍ର ରାମନାମ ନିରନ୍ତର ଲୟ ।
ରାମନାମ ବିନା ଅନ୍ୟ ବାଣୀ ନା କହୟ ।୧୭।
ସେଇଦିନ ତାର ଘରେ ରହିଲ ଭିକ୍ଷା କରି ।
ତାରେ କୃପା କରି ଆଗେ ଚଲିଲା ଗୌରହରି ॥
ସ୍କନ୍ଦକ୍ଷେତ୍ରତୀର୍ଥେ କୈଲ ସ୍କନ୍ଦ-ଦରଶନ ।
ତ୍ରିମଠ ଆଇଲା ତାହାଁ ଦେଖି ତ୍ରିବିକ୍ରମ । ୧୯ ।
ପୁନ ସିଦ୍ଧିବଟ ଆଇଲା ସେଇ ବିପ୍ରଘରେ ।
ସେଇ ବିପ୍ର କୃଷ୍ଣନାମ ଲୟ ନିରନ୍ତରେ । ୨୦ ।
ଭିକ୍ଷା କରି ମହାପ୍ରଭୁ ତାରେ ପ୍ରଶ୍ନ କୈଲ—
କହ ବିପ୍ର ! ଏଇ ତୋମାର କୋନ ଦଶା ହୈଲ ?
ପୂର୍ବ୍ବେ ତୁମି ନିରନ୍ତର କହିତେ ରାମନାମ ।
ଏବେ କେନ ନିରନ୍ତର କହ କୃଷ୍ଣ ନାମ ? ॥
ବିପ୍ର କହେ—ଏଇ ତୋମାର ଦର୍ଶନପ୍ରଭାବ ।
ତୋମା ଦେଖି ଗେଲ ମୋର ଆଜନ୍ମ-ସ୍ୱଭାବ ॥
ବାଲ୍ୟାବଧି ରାମ ନାମ ଗ୍ରହଣ ଆମାର ।
ତୋମା ଦେଖି କୃଷ୍ଣନାମ ଆଇଲ ଏକବାର ॥
ସେଇ ହୈତେ କୃଷ୍ଣନାମ ଜିହ୍ୱାତେ ବସିଲ ।
କୃଷ୍ଣନାମ ସ୍ଫୁରେ – ରାମନାମ ଦୂରେ ଗେଲ ॥
ବାଲ୍ୟକାଲ ହୈତେ ମୋର ସ୍ୱଭାବ ଏକ ହୟ ।
ନାମେର ମହିମା-ଶାସ୍ତ୍ର କରିୟେ ସଞ୍ଚୟ । ୨୬ ।

---

ଦକ୍ଷିଣଦେଶବାସିମାନଙ୍କ ମଧ୍ୟରେ ଅଧିକାଂଶ ନାସ୍ତିକ ଓ ବୌଦ୍ଧମତାବଲମ୍ବୀ କେତେକ ଜ୍ଞାନୀ ଓ କେତେକ କର୍ମ୍ମୀ; ବୈଷ୍ଣବ ସଂଖ୍ୟା ଅତି ଅଳ୍ପ ଥିଲା । ପୁଣି ସେମାନଙ୍କ ମଧ୍ୟରେ ଅଧିକାଂଶ ଶ୍ରୀରାମଉପାସକ, କେତେକ ତତ୍ତ୍ୱବାଦୀ ଓ କେତେକ ଶ୍ରୀବୈଷ୍ଣବ ( ଶ୍ରୀଲକ୍ଷ୍ମୀନାରାୟଣ-ଉପାସକ) ଏମାନେ ସମସ୍ତେ ମହାପ୍ରଭୁଙ୍କ ଦର୍ଶନ ପ୍ରଭାବରୁ ନିଜ ମତ ଛାଡି ଶ୍ରୀକୃଷ୍ଣଉପାସକ ହେଲେ । ୮।୯।୧୦ ।

ପାହିମାଂ—ମୋତେ ଉଦ୍ଧାର କର ।

ରକ୍ଷମାଂ—ମୋତେ ରକ୍ଷାକର । ୨ୟ ଶ୍ଳୋକାର୍ଥ ।

ଗୌତମୀଗଙ୍ଗା—ଗୋଦାବରୀର ଧାରବିଶେଷ ।

ତଥାହି ପଦ୍ମପୁରାଣେ, ଶ୍ରୀରାମଚନ୍ଦ୍ରସ୍ୟ
ଶତନାମସ୍ତୋତ୍ରେ ।

ରମନ୍ତେ ଯୋଗିନୋଽନନ୍ତେ ସତ୍ୟାନନ୍ଦେ
ଚିଦାତ୍ମନି
ଇତି ରାମପଦେନାସୌ ପରଂବ୍ରହ୍ମାଭିଧୀୟତେ ।୩।

ତଥାହି ମହାଭାରତେ ଉଦ୍ୟୋଗପର୍ବଣି (୧୭।୫)।

କୃଷିର୍ଭୂବାଚକଃ ଶବ୍ଦୋ ଣଶ୍ଚ ନିର୍ବୃତିବାଚକଃ ।
ତୟୋରୈକ୍ୟଂ ପରଂବ୍ରହ୍ମ କୃଷ୍ଣ ଇତ୍ୟଭି-
ଧୀୟତେ । ୪ ।

ପରଂବ୍ରହ୍ମ ଦୁଇ ନାମ ସମାନ ହଇଲ ।
ପୁନ ଆର ଶାସ୍ତ୍ରେ କିଛୁ ବିଶେଷ ପାଇଲ । ୨୭ ।

ତଥାହି ପଦ୍ମପୁରାଣେ, ଉତ୍ତରଖଣ୍ଡେ
ବୃହଦ୍ବିଷ୍ଣୁସହସ୍ରନାମସ୍ତୋତ୍ରେ (୭୨।୩୩୫)—

ରାମ-ରାମେତି ରାମେତି ରମେ ରାମେ ମନୋରମେ ।
ସହସ୍ରନାମଭିସ୍ତୁଲ୍ୟଂ ରାମନାମ ବରାନନେ । ୫ ।

---

ଅନନ୍ତେ — ଅନନ୍ତମହିମ୍ନି, ସତ୍ୟାନନ୍ଦେ — ଶୁଦ୍ଧସତ୍ୟାନନ୍ଦସ୍ୱରୂପେ, ଚିଦାତ୍ମନି ଅନ୍ତର୍ଯାମିନି ଭଗବତି, ଯୋଗିନଃ ସର୍ବେ ମୁନୟଃ ରମନ୍ତେ ଇତି ରାମପଦେନ ଅସୌ ଦଶରଥ-ତନୟଃ ଯଃ ପରଂବ୍ରହ୍ମ ଅଭିଧୀୟତେ—କଥ୍ୟତେ । ୩ୟ ଶ୍ଳୋକ ।

କୃଷିଧାତୁ ଭୂବାଚକଃ—ସତ୍ତାବାଚକଃ ଣଶ୍ଚ ନିର୍ବୃତିବାଚକଃ ଆନନ୍ଦବାଚକଃ ତୟୋଃ କୃଷେଣ ଶବ୍ଦାର୍ଥୟୋଃ ଐକ୍ୟଂ ପରଂବ୍ରହ୍ମ କୃଷ୍ଣ ଇତ୍ୟଭିଧୀୟତେ କଥ୍ୟତେ । ୪ର୍ଥ ଶ୍ଳୋକ ।

(ହେ) ବରାନନେ ! ରାମ ରାମେତି ରାମେତି (ସର୍ବାର୍ଥ୍ୟ ଇତି ଶେଷଃ ଅହଂ) ମନୋରମେ ରାମେ (ଦଶରଥୌ) ରମେ ପରମବ୍ରହ୍ମାନନ୍ଦାନୁଭବଂ କରୋମି, କୁତ ଏବମିତ୍ୟତୋଦାହ ଯତଃ-ରାମନାମ ସହସ୍ରନାମଭିଃ (ଶ୍ରୀବିଷ୍ଣୁସହସ୍ରନାମସ୍ତୋତ୍ରୈଃ) ତୁଲ୍ୟଂ (ସମପୁଣ୍ୟପ୍ରଦଂ) ୫ମ ଶ୍ଳୋକ ।

---

ଯୋଗୀମାନେ ଅନନ୍ତମହିମ ଓ ସତ୍ୟାନନ୍ଦସ୍ୱରୂପ ଯେଉଁ ପରମାତ୍ମାଙ୍କଠାରେ ରମଣ କରନ୍ତି, ସେହି ପରମାତ୍ମା ରାମ ଏହି ଦଶରଥତନୟ । ଅତଏବ ରାମଶବ୍ଦଦ୍ୱାରା ପରଂବ୍ରହ୍ମକୁ ବୁଝାଏ । ୩ୟ ଶ୍ଳୋକାର୍ଥ ।

କୃଷିଧାତୁ ଭୂବାଚକ ଅର୍ଥାତ୍ ସତ୍ତାବାଚକ, ଣପ୍ରତ୍ୟୟ ନିର୍ବୃତିବାଚକ ଅର୍ଥାତ୍ ଆନନ୍ଦ-ବାଚକ; ଏ ଉଭୟଙ୍କର ଯୋଗ ଅର୍ଥାତ୍ (କୃଷ + ଣ = କୃଷ୍ଣ) ଏହି ଶବ୍ଦ ପରଂବ୍ରହ୍ମଙ୍କୁ ବୁଝାଏ । ୪ର୍ଥ ଶ୍ଳୋକାର୍ଥ ।

ବ୍ରାହ୍ମଣ କହିଲେ ଯେ; ରାମ ଓ କୃଷ୍ଣ ଏହି ଦୁଇ ଶବ୍ଦର ଅର୍ଥଦ୍ୱାରା ଏକ ପରମ-ବ୍ରହ୍ମହିଁ ବୁଝାଗଲା । କିନ୍ତୁ ଶାସ୍ତ୍ରରେ ଆଉ କିଛି ବିଶେଷତ୍ୱ ଦେଖାଗଲା । ୨୭ ।

ଶ୍ରୀ ଶିବ ଦୁର୍ଗାଙ୍କୁ କହୁଅଛନ୍ତି; ହେ ବରାନନେ ଦୁର୍ଗେ ! ଏକ ରାମନାମ ବିଷ୍ଣୁସହସ୍ରନାମର ତୁଲ୍ୟ ଫଳପ୍ରଦ । ଏଣୁ ମୁଁ ରାମ, ରାମ, ରାମ କୀର୍ତ୍ତନଦ୍ୱାରା ମନୋରମ, ରାମଙ୍କ ସହିତ ରମଣ କରେଁ ଅର୍ଥାତ୍ ପରମାନନ୍ଦ ଅନୁଭବ କରେଁ । ୫ମ ଶ୍ଳୋକାର୍ଥ ।

ତଥାହି ହରିଭକ୍ତିବିଳାସେ ( ୧।।୩୫ )
ଲଘୁଭାଗବତାମୃତେ ପୂର୍ବଖଣ୍ଡେ (୩।୩୫୪)
ବ୍ରହ୍ମାଣ୍ଡପୁରାଣବଚନମ୍ ! —
ସହସ୍ରନାମ୍ନାଂ ପୁଣ୍ୟାନାଂ ତ୍ରିରାବୃତ୍ତ୍ୟା ତୁ ଯତ୍ଫଲମ୍ ।
ଏକାବୃତ୍ତ୍ୟା ତୁ କୃଷ୍ଣସ୍ୟ ନାମୈକଂ ତତ୍-
ପ୍ରଯଚ୍ଛତି । ୬ ।

ଏଇବାକ୍ୟେ କୃଷ୍ଣନାମେର ମହିମା ଅପାର ।
ତଥାପି ଲଇତେ ନାର—ଶୁନ ହେତୁ ତାର ।୨୮।
ଇଷ୍ଟଦେବ ରାମ, ତାଁର ନାମେ ସୁଖ ପାଇ ।
ସୁଖ ପାଞା ସେଇ ନାମ ରାତ୍ରି-ଦିନ ଗାଇ । ୨୯ ।
ତୋମାର ଦର୍ଶନେ ଯବେ କୃଷ୍ଣନାମ ଆଇଲ ।
ତାହାର ମହିମା ଏଇ ମନେତେ ଲାଗିଲ । ୩୦ ।
'ସେଇ କୃଷ୍ଣ ତୁମି ସାକ୍ଷାତ୍' ଇହା ନିର୍ଦ୍ଧାରିଲ ।
ଏତ କହି ବିପ୍ର ପ୍ରଭୁର ଚରଣେ ପଡ଼ିଲ । ୩୧ ।
ତାଁରେ କୃପା କରି ପ୍ରଭୁ ଚଲିଲା ଆର ଦିନେ ।
ବୃଦ୍ଧ କାଶୀ ଆସି କୈଲ ଶିବ-ଦରଶନେ ।୩୨।
ତାହାଁ ହୈତେ ଚଲି ଆଗେ ଗେଲା ଏକ ଗ୍ରାମ ।
ବ୍ରାହ୍ମଣସମାଜେ ତାହାଁ କରିଲ ବିଶ୍ରାମ । ୩୩ ।
ପ୍ରଭୁର ପ୍ରଭାବେ ଲୋକ ଆଇଲ ଦର୍ଶନେ ।
ଲକ୍ଷାର୍ବୁଦ ଲୋକ ଆଇସେ—ନାହିକ ଗଣନେ ।
ଗୋସାଞିର ସୌନ୍ଦର୍ଯ୍ୟ ଦେଖି ତା'ତେ ପ୍ରେମାବେଶ
ସଭେ କୃଷ୍ଣ କହେ, ବୈଷ୍ଣବ ହୈଲ ସବ ଦେଶ ।
ତାର୍କିକ-ମୀମାଂସକ ମାୟାବାଦିଗଣ ।
ସାଙ୍ଖ୍ୟ ପାତଞ୍ଜଲ ସ୍ମୃତି ପୁରାଣ ଆଗମ । ୩୬ ।

---

ପୁଣ୍ୟାନାଂ ( ପବିତ୍ରାଣାଂ ) ସହସ୍ରନାମ୍ନାଂ ତ୍ରିରାବୃତ୍ତ୍ୟା ( ତ୍ରିବାରପାଠେନ ) ଯତ୍ଫଲଂ ଭବତି (ଭବତି) କୃଷ୍ଣସ୍ୟନାମୈକଂ ଏକାବୃତ୍ତ୍ୟା ( ଏକବାରପାଠେନ ) ତତ୍ (ଫଲଂ) ପ୍ରଯଚ୍ଛତି । ୬ଷ୍ଠ ଶ୍ଳୋକ ।

---

ପରମପବିତ୍ର ଶ୍ରୀବିଷ୍ଣୁସହସ୍ରନାମ ତିନିବାର ପାଠ କଲେ ଯେଉଁ ଫଳ ହୁଏ କୃଷ୍ଣ ଏହି ନାମ ଥରେ କହିଲେ ସେହି ଫଳ ହୁଏ । ୬ଷ୍ଠ ଶ୍ଳୋକାର୍ଥ ।

ଉପରୋକ୍ତ ଦୁଇ ଶ୍ଳୋକଦ୍ୱାରା ଦେଖାଯାଏ ଯେ, ଶ୍ରୀବିଷ୍ଣୁସହସ୍ରନାମ ଥରେ ପାଠ କଲେ ଯେଉଁ ଫଳ ହୁଏ ରାମନାମ ଥରେ ଉଚ୍ଚାରଣ କଲେ ସେହି ଫଳ ହୁଏ, ପୁଣି ସେହି ବିଷ୍ଣୁସହସ୍ରନାମ ତିନି ଥର ପାଠ କଲେ ଯେଉଁ ଫଳ ହୁଏ କୃଷ୍ଣନାମ ଥରେ ଉଚ୍ଚାରଣ କଲେ ସେହି ଫଳ ହୁଏ । ଏତଦ୍ଦ୍ୱାରା ଶ୍ରୀରାମନାମ ଅପେକ୍ଷା ଶ୍ରୀକୃଷ୍ଣନାମ—ମାହାତ୍ମ୍ୟର ବିଶେଷତ୍ୱ ଜଣାଗଲା । ଏହା ଜାଣି ସୁଦ୍ଧା ସେ ନିଜେ କୃଷ୍ଣନାମ ନ ନେଇ ରାମନାମ କାହିଁକି ନିଅନ୍ତି ତାହାର କାରଣ କହୁଅଛନ୍ତି । ୨୯ ।

ତାହାର ମହିମା—ସେହି କୃଷ୍ଣନାମର ମହିମା । ୩୦ ।

ସାକ୍ଷାତ୍—ସ୍ୱୟଂ । ୩୧ । ତାର୍କିକ – ନୈୟାୟିକ ।

ମୀମାଂସକ—ପୂର୍ବମୀମାଂସା ଶାସ୍ତ୍ରବେତ୍ତା ଅର୍ଥାତ୍ କର୍ମବାଦୀ ।

ମାୟାବାଦୀ—ନିର୍ବିଶେଷ ବ୍ରହ୍ମବାଦୀ । ସାଙ୍ଖ୍ୟ—ସାଂଖ୍ୟମତାବଲମ୍ବୀ ।

ପାତଞ୍ଜଳ—ଯୋଗଶାସ୍ତ୍ରମତାବଲମ୍ବୀ, ସ୍ମୃତିପୁରାଣ ଓ ଆଗମଶାସ୍ତ୍ର ମତାବଲମ୍ବୀ ।

ଏହି ମତାବଲମ୍ବୀମାନେ ନିଜ ନିଜ ମତ ଘେନି ଯୋରରେ ତର୍କ କରିବାକୁ ଲାଗିଲେ । କିନ୍ତୁ ମହାପ୍ରଭୁ ସେମାନଙ୍କର ପ୍ରତ୍ୟେକଙ୍କର ମତ ଖଣ୍ଡନ କରି ବୈଷ୍ଣବମତର ଶ୍ରେଷ୍ଠତ୍ୱ ସ୍ଥାପନ କଲେ ।୩୬ ।

ନିଜ ନିଜ ଶାସ୍ତ୍ରେ ସବେ ଉଦ୍‌ଗ୍ରାହେ ପ୍ରଚଣ୍ଡ ।
ସର୍ବମତ ଦୁଷି ପ୍ରଭୁ କରେ ଖଣ୍ଡଖଣ୍ଡ । ୩୬ ।
ସର୍ବତ୍ର ସ୍ଥାପଯ୍ନ ପ୍ରଭୁ ବୈଷ୍ଣବ ସିଦ୍ଧାନ୍ତେ ।
ପ୍ରଭୁର ସିଦ୍ଧାନ୍ତ କେହୋ ନା ପାରେ ଖଣ୍ଡିତେ ।
ହାରି-ହାରି ପ୍ରଭୁ-ମତେ କରେନ ପ୍ରବେଶ ।
ଏଇମତ ବୈଷ୍ଣବ ପ୍ରଭୁ କୈଲ ଦକ୍ଷିଣଦେଶ ।୩୯
ପାଷଣ୍ଡୀର ଗଣ ଆଇଲ ପାଣ୍ଡିତ୍ୟ ଶୁନିଞା ।
ଗର୍ବ କରି ଆଇଲ ସଙ୍ଗେ ଶିଷ୍ୟଗଣ ଲଞା ।୪୦।
ବୌଦ୍ଧାଚାର୍ଯ୍ୟ ମହାପଣ୍ଡିତ ନିଜ ନବମତେ ।
ପ୍ରଭୁ ଆଗେ ଉଦ୍‌ଗ୍ରାହ କରି ଲାଗିଲା କହିତେ ।
ଯଦ୍ୟପି ଅସମ୍ଭାଷ୍ୟ ବୌଦ୍ଧ ଅଯୁକ୍ତ ଦେଖିତେ ।
ତଥାପି ବଲିଲା ପ୍ରଭୁ ଗର୍ବ ଖଣ୍ଡାଇତେ । ୪୨ ।
ତର୍କପ୍ରଧାନ ବୌଦ୍ଧଶାସ୍ତ୍ର ନବମତେ ।
ତର୍କେଇ ଖଣ୍ଡିଲ ପ୍ରଭୁ ନା ପାରେ ସ୍ଥାପିତେ ।୪୩।
ବୌଦ୍ଧାଚାର୍ଯ୍ୟ ନବପ୍ରଶ୍ନ ସବ ଉଠାଇଲ ।
ଦୃଢ ଯୁକ୍ତି-ତର୍କେ ପ୍ରଭୁ ଖଣ୍ଡଖଣ୍ଡ କୈଲ । ୪୪ ।
ଦାର୍ଶନିକ ପଣ୍ଡିତ ସଭାଇ ପାଇଲ ପରାଜୟ ।
ଲୋକେ ହାସ୍ୟ କରେ, ବୌଦ୍ଧେର ହୈଲ ଲଜ୍ଜା-ଭୟ ।
ପ୍ରଭୁକେ ବୈଷ୍ଣବ ଜାନି ବୌଦ୍ଧ ଘର ଗେଲା ।
ସକଲ ବୌଦ୍ଧ ମିଲି ତବେ କୁମନ୍ତ୍ରଣା କୈଲା ।୪୬।
ଅପବିତ୍ର ଅନ୍ନ ଏକ ଥାଲିତେ କରିଯ୍ଯା ।
ପ୍ରଭୁ ଆଗେ ଆନିଲ 'ବିଷ୍ଣୁପ୍ରସାଦ' ବଲିଯ୍ଯା ।
ହେନକାଲେ ମହାକାଯ୍ୟ ଏକ ପକ୍ଷୀ ଆଇଲ ।
ଠୋଁଟେ କରି ଅନ୍ନ-ସହ ଥାଲି ଲଯ୍ଯା ଗେଲ ।୪୮।
ବୌଦ୍ଧଗଣେର ଉପର ଅନ୍ନ ପଡ଼େ ଅମେଧ୍ୟ ହଇଯ୍ଯା ।
ବୌଦ୍ଧାଚାର୍ଯ୍ୟେର ମାଥାଯ୍ ଥାଲି ପଡିଲ ବାଜିଯ୍ଯା ।
ତେରଛେ ପଡ଼ିଲ ଥାଲି —ମାଥା କାଟି ଗେଲ ।
ମୂର୍ଚ୍ଛିତ ହଇଯ୍ଯା ଆଚାର୍ଯ୍ୟ ଭୂମିତେ ପଡ଼ିଲ ।୫୦।
ହାହାକାର କରି କାନ୍ଦେ ସବ ଶିଷ୍ୟଗଣ ।
ସବେ ଆସି ପ୍ରଭୁ-ପଦେ ଲଇଲ ଶରଣ ।୫୧।
ତୁମିତ ଈଶ୍ୱର ସାକ୍ଷାତ୍,—କ୍ଷମ ଅପରାଧ ।
ଜୀଯ୍ଯାହ ଆମାର ଗୁରୁ,—କରହ ପ୍ରସାଦ ।୫୨।
ପ୍ରଭୁ କହେ— ସବେ କହ 'କୃଷ୍ଣ କୃଷ୍ଣ ହରି' ।
ଗୁରୁ-କର୍ଣ୍ଣେ କହ କୃଷ୍ଣନାମ ଉଚ୍ଚ କରି । ୫୩ ।
ତୋମା ସଭାର ଗୁରୁ ତବେ ପାଇବେ ଚେତନ ।
ସର୍ବ ବୌଦ୍ଧ ମିଲି କରେ କୃଷ୍ଣସଙ୍କୀର୍ତ୍ତନ । ୫୪ ।
ଗୁରୁକର୍ଣ୍ଣେ କହେ —କହ କୃଷ୍ଣ ରାମ ହରି ।
ଚେତନ ପାଇଲ ଆଚାର୍ଯ୍ୟ ଉଠେ 'ହରି' ବଲି ।
'କୃଷ୍ଣ' ବଲି ଆଚାର୍ଯ୍ୟ ପ୍ରଭୁକେ କରେ ବିନଯ୍ନ ।
ଦେଖିଯ୍ଯା ସକଲ ଲୋକ ପାଇଲା ବିସ୍ମଯ୍ନ ।୫୬।
ଏଇମତ କୌତୁକ କରି ଶଚୀର ନନ୍ଦନ ।
ଅନ୍ତର୍ଦ୍ଧାନ କୈଲ, କେହୋ ନା ପାଯ୍ନ ଦର୍ଶନ ।
ମହାପ୍ରଭୁ ଚଲି ଆଇଲା ତ୍ରିପଦୀ-ତ୍ରିମଲ୍ଲେ ।
ଚତୁର୍ଭୁଜ ବିଷ୍ଣୁ ଦେଖି ବେଙ୍କଟ-ଅଚଲେ ।୫୮।

ପାଷଣ୍ଡୀ — ନାସ୍ତିକ ବା ଶୂନ୍ୟବାଦୀ । ୪୦ ।

ଉଦ୍‌ଗ୍ରାହ କରି —ଦମ୍ଭର ସହିତ ତର୍କ କରି । ୪୧ ।

ଅସମ୍ଭାଷ୍ୟ— ବୌଦ୍ଧମାନେ ସମ୍ଭାଷଣର, ଏପରିକି ଦର୍ଶନର ଅନୁପଯୁକ୍ତ ହେଲେହେଁ ସେମାନଙ୍କର ଗର୍ବ ଖଣ୍ଡନ କରିବା ସକାଶେ ଶ୍ରୀମନ୍‌ମହାପ୍ରଭୁ ସେମାନଙ୍କ ସହିତ ତର୍କ କରି-ଥିଲେ । ୪୨ ।

ନବମତେ— ନୂତନମତକୁ ।

ନା ପାରେ ସ୍ଥାପିତେ—ବୌଦ୍ଧମାନେ ସ୍ଥାପିତ କରି ପାରିଲେ ନାହିଁ । ୪୩ ।

ଅମେଧ —ଅଖାଦ୍ୟ । ୪୯ ।

ତ୍ରିପଦୀ—ତିରୁପତୀର ଉତ୍ତର ଆର୍କଟ । ଏହା ବେଙ୍କଟାଚଳ ପର୍ବତର ଉପତ୍ୟକାରେ ଅବସ୍ଥିତ ।

ତ୍ରିମଲ୍ଲ — ତ୍ରିପଦୀର ପ୍ରାଚୀନ ନାମ ।

ବେଙ୍କଟାଚଳ—ବେଙ୍କଟ ପର୍ବତ । ଏଠାରେ ଚତୁର୍ଭୁଜ ଶ୍ରୀନାରାୟଣମୂର୍ତ୍ତି ଅଛନ୍ତି । ୫୮ ।

ତିପଦୀ ଆସିଣ୍ଡା କୈଲ ଶ୍ରୀରାମ ଦର୍ଶନ ।
ରଘୁନାଥ ଆଗେ କୈଲ ପ୍ରଣାମ ସ୍ତବନ । ୫୯ ।
ସ୍ୱପ୍ରଭାବେ ଲୋକ ସବ କରାଇଣ୍ଡା ବିସ୍ମୟ ।
ପାନା-ନରସିଂହେ ଆଇଲା ପ୍ରଭୁ ଦୟାମୟ ।୬୦।
ନୃସିଂହେ ପ୍ରଣତି ସ୍ତୁତି ପ୍ରେମାବେଶେ କୈଲ ।
ପ୍ରଭୁର ପ୍ରଭାବେ ଲୋକ ଚମତ୍କାର ହୈଲ ।୬୧।
ଶିବକାଞ୍ଚୀ ଆସି କୈଲ ଶିବ ଦରଶନ ।
ପ୍ରଭାବେ ବୈଷ୍ଣବ କୈଲ ସବ ଶୈବଗଣ ।୬୨।
ବିଷ୍ଣୁକାଞ୍ଚୀ ଆସି ଦେଖିଲ ଲକ୍ଷ୍ମୀନାରାୟଣ ।
ପ୍ରଣାମ କରିଣ୍ଡା କୈଲ ବହୁତ ସ୍ତବନ । ୬୩ ।
ପ୍ରେମାବେଶେ ନୃତ୍ୟ-ଗୀତ ବହୁତ କରିଲ ।
ଦିନ ଦୁଇ ରହି ଲୋକେ କୃଷ୍ଣଭକ୍ତ କୈଲ ।୬୪।
ତିମଲ୍ଲ ଦେଖି ଗେଲା ତ୍ରିକାଲହସ୍ତୀ-ସ୍ଥାନ ।
ମହାଦେବ ଦେଖି ତାଁରେ କରିଲା ପ୍ରଣାମ ।୬୫।
ପକ୍ଷୀତୀର୍ଥ ଯାଇ କୈଲ ଶିବ ଦରଶନ ।
ବୃଦ୍ଧକୋଲ ତୀର୍ଥେ ତବେ କରିଲ ଗମନ ।୬୬।
ଶ୍ୱେତବରାହ ଦେଖି ତାଁରେ ନମସ୍କାର କରି ।
ପୀତାମ୍ବର-ଶିବ ସ୍ଥାନେ ଗେଲା ଗୌରହରି ।୬୭।
ଶିୟାଲୀ ଭୈରବୀ ଦେବୀ କରି ଦରଶନ ।
କାବେରୀର ତୀରେ ଆଇଲା ଶଚୀରନନ୍ଦନ ।୬୮।
ଗୋ-ସମାଜ ଶିବ ଦେଖି ଆଇଲା ବେଦାବନ ।
ମହାଦେବ ଦେଖି ତାଁରେ କରିଲା ବନ୍ଦନ ।୬୯।
ଅମୃତଲିଙ୍ଗ-ଶିବ ଆସି ଦର୍ଶନ କରିଲ ।
ସବ ଶିବାଲୟେ ଶୈବ 'ବୈଷ୍ଣବ' କରିଲ ।୭୦।
ଦେବସ୍ଥାନେ ଆସି କୈଲ ବିଷ୍ଣୁ ଦରଶନ ।
ଶ୍ରୀବୈଷ୍ଣବଗଣ ସଙ୍ଗେ ଗୋଷ୍ଠି ଅନୁକ୍ଷଣ । ୭୧ ।
କୁମ୍ଭକର୍ଣ୍ଣ-କପାଲେର ଦେଖି ସରୋବର ।
ଶିବକ୍ଷେତ୍ରେ ଶିବ ଦେଖେ ଗୌରାଙ୍ଗସୁନ୍ଦର ।୭୨।
ପାପନାଶନେ ବିଷ୍ଣୁ କରି ଦରଶନ ।
ଶ୍ରୀରଙ୍ଗକ୍ଷେତ୍ରେ ତବେ କୈଲ ଆଗମନ ।୭୩।
କାବେରୀରେ ସ୍ନାନ କରି ଦେଖି ରଙ୍ଗନାଥ ।
ସ୍ତୁତି ପ୍ରଣତି କରି ମାନିଲ କୃତାର୍ଥ । ୭୪ ।
ପ୍ରେମାବେଶେ କୈଲ ବହୁ ଗାନ ନର୍ତ୍ତନ ।
ଦେଖି ଚମତ୍କାର ହୈଲ ସର୍ବଲୋକ-ମନ ।୭୫।
ଶ୍ରୀବୈଷ୍ଣବ ଏକ—ବେଙ୍କଟଭଟ୍ଟ ନାମ ।
ପ୍ରଭୁକେ ନିମନ୍ତ୍ରଣ କୈଲ କରିଣ୍ଡା ସମ୍ମାନ ।୭୬।
ନିଜଘରେ ଲଞା କୈଲ ପାଦପ୍ରକ୍ଷାଲନ ।
ସେଇ ଜଲ ସବଂଶେତେ କରିଲ ଭକ୍ଷଣ ।୭୭।
ଭିକ୍ଷା କରାଇଣ୍ଡା କିଛୁ କୈଲ ନିବେଦନ — ।
ଚାତୁର୍ମାସ୍ୟ ଆସି ପ୍ରଭୁ ! ହୈଲ ଉପସନ୍ନ ।୭୮।

---

ପାନାନୃସିଂହ—ଯେଉଁଠାରେ ପଣା ଭୋଗ ହୁଏନ୍ତି । ୬୦ ।

ଶିବକାଞ୍ଚୀ—କଞ୍ଜିଭରମ । ୬୨ ।

ତ୍ରିକାଳହସ୍ତୀ, ପକ୍ଷୀତୀର୍ଥ, ବୃଦ୍ଧକୋଳ ଏ ତିନି ତୀର୍ଥ ଚେଙ୍ଗଲପଟ୍ଟୁ ଜିଲ୍ଲାରେ ଅବସ୍ଥିତ । ୬୬ ।

କୁମ୍ଭକର୍ଣ୍ଣ କପାଳେର—ବର୍ତ୍ତମାନ୍ କୁମ୍ଭକୋଣମ୍ ଜିଲ୍ଲାରେ ରାବଣର ଭାଇ କୁମ୍ଭକର୍ଣ୍ଣର ମୁଣ୍ଡର ଖୋଲ ଗୋଟିଏ ପୁଷ୍କରିଣୀରୂପରେ ବିଦ୍ୟମାନ ଅଛି । ୭୨ ।

ବେଙ୍କଟଭଟ୍ଟ—ଏ ମହାଶୟ ଷଡ଼ଗୋସ୍ୱାମୀମାନଙ୍କ ମଧ୍ୟରେ ଅନ୍ୟତମ ଶ୍ରୀଗୋପାଳଭଟ୍ଟ ଗୋସ୍ୱାମୀଙ୍କର ପିତା ଏବଂ ଶ୍ରୀଚୈତନ୍ୟଚନ୍ଦ୍ରାମୃତପ୍ରଣେତା ପ୍ରବୋଧାନନ୍ଦ ସରସ୍ୱତୀଙ୍କର ଜ୍ୟେଷ୍ଠଭ୍ରାତା । ୭୫ ।

ଚାତୁର୍ମାସ୍ୟ—ବର୍ଷା ଚାରିମାସ । ଉପସନ୍ନ—ନିକଟବର୍ତ୍ତୀ । ୭୮ ।

ଚାତୁର୍ମାସ୍ୟ କୃପା କରି ରହ ମୋର ଘରେ ।
କୃଷ୍ଣକଥା କହି କୃପାରେ ନିସ୍ତାର ଆମାରେ ।୭୯।
ତାର ଘରେ ରହିଲା ପ୍ରଭୁ କୃଷ୍ଣକଥା ରସେ ।
ଭଟ୍ଟ-ସଙ୍ଗେ ଗୋଡାଇଲା ସୁଖେ ଚାରିମାସେ ।୮୦।
କାବେରୀତେ ସ୍ନାନ କରି ଶ୍ରୀରଙ୍ଗ ଦର୍ଶନ ।
ପ୍ରତିଦିନ ପ୍ରେମାବେଶେ କରେନ୍ତି ନର୍ତ୍ତନ ।୮୧।
ସୌନ୍ଦର୍ଯ୍ୟ-ପ୍ରେମାବେଶ ଦେଖି ସର୍ବଲୋକ ।
ଦେଖିବାରେ ଆଇସେ, ସଭାର ଖଣ୍ଡେ ଦୁଃଖଶୋକ ।
ଲକ୍ଷ ଲକ୍ଷ ଲୋକ ଆଇସେ ନାନା ଦେଶ ହୈତେ ।
ସଭେ କୃଷ୍ଣନାମ କହେ ପ୍ରଭୁରେ ଦେଖିତେ ।୮୩।
କୃଷ୍ଣନାମ ବିନା କେହୋ ନାହି ବୋଲେ ଆର ।
ସଭେ କୃଷ୍ଣଭକ୍ତ ହୈଲ, ଲୋକେ ଚମତ୍କାର ।୮୪
ଶ୍ରୀରଙ୍ଗକ୍ଷେତ୍ରେ ବୈସେ ଯତେକ ବ୍ରାହ୍ମଣ ।
ଏକ ଏକଦିନେ ସଭେ କୈଲ ନିମନ୍ତ୍ରଣ ।୮୫।
ଏକ ଏକଦିନେ ଚାତୁର୍ମାସ୍ୟ ପୂର୍ଣ୍ଣ ହଇଲ ।
କତକ ବ୍ରାହ୍ମଣ ଭିକ୍ଷାର ଦିନ ନା ପାଇଲ ।୮୬
ସେଇ କ୍ଷେତ୍ରେ ରହେ ଏକ ବୈଷ୍ଣବ ବ୍ରାହ୍ମଣ ।
ଦେବାଲୟେ ବସି କରେ ଗୀତା-ଆବର୍ତ୍ତନ ।
ଅଷ୍ଟାଦଶାଧ୍ୟାୟ ପଢ଼େ ଆନନ୍ଦ-ଆବେଶେ ।
ଅଶୁଦ୍ଧ ପଢ଼େନ, ଲୋକେ କରେ ଉପହାସେ ।୮୭।
କେହୋ ହାସେ, କେହୋ ନିନ୍ଦେ, ତାହା ନାହି ମାନେ ।
ଆବିଷ୍ଟ ହୈୟା ଗୀତା ପଢ଼େ ଆନନ୍ଦିତ ମନେ ॥
ପୁଲକାଶ୍ରୁ କମ୍ପ ସ୍ୱେଦ ଯାବତ୍-ପଠନ ।
ଦେଖି ଆନନ୍ଦିତ ହୈଲ ମହାପ୍ରଭୁର ମନ ।୯୦।
ମହାପ୍ରଭୁ ପୁଛିଲା ତାଁରେ —ଶୁନ ମହାଶୟ ! ।
କୋନ୍ ଅର୍ଥ ଜାନି ତୋମାର ଏତ ସୁଖ ହୟ ? ୯୧।
ବିପ୍ର କହେ—ମୂର୍ଖ ଆମି ଶବ୍ଦାର୍ଥ ନା ଜାନି ।
ଶୁଦ୍ଧାଶୁଦ୍ଧ ଗୀତା ପଢ଼ି ଗୁରୁ-ଆଜ୍ଞା ମାନି । ୯୨ ।
ଅର୍ଜ୍ଜୁନେର ରଥେ କୃଷ୍ଣ ହୟ ରଜ୍ଜୁଧର ।
ବସିୟାଛେ ହାତେ ତୋତ୍ର ଶ୍ୟାମଲସୁନ୍ଦର ।୯୩।
ଅର୍ଜ୍ଜୁନେରେ କହିତେଛେନ ହିତ-ଉପଦେଶ ।
ତାହା ଦେଖି ହୟେ ମୋର ଆନନ୍ଦ-ଆବେଶ ॥
ଯାବତ୍ ପଢ଼ୋ ତାବତ୍ ପାଙ୍ ତାଁର ଦରଶନ ।
ଏଇ ଲାଗି ଗୀତା ପାଠ ନା ଛାଡ଼େ ମୋର ମନ ।
ପ୍ରଭୁ କହେ ଗୀତାପାଠେ—ତୋମାରି ଅଧିକାର ।
ତୁମି ସେ ଜାନହ ଏଇ ଗୀତାର ଅର୍ଥ ସାର ॥
ଏତ ବଲି ସେଇ ବିପ୍ରେ କୈଲ ଆଲିଙ୍ଗନ ।
ପ୍ରଭୁର ପାଦ ଧରି ବିପ୍ର କରେନ ସ୍ତବନ — ।
ତୋମା ଦେଖି ତାହା ହୈତେ ଦ୍ୱିଗୁଣ ସୁଖ ହୟ ।
'ସେଇ କୃଷ୍ଣ ତୁମି' ହେନ ମୋର ମନେ ଲୟ ।
କୃଷ୍ଣସ୍ଫୂର୍ତ୍ତ୍ୟେ ତାର ମନ ହୟାଛେ ନିର୍ମଲ ।
ଅତଏବ ପ୍ରଭୁର ତତ୍ତ୍ୱ ଜାନିଲ ସକଲ । ୯୯ ।
ତବେ ମହାପ୍ରଭୁ ତାରେ କରାଇଲ ଶିକ୍ଷଣ — ।
ଏଇ ବାତ କାହାଁ ନା କରିବେ ପ୍ରକାଶନ ।
ସେଇ ବିପ୍ର ମହାପ୍ରଭୁର ମହାଭକ୍ତ ହୈଲ ।
ଚାରି ମାସ ପ୍ରଭୁର ସଙ୍ଗ କଭୁ ନା ଛାଡ଼ିଲ ।୧୦୧।

---

ଗୀତାର ସାର ଅର୍ଥହିଁ ସାକାର ବ୍ରହ୍ମବାଦ ଏବଂ ଭକ୍ତି ଅବଲମ୍ବନରେ ତାହାଙ୍କର ଦର୍ଶନ, ଏ ବିପ୍ରମହାଶୟଙ୍କର ଭକ୍ତିପୂର୍ବକ ଗୀତାପାଠରୂପ ସାଧନାଦ୍ୱାରା ଶ୍ରୀକୃଷ୍ଣଦର୍ଶନ ସ୍ଫୂର୍ତ୍ତି ହେଉଥିବାରୁ ଏ ମହାଶୟଙ୍କର ଗୀତାର ସାରାର୍ଥ ଲାଭ ହୋଇଅଛି । ଅତଏବ ଏ ଗୀତାପାଠର ଉତ୍ତମ ଅଧିକାରୀ । ୯୬ ।

ଏଇବାତ—ଶ୍ରୀମନ୍‌ମହାପ୍ରଭୁଙ୍କର ତତ୍ତ୍ୱକଥା । ୧୦୦ ।

କଭୁ—କଦାପି । ୧୦୧ ।

ଏଇମତ ଭଟ୍ଟଗୃହେ ରହେ ଗୌରଚନ୍ଦ୍ର ।
ନିରନ୍ତର ଭଟ୍ଟ ସଙ୍ଗେ କୃଷ୍ଣକଥାରଙ୍ଗ । ୧୦୨ ।
ଶ୍ରୀବୈଷ୍ଣବ ଭଟ୍ଟ ସେବେ ଲକ୍ଷ୍ମୀନାରାୟଣ ।
ତାଁର ଭକ୍ତିନିଷ୍ଠା ଦେଖି ପ୍ରଭୁ ତୁଷ୍ଟ ମନ ।
ନିରନ୍ତର ତାଁର ସଙ୍ଗେ ହୈଲ ସଖ୍ୟଭାବ ।
ହାସ୍ୟ-ପରିହାସ ଦୋହେ ସଖ୍ୟେର ସ୍ୱଭାବ ।
ପ୍ରଭୁ କହେ—ଭଟ୍ଟ ! ତୋମାର ଲକ୍ଷ୍ମୀଠାକୁରାଣୀ ।
କାନ୍ତବକ୍ଷଃସ୍ଥିତା ପତିବ୍ରତା-ଶିରୋମଣି ।
ଆମାର ଠାକୁର କୃଷ୍ଣ ଗୋପ ଗୋଚାରଣ ।
ସାଧ୍ୱୀ ହଞା କେନ ଚାହେ ତାଁହାର ସଙ୍ଗମ ? ।
ଏଇ ଲାଗି ସୁଖଭୋଗ ଛାଡ଼ି ଚିରକାଲ ।
ବ୍ରତ-ନିୟମ କରି ତପ କରିଲ ଅପାର । ୧୦୬ ।

ତଥାହି (ଭାଃ ୧୦।୧୬।୩୬) —

କସ୍ୟାନୁଭାବୋଽସ୍ୟ ନ ଦେବ ବିଦ୍ମହେ,
ତବାଙ୍ଘ୍ରିରେଣୁସ୍ପର୍ଶାଧିକାରଃ ।
ଯଦ୍‌ବାଞ୍ଛୟା ଶ୍ରୀର୍ଲଲନାଚରତ୍ତପୋ,
ବିହାୟ କାମାନ୍ ସୁଚିରଂ ଧୃତବ୍ରତା । ୭ ।

ଭଟ୍ଟ କହେ — କୃଷ୍ଣ-ନାରାୟଣ ଏକଇ ସ୍ୱରୂପ ।
କୃଷ୍ଣେତେ ଅଧିକ ଲୀଲା ବୈଦଗ୍ଧ୍ୟାଦି ରୂପ । ୧୦୮
ତାଁର ସ୍ପର୍ଶେ ନାହିଁ ଯାୟ ପତିବ୍ରତା-ଧର୍ମ ।
କୌତୁକେ ଲକ୍ଷ୍ମୀ ଚାହେନ କୃଷ୍ଣେର ସଙ୍ଗମ । ୧୦୯

ଶ୍ରୀଲକ୍ଷ୍ମୀଠାକୁରାଣୀ ଶ୍ରୀକୃଷ୍ଣଙ୍କର ପ୍ରକାଶ ବିଶେଷ ଶ୍ରୀନାରାୟଣଙ୍କର ଆନନ୍ଦଦାୟିନୀ ଶକ୍ତି, ତେଣୁ ଅତ୍ୟନ୍ତ ପ୍ରିୟତମା ଏବଂ ନାରାୟଣଙ୍କ ବକ୍ଷରେ ଲକ୍ଷ୍ମୀରେଖାରୂପରେ ନିତ୍ୟ ସଂଯୋଗ ହୋଇ ରହିଅଛନ୍ତି । ଏ ପ୍ରକାର ପତିବ୍ରତା ଓ ଶ୍ରୀ ନାରାୟଣଙ୍କ ପ୍ରିୟତମା ଶ୍ରୀ ଲକ୍ଷ୍ମୀଠାକୁରାଣୀ ଶ୍ରୀକୃଷ୍ଣଙ୍କର ଶ୍ରୀବୃନ୍ଦାବନସ୍ଥ ରାସଲୀଳାରେ ପ୍ରବେଶପୂର୍ବକ ଶ୍ରୀକୃଷ୍ଣଙ୍କ ସଙ୍ଗସୁଖ ଉପଭୋଗ କରିବା କାରଣ କାମନା କରି ବହୁଦିନ ପର୍ଯ୍ୟନ୍ତ ନିୟମରେ ତପସ୍ୟା କରିଥିଲେ । ଏହି କଥା ଶ୍ରୀମନ୍‌ମହାପ୍ରଭୁ ଶ୍ରୀଲକ୍ଷ୍ମୀନାରାୟଣୋପାସକ ଶ୍ରୀ ବେଙ୍କଟଭଟ୍ଟଙ୍କୁ କହିଲେ ଯେ, ପୂର୍ଣ୍ଣ ଐଶ୍ୱର୍ଯ୍ୟସମ୍ପନ୍ନ ଶ୍ରୀନାରାୟଣଙ୍କର ବକ୍ଷସ୍ଥିତା ପରମପ୍ରେୟସୀ ଶ୍ରୀଲକ୍ଷ୍ମୀଠାକୁରାଣୀ କି ପାଇଁ ମୋର ପ୍ରଭୁ ଶ୍ରୀକୃଷ୍ଣ ଯେ କି ଐଶ୍ୱର୍ଯ୍ୟ-ଶୂନ୍ୟ ଜାତିରେ ଗୋପାଳ ଓ ଗୋରୁ ଚରାନ୍ତି ତାହାଙ୍କର ସଙ୍ଗସୁଖ ବାଞ୍ଛା କରିଥିଲେ ଏବଂ କେବଳ ବାଞ୍ଛା କରିଥିଲେ ତାହା ନୁହେଁ, ତାହା ପାଇବାପାଇଁ ବହୁକଠୋର ତପସ୍ୟା ମଧ୍ୟ କରିଥିଲେ । ଏହାର କାରଣ କଅଣ ? ୧୦୪ରୁ ୧୦୬ ।

ଶ୍ରୀଲକ୍ଷ୍ମୀଦେବୀଙ୍କର ତପସ୍ୟାର ପ୍ରମାଣ ନିମ୍ନଲିଖିତ ଶ୍ଳୋକ ।
୭ମ ଶ୍ଳୋକର ଅନ୍ୱୟ ମଧ୍ୟ — ୮ପର ୩୪ ଶ୍ଳୋକରେ ଦେଖ ।

ହେ ଦେବ ? ତୁମ୍ଭର ଯେଉଁ ଚରଣରେଣୁ ସ୍ପର୍ଶକାମନାରେ ଲଲନାଶ୍ରେଷ୍ଠ ଲକ୍ଷ୍ମୀଠାକୁରାଣୀ ସର୍ବ କାମନା ପରିତ୍ୟାଗପୂର୍ବକ ବ୍ରତଧାରଣ କରି ବହୁକାଳ ତପସ୍ୟା କରିଅଛନ୍ତି, ଏହି ନାଗ କାଳୀୟନାଗ ଆପଣଙ୍କର ତାଦୃଶ ଶ୍ରୀଚରଣରେଣୁର ସ୍ପର୍ଶାଧିକାର କେଉଁ ସୁକୃତବଳରେ ଲାଭ କଲେ ତାହା ଅମ୍ଭେମାନେ ଜାଣି ପାରୁ ନାହୁଁ । ୭ମ ଶ୍ଳୋକାର୍ଥ ।

ଶ୍ରୀଭଟ୍ଟମହାଶୟ କହିଲେ ଶ୍ରୀକୃଷ୍ଣ ଓ ନାରାୟଣ ତତ୍ତ୍ୱତଃ ଏକସ୍ୱରୂପ, ତେବେ ଶ୍ରୀକୃଷ୍ଣଙ୍କର କଳାବିଳାସାଦିଲୀଳାରେ ଶ୍ରୀନାରାୟଣଙ୍କ ଅପେକ୍ଷା ବିଶେଷ ନୈପୁଣ୍ୟ ଅଛି, ସେହି ହେତୁ ଲକ୍ଷ୍ମୀଠାକୁରାଣୀ କୌତୁକରେ ଶ୍ରୀକୃଷ୍ଣଙ୍କର ସଙ୍ଗ ଇଚ୍ଛା କରିଥିଲେ । ଶ୍ରୀକୃଷ୍ଣ ଓ ଶ୍ରୀନାରାୟଣ ଅଭେଦ ତତ୍ତ୍ୱ ହେତୁ ଶ୍ରୀକୃଷ୍ଣଙ୍କ ସଙ୍ଗମଲାଳସାରେ ଲକ୍ଷ୍ମୀଙ୍କ ପତିବ୍ରତାଧର୍ମର କୌଣସି ହାନି ହୁଏ ନାହିଁ । ୧୦୮।୧୦୯ ।

ତଥାହି ଭକ୍ତିରସାମୃତସିନ୍ଧୌ, ପୂର୍ବବିଭାଗେ,
ସାଧନଭକ୍ତିଲହର୍ଯ୍ୟାମ୍ ( ୩୨ )—

ସିଦ୍ଧାନ୍ତତସ୍ତ୍ୱଭେଦେଽପି ଶ୍ରୀଶକୃଷ୍ଣସ୍ୱରୂପୟୋଃ ।
ରସେନୋତ୍କୃଷ୍ୟତେ କୃଷ୍ଣରୂପମେଷା
ରସସ୍ଥିତିଃ । ୮ ।

କୃଷ୍ଣ ସଙ୍ଗେ ପତିବ୍ରତା-ଧର୍ମ ନହେ ନାଶ ।
ଅଧିକ ଲାଭ ପାଇୟେ ଆର ରାସବିଲାସ । ୧୧୦ ।
ବିନୋଦିନୀ ଲକ୍ଷ୍ମୀର ହୟ କୃଷ୍ଣେ ଅଭିଲାଷ ।
ଇହାତେ କି ଦୋଷ,କେନେ କର ପରିହାସ ? ।
ପ୍ରଭୁ କହେ – ଦୋଷ ନାହିଁ ଇହା ଆମି ଜାନି ।
ରା । ନା ପାଇଲ ଲକ୍ଷ୍ମୀ · ଇହା ଶାସ୍ତ୍ରେ ଶୁନି ।୧୧୨

ତଥାହି ( ଭାଃ ୧୦।୪୭।୬୦ )—

ନାୟଂ ଶ୍ରିୟୋଽଙ୍ଗ ଉ ନିତାନ୍ତରତେଃ ପ୍ରସାଦଃ,
ସ୍ୱର୍ଯୋଷିତାଂ ନଳିନଗନ୍ଧରୁଚାଂ କୁତୋଽନ୍ୟାଃ ।
ରାସୋତ୍ସବେଽସ୍ୟ ଭୁଜଦଣ୍ଡଗୃହୀତକଣ୍ଠ-
ଲବ୍ଧାଶିଷାଂ ଯ ଉଦଗାଦ୍ ବ୍ରଜସୁନ୍ଦରୀଣାମ୍ । ୯ ।

ଲକ୍ଷ୍ମୀ କେନ ନା ପାଇଲ କି ଇହାର କାରଣ ?
ତପ କରି କୈଛେ କୃଷ୍ଣ ପାଇଲ ଶ୍ରୁତିଗଣ ?୧୧୩

---

ସିଦ୍ଧାନ୍ତତଃ ଶ୍ରୀଶକୃଷ୍ଣସ୍ୱରୂପୟୋଃ—ନାରାୟଣକୃଷ୍ଣତତ୍ତ୍ୱୟୋଃ ଅଭେଦେ ସତ୍ୟପି ରସେନ କୃଷ୍ଣରୂପଂ ଉତ୍କୃଷ୍ୟତେ—ଉତ୍କୃଷ୍ଟତୟା ପ୍ରକାଶ୍ୟତେ । ଯତଃ ତସ୍ୟ—ରସସ୍ୟ ଏଷା (ଏବ) ସ୍ଥିତିଃ—ସ୍ୱଭାବଃ, ଯତଃ କୃଷ୍ଣରୂପଂ ଉତ୍କୃଷ୍ଟତ୍ୱେନ ଦର୍ଶୟତି । ୮ମ ଶ୍ଲୋକ ।

---

ସିଦ୍ଧାନ୍ତଦ୍ୱାରା ଶ୍ରୀନାରାୟଣ ଏବଂ ଶ୍ରୀକୃଷ୍ଣଙ୍କର ସ୍ୱରୂପତଃ କିଛି ଭେଦ ନାହିଁ । ତଥାପି କେବଳ ପ୍ରେମମୟ ରସଦ୍ୱାରା ଶ୍ରୀକୃଷ୍ଣଙ୍କର ଉତ୍କୃଷ୍ଟତା ଲକ୍ଷିତ ହୁଏ । ଯେହେତୁ ରସର ଏହି ପ୍ରକାର ସ୍ୱଭାବ ଯେ; ତାହା ଶ୍ରୀକୃଷ୍ଣରୂପକୁ ସର୍ବୋତ୍କୃଷ୍ଟରୂପରେ ପ୍ରଦର୍ଶନ କରାଏ । ୮ମ ଶ୍ଲୋକାର୍ଥ ।

ଭଟ୍ଟମହାଶୟ କହିଲେ ଏହି ଶ୍ଲୋକରୁ ଜଣାଯାଏ ଯେ, ଶ୍ରୀକୃଷ୍ଣସଙ୍ଗମରେ ଲକ୍ଷ୍ମୀଠାକୁରାଣୀଙ୍କର ପତିବ୍ରତା ଧର୍ମ ନାଶ ହେବ ନାହିଁ । ପରନ୍ତୁ ଶ୍ରୀନାରାୟଣଙ୍କଠାରେ ଯେଉଁ ରାସାଦିବିଳାସ ନାହିଁ ସେ ସମସ୍ତ ଅଧିକା ମିଳିବ । ଅତଏବ ବିନୋଦିନୀ ଲକ୍ଷ୍ମୀଙ୍କର ଶ୍ରୀକୃଷ୍ଣଙ୍କ ସଙ୍ଗମରେ ଯେଉଁ ଅଭିଳାଷ, ତାହା ଦୋଷାବହ ନୁହେ । ତେବେ ଆପଣ ପରିହାସ କଲେ କାହିଁକି ? ଶ୍ରୀମନ୍-ମହାପ୍ରଭୁ କହିଲେ ଯେ, ତାହା ଦୋଷାବହ ନୁହେ ଏହା ମୁଁ ଜାଣେ ତେବେ ମୁଁ ଶାସ୍ତ୍ରରେ ଶୁଣିଅଛି ଯେ, ଲକ୍ଷ୍ମୀଠାକୁରାଣୀ ଏତେ କଠୋର ତପସ୍ୟା କରି ସୁଦ୍ଧା ଶ୍ରୀକୃଷ୍ଣଙ୍କର ରାସଲୀଳାରେ ପ୍ରବେଶ କରି ପାରି ନାହାନ୍ତି । ୧୧୦ ।

୯ମ ଶ୍ଲୋକର ଅନ୍ୱୟ—ମଧ୍ୟ ୯ମ ପରି: ୫୦ ଶ୍ଲୋକ ।

ଶ୍ରୀମନ୍ ଉଦ୍ଧବ ବିସ୍ମୟରେ ଗୋପୀମାନଙ୍କ ଭାବକୁ ଲକ୍ଷ୍ୟ କରି କହୁଅଛନ୍ତି । ରାସୋ-ତ୍ସବରେ ଶ୍ରୀକୃଷ୍ଣଙ୍କର ଭୁଜଯୁଗଳଦ୍ୱାରା କଣ୍ଠ ଆଲିଙ୍ଗନରୂପ ମନୋରଥ ଲାଭକାରିଣୀ ଶ୍ରୀବ୍ରଜଦେବୀ-ମାନେ ଶ୍ରୀକୃଷ୍ଣଙ୍କଠାରୁ ଯେଉଁ ଜାତୀୟ କୃପା ଲାଭ କରିଥିଲେ ଶ୍ରୀକୃଷ୍ଣଙ୍କ ସ୍ୱରୂପ ଶ୍ରୀନାରାୟଣଙ୍କ ବୈକୁଣ୍ଠସ୍ଥା ପ୍ରେୟସୀ ଭୂଲୀଳା ପ୍ରଭୃତିମାନଙ୍କ ମଧ୍ୟରେ ପରମ ପ୍ରେମବତୀ ହେତୁ ତାହାଙ୍କର ସର୍ବଦା ବକ୍ଷଃସ୍ଥଳସ୍ଥିତା ଲକ୍ଷ୍ମୀଦେବୀ ସୁଦ୍ଧା ସେ ଜାତୀୟ କୃପା ଲାଭ କରିନାହାନ୍ତି । ଅନ୍ୟାନ୍ୟ ସ୍ତ୍ରୀମାନଙ୍କର କଥା ଆଉ କଣ କହିବି ? ୯ମ ଶ୍ଲୋକାର୍ଥ ।

ଶ୍ରୀମନ୍ ମହାପ୍ରଭୁ କହିଲେ, ଏହି ଶ୍ଲୋକରୁ ଜଣାଗଲା ଯେ; ଶ୍ରୀଲକ୍ଷ୍ମୀଠାକୁରାଣୀ ରାସଲୀଳାରେ ପ୍ରବେଶ କରି ପାରି ନାହାନ୍ତି ଅଥଚ ଶ୍ରୁତିମାନେ ତାହା ପାଇଲେ, ଏହାର କାରଣ କଣ ? ୧୧୩ ।

ତଥାହି ( ଭାଃ ୧୦।୮୭।୨୩ )—

ନିଭୃତମରୁନ୍ମନୋଽକ୍ଷଦୃଢ଼ଯୋଗଯୁଜୋ ହୃଦି ଯ-
ନ୍ମୁନୟ ଉପାସତେ ତଦରୟୋଽପି ଯୟୁଃ ସ୍ମରଣାତ୍;
ସ୍ତ୍ରିୟ ଉରଗେନ୍ଦ୍ରଭୋଗଭୁଜଦଣ୍ଡବିଷକ୍ତଧିୟୋ,
ବୟମପି ତେ ସମାଃ ସମଦୃଶୋଽଙ୍ଘ୍ରିସରୋଜ-
ସୁଧାଃ । ୧୦ ।

ଶ୍ରୁତି ପାୟ ଲକ୍ଷ୍ମୀ ନା ପାୟ, ଇଥେ କି କାରଣ ?
ଭଟ୍ଟ କହେ—ଇହାଁ ପ୍ରବେଶିତେ ନାରେ ମୋର
ମନ ।୧୧୪।
ଆମି ଜୀବ କ୍ଷୁଦ୍ରବୁଦ୍ଧି—ସହଜେ ଅସ୍ଥିର ।
ଈଶ୍ୱରେର ଲୀଲା କୋଟି ସମୁଦ୍ର ଗମ୍ଭୀର ।୧୧୫।

ତୁମି ସେଇ ସାକ୍ଷାତ୍ କୃଷ୍ଣ—ଜାନ ନିଜକର୍ମ ।
ଯାରେ ଜାନାହ, ସେଇ ଜାନେ—ତୋମାର
ଲୀଲା ମର୍ମ ।୧୧୬।
ପ୍ରଭୁ କହେ—କୃଷ୍ଣେର ଏକ ସ୍ୱଭାବ ବିଲକ୍ଷଣ ।
ସ୍ୱମାଧୁର୍ଯ୍ୟେ କରେ ସଦା ସର୍ବ ଆକର୍ଷଣ ।୧୧୭।
ବ୍ରଜଲୋକେର ଭାବେ ପାଇ ତାଁହାର ଚରଣ ।
ତାଁରେ 'ଈଶ୍ୱର' କରି ନାହି ଜାନେ ବ୍ରଜଜନ ॥
କେହୋ ତାରେ ପୁତ୍ରଜ୍ଞାନେ ଉଦୂଖଲେ ବାନ୍ଧେ ।
କେହୋ ତାଁରେ ସଖା-ଜ୍ଞାନେ ଜିନି ଚଢ଼େ କାନ୍ଧେ ।
'ବ୍ରଜେନ୍ଦ୍ରନନ୍ଦନ' ତାଁରେ ଜାନେ ବ୍ରଜଜନ ।
ଐଶ୍ୱର୍ଯ୍ୟ-ଜ୍ଞାନ ନାହି,—ନିଜ ସମ୍ବନ୍ଧ-ମନନ ॥
ବ୍ରଜଲୋକେର ଭାବେ ଯେଇ କରୟେ ଭଜନ ।
ସେଇ ଜନ ପାୟ ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ।୧୨୧।

୧୦ମ ଶ୍ଲୋକ ଅନ୍ୱୟ ମଧ୍ୟ: ୮ମ ପରି: ୪୮ ଶ୍ଲୋକ ।

ପ୍ରଳୟପୟୋଧିସ୍ଥ ଶ୍ରୀମନ୍ ନାରାୟଣଙ୍କୁ ଶ୍ରୁତିମାନେ ସ୍ତୁତିଦ୍ୱାରା କହୁଅଛନ୍ତି । ହେ ପ୍ରଭୋ ! ପ୍ରାଣ, ମନ ଓ ଇନ୍ଦ୍ରିୟଗଣ ସଂଯମପୂର୍ବକ ଦୃଢ଼ ଯୋଗଯୁକ୍ତ ମୁନିଗଣ ଯେଉଁ ତତ୍ତ୍ୱ (ଆପଣଙ୍କ ଆବିର୍ଭାବ ବିଶେଷ ବ୍ରହ୍ମାଖ୍ୟତତ୍ତ୍ୱ) ହୃଦୟରେ ଉପାସନା କରନ୍ତି ଅରିମାନେ ଆପଣଙ୍କୁ ଶତ୍ରୁଭାବରେ ସ୍ମରଣ କରିବାଦ୍ୱାରା ତାହାହିଁ ପାଇଅଛନ୍ତି (ବ୍ରହ୍ମସାଯୁଜ୍ୟ ପ୍ରାପ୍ତ ହୋଇଅଛନ୍ତି) ଏବଂ ବଧ ଆପଣଙ୍କର ସର୍ପଦେହାକୃତି ଭୁଜଦଣ୍ଡରେ ଅତିଶୟ ଆସକ୍ତଚିତ୍ତ ଶ୍ରୀରାଧାଦିଗୋପୀମାନେ ଆପଣଙ୍କର ପୂର୍ଣ୍ଣମାଧୁର୍ଯ୍ୟ ସାକ୍ଷାତ୍ ବକ୍ଷଃସ୍ଥଳରେ ଭଜନ କରନ୍ତି । ଶ୍ରୁତ୍ୟଭିମାନୀ ଦେବତା ଆମ୍ଭେମାନେ ଏହି ଦେହରେ ତାହା ପ୍ରାପ୍ତିର ଅଯୋଗ୍ୟ ହେଲେହେଁ ନନ୍ଦ ଗୋପରେ ଗୋପୀଜନ୍ମ ପ୍ରାପ୍ତି-ପୂର୍ବକ କାମବ୍ୟୂହରେ ସେମାନଙ୍କର ( ଶ୍ରୀରାଧାଦିଙ୍କର ) ସଦୃଶ ହୋଇ ସେମାନଙ୍କ ଭାବର ଅନୁଗମନପୂର୍ବକ ଆପଣଙ୍କର ପୂର୍ଣ୍ଣମାଧୁର୍ଯ୍ୟ ଅନୁଭବ କରୁଁ । ୧୦ମ ଶ୍ଲୋକାର୍ଥ ।

ଶ୍ରୁତି କି ନିମିତ୍ତ ଶ୍ରୀକୃଷ୍ଣଙ୍କର ରାସାଦିବିଳାସ ଲାଭକଲେ, ଏବଂ ଲକ୍ଷ୍ମୀ ତାହା ନ ପାଇଲେ କାହିଁକି ? ଏହିପ୍ରଶ୍ନ ମହାପ୍ରଭୁ କରନ୍ତେ ଭଟ୍ଟମହାଶୟ କହିଲେ ଯେ, ମୁଁ ଜୀବାଧମ ମୋର କ୍ଷୁଦ୍ରବୁଦ୍ଧିରେ କୋଟିସମୁଦ୍ରଗମ୍ଭୀର ଶ୍ରୀକୃଷ୍ଣଲୀଳା କିଛି ବୁଝିପାରୁନାହିଁ । ଆପଣ ସ୍ୱୟଂ ଶ୍ରୀକୃଷ୍ଣ ନିଜଲୀଳାର ମର୍ମ ଯଦି କୃପାକରି ବୁଝାଇବେ, ମୁଁ ବୁଝିବି । ୧୧୪।୧୧୫।୧୧୬ ।

ଭଟ୍ଟଙ୍କର ଉପରୋକ୍ତ କଥା ଶୁଣି ଶ୍ରୀମାନ୍ ମହାପ୍ରଭୁ କହିଲେ ଯେ, ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ନିଜର ରୂପ ମାଧୁର୍ଯ୍ୟଦ୍ୱାରା ସମସ୍ତଙ୍କର ଚିତ୍ତ ଆକର୍ଷଣ କରନ୍ତି । ଏହା ତାଙ୍କର ଗୋଟିଏ ଅସାଧାରଣ ଗୁଣ । ଏହି ବ୍ରଜେନ୍ଦ୍ରନନ୍ଦନଙ୍କର ଶ୍ରୀଚରଣ ଶ୍ରୀବ୍ରଜବାସୀମାନଙ୍କର ଭାବଦ୍ୱାରା ଲଭ୍ୟ ହୁଏ, ବ୍ରଜବାସୀମାନେ ତାହାଙ୍କୁ ଭଗବାନ୍ ବୋଲି ଜାଣନ୍ତି ନାହିଁ । ସୁତରାଂ ଜନନୀ ତାଙ୍କୁ ବାତ୍ସଲ୍ୟରେ ପୁତ୍ରଜ୍ଞାନକରି ଉଦୂଖଳରେ ବାନ୍ଧନ୍ତି । ବାଳକମାନେ ସଖାଜ୍ଞାନରେ ତାଙ୍କ କାନ୍ଧରେ ଚଢ଼ନ୍ତି । ବ୍ରଜବାସୀମାନେ ଶ୍ରୀକୃଷ୍ଣଙ୍କ ସହିତ ଏହିପରି ସମ୍ବନ୍ଧ ବ୍ୟବହାର କରନ୍ତି ଏବଂ ତାଙ୍କୁ ସେମାନେ ବ୍ରଜରାଜ ଶ୍ରୀନନ୍ଦଙ୍କର ପୁତ୍ର ବୋଲି କେବଳ ଜାଣନ୍ତି ଏବଂ ସେହି ଜ୍ଞାନରେ ତାଙ୍କ ସହିତ

ତଥାହି ( ଭାଃ ୧୦।୪୭।୨୧ )—

ନାୟଂ ସୁଖାପୋ ଭଗବାନ ଦେହିନାଂ
ଗୋପୀକାସୁତଃ ।
ଜ୍ଞାନିନାଂ ଚାତ୍ମଭୂତାନାଂ ଯଥା ଭକ୍ତିମତାମିହ ।୨୧।

ଶ୍ରୁତିସବ ଗୋପୀଗଣେର ଅନୁଗତ ହୈଞା ।
ବ୍ରଜେଶ୍ୱରୀସୁତ ଭଜେ ଗୋପୀଭାବ ଲୈଞା । ୨୨।
ବ୍ୟୂହାନ୍ତରେ ଗୋପୀଦେହ ବ୍ରଜେ ଯବେ ପାଇଲ ।
ସେଇ ଦେହେ କୃଷ୍ଣ ସଙ୍ଗେ ରାସକ୍ରୀଡ଼ା କୈଲ ॥
ଗୋପଜାତି କୃଷ୍ଣ— ଗୋପୀ ପ୍ରେୟସୀ ତାଁହାର ।
ଦେବୀ ବା ଅନ୍ୟ ସ୍ତ୍ରୀ କୃଷ୍ଣ ନା କରେ ଅଙ୍ଗୀକାର ।
ଲକ୍ଷ୍ମୀ ଚାହେ ସେଇ ଦେହେ କୃଷ୍ଣେର ସଙ୍ଗମ ।
ଗୋପୀକା ଅନୁଗା ହୈଞା ନା କୈଲ ଭଜନ ।୧୨୩।
ଅନ୍ୟ ଦେହେ ନା ପାଇୟେ ରାସବିଲାସ ।
ଅତଏବ 'ନାୟଂ' ଶ୍ଳୋକ କହେ ବେଦବ୍ୟାସ ।

---

ସମ୍ବନ୍ଧ ସ୍ୱୀକାର କରନ୍ତି । ଶ୍ରୀକୃଷ୍ଣଙ୍କର ଯେ, ଐଶ୍ୱର୍ଯ୍ୟ ଅଛି ଏ କଥା ସେମାନେ ସ୍ୱୀକାର କରନ୍ତି ନାହିଁ, ଯେ କେବଳ ଏହିପରି ବ୍ରଜଜନମାନଙ୍କର କୌଣସି ଭାବର ଅନୁଗମନରେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି ସେ ପରିଣାମରେ ଶ୍ରୀବୃନ୍ଦାବନରେ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କ ସେବା ଲାଭ କରନ୍ତି । ଏତଦ୍-ବ୍ୟତୀତ ଅନ୍ୟ କୌଣସି ଭଜନପ୍ରଣାଳୀଦ୍ୱାରା ଶ୍ରୀବ୍ରଜସେବା ଲାଭ ହୁଏ ନାହିଁ । ୧୧୭।୧୨୧ ।

୧୨୧ଶ ଶ୍ଳୋକର ଅନ୍ୱୟ—ମଧ୍ୟ ୮ମ ପରିଚ୍ଛେଦ ୪୯ଶ ଶ୍ଳୋକ ଦେଖ ।

ଶ୍ରୀଶୁକଦେବଗୋସ୍ୱାମୀ ଶ୍ରୀପରୀକ୍ଷିତଙ୍କୁ କହୁଅଛନ୍ତି :— ଏହି ଗୋପୀକାସୁତ (ଯଶୋଦା-ନନ୍ଦନ) ଭଗବାନ୍ (ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ) ଶ୍ରୀଯଶୋଦାନନ୍ଦନରୂପରେ ତାଙ୍କୁ ଯେଉଁମାନେ ଭଜନ କରନ୍ତି ସେପ୍ରକାର ଭକ୍ତମାନଙ୍କର ଯେପରି ସୁଖଲଭ୍ୟ ଦେହାଭିମାନୀ ତାପସମାନଙ୍କର ନିବୃତ୍ତାଭିମାନୀ ଜ୍ଞାନୀମାନଙ୍କର କିମ୍ବା ଅହଂଜ୍ଞାନୀମାନଙ୍କର ସେପରି ସୁଖଲଭ୍ୟ ନୁହନ୍ତି ।

ଏହାର ତାତ୍ପର୍ଯ୍ୟ ଏହି ଯେ, ବ୍ରଜବଲ୍ଲଭଙ୍କର ଅନୁରାଗୀ ଭକ୍ତମାନଙ୍କ ପକ୍ଷରେ ବ୍ରଜରାଜ-ନନ୍ଦନ ଅଖିଳରସାମୃତମୂର୍ତ୍ତି ଶ୍ରୀକୃଷ୍ଣ ଯେପରି ସୁଲଭ୍ୟ ଓ ସୁଖସେବ୍ୟ, ସେପରି କର୍ମଯୋଗୀ ଓ ଜ୍ଞାନୀମାନଙ୍କର ଏପରିକି ବିଧିମାର୍ଗ ଭକ୍ତମାନଙ୍କ ପକ୍ଷରେ ସୁଦ୍ଧା ସୁଖଲଭ୍ୟ ଓ ସୁଖସେବ୍ୟ ନୁହନ୍ତି । ତେବେ ଏ ଜାତୀୟ ବ୍ୟକ୍ତିମାନେ ଯଦି ସୌଭାଗ୍ୟବଶତଃ ପୂର୍ବୋକ୍ତ ଭକ୍ତମାନଙ୍କର ସଙ୍ଗଲାଭ କରି ସେମାନଙ୍କର ଭଜନପ୍ରଣାଳୀର ଅନୁସରଣ କରନ୍ତି ତେବେ କ୍ରମେ ଭଜନବୃତ୍ତି ଅନୁଯାୟୀ ଶ୍ରୀକୃଷ୍ଣ ସେମାନଙ୍କର ସୁଖଲଭ୍ୟ ଓ ସୁଖସେବ୍ୟ ହୁଅନ୍ତି । ୧୨୧ଶ ଶ୍ଳୋକାର୍ଥ ।

ଶ୍ରୀମନ୍ମହାପ୍ରଭୁ କହିଲେ ଉପରୋକ୍ତ କାରଣରୁ ଶ୍ରୁତିମାନେ ଶ୍ରୀଗୋପୀମାନଙ୍କର ଅନୁଗତ ହୋଇ ସେହି ଭାବରେ ଆତ୍ମମନ ଭାବିତ କରି ଶ୍ରୀଯଶୋଦାନନ୍ଦନଙ୍କର ଭଜନ କଲେ ଓ ଦେହାନ୍ତରରେ ଗୋପୀଦେହ ପ୍ରାପ୍ତ ହୋଇ ଶ୍ରୀକୃଷ୍ଣଙ୍କ ରାସକ୍ରୀଡ଼ା ସଙ୍ଗସୁଖ ଲାଭ କଲେ । ଏହାର କାରଣ ଏହି ଯେ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଗୋପଜାତି ସୁତରାଂ ତାହାଙ୍କର ପ୍ରେୟସୀମାନେ ଗୋପୀ, ତେଣୁ ସେ ଦେବୀ କିମ୍ବା ଅନ୍ୟ ଜାତୀୟ ସ୍ତ୍ରୀ ଗ୍ରହଣ କରନ୍ତି ନାହିଁ, ଲକ୍ଷ୍ମୀଠାକୁରାଣୀ ନିଜର ଦେବୀ ଦେହରେ ଗୋପ ଶ୍ରୀକୃଷ୍ଣଙ୍କର ରାସସଙ୍ଗମସୁଖ ବାଞ୍ଛା କରି ତପସ୍ୟା କଲେ । ଗୋପୀଭାବ ଅନୁଗା ହୋଇ ଭଜନ କଲେ ନାହିଁ । ସୁତରାଂ ଗୋପୀଦେହ ପାଇଲେ ନାହିଁ, ଗୋପୀଦେହ ବ୍ୟତୀତ ଅନ୍ୟ ଦେହରେ ଯଶୋଦାନନ୍ଦନଙ୍କର ପ୍ରେୟସୀତ୍ୱ ଲାଭ ହୁଏ ନାହିଁ, ଏହି ହେତୁ ଶ୍ରୀବ୍ୟାସଦେବ ଉପରୋକ୍ତ "ନାୟଂ" ଶ୍ଳୋକ ଲେଖିଅଛନ୍ତି । ୧୨୨ରୁ ୧୨୬ ।

ପୂର୍ବେ ଭଟ୍ଟେର ମନେ ଏକ ଛିଲ ଅଭିମାନ — ।
ଶ୍ରୀନାରାୟଣ ହୟେନ—ସ୍ୱୟଂ ଭଗବାନ୍ ।୧୨୭।
ତାଁହାର ଭଜନ ସର୍ବୋପରି କକ୍ଷା ହୟ ।
ଶ୍ରୀବୈଷ୍ଣବଭଜନ ଏଇ ସର୍ବୋପରି ହୟ ।୧୨୮।
ଏଇ ତାଁର ଗର୍ବ ପ୍ରଭୁ କରିତେ ଖଣ୍ଡନ ।
ପରିହାସଦ୍ୱାରେ ଉଠାୟ ଏତେକ ବଚନ ।୧୨୯।
ପ୍ରଭୁ କହେ—ଭଟ୍ଟ ! ତୁମି ନା କର ସଂଶୟ ।
ସ୍ୱୟଂ ଭଗବାନ୍ କୃଷ୍ଣ ଏଇ ତ ନିଶ୍ଚୟ ।୧୩୦।
କୃଷ୍ଣେର ବିଳାସମୂର୍ତ୍ତି—ଶ୍ରୀନାରାୟଣ ।
ଅତଏବ ଲକ୍ଷ୍ମୀ-ଆଦ୍ୟେର ହରେ ତେହେଁ। ମନ ।

ତଥାହି ( ଭାଃ ୧।୩।୨୮ ) —

ଏତେଚାଂଶକଲାଃ ପୁଂସ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରାରିବ୍ୟାକୁଲଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ ।୧୨।

ନାରାୟଣ ହୈତେ କୃଷ୍ଣେର ଅସାଧାରଣ ଗୁଣ ।
ଅତଏବ ଲକ୍ଷ୍ମୀର କୃଷ୍ଣେ ତୃଷ୍ଣା ଅନୁକ୍ଷଣ ।୧୩୨।
ତୁମି ଯେ ପଢ଼ିଲେ ଶ୍ଲୋକ — ସେଇ ପରମାଣ ।
ସେଇ ଶ୍ଲୋକେ ଆଇସେ କୃଷ୍ଣ ସ୍ୱୟଂ ଭଗବାନ୍ ।

ତଥାହି ଭକ୍ତିରସାମୃତସିନ୍ଧୌ, ପୂର୍ବବିଭାଗେ,
ଦ୍ୱିତୀୟ ଲହର୍ଯ୍ୟାମ୍ ( ୧୨ )—

ସିଦ୍ଧାନ୍ତତସ୍ତ୍ୱଭେଦେଽପି ଶ୍ରୀଶକୃଷ୍ଣସ୍ୱରୂପୟୋଃ ।
ରସେନୋତ୍କୃଷ୍ୟତେ କୃଷ୍ଣରୂପମେଷା ରସସ୍ଥିତିଃ ।୧୩।

ସ୍ୱୟଂ ଭଗବତ୍ତ୍ୱେ କୃଷ୍ଣ ହରେ ଲକ୍ଷ୍ମୀର ମନ ।
ଗୋପିକାର ମନ ହରିତେ ନାରେ ନାରାୟଣ ।
ନାରାୟଣେର କା କଥା—ଶ୍ରୀକୃଷ୍ଣ ଆପନେ ।
ଗୋପିକାରେ ହାସ୍ୟ କରିତେ ହୟ ନାରାୟଣେ ।
ଚତୁର୍ଭୁଜମୂର୍ତ୍ତି ଦେଖାୟ ଗୋପୀଗଣ ଆଗେ ।
ସେଇ କୃଷ୍ଣେ ଗୋପିକାର ନହେ ଅନୁରାଗେ ।

---

ସର୍ବୋପରି କକ୍ଷା—ଶ୍ରୀନାରାୟଣ ଭଜନ ଶ୍ରୀକୃଷ୍ଣାଦି ସମସ୍ତଙ୍କର ଭଜନ ଅପେକ୍ଷା ଶ୍ରେଷ୍ଠ । ଅତଏବ ଶ୍ରୀସମ୍ପ୍ରଦାୟୀ ବୈଷ୍ଣବମାନଙ୍କର ଭଜନହିଁ ସର୍ବଶ୍ରେଷ୍ଠ ଭଜନ; ଏହାହିଁ ଭଟ୍ଟ-ମହାଶୟଙ୍କ ଧାରଣା ଥିଲା । ୧୨୮ ।

ତେହେଁ।—ଶ୍ରୀକୃଷ୍ଣ । ୧୩୧ ।

୧୨ ଶ୍ଲୋକର ଅନ୍ୱୟ ଆଦି ଦ୍ୱିତୀୟ ପରିଚ୍ଛେଦ ୧୩ଶ ଶ୍ଲୋକରେ ଦେଖ ।

ଶ୍ରୀ ସୂତ କହୁଅଛନ୍ତି, ପୂର୍ବକଥିତ ଉକ୍ତ ଓ ଅନୁକ୍ତ ଅବତାରମାନେ ପରମେଶ୍ୱରଙ୍କର ଅଂଶ ଓ ବିଭୂତି । କିନ୍ତୁ ପୂର୍ବକଥିତ ବଂଶଧର ଶ୍ରୀକୃଷ୍ଣ ସ୍ୱୟଂ ବା ନିଜେ ଭଗବାନ୍ ବା ପରମେଶ୍ୱର ଅଟନ୍ତି । ଉକ୍ତ ଅବତାରମାନେ ଦୈତ୍ୟମାନଙ୍କଦ୍ୱାରା ଉପଦ୍ରୁତ ସଂସାରକୁ ଯୁଗେ ଯୁଗେ ସୁଖୀ କରନ୍ତି । ୧୨ଶ ଶ୍ଲୋକାର୍ଥ ।

ଶ୍ରୀ ନାରାୟଣଙ୍କଠାରେ ଯେଉଁସବୁ ଗୁଣ ଅଛି ଶ୍ରୀକୃଷ୍ଣଙ୍କଠାରେ ସେହି ସମସ୍ତ ଗୁଣ ଅଛି । କିନ୍ତୁ ଶ୍ରୀନାରାୟଣଙ୍କଠାରେ ଯେଉଁ ଗୁଣ ନାହିଁ, ତାହା ଶ୍ରୀକୃଷ୍ଣଙ୍କଠାରେ ଅତିରିକ୍ତରୂପରେ ଅଛି । ଏଣୁ ତାହା ଅସାଧାରଣ, ସେହି ଗୁଣଚତୁଷ୍ଟୟ ( ୧ ରୂପମାଧୁର୍ଯ୍ୟ ୨ ଲୀଳାମାଧୁର୍ଯ୍ୟ, ୩ ବଂଶୀମାଧୁର୍ଯ୍ୟ, ୪ ପ୍ରେମମାଧୁର୍ଯ୍ୟ ) ଶ୍ରୀନାରାୟଣଙ୍କଠାରେ ନ ଥିବାରୁ ଶ୍ରୀଲକ୍ଷ୍ମୀଠାକୁରାଣୀ ଏହି ଗୁଣ-ଦ୍ୱାରା ଆକୃଷ୍ଟ ହୋଇ ସର୍ବଦା ଶ୍ରୀକୃଷ୍ଣଙ୍କ ସଙ୍ଗସୁଖ ସକାଶେ ଲାଳାୟିତ ହୁଅନ୍ତି । ଭଟ୍ଟମହାଶୟ ! ଆପଣ "ସିଦ୍ଧାନ୍ତତଃ" ବୋଲି ଯେଉଁ ଶ୍ଲୋକ ପାଠ କଲେ, ତଦ୍ଦ୍ୱାରା ମଧ୍ୟ ଶ୍ରୀକୃଷ୍ଣ ଯେ ସ୍ୱୟଂ ଭଗବାନ୍ ଏହା ପ୍ରମାଣିତ ହୋଇଅଛି; ଅର୍ଥାତ୍ ଶ୍ରୀକୃଷ୍ଣରୂପ ମୂଳରୂପ ହେତୁ ଶ୍ରୀନାରାୟଣଙ୍କ ଅପେକ୍ଷା ରସର ଉତ୍କର୍ଷତା ସେଥିରେ ବିଦ୍ୟମାନ । ଏହି ହେତୁ ଅର୍ଥାତ୍ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ବା ମୂଳରୂପ ହେତୁ ତାହାଙ୍କର ବିଳାସ ମୂର୍ତ୍ତି ଶ୍ରୀନାରାୟଣଙ୍କ ପ୍ରିୟା ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କର ମନ ହରଣ କରନ୍ତି । ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରିୟା ଗୋପୀମାନଙ୍କର ମନ ଶ୍ରୀନାରାୟଣ ହରଣ କରିପାରନ୍ତି ନାହିଁ । ବିଳାସ

ତଥାହି ଲଲିତମାଧବେ ( ୬।୧୪ ) —

ଗୋପୀନାଂ ପଶୁପେନ୍ଦ୍ରନନ୍ଦନଜୁଷୋ ଭାବସ୍ୟ
କସ୍ତାଂ କୃତୀ
ବିଜ୍ଞାତୁଂ କ୍ଷମତେ ଦୁରୂହପଦବୀସଞ୍ଚାରିଣଃ ପ୍ରକ୍ରିୟାମ୍
ଆବିଷ୍କୁର୍ବତି ବୈଷ୍ଣବୀମପି ତନୁଂ ତସ୍ମିନ୍
ଭୁଜୈର୍ଜିଷ୍ଣୁଭି-
ର୍ଯାସାଂ ହନ୍ତ ଚତୁର୍ଭିରଦ୍ଭୁତରୁଚିଂ ରାଗୋଦୟଃ
କୁଞ୍ଚତି । ୧୪ ।

ଏତ କହି ପ୍ରଭୁ ତାର ଗର୍ବ ଚୂର୍ଣ୍ଣ କରିୟା ।
ତାରେ ସୁଖ ଦିତେ କହେ ସିଦ୍ଧାନ୍ତ ଫିରାଇୟା ।
ଦୁଃଖ ନା ମାନିହ ଭଟ୍ଟ ! କୈଲ ପରିହାସ ।
ଶାସ୍ତ୍ରସିଦ୍ଧାନ୍ତ ଶୁନ ଯାତେ ବୈଷ୍ଣବବିଶ୍ୱାସ ।୧୩୮।
କୃଷ୍ଣ-ନାରାୟଣ ଯୈଛେ ଏକଇ ସ୍ୱରୂପ ।
ଗୋପୀ-ଲକ୍ଷ୍ମୀ ଭେଦ ନାହିଁ, ହୟ ଏକରୂପ ।୧୩୯।
ଗୋପୀଦ୍ୱାରା ଲକ୍ଷ୍ମୀ କରେ କୃଷ୍ଣସଙ୍ଗାସ୍ୱାଦ ।
ଈଶ୍ୱରତ୍ୱେ ଭେଦ ମାନିଲେ ହୟ ଅପରାଧ ।୧୪୦।
ଏକଇ ଈଶ୍ୱର ଭକ୍ତେର ଧ୍ୟାନ-ଅନୁରୂପ ।
ଏକଇ ବିଗ୍ରହେ କରେ ନାନାକାର-ରୂପ ।୧୪୧।

ମୂର୍ତ୍ତି ଶ୍ରୀନାରାୟଣଙ୍କ କଥା ଦୂରେରହୁ ସ୍ୱୟଂରୂପୀ ଶ୍ରୀକୃଷ୍ଣ କୌତୁକରେ ଚତୁର୍ଭୁଜ ନାରାୟଣମୂର୍ତ୍ତି ଧାରଣ କଲେ ଗୋପୀମାନେ ସେ ରୂପରେ ଅନୁରକ୍ତ ହୁଅନ୍ତି ନାହିଁ । ୧୩୨ରୁ୧୩୭ ।

୧୩ଶ ଶ୍ଳୋକର ଅନ୍ୱୟ ଏହି ପରିଚ୍ଛେଦର ୮ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ସିଦ୍ଧାନ୍ତଦ୍ୱାରା ଶ୍ରୀ ନାରାୟଣ ଏବଂ ଶ୍ରୀକୃଷ୍ଣଙ୍କର ସ୍ୱରୂପତଃ କିଛି ଭେଦ ନାହିଁ । ତଥାପି କେବଳ ପ୍ରେମମୟ ରସଦ୍ୱାରା ଶ୍ରୀକୃଷ୍ଣଙ୍କର ଉତ୍କୃଷ୍ଟତା ଲକ୍ଷିତ ହୁଏ, ଯେହେତୁ ରସର ଏହି ପ୍ରକାର ସ୍ୱଭାବ ଯେ, ତାହା ଶ୍ରୀକୃଷ୍ଣରୂପକୁ ସର୍ବୋତ୍କୃଷ୍ଟରୂପରେ ପ୍ରଦର୍ଶନ କରାଏ । ୮ମ ଶ୍ଳୋକାର୍ଥ ।

୧୪ଶ ଶ୍ଳୋକର ଅନ୍ୱୟ ଆଦି ୧୭ ପରିଚ୍ଛେଦ ୮ମ ଶ୍ଳୋକର ଦ୍ରଷ୍ଟବ୍ୟ ।

ଦୂର୍ଯ୍ୟପତ୍ନୀ ସୁବର୍ଣ୍ଣାଙ୍କ ପ୍ରତି ବିଶାଖା କହୁଅଛନ୍ତି ।

ଶ୍ରୀ ବ୍ରଜଦେବୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଯେ ଦୁରାରୋହ ଭାବ, ତାହା କେଉଁ ପଣ୍ଡିତ ବ୍ୟକ୍ତି ବା ବୁଝିବାକୁ ସମର୍ଥ, ଅର୍ଥାତ୍ ସେ ଭାବ ଅନ୍ୟ କାହାର ବୋଧଗମ୍ୟ ନୁହେ । ଆଶ୍ଚର୍ଯ୍ୟ ବିଷୟ ଏହି ଯେ, ଶ୍ରୀକୃଷ୍ଣ ଯଦି ଗୋପୀମାନଙ୍କ ସହିତ ପରିହାସାର୍ଥ ଚତୁର୍ଭୁଜ ନାରାୟଣମୂର୍ତ୍ତି ଧାରଣ କରନ୍ତି, ତାହା ଦେଖି ଗୋପୀମାନଙ୍କର ରସୋଲ୍ଲାସ କୁଞ୍ଚିତ ହୁଏ । ୧୪ଶ ଶ୍ଳୋକାର୍ଥ ।

ଉପରୋକ୍ତ ୧୨୭।୧୨୮ ପୟାରରେ କୁହା ହୋଇଅଛି ଯେ, ଭଟ୍ଟମହାଶୟଙ୍କର ଧାରଣା ଥିଲା, ନାରାୟଣହିଁ ସ୍ୱୟଂ ଭଗବାନ୍ ବା ସର୍ବଶ୍ରେଷ୍ଠ ସାଧ୍ୟତତ୍ତ୍ୱ ଏବଂ ଶ୍ରୀକୃଷ୍ଣ ପ୍ରଭୃତି ସମସ୍ତେ ତାହାଙ୍କର ଅବତାର । ଅତଏବ ଶ୍ରୀସମ୍ପ୍ରଦାୟୀ ଶ୍ରୀଲକ୍ଷ୍ମୀନାରାୟଣ ଭଜନପ୍ରଣାଳୀହିଁ ସର୍ବଶ୍ରେଷ୍ଠ ସାଧନ, ଏହାହିଁ ତାହାଙ୍କର ଗର୍ବର ବିଷୟ । ଶ୍ରୀମାନ୍ ମହାପ୍ରଭୁ ଉପରୋକ୍ତ ସିଦ୍ଧାନ୍ତଦ୍ୱାରା ଦେଖାଇଲେ ଯେ, ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣହିଁ ସ୍ୱୟଂ ଭଗବାନ୍ ଓ ଶ୍ରୀ ନାରାୟଣ ତାହାଙ୍କର ବିଳାସମୂର୍ତ୍ତି । ଶ୍ରୀଗୋପୀମାନଙ୍କର ରାଗାନୁଗା ଭଜନହିଁ ଶ୍ରେଷ୍ଠ ସାଧନ । ଏହି ସିଦ୍ଧାନ୍ତଦ୍ୱାରା ଭଟ୍ଟମହାଶୟଙ୍କର ଶ୍ରୀଲକ୍ଷ୍ମୀନାରାୟଣଙ୍କ ଭଜନର ଶ୍ରେଷ୍ଠତାରୂପ ଗର୍ବ ଚୂର୍ଣ୍ଣ ହେଲା । କିନ୍ତୁ ପରମକୃପାମୟ ଶ୍ରୀମନ୍ ମହାପ୍ରଭୁ ଭଟ୍ଟଙ୍କର ଭ୍ରାନ୍ତମତ କ୍ଷାଳନ କରିବାରୁ ଭଟ୍ଟଙ୍କ ମନରେ ଯେଉଁ ଦୁଃଖ ହୋଇଥିଲା ତାହା ଦୂର କରି ତାହାଙ୍କୁ ସୁଖୀ କରିବା ନିମିତ୍ତେ ସାଧ୍ୟସାଧନସିଦ୍ଧାନ୍ତ ଘୁରାଇ କହିଲେ । ଭଟ୍ଟମହାଶୟ ! ମନରେ କିଛି ଦୁଃଖ କରନା, ମୁଁ ଏତାବତ୍‌କାଳ ବନ୍ଧୁଭାବରେ ଆପଣଙ୍କ ସଙ୍ଗରେ ପରିହାସ କରୁଥିଲି, ବୈଷ୍ଣବମାନେ ଯେଉଁ ଈଶ୍ୱରତତ୍ତ୍ୱସିଦ୍ଧାନ୍ତକୁ ବିଶ୍ୱାସ କରନ୍ତି, ସେହି ସିଦ୍ଧାନ୍ତ କହୁଅଛି ଶୁଣ । ଶ୍ରୀକୃଷ୍ଣ ଓ ଶ୍ରୀନାରାୟଣ ଯେପରି ତତ୍ତ୍ୱତଃ ଅଭେଦ, ସେହିପରି ଗୋପୀ ଓ ଲକ୍ଷ୍ମୀ ଅଭେଦତତ୍ତ୍ୱ ।

ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ,
ନାରଦପଞ୍ଚରାତ୍ରବଚନମ୍ ( ୩।୮୭ )—

ମଣିର୍ଯଥା ବିଭାଗେନ ନୀଳପୀତାଦିଭିର୍ଯୁତଃ ।
ରୂପଭେଦମବାପ୍ନୋତି ଧ୍ୟାନଭେଦା-
ତ୍ତଥାଚ୍ୟୁତଃ । ୧୫ ।

ଭଟ୍ଟ କହେ—କାହିଁ ମୁଞି ଜୀବ ପାମର ।
କାହିଁ ତୁମି ସେଇ କୃଷ୍ଣ ସାକ୍ଷାତ୍ ଈଶ୍ୱର ।୧୪୨॥
ଅଗାଧ ଈଶ୍ୱରଲୀଳା କିଛୁ ନାହିଁ ଜାନି ।
ତୁମି ଯେଇ କହ, ସେଇ ସତ୍ୟ କରି ମାନି ।୧୪୩।
ମୋରେ ପୂର୍ଣ୍ଣ କୃପା କୈଲ ଲକ୍ଷ୍ମୀନାରାୟଣ ।
ତାଁର କୃପାୟ ପାଇଲୁ ତୋମାର ଚରଣ ଦର୍ଶନ ॥
କୃପା କରି କହିଲେ ମୋରେ କୃଷ୍ଣେର ମହିମା ।
ଯାଁର ରୂପ-ଗୁଣୈଶ୍ୱର୍ଯ୍ୟେର କେହୋ ନାପାୟ ସୀମା ।
ଏବେ ସେ ଜାନିଲ କୃଷ୍ଣଭକ୍ତି ସର୍ବୋପରି ।
କୃତାର୍ଥ କରିଲେ ମୋରେ କହି କୃପା କରି ॥
ଏତ ବଲି ଭଟ୍ଟ ପଡ଼େ ପ୍ରଭୁର ଚରଣେ ।
କୃପା କରି ପ୍ରଭୁ ତାଁରେ କୈଲ ଆଲିଙ୍ଗନେ ।
ଚାତୁର୍ମାସ୍ୟ ପୂର୍ଣ୍ଣ ହୈଲ, ଭଟ୍ଟେର ଆଜ୍ଞା ଲଞା ।
ଦକ୍ଷିଣ ଚଲିଲା ପ୍ରଭୁ ଶ୍ରୀରଙ୍ଗ ଦେଖିୟା । ୧୪୮ ।
ସଙ୍ଗେତେ ଚଲିଲା ଭଟ୍ଟ—ନା ଯାୟ ଭବନେ ।
ତାଁରେ ବିଦାୟ ଦିଲ ପ୍ରଭୁ ଅନେକ ଯତନେ ।
ପ୍ରଭୁର ବିଚ୍ଛେଦେ ଭଟ୍ଟ ହୈଲ ଅଚେତନ ।
ଏଇ ରଙ୍ଗଲୀଲା କରେ ଶ୍ରୀଶଚୀନନ୍ଦନ ।୧୫୦।
ଋଷଭ-ପର୍ବତ ଚଲି ଆଇଲା ଗୌରହରି ।
ନାରାୟଣ ଦେଖି ତାଁହା ସ୍ତୁତି-ନତି କରି ।
'ପରମାନନ୍ଦପୁରୀ ତାହାଁ ରହେ ଚତୁର୍ମାସ ।'
ଶୁନି ମହାପ୍ରଭୁ ଗେଲ ପୁରୀଗୋସାଞି ପାଶ ।
ପୁରୀଗୋସାଞିର ପ୍ରଭୁ କୈଲ ଚରଣବନ୍ଦନ ।
ପ୍ରେମେ ପୁରୀଗୋସାଞି ତାଁରେ କୈଲ ଆଲିଙ୍ଗନ ।
ତିନଦିନ ପ୍ରେମେ ଦୋହେଁ କୃଷ୍ଣକଥା-ରଙ୍ଗେ ।
ସେଇ ବିପ୍ର ଘରେ ଦୋଁହେ ରହେ ଏକସଙ୍ଗେ ।
ପୁରୀଗୋସାଞି କହେ—ଆମି ଯାବ ପୁରୁଷୋତ୍ତମେ ।
ପୁରୁଷୋତ୍ତମ ଦେଖି ଗୌଡ଼େ ଯାବ ଗଙ୍ଗାସ୍ନାନେ ।
ପ୍ରଭୁ କହେ—ତୁମି ପୁନ ଆଇସ ନୀଳାଚଲେ ।
ଆମି ସେତୁବନ୍ଧ ହୈତେ ଆସିବ ଅଲ୍ପକାଲେ ।
'ତୋମାର ନିକଟେ ରହି ହେନ ବାଞ୍ଛା ହୟ ।
ନୀଳାଚଲେ ଆସିବେ ମୋରେ ହଇୟା ସଦୟ' ।
ଏତ ବଲି ତାର ଠାଞି ଏଇ ଆଜ୍ଞା ଲଞା ।
ଦକ୍ଷିଣେ ଚଲିଲା ପ୍ରଭୁ ହରଷିତ ହୟା ।

ଅଚ୍ୟୁତୋ ଭଗବାନ୍ ତଥା—ତେନପ୍ରକାରେଣ ଧ୍ୟାନଭେଦାତ୍ ରୂପଭେଦଂ ନାନାରୂପମବାପ୍ନୋତି ସନ୍ଦର୍ଶନୀୟୋଭବତୀତ୍ୟର୍ଥଃ । ଯଥା—ଯେନ ପ୍ରକାରେଣ, ମଣିଃ—ବୈଦୁର୍ଯ୍ୟଃ, ବିଭାଗେନ—ପୃଥକ୍ପୃଥକ୍ ରୂପେଣ ନୀଳପୀତାଦିଭିଃ ନାନାବର୍ଣ୍ଣୈଃ ଯୁତୋଭବତି ତଦ୍ଵଦିତ୍ୟର୍ଥଃ । ୧୫ଶ ଶ୍ଳୋକ ।

ଅତଏବ ଶ୍ରୀଲକ୍ଷ୍ମୀଠାକୁରାଣୀ ନିଜରୂପରେ ଶ୍ରୀକୃଷ୍ଣ ସଙ୍ଗସୁଖ ନ ପାଇ ସ୍ୱୀୟ ଅଭେଦ ତତ୍ତ୍ୱ ଗୋପୀମାନଙ୍କଦ୍ୱାରା ତାହା ଆସ୍ୱାଦ କରନ୍ତି । ଏଣୁ ଅଭେଦ ଈଶ୍ୱରତତ୍ତ୍ୱରେ ଭେଦଜ୍ଞାନ କଲେ ଅପରାଧୀ ହେବାକୁ ହୁଏ । ଈଶ୍ୱର ଏକ ହେଲେହେଁ ଭକ୍ତମାନଙ୍କର ଧ୍ୟାନାନୁରୂପ ନାନାପ୍ରକାର ବିଗ୍ରହ ଆବିଷ୍କାର କରି ଅନେକ ହୁଅନ୍ତି ତାହାର ପ୍ରମାଣ ଯଥା,—

ଯେପରି ବୈଦୁର୍ଯ୍ୟମଣି ନୀଳପୀତାଦି ପାତ୍ରସ୍ଥ ହେଲେ ପାତ୍ରର ବର୍ଣ୍ଣ ଅନୁସାରେ ନୀଳପୀତାଦିରୂପ ବିଶିଷ୍ଟ ଦେଖାଯାଏ ସେହିପରି ଅଚ୍ୟୁତ ( ଶ୍ରୀକୃଷ୍ଣ ) ଭକ୍ତମାନଙ୍କର ଧ୍ୟାନଭେଦ ଅନୁସାରେ ନାନାରୂପରେ ଦୃଷ୍ଟ ହୁଅନ୍ତି । ୧୫ଶ ଶ୍ଳୋକାର୍ଥ ।

ସାକ୍ଷାତ୍—ସ୍ୱୟଂ । ୧୪୨ ।

ଋଷଭପର୍ବତ—ଦକ୍ଷିଣ କର୍ଣ୍ଣାଟ କୁଟକାଚଳର ଉପବନରେ, ଯେଉଁସ୍ଥାନରେ ଋଷଭଦେବ ଦାବାନଳଦ୍ୱାରା ଭସ୍ମୀଭୂତ ହୋଇଥିଲେ । ୧୫୧ ।

ପରମାନନ୍ଦପୁରୀ ତବେ ଚଳିଲା ନୀଳାଚଳେ ।
ମହାପ୍ରଭୁ ଚଳି ଚଳି ଆଇଲା ଶ୍ରୀଶୈଳେ ।
ଶିବଦୁର୍ଗା ରହେ ତାହାଁ ବ୍ରାହ୍ମଣର ବେଶେ ।
ମହାପ୍ରଭୁ ଦେଖି ଦୋହାଁର ହଇଲ ଉଲ୍ଲାସେ ।
ତିନଦିନ ଭିକ୍ଷା ଦିଲ କରି ନିମନ୍ତ୍ରଣ ।
ନିଭୃତେ ବସି ଗୁପ୍ତକଥା କହେ ଦୁଇଜନ ।
ତାଁର ସନେ ମହାପ୍ରଭୁ କରି ଇଷ୍ଟଗୋଷ୍ଠୀ ।
ତାଁର ଆଜ୍ଞା ଲଞା ଆଇଲା ପୁରୀ କାମକୋଷ୍ଠୀ ।
ଦକ୍ଷିଣମଥୁରା ଆଇଲା କାମକୋଷ୍ଠୀ ହୈତେ ।
ତାହାଁ ଦେଖା ହୈଲ ଏକ ବ୍ରାହ୍ମଣ ସହିତେ ।
ସେଇ ବିପ୍ର ମହାପ୍ରଭୁର କୈଲ ନିମନ୍ତ୍ରଣ ।
ରାମଭକ୍ତ ସେଇ ବିପ୍ର ବିରକ୍ତ ମହାଜନ ।୧୬୪।
କୃତମାଲାୟ ସ୍ନାନ କରି ଆଇଲା ତାଁର ଘରେ ।
ଭିକ୍ଷା କି ଦିବେକ ?-ବିପ୍ର ପାକ ନାହିଁ କରେ ।
ମହାପ୍ରଭୁ କହେ ତାଁରେ —ଶୁନ ମହାଶୟ ! ।
ମଧ୍ୟାହ୍ନ ହଇଲ, କେନେ ପାକ ନାହିଁ ହୟ ? ।
ବିପ୍ର କହେ—ପ୍ରଭୁ ! ମୋର ଅରଣ୍ୟେ ବସତି ।
ପାକେର ସାମଗ୍ରୀ ବନେ ନା ମିଲେ ସମ୍ପ୍ରତି ।
ବନ୍ୟ ଅନ୍ନ ଫଲ ଶାକ ଆନିବେ ଲକ୍ଷ୍ମଣ ।
ତବେ ସୀତା କରିବେନ ପାକ ପ୍ରୟୋଜନ ।୧୬୮
ତାଁର ଉପାସନା ଜାନି ପ୍ରଭୁ ତୁଷ୍ଟ ହୈଲା ।
ଆସ୍ତେ-ବ୍ୟସ୍ତେ ସେଇ ବିପ୍ର ରନ୍ଧନ କରିଲା ।
ପ୍ରଭୁ ଭିକ୍ଷା କୈଲ—ଦିନ ତୃତୀୟ ପ୍ରହରେ ।
ନିର୍ବିଣ୍ଣ ସେଇ ବିପ୍ର ଉପବାସ କରେ । ୧୭୦ ।
ପ୍ରଭୁ—କହେ ବିପ୍ର ! କାହେ କର ଉପବାସ ?
କେନେ ଏତ ଦୁଃଖେ ତୁମି କରହ ହୁତାଶ ।
ବିପ୍ର କହେ ଜୀବନେ ମୋର ନାହି ପ୍ରୟୋଜନ ।
ଅଗ୍ନି-ଜଲେ ପ୍ରବେଶିୟା ଛାଡ଼ିବ ଜୀବନ ।୧୭୨।
ଜଗନ୍ମାତା ମହାଲକ୍ଷ୍ମୀ ସୀତାଠାକୁରାଣୀ ।
ରାକ୍ଷସେ ସ୍ପର୍ଶିଲ ତାଁରେ— ଇହା କର୍ଣ୍ଣେ ଶୁନି ।
ଏ ଶରୀର ଧରିବାରେ କଭୁ ନା ଜୁୟାୟ ।
ଏଇ ଦୁଃଖେ ଜ୍ୱଲେ ଦେହ, ପ୍ରାଣ ନାହିଁ ଯାୟ ।
ପ୍ରଭୁ କହେ—ଏ ଭାବନା ନା କରିହ ଆର ।
ପଣ୍ଡିତ ହଇୟା କେନେ ନା କର ବିଚାର ?
ଈଶ୍ୱରପ୍ରେୟସୀ ସୀତା ଚିଦାନନ୍ଦମୂର୍ତ୍ତି ।
ପ୍ରାକୃତ-ଇନ୍ଦ୍ରିୟେର ତାଁରେ ଦେଖିତେ ନାହିଁ ଶକ୍ତି ।
ସ୍ପର୍ଶିବାର କାର୍ଯ୍ୟ ଆଛୁକ, ନା ପାୟ ଦର୍ଶନ ।
ସୀତାର ଆକୃତି ମାୟା ହରିଲ ରାବଣ ।୧୭୭।
ରାବଣ ଆସିତେଇ ସୀତା ଅନ୍ତର୍ଦ୍ଧାନ କୈଲ ।
ରାବଣେର ଆଗେ ମାୟା-ସୀତା ପାଠାଇଲ । ୭୮
'ଅପ୍ରାକୃତ ବସ୍ତୁ ନହେ ପ୍ରାକୃତଗୋଚର ।
ବେଦପୁରାଣେତେ ଏଇ କହେ ନିରନ୍ତର'।୧୭୯।
ବିଶ୍ୱାସ କରହ ତୁମି ଆମାର ବଚନେ ।
ପୁନରପି କୁଭାବନା ନା କରିହ ମନେ ।୧୮୦।
ପ୍ରଭୁର ବଚନେ ବିପ୍ରେର ହଇଲ ବିଶ୍ୱାସ ।
ଭୋଜନ କରିଲ, ହୈଲ ଜୀବନେର ଆଶ ।୧୮୧
ତାରେ ଆଶ୍ୱାସିୟା ପ୍ରଭୁ କରିଲା ଗମନ ।
କୃତମାଲାୟ ସ୍ନାନ କରି ଆଇଲା ଦୁର୍ବେଶନ ।୧୮୨
ଦୁର୍ବେଶନେ ରଘୁନାଥେ କୈଲ ଦରଶନ ।
ମହେନ୍ଦ୍ରଶୈଲେ ପରଶୁରାମେ କୈଲ ବନ୍ଦନ ।୧୮୩

---

ଦକ୍ଷିଣମଥୁରା—ଆଧୁନିକ ମଦୁରା । ୧୬୩ ।

କୃତମାଲା—ବର୍ତ୍ତମାନ ବୈଗାଇନଦୀ । ୧୬୫ ।

ତାର ଉପାସନା—ଶ୍ରୀରାମଉପାସକ ବିପ୍ରମହାଶୟ ଶ୍ରୀରାମଙ୍କର ବନବାସ ଭାବନା କରୁଁ କରୁଁ ଆବିଷ୍ଟଭାବରେ ୧୬୭।୧୬୮ ପଦ୍ୟୋକ୍ତ ବିଷୟ କହିଲେ । ତାହାଙ୍କର ସେହି ଉପାସନା ଜାଣି ମହାପ୍ରଭୁ ସୁଖୀ ହେଲେ । ୧୬୯ ।

ନିର୍ବିଣ୍ଣ— ଖିନ୍ନ । ୧୭୦ । ଚିଦାନନ୍ଦ—ଅପ୍ରାକୃତ । ୧୭୬ ।

ସୀତାର ଆକୃତିମାୟା—ମାୟାସୀତା । ୧୭୭ ।

ମହେନ୍ଦ୍ର ଶୈଳ—ବର୍ତ୍ତମାନ ତ୍ରିବାଙ୍କୁରରାଜ୍ୟର ସୀମାନ୍ତରେ ଅବସ୍ଥିତ । ୧୮୩ ।

ସେତୁବନ୍ଧେ ଆସି କୈଲ ଧନୁସ୍ତୀର୍ଥେ ସ୍ନାନ ।
ରାମେଶ୍ୱର ଦେଖି ତାହାଁ କରିଲ ବିଶ୍ରାମ ।୧୮୪।
ବିପ୍ରସଭାୟ ଶୁନେ ତାହାଁ କୂର୍ମ୍ମପୁରାଣ ।
ତା'ର ମଧ୍ୟେ ଆଇଲ ପତିବ୍ରତା-ଉପାଖ୍ୟାନ ।୧୮୫
'ମାୟାସୀତା ନିଲ ରାବଣ'— ଶୁନିଲ ବ୍ୟାଖ୍ୟାନେ ।
ଶୁନି ମହାପ୍ରଭୁ ହୈଲ ଆନନ୍ଦିତ ମନେ ।୧୮୬।
'ପତିବ୍ରତାଶିରୋମଣି ଜନକନନ୍ଦିନୀ ।
ଜଗତେର ମାତା ସୀତା ଶ୍ରୀରାମଗେହିନୀ ।୧୮୭।
ରାବଣ ଦେଖି ସୀତା ଲୈଲ ଅଗ୍ନିର ଶରଣ ।
ରାବଣ ହୈତେ ଅଗ୍ନି କୈଲ ସୀତା-ଆବରଣ ॥
ସୀତା ଲଞା ରାଖିଲେନ ପାର୍ବ୍ବତୀର ସ୍ଥାନେ ।
ମାୟାସୀତା ଦିୟା ଅଗ୍ନି ବଞ୍ଚିଲ ରାବଣେ ।୧। ୯।
ରଘୁନାଥ ଆସି ଯବେ ରାବଣେ ମାରିଲ ।
ଅଗ୍ନି ପରୀକ୍ଷା ଦିତେ ଯବେ ସୀତାରେ ଆନିଲ ॥
ତବେ ମାୟା-ସୀତା ଅଗ୍ନି କରି ଅନ୍ତର୍ଦ୍ଧାନ ।
ସତ୍ୟ ସୀତା ଆନି ଦିଲ ରାମ-ବିଦ୍ୟମାନ'।୧୯୧।
ଶୁନିଞା ପ୍ରଭୁର ଆନନ୍ଦିତ ହୈଲ ମନ ।
ରାମଦାସବିପ୍ରେର କଥା ହଇଲ ସ୍ମରଣ ।୧୯୨।

ଏ ସବ ସିଦ୍ଧାନ୍ତ ଶୁନି ପ୍ରଭୁର ଆନନ୍ଦ ହୈଲ ।
ବ୍ରାହ୍ମଣେର ସ୍ଥାନେ ମାଗି ସେଇ ପତ୍ର ଲୈଲ ॥
ନୂତନପତ୍ର ଲେଖାଞା ପୁସ୍ତକେ ରଖାଇଲ ।
ପ୍ରତୀତି ଲାଗି ପୁରାତନ ପତ୍ର ମାଗି ଲୈଲ । ୯୪।
ପତ୍ର ଲଞା ପୁନ ଦକ୍ଷିଣମଥୁରା ଆଇଲା ।
ରାମଦାସବିପ୍ରେ ସେଇ ପତ୍ର ଆନି ଦିଲା ।୧୯୫।

ତଥାହି କୂର୍ମ୍ମପୁରାଣେ—

ସୀତୟାରାଧିତୋ ବହ୍ନିଶ୍ଛାୟାସୀତାମଜୀଜନତ୍ ।
ତାଂ ଜହାର ଦଶଗ୍ରୀବଃ ସୀତା ବହ୍ନିପୁରଂ
ଗତା ।।୧୬।

ପରୀକ୍ଷା ସମୟେ ବହ୍ନିଂ ଛାୟାସୀତା ବିବେଶ ସା ।
ବହ୍ନିଃ ସୀତାଂ ସମାନୀୟ ତତ୍ପୁରସ୍ତାଦନୀନୟତ୍ ।୧୭

ପତ୍ର ପାଞା ବିପ୍ରେର ହୈଲ ଆନନ୍ଦିତ ମନ ।
ପ୍ରଭୁର ଚରଣ ଧରି କରଯେ କ୍ରନ୍ଦନ ।
ବିପ୍ର କହେ - ତୁମି ସାକ୍ଷାତ୍ ଶ୍ରୀରଘୁନନ୍ଦନ ।
ସନ୍ନ୍ୟାସୀର ବେଶେ ମୋରେ ଦିଲେ ଦରଶନ ।

ସୀତୟା—କର୍ତ୍ତୃଭୂତୟା, ବହ୍ନିଃ—ଅଗ୍ନ୍ୟଧିଷ୍ଠାତାଦେବଃ, ଆରାଧିତଃସନ୍ ଛାୟାସୀତାଂ—ମାୟାସୀତାଂ ଅଜୀଜନତ୍—ଆବିର୍ଭାବିତବାନ୍, ତାଂ—ଛାୟାସୀତାଂ, ଦଶଗ୍ରୀବଃ–ରାବଣଃ, ଜହାର ହୃତବାନ୍ । ସୀତା ସ୍ୱୟଂରୂପା ଜାନକୀ ବହ୍ନିପୁରଂ ଅଗ୍ନେର୍ବାସଂ, ଗତା—ପ୍ରାପ୍ତବତୀତ୍ୟର୍ଥ । ୧୬ଶ ଶ୍ଲୋକ ।

ରାବଣବଧାନନ୍ତରଂ ସୀତାୟାଃ ବହ୍ନିପରୀକ୍ଷା ସମୟେ ସା ଛାୟାସୀତାବହ୍ନିଂ—ଅଗ୍ନିକୁଣ୍ଡଂ ବିବେଶ ପ୍ରବେଶିତବତୀତ୍ୟର୍ଥଃ । ବହ୍ନିଃ—ଅଗ୍ନିଦେବଃ, ତତ୍ପୁରତ୍—ନିଜନିବାସାତ୍; ସୀତାଂ—ସ୍ୱୟଂରୂପାଂ ଜାନକୀଂ ପୁନଃସମାନୀୟ ଉଦନୀନୟତ୍ ରାମାୟ ଦତ୍ତବାନିତ୍ୟର୍ଥଃ । ୧୭ଶ ଶ୍ଲୋକ ।

ଅଗ୍ନିଦେବ ସୀତାଙ୍କଦ୍ୱାରା ଆରାଧିତ ହୋଇ ମାୟାସୀତା ଆବିଷ୍କାର କଲେ । ରାବଣ ସେ ମାୟାସୀତାକୁ ହରଣ କଲେ ଏବଂ ସତ୍ୟସୀତା ଅଗ୍ନିଙ୍କ ପୁରୀକୁ ଗମନ କଲେ । ରାବଣ ବଧ ପରେ ସୀତାଙ୍କର ଅଗ୍ନିପରୀକ୍ଷା ସମୟରେ ମାୟାସୀତା ଅଗ୍ନିରେ ପ୍ରବେଶ କଲେ ଓ ଅଗ୍ନିଦେବ ନିଜପୁରୀରୁ ସତ୍ୟସୀତାଙ୍କୁ ଆଣି ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଦାନ କଲେ । ୧୬ଶ ଶ୍ଲୋକାର୍ଥ ।

ବିପ୍ର ରାମଉପାସକ ହେତୁ ମହାପ୍ରଭୁଙ୍କୁ ନିଜ ଇଷ୍ଟଦେବ ଶ୍ରୀରଘୁନନ୍ଦନରୂପରେ ଦର୍ଶନ କଲେ । ୧୯୬ ।

ମହାଦୁଃଖ ହେଉଛି ମୋରେ କରିଲେ ନିସ୍ତାର ।
ଆଜି ମୋର ଘରେ ଭିକ୍ଷା କର ଅଙ୍ଗୀକାର ।
ମନୋଦୁଃଖେ ଭଲ ଭିକ୍ଷା ନା ହେଲ ସେଇଦିନେ
ମୋର ଭାଗ୍ୟ ପୁନରପି ପାଇଲୁ ଦର୍ଶନେ ।
ଏତ ବଲି ସୁଖେ ବିପ୍ର ଶୀଘ୍ର ପାକ କୈଲ ।
ଉତ୍ତମ ପ୍ରକାରେ ପ୍ରଭୁକେ ଭିକ୍ଷା କରାଇଲ ।୨୦୦
ସେଇ ଦିନ ତାହାଁ ରହି ତାଁରେ କୃପା କରି ।
ପାଣ୍ଡ୍ୟଦେଶେ ତାମ୍ରପର୍ଣ୍ଣୀ ଆଇଲା ଗୌରହରି ।
ତାମ୍ରପର୍ଣ୍ଣୀ ସ୍ନାନ କରି ତାମ୍ରପର୍ଣ୍ଣୀତଟେ ।
ନୟତ୍ରିପଦୀ ଦେଖି ବୁଲେ କୁତୂହଳେ ।୨୦୨।
ଚିୟଡ଼ତାଲା ତୀର୍ଥେ ଦେଖି ଶ୍ରୀରାମ ଲକ୍ଷ୍ମଣ ।
ତିଲକାଞ୍ଚୀ ଆସି କୈଲ ଶିବଦରଶନ ।୨୦୩।
ଗଜେନ୍ଦ୍ରମୋକ୍ଷଣ ତୀର୍ଥେ ଦେଖି ବିଷ୍ଣୁମୂର୍ତ୍ତି ।
ପାନାଗଡ଼ି-ତୀର୍ଥେ ଆସି ଦେଖି ସୀତାପତି ।୨୦୪।
ଚାମ୍ତାପୁରେ ଆସି ଦେଖେ ଶ୍ରୀରାମ ଲକ୍ଷ୍ମଣ ।
ଶ୍ରୀବୈକୁଣ୍ଠେ ବିଷ୍ଣୁ ଆସି କୈଲ ଦରଶନ ।
ମଲୟ ପର୍ବତେ କୈଲ ଅଗସ୍ତ୍ୟବନ୍ଦନ ।
କନ୍ୟାକୁମାରୀ ତାହାଁ କୈଲ ଦରଶନ ।୨୦୬।
ଆମଲୀତଲାତେ ରାମ ଦେଖି ଗୌରହରି ।
ମଲ୍ଲାର ଦେଶେତେ ଆଇଲା ଯାହାଁ ଭଟ୍ଟମାରି ।
ତମାଲ କାର୍ତ୍ତିକ ଦେଖି ଆଇଲା ବାତାପାଣୀ ।
ରଘୁନାଥ ଦେଖି ତାହାଁ ବଞ୍ଚିଲା ରଜନୀ ।୨୦୮।
ଗୋସାଞ୍ଜିର ସଙ୍ଗେ ରହେ କୃଷ୍ଣଦାସ ବ୍ରାହ୍ମଣ ।
ଭଟ୍ଟମାରିସହ ତାର ହୈଲ ଦରଶନ ।୨୦୯।
ସ୍ତ୍ରୀ-ଧନ ଦେଖାଇୟା ତାର ଲୋଭ ଜନ୍ମାଇଲ ।
ଆର୍ଯ୍ୟ-ସରଲ-ବିପ୍ରେର ବୁଦ୍ଧିନାଶ କୈଲ ।
ପ୍ରାତେ ଉଠି ଆଇଲା ବିପ୍ର ଭଟ୍ଟମାରି ଘରେ
ତାହାର ଉଦ୍ଦେଶେ ପ୍ରଭୁ ଆଇଲା ସତ୍ୱରେ ।
ଆସିୟା କହେନ ସବ ଭଟ୍ଟମାରିଗଣେ— ।
ଆମାର ବ୍ରାହ୍ମଣ ତୁମି ରାଖ କି କାରଣେ ?।୨୧୨।
ତୁମିହ ସନ୍ନ୍ୟାସୀ ଦେଖ ଆମିହ ସନ୍ନ୍ୟାସୀ ।
ଆମାୟ ଦୁଃଖ ଦେହ ତୁମି, ନ୍ୟାୟ ନାହି ବାସି ।
ଶୁନି ସବ ଭଟ୍ଟମାରି ଉଠେ ଅସ୍ତ୍ର ଲଞ୍ଜା ।
ମାରିବାରେ ଆଇସେ ସବ ଚାରିଦିଗେ ଧାଞ୍ଜା ।
ତାର ଅସ୍ତ୍ର ତାର ଅଙ୍ଗେ ପଡ଼େ ହାତେ ହୈତେ ।
ଖଣ୍ଡଖଣ୍ଡ ହୈଲ ଭଟ୍ଟମାରି ପାଲାୟ ଚାରିଭିତେ ।
ଭଟ୍ଟମାରି-ଘରେ ମହା ଉଠିଲ କ୍ରନ୍ଦନ ।
କେଶେ ଧରି ବିପ୍ର ଲଞ୍ଜା କରିଲା ଗମନ ।୨୧୬।
ସେଇଦିନେ ଚଲି ଆଇଲା ପୟସ୍ୱିନୀତଟେ ।
ସ୍ନାନ କରି ଗେଲା ଆଦିକେଶବ-ମନ୍ଦିରେ ।
କେଶବ ଦେଖିୟା ପ୍ରେମେ ଆବିଷ୍ଟ ହଇଲା ।
ନତି-ସ୍ତୁତି ନୃତ୍ୟ-ଗୀତ ବହୁତ କରିଲା ।୨୧୮।
ପ୍ରେମ ଦେଖି ଲୋକେର ହୈଲ ମହା ଚମତ୍କାର ।
ସର୍ବଲୋକ କୈଲ ପ୍ରଭୁର ପରମ ସତ୍କାର ।
ମହାଭକ୍ତଗଣ ସହ ତାହାଁ ଗୋଷ୍ଠୀ ହୈଲ ।
ବ୍ରହ୍ମସଂହିତାଧ୍ୟାୟ ତାହାଁଇ ପାଇଲ ।୨୨୦।

---

ଗଜେନ୍ଦ୍ର ମୋକ୍ଷଣ—ଯେଉଁଠାରେ ଶ୍ରୀମନ୍ନାରାୟଣ କୁମ୍ଭୀର କବଳରୁ ଗଜକୁ ଉଦ୍ଧାର କରିଥିଲେ । ୨୦୪ ।

ମଲୟପର୍ବତ—କେରଳଠାରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ବିସ୍ତୃତ ଗିରି । ୨୦୬ ।

ମଲ୍ଲାର—ମାଲବାର । ଭଟ୍ଟମାରି—ଦକ୍ଷିଣ ପଶ୍ଚିମ ଭାରତ ଭାଷାରେ ଭାଟୁଆରି । ଏମାନଙ୍କର ନିର୍ଦ୍ଦିଷ୍ଟ ଘରଦ୍ୱାର ନାହିଁ । ଯେଉଁଠାକୁ ଯାଆନ୍ତି ସେଠାରେ ଶିବିକା ବା ସାମାନ୍ୟ ଶିବିରରେ ବାସ କରନ୍ତି । ଆମ୍ଭମାନଙ୍କ ଦେଶର କେଳାଙ୍କ ପରି । ଏମାନଙ୍କ ବେଶ ସନ୍ନ୍ୟାସୀ ତୁଲ୍ୟ । କିନ୍ତୁ ଚୌର୍ଯ୍ୟ ଓ ପ୍ରତାରଣା ଏମାନଙ୍କର ବ୍ୟବସାୟ । ଏମାନଙ୍କ ସହିତ ଥିବା ସୁନ୍ଦରୀ ସ୍ତ୍ରୀମାନଙ୍କୁ ଦେଖାଇ ଅପରାପର ଲୋକଙ୍କୁ ଭୁଲାଇ ଦଳଭୁକ୍ତ କରନ୍ତି । ୨୦୭ ।

ବିପ୍ର—କୃଷ୍ଣଦାସ ।୨୧୬।

ବ୍ରହ୍ମସଂହିତାଧ୍ୟାୟ—ବ୍ରହ୍ମସଂହିତାର ପଞ୍ଚମ ଅଧ୍ୟାୟ । ଯାହା କି ଅଧୁନା ଶ୍ରୀଜୀବ—ଗୋସ୍ୱାମୀଙ୍କ ଟୀକା ସହ ବଙ୍ଗାକ୍ଷରରେ ମୁଦ୍ରିତ ହୋଇଅଛି । ୨୨୦ ।

ପୁଥି ପାଇଯାଇ ପ୍ରଭୁର ଆନନ୍ଦ ଅପାର ।
କମ୍ପ ଅଶ୍ରୁ ସ୍ୱେଦ ସ୍ତମ୍ଭ ପୁଲକ ବିକାର ।
ସିଦ୍ଧାନ୍ତଶାସ୍ତ୍ର ନାହିଁ ବ୍ରହ୍ମସଂହିତାର ସମ ।
ଗୋବିନ୍ଦ-ମହିମା-ଜ୍ଞାନେର ପରମ କାରଣ ।
ଅଳ୍ପ ଅକ୍ଷରେ କହେ ସିଦ୍ଧାନ୍ତ ଅପାର ।
ସକଳ ବୈଷ୍ଣବଶାସ୍ତ୍ର ମଧ୍ୟେ ଅତି ସାର ।୨୨୩।
ବହୁଯତ୍ନେ ସେଇ ପୁଥି ନିଲ ଲେଖାଇଯା ।
ଅନନ୍ତପଦ୍ମନାଭ ଆଇଲା ହରଷିତ ହଇଯା ।
ଦିନ ଦୁଇ ପଦ୍ମନାଭେର କରି ଦରଶନ ।
ଆନନ୍ଦେ ଦେଖିତେ ଆଇଲ ଶ୍ରୀଜନାର୍ଦ୍ଦନ ।
ଦିନ ଦୁଇ ତାହାଁ କରି କୀର୍ତ୍ତନ-ନର୍ତ୍ତନ ।
ପୟୋଷ୍ଣୀ ଆସିଯା ଦେଖେ ଶଙ୍କର ନାରାୟଣ ।
ସିଂହାରିମଠ ଆଇଲା ଶଙ୍କରାଚାର୍ଯ୍ୟ ସ୍ଥାନେ ।
ମତ୍ସ୍ୟତୀର୍ଥ ଦେଖି କୈଲ ତୁଙ୍ଗଭଦ୍ରାଯ ସ୍ନାନେ ।
ମାଧ୍ୱାଚାର୍ଯ୍ୟ ସ୍ଥାନେ ଆଇଲା ଯାହାଁ ତତ୍ତ୍ୱବାଦୀ ।
ଉଡୁପିକୃଷ୍ଣ ଦେଖି ତାହାଁ ହୈଲ ପ୍ରେମୋନ୍ମାଦୀ ।
ନର୍ତ୍ତକଗୋପାଲ କୃଷ୍ଣ ପରମମୋହନ ।
ମଧ୍ୱାଚାର୍ଯ୍ୟେ ସ୍ୱପ୍ନ ଦିଯା ଆଇଲ ତାଁର ସ୍ଥାନେ ।
ଗୋପୀଚନ୍ଦନ ଭିତର ଆଛିଲା ଡିଙ୍ଗାତେ ।
ମଧ୍ୱାଚାର୍ଯ୍ୟ ସେଇ କୃଷ୍ଣ ପାଇଲ କୋନମତେ ।
ମଧ୍ୱାଚାର୍ଯ୍ୟ ଆନି ତାଁରେ କରିଲ ସ୍ଥାପନ ।
ଅଦ୍ୟାପି ତାଁର ସେବା କରେ ତତ୍ତ୍ୱବାଦିଗଣ ।୨୩୧।
କୃଷ୍ଣମୂର୍ତ୍ତି ଦେଖି ପ୍ରଭୁ ମହାସୁଖ ପାଇଲ ।
ପ୍ରେମାବେଶେ ବହୁକ୍ଷଣ ନୃତ୍ୟଗୀତ କୈଲ ।୨୩୨।

---

ଅଳ୍ପାକ୍ଷରରେ—ସଂକ୍ଷେପରେ ବା ସୂତ୍ରରୂପରେ । ୨୨୩ ।

ସିଂହାରିମଠ—ଦାକ୍ଷିଣାତ୍ୟରେ ଶ୍ରୀମଚ୍ଛଙ୍କରାଚାର୍ଯ୍ୟଙ୍କର ପ୍ରଧାନ ମଠ । ୨୨୬ ।

ତତ୍ତ୍ୱବାଦୀ—ଶ୍ରୀମଧ୍ୱାଚାର୍ଯ୍ୟଙ୍କର ମତ ଏହି ଯେ, ଶ୍ରୀହରି ସତ୍ୟ, ଏବଂ ଜଗତ୍ ସତ୍ୟ, ଏହିମତ ଶ୍ରୀଶାଙ୍କରମତର ବିରୋଧୀ, ଯେହେତୁ ଶାଙ୍କରମତରେ ଜଗତ୍ ବ୍ରହ୍ମଙ୍କଠାରେ କଳ୍ପିତ, ଅର୍ଥାତ୍ ମାୟା, ଏହି କାରଣରୁ ଶାଙ୍କରମତବାଦୀମାନଙ୍କୁ ମାୟାବାଦୀ କୁହାଯାଏ ଓ ମାଧ୍ୱମତବାଦୀମାନଙ୍କୁ ତତ୍ତ୍ୱବାଦୀ କୁହାଯାଏ ।

ବ୍ରହ୍ମସମ୍ପ୍ରଦାୟର ଆଦିଗୁରୁ ଶ୍ରୀମଧ୍ୱାଚାର୍ଯ୍ୟ ଏହାଙ୍କ ନାମ ଅନୁସାରେ ସମ୍ପ୍ରଦାୟର ନାମ ମଧ୍ୱାଚାର୍ଯ୍ୟ ସମ୍ପ୍ରଦାୟ । ଏହାଙ୍କର ପ୍ରଧାନ ମଠ ଦକ୍ଷିଣ କାନଡ଼ା ଜିଲ୍ଲାର ମାଙ୍ଗାଲୋର ନଗର ନିକଟବର୍ତ୍ତୀ ଉଡ଼ୁପୀ ଗ୍ରାମରେ ଅବସ୍ଥିତ । ଏହି ସ୍ଥାନରେ ଉଡ଼ୁପିକୃଷ୍ଣ ଅର୍ଥାତ୍ ତରଣୀରୁ ପ୍ରାପ୍ତ କୃଷ୍ଣମୂର୍ତ୍ତି, ଯେ କି ଏକହାତରେ ଖୁଆ ଓ ଅପର ହାତରେ ରଜ୍ଜୁ ଧାରଣ କରି ନର୍ତ୍ତକଭଙ୍ଗୀଯୁକ୍ତ ହୋଇଅଛନ୍ତି ତାହାଙ୍କୁ ନର୍ତ୍ତକଗୋପାଳ ବୋଲି ମଧ କୁହାଯାଏ । ସେହି ଶ୍ରୀବିଗ୍ରହ ଅଦ୍ୟାବଧି ସେହିସ୍ଥାନରେ ପୂଜିତ ହେଉଅଛନ୍ତି । ଏହି ଶ୍ରୀବିଗ୍ରହ ପ୍ରାପ୍ତି ସମ୍ବନ୍ଧରେ କଥା ଏହି ଯେ, ଦିନେ ଶ୍ରୀମଧ୍ୱାଚାର୍ଯ୍ୟ ସମୁଦ୍ରସ୍ନାନ କରିବାକୁ ଯାଇ ଦେଖନ୍ତି ଯେ,—ଦ୍ୱାରକାଠାରୁ ଆସୁଥିବା ଦ୍ରବ୍ୟପୂର୍ଣ୍ଣ ଗୋଟିଏ ତରଣୀ ଜଳମଗ୍ନ ହେଉଅଛି । ତାହା ଦେଖି ସେ କୃପା ବଶତଃ ଭଗବତ୍ ଐଶ୍ୱର୍ଯ୍ୟଦ୍ୱାରା ତରଣୀକୁ ଉଦ୍ଧାର କଲେ । ତରଣୀ କୂଳକୁ ଆସିବାରୁ ତରଣୀର ଅଧିକାରୀ ତାହାଙ୍କୁ ତରଣୀରୁ ଉତ୍କୃଷ୍ଟ ଦ୍ରବ୍ୟ ନେବାକୁ ପ୍ରାର୍ଥନା କରନ୍ତେ ସେ ତରଣୀରୁ ଖଣ୍ଡିଏ ବୃହତ୍ ଗୋପୀଚନ୍ଦନ ( ତିଳକମୃତ୍ତିକା ) ମାତ୍ର ଗ୍ରହଣ କଲେ । ସେ ସ୍ୱପ୍ନରେ ଜାଣିଥିଲେ ଯେ,—ଗୋପୀଚନ୍ଦନ ମଧ୍ୟରେ ଶ୍ରୀକୃଷ୍ଣମୂର୍ତ୍ତି ଅଛନ୍ତି । ଅତଏବ ସେ ଗୋପୀଚନ୍ଦନ ମଧ୍ୟରୁ ଶ୍ରୀବିଗ୍ରହଙ୍କୁ ବାହାର କରି ବହୁସମାରୋହରେ ଉଡ଼ୁପୀ ମଠରେ ପ୍ରତିଷ୍ଠିତ କରି ପୂଜା କଲେ । ୨୨୮ରୁ ୨୩୦ ।

ତତ୍ତ୍ୱବାଦୀଗଣ ପ୍ରଭୁଙ୍କେ ମାୟାବାଦୀ ଜ୍ଞାନେ ।
ପ୍ରଥମଦର୍ଶନେ ପ୍ରଭୁର ନା କୈଲ ସମ୍ଭାଷଣେ ।
ପାଛେ ପ୍ରେମାବେଶେ ଦେଖି ହୈଲ ଚମତ୍କାର ।
ବୈଷ୍ଣବଜ୍ଞାନେତେ ବହୁ କରିଲ ସତ୍କାର । ୧୩୪ ।
ତାଁ-ସଭାର ଅନ୍ତରେ ଗର୍ବ ଜାନି ଗୌରଚନ୍ଦ୍ର ।
ତାଁ ସଭା ସହିତ ଗୋଷ୍ଠୀ କରିଲ ଆରମ୍ଭ ।୧୩୫।
ତତ୍ତ୍ୱବାଦୀ ଆଚାର୍ଯ୍ୟ ଶାସ୍ତ୍ରେ ପରମପ୍ରବୀଣ ।
ତାଁରେ ପ୍ରଶ୍ନ କୈଲ ପ୍ରଭୁ ହଞା ଯେନ ଦୀନ ।
ସାଧ୍ୟସାଧନ ଆମି ନା ଜାନି ଭାଲମତେ ।
ସାଧ୍ୟସାଧନ ଶ୍ରେଷ୍ଠ ଜାନାହ ଆମାତେ । ୧୩୬
ଆଚାର୍ଯ୍ୟ କହେ—ବର୍ଣ୍ଣାଶ୍ରମଧର୍ମ କୃଷ୍ଣେ ସମର୍ପଣ ।
ଏଇ ହୟ କୃଷ୍ଣଭକ୍ତ୍ୟେର ଶ୍ରେଷ୍ଠ ସାଧନ । ୧୩୭ ।
ପଞ୍ଚବିଧ ମୁକ୍ତି ପାଞା ବୈକୁଣ୍ଠେ ଗମନ ।
ସାଧ୍ୟଶ୍ରେଷ୍ଠ ହୟ ଏଇ ଶାସ୍ତ୍ରନିରୂପଣ । ୧୩୮ ।
ପ୍ରଭୁ କହେ — ଶାସ୍ତ୍ରେ କହେ ଶ୍ରବଣ-କୀର୍ତ୍ତନ ।
କୃଷ୍ଣ ପ୍ରେମ-ସେବାଫଳେର ପରମ ସାଧନ । ୧୪୦ ।

ତଥାହି ( ଭାଃ ୭।୫।୨୩, ୨୪ ) —

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନି-
ବେଦନମ୍ ।
ଇତି ପୁଂସାର୍ପିତା ବିଷ୍ଣୌ ଭକ୍ତିଶ୍ଚେନ୍ନବଲକ୍ଷଣା ।
କ୍ରିୟେତ ଭଗବତ୍ୟଦ୍ଧା ତନ୍ମନ୍ୟେଽଧୀ-
ତମୁତ୍ତମମ୍ । ୧୮ ।

ବିଷ୍ଣୋଃ ଶ୍ରବଣଂ ନାମରୂପଗୁଣପରିକରଲୀଳାମୟଶବ୍ଦାନାଂ ଶ୍ରୋତ୍ରସ୍ପର୍ଶଃ । ବିଷ୍ଣୋଃକୀର୍ତ୍ତନଂ ନାମରୂପଗୁଣପରିକରଲୀଳାମୟଶବ୍ଦାନାଂ ଉଚ୍ଚାରଣଂ । ବିଷ୍ଣୋଃସ୍ମରଣଂ—ନାମରୂପଗୁଣପରିକର-ଲୀଳାମୟକୃଷ୍ଣସ୍ୟ ଯତ୍କିଞ୍ଚିତ୍ମାନସାନୁସନ୍ଧାନଂ । ବିଷ୍ଣୋଃପାଦସେବନଂ କାଳଦେଶାଦ୍ୟୁଚିତ-ପରିଚର୍ଯ୍ୟା । ବିଷ୍ଣୋଃଅର୍ଚ୍ଚନଂ—ବିଷ୍ଣୁପୂଜା । ବିଷ୍ଣୋର୍ବନ୍ଦନଂ ନମସ୍କାରଃ । ବିଷ୍ଣୋର୍ଦାସ୍ୟଂ ତଦାସୋଽସ୍ମୀତ୍ୟଭିମାନଃ । ବିଷ୍ଣୋଃ ସଖ୍ୟଂ—ବନ୍ଧୁଭାବେନ ତଦୀୟ ହିତାଶଂସନଂ । ଆତ୍ମନିବେଦନଂ ଦେହାଦିଶୁଦ୍ଧାତ୍ମପର୍ଯ୍ୟନ୍ତସ୍ୟ ସର୍ବତୋଭାବେନ ତସ୍ମିନ୍ନେବାର୍ପଣଂ ଇତି ନବଲକ୍ଷଣା ନବଲକ୍ଷଣାନି ଯସ୍ୟାଃ ସା, ଅଧୀତେନ ପୁଂସା ଅର୍ପିତା ଚେଦ୍ଭବତି ବିଷ୍ଣୌଭକ୍ତିଃ ଅଦ୍ଧା ସାକ୍ଷାଦେବ ନତୁଜ୍ଞାନକର୍ମାଦେର୍ବ୍ୟବଧାନେନ କ୍ରିୟେତ ସାର୍ପିତୈବ ସତି ଯଦି କ୍ରିୟେତ, ନ ତୁ କୃତା ସତି ପଶ୍ଚାଦର୍ପ୍ୟେତ, ନତୁ କର୍ମାଦ୍ୟର୍ପଣରୂପପରମ୍ପରା ଇୟଂ ଭକ୍ତିଃ । ତଦର୍ଥମେବେଦମିତି ଭାବନା, ନତୁଧର୍ମାର୍ଥାଦିଷୁ ଅର୍ପିତା ଏବମ୍ଭୂତା ଚେତ୍କ୍ରିୟେତ ତଦାତେନକର୍ତ୍ତ୍ରୀଯଦଧୀତଂ । ତଦୁତ୍ତମଂ ମନ୍ୟେ ଅସ୍ମିନ୍ ପ୍ରସଙ୍ଗେ ନାମାଦିଶ୍ରବଣଭକ୍ତ୍ୟଙ୍ଗକ୍ରମଃ ଶ୍ରୀଜୀବପାଦେନ ବିସ୍ତରେଣ ଲିଖିତଃ । ୧୮ଶ ଶ୍ଳୋକ ।

ମାୟାବାଦୀଜ୍ଞାନେ—ତତ୍ତ୍ୱବାଦୀମାନେ ଶ୍ରୀମନ୍ମହାପ୍ରଭୁଙ୍କର ସନ୍ନ୍ୟାସବେଶ ଦେଖି ଶାଙ୍କରମତବାଦୀ ବୋଲି ମନେ କରି ତାହାଙ୍କୁ ପ୍ରଥମେ ଉପେକ୍ଷା କଲେ । କିନ୍ତୁ ପରେ ଶ୍ରୀବିଗ୍ରହଙ୍କ ନିକଟରେ ତାଙ୍କର ନିତ୍ୟ-ନୃତ୍ୟ କୀର୍ତ୍ତନ ନର୍ତ୍ତନ ଦେଖି ପରମବୈଷ୍ଣବଜ୍ଞାନରେ ବହୁ ସତ୍କାର କଲେ । ତତ୍ତ୍ୱବାଦୀମାନଙ୍କ ମନରେ ଗର୍ବର ବିଷୟ ଏହି ଯେ,— ସେମାନେ ଈଶ୍ୱରତତ୍ତ୍ୱଜ୍ଞାତା ଓ ସର୍ବ-ଶାସ୍ତ୍ରରେ ମହାପଣ୍ଡିତ । ସେମାନଙ୍କର ଏହି ପ୍ରକାର ଅନ୍ତରରେ ଗର୍ବ ଥିବାର ଜାଣି ଶ୍ରୀମନ୍ମହାପ୍ରଭୁ ତାହା ଚୂର୍ଣ୍ଣ କରିବା ସକାଶେ ଦୈନ୍ୟପୂର୍ବକ ପ୍ରଶ୍ନ ଉତ୍ଥାପନ କଲେ । ୧୩୩ ରୁ ୧୩୬ ।

ଶ୍ରୀମନ୍ମହାପ୍ରଭୁ ଛଳପୂର୍ବକ ପ୍ରଶ୍ନକଲେ "ହେ ଗୋସାଇଁ ! ଶ୍ରୀକୃଷ୍ଣଭକ୍ତିର ଶ୍ରେଷ୍ଠସାଧ୍ୟ ଓ ତାହା ପ୍ରାପ୍ତିର ଉପାୟ (ସାଧନ) କଅଣ ? ମୁଁ ଉତ୍ତମରୂପେ ବୁଝି ପାରୁ ନାହିଁ, କୃପା କରି ମୋତେ ବୁଝାଇ ଦିଅ ।" ଆଚାର୍ଯ୍ୟମହାଶୟ କହିଲେ ଯେ, ଚାରିବର୍ଣ୍ଣ ଅର୍ଥାତ୍—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏବଂ ଚାରି ଆଶ୍ରମ ( ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ) ଏହି ବର୍ଣ୍ଣାଶ୍ରମୀ-ମାନଙ୍କର ବିହିତକର୍ମ ଯତ୍ନରେ ଅନୁଷ୍ଠାନ କରିବା ଧର୍ମ ଏବଂ ସେହି ସମସ୍ତ କର୍ମ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରିବା ଶ୍ରୀକୃଷ୍ଣଭକ୍ତିର ଶ୍ରେଷ୍ଠ ସାଧନ ଏବଂ ତଦ୍ୱାରା ପଞ୍ଚବିଧମୁକ୍ତି (ସାଲୋକ୍ୟ, ସାମୀପ୍ୟ, ସାଯୁଜ୍ୟ ସାର୍ଷ୍ଟି ଏବଂ ସାରୂପ୍ୟ) ସହ ବୈକୁଣ୍ଠପ୍ରାପ୍ତି ହିଁ ସାଧ୍ୟଶ୍ରେଷ୍ଠ । ଶ୍ରୀକୃଷ୍ଣ ପ୍ରେମସେବା ହିଁ ପରମସାଧ୍ୟ ଏବଂ ଶ୍ରବଣକୀର୍ତ୍ତନ ଆଦି ତହିଁର ସାଧନ । ୧୩୭ରୁ୧୪୦ ।

ଶ୍ରୀମନ୍ ପ୍ରହ୍ଲାଦ ତାଙ୍କ ପିତାଙ୍କୁ କହୁଅଛନ୍ତି । ଶ୍ରୀକୃଷ୍ଣଙ୍କର ନାମଗୁଣଲୀଳାଦି କୀର୍ତ୍ତନ ଶ୍ରବଣ, ସ୍ମରଣ, ପରିଚର୍ଯ୍ୟା, ପୂଜା, ପ୍ରଣାମ, ଦାସ୍ୟାଭିମାନ, ସଖ୍ୟୋଚିତ ଅନୁକୂଳବିଶ୍ୱାସ, ଆତ୍ମ-

ଶ୍ରବଣ-କୀର୍ତ୍ତନ ହୈତେ କୃଷ୍ଣେ ହୟ ପ୍ରେମା ।
ସେଇ ପରମପୁରୁଷାର୍ଥ—ପୁରୁଷାର୍ଥସୀମା ।୨୪୧।

ତଥାହି ( ଭାଃ—୧୧।୨।୪୦ )—
ଏବଂବ୍ରତଃ ସ୍ୱପ୍ରିୟନାମକୀର୍ତ୍ତ୍ୟା,
ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ ।
ହସତ୍ୟଥୋ ରୋଦିତି ରୌତି ଗାୟ-
ତ୍ୟୁନ୍ମାଦବନ୍ନୃତ୍ୟତି ଲୋକବାହ୍ୟଃ । ୧୯ ।

କର୍ମତ୍ୟାଗ କର୍ମନିନ୍ଦା—ସର୍ବଶାସ୍ତ୍ରେ କହେ ।
କର୍ମହୈତେ କୃଷ୍ଣପ୍ରେମଭକ୍ତି କଭୁ ନହେ ।୨୪୨।

ତଥାହି ( ଭାଃ—୧୧।୧୧।୩୨ )—
ଆଜ୍ଞାୟୈବଂ ଗୁଣାନ୍ ଦୋଷାନ୍ ମୟାଦିଷ୍ଟାନପି ସ୍ୱକାନ୍ ।
ଧର୍ମାନ୍ ସନ୍ତ୍ୟଜ୍ୟ ଯଃ ସର୍ବାନ୍ ମାଂ ଭଜେତ ସ ଚ ସତ୍ତମଃ । ୨୦ ।

ତିଥାହି ଭଗବଦ୍‌ଗୀତାୟାମ୍ ( ୧୮।୬୬ )—
ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ । ୨୧ ।

ନିବେଦନ, (ଗବାଦି ପଶୁ ବିକ୍ରୟ କଲେ ଯେପରି ସେଥିରେ ବିକ୍ରେତାର ଚିନ୍ତା ଥାଏ ନାହିଁ, ତଦ୍‌ବତ୍ ଦେହାଦି ବିଶୁଦ୍ଧ ଅସ୍ମା ପର୍ଯ୍ୟନ୍ତ ଦାନ) ଏହି ନବବିଧା ଭକ୍ତି ଯେଉଁ ବ୍ୟକ୍ତି ସାକ୍ଷାତ୍ ଶ୍ରୀକୃଷ୍ଣଙ୍କଠାରେ ଅର୍ପଣ କରନ୍ତି, (ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ସୁଖ ସକାଶେ ଏହିପରି ଭକ୍ତି କରନ୍ତି, ନିଜର ସୁଖ ସକାଶେ କରନ୍ତି ନାହିଁ) ତାହାଙ୍କର ଏହି ଭକ୍ତିକୁ ମୁଁ ଉତ୍ତମ ବୋଲି ସ୍ୱୀକାର କରେଁ । ୧୮ଶ ଶ୍ଳୋକାର୍ଥ ।

ଶ୍ରୀମନ୍‌ମହାପ୍ରଭୁ କହିଲେ—ଏହି ପ୍ରକାର ଶ୍ରବଣ କୀର୍ତ୍ତନଦ୍ୱାରା ଯେଉଁ କୃଷ୍ଣପ୍ରେମ ଲାଭ ହୁଏ, ତାହା ପଞ୍ଚମ ପୁରୁଷାର୍ଥ, ଅର୍ଥାତ୍ ଧର୍ମ, ଅର୍ଥ, କାମ ମୋକ୍ଷ ଏହି ଚାରି ପୁରୁଷାର୍ଥଠାରୁ ଶ୍ରେଷ୍ଠ, ତାହାର ଲକ୍ଷଣ ଯଥା—

୧୯ଶ ଶ୍ଳୋକର ଅନ୍ୱୟ—ଆଦି: ୭ମ ପରି: ୪ର୍ଥ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀଜନକଙ୍କୁ ନବଯୋଗେନ୍ଦ୍ରଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀକବି କହିଅଛନ୍ତି, ହେ ମହାରାଜ ! ଏହି ପ୍ରକାରେ ଶ୍ରଦ୍ଧାଭକ୍ତଜନ ଶ୍ରୀକୃଷ୍ଣଙ୍କ ନାମମାନଙ୍କ ମଧ୍ୟରୁ ନିଜର ପ୍ରିୟ ନାମମାନ କୀର୍ତ୍ତନ ଆଦିଦ୍ୱାରା ତାଙ୍କ ଚିତ୍ତରେ ମହାପ୍ରେମ ଉଦୟ, ମାତ୍ର ଚିତ୍ତର ଶୃଙ୍ଖଳବଶତଃ ସେ ଲୋକାପେକ୍ଷାରହିତ ଉନ୍ମାଦବତ୍ କେତେବେଳେ ହାସ୍ୟ, କେତେବେଳେ ରୋଦନ, କେତେବେଳେ ଚିତ୍କାର, କେତେବେଳେ ଗାନ, କେତେବେଳେ ବା ନୃତ୍ୟ କରନ୍ତି ଅର୍ଥାତ୍ ଶ୍ରୀକୃଷ୍ଣପ୍ରେମଲାଭରେ ଭକ୍ତଙ୍କର ଏହି ଦଶା ହୁଏ । ୧୯ଶ ଶ୍ଳୋକାର୍ଥ ।

୨୦ଶ ଓ ୨୧ଶ ଶ୍ଳୋକର ଅନ୍ୱୟ—ମଧ୍ୟ. ୮ମ ପରି. ୬ଷ୍ଠ ଓ ୭ମ ଶ୍ଳୋକରେ ଦେଖ ।

ମୁଁ ବେଦରୂପରେ ଯାହା ଆଦେଶ କରିଅଛି ସେହି ଧର୍ମ ଆଚରଣର ଗୁଣ ଓ ତାହା ନ କଲେ ତଜ୍ଜନିତ ଦୋଷ ଏହା ଜାଣି ସୁଦ୍ଧା ଯେଉଁବ୍ୟକ୍ତି ସେ ପ୍ରକାର ଧର୍ମ ତ୍ୟାଗ କରି (ସ୍ୱଧର୍ମତ୍ୟାଗ କରି) ମୋତେ ଭଜନ କରେ ଅର୍ଥାତ୍ ମୁଁ ଏକମାତ୍ର ଭଜନୀୟ ଏହା ନିଶ୍ଚୟପୂର୍ବକ ମୋତେ ଭଜେ ସେ ଉତ୍ତମ ସାଧୁ । ୨୦ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ କହୁଅଛନ୍ତି, ହେ ଅର୍ଜୁନ ! ତୁମ୍ଭେ ସର୍ବଧର୍ମ ଓ କର୍ମ ପରିତ୍ୟାଗପୂର୍ବକ ଏକ ମାତ୍ର ମୋର ଶରଣାପନ୍ନ ହୁଅ, ମୁଁ ତୁମ୍ଭଙ୍କୁ କର୍ମତ୍ୟାଗରୂପ ପାପରୁ ଉଦ୍ଧାର କରିବି । ଶୋକ କର ନା । ୨୧ଶ ଶ୍ଳୋକାର୍ଥ ।

ତଥାହି ( ଭାଃ—୧୧।୨୦।୯ )—
ତାବତ୍ କର୍ମାଣି କୁର୍ବୀତ ନ ନିର୍ବିଦ୍ୟେତ ଯାବତା
ମତ୍କଥାଶ୍ରବଣାଦୌ ବା ଶ୍ରଦ୍ଧା ଯାବନ୍ନ
ଜାୟତେ । ୨୨ ।
ପଞ୍ଚବିଧ ମୁକ୍ତି ତ୍ୟାଗ କରେ ଭକ୍ତଗଣ ।
ଫଲ୍ଗୁ କରି ମୁକ୍ତି ଦେଖେ ନରକେର ସମ ।୨୪୭।
ତଥାହି ( ଭାଃ—୩।୨୯।୧୧ )—
ସାଲୋକ୍ୟସାର୍ଷ୍ଟି-ସାମୀପ୍ୟ-ସାରୂପ୍ୟୈକତ୍ୱମପ୍ୟୁତ ।
ଦୀୟମାନଂ ନ ଗୃହ୍ଣନ୍ତି ବିନା ମତ୍ସେବନଂ
ଜନାଃ । ୨୩ ।

---

ଯାବତା—ଯାବତ୍, ନିର୍ବିଦ୍ୟେତ (କର୍ମଣା ଏବ ଅନ୍ତଃକରଣଶୁଦ୍ଧୌ ସତ୍ୟାଂ ନିର୍ବେଦଃ) ନ (ଜାୟତେ) ମତ୍କଥାଶ୍ରବଣାଦୌ ବା ଶ୍ରଦ୍ଧା (ବିଶ୍ୱାସଃ) ନ ଜାୟତେ, ତାବତ୍ କର୍ମାଣି (ନିତ୍ୟ-ନୈମିତ୍ତିକାଦୀନି) କୁର୍ବୀତ। ୨୨ଶ ଶ୍ଳୋକ ।

---

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି.—ଯେ ପର୍ଯ୍ୟନ୍ତ ଚିତ୍ତଶୁଦ୍ଧି ହୋଇ ବୈରାଗ୍ୟ ନ ଜନ୍ମେ ବା ମୋର କଥାଶ୍ରବଣାଦିରେ ରତି ନ ଜନ୍ମେ, ସେହି ପର୍ଯ୍ୟନ୍ତ ନିତ୍ୟନୈମିତ୍ତିକାଦି କର୍ମ ସମସ୍ତ ଆଚରଣ କରିବ । ୨୨ଶ ଶ୍ଳୋକାର୍ଥ ।

ଶ୍ରୀମନ ମହାପ୍ରଭୁ ବର୍ଣ୍ଣାଶ୍ରମୋଚିତ କର୍ମକୁ ଦୂଷଣୀୟ ପ୍ରତିପନ୍ନ କରି ଶ୍ରୀକୃଷ୍ଣପ୍ରୀତ୍ୟର୍ଥେ ଶ୍ରବଣକୀର୍ତ୍ତନାଦିର ଶ୍ରେଷ୍ଠତ୍ୱ ସ୍ଥାପନ କରି ବର୍ତ୍ତମାନ ପଞ୍ଚବିଧମୁକ୍ତିର ହେୟତ୍ୱ ଦେଖାଇ କହୁଅଛନ୍ତି ଯେ, ଶ୍ରୀକୃଷ୍ଣପ୍ରେମସେବାପରାୟଣ ଭକ୍ତମାନେ ମୁକ୍ତି ପାଇଲେ ସୁଦ୍ଧା ତାହା ଗ୍ରହଣ କରନ୍ତି ନାହିଁ । ଫଲ୍ଗୁ ଅର୍ଥାତ୍ ଅତି ତୁଚ୍ଛ ବସ୍ତୁବତ୍ ତାହା (ମୁକ୍ତି) ତ୍ୟାଗ କରନ୍ତି । ଏପରି କି ମୁକ୍ତିକୁ ନରକ ତୁଲ୍ୟ ଜ୍ଞାନ କରନ୍ତି । ୨୪୭ ।

୨୩ଶ ଶ୍ଳୋକର ଅନ୍ୱୟ—ଆଦି ୪ର୍ଥ ପରି: ୩୭ଶ ଶ୍ଳୋକ ।

ଦୁର୍ବାସାଙ୍କ ପ୍ରତି ଶ୍ରୀଭଗବାନ୍ କହୁଅଛନ୍ତି :—

ଯେଉଁ ଭକ୍ତମାନଙ୍କର ହୃଦୟ ମୋର ସେବାରେ ପୂର୍ଣ୍ଣ ରହିଅଛି ସେମାନେ ସେହି ସେବା ହେତୁ ଅନାୟାସରେ ପ୍ରାପ୍ତ ଚତୁର୍ବିଧ ମୁକ୍ତିକୁ (ସାଲୋକ୍ୟ, ସାମୀପ୍ୟ, ସାର୍ଷ୍ଟି ଓ ସାରୂପ୍ୟ) ତୁଚ୍ଛ ବସ୍ତୁବତ୍ ଗ୍ରହଣ କରନ୍ତି । ଏପ୍ରକାର ଭକ୍ତମାନେ କାଳରେ ନାଶଶୀଳ ସ୍ୱର୍ଗାଦିଭୋଗ କାହିଁକି ଗ୍ରହଣ କରିବେ ।

ଏହାର ଭାବ ଏହି ଯେ, ପ୍ରେମିକଭକ୍ତମାନଙ୍କର ହୃଦୟ ସର୍ବଦା ଭଗବତ୍ସେବା-ନନ୍ଦରେ ପୂର୍ଣ୍ଣ, ସେମାନେ ଭଗବତ୍ ସେବାକାର୍ଯ୍ୟର ସହାୟକରୂପ ଚତୁର୍ବିଧମୁକ୍ତିକୁ ପ୍ରାପ୍ତହେଲେ ସୁଦ୍ଧା ତାହା ଆନନ୍ଦଦାୟକ ବୋଲି ଗ୍ରହଣ କରନ୍ତି ନାହିଁ । କେବଳ ସେବାରେ ସହାୟକ ବୋଲି ଅର୍ଥାତ୍ ଗ୍ରହଣ ନ କଲେ ନ ଚଳେ, ଏହି ହେତୁ ତୁଚ୍ଛ ବସ୍ତୁବତ୍ ଗ୍ରହଣ କରନ୍ତି । ଏପ୍ରକାର ଭକ୍ତ-ମାନଙ୍କ ନିକଟରେ ସ୍ୱର୍ଗାଦିଭୋଗ ଯେ କେତେ ଅକିଞ୍ଚିତ୍କର ତାହା ସହଜରେ ଅନୁମେୟ । ୨୩ଶ ଶ୍ଳୋକାର୍ଥ ।

ତଥାହି (ଭାଃ ୫।୧୪।୪୩)—

ଯୋ ଦୁସ୍ତ୍ୟଜାନ୍ କ୍ଷିତିସୁତସ୍ୱଜନାର୍ଥଦାରାନ୍,
ପ୍ରାର୍ଥ୍ୟାଂ ଶ୍ରିୟଂ ସୁରବରୈଃ ସଦୟାବଲୋକାମ୍ ।
ନୈଚ୍ଛନ୍ନୃପସ୍ତଦୁଚିତଂ ମହତାଂ ମଧୁଦ୍ୱିଟ୍-
ସେବାନୁରକ୍ତମନସାମଭବୋଽପି ଫଲ୍ଗୁ । ୨୪ ।

ତଥୈବ (ଭାଃ—୬।୧୭।୨୮)—

ନାରାୟଣପରାଃ ସର୍ବେ ନ କୁତଶ୍ଚନ ବିଭ୍ୟତି ।
ସ୍ୱର୍ଗାପବର୍ଗନରକେଷ୍ୱପି ତୁଲ୍ୟାର୍ଥଦର୍ଶିନଃ । ୨୫ ।

କର୍ମ ମୁକ୍ତି ଦୁଇ ବସ୍ତୁ ତ୍ୟଜେ ଭକ୍ତଗଣ ।
ସେଇ ଦୁଇ ସ୍ଥାପ ତୁମି ସାଧ୍ୟସାଧନ । ୧୪୪ ।
ଏଇ ତ ବୈଷ୍ଣବେର ନହେ ସାଧ୍ୟସାଧନ ।
ସନ୍ନ୍ୟାସୀ ଦେଖିୟା ଆମା କରହ ବଞ୍ଚନ ? । ୧୪୫ ।
ଶୁନି ତତ୍ତ୍ୱାଚାର୍ଯ୍ୟ ହୈଲା ଅନ୍ତରେ ଲଜ୍ଜିତ ।
ପ୍ରଭୁର ବୈଷ୍ଣବତା ଦେଖି ହୈଲା ବିସ୍ମିତ । ୧୪୬ ।
ଆଚାର୍ଯ୍ୟ କହେ—ତୁମି ଯେଇ କହ ସେଇ ସତ୍ୟ ହୟ ।
ସର୍ବଶାସ୍ତ୍ରେ ବୈଷ୍ଣବେର ଏଇ ସୁନିଶ୍ଚୟ । ୧୪୭ ।
ତଥାପି ମଧ୍ୱାଚାର୍ଯ୍ୟ ଯେ କରିୟାଛେ ନିର୍ବନ୍ଧ ।
ସେଇ ଆଚରିୟେ ସବେ ସମ୍ପ୍ରଦାୟ-ସମ୍ବନ୍ଧ ।

ଏତଦ୍ଦ୍ୱାରା ମୁକ୍ତି ତ୍ୟାଗର ପ୍ରମାଣ ହେଉଅଛି ।

(ହେ) ନୃପ ! ଦୁସ୍ତ୍ୟଜାନ୍—ମୁନିଭିରପି ତ୍ୟକ୍ତୁମଶକ୍ୟାନ୍ କ୍ଷିତିସୁତସ୍ୱଜନାର୍ଥଦାରାନ୍—କ୍ଷିତିଶ୍ଚ ସୁତାଃ ପୁତ୍ରକନ୍ୟାଶ୍ଚ ସ୍ୱଜନାଶ୍ଚ ଅର୍ଥାଶ୍ଚ ଦାରାଃ—ପତ୍ନୀ ଚ ତାନ୍, ସୁରବରୈଃ ଅମରଶ୍ରେଷ୍ଠୈଃ ପ୍ରାର୍ଥ୍ୟାଂ—ପ୍ରାର୍ଥୟିତୁଂ ଯୋଗ୍ୟାଂ, ସଦୟାବଲୋକାଂ—ଭରତସ୍ୟ ଦୟା ଯଥା ଭବନ୍ତି ଏବମେବ ଆଲୋକଃ ଯସ୍ୟାଃ ତାଂ, ଶ୍ରିୟଂ—ସମ୍ପଦଧିଷ୍ଠାତ୍ରୀରୂପାଂ ଯଃ ନୃପତିଃ—ଭରତଃ ନ ଐଚ୍ଛତ୍ (ଇତି) ଯତ୍, ତଦୁଚିତଂ (ଏବ, ଯତଃ) ମଧୁଦ୍ୱିଟ୍ସେବାନୁରକ୍ତମନସାଂ—ମଧୁଦ୍ୱିଷଃ—ଭଗବତଃ, ସେବାୟାଂ ଅନୁରକ୍ତଂ ମନଃ ଯେଷାଂ ତେଷାଂ ମହତାଂ (ସମ୍ବନ୍ଧେ) ଅଭବଃ—ମୋକ୍ଷଃ ଅପି, ଫଲ୍ଗୁ ତୁଚ୍ଛ ଏବ, କିମୁତାନ୍ୟେ ରାଜ୍ୟାଦୟଃ ଅତଃ ତଦ୍ୱିଷୟେ ବିଷୟତ୍ୟାଗଃ ନ ଚିତ୍ରଃ । ୨୪ଶ ଶ୍ଳୋକ ।

ଏହି ଶ୍ଳୋକ ଭକ୍ତପକ୍ଷରେ ମୁକ୍ତିର ତୁଚ୍ଛତ୍ୱର ପ୍ରମାଣ ସ୍ୱର୍ଗାପବର୍ଗନରକେଷ୍ୱପି ତୁଲ୍ୟାର୍ଥଦର୍ଶିନଃ ନାରାୟଣପରାଃ ଭଗବତ୍‌ପରାୟଣାଃ ସର୍ବେ ଜନାଃ କୁତଶ୍ଚନ ନ ବିଭ୍ୟତି । ୨୫ଶ ଶ୍ଳୋକ ।

ଶ୍ରୀଶୁକଦେବ ଶ୍ରୀପରୀକ୍ଷିତଙ୍କୁ କହିଲେ, ହେ ମହାରାଜ ! ମହାରାଜ ଭରତ ଅପରର ଦୁସ୍ତ୍ୟଜ୍ୟ ରାଜ୍ୟପୁତ୍ର, ଆତ୍ମୀୟଜନ, ଧନ ଓ ସ୍ତ୍ରୀ ପ୍ରଭୃତି ତ୍ୟାଗ କରିଥିଲେ ଏବଂ ଦେବତାମାନେ ଯେଉଁ ଲକ୍ଷ୍ମୀଙ୍କର କୃପାକଟାକ୍ଷର ପ୍ରାର୍ଥୀ, ସେହି ଲକ୍ଷ୍ମୀଦେବୀ ଭରତଙ୍କର ପରିଜନ ତୁଲ୍ୟ କୃପାପ୍ରାର୍ଥୀ ହେଲେ ସୁଦ୍ଧା ତାହା ସେ ସ୍ୱୀକାର କରି ନ ଥିଲେ । ଏହା ତାହାଙ୍କର ଉଚିତ କାର୍ଯ୍ୟ ହୋଇଥିଲା, ଯେହେତୁ ଶ୍ରୀକୃଷ୍ଣସେବାପରାୟଣ ମହତ୍‌ବ୍ୟକ୍ତିମାନେ ମୁକ୍ତିକୁ ସୁଦ୍ଧା ତୁଚ୍ଛଜ୍ଞାନ କରନ୍ତି । ୨୪ଶ ଶ୍ଳୋକାର୍ଥ ।

ଶ୍ରୀଶିବ ଦୁର୍ଗାଙ୍କୁ କହୁଅଛନ୍ତି;—ଭଗବତ୍‌ସେବାପରାୟଣ ଭକ୍ତମାନେ କାହାରିକୁ ଭୟ କରନ୍ତି ନାହିଁ । ଯେହେତୁ ସେମାନେ ସ୍ୱର୍ଗର ଭୋଗ, ମୁକ୍ତି ଓ ନରକର ଯାତନାକୁ ସମଦୃଷ୍ଟିରେ ଦେଖନ୍ତି । ୨୫ଶ ଶ୍ଳୋକାର୍ଥ ।

ଏତଦ୍ଦ୍ୱାରା ଭକ୍ତପକ୍ଷରେ ମୁକ୍ତି ଓ ନରକ ସମାନ ମୂଲ୍ୟବାନ୍ ପ୍ରତିପାଦିତ ହେଲା ।

ଶ୍ରୀମନ୍ମହାପ୍ରଭୁ ତତ୍ତ୍ୱବାଦୀମାନଙ୍କୁ କହିଲେ, ଶ୍ରୀକୃଷ୍ଣଭକ୍ତମାନେ ଯେଉଁ ମୁକ୍ତିକୁ ଓ କର୍ମକୁ ଦୋଷଯୁକ୍ତ ବୋଲି ତ୍ୟାଗ କରନ୍ତି, ସେହି ଦୁଇଟିକୁ ସାଧ୍ୟସାଧନ ଅର୍ଥାତ୍ ମୁକ୍ତିକୁ ସାଧ୍ୟ ଓ କର୍ମକୁ ସାଧନ ବୋଲି ଆପଣ ସ୍ଥାପନା କରୁଅଛନ୍ତି । ଏହା ତ ବୈଷ୍ଣବର ସାଧ୍ୟସାଧନ ନୁହେଁ । ବୋଧହୁଏ ଆପଣମାନେ ମୋର ସନ୍ନ୍ୟାସବେଶ ଦେଖି ମୋତେ ବଞ୍ଚନା କରୁଅଛନ୍ତି । ୧୪୪,୧୪୫ । ନିର୍ବନ୍ଧ—ନିୟମ । ୧୪୮ ।

ପ୍ରଭୁ କହେ— କର୍ମୀ ଜ୍ଞାନୀ ଦୁଇ ଭକ୍ତିହୀନ ।
ତୋମାର ସମ୍ପ୍ରଦାୟ ଦେଖି ସେଇ ଦୁଇ ଚିହ୍ନ ।
ସବେ ଏକ ଗୁଣ ଦେଖି ତୋମାର ସମ୍ପ୍ରଦାୟ ।
ସତ୍ୟବିଗ୍ରହ କରି ଈଶ୍ୱରେ କରହ ନିଶ୍ଚୟ ।୨୫୦।
ଏଇମତ ତାର ଘରେ ଗର୍ବ ଚୂର୍ଣ୍ଣ କରି ।
ଫଲ୍ଗୁତୀର୍ଥେ ତବେ ଚଳି ଆଇଲା ଗୌରହରି ।
ବିତକୂପ ବିଶାଲାର କରି ଦରଶନ ।
ପଞ୍ଚାପ୍ସରା-ତୀର୍ଥ ଆଇଲା ଶଚୀରନନ୍ଦନ । ୨୫୨ ।
ଗୋକର୍ଣ୍ଣ ଶିବ ଦେଖି ଆଇଲା ଦ୍ୱୈପାୟନୀ ।
ସୂର୍ପାରକତୀର୍ଥେ ଆଇଲା ନ୍ୟାସିଶିରୋମଣି ।୨୫୩।
କୋଲାପୁରେ ଲକ୍ଷ୍ମୀ ଦେଖି କ୍ଷୀର-ଭଗବତୀ ।
ଲାଙ୍ଗାଗଣେଶ ଦେଖି ଚୋରଭଗବତୀ । ୨୫୪ ।
ତଥା ହୈତେ ପାଣ୍ଡୁପୁର ଆଇଲା ଗୌରଚନ୍ଦ୍ର ।
ବିଠ୍ଠଲ ଠାକୁର ଦେଖି ପାଇଲ ଆନନ୍ଦ ।୨୫୫।
ପ୍ରେମାବେଶେ କୈଲ ବହୁ ନର୍ତ୍ତନ-କୀର୍ତ୍ତନ ।
ପ୍ରଭୁର ପ୍ରେମ ଦେଖି ସଭାର ଚମତ୍କାର ମନ ।
ତାହାଁ ଏକ ବିପ୍ର ତାଁରେ ନିମନ୍ତ୍ରଣ କୈଲ ।
ଭିକ୍ଷା କରି ତାହାଁ ଏକ ଶୁଭବାର୍ତ୍ତା ପାଇଲ—
ମାଧବପୁରୀର ଶିଷ୍ୟ ଶ୍ରୀରଙ୍ଗପୁରୀ ନାମ ।
ସେଇ ଗ୍ରାମେ ବିପ୍ର ଗୃହେ କରେନ ବିଶ୍ରାମ ।୨୫୮।
ଶୁନିଞା ଚଳିଲା ପ୍ରଭୁ ତାଁରେ ଦେଖିବାରେ ।
ବିପ୍ରଗୃହେ ବସିଆଛେନ ଦେଖିଲ ତାଁହାରେ ।

ପ୍ରେମାବେଶେ କରେ ତାଁରେ ଦଣ୍ଡପରଣାମ ।
ପୁଲକାଶ୍ରୁ କମ୍ପ ସବ ଅଙ୍ଗେ ପଡ଼େ ଘାମ ।୨୬୦।
ଦେଖିଆ ବିସ୍ମିତ ହୈଲ ଶ୍ରୀରଙ୍ଗପୁରୀ ମନ ।
'ଉଠଉଠ ଶ୍ରୀପାଦ !' ବଲି ବଲିଲ ବଚନ—
ଶ୍ରୀପାଦ ! ଧରହ ଆମାର ଗୋସାଞିର ସମ୍ବନ୍ଧ ।
ତାଁହା ବିନୁ ଅନ୍ୟତ୍ର ନାହି ଏଇ ପ୍ରେମାର ଗନ୍ଧ ।
ଏତ ବଲି ପ୍ରଭୁକେ ଉଠାଇଆ କୈଲ ଆଲିଙ୍ଗନ
ଗଲାଗଲି କରି ଦୋଁହେ କରେନ କ୍ରନ୍ଦନ ।
କ୍ଷଣେକେ ଆବେଶ ଛାଡ଼ି ଦୋଁହାର ଧୈର୍ଯ୍ୟ ହୈଲ ।
ଈଶ୍ୱରପୁରୀର ସମ୍ବନ୍ଧ ପ୍ରଭୁ ଜାନାଇଲ । ୨୬୪ ।
ଦୁଇଜନେ କୃଷ୍ଣକଥା କହେ ରାତ୍ରି-ଦିନେ ।
ଏଇମତ ଗୋଙାଇଲ ପାଁଚ ସାତ ଦିନେ ।୨୬୫।
କୌତୁକେ ପୁରୀ ତାଁରେ ପୁଛିଲ ଜନ୍ମସ୍ଥାନ ।
ଗୋସାଞି କୌତୁକେ କହିଲ ନବଦ୍ୱୀପ-ନାମ ।୨୬୬।
ଶ୍ରୀମାଧବପୁରୀର ସଙ୍ଗେ ଶ୍ରୀରଙ୍ଗପୁରୀ ।
ପୂର୍ବେ ଆସିଆଛିଲା ନଦୀଆ ନଗରୀ । ୨୬୭ ।
ଜଗନ୍ନାଥମିଶ୍ର ଘରେ ଭିକ୍ଷା ଯେ କରିଲ ।
ଅପୂର୍ବ ମୋଚାର ଘଣ୍ଟ ତାହାଁ ଯେ ଖାଇଲ ।୨୬୮।
ଜଗନ୍ନାଥେର ବ୍ରାହ୍ମଣୀ ମହାପତିବ୍ରତା ।
ବାତ୍ସଲ୍ୟେ ହୟେନ ତେହୋ ଯେନ ଜଗନ୍ମାତା ।
ରନ୍ଧନେ ନିପୁଣା ନାହି ତାଁ-ସମ ତ୍ରିଭୁବନେ ।
ପୁତ୍ରସମ ସ୍ନେହେ କରାନ୍ତ ସନ୍ନ୍ୟାସୀ-ଭୋଜନେ ।

---

ସତ୍ୟବିଗ୍ରହ—ସଚ୍ଚିଦାନନ୍ଦଘନ ସାକ୍ଷାତ୍‌ବ୍ରହ୍ମ । ୨୫୦ ।

କୋଲାପୁର—ବୋମ୍ବାଇ ପ୍ରେସିଡେନ୍ସିରେ ଗୋଟିଏ ମିତ୍ରରାଜ୍ୟ, ଏଥିରେ ଶିବାଜୀଙ୍କର ଉତ୍ତରାଧିକାରୀମାନେ ରାଜତ୍ୱ କରୁଅଛନ୍ତି । ୨୫୪ ।

ପାଣ୍ଡୁପୁର—ପାଣ୍ଡୁର ପୁର, ସୋଲାପୁରଜିଲ୍ଲାର ଅନ୍ତର୍ଗତ । ବିଠ୍ଠଲ ବା ବିଠୋବା ଠାକୁର ଏଠାରେ ଅଛନ୍ତି । ସେ ଚତୁର୍ଭୁଜ ନାରାୟଣମୂର୍ତ୍ତି । ୨୫୫ ।

ଗୋସାଇଁ—ଶ୍ରୀରଙ୍ଗପୁରୀଙ୍କର ଗୁରୁଦେବ—ଶ୍ରୀମାଧବେନ୍ଦ୍ରପୁରୀ । ୨୬୬ ।

ଈଶ୍ୱରପୁରୀ ସମ୍ବନ୍ଧ—ଶ୍ରୀମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ—ଶ୍ରୀ ଈଶ୍ୱରପୁରୀଗୋସାଇଁ ଏବଂ ମହାପ୍ରଭୁ ଶ୍ରୀଈଶ୍ୱରପୁରୀ ଗୋସାଇଁଙ୍କର ଶିଷ୍ୟ । ୨୬୪ ।

କୌତୁକେ—ସନ୍ନ୍ୟାସୀମାନଙ୍କର ପୂର୍ବାଶ୍ରମ ପଚାରିବା ଅବିଧି ହେଲେହେଁ ଶ୍ରୀରଙ୍ଗପୁରୀ ପ୍ରେମାନନ୍ଦରେ ପଚାରିଥିବାରୁ କୌତୁକଶବ୍ଦ ବ୍ୟବହାର ହୋଇଅଛି । ୨୬୭ ।

ତାଁର ଏକ ପୁତ୍ର ଯୋଗ୍ୟ କରିୟା ସନ୍ନ୍ୟାସ ।
ଶଙ୍କରାରଣ୍ୟ ନାମ ତାଁର ଅଳପ ବୟସ । ୧୭୧ ।
ଏଇ ତୀର୍ଥେ ଶଙ୍କରାରଣ୍ୟେର ସିଦ୍ଧିପ୍ରାପ୍ତି ହୈଲ ।
ପ୍ରସ୍ତାବେ ଶ୍ରୀରଙ୍ଗପୁରୀ ଏତେକ କହିଲ ।
ପ୍ରଭୁ କହେ—ପୂର୍ବାଶ୍ରମେ ତେହୋ ମୋର ଭ୍ରାତା ।
ଜଗନ୍ନାଥମିଶ୍ର ମୋର ପୂର୍ବାଶ୍ରମେ ପିତା । ୧୭୩ ।
ଏଇମତ ଦୁଇଜନେ ଇଷ୍ଟଗୋଷ୍ଠୀ କରି ।
ଦ୍ୱାରକା ଦେଖିତେ ଚଲିଲା ଶ୍ରୀରଙ୍ଗପୁରୀ ।
ଦିନ ଚାରି ପ୍ରଭୁରେ ତାଁହା ରାଖିଲ ବ୍ରାହ୍ମଣ ।
ଭୀମରଥୀ ସ୍ନାନ କରେ ବିଠ୍ଠଲଦର୍ଶନ । ୧୭୪ ।
ତବେ ମହାପ୍ରଭୁ ଆଇଲା କୃଷ୍ଣବେଣ୍ଣା-ତୀରେ ।
ନାନାତୀର୍ଥ ଦେଖି ତାଁହା ଦେବତାମନ୍ଦିରେ ।
ବ୍ରାହ୍ମଣସମାଜ ସବ ବୈଷ୍ଣବଚରିତ ।
ବୈଷ୍ଣବ ସକଲ ପଢ଼େ କୃଷ୍ଣକର୍ଣ୍ଣାମୃତ । ୧୭୭ ।
କର୍ଣ୍ଣାମୃତ ଶୁନି ପ୍ରଭୁର ଆନନ୍ଦ ହଇଲ ।
ଆଗ୍ରହ କରିୟା ପୁଥି ଲେଖାଇୟା ନିଲ ।
କର୍ଣ୍ଣାମୃତସମ ବସ୍ତୁ ନାହିଁ ତ୍ରିଭୁବନେ ।
ଯାହା ହଇତେ ହୟ ଶୁଦ୍ଧକୃଷ୍ଣପ୍ରେମଜ୍ଞାନେ । ୧୭୯ ।
ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ କୃଷ୍ଣଲୀଲାର ଅବଧି ।
ସେ ଜାନେ ଯେ କର୍ଣ୍ଣାମୃତ ପଢ଼େ ନିରବଧି ।
ବ୍ରହ୍ମସଂହିତା କର୍ଣ୍ଣାମୃତ ଦୁଇ ପୁଥି ପାଞା ।
ମହାରତ୍ନ ପ୍ରାୟ ପାଇ ଆଇଲା ସଙ୍ଗେ ଲଞା ।
ତାପୀ ସ୍ନାନ କରି ଆଇଲା ମାହିଷ୍ମତୀପୁରେ ।
ନାନାତୀର୍ଥ ଦେଖେ ତାଁହା ନର୍ମ୍ମଦାର ତୀରେ ।
ଧନୁତୀର୍ଥେ ଦେଖି କୈଲା ନିର୍ବିନ୍ଧ୍ୟାତେ ସ୍ନାନେ ।
ଋଷ୍ୟମୂକ ପର୍ବତେ ଆଇଲା ଦଣ୍ଡକ-ଅରଣ୍ୟେ ।
ସପ୍ତ ତାଲବୃକ୍ଷ ତାହାଁ କାନନ ଭିତର ।
ଅତିବୃଦ୍ଧ ଅତିସ୍ଥୂଲ ଅତି ଉଚ୍ଚତର । ୧୮୪ ।
ସପ୍ତତାଲ ଦେଖି ପ୍ରଭୁ ଆଲିଙ୍ଗନ କୈଲ ।
ସଶରୀରେ ସପ୍ତତାଲ ବୈକୁଣ୍ଠେ ଚଲିଲ । ୧୮୫ ।
ଶୂନ୍ୟସ୍ଥାନ ଦେଖି ଲୋକେର ହୈଲ ଚମତ୍କାର ।
ଲୋକେ କହେ—ଏ ସନ୍ନ୍ୟାସୀ ରାମ-ଅବତାର ॥
ସଶରୀରେ ଗେଲ ତାଲ ଶ୍ରୀବୈକୁଣ୍ଠଧାମ ।
ଐଛେ ଶକ୍ତି କାର୍ ହୟ ବିନା ଏକ ରାମ ।
ପ୍ରଭୁ ଆସି କୈଲା ପମ୍ପା-ସରୋବରେ ସ୍ନାନ ।
ପଞ୍ଚବଟୀ ଆସି ତାହାଁ କରିଲ ବିଶ୍ରାମ । ୧୮୮ ।
ନାସିକ ତ୍ର୍ୟମ୍ବକ ଦେଖି ଗେଲା ବ୍ରହ୍ମଗିରି ।
କୁଶାବର୍ତ୍ତେ ଆଇଲା ଯାହାଁ ଜନ୍ମିଲା ଗୋଦାବରୀ ।
ସପ୍ତଗୋଦାବରୀ ଦେଖି ତୀର୍ଥ ବହୁତର ।
ପୁନରପି ଆଇଲା ପ୍ରଭୁ ବିଦ୍ୟାନଗର । ୧୯୦ ।
ରାମାନନ୍ଦରାୟ ଶୁନି ପ୍ରଭୁର ଆଗମନ ।
ଆନନ୍ଦେ ଆସିୟା କୈଲ ପ୍ରଭୁର ମିଲନ । ୧୯୧ ।
ଦଣ୍ଡବତ ହୈୟା ପଡ଼େ ଚରଣେ ଧରିୟା ।
ଆଲିଙ୍ଗନ କୈଲ ପ୍ରଭୁ ତାଁରେ ଉଠାଇୟା ।
ଦୁଇଜନ ପ୍ରେମାବେଶେ କରୟେ କ୍ରନ୍ଦନ ।
ପ୍ରେମବେଶେ ଶିଥିଲ ହୈଲ ଦୁଇଜନାର ମନ ।
କତୋକ୍ଷଣେ ଦୁଇଜନ ସୁସ୍ଥିର ହଇୟା ।
ନାନା ଇଷ୍ଟଗୋଷ୍ଠୀ କରେ ଏକତ୍ରେ ବସିୟା । ୧୯୪
ତୀର୍ଥଯାତ୍ରା-କଥା ପ୍ରଭୁ ସକଲ କହିଲା ।
କର୍ଣ୍ଣାମୃତ ବ୍ରହ୍ମସଂହିତା ଦୁଇ ପୁଥି ଦିଲା । ୧୯୫ ।
ପ୍ରଭୁ କହେ – ତୁମି ଯେଇ ସିଦ୍ଧାନ୍ତ କହିଲେ ।
ଏଇ ଦୁଇ ପୁଥି ସେଇ ସବ ସାକ୍ଷୀ ଦିଲେ । ୧୯୬ ।

---

ଯୋଗ୍ୟପୁତ୍ର—ଶ୍ରୀମନ୍ମହାପ୍ରଭୁଙ୍କର ଅଗ୍ରଜ ଶ୍ରୀବିଶ୍ୱରୂପ । ୧୭୧ ।

କୃଷ୍ଣବେଣ୍ଣା—ଏହି ନଦୀତୀରରେ କୃଷ୍ଣକର୍ଣ୍ଣାମୃତରଚୟିତା ଶ୍ରୀମନ୍‌ବିଲ୍ୱମଙ୍ଗଳଠାକୁରଙ୍କର ପୂର୍ବାଶ୍ରମ ଗୃହ । ୧୭୭ ।

ମାହିଷ୍ମତୀପୁରେ—ସହସ୍ରାର୍ଜ୍ଜୁନଙ୍କର ରାଜ୍ୟ । ଏଠାରେ ରାବଣ ଆବଦ୍ଧ ହୋଇଥିଲେ । ଏହା ନର୍ମ୍ମଦାନଦୀତୀରରେ ଅବସ୍ଥିତ । ୧୮୧ ।

ନିର୍ବିନ୍ଧ୍ୟାତେ—ଉଜ୍ଜୟିନୀ ନିକଟସ୍ଥ ନଦୀବିଶେଷ । ୧୮୩ ।

ପଞ୍ଚବଟୀ—ବର୍ତ୍ତମାନ ବୋମ୍ବାଇ ପ୍ରଦେଶର ନାସିକ ସହର । ୧୮୮ ।

ରାମେର ଆନନ୍ଦ ହୈଲ ପୁସ୍ତକ ପାଇୟା ।
ପ୍ରଭୁସହ ଆସ୍ୱାଦିଲ—ରାଖିଲ ଲିଖିୟା ।
'ଗୋସାଞି ଆଇଲ' ଗ୍ରାମେ ହୈଲ କୋଲାହଲ ।
ଗୋସାଞି ଦେଖିତେ ଲୋକ ଆଇଲ ସକଲ ।
ଲୋକ ଦେଖି ରାମାନନ୍ଦ ଗେଲା ନିଜ ଘରେ ।
ମଧ୍ୟାହ୍ନେ ଉଠିଲା ପ୍ରଭୁ ଭିକ୍ଷା କରିବାରେ ।
ରାତ୍ରିକାଳେ ରାୟ ପୁନ କୈଲ ଆଗମନ ।
ଦୁଇଜନ କୃଷ୍ଣକଥାୟ କରେ ଜାଗରଣ । ୩୦୦ ।
ଦୁଇଜନେ କୃଷ୍ଣକଥା ହୟ ରାତ୍ରିଦିନେ ।
ପରମ ଆନନ୍ଦେ ଗେଲ ପାଁଚ ସାତ ଦିନେ ।
ରାମାନନ୍ଦ କହେ ଗୋସାଞି ! ତୋମାର ଆଜ୍ଞା ପାଞା ।
ରାଜାକେ ଲିଖିଲ ଆମି ବିନତି କରିୟା ।
ରାଜା ମୋରେ ଆଜ୍ଞା ଦିଲ ନୀଳାଚଲ ଯାଇତେ ।
ଚଲିବାର ସଜ୍ଜା ଆମି ଲାଗିୟାଛି କରିତେ ।
ପ୍ରଭୁ କହେ—ଏଥା ମୋର ଏ ନିମିତ୍ତ ଆଗମନ ।
ତୋମା ଲୟା ନୀଳାଚଲେ କରିବ ଗମନ । ୩୦୪ ।
ରାୟ କହେ—ପ୍ରଭୁ ! ଆଗେ ଚଲ ନୀଳାଚଲ ।
ମୋର ସଙ୍ଗେ ହାତୀ ଘୋଡ଼ା ସୈନ୍ୟ କୋଲାହଲ ।
ଦିନଦଶେ ଇହାଁ ସବ କରି ସମାଧାନ ।
ତୋମାର ପାଛେ ପାଛେ ଆମି କରିବ ପ୍ରୟାଣ । ୩୦୬ ।
ତବେ ମହାପ୍ରଭୁ ତାଁରେ ଆସିତେ ଆଜ୍ଞା ଦିୟା ।
ନୀଳାଚଲ ଚଲିଲା ପ୍ରଭୁ ଆନନ୍ଦିତ ହୈୟା । ୩୦୭ ।
ଯେଇ ପଥେ ପୂର୍ବେ ପ୍ରଭୁ କରିଲା ଗମନ ।
ସେଇ ପଥେ ଚଲିଲା ପ୍ରଭୁ ଦେଖି ବୈଷ୍ଣବଗଣ ।
ଯାହାଁ ଯାୟ ଉଠେ ଲୋକ ହରିଧ୍ୱନି କରି ।
ଦେଖିୟା ଆନନ୍ଦ ବଡ଼ ପାଇଲା ଗୌରହରି ।
ଆଲାଲନାଥ ଆସି କୃଷ୍ଣଦାସ ପାଠାଇଲ ।
ନିତ୍ୟାନନ୍ଦ ଆଦି ନିଜଗଣେ ବୋଲାଇଲ । ୩୧୦ ।

ପ୍ରଭୁର ଆଗମନ ଶୁନି ନିତ୍ୟାନନ୍ଦରାୟ ।
ଉଠିୟା ଚଲିଲା, ପ୍ରେମେ ଥେହ ନାହିଁ ପାୟ ।
ଜଗଦାନନ୍ଦ ଦାମୋଦର ପଣ୍ଡିତ ମୁକୁନ୍ଦ ।
ନାଚିୟା ଚଲିଲା, ଦେହେ ନା ଧରେ ଆନନ୍ଦ ।
ଗୋପୀନାଥାଚାର୍ଯ୍ୟ ଚଲେ ଆନନ୍ଦିତ ହଞା ।
ପ୍ରଭୁରେ ମିଲିଲା ସଭେ ପଥେ ଲାଗ ପାଞା । ୩୧୩ ।
ପ୍ରଭୁ ପ୍ରେମାବେଶେ ସଭା କୈଲ ଆଲିଙ୍ଗନ ।
ପ୍ରେମାବେଶେ ସଭେ କରେ ଆନନ୍ଦେ କ୍ରନ୍ଦନ ।
ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଆନନ୍ଦେ ଚଲିଲା ।
ସମୁଦ୍ରେର ତୀରେ ଆସି ପ୍ରଭୁରେ ମିଲିଲା । ୩୧୫ ।
ସାର୍ବଭୌମ ମହାପ୍ରଭୁର ପଡ଼ିଲା ଚରଣେ ।
ପ୍ରଭୁ ତାଁରେ ଉଠାଇୟା କୈଲ ଆଲିଙ୍ଗନେ ।
ପ୍ରେମାବେଶେ ସାର୍ବଭୌମ କରେନ କ୍ରନ୍ଦନେ ।
ସଭା ସଙ୍ଗେ ଆଇଲା ପ୍ରଭୁ ଈଶ୍ୱରଦର୍ଶନେ । ୩୧୭ ।
ଜଗନ୍ନାଥ ଦେଖି ପ୍ରଭୁର ପ୍ରେମାବେଶ ହୈଲ ।
କମ୍ପ ସ୍ୱେଦ ପୁଲକାଶ୍ରୁ, ଶରୀର ଭାସିଲ । ୩୧୮ ।
ବହୁ ନୃତ୍ୟ କୈଲ ପ୍ରଭୁ ପ୍ରେମାବିଷ୍ଟ ହୟା ।
ପଶୁପାଲ ସବ ଆଇଲ ପ୍ରସାଦ ମାଲା ଲୟା ।
ମାଲା ପ୍ରସାଦ ପାୟା ତବେ ପ୍ରଭୁ ସ୍ଥିର ହୈଲା ।
ଜଗନ୍ନାଥେର ସେବକ ସବ ଆନନ୍ଦେ ମିଲିଲା ।
କାଶୀମିଶ୍ର ଆସି ପଡ଼ିଲ ପ୍ରଭୁର ଚରଣେ ।
ମାନ୍ୟ କରି ପ୍ରଭୁ ତାରେ କୈଲ ଆଲିଙ୍ଗନେ ।
ଜଗନ୍ନାଥେର ପଡ଼ିଛା ଆସି ପ୍ରଭୁରେ ମିଲିଲା ।
ପ୍ରଭୁ ଲଞା ସାର୍ବଭୌମ ନିଜଘରେ ଗେଲା । ୩୨୨
'ମୋର ଘରେ ଭିକ୍ଷା' ବଲି ନିମନ୍ତ୍ରଣ କୈଲା ।
ଦିବ୍ୟ ଦିବ୍ୟ ମହାପ୍ରସାଦ ଅନେକ ଆନାଇଲା ।
ମଧ୍ୟାହ୍ନ କରିୟା ପ୍ରଭୁ ନିଜଗଣ ଲୈୟା ।
ସାର୍ବଭୌମ ଘରେ ଭିକ୍ଷା କରିଲ ଆସିୟା । ୩୨୪ ।

---

ରାଜାକେ—ମହାରାଜ । ଶ୍ରୀପ୍ରତାପରୁଦ୍ରଙ୍କୁ । ୩୦୨ ।
ଥେହ—ସ୍ଥିରତା । ୩୧୧ ।
ପଥେଲାଗପେଞା—ବାଟରେ ଦର୍ଶନ ପାଇ । ୩୧୩ ।
ଈଶ୍ୱରଦର୍ଶନେ—ଶ୍ରୀଜଗନ୍ନାଥଦେବଙ୍କ ଦର୍ଶନ । ୩୧୭ ।
ପଶୁପାଳ — ଶ୍ରୀଜଗନ୍ନାଥଦେବଙ୍କ ବେଶକାରିସେବକ । ୩୧୯ ।

ଭିକ୍ଷା କରାଇଯାଇ ତାଙ୍କରେ କରାଇଲ ଶୟନ ।
ଆପଣେ ସାର୍ବଭୌମ କରେ ପାଦସମ୍ବାହନ ।୩୨୫

ପ୍ରଭୁ ତାଙ୍କରେ ପାଠାଇଲା ଭୋଜନ କରିତେ ।
ସେଇ ରାତ୍ରି ତାଙ୍କର ଘରେ ରହିଲା ତାଙ୍କର ପ୍ରୀତେ ।

ସାର୍ବଭୌମ ସଙ୍ଗେ ଆର ଲଞ୍ଚା ନିଜଗଣ ।
ତୀର୍ଥଯାତ୍ରା କଥା କହି କୈଲ ଜାଗରଣ ।୩୨୬।

ପ୍ରଭୁ କହେ—ଏତ ତୀର୍ଥ କୈଲ ପର୍ଯ୍ୟଟନ ।
ତୋମା-ସମ ବୈଷ୍ଣବ ନା ଦେଖିଲ ଏକଜନ ।

ଏକ ରାମାନନ୍ଦରାୟ ବହୁ ସୁଖ ଦିଲ ।
ଭଟ୍ଟ କହେ – ଏଇ ଲାଗି ମିଲିତେ କହିଲ ।

ତୀର୍ଥଯାତ୍ରା-କଥା ଏଇ ହୈଲ ସମାପନ ।
ସଂକ୍ଷେପେ କହିଲ, ବିସ୍ତାର ନା ଯାୟ ବର୍ଣ୍ଣନ ।

ଅନନ୍ତ ଚୈତନ୍ୟକଥା କହିତେ ନା ଜାନି ।
ଲୋଭେ ଲଜ୍ଜା ଖାଞା ତାର କରି ଟାନାଟାନି ।

ପ୍ରଭୁର ତୀର୍ଥଯାତ୍ରାକଥା ଶୁନେ ଯେଇଜନ ।
ଚୈତନ୍ୟଚରଣେ ପାୟ ଗାଢ଼ ପ୍ରେମଧନ ।୩୩୨।

ଚୈତନ୍ୟଚରିତ ଶୁନ ଶ୍ରଦ୍ଧା-ଭକ୍ତି କରି ।
ମାତ୍ସର୍ଯ୍ୟ ଛାଡ଼ିଯା ମୁଖେ ବୋଲ 'ହରିହରି' ।

ଏଇ କଲିକାଲେ ଆର ନାହି ଅନ୍ୟ ଧର୍ମ ।
ବୈଷ୍ଣବ ବୈଷ୍ଣବଶାସ୍ତ୍ର ଏଇ କହେ ମର୍ମ ।

ଚୈତନ୍ୟଚନ୍ଦ୍ରେର ଲୀଲା—ଅଗାଧ ଗମ୍ଭୀର ।
ପ୍ରବେଶ କରିତେ ନାରି ସ୍ପର୍ଶି ରହି ତୀର ।

ଚୈତନ୍ୟଚରିତ ଶ୍ରଦ୍ଧାୟ ଶୁନେ ଯେଇଜନ ।
ଯତେକ ବିଚାରେ, ତତ ପାୟ ପ୍ରେମଧନ ।

ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୩୩୭।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ଦକ୍ଷିଣଦେଶତୀର୍ଥଭ୍ରମଣଂ ନାମ
ନବମପରିଚ୍ଛେଦଃ ।

ମଧ୍ୟଲୀଳା ନବମ ପରିଚ୍ଛେଦ ସମାପ୍ତ ।



# ଦଶମ ପରିଚ୍ଛେଦ ।

ଓଁ ବନ୍ଦେ ଗୌରଜଲଦଂ ସ୍ୱସ୍ୟ ଯୋ ୩
ଦର୍ଶନାମୃତୈଃ ।
ବିଚ୍ଛେଦାବଗ୍ରହମ୍ଲାନ-ଭକ୍ତଶସ୍ୟାନ୍ୟଜୀବୟତ୍ । ୧ ।
ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୨ ।
ପୂର୍ବେ ଯବେ ମହାପ୍ରଭୁ ଚଳିଲା ଦକ୍ଷିଣେ ।
ପ୍ରତାପରୁଦ୍ର ରାଜା ତବେ ବୋଲାଇଲା ସାର୍ବଭୌମେ
ବସିତେ ଆସନ ଦିଲା କରି ନମସ୍କାରେ ।
ମହାପ୍ରଭୁର ବାର୍ତ୍ତା ତବେ ପୁଚ୍ଛିଲ ତାଁହାରେ ।
ଶୁନିଲ ତୋମାର ଘରେ ଏକ ମହାଶୟ ।
ଗୌଡ଼ ହୈତେ ଆଇଲା ତେଁହୋ ମହାକୃପାମୟ ।
ତୋମାରେ ବହୁ କୃପା କୈଲା—କହେ ସର୍ବଜନ
କୃପା କରି କରାହ ମୋରେ ତାଁହାର ଦର୍ଶନ ।
ଭଟ୍ଟ କହେ—ଯେ ଶୁନିଲେ, ସେଇ ସତ୍ୟ ହୟ ।
ତାଁହାର ଦର୍ଶନ ତୋମାର ଘଟନ ନା ହୟ । ୭ ।
ବିରକ୍ତ ସନ୍ନ୍ୟାସୀ ତେଁହୋ ରହେନ୍ ନିର୍ଜନେ ।
ସ୍ୱପ୍ନେହ ନା କରେ ତେଁହୋ ରାଜଦରଶନେ ।
ତଥାପି ପ୍ରକାରେ ତୋମାୟ କରାଇତାମ ଦରଶନ ।
ସମ୍ପ୍ରତି କରିଲ ତେଁହୋ ଦକ୍ଷିଣ-ଗମନ । ୮ ।
ରାଜା କହେ— ଜଗନ୍ନାଥ ଛାଡ଼ି କେନେ ଗେଲା ?
ଭଟ୍ଟ କହେ—ମହାନ୍ତେର ଏଇ ଏକ ଲୀଳା ।
ତୀର୍ଥ ପବିତ୍ର କରିତେ କରେନ ତୀର୍ଥଭ୍ରମଣ ।
ସେଇ ଛଲେ ନିସ୍ତାରୟେ ସଂସାରୀକଜନ । ୧୦ ।

ତଥାହି ( ଭାଃ ୧।୧୩।୧୦ )—

ଭବଦ୍ୱିଧା ଭାଗବତାସ୍ତୀର୍ଥୀଭୂତାଃ ସ୍ୱୟଂ ବିଭୋ ।
ତୀର୍ଥୀକୁର୍ବନ୍ତି ତୀର୍ଥାନି ସ୍ୱାନ୍ତଃସ୍ଥେନ ଗଦାଭୃତା । ୧୧ ।

---

## ଦଶମ ପରିଚ୍ଛେଦ ।

ଓଁ ଗୌରଜଲଦଂ—ଗୌରମେଘଂ ବନ୍ଦେ ଯୋ ଗୌରମେଘଃ ସ୍ୱସ୍ୟ—ନିଜସ୍ୟ ଦର୍ଶନାମୃତୈଃ ଦର୍ଶନଜଳଧାରଣୈଃ ବିଚ୍ଛେଦ ଏବ ଅବଗ୍ରହଃ—ବୃଷ୍ଟିବ୍ୟାଘାତଃ ତେନ ମ୍ଲାନାଃ-ଶୁଷ୍କପ୍ରାୟାଃ ଭକ୍ତା ଏବ ଶସ୍ୟାନି ଅଜୀବୟତ୍ ପୁଷ୍ଟିଂକୃତବାନିତ୍ୟର୍ଥଃ । ୧ମ ଶ୍ଲୋକ ।

ଯେଉଁ ଗୌରମେଘଙ୍କୁ ବନ୍ଦନା କରେଁ ଯେ ନିଜ ବିଚ୍ଛେଦରୂପ ଅନାବୃଷ୍ଟି ଦ୍ୱାରା ଶୁଷ୍କ ପ୍ରାୟ ଭକ୍ତରୂପ ଶସ୍ୟମାନଙ୍କୁ ନିଜ ଦର୍ଶନରୂପ ଅମୃତମୟ ଜଳଦାନଦ୍ୱାରା ସଜୀବ-କଲେ । ୧ମ ଶ୍ଲୋକାର୍ଥ ।

ଏକମହାଶୟ—ଶ୍ରୀମନ୍ମହାପ୍ରଭୁ । ଦର୍ଶନ—ପରିଚୟ । ୫ ।

୨ୟ ଶ୍ଲୋକ—ଆଦି ୧ମ ଅଧ୍ୟାୟ ୬୨ଶ ଶ୍ଲୋକ ଦେଖ ।

ହେ ପ୍ରଭୋ ! ଭବାଦୃଶ ଭାଗବତମାନେ ନିଜେ ତୀର୍ଥସ୍ୱରୂପ (ଅତଏବ ଆପଣମାନଙ୍କର ତୀର୍ଥପର୍ଯ୍ୟଟନର ଆବଶ୍ୟକ ନ ଥିଲେ ହେଁ ତୀର୍ଥସବୁ ମଳିନ ବ୍ୟକ୍ତିମାନଙ୍କ ସ୍ପର୍ଶରେ ସମୟ ସମୟରେ ମଳିନ ହେଉଥିବାରୁ ) ଆପଣମାନେ ଆପଣମାନଙ୍କର ହୃଦୟସ୍ଥ ଗଦାଧରଙ୍କ ସଂସ୍ପର୍ଶରେ ତୀର୍ଥମାନଙ୍କୁ ( ସେମାନଙ୍କର ମଳିନତା ଦୂର କରିବାଦ୍ୱାରା ପୁନରାୟ ) ତୀର୍ଥ କରନ୍ତି । ୨ୟ ଶ୍ଲୋକାର୍ଥ ।

ବୈଷ୍ଣବେର ଏଇ ହୟ ସ୍ୱଭାବ ନିଶ୍ଚଳ ।
ତେଁହୋ ଜୀବ ନହେ—ହୟ ସ୍ୱତନ୍ତ୍ର ଈଶ୍ୱର ।
ରାଜା କହେ—ତାଁରେ ତୁମି ଯାଇତେ କେନେ ଦିଲେ
ପାଦ୍ୟେ ପଡ଼ି ଯତ୍ନ କରି କେନେ ନା ରାଖିଲେ ?
ଭଟ୍ଟାଚାର୍ଯ୍ୟ କହେ—ତେଁହୋ ଈଶ୍ୱର ସ୍ୱତନ୍ତ୍ର ।
ସାକ୍ଷାତ୍ କୃଷ୍ଣ ତେଁହୋ ନହେ ପରତନ୍ତ୍ର । ୧୩ ।
ତଥାପି ରାଖିତେ ତାଁରେ ବହୁ ଯତ୍ନ କୈଲ ।
ଈଶ୍ୱରେର ସ୍ୱତନ୍ତ୍ର ଇଚ୍ଛା, ରାଖିତେ ନାରିଲ । ୧୪ ।
ରାଜା କହେ—ଭଟ୍ଟ ! ତୁମି ବିଜ୍ଞଶିରୋମଣି ।
ତୁମି ତାଁରେ 'କୃଷ୍ଣ' କହ—ତାତେ ସତ୍ୟ ମାନି ।
ପୁନରପି ଇହାଁ ତାଁର ହବେ ଆଗମନ ।
ଏକବାର ଦେଖି କରି ସଫଳ ନୟନ । ୧୬ ।
ଭଟ୍ଟାଚାର୍ଯ୍ୟ କହେ—ତେଁହୋ ଆସିବ ଅଲ୍ପକାଲେ
ରହିତେ ତାଁରେ ଏକ ସ୍ଥାନ ଚାହିୟେ ବିରଲେ ।
ଠାକୁରେର ନିକଟ ଆର ହଇବେ ନିର୍ଜନେ ।
ଐଛେ ନିର୍ଣ୍ଣୟ କରି ଦେହ ଏକ ସ୍ଥାନେ । ୧୮ ।
ରାଜା କହେ—ଐଛେ କାଶୀମିଶ୍ରେର ସଦନ ।
ଠାକୁରେର ନିକଟ ହୟ ପରମ ନିର୍ଜନ । ୧୯ ।
ଏତ କହି ରାଜା ରହେ ଉତ୍କଣ୍ଠିତ ହୟା ।
ଭଟ୍ଟାଚାର୍ଯ୍ୟ କାଶୀମିଶ୍ରେ କହିଲ ଯାଇ ଗିୟା । ୨୦ ।
କାଶୀମିଶ୍ର କହେ—ଆମି ବଡ଼ ଭାଗ୍ୟବାନ୍ ।
ମୋର ଘରେ ପ୍ରଭୁପାଦେର ହବେ ଅବସ୍ଥାନ । ୨୧ ।
ଏଇମତ ପୁରୁଷୋତ୍ତମବାସୀ ଯତ ଜନ ।
ପ୍ରଭୁରେ ମିଳିତେ ସଭାର ଉତ୍କଣ୍ଠିତ ମନ ।
ସବଲୋକେର ଉତ୍କଣ୍ଠା ଯବେ ଅତ୍ୟନ୍ତ ବାଢ଼ିଲା ।
ମହାପ୍ରଭୁ ଦକ୍ଷିଣ ହୈତେ ତବହିଁ (ଫିରି) ଆଇଲା

ଶୁନି ଆନନ୍ଦିତ ହୈଲ ସଭାକାର ମନ ।
ସବେ ମେଲି ସାର୍ବଭୌମେ କୈଲ ନିବେଦନ ।
ପ୍ରଭୁ ସଙ୍ଗେ ଆମା ସଭାର କରାହ ମିଲନ ।
ତୋମାର ପ୍ରସାଦେ ପାଇ ଚୈତନ୍ୟଚରଣ । ୨୫ ।
ଭଟ୍ଟାଚାର୍ଯ୍ୟ କହେ—କାଲି କାଶୀମିଶ୍ର ଘରେ ।
ପ୍ରଭୁ ଯାଇବେନ ତାହାଁ ମିଲାଇବ ସଭାରେ । ୨୬ ।
ଆରଦିନ ମହାପ୍ରଭୁ ଭଟ୍ଟାଚାର୍ଯ୍ୟ ସଙ୍ଗେ ।
ଜଗନ୍ନାଥଦରଶନ କୈଲ ମହାରଙ୍ଗେ । ୨୭ ।
ମହାପ୍ରସାଦ ଦିୟା ତାହାଁ ମିଲିଲା ସେବକଗଣ ।
ମହାପ୍ରଭୁ ସଭାକାରେ କୈଲ ଆଲିଙ୍ଗନ । ୨୮ ।
ଦର୍ଶନ କରି ମହାପ୍ରଭୁ ଚଲିଲା ବାହିରେ ।
ଭଟ୍ଟାଚାର୍ଯ୍ୟ ଆନିଲ ତାଁରେ କାଶୀମିଶ୍ର ଘରେ । ୨୯ ।
କାଶୀମିଶ୍ର ପଡ଼ିଲା ଆସି ପ୍ରଭୁର ଚରଣେ ।
ଗୃହ ସହିତ ଆତ୍ମା ତାଁରେ କୈଲ ନିବେଦନେ ।
ପ୍ରଭୁ ଚତୁର୍ଭୁଜ ମୂର୍ତ୍ତି ତାଁରେ ଦେଖାଇଲ ।
ଆତ୍ମସାତ୍ କରି ତାଁରେ ଆଲିଙ୍ଗନ କୈଲ । ୩୧ ।
ତବେ ମହାପ୍ରଭୁ ତାହାଁ ବସିଲା ଆସନେ ।
ଚୌଦିଗେ ବସିଲା ନିତ୍ୟାନନ୍ଦାଦି ଭକ୍ତଗଣେ ।
ସୁଖୀ ହୈଲା ପ୍ରଭୁ ଦେଖି ବାସାର ସଂସ୍ଥାନ ।
ଯେଇ ବାସାୟ ହୟ ପ୍ରଭୁର ସର୍ବ ସମାଧାନ ।
ସାର୍ବଭୌମ କହେ—ପ୍ରଭୁ ! ତୋମାର ଯୋଗ୍ୟ ବାସା ।
'ତୁମି ଅଙ୍ଗୀକାର କର'—ଏଇ ମିଶ୍ରେର ଆଶା ।
ପ୍ରଭୁ କହେ—ଏଇ ଦେହ ତୋମା ସଭାକାର ।
ଯେଇ ତୁମି କହ—ସେଇ ସମ୍ମତ ଆମାର । ୩୫ ।
ତବେ ସାର୍ବଭୌମ ପ୍ରଭୁର ଦକ୍ଷିଣ ପାର୍ଶ୍ୱେ ବସି ।
ମିଳାଇତେ ଲାଗିଲେ ସବ ପୁରୁଷୋତ୍ତମବାସୀ ।

---

ଶ୍ରୀଭଗବତ୍‌ଭକ୍ତମାନେ ଜୀବ ହୋଇ ସୁଦ୍ଧା ଏପରି କୃପାଳୁ ଯେ ବହୁକଷ୍ଟ ସ୍ୱୀକାର କରି ତୀର୍ଥଭ୍ରମଣଛଳରେ ତୀର୍ଥମାନଙ୍କର ମାଳିନ୍ୟ ଦୂର କରନ୍ତି ଓ ସଂସାରବିମୋହିତ ମନୁଷ୍ୟମାନଙ୍କୁ ଦର୍ଶନ ଓ ଉପଦେଶାଦିଦ୍ୱାରା ଉଦ୍ଧାର କରନ୍ତି । ଏପରି ସ୍ଥଳରେ ଶ୍ରୀମନ୍‌ମହାପ୍ରଭୁ ସ୍ୱୟଂ ଭଗବାନ୍; ସୁତରାଂ ସେ ତୀର୍ଥଭ୍ରମଣଛଳରେ ତୀର୍ଥମାନଙ୍କୁ ମହାତୀର୍ଥରେ ପରିଣତ କରିବେ ଓ ସଙ୍ଗେ ସଙ୍ଗେ ଜଗତ୍‌ବାସୀ ଜୀବମାନଙ୍କୁ ଉଦ୍ଧାର କରିବେ । ଏହାହିଁ ତାଙ୍କର କୃପାଳୁତାର ବିଶେଷତ୍ୱ । ୧୧ ।

ମିଳାଇତେ ଲାଗିଲା—ପରିଚୟ କରାଇ ଦେଲେ । ୩୬ ।

ଏହି ସବୁ ଲୋକ ପ୍ରଭୁ ! ବୈସେ ନୀଳାଚଳେ ।
ଉତ୍କଣ୍ଠିତ ହୋଇଅଛନ୍ତି ତୋମା ମିଳିବାରେ ॥
ତୃଷିତ ଚାତକ ଯେସନ୍ତ ମେଘଘରେ ହାହାକାରେ ।
ତେସନ୍ତେ ଏହି ସବୁ, ସଭିଁ କର ଅଙ୍ଗୀକାରେ ।୩୮।
ଜଗନ୍ନାଥ-ସେବକ ଏହି ନାମ ଜନାର୍ଦ୍ଦନ ।
ଅନବସରେ କରେ ପ୍ରଭୁର ଶ୍ରୀଅଙ୍ଗ ସେବନ ।୩୯।
କୃଷ୍ଣଦାସ ନାମ ଏହି ସ୍ୱର୍ଣ୍ଣବେତ୍ରଧାରୀ ।
ଶିଖୀମାହିତି ଏହି ଲିଖନ ଅଧିକାରୀ । ୪୦ ।
ପ୍ରଦ୍ୟୁମ୍ନମିଶ୍ର ଇଁହୋ ବୈଷ୍ଣବପ୍ରଧାନ ।
ଜଗନ୍ନାଥ-ମହାସୋୟାର ଇଁହୋ ଦାସ ନାମ ।୪୧।
ମୁରାରିମାହିତି—ଶିଖୀମାହିତିର ଭାଇ ।
ତୋମାର ଚରଣ ବିନୁ ଅନ୍ୟ ଗତି ନାଇ ।୪୨।
ଚନ୍ଦନେଶ୍ୱର ସିଂହେଶ୍ୱର ମୁରାରି ବ୍ରାହ୍ମଣ ।
ବିଷ୍ଣୁଦାସ ଇଁହୋ ଧ୍ୟାୟ ତୋମାର ଚରଣ ।୪୩।
ପ୍ରହରାଜ ମହାପାତ୍ର ଇଁହୋ ମହାମତି ।
ପରମାନନ୍ଦ ମହାପାତ୍ର ଇହାର ସଂହତି । ୪୪ ।
ଏହି ସବ ବୈଷ୍ଣବ ଏହି କ୍ଷେତ୍ରେର ଭୂଷଣ ।
ଏକାନ୍ତଭାବେ ଭଜେ ସଭେ ତୋମାର ଚରଣ ॥
ତବେ ସଭେ ଭୂମେ ପଡ଼େ ଦଣ୍ଡବତ ହୋଇଯା ।
ସଭା ଆଲିଙ୍ଗିଯା ପ୍ରଭୁ ପ୍ରସାଦ କରିଯା । ୪୬ ।
ହେନକାଲେ ଆଇଲ ତାହାଁ ଭବାନନ୍ଦ ରାୟ ।
ଚାରିପୁତ୍ର ସଙ୍ଗେ ପଡ଼େ ମହାପ୍ରଭୁର ପାୟ ।୪୭।
ସାର୍ବ୍ବଭୌମ କହେ—ଏହି ରାୟ ଭବାନନ୍ଦ ।
ଇଁହାର ପ୍ରଥମ ପୁତ୍ର ରାୟ ରାମାନନ୍ଦ । ୪୮ ।
ତବେ ମହାପ୍ରଭୁ ତାଁରେ କୈଲ ଆଲିଙ୍ଗନ ।
ସ୍ତୁତି କରି କହେ ରାମାନନ୍ଦ ବିବରଣ । ୪୯ ।
ରାମାନନ୍ଦ ହେନ ରତ୍ନ ଯାଁହାର ତନୟ ।
ତାଁହାର ମହିମା ଲୋକେ କହନେ ନା ହୟ ।୫୦।
ସାକ୍ଷାତ୍ ପାଣ୍ଡୁ ତୁମି, ତୋମାର ପତ୍ନୀ କୁନ୍ତୀ ।
ପଞ୍ଚପାଣ୍ଡବ ତୋମାର ପଞ୍ଚପୁତ୍ର ମହାମତି । ୫୧ ।
ରାୟ କହେ—ଆମି ଶୂଦ୍ର ବିଷୟୀ ଅଧମ ।
ମୋରେ ସ୍ପର୍ଶ ତୁମି—ଏହି ଈଶ୍ୱର ଲକ୍ଷଣ ।୫୨।
ନିଜଗୃହ ବିତ୍ତ ଭୃତ୍ୟ ପଞ୍ଚପୁତ୍ର-ସନେ ।
ଆତ୍ମା ସମର୍ପିଲ ଆମି ତୋମାର ଚରଣେ ।୫୩।
ଏଇ ବାଣୀନାଥ ରହିବେ ତୋମାର ଚରଣେ ।
ଯବେ ଯେଇ ଆଜ୍ଞା ସେଇ କରିବେ ସେବନେ ॥
ଆତ୍ମୀୟ ଜ୍ଞାନ କରି ସଙ୍କୋଚ ନା କରିବେ ।
ଯେଇ ଯବେ ଇଚ୍ଛା ତୋମାର ସେଇ ଆଜ୍ଞା ଦିବେ ।
ପ୍ରଭୁ କହେ—କି ସଙ୍କୋଚ ନହ ତୁମି ପର ।
ଜନ୍ମେ ଜନ୍ମେ ତୁମି ଆମାର ସବଂଶେ କିଙ୍କର ।
ଦିନ ପାଁଚ-ସାତ-ଭିତରେ ଆସିବ ରାମାନନ୍ଦ ।
ତାଁର ସଙ୍ଗେ ପୂର୍ଣ୍ଣ ହବେ ଆମାର ଆନନ୍ଦ ।୫୭।
ଏତ ବଲି ପ୍ରଭୁ ତାଁରେ କୈଲ ଆଲିଙ୍ଗନ ।
ତାଁର ପୁତ୍ର ସବ ଶିରେ ଧରିଲ ଚରଣ । ୫୮ ।
ତବେ ମହାପ୍ରଭୁ ତାଁରେ ଘରେ ପାଠାଇଲ ।
ବାଣୀନାଥ ପଟ୍ଟନାୟକ ନିକଟେ ରାଖିଲ । ୫୯ ।
ଭଟ୍ଟାଚାର୍ଯ୍ୟ ସବ-ଲୋକେ ବିଦାୟ କରିଲ ।
ତବେ ପ୍ରଭୁ କାଲାକୃଷ୍ଣଦାସେ ବୋଲାଇଲ ।୬୦।

---

ହାହାକାରେ—ଡାକନ୍ତି । ୩୮ ।

ଅନବସରେ—ସ୍ନାନପୂର୍ଣ୍ଣିମା ପରଦିନଠାରୁ ଶ୍ରୀଜଗନ୍ନାଥ ଦେବଙ୍କର ନବଯୌବନ-ଦର୍ଶନ ପର୍ଯ୍ୟନ୍ତ ଅନବସର ଅର୍ଥାତ୍ ଅଣସର । ୩୯ ।

ମହାସୋୟାର—ପାଚକଶ୍ରେଷ୍ଠ । ୪୧ ।

ଶ୍ରୀଭବାନନ୍ଦ ରାୟଙ୍କର ପାଞ୍ଚପୁତ୍ର—ରାୟରାମାନନ୍ଦ, ଗୋପୀନାଥ ପଟ୍ଟନାୟକ, ବାଣୀନାଥ ପଟ୍ଟନାୟକ, କଳାନିଧି ପଟ୍ଟନାୟକ ଓ ସୁଧାନିଧି ପଟ୍ଟନାୟକ । ୪୭ ।

କାଲାକୃଷ୍ଣଦାସ—ଯେ କି ମହାପ୍ରଭୁଙ୍କର ଦକ୍ଷିଣଭ୍ରମଣ ସମୟରେ ତାଙ୍କ ସଙ୍ଗରେ ଥିଲେ । ୬୦ ।

ପ୍ରଭୁ କହେ— ଭଟ୍ଟାଚାର୍ଯ୍ୟ ! ଶୁନ ଇହାର ଚରିତ।
ଦକ୍ଷିଣ ଗେଲେନ ଇହେ। ଆମାର ସହିତ ।୬୧।
ଭଟ୍ଟମାରି ହୈତେ ଗେଲା ଆମାରେ ଛାଡ଼ିୟା ।
ଭଟ୍ଟମାରି ହୈତେ ଇହାୟ ଆନିଲ ଉଦ୍ଧାରିୟା ।
ଏବେ ଆମି ଇହାଁ ଆନି କରିଲ ବିଦାୟ ।
ଯାହାଁ ତାହାଁ ଯାହ, ଆମା-ସନେ ନାହି ଆର ଦାୟ ॥
ଏତ ଶୁନି କୃଷ୍ଣଦାସ କାନ୍ଦିତେ ଲାଗିଲା ।
ମଧ୍ୟାହ୍ନ କରିତେ ମହାପ୍ରଭୁ ଉଠି ଗେଲା ।୬୪।
ନିତ୍ୟାନନ୍ଦ ଜଗଦାନନ୍ଦ ମୁକୁନ୍ଦ ଦାମୋଦର ।
ଚାରିଜନେ ଯୁକ୍ତି ତବେ କରିଲ ଅନ୍ତର ।୬୫।
ଗୌଡ଼ଦେଶେ ପାଠାଇତେ ଚାହି ଏକଜନ ।
ଆଇକେ କହିବ ଯାଇ ପ୍ରଭୁର ଆଗମନ ।୬୬।
ଅଦ୍ବୈତ ଶ୍ରୀବାସ ଆଦି ଯତ ଭକ୍ତଗଣ ।
ସଭେ ଆସିବେ ଶୁନି ପ୍ରଭୁର ଆଗମନ ।୬୭।
ଏଇ କୃଷ୍ଣଦାସେ ଦିବ ଗୌଡ଼େ ପାଠାଇୟା ।
ଏତ କହି ତାଁରେ ରାଖିଲ ଆଶ୍ୱାସ କରିୟା ।୬୮।
ଆରଦିନ ପ୍ରଭୁଠାଇଁ କୈଲ ନିବେଦନ— ।
ଆଜ୍ଞା ଦେହ, ଗୌଡ଼ଦେଶେ ପାଠାଇ ଏକଜନ ।
ତୋମାର ଦକ୍ଷିଣ ଗମନ ଶୁନି ଶଚୀ ଆଇ ।
ଅଦ୍ବୈତାଦି ବୈଷ୍ଣବ ଅଛେନ ଦୁଃଖ ପାଇ ।୭୦।
ଏକଜନ ଯାଇ କହେ ଶୁଭ ସମାଚାର ।
ପ୍ରଭୁ କହେ— କର ସେଇ ଯେ ଇଚ୍ଛା ତୋମାର ।
ତବେ ସେଇ କୃଷ୍ଣଦାସେ ଗୌଡ଼େ ପାଠାଇଲ ।
ବୈଷ୍ଣବ-ସଭାରେ ଦିତେ ମହାପ୍ରସାଦ ଦିଲ ।୭୨।
ତବେ ଗୌଡ଼ଦେଶେ ଆଇଲା କାଲାକୃଷ୍ଣଦାସ ।
ନବଦ୍ୱୀପ ଗେଲା ତେଁହୋ ଶଚୀ-ଆଇ ପାଶ ।୭୩।
ମହାପ୍ରସାଦ ଦିୟା ତାଁରେ କୈଲ ନମସ୍କାର ।
'ଦକ୍ଷିଣ ହୈତେ ଆଇଲା ପ୍ରଭୁ' କହେ ସମାଚାର ।
ଶୁନି ଆନନ୍ଦିତ ହୈଲ ଶଚୀମାତାର ମନ ।
ଶ୍ରୀନିବାସ ଆଦି ଆର ଯତ ଭକ୍ତଗଣ ।୭୫।
ଶୁନିୟା ସଭାର ହୈଲ ପରମ ଉଲ୍ଲାସ ।
ଅଦ୍ବୈତଆଚାର୍ଯ୍ୟ ଗୃହେ ଗେଲା କୃଷ୍ଣଦାସ ।୭୬।
ଆଚାର୍ଯ୍ୟେ ପ୍ରସାଦ ଦିୟା କୈଲ ନମସ୍କାର ।
ସମ୍ୟକ୍ କହିଲ ମହାପ୍ରଭୁର ସମାଚାର ।୭୭।
ଶୁନିୟା ଆଚାର୍ଯ୍ୟଗୋସାଞି ପରମାନନ୍ଦ ହୈଲା ।
ପ୍ରେମାବେଶେ ହୁଙ୍କାର ବହୁ ନୃତ୍ୟଗୀତ କୈଲା ।
ହରିଦାସଠାକୁରେର ହୈଲ ପରମ ଆନନ୍ଦ ।
ବାସୁଦେବଦତ୍ତ ଗୁପ୍ତ-ମୁରାରି ଶିବାନନ୍ଦ ।୭୯।
ଆଚାର୍ଯ୍ୟରତ୍ନ ଆର ପଣ୍ଡିତ ବକ୍ରେଶ୍ୱର ।
ଆଚାର୍ଯ୍ୟନିଧି ଆର ପଣ୍ଡିତ ଗଦାଧର ।୮୦।
ଶ୍ରୀରାମ ପଣ୍ଡିତ ଆର ପଣ୍ଡିତ ଦାମୋଦର ।
ଶ୍ରୀମାନ୍ ପଣ୍ଡିତ ଆର ବିଜୟ ଶ୍ରୀଧର ।୮୧।
ରାଘବ ପଣ୍ଡିତ ଆର ଆଚାର୍ଯ୍ୟ ନନ୍ଦନ ।
କତେକ କହିବ ଆର ଯତ ପ୍ରଭୁର ଗଣ ?
ଶୁନିୟା ସଭାର ହୈଲ ପରମ ଉଲ୍ଲାସ ।
ସଭେ ମିଲି ଆଇଲା ଶ୍ରୀଅଦ୍ବୈତେର ପାଶ ।
ଆଚାର୍ଯ୍ୟେର କୈଲ ସଭେ ଚରଣ-ବନ୍ଦନ ।
ଆଚାର୍ଯ୍ୟଗୋସାଞି କୈଲ ସଭା ଆଲିଙ୍ଗନ ।
ଦୁଇ ତିନ ଦିନ ଆଚାର୍ଯ୍ୟ ମହୋତ୍ସବ କୈଲ ।
ନୀଳାଚଳ ଯାଇତେ ତବେ ଯୁକ୍ତି ଦୃଢ଼ ହୈଲ ।
ସଭେ ମିଲି ନବଦ୍ୱୀପେ ଏକତ୍ର ହଇୟା ।
ନୀଳାଦ୍ରି ଚଲିଲ ଶଚୀମାତାର ଆଜ୍ଞା ଲୈୟା ।
ପ୍ରଭୁର ସମାଚାର ଶୁନି କୁଲୀନଗ୍ରାମବାସୀ ।
ସତ୍ୟରାଜ ରାମାନନ୍ଦ ମିଲିଲ ତାହାଁ ଆସି ।
ମୁକୁନ୍ଦ ନରହରି ରଘୁନନ୍ଦନ ଖଣ୍ଡ ହୈତେ ।
ଆଚାର୍ଯ୍ୟେର ଠାଞି ଆଇଲା ନୀଳାଚଳ ଯାଇତେ ।
ସେଇକାଳେ ଦକ୍ଷିଣ ହୈତେ ପରମାନନ୍ଦପୁରୀ ।
ଗଙ୍ଗା ତୀରେ ତୀରେ ଆଇଲା ନଦୀୟାନଗରୀ ।୮୯।
ଆଇର ମନ୍ଦିରେ ସୁଖେ କରିଲ ବିଶ୍ରାମ ।
ଆଇ ତାଁରେ ଭିକ୍ଷା ଦିଲ କରିୟା ସମ୍ମାନ ।୯୦।
ପ୍ରଭୁ-ଆଗମନ ତେଁହୋ ତାହାଁଇ ଶୁନିଲ ।
ଶୀଘ୍ର ନୀଳାଚଳ ଯାଇତେ ତାଁର ଇଚ୍ଛା ହୈଲ ।
ପ୍ରଭୁର ଏକଭକ୍ତ— ଦ୍ୱିଜ କମଲାକାନ୍ତ ନାମ ।
ତାରେ ଲଞା ନୀଳାଚଳେ କରିଲ ପ୍ରୟାଣ ।୯୨।

---

ଆଚାର୍ଯ୍ୟନନ୍ଦନ— ନନ୍ଦନ ଆଚାର୍ଯ୍ୟ ।୮୨। କୁଲୀନଗ୍ରାମ— କୁଲୀଆନଗର ।୮୭।
ଖଣ୍ଡ— ଶ୍ରୀପାଟ ଶ୍ରୀଖଣ୍ଡ ।୮୮। ଆଇ— ଶ୍ରୀଶଚୀଦେବୀ ।୯୦।

ମନ୍ଦିରେ ଆସିୟା ତେଁହୋ ମିଲିଲା ପ୍ରଭୁରେ ।
ପ୍ରଭୁର ଆନନ୍ଦ ହୈଲ ପାଇୟା ତାହାରେ । ୯୩ ।
ପ୍ରେମାବେଶେ କୈଲ ତାଁର ଚରଣ ବନ୍ଦନ ।
ତେଁହୋ ପ୍ରେମାବେଶେ କୈଲ ପ୍ରଭୁରେ ଆଲିଙ୍ଗନ
ପ୍ରଭୁ କହେ – ତୋମା ସଙ୍ଗେ ରହିତେ ବାଞ୍ଛା ହୟ
ମୋରେ କୃପା କରି କର ନୀଲାଦ୍ରି ଆଶ୍ରୟ । ୯୫ ।
ପୁରୀ କହେ — ତୋମା ସଙ୍ଗେ ରହିତେ ବାଞ୍ଛା କରି
ଗୌଡ଼ ହୈତେ ଚଲି ଆଇଲାଙ୍ ନୀଲାଚଲପୁରୀ ।
ଦକ୍ଷିଣ ହଇତେ ଶୁନି ତୋମାର ଆଗମନ ।
ଶଚୀର ଆନନ୍ଦ ହୈଲ ଯତ ଭକ୍ତଗଣ । ୯୬ ।
ସବେଇ ଆସିତେଛେନ ତୋମାରେ ଦେଖିତେ ।
ତା ସଭାର ବିଲମ୍ବ ଦେଖି ଆଇଲାଙ୍ ତ୍ୱରିତେ ।
କାଶୀମିଶ୍ରେର ଆବାସେ ନିଭୃତେ ଏକ ଘର ।
ପ୍ରଭୁ ତାଁରେ ଦିଲ ଆର ସେବାର କିଙ୍କର । ୯୯ ।
ଆରଦିନେ ଆଇଲା ସ୍ୱରୂପ ଦାମୋଦର ।
ପ୍ରଭୁର ଅତ୍ୟନ୍ତ ମର୍ମୀ ରସେର ସାଗର । ୧୦୦ ।
'ପୁରୁଷୋତ୍ତମ-ଆଚାର୍ଯ୍ୟ' ତାଁର ନାମ ପୂର୍ବାଶ୍ରମେ ।
ନବଦ୍ୱୀପେ ଛିଲା ତେଁହୋ ପ୍ରଭୁର ଚରଣେ । ୧୦୧
ପ୍ରଭୁର ସନ୍ନ୍ୟାସ ଦେଖି ଉନ୍ମତ୍ତ ହଇୟା ।
ସନ୍ନ୍ୟାସ ଗ୍ରହଣ କୈଲ ବାରାଣସୀ ଗିୟା । ୧୦୨ ।

ଚୈତନ୍ୟାନନ୍ଦ ଗୁରୁ ତାଁର ଆଜ୍ଞା ଦିଲ ତାଁରେ—
ବେଦାନ୍ତ ପଡ଼ିୟା ପଡ଼ାଓ ସମସ୍ତ ଲୋକେରେ ।
ପରମ ବିରକ୍ତ ତେଁହୋ ପରମ ପଣ୍ଡିତ —
କାୟମନେ ଆଶ୍ରିୟାଛେ ଶ୍ରୀକୃଷ୍ଣ-ଚରିତ । ୧୦୪ ।
ନିଶ୍ଚିନ୍ତେ କୃଷ୍ଣ ଭଜିବ — ଏଇ ତ କାରଣେ ।
ଉନ୍ମାଦେ କରିଲ ତେଁହୋ ସନ୍ନ୍ୟାସ-ଗ୍ରହଣ । ୧୦୫
ସନ୍ନ୍ୟାସ କରିଲ ଶିଖା-ସୂତ୍ର-ତ୍ୟାଗରୂପ ।
ଯୋଗପଟ୍ଟ ନା ଲଇଲ – ନାମ ହୈଲ 'ସ୍ୱରୂପ' ।
ଗୁରୁଠାଞି ଆଜ୍ଞା ମାଗି ଆଇଲ ନୀଲାଚଲେ ।
ରାତ୍ରିଦିନ କୃଷ୍ଣପ୍ରେମ-ଆନନ୍ଦ ବିହ୍ୱଲେ । ୧୦୬ ।
ପାଣ୍ଡିତ୍ୟେର ଅବଧି କଥା ନାହିଁ କାର ସନେ ।
ନିର୍ଜନେ ରହେନ, ସବଲୋକ ନାହିଁ ଜାନେ ।
କୃଷ୍ଣରସତତ୍ତ୍ୱବେତ୍ତା — ଦେହ ପ୍ରେମରୂପ ।
ସାକ୍ଷାତ ମହାପ୍ରଭୁର ଦ୍ୱିତୀୟସ୍ୱରୂପ । ୧୦୯ ।
ଗ୍ରନ୍ଥ ଶ୍ଳୋକ ଗୀତ କେହୋ ପ୍ରଭୁ-ଆଗେ ଆନେ ।
ସ୍ୱରୂପ ପରୀକ୍ଷା କୈଲେ — ପାଛେ ପ୍ରଭୁ ଶୁନେ ।
ଭକ୍ତିସିଦ୍ଧାନ୍ତ-ବିରୁଦ୍ଧ ଯେଇ, ଆର ରସାଭାସ ।
ଶୁନିତେ ନା ହୟ ପ୍ରଭୁର ଚିତ୍ତେର ଉଲ୍ଲାସ । ୧୧୧ ।
ଅତଏବ ସ୍ୱରୂପ ଆଗେ କରେ ପରୀକ୍ଷଣ ।
ଶୁଦ୍ଧ ହୟ ଯଦି, କରାୟ ପ୍ରଭୁକେ ଶ୍ରବଣ । ୧୧୨ ।

---

ଗୌଡ଼ – ଗୌଡ଼ଦେଶ (ବଙ୍ଗଦେଶ) । ୯୬ ।

ଶ୍ରୀସ୍ୱରୂପଗୋସ୍ୱାମୀଙ୍କର ଗୁରୁଙ୍କ ନାମ ଚୈତନ୍ୟାନନ୍ଦ । ୧୦୩ ।

ତେହିଁ – ସ୍ୱରୂପ ଦାମୋଦର । ୧୦୪ ।

ଶ୍ରୀପୁରୁଷୋତ୍ତମ ଆଚାର୍ଯ୍ୟ ମହାଶୟ ଶ୍ରୀମନ୍ମହାପ୍ରଭୁଙ୍କର ସନ୍ନ୍ୟାସଗ୍ରହଣରେ ଅତ୍ୟନ୍ତ ବିଚଳିତ ହୋଇ ନିଶ୍ଚିନ୍ତରେ ଶ୍ରୀକୃଷ୍ଣ ଭଜନ କରିବା ସକାଶେ ସଂସାରାଶ୍ରମ ତ୍ୟାଗ କରିବା ଉଦ୍ଦେଶ୍ୟରେ ଶ୍ରୀକାଶୀଧାମକୁ ଯାଇ ଚୈତନ୍ୟାନନ୍ଦ ସନ୍ନ୍ୟାସୀଙ୍କ ନିକଟରେ ସନ୍ନ୍ୟାସ ଗ୍ରହଣ କଲେ । କେବଳ ତ୍ୟାଗ ମାତ୍ର ତାଙ୍କର ଉଦ୍ଦେଶ୍ୟ ଥିବାରୁ ଶିଖା ସୂତ୍ର ତ୍ୟାଗରୂପ ସନ୍ନ୍ୟାସ ଗ୍ରହଣ କଲେ । କିନ୍ତୁ ସନ୍ନ୍ୟାସ ଆଶ୍ରମୋଚିତ ଯୋଗପଟ୍ଟ ନାମକ ବସ୍ତ୍ରବିଶେଷ ଓ ଦଣ୍ଡାଦି ଗ୍ରହଣ କଲେ ନାହିଁ । ତେଣୁ ସେ ସନ୍ନ୍ୟାସଲିଙ୍ଗ ଗ୍ରହଣ ନକରିବାରୁ ଗୁରୁ ତାଙ୍କୁ ସନ୍ନ୍ୟାସ ନାମ ନ ଦେଇ ବ୍ରହ୍ମଚାରୀରୂପ ଦାମୋଦରସ୍ୱରୂପ ନାମ ଦେଲେ । ୧୦୬ ।

ପାଣ୍ଡିତ୍ୟେର ଅବଧି — ମହାପଣ୍ଡିତ । ୧୦୮ ।

ଭକ୍ତିସିଦ୍ଧାନ୍ତବିରୁଦ୍ଧ — ଯେଉଁ ଗ୍ରନ୍ଥରେ ଭଗବତ୍ତତ୍ତ୍ୱ ଓ ସାଧ୍ୟସାଧନ ତତ୍ତ୍ୱର ବିଷୟ ଘଟିତ ବର୍ଣ୍ଣନାରେ ଦୋଷ ଥାଏ, ତାହାକୁ ଭକ୍ତିସିଦ୍ଧାନ୍ତବିରୁଦ୍ଧ କୁହାଯାଏ ।

ରସାଭାସ — ଯେଉଁ ଗ୍ରନ୍ଥରେ ରସତତ୍ତ୍ୱ ବିଷୟ ବର୍ଣ୍ଣନା ଦୋଷଯୁକ୍ତ ବା ଅନନୁଗତ ଭାବରେ ବର୍ଣ୍ଣିତ ହୁଏ ତାହା ରସାଭାସ । ୧୧୧ ।

ବିଦ୍ୟାପତି ଚଣ୍ଡିଦାସ ଶ୍ରୀଗୀତଗୋବିନ୍ଦ ।
ଏଇ ତିନ ଗୀତେ କରେ ପ୍ରଭୁର ଆନନ୍ଦ ।୧୧୩।
ସଙ୍ଗୀତେ ଗନ୍ଧର୍ବସମ, ଶାସ୍ତ୍ରେ ବୃହସ୍ପତି ।
ଦାମୋଦର-ସମ ଆର ନାହିଁ ମହାମତି । ୧୧୪ ।
ଅଦ୍ୱୈତ ନିତ୍ୟାନନ୍ଦେର ପରମ ପ୍ରିୟତମ ।
ଶ୍ରୀବାସାଦି ଭକ୍ତଗଣେର ହୟ ପ୍ରାଣସମ ।
ସେଇ ଦାମୋଦର ଆସି ଦଣ୍ଡବତ କୈଲା ।
ଚରଣେ ପଡ଼ିୟା ଶ୍ଲୋକ ପଡ଼ିତେ ଲାଗିଲା ।୧୧୬।

ଶ୍ରୀଚୈତନ୍ୟଚନ୍ଦ୍ରୋଦୟନାଟକେ (୮।୧୪)—

ହେଲୋଦ୍ଧୂଳିତଖେଦୟା ବିଶଦୟା
ପ୍ରୋନ୍ମୀଲଦାମୋଦୟା,
ଶାମ୍ୟଚ୍ଛାସ୍ତ୍ରବିବାଦୟା ରସଦୟା
ଚିତ୍ତାର୍ପିତୋନ୍ମାଦୟା ।
ଶଶ୍ୱଦ୍ଭକ୍ତିବିନୋଦୟା ସମଦୟା
ମାଧୁର୍ଯ୍ୟମର୍ଯ୍ୟାଦୟା,
ଶ୍ରୀଚୈତନ୍ୟଦୟାନିଧେ ତବ ଦୟା
ଭୂୟାଦମନ୍ଦୋଦୟା । ୩ ।

ଉଠାଇୟା ମହାପ୍ରଭୁ କୈଲ ଆଲିଙ୍ଗନ ।
ଦୁଇଜନେ ପ୍ରେମାବେଶେ ହୈଲା ଅଚେତନ ।
କଥୋକ୍ଷଣେ ଦୁଇଜନେ ସ୍ଥିର ଯବେ ହୈଲା ।
ତବେ ମହାପ୍ରଭୁ ତାଁରେ କହିତେ ଲାଗିଲା ।୧୧୮।
ତୁମି ଯେ ଆସିବେ, ଆଜି ସ୍ୱପନେତେ ଦେଖିଲ ।
ଭାଲ ହୈଲ, ଅନ୍ଧ ଯେନ ଦୁଇନେତ୍ର ପାଇଲ ।
ସ୍ୱରୂପ କହେ—ପ୍ରଭୁ ! ମୋର କ୍ଷମ ଅପରାଧ ।
ତୋମା ଛାଡ଼ି ଅନ୍ୟତ୍ର ଗେନୁ, କରିନୁ ପ୍ରମାଦ ।୧୨୦
ତୋମାର ଚରଣେ ମୋର ନାହି ପ୍ରେମଲେଶ ।
ତୋମା ଛାଡ଼ି ପାପୀ ମୁଞି ଗେନୁ ଅନ୍ୟଦେଶ ।
ମୁଞି ତୋମା ଛାଡ଼ିନୁ, ତୁମି ମୋରେ ନା ଛାଡ଼ିଲା ।
କୃପାରଜ୍ଜୁ ଗଲେ ବାନ୍ଧି ଚରଣେ ଆନିଲା ।୧୨୨।
ତବେ ସ୍ୱରୂପ କୈଲ ନିତ୍ୟାନନ୍ଦେର ବନ୍ଦନ ।
ନିତ୍ୟାନନ୍ଦପ୍ରଭୁ କୈଲ ପ୍ରେମ ଆଲିଙ୍ଗନ ।୧୨୩।
ଜଗଦାନନ୍ଦ ମୁକୁନ୍ଦ ଶଙ୍କର ସାର୍ବଭୌମ ।
ସଭା-ସନେ ଯଥାଯୋଗ୍ୟ କରିଲ ମିଲନ ।୧୨୪।

---

(ହେ) ଶ୍ରୀ ଚୈତନ୍ୟ ଦୟାନିଧେ ! ହେଲୋଦ୍ଧୂଳିତଖେଦୟା—ହେଳୟା-ଅବଜ୍ଞୟା, ଉଦ୍ଧୂଳିତଃ—ଦୂରୀକୃତଃ ନିଃସାରିତଃ ଖେଦଃ—ମନସ୍ତାପଃ ଯୟା, ତୟା, ବିଶଦୟା—ନିର୍ମଳତୟା ସର୍ବପ୍ରକାଶିକୟା ଶୁଦ୍ଧସତ୍ତ୍ୱରୂପୟା, ପ୍ରୋନ୍ମୀଲଦାମୋଦୟା ପ୍ରକର୍ଷେଣ ଉନ୍ମୀଲନ୍—ସର୍ବମାବୃଣ୍ୱନ୍ ଆମୋଦଃ—ପରମାନନ୍ଦଃ ଯସ୍ୟାଂ ତୟା, ଶାମ୍ୟଚ୍ଛାସ୍ତ୍ରବିବାଦୟା—ଶାମ୍ୟନ୍ ଉପରତିଂ ପ୍ରାପ୍ନୁବନ୍ ଶାସ୍ତ୍ରାଣାଂ ବିବାଦଃ ଯସ୍ୟାଂ ତୟା, ରସଦୟା—ରସଂଦଦାତି-ଅନୁଭାବୟତି ଯା ତୟା, ଚିତ୍ତାର୍ପିତୋନ୍ମାଦୟା—ଚିତ୍ତେ ଅର୍ପିତଃ ଉନ୍ମାଦଃ—ତଦାଖ୍ୟଃ ସଞ୍ଚାରିଭାବଃ ଯୟା ତୟା, ଶଶ୍ୱଦ୍ଭକ୍ତିବିନୋଦୟା—ଶଶ୍ୱତ୍—ନିରନ୍ତରଂ ଭକ୍ତିଂ ବିନୋଦୟତି—ସଞ୍ଚାରୟତି ଯା ତୟା, ସମଦୟା—ମା—ଲକ୍ଷ୍ମୀଃ-ତୟା, ସହ—ବର୍ତ୍ତମାନଂ ସମଂ—ଭଗବନ୍ତଂ ଦଦାତି ଯା ତୟା, ତାଲବ୍ୟ—ଶକାରଧରପକ୍ଷେ ଶମଂ—ଭଗବନ୍ନିଷ୍ଠବୁଦ୍ଧିଂ ଦଦାତି ଯା ତୟା, ମାଧୁର୍ଯ୍ୟମର୍ଯ୍ୟାଦୟା—ମାଧୁର୍ଯ୍ୟାଣାଂ ମର୍ଯ୍ୟାଦା ଯସ୍ୟାଂ—ତୟା-ଅମନ୍ଦୋଦୟା—ଅମନ୍ଦଃ—କୁଣ୍ଠାରହିତଃ ଉଦୟଃ ଯସ୍ୟାଂ ସା ପାପାପାପବିଗ୍ରହରହିତ୍ୟାତ୍ସର୍ବସର୍ବଗାମିନୀ ତବ ଦୟା (ମୟି) ଭୂୟାତ୍ । ୩ୟ ଶ୍ଲୋକ ।

---

ହେ ଦୟାନିଧି ଶ୍ରୀ ଚୈତନ୍ୟ ! ଆପଣଙ୍କ ଦୟାଦ୍ୱାରା ଅତି ସହଜରେ ଲୋକମାନଙ୍କର ସକଳ ସନ୍ତାପ ଦୂର ହୁଏ, ଚିତ୍ତ ନିର୍ମଳ ହୁଏ, ଚିତ୍ତରେ ପ୍ରେମାନନ୍ଦ ପ୍ରକାଶ ହୁଏ, ଶାସ୍ତ୍ରବିବାଦ ପ୍ରଶମିତ ହୁଏ, ଚିତ୍ତରେ ରସ ସଞ୍ଚାର କରି ପ୍ରଗାଢ଼ ସମତାର ସୃଷ୍ଟି କରେ, ନିରନ୍ତର ଭକ୍ତି ସୁଖ ଓ ଭଗବନ୍ନିଷ୍ଠ ବୁଦ୍ଧି ଲାଭ ହୁଏ ଓ ତାହା ସକଳ ମାଧୁର୍ଯ୍ୟର ସାର । ଆପଣ କୃପାପୂର୍ବକ ସର୍ବସର୍ବଗାମିନୀ ସେହି ଦୟା ଏହି ଅଧମଜନପ୍ରତି ପ୍ରକାଶ କରନ୍ତୁ । ୩ୟ ଶ୍ଲୋକାର୍ଥ ।

ପ୍ରମାଦ— ଅନ୍ତଃକରଣର ଦୁର୍ବଳତାପ୍ରକାଶ । ୧୨୦ ।

ପରମାନନ୍ଦପୁରୀର କୈଲ ଚରଣବନ୍ଦନ ।
ସ୍ୱରୂପଗୋସାଞି ତାଁରେ କୈଲ ପ୍ରେମ-ଆଲିଙ୍ଗନ ।
ମହାପ୍ରଭୁ ଦିଲ ତାଁରେ ନିଭୃତେ ବାସାଘର ।
ଜଲାଦି-ପରିଚର୍ଯ୍ୟା ଲାଗି ଏକ କିଙ୍କର । ୧୨୬ ।
ଆର ଦିନ ସାର୍ବଭୌମାଦି ଭକ୍ତଗଣ ସଙ୍ଗେ ।
ବସିଆଛେନ ମହାପ୍ରଭୁ କୃଷ୍ଣକଥା-ରଙ୍ଗେ । ୧୨୭ ।
ହେନକାଲେ ଗୋବିନ୍ଦେର ହୈଲ ଆଗମନ ।
ଦଣ୍ଡବତ କରି କହେ ବିନୟ-ବଚନ । ୧୨୮ ।
ଈଶ୍ୱରପୁରୀର ଭୃତ୍ୟ—ଗୋବିନ୍ଦ ମୋର ନାମ ।
ପୁରୀଗୋସାଞିର ଆଜ୍ଞାୟ ଆଇନୁ ତବ ସ୍ଥାନ ।
ସିଦ୍ଧିପ୍ରାପ୍ତିକାଲେ ଗୋସାଞି ଆଜ୍ଞା କୈଲେ ମୋରେ
କୃଷ୍ଣଚୈତନ୍ୟ ନିକଟେ ରହି ସେବହ ତାଁହାରେ ।
କାଶୀଶ୍ୱର ଆସିବେନ ତୀର୍ଥ ଦେଖିୟା ।
ପ୍ରଭୁ-ଆଜ୍ଞାୟ ତୋମାର ପଦେ ଆଇନୁ ଧାଇୟା ।
ଗୋସାଞି କହେ—ପୁରୀଶ୍ୱର ବାତ୍ସଲ୍ୟ କରି ମୋରେ
କୃପା କରି ମୋର ଠାଞି ପାଠାଇଲା ତୋମାରେ ।
ଏତ ଶୁନି ସାର୍ବଭୌମ ପ୍ରଭୁରେ ପୁଛିଲା— ।
ପୁରୀଗୋସାଞି ଶୂଦ୍ର ସେବକ କାହେ ତ ରାଖିଲ ?
ପ୍ରଭୁ କହେ—ଈଶ୍ୱର ହୟ ପରମ ସ୍ୱତନ୍ତ୍ର ।
ଈଶ୍ୱରେର କୃପା ନହେ ବେଦପରତନ୍ତ୍ର । ୧୩୪ ।
ଈଶ୍ୱରେର କୃପା ଜାତି-କୁଲାଦି ନା ମାନେ ।
ବିଦୁରେର ଘରେ କୃଷ୍ଣ କରିଲା ଭୋଜନେ ।
ସ୍ନେହଲେଶାପେକ୍ଷା ମାତ୍ର ଈଶ୍ୱରକୃପାର ।
ସ୍ନେହବଶ ହଞା କରେ ସ୍ୱତନ୍ତ୍ର ଆଚାର । ୧୩୬ ।
ମର୍ଯ୍ୟାଦା ହୈତେ କୋଟି ସୁଖ ସ୍ନେହ-ଆଚରଣେ ।
ପରମ ଆନନ୍ଦ ହୟ ଯାହାର ଶ୍ରବଣେ । ୧୩୭ ।
ଏତ ବଲି ଗୋବିନ୍ଦେର କୈଲ ଆଲିଙ୍ଗନ ।
ଗୋବିନ୍ଦ କରିଲ ପ୍ରଭୁର ଚରଣ-ବନ୍ଦନ । ୧୩୮ ।

---

ସେବକଃ ପରିଚାରକ ଇତ୍ୟର୍ଥଃ । ୧୩୩ । ବି. ଚ.

ଈଶ୍ୱରପୁରୀତିନାମଗତ ଈଶ୍ୱରଶବ୍ଦସ୍ୟ ଫଲମାହ ପ୍ରଭୁଃ କହେ ଇତ୍ୟାଦି । ଗୁର୍ବୀଶ୍ୱର-ୟୋରଭେଦାତ୍ ଈଶ୍ୱରପୁରୀତ୍ୟେବ ଈଶ୍ୱର ଇତ୍ୟୁକ୍ତମିତିଜ୍ଞେୟଂ । ୧୩୪ । ବି. ଚ. ।

---

ପ୍ରଭୁଆଜ୍ଞାୟ—ଶ୍ରୀ ଈଶ୍ୱରପୁରୀ ଗୋସାଇଁଙ୍କ ଆଜ୍ଞାରେ । ୧୩୧ ।

ପୁରୀଶ୍ୱର—ଶ୍ରୀ ଈଶ୍ୱରପୁରୀ ଗୋସାଇଁ । ୧୩୨ ।

ଶୂଦ୍ରସେବକ—ସନ୍ନ୍ୟାସୀମାନଙ୍କର ଶୂଦ୍ରସ୍ପର୍ଶ ନିଷେଧ ଥିବାସ୍ଥଳେ ଶୂଦ୍ର ପରିଚାରକ ରଖିବା ଆଶ୍ଚର୍ଯ୍ୟର ବିଷୟ । ୧୩୩ ।

ଈଶ୍ୱର—ଶ୍ରୀମାନ୍ ଈଶ୍ୱରପୁରୀଙ୍କର ନାମଗତ ଈଶ୍ୱର ଶବ୍ଦକୁ ଅବଲମ୍ବନ କରି ଏବଂ ପୁରୀମହାଶୟ ଶ୍ରୀମନ୍ମହାପ୍ରଭୁଙ୍କର ଗୁରୁ ହେତୁରୁ ଏବଂ ଗୁରୁ ଓ ଈଶ୍ୱର ଅଭେଦତତ୍ତ୍ୱ ଏଣୁ ଶ୍ରୀମନ୍ମହାପ୍ରଭୁ ଈଶ୍ୱର ଶବ୍ଦକୁ ଅବଲମ୍ବନ କରି ସେଥିର ଫଳ କହୁଅଛନ୍ତି ।

ବେଦପରତନ୍ତ୍ର—ବେଦପ୍ରତିପାଦିତବିଧିନିଷେଧର ଅଧୀନ । ୧୩୪ ।

ଈଶ୍ୱରଙ୍କର ଯେ କୃପା ତାହା ଜାତିଗତ ବା କୁଳଗତ ମର୍ଯ୍ୟାଦାକୁ ଲକ୍ଷ୍ୟ କରନ୍ତି ନାହିଁ, ଏହାର ପ୍ରମାଣ ଏହି ଯେ—ଶ୍ରୀକୃଷ୍ଣ ହସ୍ତିନାପୁରୀରେ ନିଜର ସମ୍ବନ୍ଧୀ ଦୁର୍ଯ୍ୟୋଧନଙ୍କ ଘରେ ଭୋଜନ ନ କରି ଭିକ୍ଷୋପଜୀବୀ ଶୂଦ୍ର ବିଦୁରଙ୍କ ଘରେ ଶାକାନ୍ନ ଭୋଜନ କରିଥିଲେ । ଏପ୍ରକାର କୃପାର କାରଣ କହୁଅଛନ୍ତି ଯେ—ଈଶ୍ୱରଙ୍କ କୃପା ଜୀବର କିଞ୍ଚିନ୍ମାତ୍ର ସ୍ନେହର ଅପେକ୍ଷା କରେ, ଅତଏବ ସେହି ସ୍ନେହଟିକୁ ଅବଲମ୍ବନ କରି ଈଶ୍ୱର ସ୍ୱପ୍ରବର୍ତ୍ତିତବେଦବିଧିକୁ ଲଙ୍ଘନ କରି ପରମସ୍ୱତନ୍ତ୍ରଭାବରେ ସ୍ନେହପରାୟଣ ଜୀବମାନଙ୍କପ୍ରତି କୃପାମୃତ ବର୍ଷଣ କରନ୍ତି ।

ଈଶ୍ୱରଙ୍କର ସ୍ୱଭାବ ଏହି ଯେ—ସେ ଗୌରବସେବାଠାରୁ ସସ୍ନେହସେବାଦ୍ୱାରା କୋଟିଗୁଣ ସୁଖ ପାନ୍ତି । ୧୩୫ରୁ୧୩୭ ।

ପ୍ରଭୁ କହେ — ଭଟ୍ଟାଚାର୍ଯ୍ୟ ! କରହ ବିଚାର ।
ଗୁରୁର କିଙ୍କର ହୟ ମାନ୍ୟ ସେ ଆମାର ।୧୩୯।
ଇହାକେ ଆପନ ସେବା କରାଇତେ ନା ଜୁୟାୟ ।
ଗୁରୁ ଆଜ୍ଞା ଦିୟାଛେନ, କି କରି ଉପାୟ ? ।୧୪୦।
ଭଟ୍ଟାଚାର୍ଯ୍ୟ କହେ—ଗୁରୁ ଆଜ୍ଞା ବଳବାନ୍ ।
ଗୁରୁଆଜ୍ଞା ନା ଲଙ୍ଘିବେ—ଶାସ୍ତ୍ରପରମାଣ ।୧୪୧।

ତଥାହି ରଘୁବଂଶେ (୧୪।୪୬)—
ସ ଶୁଶ୍ରୁବାନ୍ ମାତରି ଭାର୍ଗବେଣ,
ପିତୁର୍ନିୟୋଗାତ୍ ପ୍ରହୃତଂ ଦ୍ୱିଷଦ୍ୱତ୍ ।
ପ୍ରତ୍ୟଗ୍ରହୀଦଗ୍ରଜଶାସନଂ ତତ୍,
ଆଜ୍ଞା ଗୁରୂଣାଂ ହ୍ୟବିଚାରଣୀୟା । ୪ ।

ତବେ ମହାପ୍ରଭୁ ତାଁରେ କୈଲ ଅଙ୍ଗୀକାର ।
ଆପନ ଶ୍ରୀଅଙ୍ଗ-ସେବାୟ ଦିଲ ଅଧିକାର ।୧୪୨।
'ପ୍ରଭୁର ପ୍ରିୟଭୃତ୍ୟ' କରି ସବେ କରେ ମାନ ।
ସକଲ ବୈଷ୍ଣବେର ଗୋବିନ୍ଦ କରେ ସମାଧାନ ॥
ଛୋଟ ବଡ଼ କୀର୍ତ୍ତନୀୟା ଦୁଇ ହରିଦାସ ।
ରାମାଇ ନନ୍ଦାଇ ରହେ ଗୋବିନ୍ଦେର ପାଶ ।୧୪୪
ଗୋବିନ୍ଦେର ସଙ୍ଗେ କରେ ପ୍ରଭୁର ସେବନ ।
ଗୋବିନ୍ଦେର ଭାଗ୍ୟସୀମା ନା ଯାୟ ବର୍ଣ୍ଣନ ।୧୪୫।
ଆରଦିନ ମୁକୁନ୍ଦଦତ୍ତ କହେ ପ୍ରଭୁର ସ୍ଥାନେ—
ବ୍ରହ୍ମାନନ୍ଦଭାରତୀ ଆଇଲା ତୋମାର ଦର୍ଶନେ ।
ଆଜ୍ଞା ଦେହ ଯଦି ତାଁରେ ଆନୟେ ଏଥାଇ ।
ପ୍ରଭୁ କହେ—ଗୁରୁ ତେଁହୋ ଯାବ ତାଁର ଠାଞି ।
ଏତ ବଲି ମହାପ୍ରଭୁ ସବ ଭକ୍ତ-ସଙ୍ଗେ ।
ଚଲି ଆଇଲା ବ୍ରହ୍ମାନନ୍ଦଭାରତୀର ଆଗେ ।

ପିତୁଃ ନିୟୋଗାତ୍ ଭାର୍ଗବେଣ — ଜାମଦଗ୍ନ୍ୟେନ, ମାତରି — ରେଣୁକାୟାଂ, ଦ୍ୱିଷଦ୍ୱତ୍ ପ୍ରହୃତଂ — ପ୍ରହାରଂ ଶୁଶ୍ରୁବାନ୍ — ଶ୍ରୁତବାନ୍ ସଃ — ଲକ୍ଷ୍ମଣଃ, ତତ୍‌ଅଗ୍ରଜଶାସନଂ ପ୍ରତ୍ୟଗ୍ରହୀତ୍ । ହି — ଯସ୍ମାତ୍ ଗୁରୂଣାଂଆଜ୍ଞା ଅବିଚାରଣୀୟା । ୪ର୍ଥ ଶ୍ଳୋକ ।

ଉପରୋକ୍ତ ୧୩୦ ପୟାରରେ ଗୋବିନ୍ଦ କହିଲେ ଯେ — ଶ୍ରୀମାନ୍ ଈଶ୍ୱରପୁରୀ ଦେହ-ତ୍ୟାଗକାଳବେଳେ ମୋତେ ଆଜ୍ଞା କଲେ ଯେ— ଶ୍ରୀକୃଷ୍ଣଚୈତନ୍ୟଙ୍କ ନିକଟ ରହି ତାହାଙ୍କର ସେବା କର । ଗୋବିନ୍ଦଙ୍କ ମୁହଁରୁ ଏହା ଶୁଣି ଶ୍ରୀମନ୍‌ମହାପ୍ରଭୁ ଶ୍ରୀସାର୍ବଭୌମଭଟ୍ଟାଚାର୍ଯ୍ୟଙ୍କୁ ପଚାରୁ-ଅଛନ୍ତି ଯେ ଗୋବିନ୍ଦ ମୋର ଗୁରୁଙ୍କ ସେବକ ଅତଏବ ମୋର ମାନ୍ୟପାତ୍ର, ଏଣୁ ଏହାକୁ ମୁଁ ସେବା କିପରି ଦେବି । ପୁନଃ ଗୁରୁଦେବ ଗୋବିନ୍ଦକୁ ସେବା ଦେବା ସକାଶେ ଆଜ୍ଞା କରିଅଛନ୍ତି, ତାହା ବା କିପରି ଲଙ୍ଘନ କରିବି । ଆପଣ ଏଥିରେ ମୀମାଂସା କରନ୍ତୁ । ଭଟ୍ଟାଚାର୍ଯ୍ୟ କହିଲେ, "ପ୍ରଭୋ ! ଗୁରୁଆଜ୍ଞାହିଁ ବଳବାନ୍ ଏବଂ ତାହା ଅଲଙ୍ଘନୀୟ ଏହା ଶାସ୍ତ୍ର ସିଦ୍ଧାନ୍ତ ।" ୧୩୯ରୁ ୧୪୧ ।

ଶ୍ରୀମାନ୍ ଲକ୍ଷ୍ମଣ ଶୁଣିଥିଲେ ଯେ—ପରଶୁରାମ ନିଜ ପିତାଙ୍କ ଆଦେଶମତେ ଶତ୍ରୁବତ୍ ନିଜ ଜନନୀଙ୍କର (ରେଣୁକା) ଶିରଚ୍ଛେଦନ କରିଥିଲେ । ତେଣୁ ସେ ଶ୍ରୀରାମଚନ୍ଦ୍ରଙ୍କର ଆଦେଶ (ଶ୍ରୀସୀତାଠାକୁରାଣୀଙ୍କୁ ବନବାସକୁ ନେବା) ତତ୍‌କ୍ଷଣାତ୍ ପ୍ରତିପାଳନ କରିଥିଲେ । ଯେହେତୁ ଗୁରୁମାନଙ୍କର ଆଜ୍ଞାର ଦୋଷ ଗୁଣ ବିଚାର ନ କରି ତତ୍‌କ୍ଷଣାତ୍ ପ୍ରତିପାଳନ କରିବା କର୍ତ୍ତବ୍ୟ । ୪ର୍ଥ ଶ୍ଳୋକାର୍ଥ ।

ତାଁରେ — ଗୋବିନ୍ଦଙ୍କୁ । ୧୪୨ ।

ସମାଧାନ — ଚର୍ଚ୍ଚା । ୧୪୩ ।

ଦୁଇ ହରିଦାସ— କୀର୍ତ୍ତନୀୟା ବଡ଼ ହରିଦାସ ଓ କୀର୍ତ୍ତନୀୟା ଛୋଟ ହରିଦାସ ଏ ଦୁହେଁ ହରିଦାସଠାକୁରଙ୍କ ବ୍ୟତୀତ ଅପର ଦୁଇ ହରିଦାସ । ୧୪୪ ।

ଗୁରୁ—ଏଠାରେ ଗୁରୁବର୍ଗମଧ୍ୟରେ, ଠାଇ—ପାଖକୁ । ୧୪୬ ।

ବ୍ରହ୍ମାନନ୍ଦ ପରିଧାନେ ମୃଗଚର୍ମାମ୍ବର ।
ତାହା ଦେଖି ପ୍ରଭୁର ଦୁଃଖ ହଇଲ ଅନ୍ତର ।୧୪୯।
ଦେଖିଯାଓ ଛଦ୍ମ କୈଲ – ଯେନ ଦେଖି ନାହିଁ ।
ମୁକୁନ୍ଦେରେ ପୁଛେ କୋଥାୟ ଭାରତୀଗୋସାଞି ?
ମୁକୁନ୍ଦ କହେ –ଏଇ ଆଗେ ଦେଖ ବିଦ୍ୟମାନ,
ପ୍ରଭୁ କହେ —ତେହୋ ନହେ, ତୁମି ଅଗେୟାନ ।
ଅନ୍ୟେରେ ଅନ୍ୟ କହ, ନାହିଁ ତୋମାର ଜ୍ଞାନ ।
ଭାରତୀଗୋସାଞି କେନେ ପରିବେନ ଚାମ ? ।
ଶୁନି ବ୍ରହ୍ମାନନ୍ଦ କରେ ହୃଦୟେ ବିଚାରେ —
ମୋର ଚର୍ମାମ୍ବର ଏଇ ନା ଭାୟ ଇହାରେ ।୧୫୩।
ଭାଲ କହେ—ଚର୍ମାମ୍ବର ଦମ୍ଭ ଲାଗି ପରି ।
ଚର୍ମାମ୍ବର-ପରିଧାନେ ସଂସାର ନା ତରି । ୧୫୪ ।
ଆଜି ହୈତେ ନା ପରିବ ଏଇ ଚର୍ମାମ୍ବର ।
ପ୍ରଭୁ ବହିର୍ବାସ ଆନାଇଲା ଜାନିଞା ଅନ୍ତର ।
ଚର୍ମ ଛାଡି ବ୍ରହ୍ମାନନ୍ଦ ପରିଲ ବସନ ।
ପ୍ରଭୁ ଆସି କୈଲ ତାଁର ଚରଣ ବନ୍ଦନ । ୧୫୬ ।
ଭାରତୀ କହେ, ତୋମାର ଆଚାରଲୋକ ଶିଖାଇତେ
ପୁନ ନା କରିବେ ନତି, ଭୟ ପାଙ୍ ଚିତ୍ତେ ।
ସମ୍ପ୍ରତିକ ଦୁଇ ବ୍ରହ୍ମ ଇହାଁ ଚଲାଚଲ—
ଜଗନ୍ନାଥ ଅଚଲ ବ୍ରହ୍ମ—ତୁମି ତ ସଚଲ ।
ତୁମି ଗୌରବର୍ଣ୍ଣ—ତେଁହୋ ଶ୍ୟାମଲ-ବରଣ ।
ଦୁଇ ବ୍ରହ୍ମେ କୈଲ ସବ-ଜଗତ ତାରଣ ।୧୫୯।
ପ୍ରଭୁ କହେ—ସତ୍ୟ କହ, ତୋମାର ଆଗମନେ
ଦୁଇ ବ୍ରହ୍ମ ପ୍ରକଟିଲ ଶ୍ରୀପୁରୁଷୋତ୍ତମେ । ୧୬୦ ।
ବ୍ରହ୍ମାନନ୍ଦ-ନାମ ତୁମି ଗୌରବ୍ରହ୍ମ ଚଲ ।
ଶ୍ୟାମବ୍ରହ୍ମ ଜଗନ୍ନାଥ ବସିଆଛେ ଅଚଲ ।୧୬୧।
ଭାରତୀ କହେ—ସାର୍ବଭୌମ ! ମଧ୍ୟସ୍ଥ ହଇୟା ।
ଇହାର ସହ ଆମାର ନ୍ୟାୟ ବୁଝ ମନ ଦିୟା ।
ବ୍ୟାପ୍ୟ-ବ୍ୟାପକଭାବେ ଜୀବ ବ୍ରହ୍ମ ଜାନି ।
ଜୀବ ବ୍ୟାପ୍ୟ, ବ୍ରହ୍ମ ବ୍ୟାପକ ଶାସ୍ତ୍ରେତେ ବାଖାନି ।
ଚର୍ମ ଘୁଚାଇୟା କୈଲେ ଆମାର ଶୋଧନ ।
ଦୋହାର ବ୍ୟାପ-ବ୍ୟାପକତ୍ୱେ ଏଇ ତ କାରଣ ।
ତଥାହି ମହାଭାରତେ-ଦାନଧର୍ମେ ବିଷ୍ଣୁସହସ୍ର
(୮୦।୭୩)—
ସୁବର୍ଣ୍ଣବର୍ଣ୍ଣୋହେମାଙ୍ଗୋ ବରାଙ୍ଗଶ୍ଚନ୍ଦନାଙ୍ଗଦୀ ।
ସନ୍ନ୍ୟାସକୃଚ୍ଛମଃ ଶାନ୍ତୋ ନିଷ୍ଠାଶାନ୍ତିପରାୟଣଃ ।୫।

ଅଗେୟାନ୍—ଅଜ୍ଞାନ । ୧୫୧ । ନତି—ପ୍ରଣାମ । ୧୫୬ ।

ଇହାଁ—ଶ୍ରୀ ପୁରୀଧାମରେ । ଚଲାଚଲ—ସଚଳ ଅଚଳ । ୧୫୮ ।

ବ୍ରହ୍ମ ବ୍ୟାପକ, ଅର୍ଥାତ୍ ସର୍ବସତ୍ତାବିଶିଷ୍ଟ ଏବଂ ଅପରିଚ୍ଛିନ୍ନ । ୧୬୩ ।

ଜୀବ, ବ୍ୟାପ୍ୟ—ଅର୍ଥାତ୍ ଏକଦେଶସତ୍ତାବିଶିଷ୍ଟ ପରିଚ୍ଛିନ୍ନ । ସୁତରାଂ ବ୍ରହ୍ମାଂଶ ବା ବ୍ରହ୍ମଙ୍କ ଅଧୀନ ଏହାହିଁ ବ୍ରହ୍ମ ଓ ଜୀବଙ୍କ ମଧ୍ୟରେ ସମ୍ବନ୍ଧ, ଭାରତୀ ମହାଶୟ ଶ୍ରୀମନ୍ମହାପ୍ରଭୁଙ୍କର ପ୍ରଭାବରୁ ଚର୍ମାମ୍ବର ପରିତ୍ୟାଗ କରିବାଦ୍ୱାରା ତାହାଙ୍କର ଅଧୀନ ହେଲେ ଏଣୁ ନ୍ୟାୟତଃ ଶ୍ରୀମନ୍ ମହାପ୍ରଭୁ ବ୍ରହ୍ମ ଓ ଭାରତୀ ଗୋସାଇଁ ଜୀବ । ଏତଦ୍ବ୍ୟତୀତ ନିମ୍ନୋକ୍ତ ବିଷ୍ଣୁଙ୍କର ବୃହତ୍ ସହସ୍ର-ନାମ ଶ୍ଳୋକଦ୍ୱାରା ତାହାଙ୍କର ଭଗବତ୍ତା ଦେଖାଉଅଛନ୍ତି । ୧୬୩।୧୬୪ ।

୫ମ ଶ୍ଳୋକର ଅନ୍ୱୟ ଆଦି ୩ୟ ପରିଚ୍ଛେଦ ୯ମ ଶ୍ଳୋକ ।

ମହାଭାରତର ବିଷ୍ଣୁସହସ୍ରନାମ ସ୍ତୋତ୍ର ମଧ୍ୟରେ ଏହି ଅଷ୍ଟ ନାମ ଶ୍ରୀକୃଷ୍ଣଚୈତନ୍ୟ ଅବତାରର ନାମ ଅଟେ । ଯଥା —

୧ ସୁବର୍ଣ୍ଣ ବର୍ଣ୍ଣ—ସୁ (ଉତ୍ତମ) ବର୍ଣ୍ଣବିଶିଷ୍ଟ ଯେ ଶ୍ରୀକୃଷ୍ଣ ତାଙ୍କୁ ଯେ ବର୍ଣ୍ଣନ କରନ୍ତି ।

୨ ହେମାଙ୍ଗ—ହେମତୁଲ୍ୟରୂପଗୁଣସମ୍ପନ୍ନ ଶରୀର ବା ହିରଣ୍ମୟ ପୁରୁଷ ।

୩ ବରାଙ୍ଗ—ସର୍ବୋତ୍କର୍ଷକ ମହାପୁରୁଷ ଲକ୍ଷଣାନ୍ୱିତ ପୁରୁଷ ।

୪ ଚନ୍ଦନାଙ୍ଗଦୀ—ଚନ୍ଦନଅଙ୍ଗଦ ବ୍ୟବହାରକାରୀ, ଏହି ଗୂଢ଼ନାମ ମହାପ୍ରଭୁଙ୍କର ଆଦ୍ୟଲୀଳାର ଏବଂ

୫ ସନ୍ନ୍ୟାସକୃତ୍—ସନ୍ନ୍ୟାସୀ ।

ଏଇ ସବ ନାମେର ଇଁହୋ ହୟ ନିଜାସ୍ପଦ ।
ଚନ୍ଦନାକ୍ତ ପ୍ରସାଦ ଡୋର ଦ୍ୱିଜକେ ଅଙ୍ଗଦ ।୧୬୫।
ଭଟ୍ଟାଚାର୍ଯ୍ୟ କହେ- ଭାରତି ! ଦେଖି ତୋମାର ଜୟ
ପ୍ରଭୁ କହେ—ଯେଇ କହ, ସେଇ ସତ୍ୟ ହୟ ।
ଗୁରୁ-ଶିଷ୍ୟ-ନ୍ୟାୟେ ସତ୍ୟ ଶିଷ୍ୟପରାଜୟ ।
ଭାରତୀ କହେ—ଏଇ ନହେ, ଅନ୍ୟ ହେତୁ ହୟ ।
ଭକ୍ତ-ଠାଞି ତୁମି ହାର—ଏ ତୋମାର ସ୍ୱଭାବ ।
ଆର ଏକ ଶୁନ ତୁମି ଆପନ ପ୍ରଭାବ ।୧୬୮।
ଆଜନ୍ମ କରିଲ ଆମି ନିରାକାର-ଧ୍ୟାନ ।
ତୋମା ଦେଖି କୃଷ୍ଣ ହୈଲ ମୋର ବିଦ୍ୟମାନ ।
କୃଷ୍ଣନାମ ମୁଖେ ସ୍ଫୁରେ—ମନେ ନେତ୍ରେ କୃଷ୍ଣ ।
ତୋମାକେ ତଦ୍ରୂପ ଦେଖି ହୃଦୟ ସତୃଷ୍ଣ ।
ବିଲ୍ୱମଙ୍ଗଲ କରିଲ ଯୈଛେ ଦଶା ଆପନାର ।
ଇଁହା ଦେଖି ସେଇ ଦଶା ହଇଲ ଆମାର ।୧୭୧।

ତଥାହି ଭକ୍ତିରସାମୃତସିନ୍ଧୌ, ପଶ୍ଚିମବିଭାଗେ,
୧ମ-ଲହର୍ଯ୍ୟାଂ (୨୦) ବିଲ୍ୱମଙ୍ଗଲବାକ୍ୟମ୍—
ଅଦ୍ୱୈତବୀଥୀପଥିକୈରୁପାସ୍ୟାଃ,
ସ୍ୱାନନ୍ଦସିଂହାସନଲବ୍ଧଦୀକ୍ଷାଃ ।
ଶଠେନ କେନାପି ବୟଂ ହଠେନ,
ଦାସୀକୃତା ଗୋପବଧୂବିଟେନ ।୨।

---

ଅଦ୍ୱୈତବୀଥୀପଥିକୈଃ—ଅଦ୍ୱୈତଂ ତତ୍ତ୍ୱମସୀତ୍ୟଭେଦଉପାସନା ଏବ ବୀଥୀ—ପନ୍ଥାଃ ତସ୍ୟାଂ ଯେ ପଥିକାଃ ଉପାସକାଃ ତୈଃ, ଉପାସ୍ୟାଃ ସ୍ୱାନନ୍ଦସିଂହାସନ ଲବ୍ଧଦୀକ୍ଷାଃ ବୟଂ—ତଥାଭୂତା ଅପି, କେନାପି ଗୋପବଧୂବିଟେନ—ଗୋପରମଣିନାଂ ବିଟେନ—କାମକଳାଦିଭିଃ ବଶୀକରଣଶୀଳେନ, ଶଠେନ—ହଠେନ ବଳାତ୍କାରେଣ ଦାସୀକୃତାଃ—ଗୋପାଙ୍ଗନା—ନୁଗାଃ କୃତାଃ । ୨ୟ ଶ୍ଳୋକ ।

---

୨ ଶମ—ନିଗୃହୀତାନ୍ତଃକରଣ ।

୨ ଶାନ୍ତ—କୃଷ୍ଣୈକନିଷ୍ଠଚିତ୍ତ ।

୮ ନିଷ୍ଠାଶାନ୍ତିପରାୟଣ—ଚିତ୍ତ ଏକାଗ୍ରତା ହେତୁ ସମସ୍ତ ଅବିଦ୍ୟାନିବୃତ୍ତି କିମ୍ବା ଯାହାଙ୍କଠାରେ ସର୍ବତୋଭାବରେ ଆଶ୍ରୟ କରଅଛୁ ।

ଏହି ଶ୍ରୀବିଷ୍ଣୁ ନାମ ଶେଷ ଙ୍କୀରର ଅଟେ । ୫ମ ଶ୍ଳୋକାର୍ଦ୍ଧ ।

ଏଇ ସବ ନାମେର—ସୁବର୍ଣ୍ଣବର୍ଣ୍ଣ-ହେମାଙ୍ଗ, ବରାଙ୍ଗ, ଚନ୍ଦନାଙ୍ଗଦୀ, ସନ୍ନ୍ୟାସୀ, ଶମ, ଶାନ୍ତ ଓ ନିଷ୍ଠାଶାନ୍ତିପରାୟଣ ।

ନିଜାସ୍ପଦ—ସ୍ୱସ୍ଥାନ ବା ସ୍ୱୟଂନାମୀ, ଅଙ୍ଗଦ—ବାଜୁ ।୧୬୫।

ବିଦ୍ୟମାନ—ବିଦ୍ୟମାନତାର ପରିଚୟ ନିମ୍ନୋକ୍ତ ଦୁଇ ପୟାର ଓ ଶ୍ଳୋକଦ୍ୱାରା ପ୍ରକାଶ କରୁଅଛନ୍ତି ।୧୬୯।

ମୋର ବର୍ତ୍ତମାନ ସେହି ଦଶା ହୋଇଅଛି, ମୁଁ ବୁଝିପାରୁଅଛୁ ।୧୭୧।

ଆମ୍ଭେମାନେ ଅଦ୍ୱୈତମାର୍ଗର ଉପାସକମାନଙ୍କର ଉପାସ୍ୟ ଅର୍ଥାତ୍ ଗୁରୁ ଥିଲୁଁ ଏବଂ ବ୍ରହ୍ମାନନ୍ଦରୂପସିଂହାସନରେ ବସି ଦୀକ୍ଷିତ ହେଉଥିଲୁଁ, ଅଧୁନା କୌଣସି ଗୋପବଧୂଲମ୍ପଟ ଶଠଦ୍ୱାରା ଅମ୍ଭେମାନେ ବଳପୂର୍ବକ ଗୋପୀମାନଙ୍କର ଅନୁଗତ ହେଲୁଁ ।

ଏତଦ୍ଦ୍ୱାରା ବ୍ରହ୍ମାନନ୍ଦ ଭାରତୀ ପ୍ରକାଶ କଲେ ଯେ ମୁଁ ବହୁକାଳରୁ ନିର୍ବିଶେଷ ବ୍ରହ୍ମନିଷ୍ଠ ବ୍ରହ୍ମାନନ୍ଦ ଉପଭୋଗୀ ଥିଲି ! ବର୍ତ୍ତମାନ ହଠାତ୍ ମୁଁ ସବିଶେଷ ବ୍ରହ୍ମ ଶ୍ରୀମନ୍ମହାପ୍ରଭୁଙ୍କର ଅଧୀନ ହୋଇ ପଡ଼ିଲି । ୨ୟ ଶ୍ଳୋକାର୍ଥ ।

ପ୍ରଭୁ କହେ—କୃଷ୍ଣେ ତୋମାର ଗାଢ଼ପ୍ରେମା ହୟ
ଯାହାଁ ନେତ୍ର ପଡ଼େ, ତାହାଁ ଶ୍ରୀକୃଷ୍ଣ ସ୍ଫୁରୟ ।
ଭଟ୍ଟାଚାର୍ଯ୍ୟ କହେ—ଦୋଁହାର ସୁସତ୍ୟ ବଚନ ।
ଆଗେ ଯଦି କୃଷ୍ଣ ଦେନ ସାକ୍ଷାତ୍ ଦର୍ଶନ ।୧୭୩।
ପ୍ରେମ ବିନା କଭୁ ନହେ ତାଁର ସାକ୍ଷାତ୍କାର ।
ଇଁହାର କୃପାତେ ହୟ ଦର୍ଶନ ଇଁହାର ।୧୭୪।
ପ୍ରଭୁ କହେ—'ବିଷ୍ଣୁ ବିଷ୍ଣୁ' କି କହ ସାର୍ବଭୌମ
ଅତି ସ୍ତୁତି ହୟ ଏଇ ନିନ୍ଦାର ଲକ୍ଷଣ । ୧୭୫ ।
ଏତ ବଲି ଭାରତୀ ଲଞା ନିଜବାସା ଆଇଲା ।
ଭାରତୀଗୋସାଞି ପ୍ରଭୁର ନିକଟେ ରହିଲା ।
ରାମଚନ୍ଦ୍ରାଚାର୍ଯ୍ୟ ଆର ଭଗବାନ୍ ଆଚାର୍ଯ୍ୟ ।
ପ୍ରଭୁ-ପାଶେ ରହିଲା ଦୋଁହେ ଛାଡ଼ି ଅନ୍ୟ କାର୍ଯ୍ୟ ।
କାଶୀଶ୍ୱରଗୋସାଞି ଆଇଲା ଆରଦିନେ ।
ସମ୍ମାନ କରିୟା ପ୍ରଭୁ ରାଖିଲ ନିଜସ୍ଥାନେ ।
ପ୍ରଭୁରେ କରାନ ଲଞା ଈଶ୍ୱର ଦର୍ଶନ ।
ଆଗେ ଲୋକଭିଡ଼ ସବ କରେ ନିବାରଣ ।
ଯତ ନଦ-ନଦୀ ଯୈଛେ ସମୁଦ୍ରେ ମିଲୟ ।
ଐଛେ ମହାପ୍ରଭୁର ଭକ୍ତ ଯାହାଁ-ତାହାଁ ହୟ ।
ସବେ ଆସି ମିଲିଲା ପ୍ରଭୁର ଶ୍ରୀଚରଣେ ।
ପ୍ରଭୁ କୃପା କରି ସଭାରେ ରାଖିଲ ନିଜସ୍ଥାନେ ।
ଏଇ ତ କହିଲ ପ୍ରଭୁର ବୈଷ୍ଣବମିଲନ ।
ଇହା ଯେଇ ଶୁନେ ପାୟ ଚୈତନ୍ୟ-ଚରଣ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟ-ଚରିତାମୃତ କହେ କୃଷ୍ଣଦାସ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ବୈଷ୍ଣବମିଲନଂ ନାମ
ଦଶମପରିଚ୍ଛେଦଃ ।

---

ଏହା ଶୁଣି ଶ୍ରୀମନ୍ମହାପ୍ରଭୁ କହିଲେ ଯେ-ଆପଣଙ୍କର ଶ୍ରୀକୃଷ୍ଣଙ୍କଠାରେ ପ୍ରଗାଢ଼ ପ୍ରେମ ଜାତ ହୋଇଅଛି, ତେଣୁ ଆପଣ ଯାହା ଦେଖୁଅଛନ୍ତି, ସେଥିରେ ଆପଣଙ୍କର ଶ୍ରୀକୃଷ୍ଣ ସ୍ଫୂର୍ତ୍ତି ହେଉଅଛି । ଶ୍ରୀମନ୍ମହାପ୍ରଭୁ ଓ ବ୍ରହ୍ମାନନ୍ଦ ଭାରତୀଙ୍କର କଥା ଶୁଣି ସାର୍ବଭୌମ ଭଟ୍ଟାଚାର୍ଯ୍ୟ କହିଲେ ଯେ—ଆପଣ ଦୁହିଙ୍କର କଥା ଠିକ୍, କାରଣ ପ୍ରେମ ନ ହେଲେ ଶ୍ରୀକୃଷ୍ଣଙ୍କର ସ୍ୱରୂପ ସାକ୍ଷାତ୍କାର ମିଳେ ନାହିଁ, ଅଥଚ ଶ୍ରୀକୃଷ୍ଣଙ୍କ କୃପା ନ ହେଲେ ପ୍ରେମଲାଭ ହୁଏ ନାହିଁ, ଏଣୁ ଭାରତୀ ମହାଶୟଙ୍କର ଯେ ପ୍ରଗାଢ଼ ପ୍ରେମ ହୋଇଥିବାର ଶ୍ରୀମନ୍ମହାପ୍ରଭୁ କହୁଅଛନ୍ତି ତାହା ଠିକ୍, ଯେହେତୁ ସେ ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀକୃଷ୍ଣସ୍ୱରୂପ ଦର୍ଶନ ପାଇଅଛନ୍ତି ଏବଂ ଭାରତୀଗୋସାଇଁ ଯେ କହୁଅଛନ୍ତି, ଯେ ଶ୍ରୀକୃଷ୍ଣ ବଳଦ୍ଵାରା ଅଧୀନ କରିଅଛନ୍ତି ଅର୍ଥାତ୍ ଅହୈତୁକୀ କୃପା କରି-ଅଛନ୍ତି ଏହା ମଧ୍ୟ ଠିକ୍ । ଯେହେତୁ ଶ୍ରୀମନ୍ମହାପ୍ରଭୁଙ୍କ କୃପାରୁ ସେ ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀକୃଷ୍ଣସ୍ୱରୂପ ଦର୍ଶନ କରୁଅଛନ୍ତି । ୧୭୨।୧୭୩।୭୦ ।

କାଶୀଶ୍ୱର ଗୋସାଇଁ—ଶ୍ରୀମଦ୍ଈଶ୍ୱରପୁରୀଙ୍କର ଶିଷ୍ୟ । ୧୭୮ ।

ଦଶମ ପରିଚ୍ଛେଦ ସମାପ୍ତ ।



## ଏକାଦଶ ପରିଚ୍ଛେଦ ।

ଅତ୍ୟୁଦ୍ଦଣ୍ଡଂ ତାଣ୍ଡବଂ ଗୌରଚନ୍ଦ୍ରଃ,
କୁର୍ବନ୍ ଭକ୍ତୈଃ ଶ୍ରୀଜଗନ୍ନାଥଗେହେ ।
ନାନାଭାବାଲଙ୍କୃତାଙ୍ଗଃ ସ୍ୱଧାମ୍ନା,
ଚକ୍ରେ ବିଶ୍ୱଂ ପ୍ରେମବନ୍ୟାନିମଗ୍ନମ୍ । ୧ ।

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଆରଦିନ ସାର୍ବ୍ବଭୌମ କହେ ପ୍ରଭୁସ୍ଥାନେ—
ଅଭୟଦାନ ଦେହ, ତବେ କରି ନିବେଦନ ।
ପ୍ରଭୁ କହେ—କହ ତୁମି, କିଛୁ ନାହି ଭୟ ।
ଯୋଗ୍ୟ ହୈଲେ କରିବ, ଅଯୋଗ୍ୟ ହୈଲେ ନୟ ।
ସାର୍ବ୍ବଭୌମ କହେ—ଏଇ ପ୍ରତାପରୁଦ୍ରରାୟ ।
ଉତ୍କଣ୍ଠା ହଞା ତୋମା ମିଲିବାରେ ଚାୟ ।
କର୍ଣ୍ଣେ ହସ୍ତ ଦିୟା ପ୍ରଭୁ ସ୍ମରେ 'ନାରାୟଣ' ।
ସାର୍ବ୍ବଭୌମେ କହେ—କହ ଅଯୋଗ୍ୟ ବଚନ ।
ସନ୍ନ୍ୟାସୀ ବିରକ୍ତ ଆମାର ରାଜଦରଶନ—
ସ୍ତ୍ରୀ ଦରଶନ – ସମ ବିଷେର ଭକ୍ଷଣ । ୬ ।
ତଥାହି ଶ୍ରୀଚୈତନ୍ୟଚନ୍ଦ୍ରୋଦୟନାଟକେ (୭।୨୧
ନିଷ୍କିଞ୍ଚନସ୍ୟ ଭଗବଦ୍ଭଜନୋନ୍ମୁଖସ୍ୟ,
ପାରଂ ପରଂ ଜିଗମିଷୋର୍ଭବସାଗରସ୍ୟ ।
ସନ୍ଦର୍ଶନଂ ବିଷୟିଣାମଥ ଯୋଷିତାଞ୍ଚ,
ହା ହନ୍ତ ହନ୍ତ ବିଷଭକ୍ଷଣତୋଽପ୍ୟସାଧୁ ।୨।

## ଏକାଦଶ ପରିଚ୍ଛେଦ ।



ଭବସାଗରସ୍ୟପାରଂ ଜିଗମିଷୋଃ ବିଷୟିଣାଂ ପରଂ ସନ୍ଦର୍ଶନଂ ଗୋଷ୍ଠୀପୂର୍ବ୍ବକଂ ସନ୍ଦର୍ଶନଂ ଆଳାପାଦିତ୍ୟର୍ଥଃ— ଇତି । ଏ. ଚ.

ଗୌରଚନ୍ଦ୍ରଃ ଶ୍ରୀଜଗନ୍ନାଥଗେହେ— ମନ୍ଦିରପରିକ୍ରମେ ଇତ୍ୟର୍ଥଃ ଭକ୍ତୈଃସହ ଅତ୍ୟୁଦ୍ଦଣ୍ଡଂ ଉତ୍କ୍ଷିପ୍ତଦଣ୍ଡବତ୍ ତାଣ୍ଡବଂ— ଉଦ୍ଧତଂ ନୃତ୍ୟଂ କୁର୍ବନ୍ ସନ୍, ସ୍ୱଧାମ୍ନା—ନିଜମାଧୁର୍ଯ୍ୟେଣ ବିଶ୍ୱଂ— ଲୋକସମୂହଂ, ପ୍ରେମବନ୍ୟାୟାଂ ନିମଗ୍ନଂ ଚକ୍ରେ, କଥମ୍ଭୂତୋଗୌରଚନ୍ଦ୍ରଃ, ନାନାଭାବାଲଙ୍କୃତାଙ୍ଗଃ— ନାନାବିଧୈଃ ସାତ୍ତ୍ୱିକାଦିଭାବୈଃ ଅଲଙ୍କୃତାନି— ଭୂଷିତାନି ଅଙ୍ଗାନି ଯସ୍ୟ ସଃ । ୧ମ ଶ୍ଳୋକ ।

ନିଷ୍କିଞ୍ଚନସ୍ୟ— ତ୍ୟକ୍ତସର୍ବ୍ବପରିଗ୍ରହସ୍ୟ ତଥା ଭବସାଗରସ୍ୟ ପରଂ ପାରଂ ଜିଗମିଷୋଃ ଗନ୍ତୁମିଚ୍ଛୋଃ ତଥା ଭଗବଦ୍ଭଜନେ ଉନ୍ମୁଖସ୍ୟ—ପ୍ରବର୍ତ୍ତମାନସ୍ୟ, ଜନସ୍ୟ ବିଷୟିଣାଂ— ବିଷୟାସକ୍ତଚିତ୍ତାନାଂ ତଥା ଯୋଷିତାଂ— ରମଣୀନାଂ ସନ୍ଦର୍ଶନଂ ସଙ୍ଗଃ ହାହନ୍ତ—ନିନ୍ଦାୟାଂ ହନ୍ତ— ଖେଦେ ବିଷଭକ୍ଷଣତୋଽପି ଅସାଧୁ ଅମଙ୍ଗଳକରଂ । ୨ୟ ଶ୍ଳୋକ ।

ସାତ୍ତ୍ୱିକାଦି ନାନାଭାବ ବିଭୂଷିତାଙ୍ଗ ଶ୍ରୀଗୌରଚନ୍ଦ୍ର ଭକ୍ତଗଣ ସହ ଶ୍ରୀଜଗନ୍ନାଥମନ୍ଦିର ପ୍ରଦକ୍ଷିଣପୂର୍ବ୍ବକ ଶ୍ରୀହରିସଂକୀର୍ତ୍ତନରେ ଉଦ୍ଦଣ୍ଡନୃତ୍ୟ କରି ନିଜ ମାଧୁର୍ଯ୍ୟଦ୍ୱାରା ସମସ୍ତଲୋକଙ୍କୁ ପ୍ରେମବନ୍ୟାରେ ନିମଗ୍ନ କଲେ । ୧ମଶ୍ଳୋକାର୍ଥ ।

ସନ୍ନ୍ୟାସୀଙ୍କ ପକ୍ଷରେ ରାଜଦର୍ଶନ ଓ ସ୍ତ୍ରୀଦର୍ଶନ ଏ ଉଭୟ ବିଷଭକ୍ଷଣ ତୁଲ୍ୟ । ଏଠାରେ ଦର୍ଶନର ତାତ୍ପର୍ଯ୍ୟ ଆଳାପ । ୬ ।

ଯେଉଁ ବ୍ୟକ୍ତି ସଂସାରସାଗର ପାର ହେବାର ଇଚ୍ଛାରେ ସମସ୍ତ ବିଷୟଭୋଗ ତ୍ୟାଗ ପୂର୍ବ୍ବକ ଭଗବଦ୍ ଭଜନରେ ଉନ୍ମୁଖ ହୋଇଅଛନ୍ତି, ତାହାଙ୍କ ପକ୍ଷରେ ବିଷୟାସକ୍ତଜନ ଏବଂ ସ୍ତ୍ରୀଲୋକ ସହିତ ମିଳି ଆଳାପ କରିବା ବିଷଭକ୍ଷଣଠାରୁ ଅଧିକ ଅମଙ୍ଗଳକର । ଅର୍ଥାତ୍ ବିଷ-

ସାର୍ବଭୌମ କହେ—ସତ୍ୟ ତୋମାର ବଚନ ।
ଜଗନ୍ନାଥସେବକ ରାଜା କିନ୍ତୁ ଭକ୍ତୋତ୍ତମ ।୭।
ପ୍ରଭୁ କହେ—ତଥାପି ରାଜା କାଳସର୍ପାକାର ।
କାଷ୍ଠନାରୀ ସ୍ପର୍ଶେ ଯୈଛେ ଉପଜେ ବିକାର ।୮।

ତଥାହି ଶ୍ରୀଚୈତନ୍ୟଚନ୍ଦ୍ରୋଦୟନାଟକେ (୮।୨୩)
ଆକାରାଦପି ଭେତବ୍ୟଂ ସ୍ତ୍ରୀଣାଂ ବିଷୟିଣାମପି ।
ଯଥାହେର୍ମନସଃ କ୍ଷୋଭସ୍ତଥା ତସ୍ୟାକୃତେରପି ।୯।

ଐଛେ ବାତ ପୁନରପି ମୁଖେ ନା ଆନିବେ ।
ପୁନ ଯଦି କହ, ଆମା ଏଥା ନା ଦେଖିବେ ।୯।
ଭୟ ପାଞା ସାର୍ବଭୌମ ନିଜଘରେ ଗେଲା ।
ହେନକାଲେ ପ୍ରତାପରୁଦ୍ର ପୁରୁଷୋତ୍ତମେ ଆଇଲା
ରାମାନନ୍ଦରାୟ ଆଇଲା ଗଜପତି-ସଙ୍ଗେ ।
ପ୍ରଥମେଇ ପ୍ରଭୁରେ ଆସି ମିଲିଲେନ ରଙ୍ଗେ ।
ରାୟ ପ୍ରଣତି କୈଲ, ପ୍ରଭୁ କୈଲ ଆଲିଙ୍ଗନ ।
ଦୁଇଜନେ ପ୍ରେମାବେଶେ କରେନ କ୍ରନ୍ଦନ ।
ରାୟ-ସନେ ପ୍ରଭୁର ଦେଖି ସ୍ନେହବ୍ୟବହାର ।
ସବ ଭକ୍ତଗଣ ମନେ ହୈଲ ଚମତ୍କାର । ୧୩ ।
ରାୟ କହେ—ତୋମାର ଆଜ୍ଞାୟ ରାଜାକେ କହିଲ
ତୋମାର ଇଚ୍ଛାୟ ରାଜା ମୋରେ ବିଷୟ ଛାଡାଇଲ
ଆମି କହିଲ— ଆମା ହୈତେ ନା ହୟ ବିଷୟ ।
ଚୈତନ୍ୟଚରଣେ ରହୋଁ—ଯଦି ଆଜ୍ଞା ହୟ ।
ତୋମାର ନାମ ଶୁନି ରାଜା ଆନନ୍ଦିତ ହୈଲା ।
ଆସନ ହୈତେ ଉଠି ମୋରେ ଆଲିଙ୍ଗନ କୈଲା
ତୋମାର ନାମ ଶୁନି ହୈଲ ମହାପ୍ରେମାବେଶ ।
ମୋର ହାତେ ଧରି କହେ ପୀରିତି-ବିଶେଷ ।
ତୋମାର ଯେ ବର୍ତ୍ତନ – ତୁମି ଖାଅ ସେ ବର୍ତ୍ତନ
ନିଶ୍ଚିନ୍ତ ହଇଞା ସେବ ପ୍ରଭୁର ଚରଣ । ୧୬ ।
ଆମି ଛାର ଯୋଗ୍ୟ ନହି ତାଁର ଦରଶନେ ।
ତାଁରେ ଯେଇ ସେବେ – ତାର ସଫଲ ଜୀବନେ
ପରମକୃପାଳୁ ତେଁହୋ ବ୍ରଜେନ୍ଦ୍ରନନ୍ଦନ ।
କୋନ ଜନ୍ମେ ମୋରେ ଅବଶ୍ୟ ଦିବେନ ଦର୍ଶନ
ଯେ ତାଁହାର ପ୍ରେମ ଆର୍ତ୍ତି ଦେଖିଲ ତୋମାତେ ।
ତାର ଏକ ଲେଶ ପ୍ରୀତି ନାହିକ ଆମାତେ ।୧୭।
ପ୍ରଭୁ କହେନ - ତୁମି କୃଷ୍ଣଭକତପ୍ରଧାନ ।
ତୋମାରେ ଯେ ପ୍ରୀତିକରେ, ସେଇ ଭାଗ୍ୟବାନ୍ ।
ତୋମାକେ ଏତେକ ପ୍ରୀତି ହଇଲ ରାଜାର ।
ଏଇ ଗୁଣେ କୃଷ୍ଣ ତାଁରେ କରିବେ ଅଙ୍ଗୀକାର ।

ସ୍ତ୍ରୀଣାଂ ତଥା ବିଷୟିଣାଂ—ବିଷୟାସକ୍ତଚିତ୍ତାନାଂ ଆକାରତ୍—ମୃତ୍ତିକାଦିନିର୍ମିତତତ୍ତନ୍ମୂର୍ତ୍ତେରପି, ଭେତବ୍ୟଂ - ଭୟଂଭବେଦିତ୍ୟର୍ଥଃ । ଯଥା ଅହେଃ—କାଳସର୍ପାତ୍, ମନସଃକ୍ଷୋଭଃ-ମହାଭୟଂ ସ୍ୟାତ୍ ତଥାତଦ୍ବତ୍,ତତ୍ସର୍ପସ୍ୟକୃତ୍ରିମମୂର୍ତ୍ତି ଦର୍ଶନାତ୍ ଭୟଂ ଭବେଦିତି । ଅସ୍ୟଶ୍ଲୋକ ।

ଭକ୍ଷଣଦ୍ୱାରା କେବଳ ଶରୀରର ଅନିଷ୍ଟ ହୁଏ, ବିଷୟୀ ଓ ସ୍ତ୍ରୀ ଏମାନଙ୍କ ସଂସର୍ଗରେ ଶରୀରର ତ ଅନିଷ୍ଟ ହୁଏ, ଅଧିକନ୍ତୁ ଭଗବଦ୍ଭଜନ ମଧ୍ୟ ନଷ୍ଟ ହୁଏ । ଅସ୍ୟ ଶ୍ଲୋକାର୍ଥ ।

କିନ୍ତୁ—ଅଧିକନ୍ତୁ । ୭ ।

'ରାଜା' ଏହି ଉପାଧିହିଁ କୃତ୍ରିମକାଳସର୍ପତୁଲ୍ୟ ଭୟଜନକ । ଯେପରି କି, କାଷ୍ଠନିର୍ମିତ ସ୍ତ୍ରୀକୁ ସ୍ପର୍ଶ କଲେ କାଷ୍ଠଜ୍ଞାନ ସତ୍ତ୍ୱେ ଓ ସ୍ତ୍ରୀରୂପଦ୍ୱାରା ମନରେ କାମଭାବର ଉଦ୍ଦୀପନ ହୁଏ । ୮ ।

ସ୍ତ୍ରୀଲୋକ ଏବଂ ବିଷୟାସକ୍ତ ବ୍ୟକ୍ତିର ମୃତ୍ତିକାଦିନିର୍ମିତ ମୂର୍ତ୍ତି ଦେଖିଲେ ସୁଦ୍ଧା ଭଗବଦ୍-ଭକ୍ତର ଭୟ କରିବା ଉଚିତ । ଯେପରି କି ସର୍ପ ଦେଖିଲେ ମହା ଭୟ ହୁଏ ଏବଂ ତାହାର କୃତ୍ରିମ ମୂର୍ତ୍ତି ଦେଖିଲେ ମଧ୍ୟ ତଦ୍ରୂପ ଭୟ ହୁଏ । ଅସ୍ୟ ଶ୍ଲୋକାର୍ଥ ।

ମହାରାଜା ପ୍ରତାପରୁଦ୍ର କଟକ ରାଜଧାନୀରୁ ଶ୍ରୀପୁରୀଧାମକୁ ଆଗମନ କଲେ । ୧୦ ।

ଗଜପତି—ଓଡିଶାରାଜାମାନଙ୍କର ଗଜପତିଗୌଡେଶ୍ୱର ଇତ୍ୟାଦି ଉପାଧି ଅଛି ।

ପ୍ରଥମେଇ—ଶ୍ରୀଜଗନ୍ନାଥ ଦର୍ଶନ କରିବା ପୂର୍ବରୁ ସର୍ବାଗ୍ରେ । ୧୧ ।

ରହୋଁ—ରହିବି । ୧୫ । ବର୍ତ୍ତନ—ବେତନ । ୧୬ ।

ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୬)
ଆଦିପୁରାଣବଚନମ୍

ଯେ ମେ ଭକ୍ତଜନାଃ ପାର୍ଥ ନମେ ଭକ୍ତାଶ୍ଚତେ ଜନାଃ ।
ମଦ୍‌ଭକ୍ତାନାଞ୍ଚ ଯେ ଭକ୍ତାସ୍ତେ ମେ ଭକ୍ତତମା ମତାଃ । ୪ ।

ତଥାହି (ଭାଃ ୧୧।୧୯।୨୧,୨୨)

ଆଦରଃ ପରିଚର୍ଯ୍ୟାୟାଂ ସର୍ବାଙ୍ଗୈରଭିବନ୍ଦନମ୍ ।
ମଦ୍‌ଭକ୍ତପୂଜାଭ୍ୟଧିକା ସର୍ବଭୂତେଷୁ ମନ୍ମତିଃ ।୫।

ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୪)
ପଦ୍ମପୁରାଣବଚନମ୍ —

ଆରାଧନାନାଂ ସର୍ବେଷାଂ ବିଷ୍ଣୋରାରାଧନଂ ପରମ୍ ।
ତସ୍ମାତ୍ ପରତରଂ ଦେବି ତଦୀୟାନାଂ ସମର୍ଚ୍ଚନମ୍ ।୬

ତଥାହି (ଭାଃ ୩।୭।୨୦)—

ଦୁରାପା ହ୍ୟଳ୍ପତପସଃ ସେବା ବୈକୁଣ୍ଠବର୍ତ୍ମସୁ ।
ଯତ୍ରୋପଗୀୟତେ ନିତ୍ୟଂ ଦେବଦେବୋ ଜନାର୍ଦ୍ଦନଃ । ୭ ।

ହେ ପାର୍ଥ—ଅର୍ଜ୍ଜୁନ ? ଯେ ଜନାଃ, ମେ—ମମଭକ୍ତାଃ, କେବଳଂ ମାମେବ ଭଜନ୍ତି ନତୁ ମଦ୍‌ଭକ୍ତାନ୍, ତେ— ଜନାଃ ମଦ୍‌ଭକ୍ତାଃ—(ଶ୍ରେଷ୍ଠଭକ୍ତାଃ) ନ ଭବନ୍ତି । କିନ୍ତୁ ଯେ—ଜନାଃ, ମଦ୍‌ଭକ୍ତାନାଂ—ମଦୁପାସକାନାଂ ଭକ୍ତାଭବନ୍ତି, ତେ— ଭକ୍ତପୂଜକାଃ ଜନାଃ ମେ— ମମ, ଭକ୍ତତମାଃ — ସର୍ବଭକ୍ତୋତ୍ତମାଃ ମତାଃ ଭବନ୍ତି । ୪ର୍ଥ ଶ୍ଳୋକଃ ।

ପରିଚର୍ଯ୍ୟାୟାଂ— ସେବାୟାମାଦରଃ, ସର୍ବାଙ୍ଗୈଃ—ଅଙ୍ଗପ୍ରତ୍ୟଙ୍ଗାଦିଭିଃ ଅଭିବନ୍ଦନଂ, ଅଭ୍ୟଧିକା—ମତ୍ପୂଜାତୋଽପି ତବ ମମ ସନ୍ତୋଷବିଶେଷାତ୍, ମଦ୍‌ଭକ୍ତପୂଜା ସର୍ବଭୂତେଷୁ ମନ୍ମତିଃ । ୫ମଶ୍ଳୋକ ।

ହେ ଦେବି ! ସର୍ବେଷାଂ ଦେବଦେବୀନାମାରାଧନାନାଂ ମଧ୍ୟେବିଷ୍ଣୋରାରାଧନଂ ପରଂ— ସର୍ବୋତ୍ତମଂ, ତସ୍ମାତ୍—ଭଗବଦାରାଧନାତ୍ ପରତରଂ—ସର୍ବୋତ୍ତମୋତ୍ତମଂ ତଦୀୟାନାଂ— ବିଷ୍ଣୁଭକ୍ତାନାଂ ସମର୍ଚ୍ଚନଂ—ଆରାଧନଂ । ୬ଷ୍ଠଶ୍ଳୋକ ।

ଯତ୍ର ମହତ୍ସୁ ସାଧୁଷୁ ନିତ୍ୟଂ— ସର୍ବଦା ଦେବଦେବଃ— ସର୍ବଦେବମୟଃ ଜନାର୍ଦ୍ଦନଃ କୃଷ୍ଣଃ — ଉପଗୀୟତେ । ତତ୍ର ବୈକୁଣ୍ଠବର୍ତ୍ମସୁ—ବୈକୁଣ୍ଠସ୍ୟ—ଶ୍ରୀକୃଷ୍ଣସ୍ୟ, ବୈକୁଣ୍ଠଲୋକସ୍ୟ ବା ବର୍ତ୍ମସୁ—ମାର୍ଗ ଭୂତେଷୁ, ହରିଜନେଷୁ ସେବା, ଅଳ୍ପତପସଃ — କ୍ଷୀଣପୁଣ୍ୟଜନସ୍ୟ, ହି ଦୁରାପା— ଦୁର୍ଲ୍ଲଭା । ୭ମଶ୍ଳୋକ ।

ଶ୍ରୀକୃଷ୍ଣକହୁଅଛନ୍ତି—ହେ ଅର୍ଜ୍ଜୁନ ! ଯେଉଁ ବ୍ୟକ୍ତି ମୋର ଭକ୍ତଠାରେ ପ୍ରୀତିଶୂନ୍ୟ ହୋଇ କେବଳ ମୋର ଭଜନ କରେ, ସେ ବ୍ୟକ୍ତି ଉତ୍ତମ ଭକ୍ତ ନୁହେ । ଯେଉଁ ବ୍ୟକ୍ତି ମୋର ଭକ୍ତମାନଙ୍କର ଭକ୍ତ, ସେହି ବ୍ୟକ୍ତିଙ୍କୁ ମୋର ଉତ୍ତମ ଭକ୍ତ ବୋଲି ଜାଣିବ । ୪ର୍ଥ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି, ଉତ୍ତମ ଭକ୍ତର ମୋର ପରିଚର୍ଯ୍ୟାରେ ଆଦର, ସର୍ବାଙ୍ଗଦ୍ୱାରା ମୋର ବନ୍ଦନ, ମୋର ପୂଜା ଅପେକ୍ଷା ମୋର ଭକ୍ତଙ୍କ ପୂଜାରେ ଯେ ମୁଁ ବିଶେଷ ସନ୍ତୁଷ୍ଟ ହୁଏ, ଏହା ଜାଣି ମୋର ଭକ୍ତର ପୂଜା କରି ଏବଂ ସର୍ବପ୍ରାଣୀରେ ମୋର ଅଧିଷ୍ଠାନ ଜାଣି ପ୍ରୀତିକରି କର୍ତ୍ତବ୍ୟ । ୫ମ ଶ୍ଳୋକାର୍ଥ ।

ଶ୍ରୀଶିବ ଦୁର୍ଗାଙ୍କୁ କହୁଅଛନ୍ତି, ହେ ଦେବି ଦୁର୍ଗେ ? ସମସ୍ତ ଦେବତାମାନଙ୍କର ଆରାଧନା ମଧ୍ୟରେ ବିଷ୍ଣୁଙ୍କ ଆରାଧନାହିଁ ଶ୍ରେଷ୍ଠ । ତାହାଠାରୁ ତାହାଙ୍କର ଭକ୍ତମାନଙ୍କର ଆରାଧନା ଅଧିକ ଶ୍ରେଷ୍ଠ । ୬ଷ୍ଠ ଶ୍ଳୋକାର୍ଥ ।

ଯେଉଁମାନେ ନିରନ୍ତର ସର୍ବଦେବଶ୍ରେଷ୍ଠ ଜନାର୍ଦନଙ୍କର ଗୁଣଗାନ କରନ୍ତି, ଭଗବତ୍-ପ୍ରାପ୍ତିର ପଥସ୍ୱରୂପ ସେହି ଭଗବଦ୍‌ଭକ୍ତମାନଙ୍କର ସେବାଲାଭ ଅଳ୍ପପୁଣ୍ୟଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ଦୁର୍ଲ୍ଲଭ ହୁଏ । ୭ମ ଶ୍ଳୋକାର୍ଥ ।

ପ୍ରଣି ଭାରତୀଗୋସାଞି ସ୍ୱରୂପ ନିତ୍ୟାନନ୍ଦ ।
ଦାମୋଦର ଗୋସାଞିର କୈଲ ରାୟ ଚରଣାଭିବନ୍ଦ ।
ଜଗଦାନନ୍ଦ-ମୁକୁନ୍ଦାଦି ଯତ ଭକ୍ତଗଣ ।
ଯଥାଯୋଗ୍ୟ ସବ ଭକ୍ତେ କରିଲା ମିଳନ ।୨୫।
ପ୍ରଭୁ କହେ — ରାୟ ! ଦେଖିଲେ କମଲଲୋଚନ
ରାୟ କହେ—ତବେ ଯାଇ ପାବ ଦରଶନ ।
ପ୍ରଭୁ କହେ—ରାୟ ! ତୁମି କି କର୍ମ କରିଲା ?
ଈଶ୍ୱର ନା ଦେଖି ଆଗେ ଏଥା କେନେ ଆଇଲା
ରାୟ କହେ — ଚରଣ ରଥ, ହୃଦୟ ସାରଥି ।
ଯାହାଁ ଲଞା ଯାୟ, ତାହାଁ ଯାୟ ଜୀବ ରଥୀ ।
ଆମି କି କରିବ, ମନ ଇହାଁ ଲଞା ଆଇଲ ।
ଜଗନ୍ନାଥ ଦରଶନେ ବିଚାର ନା କୈଲ ।୨୯।
ପ୍ରଭୁ କହେ—ଯାହ ଶୀଘ୍ର କର ଦରଶନ ।
ଐଛେ ଘର ଯାଇ କର କୁଟୁମ୍ବ-ମିଲନ ॥
ପ୍ରଭୁ-ଆଜ୍ଞା ପାଞା ରାୟ ଚଲିଲା ଦର୍ଶନେ ।
ରାୟେର ପ୍ରେମଭକ୍ତି-ରୀତି ବୁଝେ କୋନ୍ ଜନେ
କ୍ଷେତ୍ରେ ଆସି ରାଜା ସାର୍ବଭୌମେ ବୋଲାଇଲ ।
ସାର୍ବଭୌମେ ନମସ୍କରି ତାହାରେ ପୁଛିଲ— ।
ମୋର ଲାଗି ପ୍ରଭୁ-ପଦେ କୈଲେ ନିବେଦନ ?
ସାର୍ବଭୌମ କହେ— କୈଲ ଅନେକ ଯତନ ।
ତଥାପି ନା କରେ ତେହୋ ରାଜଦରଶନ ।
କ୍ଷେତ୍ର ଛାଡ଼ି—ଯାନ ଯଦି କରି ନିବେଦନ ।

ଶୁନିଞା ରାଜାର ମନେ ଦୁଃଖ ଉପଜିଲ ।
ବିଷାଦ କରିୟା କିଛୁ କହିତେ ଲାଗିଲ—।୩୬।
ପାପୀ ନୀଚ ଉଦ୍ଧାରିତେ ତାଁର ଅବତାର ।
ଶୁନି ଜଗାଇ-ମାଧାଇ ତେହୋ କରିଲା ଉଦ୍ଧାର ।
"ପ୍ରତାପରୁଦ୍ର ଛାଡ଼ି କରିବ ଜଗତ ଉଦ୍ଧାର" ।
ଏଇ ପ୍ରତିଜ୍ଞା କରି ଜାନି କରିୟାଛେ ଅବତାର ।

ତଥାହି ଚୈତନ୍ୟଚନ୍ଦ୍ରୋଦୟନାଟକେ (୮।୩୪)-

ଅଦର୍ଶନୀୟାନପି ନୀଚଜାତୀନ୍,
ସ ବୀକ୍ଷତେ ହନ୍ତ ତଥାପି ନୋ ମାମ୍ ।
ମଦେକବର୍ଜ୍ଜଂ କୃପୟିଷ୍ୟତୀତି,
ନିର୍ଣ୍ଣୀୟ କିଂ ସୋଽବତତାର ଦେବଃ । ୮ ।

ତାଁର ପ୍ରତିଜ୍ଞା — 'ନା କରିବ ରାଜଦର୍ଶନ' ।
ମୋର ପ୍ରତିଜ୍ଞା—ତାଁହା ବିନା ଛାଡ଼ିବ ଜୀବନ ।
ଯଦି ସେଇ ମହାପ୍ରଭୁର ନା ପାଇ କୃପାଧନ ।
କିବା ରାଜ୍ୟ କିବା ଦେହ—ସବ ଅକାରଣ ।୩୯।
ଏତ ଶୁନି ଭଟ୍ଟାଚାର୍ଯ୍ୟ ହଇଲା ଚିନ୍ତିତ ।
ରାଜାର ଅନୁରାଗ ଦେଖି ହଇଲା ବିସ୍ମିତ । ୪୦ ।
ଭଟ୍ଟାଚାର୍ଯ୍ୟ କହେ ଦେବ ! ନା କର ବିଷାଦ ।
ତୋମାର ଉପରେ ପ୍ରଭୁର ହବେ ଅବଶ୍ୟ ପ୍ରସାଦ ।
ତେହୋ ପ୍ରେମାଧୀନ, ତୋମାର ପ୍ରେମ ଗାଢ଼ତର ।
ଅବଶ୍ୟ କରିବେନ କୃପା ତୋମାର ଉପର ।୪୧।

---

ସଃ—ଗୌରାଙ୍ଗଃ ଅଦର୍ଶନୀୟାନ୍—ଦୃଷ୍ଟୁମନର୍ହାନ୍ ନୀଚଜାତୀନ୍—ଯବନାଦୀନ୍, ଅପି ବୀକ୍ଷତେ—କାରୁଣ୍ୟଦୃଷ୍ଟ୍ୟା ବିଲୋକୟତି । ହନ୍ତ ଖେଦେ ତଥାପି ମାଂ ନ (ବୀକ୍ଷତେ) ମଦେକବର୍ଜ୍ଜଂ—ମାମେକଂ ବର୍ଜ୍ଜୟିତ୍ୱାଽନ୍ୟାନ୍ କୃପୟିଷ୍ୟତି ଇତି କିଂ ନିର୍ଣ୍ଣୀୟ—ପ୍ରତିଜ୍ଞାୟ ସ ଦେବଃ—ଗୌରାଙ୍ଗଃଅବତତାର - ପ୍ରକଟୋଽଭୂତ୍ । ୮ମ ଶ୍ଳୋକ ।

---

ମହାପ୍ରଭୁ କହିଲେ, ରାମରାୟ ? ତୁମ୍ଭେ କମଳଲୋଚନ ( ଶ୍ରୀଜଗନ୍ନାଥ ) ଦର୍ଶନ କରି ଆସିଛ କି ? ରାମରାୟ ଉତ୍ତର ଦେଲେ ମୁଁ ଏବେ ଗଲେ ଦର୍ଶନ ପାଇବି । ୨୭ ।

ତାଁର—ଶ୍ରୀମନ୍ମହାପ୍ରଭୁଙ୍କର । ୩୭ ।

ଶ୍ରୀଚୈତନ୍ୟଦେବ ଦର୍ଶନଅଯୋଗ୍ୟ ଯବନାଦି ନୀଚଜାତିମାନଙ୍କୁ ସୁଦ୍ଧା କୃପାବଲୋକନ-ପୂର୍ବକ ଦର୍ଶନଦାନ କରୁଅଛନ୍ତି । କିନ୍ତୁ ହାୟ ମୋତେ ଦର୍ଶନ ଦେଲେ ନାହିଁ । ଅତଏବ ମୋ ବ୍ୟତୀତ ଜଗତ୍‌ଜୀବମାନଙ୍କୁ କୃପା କରିବେ ଏହି ପ୍ରତିଜ୍ଞା କରି କି ସେ ଅବତୀର୍ଣ୍ଣ ହୋଇ ଅଛନ୍ତି । ୮ମ ଶ୍ଳୋକାର୍ଥ ।

ତଥାପି କହୁଛେ ଆମି ଏକ ଉପାୟ ।
ଏଇ ଉପାୟ କର - ପ୍ରଭୁ ଦେଖିବେ ଯାହାୟ ।
ରଥଯାତ୍ରାଦିନେ ପ୍ରଭୁ ସବ ଭକ୍ତ ଲଞା ।
ରଥ-ଆଗେ ନୃତ୍ୟ କରେ ପ୍ରେମାବିଷ୍ଟ ହଞା ।୪୪।
ପ୍ରେମାବେଶେ ପୁଷ୍ପୋଦ୍ୟାନେ କରେନ ପ୍ରବେଶ ।
ସେଇକାଳେ ତୁମି ଏକା ଛାଡ଼ି ରାଜବେଶ ।୪୫।
କୃଷ୍ଣ-ରାସପଞ୍ଚାଧ୍ୟାୟୀ କରିତେ ପଠନ ।
ଏକଲେ ଯାଞା ମହାପ୍ରଭୁର ଧରିବେ ଚରଣ ।୪୬।
ବାହ୍ୟଜ୍ଞାନ ନାହି ସେକାଲେ କୃଷ୍ଣନାମ ଶୁନି ।
ଆଲିଙ୍ଗନ କରିବେନ ତୋମାୟ ବୈଷ୍ଣବ ଜାନି ।
ରାମାନନ୍ଦରାୟ ଆଜ ତୋମାର ପ୍ରେମ-ଗୁଣ ।
ପ୍ରଭୁ ଆଗେ କହି ପ୍ରଭୁର ଫିରାଇଛେ ମନ ।
ଶୁନି ଗଜପତି ମନେ ସୁଖ ଉପଜିଲ ।
ପ୍ରଭୁରେ ମିଳିତେ ଏଇ ଯୁକ୍ତି ଦୃଢ଼ କୈଲ ।୪୯।
ସ୍ନାନଯାତ୍ରା କବେ ହବେ ? ପୁଛିଲ ଭଟ୍ଟେରେ ।
ଭଟ୍ଟକହେ—ତିନଦିନ ଆଛୟେ ଯାତ୍ରାରେ ।୫୦।
ସ୍ନାନଯାତ୍ରା ଦେଖି ପ୍ରଭୁ ପାଇଲ ବଡ଼ ସୁଖ ।
ଈଶ୍ୱରେର ଅନବସରେ ପାଇଲ ମହାଦୁଃଖ ।୫୧।

ଗୋପୀଭାବେ ପ୍ରଭୁ ବିରହେ ବିହ୍ୱଲ ହଇୟା ।
ଆଲାଲନାଥେ ଗେଲା ପ୍ରଭୁ ସଭାରେ ଛାଡ଼ିୟା ।୫୨
ପାଛେ ଭକ୍ତଗଣ ଗେଲା ପ୍ରଭୁର ଚରଣେ ।
'ଗୌଡ଼ହୈତେ ଭକ୍ତ ଆଇସେ' - କୈଲା
ନିବେଦନେ ।
ସାର୍ବଭୌମ ନୀଳାଚଲେ ଆଇଲା ପ୍ରଭୁ ଲଞା ।
'ପ୍ରଭୁ ଆଇଲ'—ରାଜାର ଠାଞି କହିଲେନ ଯାଞା ।
ହେନକାଲେ ଆଇଲା ତାହା ଗୋପୀନାଥାଚାର୍ଯ୍ୟ ।
ରାଜାକେ ଆଶୀର୍ବାଦ କରି କହେ—ଶୁନ ଭଟ୍ଟାଚାର୍ଯ୍ୟ
ଗୌଡ଼ ହୈତେ ବୈଷ୍ଣବ ଆସିୟାଛେ ଦୁଇଶତ ।
ମହାପ୍ରଭୁର ଭକ୍ତ ସବ ମହାଭାଗବତ । ୫୫ ।
ନରେନ୍ଦ୍ରେ ଆସିୟା ସଭେ ହୈଲା ବିଦ୍ୟମାନ ।
ତାଁ-ସଭାର ଚାହି ବାସା-ପ୍ରସାଦ-ସମାଧାନ । ୫୬ ।
ରାଜା କହେ—ପଡ଼ିଛାକେ ଆମି ଆଜ୍ଞା କରିବ ।
ବାସା-ଆଦି ଯେ ଚାହିୟେ—ପଡ଼ିଛା ସବ ଦିବ ।
ମହାପ୍ରଭୁଗଣ ଯତ ଆଇଲ ଗୌଡ଼ ହୈତେ ।
ଭଟ୍ଟାଚାର୍ଯ୍ୟ ! ଏକ ଏକ ଦେଖାହ ଆମାତେ ।୫୯।

ଅନବସରେ—ସ୍ନାନଯାତ୍ରାନନ୍ତରମଙ୍ଗସେବାୟ ମନ୍ଦିରେ ଦର୍ଶନାଭାବ ଇତ୍ୟର୍ଥଃ । ୫୧ । ଚ. ଚ.

ଯାହାୟ—ଯଦ୍ଦ୍ୱାରା । ୪୩ ।
ତୁମି ଏକା—ପରିଚାରକଶୂନ୍ୟ ହୋଇ । ୪୫ ।
କୃଷ୍ଣରାସପଞ୍ଚାଧ୍ୟାୟୀ—ଦଶମସ୍କନ୍ଧ ୨୯ ଠାରୁ ୩୩ ଅଧ୍ୟାୟ । ୪୬ ।
ଆଲାଲନାଥ—ଶ୍ରୀପୁରୀଠାରୁ ଦକ୍ଷିଣଦିଗକୁ ସମୁଦ୍ର କୂଳରେ ପ୍ରାୟ ୧୪ ମାଇଲ ଦୂର । ସେଠାରେ ଚତୁର୍ଭୁଜ ବାସୁଦେବ ମୂର୍ତ୍ତି ଅଛନ୍ତି । ସେଠାରେ ଉତ୍କୃଷ୍ଟ କ୍ଷୀରି ଭୋଗ ହୁଏ । ସେ ଭଗବାନଙ୍କର ଶ୍ରୀଅଙ୍ଗରେ ତପ୍ତ କ୍ଷୀରି ପଡ଼ିଥିବାର ଦାଗ ଦେଖାଯାଏ । ୫୨ ।
ଗୌଡ଼ହୈତେ—ବଙ୍ଗଦେଶରୁ ।୫୩ ।
ନରେନ୍ଦ୍ର—ଶ୍ରୀପୁରୀଧାମରେ "ନରେନ୍ଦ୍ର ଶରୋବର" ପୁଷ୍କରିଣୀ । ୫୬ ।
ପଡ଼ିଛା—ପରୀକ୍ଷା ।୫୮ ।

ତଥାହି ( ଭାଃ—୧୦।୪୪।୫୧ )—
ଦେବକୀ ବସୁଦେବଶ୍ଚ ବିଜ୍ଞାୟ ଜଗଦୀଶ୍ୱରୌ ।
କୃତସଂବନ୍ଦନୌ ପୁତ୍ରୌ ସସ୍ୱଜାତେ ନ ଶଙ୍କିତୌ । ୨୬ ।

କୃଷ୍ଣେର ବିଶ୍ୱରୂପ ଦେଖି ଅର୍ଜୁନେର ହୈଲ ଭୟ ।
ସଖ୍ୟଭାବେ ଧାର୍ଷ୍ଟ୍ୟ କ୍ଷମାୟ କରିୟା ବିନୟ ॥ ୧୬୮

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ (୧୧।୪୧,୪୨)-
ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ,
ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ,
ମୟା ପ୍ରମାଦାତ୍ ପ୍ରଣୟେନ ବାପି । ୨୭ ।
ଯଚ୍ଚାବହାସାର୍ଥମସତ୍କୃତୋଽସି,
ବିହାରଶଯ୍ୟାସନଭୋଜନେଷୁ ।
ଏକୋଽଥବାପ୍ୟଚ୍ୟୁତ ତତ୍‌ସମକ୍ଷଂ,
ତତ୍‌କ୍ଷାମୟେ ତ୍ୱାମହମପ୍ରମେୟମ୍ । ୨୮ ।

କୃଷ୍ଣ ଯଦି ରୁକ୍ମିଣୀକେ କୈଲ ପରିହାସ ।
'କୃଷ୍ଣ ଛାଡିବେନ' ଜାନି ରୁକ୍ମିଣୀର ହୈଲ ତ୍ରାସ ॥

ତଥାହି ( ଭାଃ—୧୦।୬୦।୨୪ ) –
ତସ୍ୟାଃ ସୁଦୁଃଖଭୟଶୋକବିନଷ୍ଟବୁଦ୍ଧେ-
ର୍ହସ୍ତାତ୍ ଶ୍ଲଥଦ୍ୱଲୟତୋ ବ୍ୟଜନଂ ପପାତ ।
ଦେହଶ୍ଚ ବିକ୍ଲବଧିୟଃ ସହସୈବ ମୁହ୍ୟନ୍,
ରମ୍ଭେବ ବାତବିହତା ପ୍ରବିକୀର୍ଯ୍ୟ କେଶାନ୍ । ୨୯ ।

ଦେବକୀବସୁଦେବଶ୍ଚ ପୁତ୍ରୌ ଜଗଦୀଶ୍ୱରୌ ବିଜ୍ଞାୟ ଶଙ୍କିତୌ ସନ୍ତୌ କୃତସଂବନ୍ଦନୌ ଅପି ( ତୌ ) ନ ସସ୍ୱଜାତେ । ୨୬ଶ ଶ୍ଳୋକ ।

( କୃଷ୍ଣଭଗବାନ୍ ମେ ) ସଖା ଇତି ମତ୍ୱାତବ ଇଦଂ—ସହସ୍ରଶୀର୍ଷତ୍ୱାଦି—ଲକ୍ଷଣଂ, ମହିମାନଂ ଅଜାନତା—ଅନନୁଭବତାମୟା ପ୍ରମାଦାତ୍—ଅନବଧାନତଃ ପ୍ରଣୟେନ ବାପି (ତ୍ୱାଂ ପ୍ରତି) ପ୍ରସଭଂ—ହଠାତ୍ ହେ କୃଷ୍ଣ ! ହେ ଯାଦବ ! ହେ ସଖା ଇତି ଯତ୍ ଉକ୍ତଂ କିଂ ଚ ( ଯଚ୍ଚ ) ବିହାରଶଯ୍ୟାସନଭୋଜନେଷୁ ତ୍ୱାଂ ଅବହାସାର୍ଥଂ—ପରିହାସାୟ, ଏକଂ—ଜନରହିତଂ, ଅଥବା ତତ୍‌ସମକ୍ଷଂ ( ତେଷାଂ ପରିହସତାଂ ସଖୀନାଂ ପ୍ରତ୍ୟକ୍ଷଂ ସ୍ଥିତଃ ) ଅହଂ ଅସତ୍‌କୃତଃ ଅପି (ହେ) ଅପ୍ରମେୟଂ ଅଚ୍ୟୁତ ତତ୍ (ସର୍ବବଚନରୂପଂ ଅସତ୍କାରରୂପଂ ବା ଅପରାଧଜାତଂ) କ୍ଷାମୟେ କ୍ଷମସ୍ୱ । ୨୭ଶ ୨୮ଶ ଶ୍ଳୋକ ।

ସୁଦୁଃଖଭୟଶୋକବିନଷ୍ଟବୁଦ୍ଧେଃ— ସୁଦୁଃଖଂ ଅତିଦୁଃଖଂ ତ୍ୱଦ୍ବାକ୍ୟଂ ତ୍ୟାଗଶଙ୍କୟା ଶୋକଃ—ଅନୁତାପଃ ତୈଃ ବିନଷ୍ଟା ବୁଦ୍ଧିର୍ଯସ୍ୟାଃ ତସ୍ୟାଃ, ଅନେନ କ୍ଷିଣ୍ଣମୟ ପ୍ରେମତୋ ଦ୍ୟୋତ୍ୟାୟାଃ ଶ୍ରୀରୁକ୍ମିଣ୍ୟାଃ, ଶ୍ଲଥଦ୍ୱଲୟତଃ—ଶ୍ଲଥନ୍ତି ବଲୟାନି ଯସ୍ମାତ୍ ତସ୍ମାତ୍, ହସ୍ତାତ୍ ବ୍ୟଜନଂ ପପାତ ବିକ୍ଲବଧିୟଃ—ବିକ୍ଲବା— ଅବଶା ଧୀଃ ଯସ୍ୟାଃ ତସ୍ୟାଃ, ଅତଏବ ସହସା ଏବ ଦେହଶ୍ଚ ମୁହ୍ୟନ୍ କେଶାନ୍ ପ୍ରବିକୀର୍ଯ୍ୟ ବାତହତାରମ୍ଭାଇବ ପପାତ । ୨୯ଶ ଶ୍ଳୋକ ।

ଦେବକୀ ଓ ବସୁଦେବଙ୍କୁ ଶ୍ରୀକୃଷ୍ଣ ଓ ବଳରାମ ପ୍ରବନ୍ଦିୟ ପ୍ରଣାମ କରନ୍ତେ ସେମାନେ ଶ୍ରୀକୃଷ୍ଣ ବଳରାମଙ୍କୁ ଜଗଦୀଶ୍ୱରଜ୍ଞାନରେ ଶଙ୍କିତ ହୋଇ ଆଲିଙ୍ଗନ କଲେ ନାହିଁ; ହାତ ଯୋଡ଼ି ଠିଆ ହୋଇ ରହିଲେ । ୨୬ଶ ଶ୍ଳୋକାର୍ଥ ।

କ୍ଷମାୟ—କ୍ଷମାପ୍ରାର୍ଥନା କଲେ । ୧୬୮ ।

ଶ୍ରୀଅର୍ଜୁନ ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଦର୍ଶନାନନ୍ତର କହୁଅଛନ୍ତି—ଆପଣଙ୍କର ଏହି ମହିମା ନ ଜାଣି ପ୍ରମାଦବଶତଃ ଅଥବା ପ୍ରଣୟଯୁକ୍ତ ସଖାଜ୍ଞାନରେ ହଠାତ୍ ହେ କୃଷ୍ଣ ! ହେ ଯାଦବ ହେ ସଖେ ପ୍ରଭୃତି ସମ୍ବୋଧନ କରିଅଛି ଏବଂ ବିହାର ଶୟନ ଭୋଜନ ପ୍ରଭୃତି ସମୟରେ ପରିହାସଚ୍ଛଳରେ ନିର୍ଜନରେ ବା ଜନମାନଙ୍କ ଆଗରେ ଯେଉଁ ଅପହାସ କରିଅଛି, ଆପଣ ମୋର ଏହି ସମସ୍ତ ଅପରାଧ କ୍ଷମାକରନ୍ତୁ । ୨୭ଶ ୨୮ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କର ପରିହାସ ବଚନ ଶୁଣି ଶ୍ରୀରୁକ୍ମିଣୀଦେବୀଙ୍କର ଏହିପରି ଅବସ୍ଥା ହୋଇଥିଲା । ଯଥା—ଅତିଶୟ ଦୁଃଖ, ଭୟ ଓ ଶୋକରେ ହତବୁଦ୍ଧି ଶ୍ରୀରୁକ୍ମିଣୀଦେବୀଙ୍କ ହସ୍ତରୁ ବଳୟ ଓ

କେବଲାର ଶୁଦ୍ଧପ୍ରେମ,—ଐଶ୍ୱର୍ଯ୍ୟ ନା ଜାନେ ।
ଐଶ୍ୱର୍ଯ୍ୟ ଦେଖିଲେହ ନିଜ-ସମ୍ବନ୍ଧ ସେ ମାନେ ॥

ତଥାହି (ଭାଃ—୧୦।୮।୪୫)—

ତ୍ରୟ୍ୟା ଚୋପନିଷଦ୍ଭିଶ୍ଚ ସାଂଖ୍ୟଯୋଗୈଶ୍ଚ ସାତ୍ୱତୈଃ ।
ଉପଗୀୟମାନମାହାତ୍ମ୍ୟଂ ହରିଂ ସା ମନ୍ୟତାତ୍ମଜମ୍ । ୩୦ ॥

ତଥାହି (ଭାଃ—୧୦।୯।୧୪)—

ତଂ ମତ୍ୱାତ୍ମଜମବ୍ୟକ୍ତଂ ମର୍ତ୍ତ୍ୟଲିଙ୍ଗମଧୋକ୍ଷଜମ୍ ।
ଗୋପିକୋଲୂଖଲେ ଦାମ୍ନା ବବନ୍ଧ ପ୍ରାକୃତଂ ଯଥା । ୩୧ ॥

---

ତ୍ରୟ୍ୟା ଉପନିଷଦ୍ଭିଃ ସାଂଖ୍ୟଯୋଗୈଃ ସାତ୍ୱତୈଃ ଚ ଉପଗୀୟମାନମାହାତ୍ମ୍ୟଂ—ଉପଗୀୟମାନଂ ମାହାତ୍ମ୍ୟଂ ଯସ୍ୟ ତଂ ହରିଂ ସା—ଯଶୋଦା ଆତ୍ମଜଂ ପୁତ୍ରଂ ଅମନ୍ୟତ । ୩୦ଶ ଶ୍ଳୋକ ।

ଅବ୍ୟକ୍ତଂ, ଅଧୋକ୍ଷଜଂ, ମର୍ତ୍ତ୍ୟଲିଙ୍ଗଂ—ପଶ୍ୟତାଂ ମନୁଷ୍ୟବାଳକାକାରଂ ଆତ୍ମଜଂ ମତ୍ୱା ଗୋପିକା ପ୍ରାକୃତଂ (ବାଳକଂ) ଯଥା—ତଥା ଦାମ୍ନା ଉଦୂଖଳେନ ବବନ୍ଧ । ୩୧ଶ ଶ୍ଳୋକ ।

---

ବ୍ୟଜନ ପତିତ ହୋଇଥିଲା । ସହସା ବୃଦ୍ଧି ଅତି ଅବଶ ହେବାରୁ ସେ ମୋହପରବଶା ହୋଇ କେଶସମୂହ ବିକୀର୍ଣ୍ଣ କରି ବାତାହତ କଦଳୀବୃକ୍ଷ ପରି ପତିତ ହୋଇଥିଲେ । ୨୯ଶ ଶ୍ଳୋକାର୍ଥ ।

କେବଲା—ଐଶ୍ୱର୍ଯ୍ୟ ଦେଖିଲେ ମଧ୍ୟ ତାହା ଗ୍ରହଣ ନ କରି ନିଜ ସମ୍ବନ୍ଧକୁ ଗ୍ରହଣ କରେ । ୧୭୦ ।

ଶ୍ରୀଦେବ୍‌ଶୁକଦେବ ପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି—କର୍ମ ଜ୍ଞାନ, ଉପାସନା ତ୍ରିକାଣ୍ଡ-ଯୁକ୍ତ ବେଦ, ଉପନିଷଦ୍‌ଗଣ ସାତ୍ୱତ ସଂହିତାଗଣ ଯେଉଁ ଭଗବାନ୍ ହରିଙ୍କର ମାହାତ୍ମ୍ୟ ଗାନ କରୁଅଛନ୍ତି, ତାହାଙ୍କୁ ଶ୍ରୀଯଶୋଦା ଆପଣାର ଆତ୍ମଜ ଜ୍ଞାନ କରିଥିଲେ । ଏହାର ତାତ୍ପର୍ଯ୍ୟ ଏହି କି ଶ୍ରୀଯଶୋଦା ଶ୍ରୀକୃଷ୍ଣଙ୍କର ବିଶ୍ୱବୈଭବ ଦର୍ଶନ କରି ଏବଂ ତାହାଙ୍କୁ ଭଗବାନ୍ ବୋଲି ନିରୂପଣ କରି ପୁଣ୍ଡା ଆଗନ୍ତୁକବତ୍ ସେ ଭାବକୁ ତ୍ୟାଗ କରି ତାହାଙ୍କୁ ପୁତ୍ରଜ୍ଞାନରେ ପୁତ୍ରବତ୍ ଲାଳନ କଲେ । ୩୦ଶ ଶ୍ଳୋକାର୍ଥ ।

ଶ୍ରୀଶୁକଦେବ ଗୋସ୍ୱାମୀ ଶ୍ରୀପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି—ଯାହାଙ୍କ ରୂପ ଇନ୍ଦ୍ରିୟ ଜ୍ଞାନାତୀତ ଅତଏବ ଅବ୍ୟକ୍ତ ହେଲେହେଁ ଯେ ମନୁଷ୍ୟ ବାଳକରୂପରେ ପ୍ରକଟ ହୋଇଅଛନ୍ତି, ସେହି ଶ୍ରୀକୃଷ୍ଣଙ୍କୁ ନିଜର ପୁତ୍ରଜ୍ଞାନରେ (ଗୋପୀଯଶୋଦା) ପ୍ରାକୃତ ବାଳକ ପରି ରଜ୍ଜୁଦ୍ୱାରା ଉଦୂଖଳରେ ବନ୍ଧନ କରିଥିଲେ । ଏହାର ଭାବ ଏହି ଯେ ଶ୍ରୀଯଶୋଦା ଶ୍ରୀକୃଷ୍ଣଙ୍କୁ ବାନ୍ଧିବା ସମୟରେ ବନ୍ଧନରଜ୍ଜୁ ଦୁଇ ଅଙ୍ଗୁଳି କମ ଦେଖି କ୍ରମେ କ୍ରମେ ଆପଣ ଘରୁ ଓ ଅପରାପର ଗୋପୀମାନଙ୍କ ଘରୁ ରାଶି ରାଶି ରଜ୍ଜୁ ଆଣି ଏକତ୍ର ଯୋଗକରି ବନ୍ଧନ କରନ୍ତେ ତଥାପି ଦୁଇ ଅଙ୍ଗୁଳି ନିଅଣ୍ଟ ଦେଖି ବିସ୍ମିତା ହୋଇଥିଲେ ପୁଣ୍ଡା ବାତ୍ସଲ୍ୟସ୍ନେହବଶତଃ ଏପ୍ରକାର ଭଗବତ୍ ଐଶ୍ୱର୍ଯ୍ୟକୁ ଗ୍ରହଣ ନ କରି ଅର୍ଥାତ୍ ବନ୍ଧନ କାର୍ଯ୍ୟରୁ ନିବୃତ୍ତ ନ ହୋଇ ଦୁଷ୍ଟବାଳକର ଶାସନୋଚିତ ଦଣ୍ଡଦାନରୂପ ଉଦୂଖଳରେ ବାନ୍ଧିଥିଲେ । ୩୧ଶ ଶ୍ଳୋକାର୍ଥ ।

ତଥାହି ତତ୍ରୈବ ( ୧୦।୧୮।୨୪ )—

ଉବାହ କୃଷ୍ଣୋ ଭଗବାନ୍ ଶ୍ରୀଦାମାନଂ ପରାଜିତଃ ।
ବୃଷଭଂ ଭଦ୍ରସେନସ୍ତୁ ପ୍ରଲମ୍ବୋ ରୋହିଣୀ-
ସୁତମ୍ । ୩୨ ।

ତଥାହି ତତ୍ରୈବ (୧୦।୩୦।୩୭,୩୮)—

ତତୋ ଗତ୍ୱା ବନୋଦ୍ଦେଶଂ ଦୃପ୍ତା କେଶବମବ୍ରବୀତ୍
ନ ପାରୟେଽହଂ ଚଲିତୁଂ ନୟ ମାଂ ଯତ୍ର ତେ ମନଃ
ଏବମୁକ୍ତଃ ପ୍ରିୟାମାହ ସ୍କନ୍ଧ ଆରୁହ୍ୟତାମିତି ।୩୩।

ତଥାହି ତତ୍ରୈବ ( ୧୦।୩୧।୧୬ )—

ପତିସୁତାନ୍ୱୟଭ୍ରାତୃବାନ୍ଧବା-
ନତିବିଲଙ୍ଘ୍ୟ ତେଽନ୍ତ୍ୟଚ୍ୟୁତାଗତାଃ ।
ଗତିବିଦସ୍ତବୋଦ୍ଗୀତମୋହିତାଃ,
କିତବ ଯୋଷିତଃ କସ୍ତ୍ୟଜେନ୍ନିଶି । ୩୪ ।

---

ଭଗବାନ୍ କୃଷ୍ଣଃ ପରାଜିତଃ (ସନ୍) ଶ୍ରୀଦାମାନଂ, ଭଦ୍ରସେନଃ ବୃଷଭଂ, ପ୍ରଲମ୍ବସ୍ତୁ ରୋହିଣୀସୁତଂ ଉବାହ । ୩୨ଶ ଶ୍ଳୋକ ।

ତତଃ—ଅନ୍ତର୍ଧାନାନନ୍ତରଂ ଏବ, ବନୋଦ୍ଦେଶଂ ଗତ୍ୱା ଦୃପ୍ତା ( ସା ) ଅହଂ ଚଲିତୁଂ ନ ପାରୟେ (ଅତଃ) ମାଂ (ତ୍ୱଂ) ଯତ୍ର ମନଃ—ଯତ୍ରଗମିଷ୍ୟସି, ତତ୍ର, ନୟ, ଇତି କେଶବଂ ଅବ୍ରବୀତ୍, ଏବଂ ଉକ୍ତଃ ( ସଃ ଶ୍ରୀକୃଷ୍ଣଃ ଏବଂ ଚେତ୍ ତର୍ହି ଶ୍ରୁତ୍ୱା ) ସ୍କନ୍ଧ ଆରୁହ୍ୟତାଂ ଇତି (ତାଂ) ପ୍ରିୟାଂ ପ୍ରତ୍ୟାହ । ୩୩ଶ ଶ୍ଳୋକ ।

ତସ୍ମାତ୍ ହେ ଅଚ୍ୟୁତ, ପତୀନ୍ ସୁତାନ୍ ଅନ୍ୱୟାନ୍ ଜ୍ଞାତିଜନାନ୍, ଭ୍ରାତୃନ୍ ବାନ୍ଧବାଂଶ୍ଚ ଅତିବିଲଙ୍ଘ୍ୟ ତବ ସମୀପମାଗତାବୟଂ, କଥମ୍ଭୂତସ୍ୟ ଗତିବିଦଃ—ଅସ୍ମଦାଗମନଂ ଜାନତଃ, ଗୀତ ଗତ୍ୟାକର୍ଣନତଃ ଗତିବିଦୋ ବୟମିତି ବା, ତବୋଦ୍ଗୀତେନ ଉଚ୍ଚୈର୍ଗୀତେନ ମୋହିତା ହେ କିତବ ! ଏବମ୍ଭୂତା ଯୋଷିତଃ ନିଶି ସ୍ୱୟମାଗତା ସ୍ତ୍ରୀୟସ୍ତେ କସ୍ତ୍ୟଜେତ୍ ନ କୋଽପୀତ୍ୟର୍ଥଃ । ୩୪ଶ ଶ୍ଳୋକ ।

---

ଶ୍ରୀଶୁକଦେବଗୋସ୍ୱାମୀ କହୁଅଛନ୍ତି—କ୍ରୀଡ଼ାରେ ପରାଜିତ ହୋଇ ଶ୍ରୀକୃଷ୍ଣ ଶ୍ରୀଦାମଙ୍କୁ, ଭଦ୍ରସେନ, ବୃଷଭଙ୍କୁ ଏବଂ ପ୍ରଲମ୍ବ ବଳରାମଙ୍କୁ ବହନ କରିଥିଲେ । ତାତ୍ପର୍ଯ୍ୟ ଏହି ଯେ—ଶ୍ରୀକୃଷ୍ଣ ଏଥିପୂର୍ବରୁ ବତ୍ସାସୁର, ବକାସୁର ଅଘାସୁର ଆଦିଙ୍କୁ ବଧ କରିଥିଲେ ସୁଦ୍ଧା ସଖାମାନେ ତାହାଙ୍କର ଏପ୍ରକାର କାର୍ଯ୍ୟର ଐଶ୍ୱର୍ଯ୍ୟକୁ ଗ୍ରହଣ ନ କରି ବିଶୁଦ୍ଧ ସଖ୍ୟରସପୂର୍ଣ୍ଣଚିତ୍ତ ହେତୁ ତାହାଙ୍କ ସହିତ ସାମ୍ୟବ୍ୟବହାର କରିଥିଲେ । ୩୨ଶ ଶ୍ଳୋକାର୍ଥ ।

ଶ୍ରୀଶୁକଦେବ କହୁଅଛନ୍ତି—ଏହିପ୍ରକାରେ ମନରେ ଗର୍ବଭାବ ବହି ସେହି ଗୋପୀ ( ଶ୍ରୀରାଧିକା ) ଶ୍ରୀକୃଷ୍ଣ ସଙ୍ଗେ ବନାନ୍ତରକୁ ଗଲା ପରେ ତାହାଙ୍କୁ ସଗର୍ବରେ କହିଲେ ମୁଁ ଆଉ ଚାଲି ପାରୁ ନାହିଁ, ତୁମ୍ଭର ଯେଉଁ ସ୍ଥାନକୁ ଇଚ୍ଛା ସେ ସ୍ଥାନକୁ ମୋତେ ନେଇଯାଅ, ତାହାଙ୍କର ଏ କଥା ଶୁଣି ଶ୍ରୀକୃଷ୍ଣ କହିଲେ, ତେବେ ମୋ କାନ୍ଧ ଉପରେ ବସ । ତାତ୍ପର୍ଯ୍ୟ—ଶ୍ରୀକୃଷ୍ଣଙ୍କର ଅଘା ବକାଦି ଅସୁର ମାରଣ କାର୍ଯ୍ୟ ଶ୍ରବଣ ଓ ଗୋବର୍ଦ୍ଧନଧାରଣ ଦର୍ଶନ କରି ସୁଦ୍ଧା ଗୋପୀଙ୍କ ମନରେ ଶ୍ରୀକୃଷ୍ଣଙ୍କର ପରମୈଶ୍ୱର୍ଯ୍ୟଭାବ ଉଦ୍ଦୀପନ ନ ହୋଇ କାନ୍ତାଭାବ ପୂର୍ଣ୍ଣ ହୃଦୟରେ ତାହାଙ୍କ ସ୍କନ୍ଧରେ ଆରୋହଣ କରିବାକୁ ଉଦ୍ୟତ ହୋଇଥିଲେ । ୩୩ଶ ଶ୍ଳୋକାର୍ଥ ।

ଶ୍ରୀଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଉଦ୍ଦେଶ୍ୟ କରି କହୁଅଛନ୍ତି—ହେ ଅଚ୍ୟୁତ ! ପତି, ପୁତ୍ର, ଜ୍ଞାତି, ଭ୍ରାତା ଓ ବାନ୍ଧବ ପ୍ରଭୃତିଙ୍କୁ ଅବହେଳା କରି ଯେ ତୁମ୍ଭନିକଟକୁ ଆସିଅଛୁଁ, ତାହାର କାରଣ ତୁମ୍ଭେ ଜାଣ ଏବଂ ତୁମ୍ଭ ବେଣୁଗୀତରେ ଆମ୍ଭେମାନେ ମୋହିତ ହୋଇଅଛୁଁ । ହେ କପଟିବର !

ଶାନ୍ତରସେ ସ୍ୱରୂପବୁଦ୍ଧ୍ୟେ କୃଷ୍ଣୈକନିଷ୍ଠତା ।
'ଶମୋ ମନ୍ନିଷ୍ଠତା ବୁଦ୍ଧେଃ' ଇତି ଶ୍ରୀମୁଖଗାଥା ॥

ତଥାହି ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ
ଶାନ୍ତଭକ୍ତିରସଲହର୍ଯ୍ୟାମ୍ ( ୬ )—

ଶମୋ ମନ୍ନିଷ୍ଠତା ବୁଦ୍ଧେରିତି ଶ୍ରୀଭଗବଦ୍ବଚଃ ।
ତନ୍ନିଷ୍ଠା ଦୁର୍ଘଟା ବୁଦ୍ଧେରେତାଂ ଶାନ୍ତରତିଂ
ବିନା । ୩୫ ।

ତଥାହି ( ଭାଃ—୧୧।୧୯।୩୬ )—

ଶମୋ ମନ୍ନିଷ୍ଠତା ବୁଦ୍ଧେର୍ଦମ ଇନ୍ଦ୍ରିୟସଂଯମଃ ।
ତିତିକ୍ଷା ଦୁଃଖସମ୍ମର୍ଷୋ ଜିହ୍ୱୋପସ୍ଥଜୟୋ
ଧୃତିଃ । ୩୬ ।

କୃଷ୍ଣ-ବିନା ତୃଷ୍ଣାତ୍ୟାଗ—ତାର କାର୍ଯ୍ୟ ମାନି ।
ଅତଏବ ଶାନ୍ତ 'କୃଷ୍ଣଭକ୍ତ' ଏକ ଜାନି । ୧୭୦ ।

'ବୁଦ୍ଧେଃ ମନ୍ନିଷ୍ଠତା ଶମଃ' ଇତି ଶ୍ରୀଭଗବଦ୍ବଚଃ, ଏତାଂ ଶାନ୍ତରତିଂ ବିନା ବୁଦ୍ଧେ ତନ୍ନିଷ୍ଠା ଦୁର୍ଘଟା (ନ ସମ୍ଭବତି) । ୩୫ଶ ଶ୍ଳୋକ ।

ବୁଦ୍ଧେଃ ମନ୍ନିଷ୍ଠତା ଶମଃ, ଇନ୍ଦ୍ରିୟସଂଯମଃ ଦମଃ, ଦୁଃଖସମ୍ମର୍ଷଃ ( ଦୁଃଖସହନଂ ) ତିତିକ୍ଷା ଜିହ୍ୱୋପସ୍ଥଜୟଃ— ଜିହ୍ୱୋପସ୍ଥୟୋର୍ବେଗଧାରଣଂ ଧୃତିଃ । ୩୬ଶ ଶ୍ଳୋକ ।

'ଶାନ୍ତଦାସ୍ୟସଖ୍ୟବାତ୍ସଲ୍ୟମଧୁରାଣାଂ ଇତି ଯତ୍ ପଞ୍ଚବିଧାଃ ମୁଖ୍ୟଭକ୍ତିରସାଃ ଭକ୍ତ୍ୟାଃ ତଦଭେଷାଂ ସ୍ୱରୂପଗୁଣାଦି କଥନେନ ପରିଚ୍ଛେଦ୍ୟାଂ ବକ୍ତୁଂ ପ୍ରଥମତସ୍ତାବତ୍ ଶାନ୍ତସ୍ୟ ଗୁଣାମାହ 'ଶାନ୍ତରସେ ଇତି । ସ୍ୱରୂପବୁଦ୍ଧ୍ୟେ ପରବ୍ରହ୍ମ ପରମାତ୍ମଜ୍ଞାନେନ ଯା କୃଷ୍ଣୈକନିଷ୍ଠତା ସୈବ ଶାନ୍ତସ୍ୟ ସ୍ୱରୂପମିତ୍ୟର୍ଥଃ । ନନୁ ଶମସ୍ୟ ନିର୍ବିକାରତ୍ୱାତ୍ କେଷ୍ଟିତ୍ ତସ୍ୟ ରସତ୍ୱଂ ନ ମନ୍ୟତେ ଇତି ଚେତ୍ତତ୍ରାହ 'ଶମଃ' ଇତି । ଶ୍ରୀମୁଖଗାଥା—ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣ ମୁଖନିର୍ଗତଃ ଶ୍ଳୋକଃ । ଅସ୍ମାଦ୍ବାକ୍ୟାତ୍ ଶାନ୍ତ ରତିଂ ବିନା ତନ୍ନିଷ୍ଠା ନାୟତେ ତେଷାମିତ୍ୟସ୍ୟ ରସତ୍ୱସ୍ୱୀକାରାତ୍ ତସ୍ୟ ରସତ୍ୱଂ ନ ବିରୁଦ୍ଧଂ । ୧୬୯ । ବି. ଚ.

ନନୁ ନିଷ୍ଠାମାତ୍ରସ୍ୟ ଶାନ୍ତସ୍ୟ କଥଂ ଭକ୍ତତ୍ୱଂ ସେବାଦ୍ୟଭାବାତ୍ ଇତି ଚେତ୍ତତ୍ରାହ 'କୃଷ୍ଣବିନା' ଇତି । ଶ୍ରୀକୃଷ୍ଣ ଏବାଲମ୍ବନା ନତୁ ଅନ୍ୟତ୍ର ଅତସ୍ତସ୍ୟ ଭକ୍ତତ୍ୱମିତ୍ୟର୍ଥଃ । ୧୭୦ । ବି. ଚ.

ଏବଂବିଧ ସ୍ୱୟଂ ଆଗତା ସ୍ତ୍ରୀଲୋକମାନଙ୍କୁ ରାତ୍ରିକାଳରେ ତୁମ୍ଭ ବ୍ୟତୀତ ଅନ୍ୟ କିଏ ତ୍ୟାଗ କରେ ଅର୍ଥାତ୍ କେହି ତ୍ୟାଗ କରିବ ନାହିଁ । ଏଠାରେ ଅଚ୍ୟୁତ ଶବ୍ଦଦ୍ୱାରା ଐଶ୍ୱର୍ଯ୍ୟସୂଚିତ ହେଲେହେଁ କିତବ ଶବ୍ଦଦ୍ୱାରା କାନ୍ତାଭାବର ପ୍ରେମୋତ୍କର୍ଷ ଦର୍ଶିତ ହୋଇଅଛି । ୩୪ଶ ଶ୍ଳୋକାର୍ଥ ।

ବୁଦ୍ଧିର ମନ୍ନିଷ୍ଠତା ନାମ ଶମ ଏହା ଶ୍ରୀଭଗବାନ୍ କହିଅଛନ୍ତି ଯଥା—

ଶମୋ ମନ୍ନିଷ୍ଠତା ବୁଦ୍ଧେଃ ଦମ ଇନ୍ଦ୍ରିୟ ସଂଯମଃ ।
ତିତିକ୍ଷା ଦୁଃଖସମ୍ମର୍ଷୋ ଜିହ୍ୱୋପସ୍ଥଜୟୋ ଧୃତିଃ ।

ଅତଏବ ଶାନ୍ତରତି ବ୍ୟତୀତ ବୁଦ୍ଧିର ଭଗବନ୍ନିଷ୍ଠା ଅସମ୍ଭବ । ୩୫ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ଶ୍ରୀଉଦ୍ଧବଙ୍କୁ କହୁଅଛନ୍ତି— ମୋଠାରେ ନିଷ୍ଠାବୁଦ୍ଧିର ନାମ ଶମ ଇନ୍ଦ୍ରିୟସଂଯମର ନାମ ଦମ, ଦୁଃଖସହିଷ୍ଣୁତାର ନାମ ତିତିକ୍ଷା ଏବଂ ଜିହ୍ୱା ଓ ଉପସ୍ଥର ବେଗଧାରଣର ନାମ ଧୃତି । ୩୬ଶ ଶ୍ଳୋକାର୍ଥ ।

ଶ୍ରୀମନ୍ମହାପ୍ରଭୁ ଶ୍ରୀରୂପଗୋସ୍ୱାମୀଙ୍କୁ ଶାନ୍ତାଦି ପଞ୍ଚ ମୁଖ୍ୟ ରସର ସ୍ୱରୂପ ଗୁଣାଦି କହୁଅଛନ୍ତି । ଯଥା—ଶାନ୍ତରସର ସ୍ୱରୂପ ଏହି ଯେ ଶ୍ରୀକୃଷ୍ଣଙ୍କୁ ପରବ୍ରହ୍ମ ବା ପରମାତ୍ମା ଏହି ଜ୍ଞାନରେ ନିଷ୍ଠା ଅର୍ଥାତ୍ ଶାନ୍ତଭକ୍ତଗଣ ଅର୍ଥାତ୍ ସର୍ବଦା ନିର୍ବିକାର ହୋଇ ସୁଦ୍ଧା ଭଗବାନଙ୍କଠାରେ ନିଷ୍ଠାବାନ୍ ହେତୁ ତାହା ଶାନ୍ତରସର ସ୍ୱରୂପ । ୧୬୯ ।

କୃଷ୍ଣଙ୍କଠାରେ କେବଳ ନିଷ୍ଠାମାତ୍ର ହେତୁ ଅର୍ଥାତ୍ ସେବାଦି ଅଭାବ ହେତୁ ଶାନ୍ତ କିପରି ଭକ୍ତ ହେଲେ ତାହାର କାରଣ କହୁଅଛନ୍ତି ଯେ—ଶାନ୍ତଙ୍କର ଅନ୍ୟାନ୍ୟ ବିଷୟରେ ଲାଳସା ନ ଥାଇ କେବଳ ଶ୍ରୀକୃଷ୍ଣଙ୍କଠାରେ ଲାଳସା ଥିବା ହେତୁ ସେ ଭକ୍ତ । ୧୭୦ ।

ସ୍ୱର୍ଗ-ମୋକ୍ଷ 'ନରକ' ଭକ୍ତ ଏକ କରି ମାନେ ।
କୃଷ୍ଣନିଷ୍ଠା, ତୃଷ୍ଣାତ୍ୟାଗ ଶାନ୍ତେର ଦୁଇଗୁଣେ । ୧୭୩ ।

ତଥାହି ( ଭାଃ — ୬।୧୭।୨୮ ) —

ନାରାୟଣପରାଃ ସର୍ବେ ନ କୁତଶ୍ଚନ ବିଭ୍ୟତି ।
ସ୍ୱର୍ଗାପବର୍ଗନରକେଷ୍ୱପି ତୁଲ୍ୟାର୍ଥଦର୍ଶିନଃ ।୫୭।

ଏଇ ଦୁଇ ଗୁଣ ବ୍ୟାପେ ସବ ଭକ୍ତଜନେ ।
ଆକାଶେର ଶବ୍ଦଗୁଣ ଯେନ ଭୂତଗଣେ ।୧୭୪।
ଶାନ୍ତେର ସ୍ୱଭାବ — କୃଷ୍ଣେ ମମତାଗନ୍ଧହୀନ ।
ପରଂବ୍ରହ୍ମ-ପରମାତ୍ମା ଜ୍ଞାନ ପ୍ରବୀଣ । ୧୭୫ ।
କେବଲ ସ୍ୱରୂପଜ୍ଞାନ ହୟ ଶାନ୍ତରସେ ।
ପୂର୍ଣ୍ଣୈଶ୍ୱର୍ଯ୍ୟ ପ୍ରଭୁ ଜ୍ଞାନ ଅଧିକ ହୟ ଦାସ୍ୟେ ।
ଈଶ୍ୱରଜ୍ଞାନ ସମ୍ଭ୍ରମ ଗୌରବ ପ୍ରଚୁର ।
ସେବା କରି କୃଷ୍ଣେ ସୁଖ ଦେନ ନିରନ୍ତର । ୭୬
ଶାନ୍ତେର ଗୁଣ ଦାସ୍ୟେ ଆଛେ ଅଧିକ 'ସେବନ'
ଅତଏବ ଦାସ୍ୟରସେର ହୟ ଦୁଇ ଗୁଣ ।
ଶାନ୍ତେର ଗୁଣ, ଦାସ୍ୟେର ସେବନ — ସଖ୍ୟେ ଦୁଇ ହୟ ।
ଦାସ୍ୟେ ସମ୍ଭ୍ରମ ଗୌରବ ସେବା, ସଖ୍ୟେ ବିଶ୍ୱାସମୟ ।

ଶ୍ରୀକୃଷ୍ଣଭକ୍ତମାନେ ( ଶାନ୍ତାଦି ପଞ୍ଚରସ ଭକ୍ତମାନେ ) ସ୍ୱର୍ଗ, ମୋକ୍ଷ ଏବଂ ନରକ ଏମାନଙ୍କୁ ସମାନ ଜ୍ଞାନ କରନ୍ତି ଅର୍ଥାତ୍ ଭକ୍ତମାନଙ୍କର ଏହି ତିନିବସ୍ତୁରେ କୌଣସି ପ୍ରୟୋଜନ ନ ଥିବାରୁ ଏ ତିନିବସ୍ତୁ ସେମାନଙ୍କ ନିକଟରେ ହେୟ, ଅତଏବ ସମାନ ମୂଲ୍ୟବାନ ।

ଶାନ୍ତର ଗୁଣ ଏହି ଯେ—ଅନ୍ୟବ ଲାଳସାଶୂନ୍ୟ ଏବଂ ଶ୍ରୀକୃଷ୍ଣଙ୍କଠାରେ ଲାଳସା-ରୂପ ନିଷ୍ଠା । ୧୭୩ ।

୫୭ଶ୍ଳୋକାନ୍ୱୟ ମଧ୍ୟ ୯ମ ପରି ୨୬୫ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ଭଗବତ୍‌ସେବାପରାୟଣ ଭକ୍ତମାନେ କାହାରିକୁ ଭୟ କରନ୍ତି ନାହିଁ, ଯେହେତୁ ସେମାନେ ସ୍ୱର୍ଗର ଭୋଗ, ମୁକ୍ତି ଓ ନରକର ଯାତନାକୁ ସମଦୃଷ୍ଟିରେ ଦେଖନ୍ତି । ୫୭ଶ୍ଳୋକାର୍ଥ ।

ଏତଦ୍ଦ୍ୱାରା ଭକ୍ତ ପକ୍ଷରେ ମୁକ୍ତି ନରକ ସମାନ ମୂଲ୍ୟବାନ ପ୍ରତିପାଦିତ ହେଲା ।

ସବଭକ୍ତଜନେ— ଶାନ୍ତାଦି ପଞ୍ଚରସର ଭକ୍ତମାନଙ୍କରେ ।

ଯେପରି ଆକାଶର ଗୁଣ ଶବ୍ଦ, ତାହା ବାୟୁ, ତେଜ, ଜଳ ଓ ପୃଥିବୀ ଠାରେ ବର୍ତ୍ତମାନ ସେହିପରି ଶାନ୍ତର ଅନ୍ୟକ ଅଭିଳାଷଶୂନ୍ୟତା ଓ କୃଷ୍ଣୈକନିଷ୍ଠତା ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଓ ମଧୁର ରସର ଭକ୍ତମାନଙ୍କଠାରେ ରହିଅଛି । ୧୭୪ ।

ଶାନ୍ତଭକ୍ତର ସ୍ୱଭାବ ଏହି ଯେ—ସେ ଶ୍ରୀକୃଷ୍ଣଙ୍କୁ ପରଂବ୍ରହ୍ମ ବା ପରମାତ୍ମା ବୋଲି ଜାଣନ୍ତି, ତଦ୍‌ବ୍ୟତୀତ ତାହାଙ୍କର ଶ୍ରୀକୃଷ୍ଣଙ୍କ ସହିତ ସେବ୍ୟ ସେବକଭାବ ସମ୍ବନ୍ଧ ନ ଥାଏ ।୧୭୫।

ଶାନ୍ତଭକ୍ତଙ୍କର କେବଳ ଭଗବାନଙ୍କର ସ୍ୱରୂପଜ୍ଞାନ, କିନ୍ତୁ ଦାସ୍ୟରସର ଭକ୍ତଙ୍କର ତଦ୍‌ବ୍ୟତୀତ ଭଗବାନଙ୍କଠାରେ ସର୍ବୈଶ୍ୱର୍ଯ୍ୟମୟ ପ୍ରଭୁଜ୍ଞାନ ଥାଏ । ଏହି ହେତୁ ସେ ଈଶ୍ୱର-ଜ୍ଞାନରେ ସମ୍ଭ୍ରମ ଓ ପ୍ରଭୁଜ୍ଞାନରେ ଗୌରବପୂର୍ବକ ସେବା କରି ଶ୍ରୀକୃଷ୍ଣଙ୍କୁ ସୁଖୀ କରନ୍ତି । ଏଣୁ ଦାସ୍ୟରସରେ ଶାନ୍ତର ଗୁଣ କୃଷ୍ଣନିଷ୍ଠା ଏବଂ ତଦଧିକ ସେବା ଦୁଇଗୁଣ ରହିଅଛି । ୧୭୬। ୧୭୭। ୧୭୮ ।

ସଖ୍ୟରସରେ ଶାନ୍ତର ଗୁଣ ନିଷ୍ଠା ଓ ଦାସ୍ୟର ସେବା ଏ ଦୁହେଁ ତଦତିରିକ୍ତ ବିଶ୍ୱାସ ( ଅସମ୍ଭ୍ରମ ଜ୍ଞାନରେ ବିଶ୍ୱାସ ) ବର୍ତ୍ତମାନ । ଏହାର ଭାବ ଏହି ଯେ—ସଖ୍ୟଭକ୍ତମାନେ ଶ୍ରୀକୃଷ୍ଣଙ୍କୁ ଆତ୍ମତୁଲ୍ୟ ବିଶ୍ୱାସ କରି ସେବା କରନ୍ତି । ସେ ସେବାରେ କୌଣସି ସମ୍ଭ୍ରମ ଓ ଗୌରବରୂପ ମର୍ଯ୍ୟାଦା ନ ଥାଏ । ଏ ସେବାରେ ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ା କୌତୁକରେ ଶ୍ରୀକୃଷ୍ଣଙ୍କୁ କାନ୍ଧରେ

କାନ୍ଧେ ଚଢ଼େ, କାନ୍ଧେ ଚଢ଼ାୟ, କରେ କ୍ରୀଡ଼ା-
ରଣ ।
କୃଷ୍ଣ ସେବେ, କୃଷ୍ଣେ କରାୟ ଆପନ ସେବନ ।
ବିଶ୍ରମ୍ଭପ୍ରଧାନ ସଖ୍ୟ—ଗୌରବ-ସମ୍ଭ୍ରମହୀନ ।
ଅତଏବ ସଖ୍ୟରସେର ତିନ ଗୁଣ ଚିହ୍ନ ।୮୧।
ମମତା ଅଧିକ କୃଷ୍ଣେ ଆତ୍ମସମ ଜ୍ଞାନ ।
ଅତଏବ ସଖ୍ୟରସେ ବଶ ଭଗବାନ୍ ।୮୨।
ବାତ୍ସଲ୍ୟେ—ଶାନ୍ତେର ଗୁଣ, ଦାସ୍ୟେର ସେବନ ।
ସେଇ-ସେଇ ସେବନେର ଇହାଁ ନାମ 'ପାଳନ'
ସଖ୍ୟେର ଗୁଣ ଅସଙ୍କୋଚ ଅଗୌରବ ସାର ।
ମମତା ଅଧିକ୍ୟେ ତାଡ଼ନ ଭର୍ତ୍ସନ-ବ୍ୟବହାର ।
ଆପନାକେ 'ପାଲକ' ଜ୍ଞାନ, କୃଷ୍ଣେ 'ପାଲ୍ୟ' ଜ୍ଞାନ
ଚାରି ରସେର ଗୁଣେ ବାତ୍ସଲ୍ୟ ଅମୃତ ସମାନ ।
ସେ ଅମୃତାନନ୍ଦେ ଭକ୍ତସହ ଡୁବେନ ଆପନେ ।
'କୃଷ୍ଣଭକ୍ତବଶ' ଗୁଣ କହେ ଐଶ୍ୱର୍ଯ୍ୟ-ଜ୍ଞାନିଗଣେ ।
ତଥାହି ହରିଭକ୍ତିବିଲାସୋଦ୍ଧୃତେ ପଦ୍ମପୁରାଣୋକ୍ତ
ଦାମୋଦରାଷ୍ଟକସ୍ତୋତ୍ରେ (୧୦।୯୯)—
ଇତୀଦୃକ୍ ସ୍ୱଲୀଲାଭିରାନନ୍ଦକୁଣ୍ଡେ,
ସ୍ୱଘୋଷଂ ନିମଜ୍ଜନ୍ତମାଖ୍ୟାପୟନ୍ତମ୍ ।
ତଦୀୟେଷିତଜ୍ଞେଷୁ ଭକ୍ତୈର୍ଜିତତ୍ୱଂ,
ପୁନଃ ପ୍ରେମତସ୍ତଂ ଶତାବୃତ୍ତି ବନ୍ଦେ ।୩୮।

ନନୁ ସର୍ବେଶ୍ୱରତ୍ୱେନ ଶ୍ରୀକୃଷ୍ଣସ୍ୟ ଲାଳ୍ୟଭାବାଭାବାତ୍ ଅବ ନରସତ୍ୱମିତ ଚେତ୍ ତତ୍ରାହ 'ସେ' ଇତି । ଅବ ତସ୍ୟ ଲାଳ୍ୟତ୍ୱବୋଧ୍ୟସ୍ତୀତ୍ୟଭାବଃ । ନନୁ ସର୍ବେଶ୍ୱରସ୍ୟ ଶ୍ରୀକୃଷ୍ଣସ୍ୟ ମୁଗ୍ଧବାଲ୍ୟ-ରସାନନ୍ଦ ମଗ୍ନଲାଳ୍ୟତ୍ୱଂ କଥଂ ସମ୍ଭବତି ଇତି ଚେତ୍ ତତ୍ରାହ 'କୃଷ୍ଣ' ଇତି, ଭକ୍ତବଶତ୍ୱେନୈବ ତସ୍ୟ ତଦ୍ଭବତୀତିଭାବଃ । ୮୬ ।ବି, ଚ,

ଇତୀଦୃକ୍ ସ୍ୱଲୀଲାଭିଃ—ଇତ୍ୟେବଂ ଭକ୍ତବଶ୍ୟତୟା, ସ୍ୱଘୋଷଂ—ନିଜ ଗୋକୁଳବାସି ପ୍ରାଣିଜାତଂ ସର୍ବମେବ, ଆନନ୍ଦକୁଣ୍ଡେ ନିମଜ୍ଜନ୍ତଂ ତଦୀୟେଷିତଜ୍ଞେଷୁ—ଭଗବଦୈଶ୍ୱର୍ଯ୍ୟପରେଷୁ ଭକ୍ତୈର୍ଜିତତ୍ୱଂ—ଅହମେବ ଭକ୍ତବଶ୍ୟତାଂ, ଆଖ୍ୟାପୟନ୍ତଂ – ଭକ୍ତପରାଧୀନମେବ ବଶୋଽହଂ ନତୁ ଜ୍ଞାନପରାଣାମିତି ଦର୍ଶୟନ୍ତଂ ତଂ—ଈଶ୍ୱରଂ, ପ୍ରେମତଃ – ଭକ୍ତି ବିଶେଷେଣ, ଶତାବୃତ୍ତି— ଯଥା ସ୍ୟାତ୍ତଥା ଶତବାରାନ୍, ପୁନଃ ବନ୍ଦେ । ୩୮ଶ ଶ୍ଲୋକ ।

ଚଢ଼ାନ୍ତି, କେତେବେଳେ ବା ତାଙ୍କ କାନ୍ଧରେ ଚଢ଼ନ୍ତି । ଏହି ରସର ଭକ୍ତମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଦାସ୍ୟରସର ଭକ୍ତମାନଙ୍କଠାରୁ ଅଧିକ ମମତା ଥାଏ ଏବଂ ଅଭେଦ ଆତ୍ମଜ୍ଞାନ ହେତୁ ଶ୍ରୀକୃଷ୍ଣ ଏହି ରସର ଭକ୍ତମାନଙ୍କର ବଶୀଭୂତ ହୁଅନ୍ତି ।୭୯।୮୦।୮୧।୮୨ ।

ବିଶ୍ରମ୍ଭ—ଅସଙ୍କୋଚ ।

ବାତ୍ସଲ୍ୟ ରସରେ ଶାନ୍ତଗୁଣ ନିଷ୍ଠା, ଦାସ୍ୟର ସେବା ଥାଏ, (ଏ ରସରେ ସେ ସେବାର ନାମ ପାଳନ ) ସଖ୍ୟର ଗୁଣ ଅସଙ୍କୋଚ ବ୍ୟବହାର ଯାହା କି ଏ ରସରେ ଅଧିକ ମମତା ହେତୁ ତାଡ଼ନ, ଭର୍ତ୍ସନରୂପ ବ୍ୟବହାର ଏବଂ ଏ ରସର ଗୁଣ ଏହି ଯେ —ବାତ୍ସଲ୍ୟରସର ଭକ୍ତମାନେ ଆପଣାକୁ ପାଳକ ଓ ଶ୍ରୀକୃଷ୍ଣଙ୍କୁ ପାଲ୍ୟ ଜ୍ଞାନ କରନ୍ତି । ଅତଏବ ଏ ରସରେ ଚାରି ଗୁଣ ଅଛି । ଯଥା—ନିଷ୍ଠା, ସେବା, ଅସଙ୍କୋଚ ବ୍ୟବହାର ଓ ପାଲ୍ୟ ପାଳକଭାବ ।

ଶ୍ରୀକୃଷ୍ଣ ସର୍ବେଶ୍ୱର ହୋଇ ସୁଦ୍ଧା ତାହାଙ୍କର ଭକ୍ତବଶତ୍ୱ ଗୁଣଦ୍ୱାରା ଭକ୍ତମାନଙ୍କର ସୁଖଦାନ ନିମିତ୍ତ ଭକ୍ତ ଯେଉଁ ଭାବରେ ତାଙ୍କୁ ସେବା କରିବାକୁ ଅଭିଳାଷୀ ହୁଅନ୍ତି, ଶ୍ରୀକୃଷ୍ଣ ସେହିପରି ଭାବରେ ସେବା ଗ୍ରହଣ କରନ୍ତି ଅତଏବ ବାତ୍ସଲ୍ୟରସ ଭକ୍ତଙ୍କ ନିକଟ ସେ ମୁଗ୍ଧବାଳକବତ୍ ପାଳିତ ହୁଅନ୍ତି । ୮୩ । ୮୬ ।

ଆପଣ ଏବମ୍ବିଧ ( ଦାମୋଦରଲୀଳା ଓ ଅପରାପର ବାଳଲୀଳା ) ନିଜ ଲୀଳାଦ୍ୱାରା ଗୋକୁଳବାସୀ ପ୍ରାଣୀମାନଙ୍କୁ ଆନନ୍ଦକୁଣ୍ଡରେ ନିକ୍ଷେପ କରୁଅଛନ୍ତି ଏବଂ ଏତଦ୍ୱାରା ଐଶ୍ୱର୍ଯ୍ୟ-

ମଧୁରରସେ—କୃଷ୍ଣନିଷ୍ଠା, ସେବା ଅତିଶୟ ।
ସଖ୍ୟେର ଅସଙ୍କୋଚ ଲାଳନ ମମତାଧିକ ହୟ ।
କାନ୍ତଭାବେ ନିଜାଙ୍ଗ ଦିୟା କରେନ ସେବନ ।
ଅତଏବ ମଧୁରରସେ ହୟ ପଞ୍ଚ ଗୁଣ । ୧୮୮ ।

ଆକାଶାଦିର ଗୁଣ ଯେନ ପର ପରଭୂତେ ।
ଏକ ଦୁଇ ତିନ କ୍ରମେ ପଞ୍ଚ ପୃଥିବୀତେ ।
ଏଇମତ ମଧୁରେ ସବ-ଭାବ-ସମାହାର ।
ଅତଏବ ସ୍ୱାଦାଧିକ୍ୟେ କରେ ଚମତ୍କାର । ୧୯୦

ଏଇ ଭକ୍ତିରସେର କୈଲ ଦିଗ୍‌ଦରଶନ ।
ଇହାର ବିସ୍ତାର ମନେ କରିହ ଭାବନ । ୧୯୧ ।

ଭାବିତେ ଭାବିତେ କୃଷ୍ଣ ସ୍ଫୁରୟେ ଅନ୍ତରେ ।
କୃଷ୍ଣ କୃପାୟ ଅଜ୍ଞ ପାୟ ରସସିନ୍ଧୁ ପାରେ । ୧୯୨ ।
ଏତ ବଲି ପ୍ରଭୁ ତାଁରେ କୈଲ ଆଲିଙ୍ଗନ ।
ବାରାଣସୀ ଚଲିବାରେ ପ୍ରଭୁର ହଇଲ ମନ ।

ପ୍ରଭାତେ ଉଠିୟା ଯବେ କରିଲ ଗମନ ।
ତବେ ତାଁର ପଦେ ରୂପ କୈଲ ନିବେଦନ—
ଆଜ୍ଞା ହୟ ଆଇସୋ ମୁଞି ଶ୍ରୀଚରଣ ସଙ୍ଗେ ।
ସହିତେ ନା ପାରି ମୁଞି ବିରହ-ତରଙ୍ଗେ ।

ପ୍ରଭୁ କହେ—ତୋମାର କର୍ତ୍ତବ୍ୟ ଆମାର ବଚନ
ନିକଟ ଆସିୟାଛ ତୁମି—ଯାହ ବୃନ୍ଦାବନ । ୧୯୬ ।

ବୃନ୍ଦାବନ ହୈତେ ତୁମି ଗୌଡ଼ଦେଶ ଦିୟା ।
ଆମାରେ ମିଲିବେ ନୀଳାଚଲକେ ତେ ଆସିୟା ।
ତାଁରେ ଆଲିଙ୍ଗିୟା ପ୍ରଭୁ ନୌକାତେ ଚଢ଼ିଲା ।
ମୂର୍ଚ୍ଛିତ ହଇୟା ତେଁହୋ ତାହାଞି ପଡ଼ିଲା ।
ଦାକ୍ଷିଣାତ୍ୟ ବିପ୍ର ତାଁରେ ଘରେ ଲଞା ଗେଲା ।
ତବେ ଦୁଇ ଭାଇ ବୃନ୍ଦାବନେରେ ଚଲିଲା । ୧୯୯ ।
ମହାପ୍ରଭୁ ଚଲି ଚଲି ଆଇଲା ବାରାଣସୀ ।
ଚନ୍ଦ୍ରଶେଖର ମିଲିଲା ଗ୍ରାମେର ବାହିର ଆସି ।
ରାତ୍ର୍ୟେ ତେଁହୋ ସ୍ୱପ୍ନ ଦେଖେ—ପ୍ରଭୁ ଆଇଲା ଘରେ ।

ପ୍ରାତଃକାଲେ ଆସି ରହେ ଗ୍ରାମେର ବାହିରେ ।
ଆଚମ୍ବିତେ ପ୍ରଭୁ ଦେଖି ଚରଣେ ପଡ଼ିଲା ।
ଆନନ୍ଦିତ ହଞା ନିଜଗୃହେ ଲଞା ଗେଲା । ୨୦୨ ।
ତପନ ମିଶ୍ର ଶୁନି ଆସି ପ୍ରଭୁରେ ମିଲିଲା ।
ଇଷ୍ଟଗୋଷ୍ଠି କରି ପ୍ରଭୁର ନିମନ୍ତ୍ରଣ କୈଲା ।
ନିଜଘରେ ଲଞା ପ୍ରଭୁକେ ଭିକ୍ଷା କରାଇଲ ।
ଭଟ୍ଟ ଗୃହେ ଚନ୍ଦ୍ରଶେଖର ନିମନ୍ତ୍ରଣ କୈଲ । ୨୦୪
ଭିକ୍ଷା କରାଇୟା ମିଶ୍ର କହେ ପାୟେ ଧରି—
ଏକ ଭିକ୍ଷା ମାଗି ମୋରେ ଦେହ କୃପା କରି ।
ଯାବତ୍ ତୋମାର ହୟ କାଶୀପୁରେ ସ୍ଥିତି ।
ମୋର ଘରେ ବିନା ଭିକ୍ଷା ନା କରିବେ କତି ।

---

ଜ୍ଞାନୀମାନଙ୍କୁ ଆପଣାର ଭକ୍ତବଶ୍ୟତା ଜଣାଉଅଛନ୍ତି । ଏବମ୍ଭୂତ ଆପଣଙ୍କୁ ଭକ୍ତିବିଶେଷଦ୍ୱାରା ଶତ-ଶତବାର ବନ୍ଦନା କରେଁ । ୧୮୫ଶ ଶ୍ଳୋକାର୍ଥ ।

ମଧୁରରସରେ ଶାନ୍ତର ନିଷ୍ଠା, ଦାସ୍ୟର ସେବା, ସଖ୍ୟର ଅସଙ୍କୋଚ ବ୍ୟବହାର, ବାତ୍ସଲ୍ୟର ଅଧିକ ମମତାର ସହିତ ଲାଳନ ଏବଂ ମଧୁରରସର ନିଜଗୁଣ ଶ୍ରୀକୃଷ୍ଣଙ୍କୁ କାନ୍ତଜ୍ଞାନରେ ନିଜ ଅଙ୍ଗଦାନପୂର୍ବକ ସେବା । ୧୮୭।୧୮୮ ।

ଆଇଁସୋ ଇତ୍ୟାଦି—ଆପଣଙ୍କ ସଙ୍ଗେ ଯିବାକୁ ମୋତେ ଆଜ୍ଞା ଦିଅନ୍ତୁ । ୧୯୫ ।

ଆମାର ବଚନ—ଆମ୍ଭର ଆଦେଶ ପାଳନ କର । ୧୯୬ ।

ଦାକ୍ଷିଣାତ୍ୟ ବିପ୍ର—ଏହି ପରିଚ୍ଛେଦର ୪ର୍ଥ ପଦ୍ୟୋକ୍ତ ଦାକ୍ଷିଣାତ୍ୟ ବିପ୍ର । ୧୯୯ ।

ତାରେ—ଶ୍ରୀରୂପଗୋସ୍ୱାମୀ । କତି—କୁତ୍ରାପି, କେଉଁଠାରେ । ୨୦୬ ।

ମହାପ୍ରଭୁ ବିପ୍ର—କାଶୀଧାମସ୍ଥ ପୂର୍ବୋଲ୍ଲିଖିତ ।

ପ୍ରଭୁ ଜାନେନ ଦିନ-ପାଁଚ-ସାତ ସେ ରହିବ ।
ସନ୍ନ୍ୟାସୀର ସଙ୍ଗେ ଭିକ୍ଷା କାହାଁ ନା କରିବ ।
ଏତ ଜାନି ତାର ଭିକ୍ଷା କୈଲ ଅଙ୍ଗୀକାର ।
ବାସା-ନିଷ୍ଠା କୈଲ ଚନ୍ଦ୍ରଶେଖରେର ଘର ।୨୦୮।
ମହାରାଷ୍ଟ୍ରୀ ବିପ୍ର ଆସି ତାଁହାରେ ମିଲିଲ ।
ପ୍ରଭୁ ତାଁରେ ସ୍ନେହ କରି କୃପା ପ୍ରକାଶିଲ ।
'ମହାପ୍ରଭୁ ଆଇଲା' ଶୁନି ଶିଷ୍ଟ ଶିଷ୍ଟ ଜନ ।
ବ୍ରାହ୍ମଣ କ୍ଷତ୍ରିୟ ଆସି କରେ ଦରଶନ ।୨୦୯।

ଶ୍ରୀରୂପ ଉପରେ ପ୍ରଭୁ ଯେଇଛେ କୃପା କୈଲ ।
ଅତ୍ୟନ୍ତ ବିସ୍ତାର କଥା ସଂକ୍ଷେପେ କହିଲ ।
ଶ୍ରଦ୍ଧା କରି ଏଇ କଥା ଶୁନେ ଯେଇ ଜନେ ।
ପ୍ରେମଭକ୍ତି ପାୟ ସେଇ ଚୈତନ୍ୟଚରଣେ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୨୧୨।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ଶ୍ରୀରୂପାନୁଗ୍ରହୋ ନାମ ଊନବିଂଶ ପରିଚ୍ଛେଦଃ ।

ଊନବିଂଶ ପରିଚ୍ଛେଦ ସମାପ୍ତ ।



# ବିଂଶ ପରିଚ୍ଛେଦ ।



ବନ୍ଦେଽନନ୍ତାଦ୍ଭୁତୈଶ୍ୱର୍ଯ୍ୟଂ ଶ୍ରୀଚୈତନ୍ୟ-
ମହାପ୍ରଭୁମ୍ ।
ନୀଚୋଽପି ଯତ୍ପ୍ରସାଦାତ୍ ସ୍ୟାଦ୍ଭକ୍ତି-
ଶାସ୍ତ୍ରପ୍ରବର୍ତ୍ତକଃ । ୧ । *

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଏଥା ଗୌଡ଼େ ସନାତନ ଅଛେ ବନ୍ଦିଶାଳେ ।
ଶ୍ରୀରୂପଗୋସ୍ୱାମୀର ପତ୍ରୀ ଆଇଲ ହେନକାଳେ ।
ପତ୍ରୀ ପାଞା ସନାତନ ଆନନ୍ଦିତ ହୈଲା ।
ଯବନ-ରକ୍ଷକ-ପାଶ କହିତେ ଲାଗିଲା — । ୩ ।
ତୁମି ଏକ ଜିନ୍ଦାପୀର ମହାଭାଗ୍ୟବାନ୍ ।
କେତାବ-କୋରାଣ-ଶାସ୍ତ୍ରେ ଅଛେ ତୋମାର ଜ୍ଞାନ
ଏକ ବନ୍ଦୀ ଛାଡ଼ ଯଦି ନିଜ ଧର୍ମ ଦେଖିୟା ।
ସଂସାର ହୈତେ ତାରେ ମୁକ୍ତ କରେନ ଗୋସାଞା ।
ପୂର୍ବେ ଆମି ତୋମାର କରିୟାଛି ଉପକାର ।
ତୁମି ଆମା ଛାଡ଼ି କର ପ୍ରତ୍ୟୁପକାର । ୬ ।
ପାଁଚ ସହସ୍ର ମୁଦ୍ରା ତୁମି କର ଅଙ୍ଗୀକାର ।
ପୁଣ୍ୟ ଅର୍ଥ ଦୁଇ ଲାଭ ହଇବେ ତୋମାର ।
ତବେ ସେଇ ଯବନ କହେ — ଶୁନ ମହାଶୟ ।
ତୋମାରେ ଛାଡ଼ିୟେ, କିନ୍ତୁ କରି ରାଜଭୟ । ୮ ।
ସନାତନ କହେ — ତୁମି ନା କର ରାଜଭୟ ।
ଦକ୍ଷିଣ ଗିୟାଛେ ଯଦି ଲେଉଟି ଆଇସୟ ।
ତାଁହାକେ କହିଓ — 'ସେଇ ବାହ୍ୟକୃତ୍ୟେ ଗେଲ
ଗଙ୍ଗାର ନିକଟ, ଗଙ୍ଗା ଦେଖି ଝାଁପ ଦିଲ ।୧୦।
ଅନେକ ଦେଖିଲ, ତାର ଲାଗି ନା ପାଇଲ ।
ଦାଁଡୁକା ସହିତ ଡୁବି କାହାଁ ବହି ଗେଲ ।'

---

# ବିଂଶ ପରିଚ୍ଛେଦ ।



ବନ୍ଦେ ଇତି — ଶ୍ରୀଚୈତନ୍ୟ ମହାପ୍ରଭୁଂ ସର୍ବାବତାରିଣାଂ ସାକଲ୍ୟଂ ଅହଂ ବନ୍ଦେ — ଶରଣଂ ବ୍ରଜାମି, କଥମ୍ଭୂତଂ ଅନନ୍ତଂ — ଅଗଣନଂ, ଅଦ୍ଭୁତଂ — ଆଶ୍ଚର୍ଯ୍ୟଂ ଐଶ୍ୱର୍ଯ୍ୟଂ ଯସ୍ୟ,ତଂ । ଯତ୍ ଯସ୍ୟ ଶ୍ରୀଚୈତନ୍ୟସ୍ୟ ପ୍ରସାଦାତ୍ — ଅନୁଗ୍ରହାତ୍ ନୀଚୋଽପି — ହୀନଜନୋଽପି ଭକ୍ତିଶାସ୍ତ୍ରପ୍ରବର୍ତ୍ତକଃ — ଭକ୍ତିଶାସ୍ତ୍ରରଚନାକ୍ଷମଃ ସ୍ୟାତ୍ । ୧ମ ଶ୍ଳୋକ ।

---

ଅନନ୍ତ ଓ ଆଶ୍ଚର୍ଯ୍ୟ ଐଶ୍ୱର୍ଯ୍ୟଶାଳୀ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ବନ୍ଦନା କରେଁ । ଯାହାଙ୍କର ଅନୁଗ୍ରହରୁ ନୀଚ ବ୍ୟକ୍ତି ସୁଦ୍ଧା ଭକ୍ତିଶାସ୍ତ୍ର ପ୍ରବର୍ତ୍ତକ ହୁଅନ୍ତି । ୧ମ ଶ୍ଳୋକାର୍ଥ ।

ପତ୍ରୀ — ପୂର୍ବ ପରିଚ୍ଛେଦ ୩୧ ଠାରୁ ୩୪ ପର୍ଯ୍ୟନ୍ତ ଉଲ୍ଲିଖିତ ପତ୍ରୀ । ୩ ।

ଜିନ୍ଦାପୀର — ଜୀବିତ ସିଦ୍ଧପୁରୁଷ । ୪ ।

ଗୋସାଞା — ଈଶ୍ୱର । ୫ ।

ଲେଉଟି ଆଇସୟ — ଯଦି ବଳି ଫେରି ଆସନ୍ତି । ୯ ।

ସେଇ — ସନାତନ । ବାହ୍ୟକୃତ୍ୟ — ବହିର୍ଭୂମି । ୧୦ ।

ଲାଗି — ସନ୍ଧାନ । ଦାଡୁକା — ଗୋଡ଼ବେଡ଼ି । ୧୧ ।

କିନ୍ତୁ ଭୟ ନାହିଁ, ଆମି ଏ ଦେଶେ ନା ରବ ।
ଦରବେଶ ହୋଇ ଆମି ମକ୍କାୟ ଯାଇବ । ୧୨ ।
ତଥାପି ଯବନ ମନ ପ୍ରସନ୍ନ ନା ଦେଖିଲ ।
ଯାତ ହାଜାର ମୁଦ୍ରା ତାର ଅଗ୍ରେ ରାଶି କୈଲ ।
ଲୋଭ ହୈଲ ଯବନେର ମୁଦ୍ରା ଦେଖିୟା ।
ରାତ୍ରେ ଗଙ୍ଗା ପାର କୈଲ ଦାଁଡ଼ୁକା କାଟିୟା ।
ଗଡ଼ଦ୍ୱାର ପଥ ଛାଡ଼ିଲ, ନାରେ ତାହାଁ ଯାଇତେ ।
ରାତ୍ରି-ଦିନେ ଚଲି ଆଇଲ ପାତଡ଼ା ପର୍ବତେ ।
ତଥାୟ ଏକ ଭୂମିକ ହୟ, ତାର ଠାଞି ଗେଲା ।
'ପର୍ବତ ପାର କର ଆମା' ନିବେଦନ କରିଲା ।୧୬।
ସେଇ ଭୂଞା ସଙ୍ଗେ ହୟ ହାତଗଣିତା ।
ଭୂଞା-କାଣେ କହେ ସେଇ ଜାନି ଏକ କଥା ।
ଇହାର ଠାଞି ସୁବର୍ଣ୍ଣେର ଅଷ୍ଟ ମୋହର ହୟ ।
ଶୁନି ଆନନ୍ଦିତ ଭୂଞା ସନାତନେ କୟ ।୧୮।
ରାତ୍ରେ ପର୍ବତ ପାର କରିବ ନିଜଲୋକ ଦିୟା ।
ଭୋଜନ କରହ ତୁମି ରନ୍ଧନ କରିୟା ।
ଏତ ବଲି ଅନ୍ନ ଦିଲ କରିୟା ସମ୍ମାନ ।
ସନାତନ ଆସି ତବେ କୈଲ ନଦୀସ୍ନାନ । ୨୦ ।
ଦୁଇ ଉପବାସେ କୈଲ ରନ୍ଧନ-ଭୋଜନେ ।
ରାଜମନ୍ତ୍ରୀ ସନାତନ ବିଚାରିଲ ମନେ ।
ଏଇ ଭୂଞା କେନେ ମୋର ସମ୍ମାନ କରିଲ ?
ଏତ ଚିନ୍ତି ସନାତନ ଈଶାନେ ପୁଛିଲ—
ତୋମାର ଠାଞି ଜାନି କିଛୁ ଦ୍ରବ୍ୟ ଆଛୟ ?
ଈଶାନ କହେ – ମୋରଠାଞି ସାତ ମୋହର ହୟ ।
ଶୁନି ସନାତନ ତାରେ କରିଲ ଭର୍ତ୍ସନ—
ସଙ୍ଗେ କେନେ ଆନିୟାଛ ଏଇ କାଲଯମ ?।୨୪।
ତବେ ସେଇ ସାତ ମୋହର ହସ୍ତେତେ କରିୟା ।
ଭୂଞା କାଛେ ଯାଞା କହେ ମୋହର ଧରିୟା—
ଏଇ ସାତ ସୁବର୍ଣ୍ଣ ମୋହର ଆଛିଲ ଆମାର ।
ଇହା ଲଞା ଧର୍ମ ଦେଖି କର ମୋରେ ପାର ।୨୬।
ରାଜବନ୍ଦୀ ଆମି— ଗଡ଼ଦ୍ୱାର ଯାଇତେ ନା ପାରି ।
ପୁଣ୍ୟ ହବେ, ପର୍ବତ ଆମା ଦେହ ପାର କରି ।
ଭୂଞା ହାସି କହେ – ଆମି ଜାନିୟାଛି ପହିଲେ ।
ଅଷ୍ଟ ମୋହର ହୟ ତୋମାର ସେବକ-ଆଁଚଲେ ।
ତୋମା ମାରି ମୋହର ଲଇତାମ ଆଜି ରାତ୍ରେ ।
ଭାଲ ହୈଲ, କହିଲା ତୁମି, ଛୁଟିଲୁଁ ପାପ ହୈତେ ।
ସନ୍ତୁଷ୍ଟ ହୈଲାମ ଆମି— ମୋହର ନା ଲଇବ ।
ପୁଣ୍ୟ-ଲାଗି ପର୍ବତ ତୋମା ପାର କରି ଦିବ ।୩୦।
ଗୋସାଞି କହେ—କେହୋ ଦ୍ରବ୍ୟ ଲୈବେ ଆମା ମାରି ।
ଆମାର ପ୍ରାଣ ରକ୍ଷା କର ଦ୍ରବ୍ୟ ଅଙ୍ଗୀ କରି ।
ତବେ ଗୋସାଞିର ସଙ୍ଗେ ଭୂଞା ଚାରି ପାଇକ ଦିଲ
ରାତ୍ରେ ରାତ୍ରେ ବନପଥେ ପର୍ବତ ପାର କୈଲ ।
ପାର ହଞା ଗୋସାଞି ତବେ ପୁଛିଲ ଈଶାନେ—
ଜାନି ଶେଷ ଦ୍ରବ୍ୟ କିଛୁ ଆଛେ ତୋମା ସ୍ଥାନେ ?
ଈଶାନ କହେ— ଏକ ମୋହର ଆଛେ ଅବଶେଷ
ଗୋସାଞି କହେ—ମୋହର ଲଞା ଯାହ ତୁମି ଦେଶ । ୩୪ ।
ତବେ ଏକା ବିଦାୟ ଦିୟା ଗୋସାଞି ଚଲିଲା ଏକଲା ।
ହାଥେ କରୋୟା, ଛିଣ୍ଡା କାନ୍ଥା, ନିର୍ଭୟ ହଇଲା ।

---

ଦରବେଶ—ମୁସଲମାନ ସନ୍ନ୍ୟାସୀ ।

ମକ୍କା—ଆରବଦେଶସ୍ଥ, ମୁସଲମାନଙ୍କ ଧର୍ମକ୍ଷେତ୍ର । ୧୨ ।

ଭାବାର୍ଥ ଏହି ଯେ—ସନ୍ନ୍ୟାସୀ ହୋଇ ପ୍ରଧାନ ତୀର୍ଥକୁ ଯିବି ।

ଗଡ଼ଦ୍ୱାର—ପ୍ରସିଦ୍ଧ ରାଜପଥ । ୧୫ ।

ହାତଗଣିତା—ଯେଉଁମାନେ ହାତ ଗଣି ଗୁହ୍ୟ ବିଷୟ କହି ପାରନ୍ତି । ୧୭ ।

ଈଶାନ—ସନାତନଙ୍କ ସଙ୍ଗରେ ଆସିଥିବା ଏକ ଭୃତ୍ୟ । ୨୨ ।

କରୋୟା—କାଷ୍ଠର ବା ନାରିକେଳର ଜଳପାତ୍ର । ୩୫ ।

ଚଲି ଚଲି ଗୋସାଞି ତବେ ଆଇଲା ହାଜିପୁରେ ।
ସନ୍ଧ୍ୟାକାଳେ ବସିଲା ଏକ ଉଦ୍ୟାନ ଭିତରେ । ୩୭ ।
ସେଇ ହାଜିପୁରେ ରହେ ଶ୍ରୀକାନ୍ତ ତାର ନାମ ।
ଗୋସାଞିର ଭଗିନୀପତି କରେ ରାଜକାମ । ୩୮ ।
ତିନ ଲକ୍ଷ ମୁଦ୍ରା ରାଜା ଦିୟାଛେ ତାର ସ୍ଥାନେ ।
ଘୋଡା ମୂଲ୍ୟ ଲଞା ପାଠାୟ ପାତ୍‌ଶାର ସ୍ଥାନେ । ୩୯
ଟୁଙ୍ଗୀର ଉପରେ ବସି ସେଇ ଗୋସାଞିକେ
ଦେଖିଲ ।
ରାତ୍ରେ ଏକଜନ ସଙ୍ଗେ ଗୋସାଞି ପାଶ ଆଇଲ
ଦୁଇ ଜନ ମିଲି ତଥା ଇଷ୍ଟଗୋଷ୍ଠୀ କୈଲ ।
ବନ୍ଦି ଛୁଟିବାର ବାତ ଗୋସାଞି ସକଲି କହିଲ । ୪୦
ଶ୍ରୀକାନ୍ତ କହେ—ଦିନ-ଦୁଇ ରହ ଏଇ ସ୍ଥାନେ ।
ଭଦ୍ର ହଓ ଛାଡ ଏଇ ମଲିନବସନେ । ୪୧ ।
ଗୋସାଞି କହେ—ଏକ କ୍ଷଣ ଇହାଁ ନା ରହିବ ।
ଗଙ୍ଗା ପାର କରି ଦେହ—ଏକ୍ଷଣି ଚଲିବ । ୪୨ ।
ଯତ୍ନ କରି ଶ୍ରୀକାନ୍ତ ଏକ ଭୋଟକମ୍ବଲ ଦିଲ ।
ଗଙ୍ଗା ପାର କରି ଦିଲ, ଗୋସାଞି ଚଲିଲା । ୪୩ ।
ତବେ ବାରାଣସୀ ଗୋସାଞି ଆଇଲା କଥୋଦିନେ
ଶୁନି ଆନନ୍ଦିତ ହୈଲ ପ୍ରଭୁର ଆଗମନେ । ୪୪ ।
ଚନ୍ଦ୍ରଶେଖର-ଘରେ ଆସି ଦୁୟାରେ ବସିଲା ।
ମହାପ୍ରଭୁ ଜାନି ଚନ୍ଦ୍ରଶେଖରେ କହିଲା । ୪୫ ।
ଦ୍ୱାରେ ଏକ ବୈଷ୍ଣବ ହୟ, ବୋଲହ ତାହାରେ ।
ଚନ୍ଦ୍ରଶେଖର ଦେଖେ ବୈଷ୍ଣବ ନାହିକ ଦ୍ୱାରେ ।
'ଦ୍ୱାରେ ବୈଷ୍ଣବ ନାହି' ପ୍ରଭୁରେ କହିଲ ।
'କେହୋ ହୟ ?' କରି ପ୍ରଭୁ ତାହାରେ ପୁଛିଲ ।
ତେହୋ କହେ—ଏକ ଦରବେଶ ଆଛେ ଦ୍ୱାରେ
'ତାଁରେ ଆନ' ପ୍ରଭୁ-ବାକ୍ୟ କହିଲ ତାହାରେ ।
ପ୍ରଭୁ ତୋମାୟ ବୋଲୟ, ଆଇସ ଦରବେଶ !
ଶୁନି ଆନନ୍ଦେ ସନାତନ କରିଲ ପ୍ରବେଶ । ୪୯ ।
ତାହାରେ ଅଙ୍ଗନେ ଦେଖି ପ୍ରଭୁ ଧାଞା ଆଇଲା ।
ତାରେ ଆଲିଙ୍ଗନ କରି ପ୍ରେମାବିଷ୍ଟ ହୈଲା । ୫୦ ।
ପ୍ରଭୁସ୍ପର୍ଶେ ପ୍ରେମାବିଷ୍ଟ ହୈଲା ସନାତନ ।
'ମୋରେ ନା ଛୁଇହ' କହେ ଗଦ୍‌ଗଦ ବଚନ ।
ଦୁଇଜନେ ଗଲାଗଲି ରୋଦନ ଅପାର ।
ଦେଖି ଚନ୍ଦ୍ରଶେଖରେର ହୈଲ ଚମତ୍କାର । ୫୨ ।
ତବେ ପ୍ରଭୁ ତାଁର ହାଥ ଧରି ଲଞା ଗେଲା ।
ପିଣ୍ଡାର ଉପରେ ଆପନ-ପାଶେ ବସାଇଲା । ୫୩ ।
ଶ୍ରୀହସ୍ତେ କରେନ ତାଁର ଅଙ୍ଗସମ୍ମାର୍ଜନ ।
ତେହୋ କହେ ମୋରେ ପ୍ରଭୁ ! ନା କର ସ୍ପର୍ଶନ ।
ପ୍ରଭୁ କହେ—ତୋମା ସ୍ପର୍ଶି ପବିତ୍ର ହଇତେ ।
ଭକ୍ତିବଲେ ପାର ତୁମି ବ୍ରହ୍ମାଣ୍ଡ ଶୋଧିତେ । ୫୫ ।

ତଥାହି (ଭାଃ —୧ । ୧୩ । ୧୦ )—

ଭବଦ୍ୱିଧା ଭାଗବତାସ୍ତୀର୍ଥୀଭୂତାଃ ସ୍ୱୟଂ ପ୍ରଭୋ ।
ତୀର୍ଥୀକୁର୍ବନ୍ତି ତୀର୍ଥାନି ସ୍ୱାନ୍ତଃସ୍ଥେନ ଗଦାଭୃତା । ୨ ।

---

ହାଜିପୁର—ଗଙ୍ଗା ଓ ଗଣ୍ଡକୀ ନଦୀର ସଙ୍ଗମ ସ୍ଥଳରେ ପାଟଣାର ଅପର ପାର୍ଶ୍ୱରେ ହାଜିପୁର । ୩୭ ।

ଇଷ୍ଟଗୋଷ୍ଠୀ—ଭଗବତ୍ କଥା । ଛୁଟିବାର ବାତ—ବନ୍ଧନମୁକ୍ତି କଥା । ୪୦ ।
ଭଦ୍ରହଓ—କ୍ଷୌରହୁଅ । ୪୧ । ଭୋଟକମ୍ବଲ—ଭୂଟାନଦେଶୀୟ କମ୍ବଳ । ୪୩ ।
ପ୍ରଭୁ—ଶ୍ରୀମନ୍ମହାପ୍ରଭୁ । ଦରବେଶ—ମୁସଲମାନ ଫକୀର । ୪୭ ।
୨ୟ ଶ୍ଳୋକାନ୍ୱୟ ଆଦିଃ ୧ମ ପରିଃ ୩୨ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ହେ ପ୍ରଭୋ ! ଭବାଦୃଶ ଭାଗବତମାନେ ନିଜେ ତୀର୍ଥସ୍ୱରୂପ ( ଅତଏବ ଆପଣମାନଙ୍କର ତୀର୍ଥପର୍ଯ୍ୟଟନର ଅବଶ୍ୟକ ନ ଥିଲେ ସୁଦ୍ଧା ତୀର୍ଥ ସବୁ ମଳିନ ବ୍ୟକ୍ତିମାନଙ୍କର ସ୍ପର୍ଶରେ ସମୟ ସମୟରେ ମଳିନ ହୋଇଥିବାରୁ ) ଆପଣମାନେ ଆପଣମାନଙ୍କ ହୃଦୟସ୍ଥ ଗଦାଧରଙ୍କ ସମ୍ପର୍କରେ ତୀର୍ଥମାନଙ୍କୁ (ସେମାନଙ୍କ ମଳିନତା ଦୂର କରିବାଦ୍ୱାରା ପୁନରାୟ) ତୀର୍ଥ କରନ୍ତି । ୨ୟ ଶ୍ଳୋକାର୍ଥ ।

ତଥାହି ହରିଭକ୍ତିବିଳାସେ ( ୧୦ । ୯୧ )
ନ ମେ ଭକ୍ତଶ୍ଚତୁର୍ବେଦୀ ମଦ୍ଭକ୍ତଃ ଶ୍ୱପଚଃ ପ୍ରିୟଃ ।
ତସ୍ମୈ ଦେୟଂ ତତୋ ଗ୍ରାହ୍ୟଂ
ସ ଚ ପୂଜ୍ୟୋ ଯଥାହ୍ୟହମ୍ ।୩। ❋
ତଥାହି ( ଭାଂ—୭।୯।୧୦ ) —
ବିପ୍ରାଦ୍ଦ୍ୱିଷଡ଼ଗୁଣଯୁତାଦରବିନ୍ଦନାଭ-
ପାଦାରବିନ୍ଦବିମୁଖାତ୍ ଶ୍ୱପଚଂ ବରିଷ୍ଠମ୍ ।
ମନ୍ୟେ ତଦର୍ପିତମନୋବଚନେହିତାର୍ଥ-
ପ୍ରାଣଂ ପୁନାତି ସ କୁଳଂ ନ ତୁ ଭୂରିମାନଃ ।୪।
ତୋମା ଦେଖି, ତୋମା ସ୍ପର୍ଶି, ଗାଇ ତୋମାରଗୁଣ ।
ସର୍ବେନ୍ଦ୍ରିୟଫଳ ଏଇ—ଶାସ୍ତ୍ର-ନିରୂପଣ । ୫୭ ।

ତଥାହି ହରିଭକ୍ତିସୁଧୋଦୟେ (୧୩।୨)—
ଅକ୍ଷ୍ଣୋଃ ଫଳଂ ତ୍ୱାଦୃଶଦର୍ଶନଂ ହି,
ତନ୍ୱାଃ ଫଳଂ ତ୍ୱାଦୃଶଗାତ୍ରସଙ୍ଗଃ ।
ଜିହ୍ୱାଫଳଂ ତ୍ୱାଦୃଶକୀର୍ତ୍ତନଂ ହି,
ସୁଦୁର୍ଲ୍ଲଭା ଭାଗବତା ହି ଲୋକେ ।୫ ।
ଏତ କହି କହେ ପ୍ରଭୁ—ଶୁନ ସନାତନ !
କୃଷ୍ଣ ବଡ଼ ଦୟାମୟ ପତିତପାବନ । ୫୭ ।
ମହା ରୌରବ ହୈତେ ତୋମା କରିଲ ଉଦ୍ଧାର ।
କୃପାର ସମୁଦ୍ର କୃଷ୍ଣ ଗମ୍ଭୀର ଅପାର । ୫୮ ।
ସନାତନ କହେ—କୃଷ୍ଣ ଆମି ନାହି ଜାନି ।
ଆମାର ଉଦ୍ଧାର-ହେତୁ ତୋମାର କୃପା ମାନି ।

ଅରବିନ୍ଦନାଭପାଦାରବିନ୍ଦବିମୁଖାତ୍ — ଶ୍ରୀକୃଷ୍ଣସ୍ୟ ପାଦାରବିନ୍ଦାତ୍ ବିମୁଖାତ୍—ଭକ୍ତିହୀନାତ୍, ଦ୍ୱିଷଡ଼ଗୁଣଯୁତାତ୍—ଧର୍ମଶ୍ଚ, ସତ୍ୟଞ୍ଚ, ଦମଶ୍ଚ, ତପଶ୍ଚ, ଅମାତ୍ସର୍ଯ୍ୟଞ୍ଚ, ହ୍ରୀଶ୍ଚ, ତିତିକ୍ଷାଚ ଅନସୂୟାଚ, ଯଜ୍ଞଶ୍ଚ, ଦାନଞ୍ଚ, ଧୃତିଶ୍ଚ, ଶ୍ରୁତଞ୍ଚେତି ଦ୍ୱାଦଶଗୁଣାଃତୈର୍ଯୁକ୍ତାତ୍, ବିପ୍ରାତ୍, ତଦର୍ପିତମନୋବଚନେହିତାର୍ଥପ୍ରାଣଂ—ତସ୍ମିନ୍ ଅରବିନ୍ଦନାଭେ ଅର୍ପିତାଃ ମନଃ ବଚନଂ ଈହିତଂ—କର୍ମ, ଅର୍ଥଃ, ପ୍ରାଣାଶ୍ଚ, ଯେନ ତଂ, ଶ୍ୱପଚଂ ବରିଷ୍ଠଂ ମନ୍ୟେ, ( ଯତଃ )ସଃ—ଶ୍ୱପଚଃ, କୁଳଂ ପୁନାତି ଭୂରିମାନଃ—ଗର୍ବଯୁକ୍ତଃ ବିପ୍ରସ୍ତୁ ଆତ୍ମାନମପି ନ ପୁନାତି ( କୁତଃକୁଳଂ) ୪ର୍ଥ ଶ୍ଳୋକ ।

ଅକ୍ଷ୍ଣୋରିତି—ତ୍ୱାଦୃଶଦର୍ଶନଂ—ତ୍ୱଦ୍ବିଧାନାଂ ତବତୁଲ୍ୟାନାଂ ହରିଭକ୍ତାନାଂ ଦର୍ଶନଂ ଅକ୍ଷ୍ଣୋଫଳଂ, ତ୍ୱାଦୃଶଗାତ୍ରସଙ୍ଗଃ ତନ୍ୱାଃ ଫଳ, ତ୍ୱାଦୃଶକୀର୍ତ୍ତନଂ ହି ଜିହ୍ୱାଫଳଂ, ( ଅତଏବ ) ଲୋକେ ଭାଗବତାଃ ହି—ଏବ, ସୁଦୁର୍ଲଭାଃ । ୫ମ ଶ୍ଳୋକ ।

ତୃୟ ଶ୍ଳୋକାନୁବାଦ ମଧ: ୧୯ଶ ପର: ୬ଷ୍ଠ ଶ୍ଳୋକ ।

ଶ୍ରୀଭଗବାନ କହୁଅଛନ୍ତି ଚତୁର୍ବେଦାଧ୍ୟାୟୀ ବ୍ରାହ୍ମଣ ଯଦି ମୋର ଅଭକ୍ତ ହୁଏ, ସେ ମୋର ପ୍ରିୟ ନୁହେଁ । ଚଣ୍ଡାଳ ଯଦି ମୋର ଭକ୍ତ ହୁଏ ସେ ମୋର ପ୍ରିୟ । ସେହି ଚଣ୍ଡାଳକୁ ଦାନ କରିବ ଏବଂ ତାହାଠାରୁ ପ୍ରତିଗ୍ରହ କରିବ । ମୁଁ ଯେପରି ପୂଜ୍ୟ, ସେ ମଧ୍ୟ ସେହିପରି ପୂଜ୍ୟ । ୩ୟ ଶ୍ଳୋକାର୍ଥ ।

ଶ୍ରୀନୃସିଂହଦେବ ପ୍ରହ୍ଲାଦଙ୍କୁ କହୁଅଛନ୍ତି—ଧର୍ମ, ସତ୍ୟ, ଦମ, ତପ, ଅମାତ୍ସର୍ଯ୍ୟ, ହ୍ରୀ, ତିତିକ୍ଷା, ଅନସୂୟା, ଯଜ୍ଞ, ଦାନ, ଧୃତି ଓ ବେଦାଧ୍ୟୟନ ଏହି ଦ୍ୱାଦଶଗୁଣଯୁକ୍ତ ବ୍ରାହ୍ମଣ ଯଦି ଶ୍ରୀକୃଷ୍ଣଙ୍କର ଶ୍ରୀଚରଣକମଳରେ ଭକ୍ତିହୀନ ହୁଅନ୍ତି, ତାଙ୍କଠାରୁ ଶ୍ରୀକୃଷ୍ଣଙ୍କର ଶ୍ରୀଚରଣକମଳରେ ମନ, ବାକ୍ୟ, କର୍ମ, ଅର୍ଥ ଓ ପ୍ରାଣଅର୍ପଣକାରୀ ଚଣ୍ଡାଳ ଶ୍ରେଷ୍ଠ । ଯେହେତୁ ସେହି ଚଣ୍ଡାଳ ନିଜର କୁଳକୁ ପବିତ୍ର କରନ୍ତି, କିନ୍ତୁ ପୂର୍ବୋକ୍ତପ୍ରକାର ଗର୍ବୀ ବ୍ରାହ୍ମଣ ଆପଣାକୁ ସୁଦ୍ଧା ପବିତ୍ର କରି ପାରନ୍ତି ନାହିଁ । ୪ର୍ଥ ଶ୍ଳୋକାର୍ଥ ।

ଶ୍ରୀଧରଣୀଦେବୀ ପ୍ରହ୍ଲାଦଙ୍କୁ କହୁଅଛନ୍ତି—ତୁମ୍ଭପରି ବ୍ୟକ୍ତିଙ୍କର ଦର୍ଶନଲାଭ ଚକ୍ଷୁର ଫଳ, ତୁମ୍ଭପରି ବ୍ୟକ୍ତିଙ୍କର ଗାତ୍ରସ୍ପର୍ଶ, ଦେହର ଫଳ, ତୁମ୍ଭପରି ବ୍ୟକ୍ତିଙ୍କର ଗୁଣକୀର୍ତ୍ତନ ଜିହ୍ୱାର ଫଳ, ଯେହେତୁ ତ୍ରିଲୋକ ମଧ୍ୟରେ ଭଗବଦ୍ ଭକ୍ତ ଅତି ଦୁର୍ଲ୍ଲଭ । ୫ମ ଶ୍ଳୋକାର୍ଥ ।

ମହାରୌରବ—ମହାରୌରବ ନରକତୁଲ୍ୟ ସଂସାର । ୫୮ ।

'କେମନେ ଛୁଟିଲା ?' ବଲି ପ୍ରଭୁ ପ୍ରଶ୍ନ କୈଲ ।
ଆଦ୍ୟୋପାନ୍ତ ସବ କଥା ତେଁହୋ ଶୁନାଇଲ ।
ପ୍ରଭୁ କହେ—ତୋମାର ଦୁଇଭାଇ ପ୍ରୟାଗେ
ମିଲିଲା ।
ରୂପ ଅନୁପମ ଦୋଁହେ ବୃନ୍ଦାବନ ଗେଲା ।୬୧ ।
ତପନମିଶ୍ରେରେ ଆର ଚନ୍ଦ୍ରଶେଖରେ ।
ପ୍ରଭୁ-ଆଜ୍ଞାୟ ସନାତନ ମିଲିଲା ଦୋଁହାରେ ।୬୨।
ତପନମିଶ୍ର ତାଁରେ ତବେ କୈଲ ଆଲିଙ୍ଗନ ।
ପ୍ରଭୁ କହେ—କ୍ଷୌର କରାହ, ଯାହ
ସନାତନ !॥
ଚନ୍ଦ୍ରଶେଖରେରେ ପ୍ରଭୁ କହେ ବୋଲାଇୟା ।
ଏଇ ବେଶ ଦୂର କର, ଯାହ ଇହା ଲୈୟା ।୬୪।
ଭଦ୍ର କରାଇୟା ତାଁରେ ଗଙ୍ଗାସ୍ନାନ କରାଇଲ ।
ଶେଖର ଆନିଞା ତାଁରେ ନୂତନ ବସ୍ତ୍ର ଦିଲ ।୬୫।
ସେଇ ବସ୍ତ୍ର ସନାତନ ନା କୈଲ ଅଙ୍ଗୀକାର ।
ଶୁନିୟା ପ୍ରଭୁର ମନେ ଆନନ୍ଦ ଅପାର । ୬୬ ।
ମଧ୍ୟାହ୍ନ କରି ପ୍ରଭୁ ଗେଲା ଭିକ୍ଷା କରିବାରେ ।
ସନାତନେ ଲଞା ଗେଲା ତପନମିଶ୍ର ଘରେ ।୬୭।
ପାଦ ପ୍ରକ୍ଷାଲନ କରି ଭିକ୍ଷାତେ ବସିଲା ।
ସନାତନେ ଭିକ୍ଷା ଦେହ—ମିଶ୍ରେରେ କହିଲା ।
ମିଶ୍ର କହେ—ସନାତନେର କିଛୁ କୃତ୍ୟ ଆଛେ ।
ତୁମି ଭିକ୍ଷା କର, ପ୍ରସାଦ ତାଁରେ ଦିବ ପାଛେ ।
ଭିକ୍ଷା କରି ମହାପ୍ରଭୁ ବିଶ୍ରାମ କରିଲ ।
ମିଶ୍ର ପ୍ରଭୁର ଶେଷପାତ୍ର ସନାତନେ ଦିଲ । ୭୦ ।
ମିଶ୍ର ସନାତନେ ଦିଲ ନୂତନ ବସନ ।
ବସ୍ତ୍ର ନାହି ନିଲ ତେଁହୋ କୈଲ ନିବେଦନ ।
ମୋରେ ବସ୍ତ୍ର ଦିତେ ଯଦି ତୋମାର ହୟ ମନ ।
ନିଜ-ପରିଧାନ ଏକ ଦେହ ପୁରାତନ । ୭୧ ।
ତବେ ମିଶ୍ର ପୁରାତନ ଏକ ଧୁତି ଦିଲ ।
ତେଁହୋ ଦୁଇ ବହିର୍ବାସ କୌପୀନ କରିଲ ।

ମହାରାଷ୍ଟ୍ରୀ ଦ୍ୱିଜେ ପ୍ରଭୁ ମିଲାଇଲା ସନାତନେ ।
ସେଇ ବିପ୍ର ତାଁରେ କୈଲ ମହା ନିମନ୍ତ୍ରଣେ ।
ସନାତନ ! ତୁମି ଯାବତ୍ କାଶୀତେ ରହିବେ ।
ତାବତ୍ ଆମାର ଘରେ ଭିକ୍ଷା ଯେ କରିବେ ।୭୫।
ସନାତନ କହେ—ଆମି ମାଧୁକରୀ କରିବ ।
ବ୍ରାହ୍ମଣେର ଘରେ କେନେ ଏକତ୍ର ଭିକ୍ଷା ଲବ ?
ସନାତନେର ବୈରାଗ୍ୟେ ପ୍ରଭୁର ଆନନ୍ଦ ଅପାର ।
ଭୋଟକମ୍ବଲପାନେ ପ୍ରଭୁ ଚାହେ ବାରେବାର ।
ସନାତନ ଜାନିଲ—ଏଇ ପ୍ରଭୁରେ ନା ଭାୟ ।
ଭୋଟ ତ୍ୟାଗ କରିବାରେ ଚିନ୍ତିଲ ଉପାୟ । ୭୮ ।
ଏତ ଚିନ୍ତି ଗେଲା ଗଙ୍ଗାୟ ମଧ୍ୟାହ୍ନ କରିତେ ।
ଏକ ଗୌଡ଼ୀୟା କାନ୍ଥା ଧୁଞା ଦିୟାଛେ ଶୁକାଇତେ
ତାରେ କହେ—ଆରେ ଭାଇ ! କର ଉପକାରେ
ଏଇ ଭୋଟ ଲଞା ଏଇ କାଁଥା ଦେହ ମୋରେ ।
ସେଇ କହେ—ହାସ୍ୟ କର ପ୍ରାମାଣିକ ହଞା ?
ବହୁମୂଲ୍ୟ ଭୋଟ ଦିବେ କେନେ କାଁଥା ଲଞା ?
ତେଁହୋ କହେ—ହାସ୍ୟ ନହେ, କହି ସତ୍ୟବାଣୀ
ଭୋଟ ଲେହ ତୁମି ଦେହ ମୋରେ କାଁଥାଖାନି ।
ଏତ ବଲି କାଁଥା ଲଇଲ, ଭୋଟ ତାରେ ଦିୟା ।
ଗୋସାଞିର ଠାଞି ଆଇଲ କାଁଥା ଗଲେ ଦିୟା ।
ପ୍ରଭୁ କହେ—ତୋମାର ଭୋଟକମ୍ବଲ କୋଥା
ଗେଲ ।
ପ୍ରଭୁ-ପଦେ ସବ କଥା ଗୋସାଞି କହିଲ । ୮୪ ।
ପ୍ରଭୁ କହେ—ଇହା ଆମି କରିୟାଛି ବିଚାର ।
ବିଷୟଭୋଗ ଖଣ୍ଡାଇଲ କୃଷ୍ଣ ଯେ ତୋମାର ।୮୫।
ସେ କେନେ ରାଖିବେ ତୋମାର ଶେଷ ବିଷୟ-
ଭୋଗ ?
ରୋଗ ଖଣ୍ଡି ସଦ୍‌ବୈଦ୍ୟ ନା ରାଖେ ଶେଷରୋଗ ।
ତିନ ମୁଦ୍ରାର ଭୋଟ ଗାୟ, ମାଧୁକରୀ ଗ୍ରାସ ।
ଧର୍ମ ହାନି ହୟ, ଲୋକ କରେ ଉପହାସ ।୮୬

ଇହା—ଏହାଙ୍କୁ ସନାତନଙ୍କୁ । ୬୪ ।
ଶେଖର—ଚନ୍ଦ୍ରଶେଖର । ୬୫ । ଭାୟ—ଭଲ ଲାଗୁ ନାହିଁ । ୭୮ ।
ପ୍ରାମାଣିକ—ବହୁଦର୍ଶୀ ବିଜ୍ଞ । ୮୧ ।

ଗୋସାଞି କହେ—ଯେ ଖଣ୍ଡିଲ କୁବିଷୟଭୋଗ ।
ତାଁର ଇଚ୍ଛାୟ ଗେଲ ମୋର ଶେଷ ବିଷୟ-ରୋଗ
ପ୍ରସନ୍ନ ହଇୟା ପ୍ରଭୁ ତାଁରେ କୃପା କୈଲ ।
ତାଁର କୃପାୟ ପ୍ରଶ୍ନ କରିତେ ତାଁର ଶକ୍ତି ହୈଲ ।
ପୂର୍ବେ ଯୈଛେ ରାୟ ପାଶ ପ୍ରଭୁ ପ୍ରଶ୍ନ କୈଲ ।
ତାଁର ଶକ୍ତ୍ୟେ ରାମାନନ୍ଦ ତାରେ ଉତ୍ତର ଦିଲ ।୯୦।
ଇହାଁ ପ୍ରଭୁର ଶକ୍ତ୍ୟେ ପ୍ରଶ୍ନ କରେ ସନାତନ ।
ଆପନେ ମହାପ୍ରଭୁ କରେ ତତ୍ତ୍ୱନିରୂପଣ ।୯୧।

ତଥାହି—

କୃଷ୍ଣସ୍ୱରୂପମାଧୁର୍ଯୈଶ୍ୱର୍ଯ୍ୟଭକ୍ତିରସାଶ୍ରୟମ୍ ।
ତତ୍ତ୍ୱଂ ସନାତନାୟେଶଃ କୃପୟୋପଦିଦେଶ ସଃ ।୨

ତବେ ସନାତନ ପ୍ରଭୁର ଚରଣେ ଧରିୟା ।
ଦୈନ୍ୟ ବିନତି କରେ ଦନ୍ତେ ତୃଣ ଲଞା— ୯୨
ନୀଚ ଜାତି ନୀଚ ସଙ୍ଗୀ ପତିତ ଅଧମ ।
କୁବିଷୟ କୂପେ ପଡ଼ି ଗୋଙାଇନୁ ଜନମ ।୯୩।
ଆପନାର ହିତାହିତ କିଛୁଇ ନା ଜାନି ।
ଗ୍ରାମ୍ୟ-ବ୍ୟବହାରେ ପଣ୍ଡିତ, ତାହି ସତ୍ୟ ମାନି ।
କୃପା କରି ଯଦି ମୋରେ କରିୟାଛ ଉଦ୍ଧାର ।
ଆପନ କୃପାତେ କହ 'କର୍ତ୍ତବ୍ୟ ଆମାର' ।୯୪।
କେ ଆମି, କେନେ ଆମାୟ ଜାରେ ତାପତ୍ରୟ ?
ଇହା ନାହି ଜାନି ଆମି—କେମନେ ହିତ ହୟ ?
ସାଧ୍ୟ-ସାଧନତତ୍ତ୍ୱ ପୁଛିତେ ନା ଜାନି ।
କୃପା କରି ସବ ତତ୍ତ୍ୱ କହତ ଆପନି ।୯୫।

ସଃ—ଈଶଃ ଶ୍ରୀକୃଷ୍ଣଚୈତନ୍ୟଃ, ସନାତନାୟ ଇତି ଚତୁର୍ଥ୍ୟନ୍ତ ଚତୁର୍ଥୀ ସନାତନଂ ଜ୍ଞାପୟିତୁଂ—ବୋଧୟିତୁଂ, କୃଷ୍ଣସ୍ୱରୂପାଦୀନାଂ—ଶ୍ରୟଂ ତତ୍ତ୍ୱଂ, କୃପୟା ଉପଦିଦେଶ ଉପଦିଷ୍ଟବାନ୍, ଅଥବା ନିମିତ୍ତ ଚତୁର୍ଥୀ, ସନାତନଂ ନିମିତ୍ତଂ କୃତ୍ୱା, ଅନ୍ୟାନ୍ ଉପଦିଷ୍ଟବାନ୍, ତସ୍ୟ ସ୍ୱରୂପଂ ପରମାନନ୍ଦଃ, ମାଧୁର୍ଯ୍ୟଂ ଅସମୋର୍ଦ୍ଧତୟା ସର୍ବମନୋହରଂ ସ୍ୱାଭାବିକ ରୂପଗୁଣଲୀଳାଦିସୌଷ୍ଠବଂ ଐଶ୍ୱର୍ଯ୍ୟଂ ଅସମୋର୍ଦ୍ଧାନନ୍ତ ସ୍ୱାଭାବିକପ୍ରଭୁତା, ଭକ୍ତିରସଶ୍ଚ, ଏତେଷାଂ ଆଶ୍ରୟଂ ତତ୍ତ୍ୱଂ ତାନ୍ ଆଶ୍ରିତବତତ୍ତ୍ୱମିତ୍ୟର୍ଥଃ । ୨ୟ ଶ୍ଳୋକଃ ।

ତାପତ୍ରୟ ଯଥା ବିଷ୍ଣୁପୁରାଣେ—ଆଧ୍ୟାତ୍ମିକୋ ବୈ ଦ୍ୱିବିଧଃ ଶାରୀରୋ ମାନସସ୍ତଥା, ଶାରୀରୋ ବହୁଭିର୍ଭେଦୈର୍ଭିଦ୍ୟତେ ଶ୍ରୂୟତାଂ ଚ ସଃ । ଶିରୋରୋଗ ପ୍ରତିଶ୍ୟାୟ ଜ୍ୱରଶୂଳ-ଭଗନ୍ଦରୈଃ, ଗୁଳ୍ମାର୍ଶଃଶ୍ୱାସଶ୍ୱୟଥୁଚ୍ଛର୍ଦ୍ଦ୍ୟାଦିଭିରନେକଧା, ତଥାକ୍ଷିରୋଗାତିସାର କୁଷ୍ଠାଙ୍ଗାମୟସଞ୍ଜ୍ଞକୈଃ, ଭିଦ୍ୟତେ ଦେହଜସ୍ତାପୋ ମାନସଂ ଶ୍ରୋତୁମର୍ହସି । କାମକ୍ରୋଧ ଭୟଦ୍ୱେଷ ଲୋଭ ମୋହ ବିଷାଦଜଃ ଶୋକାସୂୟାବମାନେର୍ଷ୍ୟା ମାତ୍ସର୍ଯ୍ୟାଦିଭବସ୍ତଥା ମାନସୋଽପି ଦ୍ୱିଜଶ୍ରେଷ୍ଠ ତାପୋ ଭବତି ନୈକଧା, ଇତ୍ୟେବମାଦିଭିର୍ଭେଦୈସ୍ତାପୋହ୍ୟାଧ୍ୟାତ୍ମିକଃ ସ୍ମୃତଃ । ମୃଗପକ୍ଷିମନୁଷ୍ୟାଦ୍ୟୈ-ପିଶାଚୋରଗରାକ୍ଷସୈଃ ସରୀସୃପାଦ୍ୟୈଶ୍ଚ ନୃଣାଂ ଜନ୍ୟତେ ଚାଧିଭୌତିକଃ, ଶୀତୋଷ୍ଣ ବାତବର୍ଷାମ୍ବୁ ବୈଦ୍ୟୁତାଦି ସମୁଦ୍ଭବଃ । ତାପୋ ଦ୍ୱିଜବରଶ୍ରେଷ୍ଠ ? କଥ୍ୟତେ ଚାଧିଦୈବିକଃ । ଗର୍ଭଜନ୍ମ ଜରାଜ୍ଞାନ ମୃତ୍ୟୁନାରକଜଂ ତଥା । ଦୁଃଖଂ ସହସ୍ରଶୋଭେଦୈର୍ଭିଦ୍ୟତେ ମୁନିସତ୍ତମ ? ।୯୫, ୯୬। ଚି,ଚ,

ତାଁର କୃପାୟ— ଶ୍ରୀମନ୍ ମହାପ୍ରଭୁଙ୍କ କୃପା । ତାଁର ଶକ୍ତି—ଶ୍ରୀସନାତନଙ୍କର ଶକ୍ତି ।୮୯।

ଶ୍ରୀଗ୍ରନ୍ଥକାରଙ୍କ ବାକ୍ୟ—ସେହି ପ୍ରଭୁ ଶ୍ରୀକୃଷ୍ଣଚୈତନ୍ୟ କୃପାପୂର୍ବକ ଶ୍ରୀସନାତନଙ୍କୁ ଶ୍ରୀକୃଷ୍ଣଙ୍କର ସ୍ୱରୂପ, ମାଧୁର୍ଯ୍ୟ, ଐଶ୍ୱର୍ଯ୍ୟ, ଓ ଭକ୍ତିରସ, ଏହି ସବୁଙ୍କର ଆଶ୍ରୟତତ୍ତ୍ୱ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପାଦି ବିଷୟକ ତତ୍ତ୍ୱ ଉପଦେଶ କରିଥିଲେ । ୨ୟ ଶ୍ଳୋକାର୍ଥ ।

ଗୋଙାଇନୁ—କଟାଇଲୁ ।୯୩।

ଗ୍ରାମ୍ୟବ୍ୟବହାର— ବୈଷୟିକ ବ୍ୟବହାର ।୯୪।

ମୁଁ କିଏ ଅର୍ଥାତ୍ "ମୁଁ" ଏହି ଅଭିମାନୀ ଜୀବର ସ୍ୱରୂପ କିପ୍ରକାର । ତାପତ୍ରୟ ( ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ) ଏମାନେ କାହିଁକି ମୋତେ ଦୁଃଖ ଦେଉଅଛନ୍ତି ।

ପ୍ରଭୁ କହେ—କୃଷ୍ଣ କୃପା ତୋମାଠେ ପୂର୍ଣ୍ଣ ହୟ ।
ସବ ତତ୍ତ୍ୱ ଜାନ, ତୋମାର ନାହି ତାପତ୍ରୟ ।
କୃଷ୍ଣଶକ୍ତି ଧର ତୁମି – ଜାନ ତତ୍ତ୍ୱଭାବ ।
ଜାନ ଦାର୍ଢ୍ୟ-ଲାଗି ପୁଛେ—ସାଧୁର ସ୍ୱଭାବ ।୯୯।

ତଥାହି ଭକ୍ତିରସାମୃତସିନ୍ଧୌ ପୂର୍ବଭାଗେ
ସାଧନଭକ୍ତିଲହର୍ଯ୍ୟାମ୍ ( ୪୭ )—

ଅଚିରାଦେବ ସର୍ବାର୍ଥଃ ସିଧ୍ୟତ୍ୟେଷାମଭୀପ୍‌ସିତଃ ।
ସଦ୍ଧର୍ମସ୍ୟାବବୋଧାୟ ଯେଷାଂ ନିର୍ବନ୍ଧିନୀ ମତିଃ ।୭।

ଯୋଗ୍ୟପାତ୍ର ହଅ ତୁମି ଭକ୍ତି ପ୍ରବର୍ତ୍ତାଇତେ ।
କ୍ରମେ ସବ ତତ୍ତ୍ୱ ଶୁନ, କହିୟେ ତୋମାତେ ।
ଜୀବେର ସ୍ୱରୂପ ହୟ—କୃଷ୍ଣେର ନିତ୍ୟଦାସ—
କୃଷ୍ଣେର ତଟସ୍ଥା ଶକ୍ତି—ଭେଦାଭେଦ ପ୍ରକାଶ ।୧୦୧।
ସୂର୍ଯ୍ୟାଂଶ-କିରଣ ଯେଛେ ଅଗ୍ନି ଜ୍ୱାଲାଚୟ ।
ସ୍ୱାଭାବିକ ଶକ୍ତି କୃଷ୍ଣେର ତିନପ୍ରକାର ହୟ ।୧୦୨।

---

ସଦ୍ଧର୍ମସ୍ୟ—ଭାଗବତଧର୍ମସ୍ୟ, ଅବବୋଧାୟ—ଜ୍ଞାତୁଂ, ଯେଷାଂ ମତିଃ ନିର୍ବନ୍ଧିନୀ—ଅଧ୍ୟବସିତାସ୍ୟାତ୍, ଏଷାଂ—ମହାତ୍ମନାଂ, ଅଭୀପ୍‌ସିତଃ—ବାଞ୍ଛିତଃ, ସର୍ବାର୍ଥଃ ଅଚିରାତ୍ ଏବ ସିଧ୍ୟତି । ୭ମ ଶ୍ଳୋକଃ ।

---

ଏବଂ କିପ୍ରକାରେ ମୋର ଏମାନଙ୍କ ହାତରୁ ଉଦ୍ଧାର ହେବ । ସାଧ୍ୟ ଓ ସାଧନତତ୍ତ୍ୱ କିଣ ଏ ସମସ୍ତ ବିଷୟ କୃପାପୂର୍ବକ କହିବାକୁ ଆଜ୍ଞା ହେଉ । ୯୭ ।

ଆଧ୍ୟାତ୍ମିକ— ଶାରୀରିକ ଓ ମାନସିକ ଦୁଃଖ ।

ଶାରୀରିକ ଯଥା— ଜ୍ୱରଶୂଳାଦି, ମାନସିକ ଯଥା—କାମକ୍ରୋଧାଦିଜନିତ ମନସ୍ତାପ ।

ଅଧିଭୌତିକ—ମୃଗ ପଶୁ ମନୁଷ୍ୟାଦିଜନିତ ଦୁଃଖ ।

ଅଧିଦୈବିକ—ଶୀତ ଉଷ୍ଣ ବଜ୍ରପାତାଦିଜନିତ ଦୁଃଖ ।

ଭାଗବତ ଧର୍ମର ବିଷୟ ଅବଗତ ହେବା ନିମନ୍ତେ ଯେଉଁମାନଙ୍କର ମନ ଅତ୍ୟନ୍ତ ଆଗ୍ରହଯୁକ୍ତ ହୁଏ, ସେମାନଙ୍କର ଅଭିଳଷିତ ସମସ୍ତ ବିଷୟ ଅବିଳମ୍ବରେ ସିଦ୍ଧି ହୁଏ । ୭ମ ଶ୍ଳୋକାର୍ଥ

ଶ୍ରୀମନ୍‌ମହାପ୍ରଭୁ ଶ୍ରୀସନାତନ ଗୋସ୍ୱାମୀଙ୍କୁ ଭକ୍ତିପ୍ରବର୍ତ୍ତନ କାର୍ଯ୍ୟରେ ଯୋଗ୍ୟ ନିରୂପଣ କରି ଜଗଦ୍‌ବାସୀ ଜନଙ୍କପ୍ରତି କୃପାପରବଶ ହୋଇ ଜଗତରେ ପ୍ରଚାର ନିମିତ୍ତ ସମସ୍ତ ତତ୍ତ୍ୱ ବିସ୍ତୃତରୂପେ ବୁଝାଇଲେ । ୧୦୦ ।

'କେ ଆମି' ଏହି ପ୍ରଶ୍ନର ଉତ୍ତର ଦେଉଅଛନ୍ତି ।

ସ୍ୱରୂପତଃ ଜୀବ ଶ୍ରୀକୃଷ୍ଣଙ୍କର ନିତ୍ୟସେବକ ଅର୍ଥାତ୍ ଶ୍ରୀକୃଷ୍ଣ ନିତ୍ୟ, ଜୀବ ନିତ୍ୟ, ଏ ଉଭୟଙ୍କର ସେବ୍ୟସେବକ ସମ୍ବନ୍ଧ ନିତ୍ୟ, କାରଣ ଜୀବ ଶ୍ରୀକୃଷ୍ଣଙ୍କର ତଟସ୍ଥାଖ୍ୟ ଶକ୍ତି, ଅତଏବ ଶ୍ରୀକୃଷ୍ଣ ଶକ୍ତିମାନ୍ ହେତୁ ସେବ୍ୟ, ଜୀବ ଶକ୍ତି ହେତୁ ସେବକ, ଏହି ଶକ୍ତି ଶ୍ରୀକୃଷ୍ଣଙ୍କ ସହିତ ବ୍ୟଷ୍ଟିରୂପରେ ଭେଦପ୍ରକାଶ ଓ ସମଷ୍ଟିରୂପରେ ଅଭେଦ ପ୍ରକାଶ, ଯେପରି କି କିରଣ ସୂର୍ଯ୍ୟଙ୍କ ସହିତ ସମଷ୍ଟିରୂପରେ ସୂର୍ଯ୍ୟଙ୍କ ସହିତ ଅଭେଦ, ଏବଂ ବିକ୍ଷିପ୍ତ ଅବସ୍ଥାରେ ସୂର୍ଯ୍ୟଙ୍କ ସହିତ ଭେଦ ଅର୍ଥାତ୍ ବିକ୍ଷିପ୍ତ କିରଣ ସୂର୍ଯ୍ୟ ନୁହନ୍ତି କିମ୍ବା ଯେପରି ସ୍ଫୁଲିଙ୍ଗ ସମସ୍ତ ସମଷ୍ଟିରୂପରେ ଅଗ୍ନିରେ ଥିବା ଅବସ୍ଥାରେ ଅଗ୍ନିଠାରୁ ଅଭେଦ ଏବଂ ଇତସ୍ତତଃ ବିକ୍ଷିପ୍ତ ହୋଇ ଅଗ୍ନିଠାରୁ ଭେଦ ଅର୍ଥାତ୍ ସ୍ଫୁଲିଙ୍ଗ ଅଗ୍ନି ନୁହନ୍ତି ।୧୦୨।

ତଥାହି ବିଷ୍ଣୁପୁରାଣେ ( ୧।୨୨।୫୪ )—

ଏକଦେଶସ୍ଥିତସ୍ୟାଗ୍ନେର୍ଜ୍ୟୋତ୍ସ୍ନା ବିସ୍ତାରିଣୀ ଯଥା
ପରସ୍ୟ ବ୍ରହ୍ମଣଃ ଶକ୍ତିସ୍ତଥେଦମଖିଳଂ ଜଗତ୍ ॥୮॥

ତତ୍ରୈବ ( ୧।୩।୨ )—

ଶକ୍ତୟଃ ସର୍ବଭାବାନାମଚିନ୍ତ୍ୟଜ୍ଞାନଗୋଚରାଃ ।
ଯତୋଽତୋ ବ୍ରହ୍ମଣସ୍ତାସ୍ତୁ ସର୍ଗାଦ୍ୟା ଭାବଶକ୍ତୟଃ ।
ଭବନ୍ତି ତପତାଂ ଶ୍ରେଷ୍ଠ ପାବକସ୍ୟ ଯଥୋଷ୍ଣତା ॥୯॥

କୃଷ୍ଣେର ସ୍ୱାଭାବିକ ତିନ-ଶକ୍ତି ପରିଣତି—
ଚିଚ୍ଛକ୍ତି, ଜୀବଶକ୍ତି, ଆର ମାୟାଶକ୍ତି ॥ ୧୦୩ ॥

ତଥାହି ତତ୍ରୈବ ( ୬।୭।୬୧ )—

ବିଷ୍ଣୁଶକ୍ତିଃ ପରା ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥାପରା
ଅବିଦ୍ୟାକର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ ॥୧୦॥

---

ଏକଦେଶସ୍ଥିତସ୍ୟ—ଏକସ୍ଥାନସ୍ଥିତସ୍ୟ ପ୍ରଜ୍ୱଳିତସ୍ୟାଗ୍ନେଃ ଜ୍ୟୋତ୍ସ୍ନା ଯଥା ବିସ୍ତାରିଣୀ—ଅନ୍ୟଦେଶବ୍ୟାପିନୀ ଭବେତ୍, ତଥା—ତଦ୍‌ବତ୍, ପରସ୍ୟ—ସର୍ବାଦେଃ ବ୍ରହ୍ମଣଃ ଭଗବତଃ ଶକ୍ତିଃ ଇଦଂ ଅଖିଳଂ ଚରାଚରଂ ସକଳଂ ଜଗତ୍ ସ୍ୱର୍ଗମର୍ତ୍ତ୍ୟପାତାଳାଦି ବିସ୍ତାରିଣୀ ଭବେଦିତ୍ୟର୍ଥଃ । ୮ମ ଶ୍ଲୋକଃ ।

ଶକ୍ତୟଇତି । ଲୋକେ ହି ସର୍ବେଷାଂ ଭାବାନାଂ ମଣିମନ୍ତ୍ରାଦୀନାଂ ଶକ୍ତୟୋଽଚିନ୍ତ୍ୟଜ୍ଞାନଗୋଚରାଃ ସନ୍ତି । ଯତଏବଂ ଅତଃ ବ୍ରହ୍ମଣୋଽପି ତାଃ ତଥାବିଧା ଶକ୍ତୟଃ ସର୍ଗାଦିହେତୁଭୂତାଃ ଭାବଶକ୍ତୟଃ—ସ୍ୱଭାବସିଦ୍ଧାଃ ଶକ୍ତୟଃ ସନ୍ତ୍ୟେବ ପାବକସ୍ୟ ଦାହକତ୍ୱାଦି ଶକ୍ତିବତ୍, ଅତୋ ଗୁଣାଦିହୀନସ୍ୟାପ୍ୟଚିନ୍ତ୍ୟ ଶକ୍ତିମତ୍ତ୍ୱାତ୍ ବ୍ରହ୍ମଣଃ ସର୍ଗାଦି କର୍ତ୍ତୃତ୍ୱଂ ଘଟତ ଇତ୍ୟର୍ଥଃ । ୯ମ ଶ୍ଲୋକଃ ।

ଭେଦାଭେଦତ୍ୱେ ଦୃଷ୍ଟାନ୍ତମାହ ସୂର୍ଯ୍ୟାଂଶ ଇତି । ଅତ୍ର ସୂର୍ଯ୍ୟାଦ୍ୟ—ସ୍ଥାନୀୟଃ କୃଷ୍ଣଃ ଅଂଶ କିରଣଜ୍ୱାଳା ସ୍ଥାନୀୟା ତଟସ୍ଥା ଶକ୍ତିରିତ୍ୟର୍ଥଃ । ଜୀବସ୍ୟ ତଟସ୍ଥାଶକ୍ତିତ୍ୱଂ ପ୍ରତିପାଦୟନ୍ନାହ 'ସ୍ୱାଭାବିକ' ଇତି ସାର୍ଦ୍ଧେକ । ୧୦୨ । ବି, ଚ,

---

ଏକସ୍ଥାନସ୍ଥିତ ପ୍ରଜ୍ୱଳିତ ଅଗ୍ନିର କିରଣ ଯେପରି ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହୁଏ, ତଦ୍ରୂପ ପରଂବ୍ରହ୍ମ ଭଗବାନଙ୍କର ଶକ୍ତି ( ଜୀବ ) ଏହି ଅଖିଳ ଜଗତ୍ ବ୍ୟାପି ରହିଅଛି । ୮ମ ଶ୍ଲୋକାର୍ଥ ।

ଶ୍ରୀପରାଶର କହୁଅଛନ୍ତି—ହେ ତପୋଧନ, ଏହି ଜଗତରେ ମଣିମନ୍ତ୍ରୌଷଧି ପ୍ରଭୃତିର ଶକ୍ତି ଯେତେବେଳେ ଅଚିନ୍ତ୍ୟ ଓ ବୁଦ୍ଧିର ଅଗୋଚର ସେତେବେଳେ ଅଗ୍ନିର ଉଷ୍ଣତା ଶକ୍ତି ପରି ସେହି ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର ସ୍ୱର୍ଗାଦି ସୃଷ୍ଟିର କାରଣସ୍ୱରୂପ ଯେ ସ୍ୱାଭାବିକ ଶକ୍ତି ଅଛି ସେଥିରେ ଆଶ୍ଚର୍ଯ୍ୟ କଣ । ୯ମ ଶ୍ଲୋକାର୍ଥ ।

୧୦ମ ଶ୍ଲୋକ ଅଦି: ୭ମ ପରି: ୭ମ ଶ୍ଲୋକ ଦ୍ରଷ୍ଟବ୍ୟ ।

ବିଷ୍ଣୁଙ୍କର ତିନିଗୋଟି ଶକ୍ତିର ଉପଲବ୍ଧି ହୁଏ, ସେଥି ମଧ୍ୟରୁ ପରା (ସର୍ବଶ୍ରେଷ୍ଠା) ଚିତ୍-ସ୍ୱରୂପା (ଅନ୍ତରଙ୍ଗା ଶକ୍ତି) ପ୍ରଥମ । ଅପରା ( ଅନ୍ତରଙ୍ଗାଶକ୍ତିଠାରୁ ପୃଥକ୍ ) କ୍ଷେତ୍ରଜ୍ଞନାମ୍ନୀ ଶକ୍ତି (ଜୀବଶକ୍ତି) ଦ୍ୱିତୀୟା ଏବଂ ଅନ୍ୟା ( ଅନ୍ତରଙ୍ଗା ଓ କ୍ଷେତ୍ରଜ୍ଞ ବ୍ୟତୀତ ଅନ୍ୟା ) କର୍ମସଂଜ୍ଞା ନାମ୍ନୀ ଅବିଦ୍ୟା (ମାୟା ବା ବହିରଙ୍ଗା ଶକ୍ତି) ତୃତୀୟା । ୧୦ମ ଶ୍ଲୋକାର୍ଥ ।

ତଥୈବ ( ୬।୭।୨୨।୩ )—

ଯୟା କ୍ଷେତ୍ରଜ୍ଞଶକ୍ତିଃ ସା ବେଷ୍ଟିତା ନୃପ ସର୍ବଗା ।
ସଂସାରତାପାନଖିଲାନବାପ୍ନୋତ୍ୟତ୍ର
ସନ୍ତତାନ୍ । ୧୧ ।*

ତୟା ତିରୋହିତତ୍ୱାଚ୍ଚ ଶକ୍ତିଃ କ୍ଷେତ୍ରଜ୍ଞସଂଜ୍ଞିତା ।
ସର୍ବଭୂତେଷୁ ଭୂପାଲ ତାରତମ୍ୟେନ
ବର୍ତ୍ତତେ । ୧୨ ।*

ତଥାହି ଶ୍ରୀଭଗବଦ୍ଗୀତାୟାମ୍ ( ୭।୫ )

ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍ ।
ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ
ଜଗତ୍ । ୧୩ ।

'କୃଷ୍ଣ' ଭୁଲି ସେଇ ଜୀବ—ଅନାଦି-ବହିର୍ମୁଖ ।
ଅତଏବ ମାୟା ତାରେ ଦେୟ ସଂସାରଦୁଃଖ ॥
କଭୁ ସ୍ୱର୍ଗେ ଉଠାୟ, କଭୁ ନରକେ ଡୁବାୟ ।
ଦଣ୍ଡ୍ୟଜନେ ରାଜା ଯେନ ନଦୀତେ ଚୁବାୟ ॥୧୦୫

"ଅମାରେ ଜାରେ ତାପଦେୟ" ଇତ୍ୟସ୍ୟୋତ୍ତରମାହ 'କୃଷ୍ଣଭୁଲି' ଇତି । କୃଷ୍ଣଭୁଲି କୃଷ୍ଣଦାସତ୍ୱାକରଣମିତ୍ୟର୍ଥଃ । ଅନାଦିବହିର୍ମୁଖତୟା କୃଷ୍ଣଦାସତ୍ୱାକରଣାତ୍ ମାୟୟା ଜୀବସ୍ୟ ତ୍ରିତାପ ଭୋଗ ଇତିଭାବଃ । ୧୦୫ ।ବି, ଚ,

୧୧ଶ ୧୨ଶଶ୍ଳୋକ: ମଧ୍ୟଲୀଳା ୬ଷ୍ଠପର୍ବ: ୧୧ ଓ ୧୨ଶଶ୍ଳୋକ ।

ହେ ରାଜନ୍! ସର୍ବଗା କ୍ଷେତ୍ରଜ୍ଞଶକ୍ତି (ଜୀବଶକ୍ତି) ଅବିଦ୍ୟାକର୍ତ୍ତୃକ ଆବୃତ ହୋଇ ଅର୍ଥାତ୍ କର୍ମଦ୍ୱାରା ଦେହପ୍ରାପ୍ତ ହୋଇ ଅଖିଳସଂସାର ତାପ ପ୍ରାପ୍ତ ହୁଅନ୍ତି । ୧୧ଶଶ୍ଳୋକ ।

ହେ ରାଜନ୍ ! ପୁନଶ୍ଚ ମାୟାବେଷ୍ଟନରୁ କ୍ଷେତ୍ରଜ୍ଞଶକ୍ତି ସର୍ବଗା (ମୁକ୍ତଜୀବ) ହୁଅନ୍ତି । କିନ୍ତୁ ସେ ଭଗବଦ୍‌ବୈମୁଖ୍ୟ ହେତୁ ମାୟାଦ୍ୱାରା ଆବଦ୍ଧ ହୋଇ ସର୍ବଦା ସର୍ବଭୂତରେ ଆପଣାକୁ ଉଚ୍ଚନୀଚ (ତାରତମ୍ୟ ଭାବରେ) ଅନୁଭବ କରନ୍ତି । ୧୨ଶ ଶ୍ଳୋକାର୍ଥ ।

୧୩ଶଶ୍ଳୋକ ଆଦିଲୀଳା ୨ୟପରି ୬ଷ୍ଠଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ମହାବାହୁ ଅର୍ଜୁନ ! ପୂର୍ବେ ଯେଉଁ ଅଷ୍ଟବିଧ ପ୍ରକୃତିର ବିଷୟ କହିଲି ସେମାନେ ଅପରା ଅର୍ଥାତ୍ ଜଡ଼ତ୍ୱ ହେତୁ ନିକୃଷ୍ଟା । ବର୍ତ୍ତମାନ ସେମାନଙ୍କ ଅପେକ୍ଷା ପରା (ଉତ୍କୃଷ୍ଟ) ଅପର ପ୍ରକୃତିର ବିଷୟ ଅବଗତ ହୁଅ । ସେ ପ୍ରକୃତି ଜୀବସ୍ୱରୂପା ଅର୍ଥାତ୍ କ୍ଷେତ୍ରଜ୍ଞାହେତୁ ଏହି ଜଗତକୁ ସ୍ୱକର୍ମଦ୍ୱାରା ଧାରଣ କରି ରହିଅଛି । ୧୩ଶ ଶ୍ଳୋକାର୍ଥ ।

ତ୍ରିତାପ କାହିଁକି ଦୁଃଖ ଦିଏ, ତାହାର କାରଣ କହୁଅଛନ୍ତି—ଜୀବ ଅନାଦି ବହିର୍ମୁଖ ହୋଇ କୃଷ୍ଣଙ୍କୁ ପ୍ରଭୁରୂପେ ସ୍ୱୀକାର ନକରି ତାଙ୍କର ଦାସତ୍ୱ ନ କରିବା ହେତୁ ମାୟା ଜୀବକୁ ତ୍ରିତାପ ଭୋଗ କରାଉଅଛନ୍ତି ।

ତାହାର ପ୍ରକରଣ କହୁଅଛନ୍ତି—ଯେପରି ଅପରାଧୀକୁ ରାଜା ନଦୀରେ ବୁଡ଼ାନ୍ତି ଓ ଉଠାନ୍ତି ସେହିପରି ମାୟା କୃଷ୍ଣବହିର୍ମୁଖ ଜୀବକୁ କେତେବେଳେ ନରକଯନ୍ତ୍ରଣା ଓ କେତେ-ବେଳେ ସ୍ୱର୍ଗସୁଖ ଦେଉଅଛନ୍ତି । ଏହାର ଭାବ ଏହି ଯେ, ଜୀବ ଶ୍ରୀକୃଷ୍ଣଙ୍କ ସେବା ଛାଡ଼ି ଆତ୍ମସେବା ଅନୁରକ୍ତ ହୋଇ କୃଷ୍ଣମାୟାଦ୍ୱାରା ଆବଦ୍ଧ ହୁଏ ଏବଂ ବାସନାନୁରୂପ କର୍ମ କରି ସୁଖ ଦୁଃଖ ରୂପ ସ୍ୱର୍ଗ ନରକ ଫଳ ଭୋଗୀ ହେଉଥାଏ । ଏହାହିଁ ଜୀବର ମଳିନାବସ୍ଥା ଏବଂ ତ୍ରିତାପଭୋଗ ୧୦୪।୧୦୫ ।

ତଥାହି ( ଭାଃ—୧୧।୨।୩୭ ) —

ଭୟଂ ଦ୍ୱିତୀୟାଭିନିବେଶତଃ ସ୍ୟା-
ଦୀଶାଦପେତସ୍ୟ ବିପର୍ଯ୍ୟୟୋଽସ୍ମୃତିଃ ।
ତନ୍ମାୟୟାତୋ ବୁଧ ଆଭଜେତ୍ତଂ,
ଭକ୍ତ୍ୟୈକୟେଶଂ ଗୁରୁଦେବତାତ୍ମା । ୧୪ ।

ସାଧୁ-ଶାସ୍ତ୍ର କୃପାୟ ଯଦି କୃଷ୍ଣୋନ୍ମୁଖ ହୟ ।
ସେଇ ଜୀବ ନିସ୍ତରେ, ମାୟା ତାହାରେ ଛାଡ଼ୟେ ।

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ ( ୭।୧୪ )—

ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି
ତେ । ୧୫ ।

( ଯତଃ ) ଈଶାତ୍—ଭଗବତଃ, ଅପେତସ୍ୟ—ଚ୍ୟୁତସ୍ୟ ବିମୁଖସ୍ୟ ଜୀବସ୍ୟ ଏବ ତନ୍ମାୟୟା—ତସ୍ୟ ଭଗବତଃମାୟୟା, ଅସ୍ମୃତିଃ—ସ୍ୱରୂପାସ୍ଫୂର୍ତ୍ତିର୍ଭବତି ତତଃ ବିପର୍ଯ୍ୟୟଃ—ଦେହାଦ୍ୟାତ୍ମାଭିମାନଃ ଭବତି ତତଃ ଚ, ଦ୍ୱିତୀୟାଭିନିବେଶତଃ—ଦ୍ୱିତୀୟେ ଦେହାଦୌ ଉପାଧି-ଭୂତେ ଅଭିନିବେଶତଃ ଅଭିମାନାତ୍, ଭୟଂସ୍ୟାତ୍, ( ଅତଃ ) ବୁଧଃ—ବିବେକୀ ତଂ ଈଶଂ (ପ୍ରଥମତଃ) ଆଭଜେତ୍—ଈଷତ୍ତୁଅପି ଭଜେତ୍, ତତଃ ଗୁରୁଦେବତାତ୍ମା—ଗୁରୁଃ ଏବ ଦେବତା ଆତ୍ମା ଚ ଯସ୍ୟ ତଥାଭୂତଃ ସନ୍, ଏକୟା—ନିତ୍ୟପାଦାମ୍ବୁଜୋପାସନରୂପୟା ଅବ୍ୟଭିଚାରିଣ୍ୟା, ଭକ୍ତ୍ୟା—ସାକ୍ଷାତ୍ ଭାଗବତ ଧର୍ମରୂପୟା, ଭଜେତ୍ । ୧୪ଶ ଶ୍ଲୋକଃ ।

ତଦ୍ଦୁଃଖ ନିବୃତ୍ତ୍ୟୁପାୟମାହ 'ଶାସ୍ତ୍ର' ଇତି, 'ଶାସ୍ତ୍ର' ସାଧୁକୃପୋପଦେଶେନ ଶ୍ରୀକୃଷ୍ଣ-ଭଜନାତ୍ ତଦ୍ଦୁଃଖଂ ନିବର୍ତ୍ତତେ ଇତ୍ୟର୍ଥଃ । ୧୦୭ । ବି, ଚ,

କେ ତର୍ହି ତ୍ୱାଂ ଜାନନ୍ତୀତ୍ୟତଆହ ଦୈବୀତି । ଦୈବୀ—ଅଲୌକିକୀ ଅତ୍ୟଦ୍ଭୁତେ-ତ୍ୟର୍ଥଃ, ଗୁଣମୟୀ—ସତ୍ତ୍ୱାଦିଗୁଣବିକାରାତ୍ମିକା, ମମ—ପରମେଶ୍ୱରସ୍ୟ, ଶକ୍ତି—ର୍ମାୟା ଦୁରତ୍ୟୟା—ଦୁସ୍ତରା ହି—ପ୍ରସିଦ୍ଧମେତତ୍ ତଥାପି ମାମେବ ଇତ୍ୟେବକାରେଣ ଅବ୍ୟଭିଚାରିଣ୍ୟା ଭକ୍ତ୍ୟା ଯେ ପ୍ରପଦ୍ୟନ୍ତେ—ଭଜନ୍ତି, ମାୟାମେତାଂ ସୁଦୁସ୍ତରାମପି ତେ ତରନ୍ତି ତତୋ ମାଂ ଜାନନ୍ତୀତି ଭାବ । ୧୫ଶ ଶ୍ଲୋକ ।

ଶ୍ରୀକବିଙ୍କ ପ୍ରତି କବିବାକ୍ୟ—ଭଗବତ୍ ବହିର୍ମୁଖ ଜୀବର ସ୍ୱରୂପ ବିସ୍ମୃତି ଜନ୍ମେ ଏବଂ ସେହି ହେତୁ ଲୋକର ଦେହରେ ଆତ୍ମାଭିମାନ ହୁଏ ଦ୍ୱିତୀୟବସ୍ତୁରେ ( ଦେହରେ ) ଅଭିନିବେଶ ହେତୁ ଭୟ ଜନ୍ମେ । ଅତଏବ ଜ୍ଞାନୀବ୍ୟକ୍ତି ଗୁରୁଙ୍କୁ ଈଶ୍ୱର/ଓ ଶ୍ରେଷ୍ଠଦୃଷ୍ଟିପୂର୍ବକ (ଶ୍ରୀଗୁରୁ ପଦା-ଶ୍ରୟରେ) ଐକାନ୍ତିକ ଭକ୍ତିରେ ଶ୍ରୀଭଗବାନଙ୍କୁ ଭଜନ କରିବ । ୧୪ଶ ଶ୍ଲୋକାର୍ଥ ।

ତ୍ରିତାପଦୁଃଖ ନିବୃତ୍ତିର ଉପାୟ କହୁଅଛନ୍ତି—ଶାସ୍ତ୍ର ଓ ସାଧୁ କୃପାରୁ ଉପଦେଶ ଲାଭ କରି ଜୀବ ଶ୍ରୀକୃଷ୍ଣଭଜନ କଲେ ସେ ଦୁଃଖ ନିବୃତ୍ତି ହୁଏ ଅର୍ଥାତ୍ ଜୀବ ନିତ୍ୟ ପ୍ରଭୁଙ୍କ ସେବାରୁ ନିବୃତ୍ତ ହୋଇଥିବାରୁ ମାୟାଦେବୀ ତ୍ରିତାପ ଦୁଃଖ ଦେବାରେ ପ୍ରବୃତ୍ତ ହୁଅନ୍ତି, ପୁଣି ଜୀବ ନିତ୍ୟ-ପ୍ରଭୁଙ୍କର ନିତ୍ୟସେବାରେ ପ୍ରବୃତ୍ତ ହେବା ମାତ୍ରେ ମାୟାଦେବୀ ତ୍ରିତାପ ଦୁଃଖଦାନରୁ ନିବୃତ୍ତ ହୁଅନ୍ତି । ୧୦୭ ।

ଶ୍ରୀଭଗବାନ ଅର୍ଜୁନଙ୍କୁ କହୁଅଛନ୍ତି—ମୋର ( ପରମେଶ୍ୱରଙ୍କର ) ଏହି ଅତ୍ୟଦ୍ଭୁତା ତ୍ରିଗୁଣାତ୍ମିକା ଶକ୍ତି (ମାୟା) ଦୁସ୍ତରଣୀୟା ଏହା ପ୍ରସିଦ୍ଧ, ତଥାପି ଯେଉଁ ବ୍ୟକ୍ତି ଐକାନ୍ତିକୀ ଭକ୍ତି-ପୂର୍ବକ ମୋତେ ଭଜେ ସେ ଏହି ଦୁସ୍ତର ମାୟାକୁ ପାର ହୁଏ ଅର୍ଥାତ୍ ମୋତେ ଜାଣି ପାରେ । ୧୫ଶ ଶ୍ଲୋକାର୍ଥ ।

| | |
|---|---|
| ମାୟାମୁଗ୍ଧ-ଜୀବେର ନାହି ସ୍ୱତଃ କୃଷ୍ଣଜ୍ଞାନ । | ବେଦ-ଶାସ୍ତ୍ରେ କହେ – ସମ୍ବନ୍ଧ, ଅଭିଧେୟ ପ୍ରୟୋଜନ । |
| ଜୀବେର କୃପାୟ କୈଲ କୃଷ୍ଣ ବେଦ-ପୁରାଣ ।୧୦୭ | କୃଷ୍ଣ-ପ୍ରାପ୍ୟ ସମ୍ବନ୍ଧ, ଭକ୍ତି-ପ୍ରାପ୍ତ୍ୟେର ସାଧନ ॥ |
| ଶାସ୍ତ୍ର-ଗୁରୁ-ଆତ୍ମାରୂପେ ଆପନା ଜାନାନ । | ଅଭିଧେୟ ନାମ—ଭକ୍ତି, ପ୍ରେମ – ପ୍ରୟୋଜନ । |
| 'କୃଷ୍ଣ ମୋର ପ୍ରଭୁ ତ୍ରାତା' ଜୀବେର ହୟ ଜ୍ଞାନ ॥ | ପୁରୁଷାର୍ଥଶିରୋମଣି ପ୍ରେମ ମହାଧନ । ୧୧୦ । |

ଜୀବାଏବ ଭଗବନ୍ତଂ କୃଷ୍ଣଂ ଜ୍ଞାତ୍ୱା ଭଜନ୍ତୁ କିଂ ଶାସ୍ତ୍ରସାଧୁକୃପୟା ଇତ୍ୟତଆହ 'ମାୟାମୁଗ୍ଧ' ଇତି । ମାୟାମୁଗ୍ଧତ୍ୱେନ ଜୀବାନାଂ ସ୍ୱତଃ ଭଗବଜ୍ଜ୍ଞାନଂ ନାସ୍ତି ଅତଶ୍ଚୈବ ତତ୍କୃପା ଅପେକ୍ଷ୍ୟତେ ଇତ୍ୟର୍ଥଃ । ବି, ଚ,

ନନୁ ସର୍ବେଶ୍ୱରୋଽପି ଶ୍ରୀକୃଷ୍ଣଃ କିଅଂ ମାୟାମୋହନଂ ସହତେ ତଥାସତି ତସ୍ୟ କୃପାଳୁତା ହାନି ସ୍ତ୍ରୀବାହ "ଜୀବେ" ଇତି ସାର୍ଦ୍ଧୈକେନ, ଅୟମ୍ଭାବଃ ସର୍ବେଶ୍ୱରୋଽପି ଶ୍ରୀକୃଷ୍ଣଃ ଅନାଦିଭକ୍ତାୟାଂ ମାୟାୟାଂ ଦାକ୍ଷିଣ୍ୟଂ ତ୍ୟକ୍ତୁଂ ନ ଶକ୍ନୋତି ତଥାପି କୃପୟା ଜୀବାନାଂ ସ୍ୱସାମୁଖ୍ୟଂ ବାଞ୍ଛନ୍ ଶାସ୍ତ୍ରାଦିଦ୍ୱାରେଣ ଆତ୍ମାନମୁପଦିଶତି, ତେନ ଚ ଜୀବାନାଂ ତତ୍ସାମୁଖ୍ୟଂ ଭବେତ୍ତୁ ଅତୋ ନ ତସ୍ୟ କୃପାଳୁତାହାନିଃ । ୧୦୭।୧୦୮ । ବି, ଚ,

ଶ୍ରୀକୃଷ୍ଣଭଜନାତ୍ ମାୟାଦୁଃଖଂ ନିବର୍ତ୍ତତେ ଇତି ଯଦୁକ୍ତଂ ତଦେବ ବିଶଦୟତି 'ବେଦଶାସ୍ତ୍ର'ଇତ୍ୟାଦିନା । ପ୍ରାପ୍ତ୍ୟେର ସାଧନ କୃଷ୍ଣପ୍ରାପ୍ତେଃ ଭକ୍ତିରେବ ସାଧନମିତ୍ୟର୍ଥଃ ।୧୦୯। ବି,ଚ

---

ମାୟାମୋହିତ ଜୀବମାନଙ୍କର ସ୍ୱାଭାବିକ ଶ୍ରୀକୃଷ୍ଣ ଯେ ପ୍ରଭୁ ବା ସେବ୍ୟ ଏ ଜ୍ଞାନ ହୁଏ ନାହିଁ, ତେଣୁ ସେମାନେ କୃଷ୍ଣାଶ୍ରୟ କରନ୍ତି ନାହିଁ ଓ ମାୟାଦେବୀଙ୍କ ହାତରୁ ଉଦ୍ଧାର ପାଆନ୍ତି ନାହିଁ । ଜୀବମାନଙ୍କୁ ମାୟାଦେବୀଙ୍କ କବଳରୁ ଉଦ୍ଧାର କରିବା କାରଣ କୃପାଳୁ ଶ୍ରୀକୃଷ୍ଣ ବେଦ ଓ ପୁରାଣ ସୃଷ୍ଟି କରିଅଛନ୍ତି, ଯହିଁରେ ଶ୍ରୀକୃଷ୍ଣ ଆପଣାକୁ ଶାସ୍ତ୍ରରୂପରେ ଗୁରୁରୂପରେ ଓ ଆତ୍ମାରୂପରେ ଜଣାନ୍ତି । ବେଦ ଓ ପୁରାଣ ପାଠ କରି ମାୟାମୋହିତ ଜୀବ ଶ୍ରୀକୃଷ୍ଣ ଯେ ପ୍ରଭୁ ଓ ମାୟାରୁ ଉଦ୍ଧାରକର୍ତ୍ତା ଏହି ଜ୍ଞାନ ଲାଭ କରେ ।

ଏହାର ଭାବାର୍ଥ ଏହି ଯେ—ଯଦି କେହି କହନ୍ତି ଯେ—ଜୀବ ନିଜ ଜ୍ଞାନଦ୍ୱାରା ଶ୍ରୀକୃଷ୍ଣଙ୍କୁ ଭଜନ କରିବେ, ଶାସ୍ତ୍ର ଓ ସାଧୁକୃପାର ପ୍ରୟୋଜନ କଣ ଏହି ହେତୁ କହୁଅଛନ୍ତି— ମାୟାମୁଗ୍ଧତାବଶତଃ ଜୀବର ସ୍ୱତଃସିଦ୍ଧ ଭଗବତ୍ ଜ୍ଞାନ ହୁଏ ନାହିଁ, ଅତଏବ ତାହା ଭଗବାନଙ୍କ କୃପାର ଅପେକ୍ଷା କରେ । ଯଦି ଏପରି ପ୍ରଶ୍ନ ହୁଏ ଶ୍ରୀକୃଷ୍ଣ ସର୍ବେଶ୍ୱର ହୋଇ କି ସକାଶେ ଜୀବର ମାୟାମୋହନ ସହ୍ୟ କରନ୍ତି ଅର୍ଥାତ୍ କୃପାପୂର୍ବକ ମାୟାଙ୍କ ହାତରୁ ତତ୍‌କ୍ଷଣାତ୍ ଉଦ୍ଧାର କରନ୍ତି ନାହିଁ କାହିଁକି ? ଏହାର ଉତ୍ତର ଏହି ଯେ—ଶ୍ରୀକୃଷ୍ଣ ସର୍ବେଶ୍ୱର ହୋଇ ସୁଦ୍ଧା ଅନାଦିକାଳର ଭକ୍ତ ମାୟାଦେବୀଙ୍କ ପ୍ରତି ଦାକ୍ଷିଣ୍ୟଯୁକ୍ତ ଜୀବକୁ ତାଙ୍କ ହାତରୁ ସ୍ୱତଃଉଦ୍ଧାର ନ କରି କୃପାପୂର୍ବକ ଜୀବକୁ ନିଜ ଉନ୍ମୁଖୀ ହେବାର ବାଞ୍ଛା କରି ଶାସ୍ତ୍ରାଦିଦ୍ୱାରା ସେପରି ଉପଦେଶ ଦିଅନ୍ତି, ତଦ୍ଦ୍ୱାରା ଜୀବ ଶ୍ରୀକୃଷ୍ଣୋନ୍ମୁଖୀ ହୋଇ ମାୟାଙ୍କ କବଳରୁ ଉଦ୍ଧାର ପାଆନ୍ତି । ଏହିହେତୁ ତାଙ୍କର ଜୀବ ପ୍ରତି କୃପାଳୁତାର ହାନି ହେଲା ନାହିଁ । ୧୦୭ ୧୦୮ ।

ଶ୍ରୀକୃଷ୍ଣଙ୍କୁ ଭଜନ କଲେ ମାୟା ଦୁଃଖରୁ ଜୀବ ଉଦ୍ଧାର ପାଏ । ତାହା ବିଶଦରୂପେ ବୁଝାଉଅଛନ୍ତି—ବେଦାଦି ଶାସ୍ତ୍ରରେ ସମ୍ବନ୍ଧ ଅଭିଧେୟ ଓ ପ୍ରୟୋଜନ ଏହି ତିନି ତତ୍ତ୍ୱ ବିଷୟ ଆଲୋଚିତ ହୋଇଅଛି । ସେହି ତିନି ତତ୍ତ୍ୱ ମଧ୍ୟରୁ ଶ୍ରୀକୃଷ୍ଣପ୍ରାପ୍ତିହିଁ ସମ୍ବନ୍ଧତତ୍ତ୍ୱ ଏବଂ ପ୍ରେମ

କୃଷ୍ଣମାଧୁର୍ଯ୍ୟସେବାନନ୍ଦପ୍ରାପ୍ତିର କାରଣ ।
କୃଷ୍ଣସେବା କରେ କୃଷ୍ଣରସ-ଆସ୍ୱାଦନ । ୧୧୧ ।
ଇହାତେ ଦୃଷ୍ଟାନ୍ତ—ଯୈଛେ ଦରିଦ୍ରେର ଘରେ ।
ସର୍ବଜ୍ଞ ଆସି ଦୁଃଖୀ ଦେଖି ପୁଛୟେ ତାହାରେ—
ତୁମି କେନେ ଦୁଃଖୀ, ତୋମାର ଆଛେ ପିତୃଧନ ।
ତୋମାରେ ନା କହିଲ, ଅନ୍ୟତ୍ର ଛାଡ଼ିଲ ଜୀବନ ।
ସର୍ବଜ୍ଞେର ବାକ୍ୟେ କରେ ଧନେର ଉଦ୍ଦେଶେ ।
ଐଛେ ବେଦ ପୁରାଣ ଜୀବେ କୃଷ୍ଣ ଉପଦେଶେ ।
ସର୍ବଜ୍ଞେର ବାକ୍ୟେ – ମୂଲଧନ ଅନୁବନ୍ଧ ।
ସର୍ବଶାସ୍ତ୍ରେ ଉପଦେଶେ—ଶ୍ରୀକୃଷ୍ଣ ସମ୍ବନ୍ଧ ।୧୧୫।
'ବାପେର ଧନ ଆଛେ' ଜ୍ଞାନେ ଧନ ନାହି ପାୟ ।
ତବେ ସର୍ବଜ୍ଞ କହେ ତାରେ ପ୍ରାପ୍ତ୍ୟେର ଉପାୟ ।
ଏଇସ୍ଥାନେ ଆଛେ ଧନ, ଯଦି ଦକ୍ଷିଣେ ଖୁଦିବେ ।
ଭୀମରୁଲ ବରୁଲୀ ଉଠିବେ, ଧନ ନା ପାଇବେ ।
ପଶ୍ଚିମେ ଖୁଦିବେ, ତାହାଁ ଯକ୍ଷ ଏକ ହୟ ।
ସେ ବିଘ୍ନ କରିବେ, ଧନ ହାତେ ନା ପଡ଼ୟ ।
ଉତ୍ତରେ ଖୁଦିଲେ ଆଛେ କୃଷ୍ଣ ଅଜଗରେ ।
ଧନ ନାହି ପାବେ, ଖୁଦିତେ ଗିଲିବେ ସଭାରେ ।
ପୂର୍ବଦିଗେ ତାତେ ମାଟୀ ଅଳ୍ପ ଖୁଦିତେ ।
ଧନେର ଝାରି ପଡ଼ିବେକ ତୋମାର ହାତେତେ ।
ଐଛେ ଶାସ୍ତ୍ର କହେ—କର୍ମ ଯୋଗ ଜ୍ଞାନ ତ୍ୟଜି ।
ଭକ୍ତ୍ୟେ କୃଷ୍ଣ ବଶ ହୟ, ଭକ୍ତ୍ୟେ ତାଁରେ ଭଜି ।୧୨୧

ପ୍ରୟୋଜନତତ୍ତ୍ୱ ଅର୍ଥାତ୍ ପ୍ରେମହିଁ ଏହି ଜୀବର ଉଦ୍ଦେଶ୍ୟ ବା ଅଭିଳଷିତ ଫଳ । ସେହି ପ୍ରେମ ଚତୁର ପୁରୁଷାର୍ଥଠାରୁ ଶ୍ରେଷ୍ଠ । ଅତଏବ ସେମାନଙ୍କର ( ଧର୍ମ, ଅର୍ଥ, କାମ, ମୋକ୍ଷ, ) ଶିରୋମଣି । ୧୦୯ । ୧୧୦ ।

ଏହାର ଭାବ ଏହି ଯେ—ସାଧନ ଭକ୍ତିଦ୍ୱାରା ଶ୍ରୀକୃଷ୍ଣଙ୍କ ସେବା କଲେ ଶ୍ରୀକୃଷ୍ଣରସାସ୍ୱାଦନଦ୍ୱାରା ସୁଖ ଲାଭ ହୁଏ ଏବଂ ଆନୁଷଙ୍ଗରେ ମାୟାଦୁଃଖ ନଷ୍ଟ ହୁଏ । ତାହା ନିମ୍ନଲିଖିତ ଉଦାହରଣଦ୍ୱାରା ବୁଝାଉଅଛନ୍ତି । ୧୧୧ ।

ଧନ ଯେ ଅଛି ଏହା ଯେପରି ସର୍ବଜ୍ଞଙ୍କ କଥାରୁ ଜଣାଯାଏ ସେହିପରି ଶ୍ରୀକୃଷ୍ଣ ଅଛନ୍ତି, ଏହି କଥା ବେଦ ଓ ପୁରାଣାଦିରୁ ଜଣାଯାଏ, ଏଠାରେ ଧନ ଯେପରି ମୂଳ ବା ଲକ୍ଷ୍ୟ ବସ୍ତୁ ସେହିପରି ସର୍ବଶାସ୍ତ୍ରରେ ଭଗବାନ୍ ଶ୍ରୀକୃଷ୍ଣହିଁ ଲକ୍ଷ୍ୟ ବସ୍ତୁ, ଅତଏବ ସେ ମୂଳ ବା ସମ୍ବନ୍ଧ ।୧୧୪ ୧୧୫

ଅନୁବନ୍ଧ—ଲକ୍ଷ୍ୟବସ୍ତୁ ।

ଧନ ଅଛି ଏହି ଜ୍ଞାନଦ୍ୱାରା ଧନ ଲାଭ ହୁଏ ନାହିଁ, ଅତଏବ ଦୁଃଖନାଶ ହୁଏ ନାହିଁ, ସେହିପରି ଭଗବାନଙ୍କ ତତ୍ତ୍ୱଜ୍ଞାନଦ୍ୱାରା ଭଗବତ୍ ପ୍ରାପ୍ତି ହୁଏ ନାହିଁ; ସୁତରାଂ ମାୟାଦେବୀଙ୍କ ହସ୍ତରୁ ମୁକ୍ତିଲାଭ ହୁଏ ନାହିଁ, ଯେପରି ଧନପ୍ରାପ୍ତିର ଉପାୟ ଜାଣି ତଦୁଚିତ କାର୍ଯ୍ୟ କଲେ ଧନ ପ୍ରାପ୍ତି ହୁଏ, ସେହିପରି ଭକ୍ତିବିଷୟକ ଜ୍ଞାନଲାଭ କରି ତାହା ସାଧନ କଲେ କୃଷ୍ଣପ୍ରାପ୍ତି ହୁଅନ୍ତି । ଏଠାରେ କର୍ମ, ଜ୍ଞାନ, ଓ ଯୋଗ ମାର୍ଗର ରୂପକଭାବରେ ହେୟତା ପ୍ରତିପାଦନ କରୁଅଛନ୍ତି, ଯେପରି କ ଦୁଃଖନାଶ ନିମିତ୍ତ ଧନଲାଭ ଆଶାରେ ଦକ୍ଷିଣଦିଗ ଖୋଳିଲେ ବରୁଡି ବାହାରି ବଳି ଅପାର ଦୁଃଖ ଦିଅନ୍ତି । ସେହିପରି ଯଜ୍ଞାଦି କର୍ମମାର୍ଗରେ ପଶୁହନନାଦି କର୍ମଦ୍ୱାରା କର୍ମୀଜୀବର ସଂସାର ଦୁଃଖ ନିବୃତ୍ତି ନ ହୋଇ ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହୁଏ ଏବଂ ଯେପରି କ ସେହି ଦୁଃଖନାଶ ନିମିତ୍ତ ଧନଲାଭ ଆଶାରେ ପଶ୍ଚିମଦିଗ ଖୋଳିଲେ ଯକ୍ଷ ଧନ ଯୋଗାଇ ରଖି ଲାଭ କରାଇଦିଏ ନାହିଁ, ସେହିପରି ଯୋଗ ମାର୍ଗରେ ଜୀବ କୃଷ୍ଣଲାଭ ନ କରି ଅଣିମାଦି ସିଦ୍ଧିଦ୍ୱାରା ପ୍ରତାରିତ ହୁଅନ୍ତି । ପୁଣି ଯେପରି ସେହି ଦୁଃଖନାଶ ନିମିତ୍ତ ଧନଲାଭ ଆଶରେ ଉତ୍ତରଦିଗ ଖୋଳିଲେ ଅଜଗରସର୍ପ ଗିଳିଦିଏ, ଧନ ତ ମିଳେ ନାହିଁ ବରଂ ପ୍ରାଣ ପର୍ଯ୍ୟନ୍ତ ଯାଏ, ସେହିପରି ଜୀବ ଜ୍ଞାନମାର୍ଗରେ ଶ୍ରୀକୃଷ୍ଣଙ୍କୁ ତ ଲାଭ କରନ୍ତି ନାହିଁ ବରଂ ବ୍ରହ୍ମସାୟୁଜ୍ୟ ମୁକ୍ତିଦ୍ୱାରା ନିଜର ସ୍ୱତନ୍ତ୍ର ଜୀବତ୍ୱ ହରାଇ ବସନ୍ତି ।

ତଥାହି ( ଭାଃ—୧୧,୧୪।୨୦ )—
ନ ସାଧୟତି ମାଂ ଯୋଗୋ ନ ସାଙ୍ଖ୍ୟଂ ଧର୍ମ୍ମ ଉଦ୍ଧବ ।
ନ ସ୍ୱାଧ୍ୟାୟସ୍ତପସ୍ତ୍ୟାଗୋ ଯଥା ଭକ୍ତିର୍ମ୍ମମୋ-
ର୍ଜ୍ଜିତା । ୧୭ ।

ତଥାହି ତତ୍ରୈବ ( ୧୧।୧୪।୨୧ )—
ଭକ୍ତ୍ୟାହମେକୟା ଗ୍ରାହ୍ୟଃ ଶ୍ରଦ୍ଧୟାତ୍ମା ପ୍ରିୟଃ ସତାମ୍ ।
ଭକ୍ତିଃ ପୁନାତି ମନ୍ନିଷ୍ଠା ଶ୍ୱପାକାନପି ସମ୍ଭବାତ୍ । ୧୮ ।

ଅତଏବ ଭକ୍ତି—କୃଷ୍ଣପ୍ରାପ୍ତିର ଉପାୟ ।
'ଅଭିଧେୟ' ବଲି ତାରେ ସର୍ବଶାସ୍ତ୍ରେ ଗାୟ ।
ଧନ ପାଇଲେ ଯୈଛେ ସୁଖଭୋଗ-ଫଲ ପାୟ ।
ସୁଖଭୋଗ ହୈତେ ଦୁଃଖ ଆପନି ପାଲାୟ । ୧୨୩ ।
ତୈଛେ ଭକ୍ତି ଫଲ କୃଷ୍ଣେ ପ୍ରେମ ଉପଜାୟ ।
ପ୍ରେମେ କୃଷ୍ଣାସ୍ୱାଦ ହୈଲେ ଭବ ନାଶ ପାୟ ।
'ଦାରିଦ୍ର୍ୟନାଶ ଭବକ୍ଷୟ' ପ୍ରେମେର ଫଲ ନୟ ।
'ଭୋଗ-ପ୍ରେମସୁଖ' ମୁଖ୍ୟ ପ୍ରୟୋଜନ ହୟ । ୧୨୪ ।

---

ସତାଂ ପ୍ରିୟଃ ଆତ୍ମାଅହଂ ଏକୟା—କେବଲୟା ଅନନ୍ୟପ୍ରୟୋଜନୟା, ଶ୍ରଦ୍ଧୟା—ଶ୍ରଦ୍ଧାପୂର୍ବିକୟା ଭକ୍ତ୍ୟା ଗ୍ରାହ୍ୟଃ—କ୍ରମାଦ୍‌ବଶୀକାର୍ଯ୍ୟଃ, ଭକ୍ତିଃ, ମନ୍ନିଷ୍ଠା—ମୟିଦାର୍ଢ୍ୟଂ ଗତାସତୀ, ଶ୍ୱପାକାନ୍—ଚଣ୍ଡାଲାନ୍, ସମ୍ଭବାତ୍—ଜାତଦୋଷାତ୍, ଅପି ପୁନାତି । ୧୮ଶ ଶ୍ଳୋକ ।

---

ପୁଣି ଯେପରି ଜୀବ ଦୁଃଖ ନିବୃତ୍ତି ନିମିତ୍ତ ଓ ଧନଲାଭ ଆଶାରେ ପୂର୍ବଦଗର ଅଳ୍ପ ମାଟି ଖୋଳିବା ମାତ୍ର ଧନର ଗଗେରି ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ଲକ୍ଷ୍ୟବସ୍ତୁ ଅନାୟାସରେ ଲାଭ ହୁଏ, ସେହିପରି ଭକ୍ତିମାର୍ଗରେ ଜୀବ ଅଳ୍ପ ସାଧନରେ ଶ୍ରୀକୃଷ୍ଣପ୍ରାପ୍ତ ହୁଅନ୍ତି । ଅର୍ଥାତ୍ ଶ୍ରୀକୃଷ୍ଣ ଭକ୍ତିର ବଶ୍ୟ ଓ କେବଳ ଭକ୍ତିର ଲଭ୍ୟ । ୧୧୬—୧୨୧ ।

ଜାତି—ପାତକବିଶେଷ ।

୧୬ଶ ଶ୍ଳୋକାନ୍ୱୟ ଆଦି: ୧୭ଶ ପରି ୫ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ଉଦ୍ଧବ ! ମୋ ପ୍ରତି ସାଧନାତ୍ମିକା ଭକ୍ତି ଯେପରି ମୋତେ ବଶୀଭୂତ କରେ, ସେପରି ଅଷ୍ଟାଙ୍ଗଯୋଗ, ସାଙ୍ଖ୍ୟ, ଜ୍ଞାନ, ଧର୍ମ, ବେଦାଧ୍ୟୟନ, ତପସ୍ୟା ଓ ସନ୍ନ୍ୟାସ କରି ପାରେ ନାହିଁ । ୧୭ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ କହୁଅଛନ୍ତି— ସାଧୁମାନଙ୍କର ଅତିପ୍ରିୟ ଆତ୍ମସ୍ୱରୂପ ଯେ ମୁଁ ( ସେହି ମୁଁ ) ଏକମାତ୍ର ଶ୍ରଦ୍ଧାପୂର୍ବିକା ଭକ୍ତିଦ୍ୱାରା କ୍ରମେ ବଶୀଭୂତ ହୁଏଁ । ମୋଠାରେ ଦୃଢ଼ାଭକ୍ତି ଚଣ୍ଡାଲମାନଙ୍କୁ ଜାତଦୋଷରୁ ସୁଦ୍ଧା ପବିତ୍ର କରେ । ୧୮ଶ ଶ୍ଳୋକାର୍ଥ ।

ପୂର୍ବୋକ୍ତରୂପେ ଜଣାଗଲା ଯେ—ଭକ୍ତି ସାଧନହିଁ ଶ୍ରୀକୃଷ୍ଣ ପ୍ରାପ୍ତିର ଏକମାତ୍ର ଉପାୟ, ଏହାକୁ ଅଭିଧେୟ ବୋଲି ବେଦାଦି ସମସ୍ତ ଶାସ୍ତ୍ର ପ୍ରକାଶ କରିଅଛନ୍ତି, ଯେପରି ଧନଲାଭ ହେଲେ ସୁଖଭୋଗ-ରୂପ ଫଳ ସେଥିରୁ ମିଳେ ଏବଂ ତଦ୍ଦ୍ୱାରା ଦୁଃଖ ଆପେ ନାଶ ହୁଏ, ସେହିପରି ଭକ୍ତିଦ୍ୱାରା ଶ୍ରୀକୃଷ୍ଣଲାଭ ହେଲେ ତାହାର ଫଳ ପ୍ରେମଦ୍ୱାରା ଶ୍ରୀକୃଷ୍ଣ ଆସ୍ୱାଦିତ ହୁଅନ୍ତି ଏବଂ ମାୟା ଆପେ ଅନ୍ତର ହୁଅନ୍ତି । ଯେପରି ଧନଲାଭର ପ୍ରଧାନ ଫଳ ଭୋଗ ଏବଂ ଦାରିଦ୍ର୍ୟନାଶ ଆନୁସଙ୍ଗିକ ଫଳ, ସେହିପରି ଶ୍ରୀକୃଷ୍ଣଲାଭର ମୁଖ୍ୟଫଳ ପ୍ରେମ ଏବଂ ସଂସାର ଯାତନାକ୍ଷୟ ତାହାର ଆନୁସଙ୍ଗିକ ଫଳ । ୧୨୨ ରୁ ୧୨୪ ।

ବେଦଶାସ୍ତ୍ରେ କହେ—ସମ୍ବନ୍ଧ, ଅଭିଧେୟ, ପ୍ରୟୋଜନ ।
କୃଷ୍ଣ, କୃଷ୍ଣଭକ୍ତି, ପ୍ରେମ—ତିନ ମହାଧନ ।
ବେଦାଦି ସକଳ ଶାସ୍ତ୍ରେ କୃଷ୍ଣ ମୁଖ୍ୟ ସମ୍ବନ୍ଧ ।
ତାଁର ଜ୍ଞାନେ ଆନୁଷଙ୍ଗେ ଯାୟ ମାୟାବନ୍ଧ ।୧୨୭।

ତଥାହି ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ
ବ୍ୟଭିଚାରିଲହର୍ଯ୍ୟାମ୍ (୨୩),
ହରିଭକ୍ତିବିଲାସେ (୧।୨୮),
ଲଘୁଭାଗବତାମୃତେ ପୂର୍ବଖଣ୍ଡେ (୨।୩),
ପଦ୍ମ-ପାତାଳଖଣ୍ଡବଚନମ୍ (୯୩।୨୭)

ବ୍ୟାମୋହାୟ ଚରାଚରସ୍ୟ ଜଗତ-
ସ୍ତେ ତେ ପୁରାଣାଗମା
ସ୍ତାଂ ତାମେବ ହି ଦେବତାଂ ପରମିକାଂ
ଜଲ୍ପନ୍ତୁ କଳ୍ପାବଧି ।
ସିଦ୍ଧାନ୍ତେ ପୁନରେକ ଏବ ଭଗବାନ୍
ବିଷ୍ଣୁଃ ସମସ୍ତାଗମ
ବ୍ୟାପାରେଷୁ ବିବେଚନବ୍ୟତିକରଂ
ନୀତେଷୁ ନିଶ୍ଚୀୟତେ ।୧୮।

ଗୌଣ-ମୁଖ୍ୟ-ବୃତ୍ତି କି ଅନ୍ୱୟ-ବ୍ୟତିରେକେ ।
ବେଦେର ପ୍ରତିଜ୍ଞା କେବଲ—କହୟେ କୃଷ୍ଣକେ

ତେତେ ପୁରାଣାଗମାଃ ଚରାଚରସ୍ୟ ଜଗତଃ ବ୍ୟାମୋହାୟ—ବ୍ୟାମୋହଂ ଉତ୍ପାଦୟିତୁଂ କଳ୍ପାବଧି-କଳ୍ପକାଳପର୍ଯ୍ୟନ୍ତଂ, ତାଂ ତାଂ ଦେବତାଂ ଏବ ପରମିକାଂ ହି ଜଲ୍ପନ୍ତୁ ପୁନଃ ସମସ୍ତାଗମ-ବ୍ୟାପାରେଷୁ—ସର୍ବଶାସ୍ତ୍ରାଣାଂ ରୂଢ଼୍ୟାଦିବୃତ୍ତିଷୁ ବିବେଚନବ୍ୟତିକରଂ — ବିବେଚନଂ—ବିଚାରଃ ବ୍ୟତିକରଃ—ଆସଙ୍ଗଃ ତଂ, ନୀତେଷୁ (ତତ୍ତଦ୍‌ବ୍ୟାପାରେଷୁ) ସିଦ୍ଧାନ୍ତେ (ସତି) ଏକ ଏବ ଭଗବାନ୍‌ବିଷ୍ଣୁଃ ନିଶ୍ଚୀୟତେ । ୧୮ଶ ଶ୍ଳୋକ ।

ନନୁ ଏକଃ ଶ୍ରୀକୃଷ୍ଣ ଏବ ବେଦାଦି ସର୍ବଶାସ୍ତ୍ରାଣାଂ ସମ୍ବନ୍ଧ ଇତି ଯଦୁକ୍ତଂ ତତ୍ତୁ ସର୍ବତ୍ର ନୈବ ପ୍ରତୀୟତେ ତନ୍ ତନ୍ ସ୍ୱର୍ଗାଦୀନାଂ ସମ୍ବନ୍ଧ କଥନାଦିତ୍ୟତ ଆହ ‘ଗୌଣ’ ଇତି । ଗୌଣବୃତ୍ତିଃ—ତାତ୍ପର୍ଯ୍ୟ ବୃତ୍ତିଃ, ଅୟମର୍ଥଃ, ସ୍ୱର୍ଗାଦୀନାଂ ଯତ୍ର ସମ୍ବନ୍ଧତ୍ୱମୁକ୍ତଂ ତଦପି ତାତ୍ପର୍ଯ୍ୟବୃତ୍ତ୍ୟା ଶ୍ରୀକୃଷ୍ଣ ଏବ ପର୍ଯ୍ୟବସୀୟତେ ସର୍ବ ସମ୍ବନ୍ଧାଶ୍ରୟତ୍ୱାତ୍ । ତଥାସତି ଶ୍ରୀକୃଷ୍ଣ ଏବ ବେଦାଦୀନାଂ ମୁଖ୍ୟଃ ସମ୍ବନ୍ଧଃ ଅତସ୍ତତ୍ର ନ ଦୋଷଃ ଇତି ଭାବଃ । ୧୨୮ । ଚ. ଚ,

ଅତଏବ ବେଦାଦି ଶାସ୍ତ୍ରମାନଙ୍କରେ ଶ୍ରୀକୃଷ୍ଣ ମୁଖ୍ୟ (ମୂଳ) ସମ୍ବନ୍ଧ ବୋଲି ନିରୂପିତ ହୋଇଅଛନ୍ତି । ୧୨୭ ।

ଯେଉଁ ସମସ୍ତ ପୁରାଣଶାସ୍ତ୍ରରେ ଭଗବାନ୍ ବିଷ୍ଣୁଙ୍କର ମାହାତ୍ମ୍ୟ ବର୍ଣ୍ଣନ ହୋଇ ନାହିଁ ସେହି ସେହି ପୁରାଣ ଓ ତନ୍ତ୍ରଶାସ୍ତ୍ରମାନେ ଜଗତରେ ଜୀବ ଅର୍ଥାତ୍ ମନୁଷ୍ୟମାନଙ୍କୁ ମୋହିତ କରିବା ସକାଶେ କଳ୍ପକାଳପର୍ଯ୍ୟନ୍ତ ସେହି ସେହି ଶାସ୍ତ୍ର ପ୍ରତିପାଦିତ ଦେବତାଙ୍କୁ ଶ୍ରେଷ୍ଠ ବୋଲି କୀର୍ତ୍ତନ କରନ୍ତୁ ନା କାହିଁକି; କିନ୍ତୁ ସମୁଦାୟ ଆଗମଶାସ୍ତ୍ରର ରୂଢ଼୍ୟାଦି ବୃତ୍ତିର ବିଚାରଶକ୍ତି ଲାଭ ହେଲେ ସେହିରୂପ ବିଚାରଦ୍ୱାରା ଭଗବାନ ବିଷ୍ଣୁ ଯେ ସର୍ବାରାଧ୍ୟ ଏହି ସିଦ୍ଧାନ୍ତ ନିଶ୍ଚିତ ହୁଏ । ୧୮ଶ ଶ୍ଳୋକାର୍ଥ

ଯଦି କୁହ ବେଦରେ କୌଣସି କୌଣସି ସ୍ଥାନରେ ସ୍ୱର୍ଗାଦିକୁ ଲଭ୍ୟବସ୍ତୁ ଅର୍ଥାତ୍ ସମ୍ବନ୍ଧ ବୋଲି କୁହା ଯାଇଅଛି, ଏ ସ୍ଥଳେ ଶ୍ରୀକୃଷ୍ଣ କିପରି ମୁଖ୍ୟ ସମ୍ବନ୍ଧ ହେଲେ ? ଏହି ହେତୁ କହୁଅଛନ୍ତି—ଗୌଣବୃତ୍ତିଦ୍ୱାରା, (ତାତ୍ପର୍ଯ୍ୟାର୍ଥଦ୍ୱାରା) ଅର୍ଥାତ୍ ସ୍ୱର୍ଗାଦିଫଳର ମୂଳାଶ୍ରୟ ଶ୍ରୀକୃଷ୍ଣ ହେତୁ ଶ୍ରୀକୃଷ୍ଣହିଁ ତାତ୍ପର୍ଯ୍ୟଦ୍ୱାରା ମୁଖ୍ୟ ସମ୍ବନ୍ଧ । ୧୨୮ ।

ମୁଖ୍ୟବୃତ୍ତି—ଅଭିଧା ବୃତ୍ତି, ଅର୍ଥାତ୍ ସ୍ତୁତ୍ୟାଦି ସ୍ଥାନରେ ସାକ୍ଷାତ୍‌ରୂପେ, ଯେପରି କି ଶ୍ରୀମଦ୍‌ଭାଗବତରେ ବ୍ରହ୍ମସ୍ତୁତି ବେଦସ୍ତୁତି ପ୍ରଭୃତି ।

ଅନ୍ୱୟ—ବିଧି । ବ୍ୟତିରେକ—ନିଷେଧ ।

ତଥାହି ( ଭାଃ—୧୧।୨୧।୪୦।୪୧।୪୨)

କିଂ ବିଧତ୍ତେ କିମାଚଷ୍ଟେ କିମନୂଦ୍ୟ ବିକଳ୍ପୟେତ୍
ଇତ୍ୟସ୍ୟାହୃଦୟଂ ଲୋକେ ନାନ୍ୟୋ ମଦ୍‌ବେଦ କଶ୍ଚନ । ୧୯ ।

ମାଂ ବିଧତ୍ତେଽଭିଧତ୍ତେ ମାଂ ବିକଳ୍ପ୍ୟା-
ପୋହ୍ୟତେତ୍ୟହମ୍ । ୨୦ ।

ଏତାବାନ୍ ସର୍ବବେଦାର୍ଥଃ ଶବ୍ଦ ଆସ୍ଥାୟ ମାଂ
ଭିଦାମ୍ ।
ମାୟାମାତ୍ରମନୂଦ୍ୟାନ୍ତେ ପ୍ରତିଷିଧ୍ୟ ପ୍ରସୀଦତି । ୨୧ ।
କୃଷ୍ଣେର ସ୍ୱରୂପ ଅନନ୍ତ, ବୈଭବ ଅପାର —
ଚିଚ୍ଛକ୍ତି, ମାୟାଶକ୍ତି, ଜୀବଶକ୍ତି ଆର । ୧୨୯ ।
ବୈକୁଣ୍ଠ, ବ୍ରହ୍ମାଣ୍ଡଗଣ—ଶକ୍ତିକାର୍ଯ୍ୟ ହୟ ।
ସ୍ୱରୂପଶକ୍ତି, ଶକ୍ତି କାର୍ଯ୍ୟେର—କୃଷ୍ଣ ସମାଶ୍ରୟ ।

---

କିଂ ବିଧତ୍ତେ— ଶ୍ରୁତିଃ କିଂ ବିଦଧାତି, କିଂ ଆଚଷ୍ଟେ— କଥୟତି, କିଂ ଅନୂଦ୍ୟ— ଆଶଙ୍କ୍ୟ ବିକଳ୍ପୟେତ୍, ଇତି ଏବଂ ଅସ୍ୟାଃ – ଶ୍ରୁତେଃ ହୃଦୟଂ ଲୋକେ— ଇହଲୋକେ ମତ୍ — ମତ୍ତଃ, ଅନ୍ୟଃ କଶ୍ଚନ ନ ବେଦ—ନ ଜାନାତି । ୧୯ଶ ଶ୍ଳୋକ ।

ମାଂ—ଯଜ୍ଞରୂପଂ ବିଧତ୍ତେ, ମାଂ—ତତ୍ତଦ୍‌ଦେବତାରୂପଂ, ଅଭିଧତ୍ତେ, ଅହମେବ ବିକଳ୍ପ୍ୟ—ସନ୍ଦିହ୍ୟ ଅପୋହ୍ୟତେ—ନିରୁକ୍ତିଯୁଜ୍ୟତେ, ସର୍ବବେଦାର୍ଥଃ—ସର୍ବେଷାଂ ବେଦାନାମର୍ଥଃ ଏତାବାନ୍—ଏତାଦୃଶ ଏବ, ଶବ୍ଦଃ—ବେଦଃ, ମାୟାମାତ୍ରଂ—ଜଗତ୍ତ୍ର ପ୍ରତିଷେଧ— ନିଷିଧ୍ୟ, ଭିଦାଂ— ମଦବତାରାଦିରୂପାଂ ଚ ଅନୂଦ୍ୟ ଅନ୍ତେ—ଶେଷେ ପରମାର୍ଥରୂପଂ ଆସ୍ଥାୟ ପ୍ରସୀଦତି । ୨୦ ଓ ୨୧ଶ ଶ୍ଳୋକ ।

ନନୁ ଶ୍ରୀକୃଷ୍ଣ ଏବ କଥଂ ସ୍ୱର୍ଗାଦୀନାଂ ସର୍ବେଷାଂ ପର୍ଯ୍ୟବସାନମିତ୍ୟାହ 'କୃଷ୍ଣେର' ଇତ୍ୟାଦି । କୃଷ୍ଣସ୍ୟ ସ୍ୱରୂପମନନ୍ତଂ ବୈଭବ ଐଶ୍ୱର୍ଯ୍ୟଞ୍ଚାପାରେ ଇତ୍ୟର୍ଥଃ, ସ୍ୱରୂପାଦୀନାଂ ସର୍ବେଷାମେବ ଆଶ୍ରୟଃ ଶ୍ରୀକୃଷ୍ଣଃ ଅତସ୍ତସ୍ମିନ୍ ତେଷାଂ ସର୍ବେଷାଂ ପର୍ଯ୍ୟବସାନ ମିତିଭାବଃ । ୧୨୯।୧୩୦ । ଚ, ଚ,

---

ଅନ୍ୱୟର ଉଦାହରଣ ଯଥା—ସର୍ବ ଧର୍ମ ତ୍ୟାଗ କରି କେବଳ ମୋହର ଶରଣ ଗ୍ରହଣ କର ଇତ୍ୟାଦି ।

ବ୍ୟତିରେକ ଯଥା—ଦୁଷ୍କୃତକାରୀ ନରାଧମମାନେ ମୋତେ ପ୍ରାପ୍ତ ହୁଅନ୍ତି ନାହିଁ । ଅତଏବ ବେଦାଦିଶାସ୍ତ୍ରମାନେ ଦୃଢ଼ଭାବରେ ମୁଖ୍ୟବୃତ୍ତି ଗୌଣବୃତ୍ତି; ଅନ୍ୱୟ ଓ ବ୍ୟତିରେକ ଇତ୍ୟାଦିଦ୍ୱାରା ଶ୍ରୀକୃଷ୍ଣ ଯେ ଏକମାତ୍ର ପ୍ରାପ୍ୟବସ୍ତୁ ଏହାହିଁ ନିରୂପଣ କରିଅଛନ୍ତି । ୧୨୮ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି—ବେଦ କର୍ମକାଣ୍ଡରେ କଣ ବିଧାନ କରନ୍ତି ଦେବତାକାଣ୍ଡରେ କଣ ଅଭିଧାନ କରନ୍ତି, ଜ୍ଞାନକାଣ୍ଡରେ କାହାକୁ ଆଶ୍ରୟ କରି ତର୍କ କରନ୍ତି, ବେଦର ପ୍ରକୃତ ତାତ୍ପର୍ଯ୍ୟ ଜଗତରେ ମୋ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ୧୯ଶ ଶ୍ଳୋକାର୍ଥ ।

ବେଦ କର୍ମକାଣ୍ଡରେ ଯଜ୍ଞ ବୋଲି ମୋତେହିଁ ବିଧାନ କରନ୍ତି, ଦେବତାକାଣ୍ଡରେ ଦେବତା ବୋଲି ମୋତେହିଁ କୁହନ୍ତି ଏବଂ ଜ୍ଞାନକାଣ୍ଡରେ ମୋତେହିଁ ଆଶ୍ରୟ କରି ତର୍କ କରନ୍ତି । ଏହାହିଁ ସମସ୍ତ ବେଦମାନଙ୍କର ଅର୍ଥ, ଯେହେତୁ ପ୍ରଥମରେ ମାୟିକ ଜଗତକୁ ନିଷେଧ କରି ପରେ ମୋର ଅବତାରରୂପ ଭେଦକୀର୍ତ୍ତନ କରି ପରିଶେଷରେ ପରମାର୍ଥସ୍ୱରୂପ ମୋତେ ଆଶ୍ରୟ କରଣାନନ୍ତର କୃତକୃତ୍ୟ ହୁଅନ୍ତି । ୨୦ ଓ ୨୧ଶ ଶ୍ଳୋକାର୍ଥ ।

| | |
|---|---|
| ତଥାହି ଭାବାର୍ଥଦୀପିକାୟାମ୍ (ଭାଃ—୧୦।୧।୧)-<br>ଦଶମେ ଦଶମଂ ଲକ୍ଷ୍ୟମାଶ୍ରିତାଶ୍ରୟବିଗ୍ରହମ୍ ।<br>ଶ୍ରୀକୃଷ୍ଣାଖ୍ୟଂ ପରଂ ଧାମ ଜଗଦ୍ଧାମ ନମାମି<br>ତତ୍ । ୨୨ । | କୃଷ୍ଣେର ସ୍ୱରୂପ-ବିଚାର ଶୁନ ସନାତନ ।<br>ଅଦ୍ୱୟ ଜ୍ଞାନତତ୍ତ୍ୱ ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ।୧୩୧।<br>ସର୍ବାଦି ସର୍ବ-ଅଂଶୀ କିଶୋରଶେଖର ।<br>ଚିଦାନନ୍ଦଦେହ ସର୍ବାଶ୍ରୟ ସର୍ବେଶ୍ୱର । ୧୩୨ । |

ନନୁ ଶ୍ରୀକୃଷ୍ଣ ଏବ କଥଂ ସ୍ୱର୍ଗାଦୀନାଂ ସର୍ବେଷାଂ ପର୍ଯ୍ୟବସାନମିତ୍ୟାହ 'କୃଷ୍ଣେର' ଇତ୍ୟାଦି । କୃଷ୍ଣସ୍ୟ ସ୍ୱରୂପମନନ୍ତଂ ବୈଭବ ଐଶ୍ୱର୍ଯ୍ୟଞ୍ଚାପାରେ ଇତ୍ୟର୍ଥଃ । ସ୍ୱରୂପାଦୀନାଂ ସର୍ବେଷା-ମେବ ଆଶ୍ରୟଃ ଶ୍ରୀକୃଷ୍ଣଃ ଅତସ୍ତସ୍ମିନ୍ ତେଷାଂ ସର୍ବେଷାଂ ପର୍ଯ୍ୟବସାନ ମିତି ଭାବଃ ।୧୨୯।୧୩୦। ଚ. ତ,

ଇତ୍ ତାବତ୍ ଶ୍ରୀକୃଷ୍ଣସ୍ୱରୂପସ୍ୟ ତଦନନ୍ତ ସ୍ୱରୂପସ୍ୟ ଚ ବିଚାରମାହ 'କୃଷ୍ଣେର, ଇତି ଯାବତ୍ ପରିଚ୍ଛେଦ ସମାପ୍ତି । ୧୩୧ । ଚ. ତ.

---

ବେଦର ଐକାନ୍ତ କହୁଛି ସ୍ୱର୍ଗାଦି ସମସ୍ତ ପଦାର୍ଥ କିପ୍ରକାର ସେହି କୃଷ୍ଣଙ୍କଠାରେ ପର୍ଯ୍ୟବସିତ ହୁଏ, ତାହା କୁହାଯାଉଅଛନ୍ତି—ଶ୍ରୀକୃଷ୍ଣଙ୍କର ସ୍ୱରୂପ ଅସଂଖ୍ୟ ଏବଂ ବୈଭବ (ଐଶ୍ୱର୍ଯ୍ୟ) ମଧ୍ୟ ଅପାର । ତାଙ୍କର ପ୍ରଧାନ ତିନ ଶକ୍ତି । ଯଥା—ଚିତ୍, ଜୀବ ଓ ମାୟା, ଚିତ୍‌ଶକ୍ତି (ସ୍ୱରୂପଶକ୍ତି)ର କାର୍ଯ୍ୟ ଅସଂଖ୍ୟ ବୈକୁଣ୍ଠାଦି ଚିନ୍ମୟଧାମ, ମାୟାଶକ୍ତିର କାର୍ଯ୍ୟ ଅସଂଖ୍ୟ ବ୍ରହ୍ମାଣ୍ଡଗଣ, ଏ ସମସ୍ତଙ୍କର ଶ୍ରୀକୃଷ୍ଣହିଁ ସର୍ବତୋଭାବେ ଆଶ୍ରୟ । ଅତଏବ ଯଜ୍ଞ, ଦେବତା, ତତ୍ତ୍ୱାଦିପଦାର୍ଥ (ପରମାତ୍ମା, ବ୍ରହ୍ମ ଇତ୍ୟାଦି) ସମସ୍ତଙ୍କର ଆଶ୍ରୟ ଶ୍ରୀକୃଷ୍ଣ । ୧୨୯।୧୩୦ ।

୨୨ଶ ଶ୍ଳୋକର ଅନ୍ୱୟ ଆଦି ୨ୟ ପରି: ୧୭ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀମଦ୍‌ଭାଗବତର ଦଶମସ୍କନ୍ଧରେ ସର୍ଗବିସର୍ଗାଦି ନବପଦାର୍ଥର ଲକ୍ଷ୍ୟ ଦଶମତତ୍ତ୍ୱ ଯେ ଶ୍ରୀକୃଷ୍ଣନାମକ ବିଗ୍ରହ ଯେ କି ଆଶ୍ରିତମାନଙ୍କର (ଭକ୍ତମାନଙ୍କର) ଆଶ୍ରୟ ପରମଧାମ ଏବଂ ଜଗଦ୍ଧାମ ତାହାଙ୍କୁ ପ୍ରଣାମ କରେଁ । ୨୨ଶ ଶ୍ଳୋକାର୍ଥ ।

ଆଶ୍ରୟ ତତ୍ତ୍ୱ ଶ୍ରୀକୃଷ୍ଣଙ୍କର ଏବଂ ତାହାଙ୍କର ଅନନ୍ତସ୍ୱରୂପର ବିଚାର ଆରମ୍ଭ କରି ପ୍ରଥମେ ଶ୍ରୀକୃଷ୍ଣଙ୍କର ସ୍ୱୟଂରୂପର ବିଷୟ କହୁଅଛନ୍ତି । ଅଦ୍ୱୟ—ସ୍ୱୟଂ ସିଦ୍ଧ ଅସମୋର୍ଦ୍ଧ୍ୱ । ଜ୍ଞାନ—ଚିନ୍ମୟ, ତତ୍ତ୍ୱ—ପରମସୁଖରୂପ । ବ୍ରଜେ ବ୍ରଜେନ୍ଦ୍ରନନ୍ଦନ—ଶ୍ରୀବୃନ୍ଦାବନଧାମରେ ଶ୍ରୀନନ୍ଦନନ୍ଦନରୂପରେ ପ୍ରକଟ । ଶ୍ରୀବୃନ୍ଦାବନ ଓ ଶ୍ରୀଗୋଲୋକ ଅଭେଦତତ୍ତ୍ୱ ହେତୁ ଶ୍ରୀଗୋଲୋକଧାମରେ ମଧ୍ୟ ଶ୍ରୀନନ୍ଦ-ନନ୍ଦନତ୍ୱ ନିତ୍ୟରୂପ, ଶ୍ରୀନନ୍ଦନନ୍ଦନ କହିଲେ ଜନ୍ୟଦୋଷ ଆରୋପିତ ହୁଏ, ତାହା ନିବାରଣ-ପୂର୍ବକ କହୁଅଛନ୍ତି,—ନନ୍ଦନନ୍ଦନରୂପ ଅନିତ୍ୟଭାବ ପ୍ରଯୁକ୍ତ ହେଲେହେଁ ସେ ସର୍ବଥା ଅନାଦି ସର୍ବ ଅଂଶୀ ଅର୍ଥାତ୍ ଅନାଦି ହୋଇ ଅନନ୍ତ ସ୍ୱରୂପମାନଙ୍କର ଆଦି । ତାହାଙ୍କର ରୂପ ନିତ୍ୟ ନବକିଶୋର ଅର୍ଥାତ୍ ସର୍ବମାଧୁର୍ଯ୍ୟ ମୂର୍ତ୍ତି । ମୂର୍ତ୍ତିରେ ନଶ୍ୱରଦୋଷ ଆରୋପିତ ହୋଇ ପାରେ, ତେଣୁ କହୁଅଛନ୍ତି ସେହିଙ୍କର ଦେହ ସଚ୍ଚିଦାନନ୍ଦ ଅର୍ଥାତ୍ ଦେହ ଦେହୀର ଅଭେଦ । ମୂର୍ତ୍ତିତ୍ୱ ହେତୁ ଏକଦେଶ୍ୟ ଓ ଅଣୁ ଆରୋପିତ ହୋଇ ପାରେ । ତେଣୁ କହୁଅଛନ୍ତି ସର୍ବାଶ୍ରୟ (ସର୍ବବ୍ୟାପକ) ଏବଂ ସର୍ବେଶ୍ୱର ଶ୍ରୀହରି ସର୍ବନିୟନ୍ତା ଏଣୁ ସର୍ବାନ୍ତର୍ଯ୍ୟାମୀ । ୧୩୧।୧୩୨ ।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୧ )—
ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ।
ଅନାଦିରାଦିର୍ଗୋବିନ୍ଦଃ ସର୍ବକାରଣକାରଣମ୍ ।୨୩।
ସ୍ୱୟଂ ଭଗବାନ୍ କୃଷ୍ଣ—ଗୋବିନ୍ଦ ପର ନାମ ।
ସର୍ବୈଶ୍ୱର୍ଯ୍ୟପୂର୍ଣ୍ଣ ଯାଁର ଗୋଲୋକ ନିତ୍ୟଧାମ ॥
ତଥାହି ( ଭାଃ—୧।୩।୨୮ )—
ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରାରିବ୍ୟାକୁଳଂ ଲୋକଂ ମୃଡୟନ୍ତି ଯୁଗେ-
ଯୁଗେ । ୨୪ ।

ଜ୍ଞାନ, ଯୋଗ, ଭକ୍ତି,—ତିନ ସାଧନେର ବଶେ ।
ବ୍ରହ୍ମ, ଆତ୍ମା, ଭଗବାନ୍,—ତ୍ରିବିଧ ପ୍ରକାଶେ ।୧୩୪

ତଥାହି ( ଭାଃ—୧।୨।୧୧ )
ବଦନ୍ତି ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍ଜ୍ଞାନମଦ୍ୱୟମ୍ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ।୨୫।
ବ୍ରହ୍ମ—ଅଙ୍ଗକାନ୍ତି ତାଁର ନିର୍ବିଶେଷ ପ୍ରକାଶେ ।
ସୂର୍ଯ୍ୟ ଯେନ ଚର୍ମଚକ୍ଷେ ଜ୍ୟୋତିର୍ମୟ ଭାସେ ।୧୩୫

'କୃଷ୍ଣେର ସ୍ୱରୂପ ଅନନ୍ତ' ଇତି ଯଦୁକ୍ତଂ ତଦ୍ ତସ୍ୟ ସ୍ୱରୂପଂ ବିବୃଣ୍ୱନ୍ ତସ୍ୟ ସ୍ୱରୂପାନ୍ତରଂ ବିବୃଣୋତି 'ଜ୍ଞାନ' ଇତ୍ୟାଦି । ଅତ୍ର ଜ୍ଞାନାଦୀନ୍ ଏବ ତତ୍ତଦ୍ ପ୍ରକାଶେ କାରଣମିତି ଜ୍ଞେୟଂ । ତତ୍ର ଜ୍ଞାନିନାଂ ବ୍ରହ୍ମସ୍ୱରୂପେଣ ଯୋଗିନାଂ ପରମାତ୍ମସ୍ୱରୂପେଣ ଭକ୍ତାନାଂ ଭଗବତ୍ସ୍ୱରୂପେଣ । ୧୩୪ । ଚ. ଚ.

୨୩ଶ ଶ୍ଳୋକର ଅନ୍ୱୟ ଆଦି ୨ୟ ପରି: ୧୮ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ ( ବ୍ରଜେନ୍ଦ୍ରନନ୍ଦନ ) ଈଶ୍ୱରମାନଙ୍କର ଶ୍ରେଷ୍ଠ ଏଣୁ ପରମେଶ୍ୱର ସଚ୍ଚିଦାନନ୍ଦ ବିଗ୍ରହ (ସଚ୍ଚିଦାନନ୍ଦମୟ ରୂପ) ସ୍ୱୟଂ ଅନାଦି (ସ୍ୱପ୍ରକାଶ) ଏବଂ ଆଦି ( ସର୍ବତତ୍ତ୍ୱର ପ୍ରକାଶକ ବା ମୂଳାଶ୍ରୟ) ଏବଂ ସର୍ବ କାରଣର କାରଣ (ବୀଜସ୍ୱରୂପ) ଗୋବିନ୍ଦ ( ଗୋପାଳ ) ୨୩ଶ ଶ୍ଳୋକାର୍ଥ ।

ଏହି ଶ୍ରୀନନ୍ଦନନ୍ଦନ କୃଷ୍ଣ ସ୍ୱୟଂ ( ଅନପେକ୍ଷିତ ) ଭଗବାନ୍ ଅର୍ଥାତ୍ ଯାହାଙ୍କର ଭଗବତ୍ତା ସ୍ୱୟଂସିଦ୍ଧ ଏବଂ ଯାହାଙ୍କର ପରମମାଧୁର୍ଯ୍ୟମୟ ନାମ ଶ୍ରୀଗୋବିନ୍ଦ । ୧୩୩ ।

୨୪ଶ ଶ୍ଳୋକର ଅନ୍ୱୟ ଆଦି. ୨ୟ ପରି. ୧୩ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀସୂତ କହୁଅଛନ୍ତି—ପୂର୍ବକଥିତ ଉକ୍ତ ଓ ଅନୁକ୍ତ ଅବତାରମାନେ ପରମେଶ୍ୱରଙ୍କର ଅଂଶ ଓ ବିଭୂତି, କିନ୍ତୁ ପୂର୍ବକଥିତ ବିଂଶତିତମ ଶ୍ରୀକୃଷ୍ଣ ସ୍ୱୟଂ ବା ନିଜେ ଭଗବାନ୍ ବା ପରମେଶ୍ୱର ଅଟନ୍ତି, ଉକ୍ତ ଅବତାରମାନେ ଦୈତ୍ୟମାନଙ୍କଦ୍ୱାରା ଉପଦ୍ରୁତ ସଂସାରକୁ ଯୁଗେ ଯୁଗେ ସୁଖୀ କରନ୍ତି । ୨୪ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କର ସ୍ୱୟଂରୂପର ବିଚାର ପରେ ତାହାଙ୍କର ଅନ୍ୟସ୍ୱରୂପର ବିଚାର କରୁଅଛନ୍ତି—ଶ୍ରୀକୃଷ୍ଣ ଜ୍ଞାନସାଧକଙ୍କ ନିକଟରେ ବ୍ରହ୍ମରୂପରେ, ଯୋଗସାଧକଙ୍କ ନିକଟରେ ପରମାତ୍ମାରୂପରେ ଏବଂ ଭକ୍ତିସାଧକଙ୍କ ନିକଟରେ ଭଗବାନରୂପରେ ପ୍ରକାଶିତ ହୁଅନ୍ତି । ୧୩୪ ।

୨୫ଶ ଶ୍ଳୋକର ଅନ୍ୱୟ ଆଦି: ୨ୟ ପରି ୧୨ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଅଦ୍ୱୟ ( ଦ୍ୱିତୀୟରହିତ ) ଯେ ଜ୍ଞାନ ତାହାକୁ ତତ୍ତ୍ୱବୋଲି ନିର୍ଦ୍ଦେଶ କରନ୍ତି ଏହି ତତ୍ତ୍ୱକୁ କେହି କେହି ବ୍ରହ୍ମ କେହି ପରମାତ୍ମା ଓ କେହି ବା ଭଗବାନ୍ ବୋଲି କହନ୍ତି । ୨୫ଶ ଶ୍ଳୋକାର୍ଥ ।

ସେହି ଅଦ୍ୱୟ ଜ୍ଞାନତତ୍ତ୍ୱ ଶ୍ରୀକୃଷ୍ଣଙ୍କର ଅଙ୍ଗକାନ୍ତି ନିର୍ବିଶେଷ (ଚିନ୍ମାତ୍ରସତ୍ତା) ବ୍ରହ୍ମରୂପରେ ପ୍ରକାଶ ହୁଅନ୍ତି । ଅର୍ଥାତ୍ ଜ୍ଞାନସାଧକମାନେ ଶ୍ରୀକୃଷ୍ଣଙ୍କର ଅଙ୍ଗକାନ୍ତିକୁ ଅଖଣ୍ଡଜ୍ୟୋତିରୂପରେ ଅନୁଭବ କରନ୍ତି । ତାହାର ପ୍ରାକୃତ ଉଦାହରଣ ଯେପରି ମନୁଷ୍ୟମାନେ ସୂର୍ଯ୍ୟଙ୍କୁ ଅଖଣ୍ଡଜ୍ୟୋତିର୍ମୟ ରୂପରେ ଦେଖନ୍ତି । ୧୩୫ ।

ତଥାହି ବ୍ରହ୍ମସଂହିତାୟାମ୍ (୫।୪୦)—
ଯସ୍ୟ ପ୍ରଭା ପ୍ରଭବତୋ ଜଗଦଣ୍ଡକୋଟି-
କୋଟିଷ୍ୱଶେଷବସୁଧାଦିବିଭୂତିଭିନ୍ନମ୍ ।
ତଦ୍‌ବ୍ରହ୍ମ ନିଷ୍କଳମନନ୍ତମଶେଷଭୂତଂ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୨୬ ।

ପରମାତ୍ମା ଯେଁହୋ, ତେଁହୋ କୃଷ୍ଣେର ଏକ ଅଂଶ ।
ଆତ୍ମାର ଆତ୍ମା ହୟ କୃଷ୍ଣ ସର୍ବ-ଅବତଂସ ।୧୩୬।

ତଥାହି (ଭାଃ—୧୦।୧୪।୫୫)—
କୃଷ୍ଣମେନମବେହି ତ୍ୱମାତ୍ମାନମଖିଳାତ୍ମନାମ୍ ।
ଜଗଦ୍ଧିତାୟ ସୋଽପ୍ୟତ୍ର ଦେହୀବାଭାତି ମାୟୟା ।୨୭।

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ (୧୦।୪୨)—
ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜୁନ ।
ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ
ଜଗତ୍ । ୨୮ ।

ଭକ୍ତ୍ୟେ ଭଗବାନେର ଅନୁଭବ ପୂର୍ଣ୍ଣରୂପ ।
ଏକଇ ବିଗ୍ରହେ ତାଁର ଅନନ୍ତ ସ୍ୱରୂପ—। ୧୩୭ ।
ସ୍ୱୟଂରୂପ, ତଦେକାତ୍ମରୂପ, ଆବେଶ ନାମ ।
ପ୍ରଥମେଇ ତିନ ରୂପେ ରହେନ ଭଗବାନ୍ ।

---

ତ୍ୱଂ ଏନଂ କୃଷ୍ଣଂ ଅଖିଳାତ୍ମନାଂ ଆତ୍ମାନଂ ଅବେହି, ସୋଽପି ଜଗଦ୍ଧିତାୟ ଅତ୍ର ମାୟୟା ଦେହୀବ ଆଭାତି । ୨୭ଶ ଶ୍ଳୋକଃ ।

---

୨୬ଶ ଶ୍ଳୋକର ଅନ୍ୱୟ ଆଦି ୨ୟ ପରି ୫ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଯେଉଁ ବ୍ରହ୍ମ ଅନନ୍ତକୋଟି ବ୍ରହ୍ମାଣ୍ଡରେ ଅଶେଷ ବସୁଧାଦି ବିଭୂତିରେ ବିଭିନ୍ନ ହୋଇ ସୁଦ୍ଧା ପୂର୍ଣ୍ଣ ଅନନ୍ତ ଓ ଅଶେଷ ସ୍ୱରୂପରେ ବିଦ୍ୟମାନ ସେହି ବ୍ରହ୍ମ ଯେଉଁ ପ୍ରଭାବଶାଳୀ ଗୋବିନ୍ଦଙ୍କର ଅଙ୍ଗକାନ୍ତି, ସେହି ଆଦିପୁରୁଷ ଗୋବିନ୍ଦଙ୍କୁ ଭଜନ କରେଁ । ୨୬ଶ ଶ୍ଳୋକାର୍ଥ ।

ପରମାତ୍ମା (ପୁରୁଷଅବତାରବିଷୟ ଆଦିଲୀଳା ୨ୟ ପରିଚ୍ଛେଦ ୯ମ ୧୦ମ, ୧୧ଶ ଶ୍ଳୋକ ଦ୍ରଷ୍ଟବ୍ୟ ।) ଶ୍ରୀକୃଷ୍ଣଙ୍କର ଅଂଶାଂଶ ହେତୁ ଏକଅଂଶ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଅଂଶ ଶ୍ରୀବଳରାମ, ତାହାଙ୍କର ଅଂଶ ସଙ୍କର୍ଷଣ ଏବଂ ସଙ୍କର୍ଷଣଙ୍କର ଅଂଶ ପୁରୁଷାବତାର । ଏହିହେତୁ ଶ୍ରୀକୃଷ୍ଣ ପରମାତ୍ମାଙ୍କର ଆତ୍ମା, ଯେହେତୁ ସେ ସମସ୍ତଙ୍କର ମୂଳ ବା ଶିରୋମଣି । ୧୩୬ ।

ଶ୍ରୀଶୁକଦେବ ପରୀକ୍ଷିତଙ୍କୁ କହୁଅଛନ୍ତି—ତୁମ୍ଭେ ଏହି ଶ୍ରୀକୃଷ୍ଣଙ୍କୁ ଅଖିଳ ଦେହୀମାନଙ୍କର ଆତ୍ମାର ଆତ୍ମା ବୋଲି ଜାଣ । ସେ ଏପରି ହୋଇ ସୁଦ୍ଧା ଏଠାରେ ଜଗତର ହିତ ସକାଶେ ଯୋଗମାୟାଙ୍କଦ୍ୱାରା ଦେହଧାରୀ ପରି ପ୍ରକାଶ ପାଇଅଛନ୍ତି । ୨୭ଶ ଶ୍ଳୋକାର୍ଥ ।

୨୮ ଶ୍ଳୋକର ଅନ୍ୱୟ ଆଦି ୨ୟ ପରି ୭ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି— ହେ ଅର୍ଜୁନ ! ତୁମ୍ଭର ଏ ସମସ୍ତ ବହୁବିଧ ବିଭୂତିବିଷୟକ ଜ୍ଞାନର ପ୍ରୟୋଜନ କଣ ? ସ୍ଥୂଳତଃ ଏହା ହିଁ ଜାଣ ଯେ ମୁଁ ମୋର ଅଂଶଦ୍ୱାରା (ପୁରୁଷାଖ୍ୟ ଅଂଶଦ୍ୱାରା ପରମାତ୍ମାରୂପେ) ଏହି ଚର ଜଡ଼ାତ୍ମକ (ସୂକ୍ଷ୍ମସ୍ଥୂଳାତ୍ମକ) ଜଗତକୁ ବ୍ୟାପି ରହିଅଛି ଅର୍ଥାତ୍ ଯେପରି ବସ୍ତ୍ରରେ ତନ୍ତୁଥାଏ ସେହିପରି ଏହି ଅନୁଭବନୀୟ ଓ ଦୃଶ୍ୟମାନ ବିଶ୍ୱ ଜଗତରେ ମୁଁ ଓତଃ ପ୍ରୋତଃଭାବରେ ମୋର ପୁରୁଷାଖ୍ୟ ଅଂଶଦ୍ୱାରା (ପରମାତ୍ମାଭାବରେ) ରହିଅଛି । ୨୮ଶ ଶ୍ଳୋକାର୍ଥ ।

ଭକ୍ତି ସାଧନଦ୍ୱାରା ଅଦ୍ୱୟ ଜ୍ଞାନତତ୍ତ୍ୱ ଶ୍ରୀକୃଷ୍ଣ ପୂର୍ଣ୍ଣଭଗବାନରୂପରେ ଅନୁଭୂତ ହୁଅନ୍ତି । ସେହି ଏକ ଶ୍ରୀକୃଷ୍ଣବିଗ୍ରହରେ ତାହାଙ୍କର ଅନନ୍ତସ୍ୱରୂପ ରହିଅଛି । ସ୍ୱୟଂରୂପ ତଦେକାତ୍ମରୂପ ଓ ଆବେଶରୂପ ଏହି ତିନପ୍ରକାରରେ ଅନନ୍ତସ୍ୱରୂପ ପ୍ରକାଶ କରନ୍ତି ଏବଂ ଏହି ତିନରୂପରେ ଶ୍ରୀବୃନ୍ଦାବନ ବୈକୁଣ୍ଠାଦି ଅପ୍ରାକୃତଧାମମାନଙ୍କରେ ନିତ୍ୟ ବିହାର କରନ୍ତି । ୧୩୭।୧୩୮ ।

ସ୍ୱୟଂରୂପେ ସ୍ୱୟଂ ପ୍ରକାଶ—ଦୁଇରୂପେ ସ୍ଫୂର୍ତ୍ତି ।
ସ୍ୱୟଂରୂପ ଏକ—କୃଷ୍ଣ ବ୍ରଜେ ଗୋପମୂର୍ତ୍ତି ।
ପ୍ରାଭବ-ବୈଭବରୂପେ ଦ୍ୱିବିଧ ପ୍ରକାଶେ ।
ଏକ ବପୁ ବହୁରୂପ ଯୈଛେ ହୈଲ ରାସେ ।। ୪୦
ମହିଷୀବିବାହେ ହୈଲ ମୂର୍ତ୍ତି ବହୁବିଧ ।
'ପ୍ରାଭବ-ପ୍ରକାଶ' ଏଇ ଶାସ୍ତ୍ରେ ପରସିଦ୍ଧ ।

ସୌଭର୍ଯ୍ୟାଦି-ପ୍ରାୟ ସେଇ କାୟବ୍ୟୂହ ନୟ ।
କାୟବ୍ୟୂହ ହୈଲେ ନାରଦେର ବିସ୍ମୟ ନା ହୟ ।

ତଥାହି ( ଭାଃ—୧୦।୬୯।୨ )—

ଚିତ୍ରଂ ବତୈତଦେକେନ ବପୁଷା ଯୁଗପତ୍ ପୃଥକ୍ ।
ଗୃହେଷୁ ଦ୍ୱ୍ୟଷ୍ଟସାହସ୍ରଂ ସ୍ତ୍ରିୟ ଏକ ଉଦାବହତ୍ ।। ୨୯

ସ୍ୱୟଂ ରୂପସ୍ୟ ସ୍ୱୟଂ ରୂପେଣ ପ୍ରକାଶରୂପେଣ ଦ୍ୱିଧାସ୍ଫୂର୍ତ୍ତିରିତ୍ୟର୍ଥଃ । ୧୩୯ । ବି. ଚ.

ସ୍ୱୟଂରୂପରେ ସ୍ୱୟଂରୂପ ଓ ପ୍ରକାଶରୂପ ଏହି ଦ୍ୱିବିଧସ୍ଫୂର୍ତ୍ତି ବୃନ୍ଦାବନସ୍ଥ ଏକା ବ୍ରଜେନ୍ଦ୍ର-ନନ୍ଦନ ଶ୍ରୀକୃଷ୍ଣହିଁ ସ୍ୱୟଂ ରୂପ, ବାସୁଦେବ ନାରାୟଣାଦି ସ୍ୱୟଂ ରୂପ ନୁହନ୍ତି । ୧୩୯ ।

ସ୍ୱୟଂ ରୂପରେ ପ୍ରକାଶ ଦୁଇପ୍ରକାର ଯଥା—ପ୍ରାଭବ ପ୍ରକାଶ ଓ ବୈଭବ ପ୍ରକାଶ ।୧୪୦।

ପ୍ରାଭବପ୍ରକାଶ (ମୁଖ୍ୟପ୍ରକାଶ)ର ଉଦାହରଣ ଦେଉଅଛନ୍ତି—ଯେପରି କି ରାସମଣ୍ଡଳରେ ଏକ ଶ୍ରୀକୃଷ୍ଣ ବହୁସଂଖ୍ୟକ ଗୋପୀମାନଙ୍କ ସହିତ କ୍ରୀଡ଼ାକାଳରେ ପ୍ରତ୍ୟେକ ଦୁଇ ଦୁଇ ଗୋପୀ ମଧ୍ୟରେ ଏକ ଏକ ରୂପରେ ଯୁଗପତ୍ ପ୍ରକାଶିତ ହୋଇ କ୍ରୀଡ଼ା କରିଥିଲେ ଏବଂ ଦ୍ୱାରକାପୁରୀରେ ନରକାସୁର ପୁରୀରୁ ଆନୀତ ଷୋଳସହସ୍ର କନ୍ୟାମାନଙ୍କର ଷୋଳ ସହସ୍ର ପୁରୀ ମଧ୍ୟରେ ଯୁଗପତ୍ ପାଣିଗ୍ରହଣ କରିଥିଲେ । ୧୪୧ ।

ପ୍ରକାଶ ଏବଂ କାୟବ୍ୟୂହ ମଧ୍ୟରେ ପ୍ରଭେଦ ଦେଖାଉଅଛନ୍ତି—କାୟବ୍ୟୂହ ଅର୍ଥାତ୍ ଜୀବ ଯୋଗଶକ୍ତି ଦ୍ୱାରା ଯୁଗପତ୍ ବହୁରୂପ ଧାରଣ କରନ୍ତି ଏବଂ ତାଙ୍କର ଅପର ସମସ୍ତରୂପ ମାୟିକ ଓ ସେ ତାହା ଜାଣନ୍ତି ଏହିରୂପ କାୟବ୍ୟୂହରେ ଯେତେ ଶରୀର ଧାରଣ କରାଯାଏ, ସମସ୍ତ ଏକ କାଳରେ ଏକହିଁ ଭାବ, ଯେପରି ଦର୍ପଣରେ ପ୍ରତିବିମ୍ବିତରୂପ । ସୌଭରିଋଷି ମାନ୍ଧାତାଙ୍କର ୫୦ କନ୍ୟାଙ୍କୁ ବିବାହକାଳରେ ଏହିପରି ୫୦ରୂପ ଧାରଣ କରି ବିବାହ କରିଥିଲେ । ଶ୍ରୀନାରଦ ମଧ୍ୟ ଜାଣେ ସେରୂପ ଶକ୍ତିସମ୍ପନ୍ନ ଅତଏବ ଶ୍ରୀକୃଷ୍ଣ ଯେରୂପ ମାୟିକ ରୂପ ଧାରଣ କରି ଦ୍ୱାରକାରେ ମହିଷୀ-ମାନଙ୍କୁ ବିବାହ କରିଥିଲେ ନାରଦଙ୍କର ଆଶ୍ଚର୍ଯ୍ୟାନ୍ୱିତ ହେବାର କାରଣ ନ ଥିଲା, କିନ୍ତୁ ଶ୍ରୀକୃଷ୍ଣ ଯେ ବହୁରୂପ-ଧାରଣ କରିଥିଲେ ସେ ପ୍ରତ୍ୟେକ ରୂପହିଁ ସତ୍ୟ ଏବଂ ଏହି ପ୍ରକାଶକାଳରେ ପ୍ରତ୍ୟେକ ରୂପର ଭିନ୍ନ ଭିନ୍ନ ଅଭିମାନ ଓ ଭିନ୍ନ ଭିନ୍ନ କ୍ରିୟା, ଯେ ରୂପ ମାୟିକ ହେଲେ ତାଙ୍କର ପ୍ରେମବତୀ ମହିଷୀଗଣଙ୍କୁ ପ୍ରବଞ୍ଚନା କରା ହୁଅନ୍ତା । ଭକ୍ତବତ୍ସଳ ଶ୍ରୀକୃଷ୍ଣଙ୍କଠାରେ ଉକ୍ତଦୋଷ ଏଠାରେ ଆରୋପିତ ହୋଇ ନ ପାରେ । ସେହି ବିବାହକାଳରେ ଦେବକୀ ବସୁଦେବ ପ୍ରଭୃତି ମଧ୍ୟ ପ୍ରତ୍ୟେକ ବଧୂଙ୍କର ବିବାହସ୍ଥାନରେ ଉପସ୍ଥିତ ଥିଲେ, କାରଣ ଶ୍ରୀକୃଷ୍ଣଙ୍କର ପାର୍ଷଦମାନେ ମଧ୍ୟ ଏକତ୍ୱ ଓ ଅନେକତ୍ୱ ରୂପ ସତ୍ୟବିଗ୍ରହ ଧାରଣ କରି ପାରନ୍ତି । ୧୪୨ ।

୨୯ଶ ଶ୍ଳୋକର ଅନ୍ୱୟ ଆଦି ୧ମ ୩୪ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କର ଷୋଳସହସ୍ର ମହିଷୀଙ୍କର ଏକସମୟରେ ପାଣିଗ୍ରହଣ ବିଷୟ ଶୁଣି ମହାମୁନି ଶ୍ରୀନାରଦ ମନେ ମନେ ଚିନ୍ତା କରୁଅଛନ୍ତି । ଅହୋ ? ଏ ବଡ଼ ଆଶ୍ଚର୍ଯ୍ୟର ବିଷୟ ଯେ, ଶ୍ରୀକୃଷ୍ଣ ଏକ ଶରୀରଦ୍ୱାରା ଏକମୁହୂର୍ତ୍ତରେ ପୃଥକ୍ ପୃଥକ୍ ଷୋଳସହସ୍ରଗୃହରେ ଷୋଳସହସ୍ର କନ୍ୟାଙ୍କର ପାଣିଗ୍ରହଣ କଲେ । ୨୯ଶ ଶ୍ଳୋକାର୍ଥ ।

ସେଇ ବପୁ ସେଇ ଆକୃତି ପୃଥକ୍ ଯଦି ଭାସେ ।
ଭାବାବେଶଭେଦ ନାମ 'ବୈଭବପ୍ରକାଶେ ।'
ଅନନ୍ତ ପ୍ରକାଶେ କୃଷ୍ଣେର ନାହିଂ ମୂର୍ତ୍ତିଭେଦ ।
ଆକାର ବର୍ଣ୍ଣ ଅସ୍ତ୍ରଭେଦେ ନାମବିଭେଦ ॥ ୧୪୪ ।

ତଥାହି ( ଭା—୧୦।୪୦।୭ )—

ଅନ୍ୟେ ଚ ସଂସ୍କୃତାତ୍ମାନୋ ବିଧିନାଭି-
ହିତେନ ତେ ।
ଯଜନ୍ତି ତ୍ୱନ୍ମୟାସ୍ତ୍ୱାଂ ବୈ ବହୁମୂର୍ତ୍ତ୍ୟେକ-
ମୂର୍ତ୍ତିକମ୍ ।୩୦।

ବୈଭବ ପ୍ରକାଶ କୃଷ୍ଣେର—ଶ୍ରୀବଲରାମ ।
ବର୍ଣ୍ଣମାତ୍ର ଭେଦ,—ସବ କୃଷ୍ଣେର ସମାନ ॥ ୧୪୫ ।
ବୈଭବପ୍ରକାଶ ଯୈଛେ—ଦେବକୀତନୁଜ ।
ଦ୍ୱିଭୁଜ-ସ୍ୱରୂପ କଭୁ କଭୁ ଚତୁର୍ଭୁଜ ॥ ୧୪୬ ।
ଯେକାଲେ ଦ୍ୱିଭୁଜ— ନାମ 'ବୈଭବପ୍ରକାଶ ।'
ଚତୁର୍ଭୁଜ ହୈଲେ ନାମ –'ପ୍ରାଭବ-ବିଳାସ ।'

ଅନ୍ୟେ ଚ ତେ ତ୍ୱନ୍ମୟା ଅଭିହିତେନ ବିଧିନା ପାଞ୍ଚରାତ୍ରିକବିଧାନେନ ସଂସ୍କୃତାତ୍ମାନଃ ସଂସ୍କୃତଃ ଆତ୍ମା- ଦେହଃ ଯେଷାଂ ତେ, ତ୍ୱନ୍ମୟାଃ ତ୍ୱନ୍ନିଷ୍ଠତ୍ୱେନ ଅସ୍ମାନଂ ଅପ୍ରାକୃତସେବନ ଧର୍ମସଦ୍ଭାବଯୁକ୍ତାଃ ବହୁମୂର୍ତ୍ତ୍ୟେକମୂର୍ତ୍ତିକଂ ବହ୍ୱ୍ୟୋ ବାସୁଦେବାଦୟଃ ମତ୍ସ୍ୟାଦୟଶ୍ଚ ମୂର୍ତ୍ତୟଃ ଯସ୍ୟ, ଏକା ମହାନାରାୟଣରୂପା ମୂର୍ତ୍ତିର୍ଯସ୍ୟ, ତଂ ଚ ତଂ ନ, ବହୁମୂର୍ତ୍ତିକମପି ଏକମୂର୍ତ୍ତିକଂ ତ୍ୱଂ ବୈ ଯଜନ୍ତି ଅର୍ଚ୍ଚୟନ୍ତି । ୩୦ଶ ଶ୍ଳୋକ ।

ଅନନ୍ତଇତି; ଅତ୍ର ମୂର୍ତ୍ତିପଦେନ ଶ୍ରୀକୃଷ୍ଣେ ମୂର୍ତ୍ତି ମୂର୍ତ୍ତିମତୋରଭିନ୍ନତ୍ୱାତ୍ ମୂର୍ତ୍ତିମତ୍ତତ୍ତ୍ୱମେବ ଲକ୍ଷ୍ୟଂ, ଅନ୍ୟଥା ଚତୁର୍ଭୁଜାଦୌ ମୂର୍ତ୍ତିଭେଦେନ ପ୍ରକାଶତା ନ ସ୍ୟାତ୍ । ୧୪୪ । ବି. ଚ,

ବୈଭବପ୍ରକାଶ ବା ଗୌଣପ୍ରକାଶ ବୁଝାଉଅଛନ୍ତି—ଭାବ ଏବଂ ଆବେଶଜନିତ ରୂପଗତ କିମ୍ବା ଆକୃତିଗତ ଭେଦ ହେଲେ ତାହାକୁ ବୈଭବପ୍ରକାଶ କୁହାଯାଏ । ୧୪୩ ।

ଶ୍ରୀକୃଷ୍ଣଙ୍କଠାରେ ମୂର୍ତ୍ତି ଏବଂ ମୂର୍ତ୍ତିମାନ ଭେଦ ନ ଥିବାରୁ ଏକ ଶ୍ରୀକୃଷ୍ଣହିଁ ପ୍ରାଭବ ଓ ବୈଭବ ନାମକ ଅନନ୍ତରୂପରେ ପ୍ରକାଶ ହୁଅନ୍ତି । ସେଥିରେ କେବଳ ଆକୃତି ବର୍ଣ୍ଣ ଓ ଅସ୍ତ୍ରାଦିଗତ ଭେଦ ଥାଏ ଅର୍ଥାତ୍ ସ୍ୱୟଂରୂପ ଓ ପ୍ରକାଶ ରୂପମଧ୍ୟରେ ତତ୍ତ୍ୱଗତ କୌଣସି ଭେଦ ନାହିଁ । ୧୪୪ ।

ଶ୍ରୀ ଅକ୍ରୂର ସ୍ତୁତି କରୁଅଛନ୍ତି—ଅପର ବ୍ୟକ୍ତିମାନେ ଯେଉଁ ଆପଣଙ୍କ ଅଭିହିତ ପଞ୍ଚରାତ୍ରାଦି ବିଧାନଦ୍ୱାରା ସଂସ୍କୃତ ହୋଇଅଛନ୍ତି, ସେମାନେ ତ୍ୱନ୍ମୟ ଅର୍ଥାତ୍ ଅନ୍ତର୍ବାହ୍ୟ ତୁମ୍ଭ ସ୍ଫୂର୍ତ୍ତି ପ୍ରାପ୍ତ ହୋଇ ବାସୁଦେବ ମତ୍ସ୍ୟାଦି ବହୁମୂର୍ତ୍ତିରେ ଆପଣଙ୍କର ଏକ ନାରାୟଣମୂର୍ତ୍ତିଙ୍କୁ ଭଜନା କରନ୍ତି । ଅତଏବ ବହୁମୂର୍ତ୍ତି ହୋଇ ମଧ୍ୟ ଆପଣ ଏକମୂର୍ତ୍ତି । ୩୦ଶ ଶ୍ଳୋକାର୍ଥ ।

ଶ୍ରୀ ବଳରାମ ସ୍ୱୟଂରୂପର ବୈଭବପ୍ରକାଶ (ଗୌଣପ୍ରକାଶ ବା କାହାର ମତରେ ବିଳାସ ), ଏହି ପ୍ରକାଶର ବର୍ଣ୍ଣମାତ୍ର ଭେଦ, କିନ୍ତୁ ଭାବଆକୃତି ଓ ବେଶରେ କିଛି ଭେଦ ନାହିଁ ଅର୍ଥାତ୍ ସ୍ୱୟଂରୂପ ତମାଳଶ୍ୟାମବର୍ଣ୍ଣ ଦ୍ୱିଭୁଜ ଗୋପବେଶ ଓ ଗୋପଅଭିମାନୀ, ଶ୍ରୀ ବଳରାମ ଶୁକ୍ଳବର୍ଣ୍ଣ ଦୁଇ ଭୁଜ ଗୋପବେଶ ଗୋପଅଭିମାନୀ । ୧୪୫ ।

ସ୍ୱୟଂରୂପ ମଥୁରା ଓ ଦ୍ୱାରକାଲୀଳାରେ ବାସୁଦେବ ହେତୁ ଗୌଣପ୍ରକାଶ, କାରଣ ସେଥିରେ ଭାବ ଓ ବେଶଭେଦ ରହିଅଛି ଅର୍ଥାତ୍ ସ୍ୱୟଂରୂପରେ ଗୋପବେଶ ଓ ଗୋପଅଭିମାନ ବାସୁଦେବଙ୍କର ରୂପ ଓ ଆକୃତି ସ୍ୱୟଂରୂପଙ୍କ ସହିତ ସାମ୍ୟ ଥାଇ ମଧ୍ୟ କ୍ଷତ୍ରିୟବେଶ ଓ କ୍ଷତ୍ରିୟ ଅଭିମାନ, ସେହିହେତୁ ବାସୁଦେବ ବୈଭବପ୍ରକାଶ । ଯଦି ଦ୍ୱାରକାଲୀଳାରେ କ୍ୱଚିତ୍ ଚତୁର୍ଭୁଜତ୍ୱ

ସ୍ୱୟଂରୂପେ ଗୋପବେଶ ଗୋପ-ଅଭିମାନ ।
ବାସୁଦେବେର କ୍ଷତ୍ରିୟବେଶ—'ଆମି କ୍ଷତ୍ରିୟ' ଜ୍ଞାନ
ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ବୈଦଗ୍ଧ୍ୟ-ବିଲାସ ।
ବ୍ରଜେନ୍ଦ୍ରନନ୍ଦନେ ଇହାଁ ଅଧିକ ଉଲ୍ଲାସ ।୧୪୯।
ଗୋବିନ୍ଦେର ମାଧୁରୀ ଦେଖି ବାସୁଦେବେର କ୍ଷୋଭ ।
ସେ ମାଧୁରୀ ଆସ୍ୱାଦିତେ ଉପଜାୟ ଲୋଭ ।୧୫୦।
ମଥୁରାୟ ଯୈଛେ ଗନ୍ଧର୍ବ ନୃତ୍ୟ ଦରଶନେ ।
ପୁନ ଦ୍ୱାରକାତେ ଯୈଛେ ଚିତ୍ରବିଲୋକନେ ।

ତଥାହି ଲଲିତମାଧବେ (୪।୧୯)—

ଉଦ୍ଗୀର୍ଣ୍ଣାଦ୍ଭୁତମାଧୁରୀପରିମଳସ୍ୟାଭୀରଲୀଳସ୍ୟ ମେ,
ଦ୍ୱୈତଂ ହନ୍ତ ସମୀକ୍ଷୟନ୍ ମୁହୁରସୌ ଚିତ୍ରୀୟତେ ଚାରଣଃ
ଚେତଃ କେଳିକୁତୂହଳୋତ୍ତରଳିତଂ ସତ୍ୟଂ ସଖେ ମାମକଂ ।
ଯସ୍ୟ ପ୍ରେକ୍ଷ୍ୟ ସ୍ୱରୂପତାଂ ବ୍ରଜବଧୂସାରୂପ୍ୟ-ମନ୍ୱିଚ୍ଛତି । ୩୧ ।

ଅସୌ ଚାରଣ ଉଦ୍ଗୀର୍ଣ୍ଣାଦ୍ଭୁତ ମାଧୁରୀ ପରିମଳସ୍ୟ (ଉଦ୍ଗୀର୍ଣ୍ଣଃ ଉଦିତଃ ଅଦ୍ଭୁତ ମାଧୁରୀଣାଂ ପରିମଳଃ ଯସ୍ୟ ସଃ ତସ୍ୟ) ଆଭୀରଲୀଳସ୍ୟ—ଗୋପଲୀଳସ୍ୟ ମେ—ମମ, ଦ୍ୱୈତଂ—ଦ୍ୱିତୀୟରୂପଂ, ସମୀକ୍ଷୟନ୍— ଦର୍ଶୟନ୍, ମୁହୁଃ—ପୁନଃ ପୁନଃ, ଚିତ୍ରୀୟତେ, ହନ୍ତ (ହେ ସଖେ) ସତ୍ୟଂ (ଏବ ବଦାମି) ଯସ୍ୟ ସ୍ୱରୂପତାଂ—ସାଦୃଶ୍ୟଂ, ପ୍ରେକ୍ଷ୍ୟ, ମାମକଂ—ମଦୀୟଂ ଚେତଃ କେଳିକୁତୂହଳୋତ୍ତରଳିତଂ—କେଳଷୁ କୁତୂହଳାୟ—କୌତୁକାୟ ଉତ୍ତରଳିତଂ—ଅତିଶୟେନ ଉତ୍ସୁକଂ ସତ୍) ବ୍ରଜବଧୂସାରୂପ୍ୟଂ - ଶ୍ରୀରାଧାୟାଃ ସମାନରୂପତାଂ, ଅନ୍ୱିଚ୍ଛତି, ୩୧ଶ ଶ୍ଳୋକଃ ।

ଅଭେଦତ୍ୱେଽପି ବାସୁଦେବାତ୍ତୁ ନନ୍ଦନନ୍ଦନ ସ୍ୟାଧିକ୍ୟମାହସ୍ୱୟଂମିତ୍ୟାଦି । ୧୪୮ । ବି, ଚ,

ହେଲେ ସୁଦ୍ଧା ତାହା ଶ୍ରୀଲଘୁଭାଗବତାମୃତର ମତାନୁସାରେ ଭେଦ ବୋଲି ଗ୍ରହଣ କରାଯାଏ ନାହିଁ, ଯେହେତୁ ଦ୍ୱିଭୁଜତ୍ୱର ଭାବହିଁ ପ୍ରକାଶିତ ହୁଏ; ଅତଏବ ତାହା ଦୁଇ ଭୁଜର ପ୍ରକାଶ; କିନ୍ତୁ ଏହା ଯଦି ଚତୁର୍ଭୁଜ ବୋଲି ଗ୍ରହଣ କରାଯାଏ, ତାହାହେଲେ ତଦେକାତ୍ମରୂପର ଅର୍ଥାତ୍ ବିଳାସର ପ୍ରାଧାନ୍ୟ ହେତୁ ପ୍ରାଭବବିଳାସ ବୋଲି କୁହାଯାଇ ପାରେ । ୧୪୬।୧୪୭ ।

ସ୍ୱୟଂ ରୂପର ବିଶେଷତ୍ୱ ଦେଖାଉ ଅଛନ୍ତି । ଯଥା—ସୌନ୍ଦର୍ଯ୍ୟ ( ରୂପମାଧୁର୍ଯ୍ୟ ) ଐଶ୍ୱର୍ଯ୍ୟ ( ବଂଶୀମାଧୁର୍ଯ୍ୟ ) ମାଧୁର୍ଯ୍ୟ ( ପ୍ରେମମାଧୁର୍ଯ୍ୟ ) ବୈଦଗ୍ଧ୍ୟ ( ଲୀଳାମାଧୁର୍ଯ୍ୟ )। ୧୪୮ ।

ମଥୁରଲୀଳାରେ ଶ୍ରୀକୃଷ୍ଣଙ୍କ ରାଜସଭାରେ ବ୍ରଜଲୀଳାର ନାଟକ ଅଭିନୟ ହୋଇଥିଲା, ସେଥିରେ ଗୋପବେଶୀ ଶ୍ରୀକୃଷ୍ଣବେଶଧାରୀ ନଟକୁ ଦେଖି ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି । ହେ ସଖେ ! ଏହି ନଟ ଅଲୌକିକ ମାଧୁର୍ଯ୍ୟ ପ୍ରକାଶକ ମୋର ଗୋପକ୍ରୀଡ଼ାକାରୀ ରୂପର ସୌସାଦୃଶ୍ୟରୂପ ପ୍ରଦର୍ଶନ କରାଇ ମୋତେ ବିଶେଷ ଚମତ୍କୃତ କରୁଅଛି । ମୁଁ ସତ୍ୟ କହୁଅଛି ଯେହି ରୂପର ସହିତ କ୍ରୀଡ଼ା କରିବା ସକାଶେ ମୋର ଚିତ୍ତ ଅତିଶୟ ଚଞ୍ଚଳ ହୋଇ ଶ୍ରୀରାଧାଙ୍କର ସାରୂପ୍ୟଧାରଣର ଇଚ୍ଛା କରୁଅଛି । ୩୧ଶ ଶ୍ଳୋକାର୍ଥ ।

ତଥାହି ଲଳିତମାଧବେ (୮।୩୨—
ଅପରିକଳିତପୂର୍ବଃ କଶ୍ଚମତ୍କାରକାରୀ,
ସ୍ଫୁରତି ମମ ଗରୀୟାନେଷ ମାଧୁର୍ଯ୍ୟପୂରଃ ।
ଅୟମହମପି ହନ୍ତ ପ୍ରେକ୍ଷ୍ୟ ଯଂ ଲୁବ୍ଧଚେତାଃ,
ସରଭସମୁପଭୋକ୍ତୁଂ କାମୟେ ରାଧିକେବ । ୩୨ ।

ସେଇ ବପୁ ଭିନ୍ନାଭାସେ କିଛୁ ଭିନ୍ନାକାର ।
ଭାବ ବେଶେଲ୍ଲତିଭେଦେ 'ତଦେକାତ୍ମରୂପ' ନାମ ତାର । ୧୫୨ ।
ତଦେକାତ୍ମରୂପେର 'ବିଲାସ', 'ସ୍ୱାଂଶ', ଦୁଇ ଭେଦ ।
ବିଲାସ-ସ୍ୱାଂଶେର ଭେଦ—ବିବିଧ ବିଭେଦ ।
ପ୍ରାଭବ ବୈଭବଭେଦେ 'ବିଲାସ' ଦ୍ୱିଧାକାର ।
ବିଲାସେର ବିଲାସ ଭେଦେ ଅନନ୍ତ ପ୍ରକାର ।
ପ୍ରାଭବବିଲାସ—ବାସୁଦେବ, ସଙ୍କର୍ଷଣ ।
ପ୍ରଦ୍ୟୁମ୍ନ, ଅନିରୁଦ୍ଧ—ମୁଖ୍ୟ ଚାରିଜନ । ୧୫୫ ।
ବ୍ରଜେ ଗୋପଭାବ ରାମେର—ପୁରେ କ୍ଷତ୍ରିୟଭାବନ ।
ବର୍ଣ୍ଣ-ବେଶ-ଭେଦ ତାତେ 'ବିଲାସ' ତାର ନାମ । ୧୫୬
ବୈଭବପ୍ରକାଶେ ଆର ପ୍ରାଭବବିଲାସେ ।
ଏକ ମୂର୍ତ୍ତ୍ୟେ ବଳଦେବ ଭାବଭେଦେ ଭାସେ ।

୩୨ଶ ଶ୍ଳୋକର ଅନ୍ୱୟ ଆଦି ୪ର୍ଥ ପରି ୨୦ଶ ଶ୍ଳୋକ ।

ଶ୍ରୀକୃଷ୍ଣ ନବବୃନ୍ଦାଙ୍କ ସହିତ ଦ୍ୱାରକାସ୍ଥ ନବବୃନ୍ଦାବନରେ ଭ୍ରମଣ କରୁ କରୁ ମଣିଭିତ୍ତିରେ ନିଜର ପ୍ରତିବିମ୍ବ ଦର୍ଶନ କରି ହଠାତ୍ ଭ୍ରମରେ ତାହା କୌଣସି ପୁରୁଷ ମନେ କରି ନବବୃନ୍ଦାଙ୍କୁ କହିଲେ, ଏ କିଏ ମାଧୁର୍ଯ୍ୟଦ୍ୱାରା ମୋର ମନ ହରଣ କରି ମଣିଭିତ୍ତି ଅବଲମ୍ବନରେ ବିରାଜ କରୁଅଛି । ପୁନରାୟ ଭଲରୂପେ ନିରୀକ୍ଷଣ କରି କହିଲେ, କି ଆଶ୍ଚର୍ଯ୍ୟ ! ଏ ଯେ ମୋର ପ୍ରତିବିମ୍ବ । ଏହା ପରେ କହୁଅଛନ୍ତି—

ଏହି ଅଗ୍ରବର୍ତ୍ତୀ ମୋହର ମାଧୁର୍ଯ୍ୟ କି ଗୁରୁତର ଓ ଆଶ୍ଚର୍ଯ୍ୟଜନକ, ଯାହା ମୁଁ ପୂର୍ବେ କେବେ ଦେଖି ନାହିଁ (ଅନୁଭବ କରି ନାହିଁ) ଏବଂ ଏହା ଦେଖି ଏ ମାଧୁର୍ଯ୍ୟ ଅନୁଭବ କରିବା ସକାଶେ ମୋର ବଡ଼ ଲୋଭ ଜନ୍ମୁଅଛି । ତେଣୁ ଶ୍ରୀରାଧାଙ୍କ ତୁଲ୍ୟ ଏହା ଉପଭୋଗ କରିବା ସକାଶେ ମୋର କୌତୂହଳ ହେଉଅଛି । ୩୨ଶ ଶ୍ଳୋକାର୍ଥ ।

ଯେଉଁ ରୂପ ସ୍ୱୟଂରୂପର ଅଭେଦସ୍ୱରୂପରେ ପ୍ରକାଶ ପାଆନ୍ତି, କିନ୍ତୁ ଆକୃତି ଓ ବୈଭବାଦିରେ ଭିନ୍ନ, ତାହାକୁ ତଦେକାତ୍ମରୂପ କୁହାଯାଏ । ଯଥା- ପରବ୍ୟୋମରେ ମହାନାରାୟଣ ସେହି ତଦେକାତ୍ମହିଁ ଦୁଇପ୍ରକାର । ଯଥା—ବିଳାସ ଓ ସ୍ୱାଂଶ, ବିଳାସର ବିଳାସ ସ୍ୱାଂଶର ସ୍ୱାଂଶ ଏପ୍ରକାର ବହୁଭେଦ, ପୁଣି ବିଳାସ ଦୁଇପ୍ରକାର । ଏକ ପ୍ରାଭବବିଳାସ, ଦ୍ୱିତୀୟ ବୈଭବବିଳାସ ଏବଂ ବିଳାସର ବିଳାସଭେଦରେ ଅନନ୍ତ ପ୍ରକାର । ୧୫୨।୧୫୪ ।

ପ୍ରାଭବ ବିଳାସର ଉଦାହରଣ ଦେଉଅଛନ୍ତି—ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ଏହି ଚାରି ମୂର୍ତ୍ତି ଅର୍ଥାତ୍ ମଥୁରାଲୀଳାର ବାସୁଦେବ, ସଙ୍କର୍ଷଣ ଏବଂ ଦ୍ୱାରକାରେ ବାସୁଦେବ ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ । ୧୫୬ ।

ଶ୍ରୀବଳରାମଙ୍କର ଶ୍ରୀବୃନ୍ଦାବନରେ ଗୋପଭାବ ଏବଂ ମଥୁରା ଓ ଦ୍ୱାରକାପୁରୀରେ କ୍ଷତ୍ରିୟଭାବ । ତାହାଙ୍କର ଶ୍ରୀବୃନ୍ଦାବନରେ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କ ସହ ବର୍ଣ୍ଣମାତ୍ର ଭେଦ ଏବଂ ପୁରଦ୍ୱୟରେ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କ ସହ, ବର୍ଣ୍ଣ, ବେଶ ଓ ଭାବ ଭେଦ, ଏହିପ୍ରକାର ଭେଦହେତୁ ଶ୍ରୀବଳରାମ ଉଭୟ ସ୍ଥାନରେ ବିଳାସମୂର୍ତ୍ତି ଅର୍ଥାତ୍ ଶ୍ରୀବୃନ୍ଦାବନରେ ବୈଭବପ୍ରକାଶନାମା ବିଳାସ ଏବଂ ପୁରଦ୍ୱୟରେ ପ୍ରାଭବବିଳାସନାମା ବିଳାସ ଅର୍ଥାତ୍ ଶ୍ରୀବଳରାମ ଏକମୂର୍ତ୍ତିରେ ଭିନ୍ନ ସ୍ଥାନରେ ଭାବଭେଦ ହେତୁ ଏହିପରି ଦୁଇ ନାମରେ କଥିତ ହୋଇଅଛନ୍ତି । ୧୫୭ ।

ଆଦିଚତୁର୍ବ୍ୟୂହ—ଇହାର କେହୋ ନାହି ସମ ।
ଅନନ୍ତ ଚତୁର୍ବ୍ୟୂହଗଣେର ପ୍ରାକଟ୍ୟ-କାରଣ ।
କୃଷ୍ଣେର ଏଇ ଚାରି ପ୍ରାଭବ-ବିଲାସ ।
ଦ୍ୱାରକା ମଥୁରାପୁରେ ନିତ୍ୟ ଇହାର ବାସ ।୧୫୯

ଏଇ ଚାରି ହୈତେ ଚବିଶ ମୂର୍ତ୍ତି ପରକାଶ ।
ଅସ୍ତ୍ରଭେଦେ ନାମଭେଦ ବୈଭବବିଲାସ । ୧୬୦ ।
ପୁନ କୃଷ୍ଣ ଚତୁର୍ବ୍ୟୂହ ଲୈୟା ପୂର୍ବରୂପେ ।
ପରବ୍ୟୋମମଧ୍ୟେ ବୈସେ ନାରାୟଣରୂପେ ।

ଅନନ୍ତଇତି । ବ୍ରହ୍ମାଣ୍ଡଭେଦେନାନନ୍ତଚତୁର୍ବ୍ୟୂହାନାଂ । ୧୫୮ । ବି. ଚ.
ଚତୁର୍ବିଂଶତିମୂର୍ତ୍ତିଃ ପଦ୍ମାଦ୍ୟ ଧରେତ୍ୟେତବ୍ୟା । ୧୬୦ । ବି. ନ.

ଶ୍ରୀବଳରାମ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ଆଦିକାୟବ୍ୟୂହ ( ପ୍ରଥମବିଳାସମୂର୍ତ୍ତି ) ଏଣୁ ସେ ଆଦି ଚତୁର୍ବ୍ୟୂହଙ୍କଠାରୁ (ମଥୁରା ଓ ଦ୍ୱାରକାସ୍ଥ ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ବାସୁଦେବ, ସଙ୍କର୍ଷଣ) ଶ୍ରେଷ୍ଠ । ଯେଉଁ ଚତୁର୍ବ୍ୟୂହଙ୍କଠାରୁ ପରବ୍ୟୋମସ୍ଥ ଅନନ୍ତବୈକୁଣ୍ଠାଦିଧାମମାନଙ୍କର ଅନନ୍ତଚତୁର୍ବ୍ୟୂହମାନେ ପ୍ରକାଶ ହୋଇଅଛନ୍ତି । ୧୫୮ ।

ଶ୍ରୀକୃଷ୍ଣଙ୍କର ଲୀଳାମାତ୍ର କାର୍ଯ୍ୟ, ସେ ଗୋଲୋକସ୍ଥ ଶ୍ରୀବୃନ୍ଦାବନଧାମରେ ସ୍ୱୟଂରୂପରେ ଏବଂ ବଳରାମରୂପରେ, ମଥୁରାଧାମରେ ବାସୁଦେବ ଓ ସଙ୍କର୍ଷଣରୂପରେ ଏବଂ ଦ୍ୱାରକାଧାମରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧରୂପରେ ନିତ୍ୟଲୀଳା କରନ୍ତି । ୧୫୯ ।

ଏହି ଆଦିକାୟବ୍ୟୂହ ଚାରି ମୂର୍ତ୍ତି ପରବ୍ୟୋମସ୍ଥ ନାରାୟଣଙ୍କର ଆବରଣ ରୂପରେ ୨୦ମୂର୍ତ୍ତି ହୋଇ ପ୍ରକାଶ ହୋଇଅଛନ୍ତି —ଅର୍ଥାତ୍ ଏ ଚାରି ମୂର୍ତ୍ତି ମିଶି ୨୪ ମୂର୍ତ୍ତି । ବିଳାସମୂର୍ତ୍ତି-ମାନଙ୍କ ପୂର୍ବରୁ ଗୋଲୋକଲୀଳା ବିଷୟ କହି ବର୍ତ୍ତମାନ ପରବ୍ୟୋମସ୍ଥ ବିଳାସମୂର୍ତ୍ତିମାନଙ୍କ ବିଷୟ କହୁଅଛନ୍ତି । ଏହା ପରବର୍ତ୍ତୀ ୧୭୯ ପୟାରରେ ସ୍ପଷ୍ଟୀକୃତ ହୋଇଅଛି । ୧୬୦ ।

୧୩୯—୧୬୦ ଏହାର ଭାବ ଏହି ଯେ—ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ସ୍ୱଧାମ ଶ୍ରୀଗୋଲୋକ ବୃନ୍ଦାବନରେ ସ୍ୱୟଂ ରୂପ ଏବଂ ଆଦିବିଳାସରୂପ ଏହି ଦୁଇ ରୂପରେ ବିଳାସ କରନ୍ତି, ଏବଂ ମଥୁରା ଓ ଦ୍ୱାରକାରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଏହି ବିଳାସ ରୂପରେ ବିଳାସ କରନ୍ତି । ମଥୁରା ଦ୍ୱାରକାପୁରୀ ଦ୍ୱୟ ଶ୍ରୀଗୋଲୋକଧାମର ଅନ୍ତର୍ବର୍ତ୍ତୀ, ସେହି ଧାମତ୍ରୟରେ ଶ୍ରୀକୃଷ୍ଣ କେବଳ ଲୀଳାମୟ ।

ଶ୍ରୀକୃଷ୍ଣ ପୁନଶ୍ଚ ପୂର୍ଣ୍ଣରୂପରେ ବିଳାସମୂର୍ତ୍ତି ଶ୍ରୀନାରାୟଣ ହୋଇ ଚତୁର୍ବ୍ୟୂହସହ ପରବ୍ୟୋମରେ ଲୀଳା କରନ୍ତି । ଲୀଳାର ପ୍ରୟୋଜନ ଆଦିଲୀଳା ୪ର୍ଥ ପରିଚ୍ଛେଦରେ କହି-ଅଛନ୍ତି ଯଥା—

ଯଦ୍ୟପି କେବଳ ତାଁର କ୍ରୀଡ଼ାମାତ୍ର ଧର୍ମ,
ତଥାପି ଜୀବେର କୃପାୟ କରେ ଏତକର୍ମ ।
ସାଲୋକ୍ୟ ସାମୀପ୍ୟ ସାର୍ଷ୍ଟି ସାରୂପ୍ୟ ପ୍ରକାର
ଚାରିମୁକ୍ତି ଦିୟା କରେ ଜୀବେର ନିସ୍ତାର । ୧୬୧ ।

ତାହା ହୋଇଲେ ପୁନ ଚତୁର୍ବ୍ୟୂହ ପରକାଶେ ।
ଆବରଣରୂପେ ଗୃହବଗେ ଯାର ବାସେ । ୧୬୨ ।
ଗୃହଜନେର ପୁନ ପୃଥକ୍ ତିନ ତିନ ମୂର୍ତ୍ତି ।
କେଶବାଦି ଯାହା ହୋଇତେ ବିଲାସେର ପୂର୍ତ୍ତି ।
ଚକ୍ରାଦିଧାରଣ-ଭେଦେ ନାମଭେଦ ସବ ।
ବାସୁଦେବମୂର୍ତ୍ତି – କେଶବ ନାରାୟଣ ମାଧବ ।
ସଙ୍କର୍ଷଣମୂର୍ତ୍ତି - ଗୋବିନ୍ଦ ବିଷ୍ଣୁ ଶ୍ରୀମଧୁସୂଦନ ।
ଏ ଅନ୍ୟ ଗୋବିନ୍ଦ — ନହେ ବ୍ରଜେନ୍ଦ୍ରନନ୍ଦନ ।
ପ୍ରଦ୍ୟୁମ୍ନମୂର୍ତ୍ତି—ତ୍ରିବିକ୍ରମ ବାମନ ଶ୍ରୀଧର ।
ଅନିରୁଦ୍ଧମୂର୍ତ୍ତି— ହୃଷୀକେଶ ପଦ୍ମନାଭ ଦାମୋଦର
ଦ୍ୱାଦଶ-ମାସେର ଦେବତା ଏଇ ବାରୋଜନ ।
ମାର୍ଗଶୀର୍ଷେ କେଶବ, ପୌଷେ ନାରାୟଣ ।
ମାଘେର ଦେବତା ମାଧବ, ଗୋବିନ୍ଦ ଫାଲ୍ଗୁନେ ।
ଚୈତ୍ରେ ବିଷ୍ଣୁ, ବୈଶାଖେ ଶ୍ରୀମଧୁସୂଦନେ ।
ଜ୍ୟୈଷ୍ଠେ ତ୍ରିବିକ୍ରମ, ଆଷାଢ଼େ ବାମନ ଦେବେଶ
ଶ୍ରାବଣେ ଶ୍ରୀଧର, ଭାଦ୍ରେ ଦେବ ହୃଷୀକେଶ ।
ଆଶ୍ୱିନେ ପଦ୍ମନାଭ, କାର୍ତ୍ତିକେ ଦାମୋଦର ।
'ରାଧାଦାମୋଦର' ଅନ୍ୟ ବ୍ରଜେନ୍ଦ୍ରକୋଙର ।

---

ସିଦ୍ଧାନ୍ତସଂହିତା ମତରେ ଶ୍ରୀମନ୍ନାରାୟଣଙ୍କ ସହ ନିମ୍ନଲିଖିତ ଚତୁର୍ବ୍ୟୂହ ଚବିଶମୂର୍ତ୍ତି ପୃଥକ୍ ପୃଥକ୍ ବୈକୁଣ୍ଠରେ ଆବରଣରୂପରେ ବାସ କରନ୍ତି ।

ଏମାନେ ଆଦିଚତୁର୍ବ୍ୟୂହ (ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ)
ଙ୍କର ଯେପରି ବିଳାସ ତାହା ନିମ୍ନରେ ଲେଖାଗଲା ।

| | | | | |
|---|---|---|---|---|
| ଦ୍ୱାରକାସ୍ଥ ଚତୁର୍ବ୍ୟୂହ— | ବାସୁଦେବ, | ସଙ୍କର୍ଷଣ, | ପ୍ରଦ୍ୟୁମ୍ନ, | ଅନିରୁଦ୍ଧ । |
| ଶ୍ରୀମନ୍ନାରାୟଣଙ୍କର ଅଷ୍ଟାଦଶ ଆବରଣ ଚତୁର୍ବ୍ୟୂହ— | ବାସୁଦେବ, | ସଙ୍କର୍ଷଣ, | ପ୍ରଦ୍ୟୁମ୍ନ, | ଅନିରୁଦ୍ଧ, |
| | କେଶବ, | ଗୋବିନ୍ଦ, | ତ୍ରିବିକ୍ରମ, | ହୃଷୀକେଶ, |
| | ନାରାୟଣ, | ବିଷ୍ଣୁ, | ବାମନ, | ପଦ୍ମନାଭ, |
| | ମାଧବ, | ମଧୁସୂଦନ, | ଶ୍ରୀଧର, | ଦାମୋଦର |

୧୬୨—୧୭୦ ।

ଶ୍ରୀକୃଷ୍ଣଙ୍କୁ ଶ୍ରୀବୃନ୍ଦାବନରେ ଇନ୍ଦ୍ର ଅଭିଷିକ୍ତ କରି ଗୋବିନ୍ଦ ନାମ ଦେଇଥିଲେ । ପ୍ରକଟ ଅବତାରରେ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ଅନ୍ୟାନ୍ୟ ନାମ ମଧ୍ୟରେ ଗୋବିନ୍ଦ ପ୍ରସିଦ୍ଧ ନାମ ଏବଂ ଗୋଲୋକସ୍ଥ ନିତ୍ୟଲୀଳାରେ ଗୋବିନ୍ଦ ନାମ ମଧ୍ୟ ପ୍ରସିଦ୍ଧ, ସଙ୍କର୍ଷଣଙ୍କ ବିଳାସ ମୂର୍ତ୍ତି ଯେ ଗୋବିନ୍ଦନାମକ ଚତୁର୍ଭୁଜ ମୂର୍ତ୍ତି ସେ ନନ୍ଦନନ୍ଦନ ଗୋବିନ୍ଦଙ୍କଠାରୁ ପୃଥକ୍ । ୧୬୫ ।

ଶ୍ରୀମତୀ ଯଶୋଦାଦେବୀ ଶ୍ରୀକୃଷ୍ଣଙ୍କ ଉଦର ରଜ୍ଜୁଦ୍ୱାରା ଉଦୂଖଳରେ ବନ୍ଧନ କରିଥିବାରୁ ଶ୍ରୀକୃଷ୍ଣଙ୍କର ଏକନାମ 'ଦାମୋଦର ।' କାର୍ତ୍ତିକମାସରେ ଶ୍ରୀରାଧାଠାକୁରାଣୀଙ୍କ ସହିତ ଏହି ଦାମୋଦର ନାମରେ ଶ୍ରୀକୃଷ୍ଣଙ୍କର ପୂଜା ହୁଏ । କାର୍ତ୍ତିକମାସର ଯେଉଁ ଦାମୋଦର ନାମକ ଚତୁର୍ଭୁଜ ମୂର୍ତ୍ତି ସେ ଅନିରୁଦ୍ଧଙ୍କର ବିଳାସମୂର୍ତ୍ତି, ଅତଏବ ସେ ଶ୍ରୀରାଧା ଦାମୋଦରଙ୍କଠାରୁ ପୃଥକ୍ । ୧୬ ।

ଦ୍ୱାଦଶ-ତିଳକ-ମନ୍ତ୍ର ନାମ ଆଚମନେ ।
ଏଇ ଦ୍ୱାଦଶ ନାମେ ସ୍ପର୍ଶି ତତ୍ତତ୍‌ସ୍ଥାନେ । ୧୭୯ ।
ଏଇ ଚାରିଜନେର ବିଳାସ ଅଷ୍ଟଜନ ।
ତାଁ ସଭାର ନାମ କହି, ଶୁନ ସନାତନ । ୧୭୨ ।
ପୁରୁଷୋତ୍ତମ, ଅଚ୍ୟୁତ, ନୃସିଂହ, ଜନାର୍ଦ୍ଦନ ।
ହରି, କୃଷ୍ଣ, ଅଧୋକ୍ଷଜ, ଉପେନ୍ଦ୍ର,—ଅଷ୍ଟଜନ ।
ବାସୁଦେବେର ବିଳାସ - ଅଧୋକ୍ଷଜ, ପୁରୁଷୋତ୍ତମ ।
ସଙ୍କର୍ଷଣେର ବିଳାସ—ଉପେନ୍ଦ୍ର ଅଚ୍ୟୁତ ଦୁଇଜନ । ୧୭୪ ।
ପ୍ରଦ୍ୟୁମ୍ନେର ବିଳାସ—ନୃସିଂହ ଜନାର୍ଦ୍ଦନ ।
ଅନିରୁଦ୍ଧେର ବିଳାସ—ହରି କୃଷ୍ଣ ଦୁଇଜନ ।
ଏଇ ଚବିଶ ମୂର୍ତ୍ତି ପ୍ରାଭବବିଳାସ-ପ୍ରଧାନ ।
ଅସ୍ତ୍ରଧାରଣଭେଦେ ଧରେ ଭିନ୍ନ ଭିନ୍ନ ନାମ ।
ଇହାର ମଧ୍ୟେ ଯାହାର ହୟ ଆକାର-ବେଶ-ଭେଦ
ସେଇ ସେଇ ହୟ ବିଳାସ-ବୈଭବ ଶଭେଦ ।
ପଦ୍ମନାଭ, ତ୍ରିବିକ୍ରମ, ନୃସିଂହ, ବାମନ ।
ହରି, କୃଷ୍ଣ-ଆଦି ହୟ ଆକାରେ ବିଲକ୍ଷଣ ।
କୃଷ୍ଣେର ପ୍ରାଭବବିଳାସ—ବାସୁଦେବାଦି ଚାରିଜନ ।
ସେଇ ଚାରିଜନାର ବିଳାସ—ବିଂଶତି ଗଣନ ।
ଇହା ସଭାର ପୃଥକ୍ ବୈକୁଣ୍ଠ ପରବ୍ୟୋମ ଧାମେ ।
ପୂର୍ବାଦି ଅଷ୍ଟଦିଗେ ତିନ-ତିନ କ୍ରମେ । ୧୮୦

ଦ୍ୱାଦଶତିଳକମନ୍ତ୍ର ଯଥା—

ଲଲାଟେ କେଶବଂ ଧ୍ୟାୟେନ୍ନାରାୟଣମଥୋଦରେ ।
ବକ୍ଷସ୍ଥଳେ ମାଧବନ୍ତୁ ଗୋବିନ୍ଦଂ କଣ୍ଠକୂପକେ ।
ବିଷ୍ଣୁଂ ଚ ଦକ୍ଷିଣେ କୁକ୍ଷୌ ବାହୌ ଚ ମଧୁସୂଦନଂ ।
ତ୍ରିବିକ୍ରମଂ କନ୍ଧରେ ତୁ ବାମନଂ ବାମପାର୍ଶ୍ୱକେ ।
ଶ୍ରୀଧରଂ ବାମବାହୌ ତୁ ହୃଷୀକେଶନ୍ତୁ କନ୍ଧରେ ।
ପୃଷ୍ଠେ ତୁ ପଦ୍ମନାଭଞ୍ଚ କଟ୍ୟାଂ ଦାମୋଦରଂ ନ୍ୟସେତ୍ ।

ଆଚମନ ସମୟରେ ଉପରୋକ୍ତ ମନ୍ତ୍ରୋକ୍ତ ଦେବତାମାନଙ୍କର ନାମ ଉଚ୍ଚାରଣପୂର୍ବକ ଶରୀରସ୍ଥ ଉପରୋକ୍ତ ସ୍ଥାନମାନ ସ୍ପର୍ଶ କରିବ । ୧୭୯ ।

ପୁନରାୟ ଆଦି ଚତୁର୍ବ୍ୟୂହଙ୍କର ପରବ୍ୟୋମସ୍ଥ ଅନ୍ୟ ଅଷ୍ଟବିଳାସମୂର୍ତ୍ତିର ବିଷୟ କହୁଅଛନ୍ତି—

| ବାସୁଦେବ | ସଙ୍କର୍ଷଣ | ପ୍ରଦ୍ୟୁମ୍ନ | ଅନିରୁଦ୍ଧ । |
|---|---|---|---|
| ଅଧୋକ୍ଷଜ | ଉପେନ୍ଦ୍ର | ନୃସିଂହ | ହରି |
| ପୁରୁଷୋତ୍ତମ | ଅଚ୍ୟୁତ | ଜନାର୍ଦ୍ଦନ | କୃଷ୍ଣ । |

୧୭୨—୧୭୪ ।

ପୂର୍ବଲିଖିତ ୧୬ ଉପରଲିଖିତ ଅଷ୍ଟ ଏହିପରି ଆଦ୍ୟକାୟବ୍ୟୂହଙ୍କର ପ୍ରଧାନ ପ୍ରାଭବବିଳାସ ଚବିଶ । ୧୭୬ ।

ବାସୁଦେବାଦିଙ୍କର ଉପରଲିଖିତ ଅନୁସାରେ କେଶବାଦି ଯେ ଯାହାଙ୍କର ବିଳାସମୂର୍ତ୍ତି ସେମାନଙ୍କ ମଧ୍ୟରୁ ଯଦି କାହାର ମୂଳମୂର୍ତ୍ତିଙ୍କ ସହିତ ଆକାରଗତ ବେଶଭେଦ ହୁଏ ତାହାଙ୍କୁ ସେହି ମୂର୍ତ୍ତିଙ୍କର ବୈଭବବିଳାସ କୁହାଯାଏ ଓ ଆକାର ବେଶଭେଦ ନ ହେଲେ ପ୍ରାଭବବିଳାସ

ଯଦ୍ୟପି ପରବ୍ୟୋମେ ସଭାର ନିତ୍ୟଧାମ ।
ତଥାପି ବ୍ରହ୍ମାଣ୍ଡେ କାହେ କାହେଁ। ସନ୍ନିଧାନ ।
ପରବ୍ୟୋମ ମଧ୍ୟେ ନାରାୟଣେର ନିତ୍ୟସ୍ଥିତି ।
ପରବ୍ୟୋମ ଉପରି କୃଷ୍ଣଲୋକେର ବିଭୂତି ।
ଏକ କୃଷ୍ଣଲୋକ ହୟ ତ୍ରିବିଧ-ପ୍ରକାର ।
ଗୋକୁଲାଖ୍ୟ, ମଥୁରାଖ୍ୟ, ଦ୍ୱାରକାଖ୍ୟ ଆର ।
ମଥୁରାତେ – କେଶବେର ନିତ୍ୟ ସନ୍ନିଧାନ ।
ନୀଲାଚଲେ—ପୁରୁଷୋତ୍ତମ ଜଗନ୍ନାଥ ନାମ ।
ପ୍ରୟାଗେ—ମାଧବ, ମନ୍ଦାରେ—ଶ୍ରୀମଧୁସୂଦନ ।
ଆନନ୍ଦାରଣ୍ୟେ—ବାସୁଦେବ ପଦ୍ମନାଭ
ଜନାର୍ଦ୍ଦନ । ୧୮୫ ।
ବିଷ୍ଣୁକାଞ୍ଚିତେ-ବିଷ୍ଣୁ, ହରି ରହେ-ମାୟାପୁରେ ।
ଐଛେ ଆର ନାନା ମୂର୍ତ୍ତି ବ୍ରହ୍ମାଣ୍ଡ ଭିତରେ ।୧୮୬।
ଏଇମତ ବ୍ରହ୍ମାଣ୍ଡ ମଧ୍ୟେ ସଭାର ପ୍ରକାଶ ।
ସପ୍ତଦ୍ୱୀପେ ନବଖଣ୍ଡେ କରେନ ବିଲାସ ।୧୮୭।
ସର୍ବତ୍ର ପ୍ରକାଶ ତାଁର ଭକ୍ତେ ସୁଖ ଦିତେ ।
ଜଗତେର ଅଧର୍ମ ନାଶି ଧର୍ମ ସ୍ଥାପିତେ ।୧୮୮।

ବିଂଶତିଗଣନ, କେଶବାଦ୍ୟ ଦ୍ୱାଦଶପୁରୁଷୋତ୍ତମାଦ୍ୟଷ୍ଟାବିଂଶତିଃ ।୧୭୯। ଷ. ତ, ।

ବୁଝାଯାଏ, ଯେପରି କି ପଦ୍ମନାଭ ଅନିରୁଦ୍ଧଙ୍କର ବିଳାସମୂର୍ତ୍ତି; କିନ୍ତୁ ଆକାର ଓ ବେଶଭେଦହେତୁ ପଦ୍ମନାଭ ଅନିରୁଦ୍ଧଙ୍କର ବୈଭବବିଳାସ, ସେହିପରି ତ୍ରିବିକ୍ରମ, ବାମନ ଓ ନୃସିଂହ ପ୍ରଦ୍ୟୁମ୍ନଙ୍କର ବୈଭବବିଳାସ, ହରି ଓ କୃଷ୍ଣ ଅନିରୁଦ୍ଧଙ୍କର ବୈଭବବିଳାସ । ୧୭୬।୧୭୮ ।

ଶ୍ରୀକୃଷ୍ଣଙ୍କର ଦ୍ୱାରକାସ୍ଥ ଯେ ବାସୁଦେବାଦି ପ୍ରାଭବବିଳାସ ଚତୁର୍ମୂର୍ତ୍ତି ସେମାନଙ୍କର ତଦେକାତ୍ମ ବାସୁଦେବାଦି ଶ୍ରୀନାରାୟଣଙ୍କ ସହିତ ଯେ ୬ଟି ଚତୁର୍ମୂର୍ତ୍ତି ସେମାନଙ୍କର ବିଳାସ କେଶବାଦି ଷୋଡ଼ଶ ମୂର୍ତ୍ତି । ଏମାନେ ଅର୍ଥାତ୍ ତଦେକାତ୍ମ ବାସୁଦେବାଦି ଚତୁର ଓ କେଶବାଦି ୨୦ ଏହି ଚବିଶ ମୂର୍ତ୍ତିଙ୍କର ପରବ୍ୟୋମରେ ପୃଥକ୍ ପୃଥକ୍ ବୈକୁଣ୍ଠଧାମ ଅଛି । ତାହା ନାରାୟଣଙ୍କର ପୂର୍ବାଦି ଅଷ୍ଟଦିଗରେ ତିନି ଆବରଣରୂପରେ ବିଦ୍ୟମାନ । ୧୭୯।୧୮୦ ।

ସନ୍ନିଧାନ—ବାସ । ୧୮୧ । ବିଭୂତି—ପରମୈଶ୍ୱର୍ଯ୍ୟ । ୧୮୨ । ମଥୁରା—ଉତ୍ତର ପଶ୍ଚିମପ୍ରଦେଶସ୍ଥ ମଥୁରାନଗର । ନୀଳାଚଳ—ଉତ୍କଳସ୍ଥ ପ୍ରସିଦ୍ଧ ପୁରୀନଗର । ୧୮୪ । ପ୍ରୟାଗ— ଏଲାହାବାଦ୍ । ୧୮୫ । ଆନନ୍ଦାରଣ୍ୟ—ଦାକ୍ଷିଣାତ୍ୟର କେରଳଦେଶରେ । ୧୮୫ । ବିଷ୍ଣୁକାଞ୍ଚୀ— ଦାକ୍ଷିଣାତ୍ୟରେ । ୧୮୬ ।ପ୍ରକାଶ—ପ୍ରାଦୁର୍ଭାବ ବା ପ୍ରାଭବପ୍ରକାଶ ।

ସପ୍ତଦ୍ୱୀପ ଯଥା।—ଜମ୍ବୁ,ପ୍ଲକ୍ଷ, ଶାଲ୍ମଳୀ, କୌଞ୍ଚ, କୁଶ, ଶାକ, ପୁଷ୍କର ।

ନବଖଣ୍ଡ—ଭାରତ, ଭଦ୍ରାଶ୍ୱ, କେତୁମାଳ, ଉତ୍ତରକୁରୁ, ଇଳାବୃତ, ରମ୍ୟକ, ହିରଣ୍ମୟ, ହରିବର୍ଷ, କିଂପୁରୁଷ । ୧୮୭ ।

ଏହାର, ଭାବ ଏହି ଯେ, ଶ୍ରୀକେଶବ, ଶ୍ରୀଜଗନ୍ନାଥ, ଶ୍ରୀମଧୁସୂଦନାଦି ଗୋଲୋକନାଥମାନେ ସ୍ୱସ୍ୱଧାମର ସହିତ ମଥୁରା ଓ ପୁରୁଷୋତ୍ତମାଦିଧାମମାନଙ୍କରେ ଅଭିନ୍ନରୂପେ ପ୍ରକାଶ ପାଇ ନିତ୍ୟ ବିହାର କରୁଅଛନ୍ତି । ଅତଏବ ଶ୍ରୀଭଗବତ୍‌ବିଗ୍ରହମାନେ ସଚ୍ଚିଦାନନ୍ଦମୟ ମୂର୍ତ୍ତି, ମାୟିକ ନୁହନ୍ତି ଓ ତତ୍ତତ୍ ଧାମମାନ ଚିନ୍ମୟ, ମାୟିକ ନୁହନ୍ତି । ୧୮୪।୧୮୭।

ପ୍ରକାଶର ହେତୁ କହୁଅଛନ୍ତି—ଭକ୍ତମାନଙ୍କୁ ସୁଖ ଦେବା ସକାଶେ ପ୍ରକାଶ ହୁଅନ୍ତି ଏବଂ ଆନୁସଙ୍ଗରେ ଜଗତ୍‌ର ଅଧର୍ମ ନାଶ କରି ଧର୍ମସଂସ୍ଥାପନ କରନ୍ତି । ୧୮୮ ।

ଇହାର ମଧ୍ୟେ କାହେଁ ଅବତାରେର ଗଣନ ।
ଯୈଛେ ବିଷ୍ଣୁ ତ୍ରିବିକ୍ରମ ନୃସିଂହ ବାମନ ।୧୮୯।
ଅସ୍ତ୍ରଧୃତିଭେଦ ନାମଭେଦେର କାରଣ ।
ଚକ୍ରାଦିଧାରଣ ଭେଦ ଶୁନ ସନାତନ ।୧୯୦।
ଦକ୍ଷିଣାଧୋ ହସ୍ତ ହୈତେ ବାମାଧଃ ପର୍ଯ୍ୟନ୍ତ ।
ଚକ୍ରାଦ୍ୟସ୍ତ୍ରଧାରଣେର ଗଣନାର ଅନ୍ତ ।୧୯୧।
ସିଦ୍ଧାର୍ଥସଂହିତା କରେ ଚବିଶମୂର୍ତ୍ତି ଗଣନ ।
ତାର ମତ କହି ଆଗେ ଚକ୍ରାଦିଧାରଣ ।୧୯୨।
ବାସୁଦେବ—ଗଦା-ଶଙ୍ଖ-ଚକ୍ର-ପଦ୍ମ-ଧର ।
ସଙ୍କର୍ଷଣ—ଗଦା-ଶଙ୍ଖ-ପଦ୍ମ-ଚକ୍ର-କର ।୧୯୩।
ପ୍ରଦ୍ୟୁମ୍ନ-ଚକ୍ର-ଶଙ୍ଖ ଗଦା-ପଦ୍ମ-ଧର ।
ଅନିରୁଦ୍ଧ-ଚକ୍ର-ଗଦା-ଶଙ୍ଖ-ପଦ୍ମ-କର ।୧୯୪।
ଶ୍ରୀକେଶବ—ପଦ୍ମ-ଶଙ୍ଖ-ଚକ୍ର-ଗଦା-କର ।
ନାରାୟଣ—ଶଙ୍ଖ-ପଦ୍ମ-ଗଦା-ଚକ୍ର-ଧର ।୧୯୫।
ଶ୍ରୀମାଧବ—ଗଦା-ଚକ୍ର-ଶଙ୍ଖ-ପଦ୍ମ-କର ।
ଶ୍ରୀଗୋବିନ୍ଦ—ଚକ୍ର-ଗଦା-ପଦ୍ମ-ଶଙ୍ଖ-ଧର ।୧୯୬
ବିଷ୍ଣୁମୂର୍ତ୍ତି—ଶଙ୍ଖ-ଗଦା-ପଦ୍ମ-ଚକ୍ର-କର ।
ମଧୁସୂଦନ—ଚକ୍ର-ଶଙ୍ଖ ଗଦା-ପଦ୍ମ-ଧର ।୧୯୭।
ତ୍ରିବିକ୍ରମ—ପଦ୍ମ-ଗଦା-ଚକ୍ର-ଶଙ୍ଖ-କର ।
ଶ୍ରୀବାମନ—ଶଙ୍ଖ-ଚକ୍ର-ଗଦା-ପଦ୍ମ-ଧର ।୧୯୮।
ଶ୍ରୀଧର—ପଦ୍ମ-ଚକ୍ର-ଗଦା-ଶଙ୍ଖ-କର ।
ହୃଷୀକେଶ—ଗଦା-ଚକ୍ର-ପଦ୍ମ-ଶଙ୍ଖ-ଧର ।୧୯୯
ପଦ୍ମନାଭ-ଶଙ୍ଖ-ପଦ୍ମ-ଚକ୍ର-ଗଦା-କର ।
ଦାମୋଦର—ପଦ୍ମ-ଚକ୍ର-ଗଦା-ଶଙ୍ଖ-ଧର ।୨୦୦
ପୁରୁଷୋତ୍ତମ—ଚକ୍ର-ପଦ୍ମ-ଶଙ୍ଖ-ଗଦା-ଧର ।
ଅଚ୍ୟୁତ—ଗଦା-ପଦ୍ମ-ଚକ୍ର-ଶଙ୍ଖ-କର ।୨୦୧।
ନରସିଂହ—ଚକ୍ର-ପଦ୍ମ-ଗଦା-ଶଙ୍ଖ-ଧର ।
ଜନାର୍ଦ୍ଦନ—ପଦ୍ମ-ଚକ୍ର-ଶଙ୍ଖ-ଗଦା-ଧର ।୨୦୨।
ଶ୍ରୀହରି—ଶଙ୍ଖ-ଚକ୍ର-ପଦ୍ମ-ଗଦା-କର ।
ଶ୍ରୀକୃଷ୍ଣ—ଶଙ୍ଖ-ଗଦା-ପଦ୍ମ-ଚକ୍ର-କର ।୨୦୩।
ଅଧୋକ୍ଷଜ—ପଦ୍ମ-ଗଦା-ଶଙ୍ଖ-ଚକ୍ର-କର ।
ଶ୍ରୀଉପେନ୍ଦ୍ର—ଶଙ୍ଖ-ଗଦା-ଚକ୍ର-ପଦ୍ମ-ଧର ।୨୦୪।
ହୟଶୀର୍ଷପଞ୍ଚରାତ୍ରେ କହେ ଷୋଲଜନ ।
ତାର ମତେ କହି ଏବେ ଚକ୍ରାଦିଧାରଣ ।୨୦୫।
କେଶବଭେଦ ପଦ୍ମ-ଶଙ୍ଖ-ଗଦା-ଚକ୍ରଧର ।
ମାଧବଭେଦ ଚକ୍ର-ଗଦା-ପଦ୍ମ-ଶଙ୍ଖ-କର ।୨୦୬।
ନାରାୟଣଭେଦ ନାନାଭେଦ ଅସ୍ତ୍ରଧର ।
ଇତ୍ୟାଦିକ ଭେଦ ଏଇସବ-ଅସ୍ତ୍ରକର ।୨୦୭।
'ସ୍ୱୟଂ ଭଗବାନ୍' ଆର 'ଲୀଲା-ପୁରୁଷୋତ୍ତମ' ।
ଏଇ ଦୁଇ ନାମ ଧରେ ବ୍ରଜେନ୍ଦ୍ରନନ୍ଦନ ।୨୦୮।
ପୁରୀର ଆବରଣ-ରୂପେ ପୁରୀର ନବ-ଦିଶେ ।
ନବବ୍ୟୂହରୂପେ ନବ ମୂର୍ତ୍ତି ପରକାଶେ ।୨୦୯।

---

ନବଦିଶେ, ଊର୍ଦ୍ଧ୍ୱଦିଶାସହ ନବ ଦିଶଃ । ୨୦୯ । ବି. ଚ.

---

ବାସୁଦେବଙ୍କର ଦକ୍ଷିଣ ତଳ ହାତରେ ଗଦା, ଉପର ହାତରେ ଶଙ୍ଖ ଓ ବାମ ଉପର ହାତରେ ଚକ୍ର ଓ ତଳ ହାତରେ ପଦ୍ମ, ଏହିପରି ଅନ୍ୟ ସମସ୍ତ ବୁଝିବାକୁ ହେବ । ୧୯୩ ।

ସିଦ୍ଧାନ୍ତସଂହିତାର ମତ କହି ବର୍ତ୍ତମାନ ହୟଶୀର୍ଷ ପଞ୍ଚରାତ୍ରର ମତ କହୁଅଛନ୍ତି— ତାହା ହରିଭକ୍ତିବିଳାସରେ ୫ମ ବିଳାସର ୧୬୮ ଠାରୁ ୧୭୫ ଦ୍ରଷ୍ଟବ୍ୟ । ୨୦୫ ।

କୌଣସି ମତରେ ବୈକୁଣ୍ଠପୁରୀର ନବଆବରଣ (ଅଷ୍ଟଦିଗ ଏବଂ ଊର୍ଦ୍ଧ୍ୱ) ରୂପରେ ନବବ୍ୟୂହ ମୂର୍ତ୍ତି ଅଛନ୍ତି । ୨୦୯ ।

ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ
(୫।୧୬୫)—
ତତ୍ରୈବ ବାସୁଦେବାଦ୍ୟା ନାରାୟଣନୃସିଂହକୌ ।
ହୟଗ୍ରୀବୋ ମହାକ୍ରୋଡ଼ୋ ବ୍ରହ୍ମା ଚେତି
ନବୋଦିତାଃ । ୩୩ ।
ପ୍ରକାଶ-ବିଲାସେର ଏଇ କୈଲ ବିବରଣ ।
ସ୍ୱାଂଶେର ଭେଦ ଏବେ ଶୁନ ସନାତନ ।୨୧୦।
ସଙ୍କର୍ଷଣ, ମତ୍ସ୍ୟାଦିକ—ଦୁଇ ଭେଦ ତାର ।
ପୁରୁଷାବତାର ସଙ୍କର୍ଷଣ, ଲୀଲାବତାର ଆର ।
ଅବତାର ହୟ କୃଷ୍ଣେର ଷଡ଼୍‌ବିଧ ପ୍ରକାର ।
ପୁରୁଷାବତାର ଏକ, ଲୀଲାବତାର ଆର ।୨୧୨।
ଗୁଣାବତାର, ଆର ମନ୍ୱନ୍ତରାବତାର ।
ଯୁଗାବତାର ଆର ଶକ୍ତ୍ୟାବେଶାବତାର ।୨୧୩।
ବାଲ୍ୟ ପୌଗଣ୍ଡ ହୟ ବିଗ୍ରହେର ଧର୍ମ ।
ଏତରୂପେ ଲୀଲା କରେ ବ୍ରଜେନ୍ଦ୍ରନନ୍ଦନ ।୨୧୪।
ଅନନ୍ତାବତାର କୃଷ୍ଣେର—ନାହିଁକ ଗଣନ ।
ଶାଖାଚନ୍ଦ୍ରନ୍ୟାୟ କରି ଦିଗ୍‌ଦରଶନ ।୨୧୫।
ତଥାହି (ଭାଃ—୧।୩।୨୬)—
ଅବତାରା ହ୍ୟସଂଖ୍ୟେୟା ହରେଃ ସତ୍ତ୍ୱନିଧେର୍ଦ୍ୱିଜାଃ
ଯଥାବିଦାସିନଃ କୁଲ୍ୟାଃ ସରସଃ ସ୍ୟୁଃ ସହସ୍ରଶଃ ।୩୪

---

ବାସୁଦେବାଦ୍ୟାଃ ଚତ୍ୱାରଃ ନାରାୟଣ ନୃସିଂହକୌ—(ଇତିଦ୍ୱୌ) ହୟଗ୍ରୀବଃ ମହାକ୍ରୋଡ଼ଃ ( ବରାହଃ ) ବ୍ରହ୍ମା ଚ ଇତି ନବ (ନବବ୍ୟୂହାଃ) ଉଦିତାଃ (କଥିତାଃ) ୩୩ଶ ଶ୍ଲୋକ

ହେ ଦ୍ୱିଜାଃ ! ସତ୍ତ୍ୱନିଧେଃ ହରେଃ ଅବତାରାଃ ହି ଅସଂଖ୍ୟେୟାଃ ଯଥା ଅବିଦାସିନଃ—ଅପକ୍ଷୟଶୂନ୍ୟାତ୍, ସରସଃ-ସକାଶାତ୍, କୁଲ୍ୟାଃ ସହସ୍ରଶଃ ସମ୍ଭବନ୍ତି । ୩୪ଶ ଶ୍ଲୋକ ।

ସ୍ୱାଂଶୋ ଯଥା—ସଂକ୍ଷେପଭାଗବତାମୃତେ "ତାଦୃଶୋ ନ୍ୟୂନଶକ୍ତିଂ ଯୋ ବ୍ୟନକ୍ତି ସ୍ୱାଂଶ ଈରିତଃ" ସଙ୍କର୍ଷଣାଦିଃ ମତ୍ସ୍ୟାଦିଃ ଯଥା ତତ୍ତତ୍ ସ୍ୱଧାମସୁ । ଇତି । ୨୧୦ । ବି. ଚ.

ଶାଖାନ୍ତରିତଚନ୍ଦ୍ରସ୍ୟ ଯଥା ସମୁଦାୟାନୁପଲବ୍ଧିଃ ତଥା ଅବତାରାଣାମିତ୍ୟର୍ଥଃ ୨୧୫ । ବି. ଚ.

---

ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଏ ଚାରି ନାରାୟଣ, ନୃସିଂହ, ହୟଗ୍ରୀବ ବରାହ ଓ ବ୍ରହ୍ମା ଏ ନବ ମୂର୍ତ୍ତିଙ୍କୁ ନବବ୍ୟୂହ ବୋଲଯାଏ । ୩୩ଶ ଶ୍ଲୋକାର୍ଥ ।

ଶ୍ରୀକୃଷ୍ଣଙ୍କ ସ୍ୱାଂଶଭେଦର ବିଷୟ କହୁଅଛନ୍ତି—ସ୍ୱାଂଶ ଯେ ତଦେକାତ୍ମରୂପର ତୁଲ୍ୟ ଅଥଚ ତଦପେକ୍ଷା ନ୍ୟୂନଶକ୍ତି ପ୍ରକାଶ କରନ୍ତି ଏହାଙ୍କୁ ସ୍ୱାଂଶ କୁହାଯାଏ । ସ୍ୱାଂଶର ଦୁଇ ଭେଦ—୧ମ ପୁରୁଷାବତାର—ଯଥା—ସଙ୍କର୍ଷଣ । ୨ୟ ଲୀଳାବତାର । ଯଥା—ମତ୍ସ୍ୟ, କୂର୍ମ୍ମ ଆଦି । ୨୧୦ । ୨୧୧ ।

ଶ୍ରୀକୃଷ୍ଣଙ୍କର ଅବତାର ଛଅ ପ୍ରକାର । ୧ମ—ପୁରୁଷାବତାର । ୨ୟ—ଲୀଳାବତାର । ୩ୟ—ଗୁଣାବତାର । ୪ର୍ଥ—ମନ୍ୱନ୍ତରାବତାର । ୫ମ—ଯୁଗାବତାର । ୬ଷ୍ଠ—ଶକ୍ତ୍ୟାବେଶାବତାର ।୨୧୨। ଏତରୂପେ—ବ୍ରହ୍ମ, ପରମାତ୍ମା, ପ୍ରକାଶ, ବିଳାସ, ସ୍ୱାଂଶ, ଅବତାର, ବାଲ୍ୟ, ପୌଗଣ୍ଡ, ଇତ୍ୟାଦିରୂପେ । ୨୧୪ ।

ବୃକ୍ଷଶାଖାନ୍ତରାଳରେ ଚନ୍ଦ୍ରଙ୍କର ଯେପରି କିୟଦଂଶ ଦେଖାଯାଏ, ତଦ୍ରୂପ ଅବତାର ବିଷୟରେ ଆଂଶିକ ବୁଝାଇଲି । ୨୧୫ ।

ଶ୍ରୀଶୌନକାଦିଙ୍କୁ ଶ୍ରୀସୂତ କହୁଅଛନ୍ତି—ହେ ଦ୍ୱିଜଗଣ ! ଯେପରି ଅକ୍ଷୟ ସରୋବରରୁ ସହସ୍ର ସହସ୍ର ନର୍ଦ୍ଦମା ପ୍ରବାହିତ ହୁଅନ୍ତି, ସେହିପରି ସତ୍ତ୍ୱନିଧି ଶ୍ରୀହରିଙ୍କଠାରୁ ଅସଂଖ୍ୟ ଅବତାର ପ୍ରକାଶ ପାଆନ୍ତି । ୩୪ଶ ଶ୍ଲୋକାର୍ଥ ।

ପ୍ରଥମେଇ କରେ କୃଷ୍ଣ ପୁରୁଷାବତାର ।
ସେଇ ତ ପୁରୁଷ ହୟ ତ୍ରିବିଧପ୍ରକାର ।୨୧୬।

ତଥାହି ଶ୍ରୀଲଘୁଭାଗବତାମୃତେ ପୂର୍ବଖଣ୍ଡେ ।୨।୯।

ସାତ୍ୱତତନ୍ତ୍ରବଚନମ୍—

ବିଷ୍ଣୋସ୍ତୁ ତ୍ରୀଣି ରୂପାଣି ପୁରୁଷାଖ୍ୟାନ୍ୟଥୋ ବିଦୁଃ
ଏକନ୍ତୁ ମହତଃ ସ୍ରଷ୍ଟୃ ଦ୍ୱିତୀୟନ୍ତ୍ୱଣ୍ଡସଂସ୍ଥିତମ୍ ।
ତୃତୀୟଂ ସର୍ବଭୂତସ୍ଥଂ ତାନି ଜ୍ଞାତ୍ୱା ବିମୁଚ୍ୟତେ ।
ଅନନ୍ତଶକ୍ତି ମଧ୍ୟେ କୃଷ୍ଣେର ତିନ ଶକ୍ତି ପ୍ରଧାନ—
ଇଚ୍ଛାଶକ୍ତି, ଜ୍ଞାନଶକ୍ତି, କ୍ରିୟାଶକ୍ତି ନାମ ।୨୧୭।

ଇଚ୍ଛାଶକ୍ତି ପ୍ରଧାନ କୃଷ୍ଣ ଇଚ୍ଛାୟ ସର୍ବକର୍ତ୍ତା ।
ଜ୍ଞାନଶକ୍ତି ପ୍ରଧାନ ବାସୁଦେବ ଅଧିଷ୍ଠାତା ।୨୧୮।
ଇଚ୍ଛା-ଜ୍ଞାନ-କ୍ରିୟା ବିନା ନା ହୟ ସୃଜନ ।
ତିନେର ତିନ ଶକ୍ତି ମିଲି ପ୍ରପଞ୍ଚ ରଚନ ।୨୧୯।
କ୍ରିୟାଶକ୍ତି ପ୍ରଧାନ ସଙ୍କର୍ଷଣ ବଲରାମ ।
ପ୍ରାକୃତାପ୍ରାକୃତ ସୃଷ୍ଟି କରେନ ନିର୍ମାଣ ।୨୨୦।
ଅହଙ୍କାରେର ଅଧିଷ୍ଠାତା କୃଷ୍ଣେର ଇଚ୍ଛାୟ ।
ଗୋଲୋକ ବୈକୁଣ୍ଠ ସୃଜେ ଚିଚ୍ଛକ୍ତିଦ୍ୱାରାୟ ।
ଯଦ୍ୟପି ଅସୃଜ୍ୟ ନିତ୍ୟ ଚିଚ୍ଛକ୍ତିବିଲାସ ।
ତଥାପି ସଙ୍କର୍ଷଣ ଇଚ୍ଛାୟ ତାହାର ପ୍ରକାଶ ।୨୨୨

ସୃଷ୍ଟ୍ୟର୍ଥଂ ଶ୍ରୀସଙ୍କର୍ଷଣ ଏବ ପୁରୁଷରୂପେଣାବତରତୀତି ପ୍ରଥମଂ ପୁରୁଷତ୍ୱଂ ବକ୍ତୁମାଦୌ ତସ୍ୟ ଅନ୍ୟକର୍ତ୍ତୃତ୍ୱଶଙ୍କାଂ ନିରସ୍ୟନ୍ ତସ୍ୟୈବ ତତ୍କର୍ତ୍ତୃତ୍ୱଂ ଦର୍ଶୟତି "ଅନନ୍ତ" ଇତ୍ୟାଦିନା । ଚ. ତ ।୨୧୬।

ପ୍ରଥମେଇ — ସୃଷ୍ଟିର ପ୍ରାକ୍‌କାଳରେ ।

ଶ୍ରୀକୃଷ୍ଣ ପୁରୁଷାବତାର କରନ୍ତି—ଏହାର ତାତ୍ପର୍ଯ୍ୟ ଏହି ଯେ, ଯଦିଚ ସଙ୍କର୍ଷଣ ପୁରୁଷାବତାର ହୁଅନ୍ତି ତଥାପି ପୂର୍ବେ କୁହାଯାଇ ଅଛି ଯେ ଶ୍ରୀକୃଷ୍ଣଙ୍କର ଅଂଶାଂଶୀରେ ଭେଦ ନାହିଁ ଏବଂ ଶ୍ରୀକୃଷ୍ଣ ଅନନ୍ତରୂପରେ ଲୀଳା କରନ୍ତି ଏହି ହେତୁ ଉକ୍ତପ୍ରକାର ଲେଖା ହୋଇଅଛି । ୨୧୬ ।

୩୫ଶ ଶ୍ଳୋକର ଅନ୍ୱୟ ଆଦି: ୫ମ ପରି ୧୧ଶ ଶ୍ଳୋକ ।

ଭଗବାନଙ୍କର ପୁରୁଷନାମକ ତିନଗୋଟି ରୂପ ଅଛି— ୧ମ ରୂପ—( ପ୍ରଥମପୁରୁଷ ) ମହତ୍ତତ୍ତ୍ୱସ୍ରଷ୍ଟା, କାରଣାର୍ଣ୍ଣବଶାୟୀ । ୨ୟ ରୂପ—( ଦ୍ୱିତୀୟପୁରୁଷ ) ବ୍ରହ୍ମାଣ୍ଡସ୍ଥିତ ଗର୍ଭୋଦକଶାୟୀ । ୩ୟରୂପ—( ତୃତୀୟପୁରୁଷ ) ସର୍ବଭୂତସ୍ଥ କ୍ଷୀରୋଦକଶାୟୀ । ଏପରି ତିନ ରୂପର ବିଷୟ ଜାଣିଲେ ଲୋକେ ସଂସାରବନ୍ଧନରୁ ମୁକ୍ତ ହୁଅନ୍ତି । ୩୫ଶ ଶ୍ଳୋକାର୍ଥ ।

ସାଙ୍ଖ୍ୟମତରେ ପ୍ରକୃତିଦ୍ୱାରା ସୃଷ୍ଟି ହୁଏ, ଏହି ମତ ନିରାକରଣ କରିବା କାରଣ ଅନନ୍ତ ଶକ୍ତି ଇତ୍ୟାଦି କୁହାଯାଉଅଛନ୍ତି । ୨୧୭ ।

ଏହି ପୟାରଦ୍ୱାରା ଶ୍ରୀକୃଷ୍ଣଙ୍କର ସର୍ବନିୟନ୍ତୃତ୍ୱ ପ୍ରକାଶ ପାଉଅଛି—ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ବିଳାସ ସକାଶେ ତାହାଙ୍କ ଇଚ୍ଛାରେ ଗୋଲୋକ ବୈକୁଣ୍ଠାଦି ଅପ୍ରାକୃତ ପ୍ରପଞ୍ଚ ଓ ବ୍ରହ୍ମାଣ୍ଡାଦି ପ୍ରାକୃତ ପ୍ରପଞ୍ଚ ପ୍ରକାଶିତ ହୁଏ । ୨୧୮।୨୧୯ ।

ଆଦିଲୀଳା ୫ମ ପରିଚ୍ଛେଦରେ ଶ୍ରୀବଲରାମ ତତ୍ତ୍ୱ ବୁଝାଇ ସେଥିରେ ତାହାଙ୍କର ଅପ୍ରାକୃତ ଓ ପ୍ରାକୃତ ସୃଷ୍ଟିକର୍ତ୍ତୃତ୍ୱ ବିଷୟରେ ଯାହା କୁହା ହୋଇଅଛି, ତାହା ଏହି ପୟାର ଓ ପରବର୍ତ୍ତୀ ପୟାରମାନଙ୍କରେ ବିଷଦରୂପେ ବୁଝାଉଅଛନ୍ତି—ଶ୍ରୀବଲରାମ ଶ୍ରୀକୃଷ୍ଣଙ୍କର ଆଦିବିଳାସମୂର୍ତ୍ତି, ସେ ଶ୍ରୀକୃଷ୍ଣଙ୍କର ଇଚ୍ଛାରେ ଅହଙ୍କାରତତ୍ତ୍ୱର ଅଧିଷ୍ଠାତା ହୋଇ ଶ୍ରୀକୃଷ୍ଣଙ୍କର ସ୍ୱଧାମ ଶ୍ରୀଗୋଲୋକ ସୃଷ୍ଟି କରନ୍ତି ଏବଂ ଶ୍ରୀବଲରାମଙ୍କର ବିଳାସମୂର୍ତ୍ତି ଶ୍ରୀସଙ୍କର୍ଷଣ (ମହାସଙ୍କର୍ଷଣ) ଶ୍ରୀବୈକୁଣ୍ଠାଦି ପରବ୍ୟୋମସ୍ଥ

ତଥାହି ବ୍ରହ୍ମସଂହିତାୟାମ୍ (୫।୨) —
ସହସ୍ରପତ୍ରଂ କମଲଂ ଗୋକୁଲାଖ୍ୟଂ ମହତ୍ପଦମ୍ ।
ତତ୍କର୍ଣ୍ଣିକାରଂ ତଦ୍ଧାମ ତଦନନ୍ତାଂଶସମ୍ଭବମ୍ ॥
ମାୟାଦ୍ୱାରେ ସୃଜେ ତେହୋ ବ୍ରହ୍ମାଣ୍ଡେର ଗଣ ।
ଜଡ଼ରୂପା ପ୍ରକୃତି ନହେ ବ୍ରହ୍ମାଣ୍ଡ କାରଣ ॥
ଜଡ଼ ହୈତେ ସୃଷ୍ଟି ନହେ ଈଶ୍ୱର ଶକ୍ତି ବିନେ ।
ତାହାତେ ସଙ୍କର୍ଷଣ କରେ ଶକ୍ତି ଆଧାନେ ॥
ଈଶ୍ୱରେର ଶକ୍ତ୍ୟେ ସୃଷ୍ଟି କରୟେ ପ୍ରକୃତି ।
ଲୌହ ଯେନ ଅଗ୍ନିଶକ୍ତ୍ୟେ ପାୟ ଦାହଶକ୍ତି ॥୨୨୪

ତଥାହି (ଭାଃ—୧୦।୪୬।୩୧)—
ଏତୌ ହି ବିଶ୍ୱସ୍ୟ ଚ ବୀଜଯୋନୀ,
ରାମୋ ମୁକୁନ୍ଦଃ ପୁରୁଷଃ ପ୍ରଧାନମ୍ ।
ଅନ୍ୱୀୟ ଭୂତେଷୁ ବିଲକ୍ଷଣସ୍ୟ,
ଜ୍ଞାନସ୍ୟ ଚେଶାତ ଇମୌ ପୁରାଣୌ ॥୩୭॥

ସହସ୍ରପତ୍ରଂ କମଲଂ ମହତ୍ପଦଂ ତତ୍ ( ଧାମ ) ତଦନନ୍ତାଂଶସମ୍ଭବ—ଅନନ୍ତସ୍ୟ—ଶ୍ରୀବଳଦେବସ୍ୟ ଅଂଶେନ—ଜ୍ୟୋତିର୍ବିଭ୍ରବିଶେଷେଣ ସମ୍ଭବଃ ସଦାବିର୍ଭାବଃ ଯସ୍ୟ ତତ୍, ତତ୍-କର୍ଣ୍ଣିକାରଂ ଗୋକୁଲାଖ୍ୟଂ ତଦ୍ଧାମ-ତସ୍ୟ ଶ୍ରୀକୃଷ୍ଣସ୍ୟ ଧାମ ଶ୍ରୀନନ୍ଦଯଶୋଦାଭିଃ ସହ ବାସଯୋଗ୍ୟଂ ମହାନ୍ତଃପୁରଂ । ୩୬ଶ ଶ୍ଳୋକ ।

ହି ଯସ୍ମାତ୍ ରାମଃ ମୁକୁନ୍ଦଶ୍ଚ ଏତୌ ବିଶ୍ୱସ୍ୟ ବୀଜଯୋନୀ ପୁରୁଷଃ ପ୍ରଧାନଂ । ପୁରାଣୌ ଇମୌ ଭୂତେଷୁ ଅନ୍ୱୀୟ ଭୂତାନାଂ ବିଲକ୍ଷଣସ୍ୟ—ତଦ୍‌ବିଲକ୍ଷଣସ୍ୟ ଜ୍ଞାନସ୍ୟ—ଚୈତନ୍ୟାତ୍ମକସ୍ୟ ଜୀବସ୍ୟ ଚ ଈଶାତେ ନିୟନ୍ତାରୌ ଭବତଃ । ୩୭ଶ ଶ୍ଳୋକ ।

ମହତ୍ପଦଂ—ମହତଃ ମହାଭଗବତଃ ପଦଂ ମହାବୈକୁଣ୍ଠସ୍ୱରୂପମିତ୍ୟର୍ଥଃ । ତଦ୍ଧାମ ତସ୍ୟ-କମଲସ୍ୟ କର୍ଣ୍ଣିକାରେ ତସ୍ୟ ଭଗବତଃ କୃଷ୍ଣସ୍ୟ ଧାମ ଗୃହ ମିତ୍ୟର୍ଥଃ । ତଦନନ୍ତାଂଶସମ୍ଭବ ଅନନ୍ତୋଽଂଶୋ ଯସ୍ୟ ତସ୍ମାତ୍ ସଙ୍କର୍ଷଣାତ୍ ସମ୍ଭବୋ ଯସ୍ୟ ତତ୍ ଇତି । ୩୬ । ବି, ଚ.

---

ଧାମମାନ ସୃଷ୍ଟି କରନ୍ତି । ଏହି ଧାମମାନ ଶ୍ରୀକୃଷ୍ଣଙ୍କର ଚିଚ୍ଛକ୍ତିର ବିଳାସ (ବିଶୁଦ୍ଧସତ୍ତ୍ୱମୟ) ହେତୁ ନିତ୍ୟ ଏବଂ ତେଣୁ ଅସୃଜ୍ୟ, ଅତଏବ ସଙ୍କର୍ଷଣ ବଳରାମ କପରି ତାହା ସୃଷ୍ଟି କଲେ, ଏହି ଆଶଙ୍କା ଖଣ୍ଡନ କରିବା ସକାଶେ କହୁଅଛନ୍ତି—ଉକ୍ତ ଧାମମାନ ଅସୃଜ୍ୟ ହେଲେହେଁ ଶ୍ରୀସଙ୍କର୍ଷଣ ବଳରାମଙ୍କ ଇଚ୍ଛାରେ ପ୍ରକାଶ ହୁଅନ୍ତି । ୨୨୦ । ୨୨୧ ।

ଯାହା ଶ୍ରୀବଳଦେବଙ୍କର ଅଂଶଦ୍ୱାରା (ଜ୍ୟୋତିର୍ବିଭ୍ରବିଶେଷଦ୍ୱାରା) ସଦା ଆବିର୍ଭୂତ ସେହି ସହସ୍ରଦଳକମଳାକାର ଗୋକୁଳନାମକ ସର୍ବୋତ୍କୃଷ୍ଟ ଧାମର କର୍ଣ୍ଣିକାକୁ ଶ୍ରୀକୃଷ୍ଣଙ୍କର ଧାମ ଅର୍ଥାତ୍ ମହାନ୍ତଃପୁର କୁହାଯାଏ । ୩୬ଶ ଶ୍ଳୋକାର୍ଥ ।

ଶ୍ରୀବଳରାମ ତାଙ୍କ ଅଂଶ ଶ୍ରୀସଙ୍କର୍ଷଣରୂପରେ ମାୟାଶକ୍ତିଦ୍ୱାରା କପ୍ରକାର ପ୍ରାକୃତ ଜଗତ୍ ସୃଷ୍ଟି କରନ୍ତି, ତାହା କହୁଅଛନ୍ତି । ୨୨୩—୨୨୪ ।

ତେହୋ—ସଙ୍କର୍ଷଣ ।

ବ୍ରହ୍ମାଣ୍ଡକାରଣ—ବ୍ରହ୍ମାଣ୍ଡ ସୃଷ୍ଟିର ହେତୁ ବା ନିଦାନ ।

ତାହାତେ—ଜଡ଼ରୂପା ପ୍ରକୃତିରେ ।

ଶ୍ରୀ ଉଦ୍ଧବ ଶ୍ରୀ ନନ୍ଦ ମହାରାଜାଙ୍କୁ କହୁଅଛନ୍ତି ରାମ ଓ କୃଷ୍ଣ ଏ ଦୁହେଁ ବିଶ୍ୱର ବୀଜ ( କାରଣ ) ଏବଂ ଯୋନି ( ଆଶ୍ରୟ ) ହେତୁ ପୁରୁଷ ଓ ପ୍ରଧାନ ( ପ୍ରକୃତି ) ଏ ଦୁହେଁ ଅନାଦି ଏବଂ ଭୂତ ସମୂହରେ ଓ ତଦ୍‌ବିଲକ୍ଷଣ ଜୀବମାନଙ୍କରେ ଅନୁପ୍ରବେଶ ପୂର୍ବକ ନିୟନ୍ତା ହୋଇ ଅଛନ୍ତି । ୩୭ଶ ଶ୍ଳୋକାର୍ଥ ।

ସୃଷ୍ଟି ହେତୁ ଯେଇ ମୂର୍ତ୍ତି ପ୍ରପଞ୍ଚେ ଅବତାରେ ।
ସେଇ ଈଶ୍ୱରମୂର୍ତ୍ତି 'ଅବତାର' ନାମ ଧରେ ।
ମାୟାତୀତ ପରବ୍ୟୋମେ ସଭାର ଅବସ୍ଥାନ ।
ବିଶ୍ୱେ ଅବତରି ଧରେ 'ଅବତାର' ନାମ ।୨୨୭।
ମାୟା ଅବଲୋକିତେ ସେଇ ଶ୍ରୀସଙ୍କର୍ଷଣ ।
ପୁରୁଷରୂପେ ଅବତୀର୍ଣ୍ଣ ହଇଲ ପ୍ରଥମ । ୨୨୮ ।

ତଥାହି ( ଭାଃ— ୧।୩।୧ )—
ଜଗୃହେ ପୌରୁଷଂ ରୂପଂ ଭଗବାନ୍ ମହଦାଦିଭିଃ ।
ସମ୍ଭୂତଂ ଷୋଡଶକଳମାଦୌ ଲୋକସିସୃକ୍ଷୟା ।୩୮।

ତଥାହି ( ଭାଃ—୨।୬।୪୦ )—
ଆଦ୍ୟୋଽବତାରଃ ପୁରୁଷଃ ପରସ୍ୟ,
କାଲଃ ସ୍ୱଭାବଃ ସଦସନ୍ମନଶ୍ଚ ।
ଦ୍ରବ୍ୟଂ ବିକାରୋ ଗୁଣ ଇନ୍ଦ୍ରିୟାଣି,
ବିରାଟ୍ ସ୍ୱରାଟ୍ ସ୍ଥାସ୍ନୁ ଚରିଷ୍ଣୁ ଭୂମ୍ନଃ । ୩୯ ।
ସେଇ ପୁରୁଷ ବିରଜାତେ କରିଲ ଶୟନ ।
'କାରଣାବ୍ଧିଶାୟୀ' ନାମ ଜଗତ-କାରଣ ।୨୨୯।
କାରଣାବ୍ଧି ପାରେ ହୟ ମାୟାର ନିତ୍ୟ ସ୍ଥିତି ।
ବିରଜାର ପାରେ ପରବ୍ୟୋମେ ନାହି ଗତି ।

---

ପରବ୍ୟୋମାଦବତରଣାତଦଭାବଃ । ୨୨୮ ବି, ଚ,
ସତ୍ତୁ ନ ଜନ୍ୟ ଇତ୍ୟାହ ମାୟାତୀତ ଇତି ୨୨୯ ବି, ଚ,

---

ପ୍ରାକୃତ ସୃଷ୍ଟି କରିବା ସକାଶେ ଶ୍ରୀସଙ୍କର୍ଷଣ ପ୍ରଥମପୁରୁଷ ଅବତାର ହେଲେ । ୨୨୮ ।
୩୮ ଶ୍ଳୋକର ଅନ୍ୱୟ ଆଦି. ୫ମ ପରି: ୧୪ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ସୃଷ୍ଟିର ପ୍ରାରମ୍ଭରେ ଶ୍ରୀଭଗବାନ୍ ଲୋକସୃଷ୍ଟି ନିମିତ୍ତ ମହଦାଦିତତ୍ତ୍ୱ ଦ୍ୱାରା ମିଳିତ ଏବଂ ସୃଷ୍ଟ୍ୟୁପଯୋଗୀ ପୂର୍ଣ୍ଣଶକ୍ତି ବା ଶ୍ରୀ ଭୂ, ଲୀଳା କୀର୍ତ୍ତି, ଇଳା, କାନ୍ତି, ବିଦ୍ୟା, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା, ଏହି ମୁଖ୍ୟ ଷୋଡ଼ଶ ଶକ୍ତି ବା ଷୋଡ଼ଶକଳା ପୂର୍ଣ୍ଣ ପୁରୁଷାଖ୍ୟ ବା ପ୍ରଥମ ପୁରୁଷ ନାମା ରୂପ ଗ୍ରହଣ କଲେ । ୩୮ଶ ଶ୍ଳୋକାର୍ଥ ।

୩୯ଶ ଶ୍ଳୋକର ଅନ୍ୱୟ—ଆଦି: ୫ମ ପରି: ୧୩ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ସ୍ୱରୂପ ଏବଂ ଶକ୍ତି ଦ୍ୱାରା ଯେ ସର୍ବାଙ୍ଗଶାୟୀ ପରବ୍ୟୋମ ନାଥ ଶ୍ରୀଭଗବାନ ତାହାଙ୍କର ପ୍ରଥମ ଅବତାର ପ୍ରକୃତିର ଈକ୍ଷଣକର୍ତ୍ତା କାରଣାର୍ଣ୍ଣବଶାୟୀ ପ୍ରଥମପୁରୁଷ, ଯଦ୍ୟପି ସମସ୍ତହିଁ ତାହାଙ୍କର ଅବତାର ତଥାପି କାଳ, ସ୍ୱଭାବ ଓ ପ୍ରକୃତି ଏ ତିନିଗୋଟି ଶକ୍ତିରୂପ ଅବତାର, ମହତତ୍ତ୍ୱ, ପଞ୍ଚମହାଭୂତ ଓ ଅହଙ୍କାର ସତ୍ତ୍ୱାଦିଗୁଣ, ଏକାଦଶ ଇନ୍ଦ୍ରିୟ, ବିରାଟଶରୀର, ସ୍ୱରାଟ୍ ( ସମଷ୍ଟିଜୀବ ) ସ୍ଥାବର ଓ ଜଙ୍ଗମ ଏ ସମସ୍ତ କାର୍ଯ୍ୟ ରୂପ ଅବତାର । ୩୯ଶ ଶ୍ଳୋକାର୍ଥ ।

ସେଇପୁରୁଷ—ପ୍ରଥମପୁରୁଷ ।

ବିରଜା—କାରଣାର୍ଣ୍ଣବ ( ଚିନ୍ମୟ ଜଳ )

ପ୍ରଥମ ପୁରୁଷଙ୍କ ନାମ—କାରଣାବ୍ଧିଶାୟୀ—ଯେହେତୁ ସେ ପ୍ରାକୃତ ଜଗତର ସୃଷ୍ଟିର କାରଣ । ୨୨୯ ।

କାରଣାର୍ଣ୍ଣବ ( ବିରଜା ) ପରବ୍ୟୋମକୁ ଘେରି ରହିଅଛନ୍ତି, ପରବ୍ୟୋମ କାରଣାର୍ଣ୍ଣବର ଯେଉଁ ଦିଗରେ ଅଛନ୍ତି ମାୟା ତାହାର ବିପରୀତ ଦିଗରେ ଅଛନ୍ତି, ମାୟା କାରଣାର୍ଣ୍ଣବକୁ ସ୍ପର୍ଶ କରିବାକୁ ଅକ୍ଷମ ହେତୁ କାରଣସମୁଦ୍ରକୁ ପାର ହୋଇ ପରବ୍ୟୋମକୁ ଯାଇ ପାରନ୍ତି ନାହିଁ ।୨୩୦

ତଥାହି ( ଭାଃ—୨।୯।୧୦ )—

ପ୍ରବର୍ତ୍ତତେ ଯତ୍ର ରଜସ୍ତମସ୍ତୟୋଃ,
ସତ୍ତ୍ୱଞ୍ଚ ମିଶ୍ରଂ ନ ଚ କାଳବିକ୍ରମଃ ।
ନ ଯତ୍ର ମାୟା କିମୁତାପରେ ହରେ-
ରନୁବ୍ରତା ଯତ୍ର ସୁରାସୁରାର୍ଚ୍ଚିତାଃ । ୪୦ ।

ମାୟାର ଯେ ଦୁଇ ବୃତ୍ତି—ମାୟା, ଆର ପ୍ରଧାନ ।
'ମାୟା' ନିମିତ୍ତହେତୁ ବିଶ୍ୱେର ଉପାଦାନ ପ୍ରଧାନ ।
ସେଇ ପୁରୁଷ ମାୟା-ପାନେ କରେ ଅବଧାନ ।
ପ୍ରକୃତି କ୍ଷୋଭିତ କରି କରେ ବୀର୍ଯ୍ୟାଧାନ ।୨୩୨
ସ୍ୱାଙ୍ଗ ବିଶେଷାଭାସରୂପେ ପ୍ରକୃତି ସ୍ପର୍ଶନ ।
ଜୀବରୂପ ବୀଜ ତାତେ କୈଲ ସମର୍ପଣ । ୨୩୩ ।

ଯତ୍ର ବୈକୁଣ୍ଠେ ରଜଃ ତମଃ ତୟୋର୍ମିଶ୍ରଂ ସତ୍ତ୍ୱଂ ଚ କାଳବିକ୍ରମଶ୍ଚ ନ ପ୍ରବର୍ତ୍ତତେ, ଯତ୍ର ମାୟା ନ ପ୍ରବର୍ତ୍ତତେ, ଅପରେ ( ନ ସନ୍ତି ଇତି ) କିମୁତ ଯତ୍ର ସୁରାସୁରାର୍ଚ୍ଚିତାଃ, ହରେଃ ଅନୁବ୍ରତାଃ—ପାର୍ଷଦାଃ ସନ୍ତି । ୪୦ଶ ଶ୍ଲୋକଃ ।

ଶ୍ରୀବ୍ରହ୍ମା ନାରଦଙ୍କୁ କହୁଅଛନ୍ତି—ଯେ ବୈକୁଣ୍ଠରେ ରଜ ଓ ତମ ଓ ସେମାନଙ୍କର ମିଶ୍ରସତ୍ତ୍ୱଗୁଣ ଓ କାଳବିକ୍ରମ ( ନାଶ ) ନାହିଁ ଯେଉଁଠାରେ ମାୟା ନାହାନ୍ତି, ଅପରମାନେ ( ଜଗଲ୍ଲୋକାଦି ) ଯେ ନାହାନ୍ତି ତାହା ଆଉ କଅଣ କହିବି । ସେଠାରେ ସୁରାସୁରମାନଙ୍କ ପୂଜିତ ଭଗବତ୍ପାର୍ଷଦମାନେ ବାସ କରନ୍ତି । ୪୦ଶ ଶ୍ଲୋକାର୍ଥ ।

ଭଗବାନଙ୍କ ବିଶ୍ୱସୃଷ୍ଟି କାର୍ଯ୍ୟରେ ମାୟା (ପ୍ରକୃତି) ଏକଅଂଶରେ (ମାୟାଂଶରେ) ନିମିତ୍ତ (ଅବଲମ୍ବନ) ଅପରାଂଶରେ (ପ୍ରଧାନ ଅଂଶରେ) ଉପାଦାନ (ଉପକରଣ) । ଏହାର ଭାବ ଏହି ଯେ—ଭଗବାନଙ୍କ ଇଚ୍ଛାରେ ଏବଂ ଭଗବତ୍ ଶକ୍ତିଦ୍ୱାରା ବିଶ୍ୱସୃଷ୍ଟି ହୁଏ । ପ୍ରକୃତି ଏହି କାର୍ଯ୍ୟରେ ନିମିତ୍ତ ଓ ଉପାଦାନରୂପରେ ଶ୍ରୀଭଗବାନଙ୍କର ସହାୟତା କରନ୍ତି । ୨୩୧ ।

ସେଇ ପୁରୁଷ—ସଙ୍କର୍ଷଣାଂଶ ପ୍ରଥମପୁରୁଷ । ମାୟା—ପ୍ରକୃତି । କ୍ଷୋଭିତ—ବୈଷମ୍ୟ । ସ୍ୱାଙ୍ଗ ବିଶେଷାଭାସରୂପେ—ତଦାଭାସ ଜୀବରୂପେ । ଅବଧାନ କରେ—ଦୃଷ୍ଟିପାତ କରନ୍ତି । ବୀର୍ଯ୍ୟ—ଚିଚ୍ଛକ୍ତି । ଆଧାନ—ନ୍ୟସ୍ତ ।

ଏହାର ଭାବ ଏହି—ସୃଷ୍ଟି ପୂର୍ବରୁ ଗୁଣମୟୀ ପ୍ରକୃତି ସାମ୍ୟାବସ୍ଥାରେ ଥାନ୍ତି । ଜୀବର ଅଦୃଷ୍ଟବଶତଃ ଅର୍ଥାତ୍ ଶ୍ରୀଭଗବାନଙ୍କର ସୃଷ୍ଟିଲୀଳା କରିବାର ଇଚ୍ଛା ହେଲେ ସେ କାରଣାର୍ଣ୍ଣବ ମଧ୍ୟରୁ କାରଣାର୍ଣ୍ଣବର ଅପରପାରରେ ଥିବା ସାମ୍ୟାବସ୍ଥାପନ୍ନା ପ୍ରକୃତିଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରନ୍ତି । ଏତଦ୍ଦ୍ୱାରା ପ୍ରକୃତି ବିଲୋଡ଼ିତ ହୁଅନ୍ତି । ଏହି ଦୃଷ୍ଟିନିକ୍ଷେପଜନିତ ଚିତ୍ଶକ୍ତିଦ୍ୱାରା ପ୍ରକୃତିକୁ ସ୍ପର୍ଶ କରନ୍ତି ଅର୍ଥାତ୍ ପ୍ରକୃତିରେ ଏହି ଚିତ୍ଶକ୍ତି ଅର୍ଥାତ୍ ଜୀବଶକ୍ତିକୁ ନ୍ୟସ୍ତ କରନ୍ତି । ଜଡ଼ପ୍ରକୃତି ତଦ୍ଦ୍ୱାରା ଚିତ୍ଶକ୍ତିସମ୍ପନ୍ନ ହୁଅନ୍ତି ଓ ଭଗବତ୍ଇଚ୍ଛାନୁରୂପ ସୃଷ୍ଟିକାର୍ଯ୍ୟ ବିଧାନ କରନ୍ତି । ଏତଦ୍ଦ୍ୱାରା ପ୍ରତିପାଦିତ ହେଲା ଯେ—ପ୍ରକୃତି ସ୍ୱତନ୍ତ୍ରା ନୁହନ୍ତି । ଶ୍ରୀଭଗବତ୍ପରତନ୍ତ୍ରା । ୨୩୨ । ୨୩୩ ।

ତଥାହି ( ଭାଃ—୩।୨୬।୧୯ )—

ଦୈବାତ୍ କ୍ଷୁଭିତଧର୍ମ୍ମିଣ୍ୟାଂ ସ୍ୱସ୍ୟାଂ ଯୋନୌ
ପରଃପୁମାନ୍ ।
ଆଧତ୍ତ ବୀର୍ଯ୍ୟଂ ସାସୂତ ମହତ୍ତତ୍ତ୍ୱଂ ହିରଣ୍ମୟମ୍ ।୪୧।

ତଥାହି ତତ୍ରୈବ (ଭାଃ—୩।୫।୨୬)—

କାଲବୃତ୍ତ୍ୟା ତୁ ମାୟାୟାଂ ଗୁଣମୟ୍ୟାମଧୋକ୍ଷଜଃ ।
ପୁରୁଷେଣାତ୍ମଭୂତେନ ବୀର୍ଯ୍ୟମାଧତ୍ତ ବୀର୍ଯ୍ୟ-
ବାନ୍ ।୪୨। *

ତବେ ମହତ୍ତତ୍ତ୍ୱ ହୈତେ ତ୍ରିବିଧ ଅହଙ୍କାର
ଯାହା ହୈତେ ଦେବତେନ୍ଦ୍ରିୟ-ଭୂତେର ପ୍ରଚାର ।
ସର୍ବତତ୍ତ୍ୱ ମିଲି ସୃଜିଲ ବ୍ରହ୍ମାଣ୍ଡେର ଗଣ ।
ଅନନ୍ତ ବ୍ରହ୍ମାଣ୍ଡ—ତାର ନାହିକ ଗଣନ ।୨୩୫।
ଏଁହୋ ମହତ୍ସ୍ରଷ୍ଟା ପୁରୁଷ—'ମହାବିଷ୍ଣୁ' ନାମ ।
ଅନନ୍ତ ବ୍ରହ୍ମାଣ୍ଡ ଯାର ଲୋମକୂପେ ଧାମ ।୨୩୬।
ଗବାକ୍ଷେ ଉଡ଼ିୟା ଯୈଛେ ରେଣୁ ଆସେ ଯାୟ ।
ପୁରୁଷ-ନିଶ୍ୱାସ-ସହ ବ୍ରହ୍ମାଣ୍ଡ ବାହିରାୟ ।
ପୁନରପି ନିଶ୍ୱାସ ସହ ଯାୟ ଅଭ୍ୟନ୍ତର ।
ଅନନ୍ତ ଐଶ୍ୱର୍ଯ୍ୟ ତାର—ସବ ମାୟାପର ।୨୩୮।

---

ଦୈବାତ୍—ଜୀବାଦୃଷ୍ଟାତ୍ । କ୍ଷୁଭିତଧର୍ମ୍ମିଣ୍ୟାଂ—କ୍ଷୁଭିତାଃ ଧର୍ମାଃ-ଗୁଣାଃ ଯସ୍ୟାଃ ତସ୍ୟାଂ ସ୍ୱସ୍ୟାଂ ଯୋନୌ—ଅଭିବ୍ୟକ୍ତିସ୍ଥାନେ ପରଃପୁମାନ୍ ବୀର୍ଯ୍ୟଂ—ଜୀବାଖ୍ୟ ଚିଦ୍ରୂପଶକ୍ତିଂ, ଆଧତ୍ତ—ଆହିତବାନ୍ । ସା—ପ୍ରକୃତିଃ । ହିରଣ୍ମୟଂ—ପ୍ରକାଶବହୁଳଂ, ମହତ୍ତତ୍ତ୍ୱଂ ଅସୂତ । ୪୧ଶ ଶ୍ଳୋକ ।

କାଲବୃତ୍ତ୍ୟା—କାଳଶକ୍ତ୍ୟା, ଗୁଣମୟ୍ୟାଂ—କ୍ଷୁଭିତଗୁଣାୟାଂ, ମାୟାୟାଂ—ଅବ୍ୟକ୍ତେ, ବୀର୍ଯ୍ୟବାନ୍—ଚିଚ୍ଛକ୍ତିଯୁକ୍ତଃ, ଅଧୋକ୍ଷଜଃ—ଭଗବାନ୍, ଆତ୍ମଭୂତେନ- ସ୍ୱାଂଶେନଦ୍ୱାରଭୂତେନ, ପୁରୁଷେଣ—ପ୍ରକୃତ୍ୟଧିଷ୍ଠାତ୍ରା, ବୀର୍ଯ୍ୟଂ—ଜୀବାଖ୍ୟଶକ୍ତିଂ ଆଧତ୍ତ । ୪୨ଶ ଶ୍ଳୋକ ।

ଶ୍ରୀଅଦ୍ୱୈତ ତତ୍ତ୍ୱାନୁସାରେଣ ଇଦମବଗନ୍ତବ୍ୟଂ ପ୍ରଥମପୁରୁଷଃ ମହତ୍ତତ୍ତ୍ୱାଦିକଂ ସୃଜତି ତଦବତାରଃ ଶ୍ରୀଅଦ୍ୱୈତସ୍ତତେନ ମହତ୍ତତ୍ତ୍ୱାଦିନା ବ୍ରହ୍ମାଣ୍ଡଂ ସୃଜତି । ଇତି । ୨୩୫ । ଚ. ଚ.

---

ଶ୍ରୀକପିଳଦେବ କହୁଅଛନ୍ତି—ଜୀବର ଅଦୃଷ୍ଟବଶତଃ ପ୍ରକୃତିର କ୍ଷୋଭ ହେଲେ ପରମପୁରୁଷ ଭଗବାନ୍ ପ୍ରକୃତିରେ ଜୀବନାମକ ଚିଦ୍ରୂପ ଶକ୍ତି ନ୍ୟସ୍ତ କରନ୍ତି, ତଦ୍ଦ୍ୱାରା ପ୍ରକୃତିରୁ ପ୍ରକାଶ ବହୁଳ ମହତ୍ତତ୍ତ୍ୱ ଉତ୍ପନ୍ନ ହୁଅନ୍ତି । ୪୧ଶ ଶ୍ଳୋକାର୍ଥ ।

ଶ୍ରୀମୈତ୍ରେୟ ମୁନି ଶ୍ରୀବିଦୁରଙ୍କୁ କହୁଅଛନ୍ତି—ଚିଚ୍ଛକ୍ତିଯୁକ୍ତ ଭଗବାନ୍ କାଳଶକ୍ତି ଦ୍ୱାରା କ୍ଷୋଭିତ କରି କ୍ଷୋଭିତଗୁଣା ମାୟାଙ୍କଠାରେ ନିଜ ଅଂଶ ପ୍ରକୃତି ଅଧିଷ୍ଠାତା ପୁରୁଷଦ୍ୱାରା ଜୀବ-ନାମକ ଚିଚ୍ଛକ୍ତିକୁ ଆଧାନ କରନ୍ତି । ୪୨ଶ ଶ୍ଳୋକାର୍ଥ ।

ବୀର୍ଯ୍ୟାଧାନର ପରେ ପ୍ରଥମେ ପ୍ରକାଶବହୁଳ ମହତ୍ତତ୍ତ୍ୱର ଏବଂ ମହତ୍ତତ୍ତ୍ୱରୁ ସତ୍ତ୍ୱ, ରଜ ଓ ତମ ଏହି ତ୍ରିବିଧ ଅହଙ୍କାର ତତ୍ତ୍ୱ ଓ ସେଥିରୁ ଇନ୍ଦ୍ରିୟାଧିଷ୍ଠାତା ଦେବତାମାନେ ଇନ୍ଦ୍ରିୟ-ମାନେ ଓ ପଞ୍ଚମହାଭୂତ ପ୍ରକାଶ ହୁଅନ୍ତି ଅର୍ଥାତ୍ ମହତ୍ତତ୍ତ୍ୱ, ତିନି ପ୍ରକାର ଅହଙ୍କାର, ୧୦ ଇନ୍ଦ୍ରିୟ, ୫ ମହାଭୂତ ଓ ୫ ତନ୍ମାତ୍ର ଏହି ଚତୁର୍ବିଂଶତି ତତ୍ତ୍ୱ । ୨୩୪ ।

ଏହି ତତ୍ତ୍ୱମାନ ମିଳି ବ୍ରହ୍ମାଣ୍ଡଗଣ ସୃଷ୍ଟି କରନ୍ତି । ୨୩୫ ।

ଏହୋ—ଏହି ପ୍ରଥମପୁରୁଷ, ଯାହାଙ୍କର ଅପର ନାମ ମହାବିଷ୍ଣୁ । ଧାମ—ବାସସ୍ଥାନ । ୨୩୬ ରେଣୁ—ତ୍ରସରେଣୁ । ୨୩୭ । ମାୟାପର—ମାୟାର ଅତୀତ । ୨୩୮ ।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୮ ) —

ଯସ୍ୟୈକନିଶ୍ୱସିତକାଲମଥାବଲମ୍ବ୍ୟ,
ଜୀବନ୍ତି ଲୋମବିଲଜା ଜଗଦଣ୍ଡନାଥାଃ ।
ବିଷ୍ଣୁର୍ମହାନ୍ ସ ଇହ ଯସ୍ୟ କଲାବିଶେଷୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୪୩ ।

ସମସ୍ତ ବ୍ରହ୍ମାଣ୍ଡଗଣେର ଏଁହୋ ଅନ୍ତର୍ଯ୍ୟାମୀ ।
କାରଣାବ୍ଧିଶାୟୀ ସବ ଜଗତେର ସ୍ୱାମୀ । ୨୩୯ ।
ଏଇ ତ କହିଲ ପ୍ରଥମ ପୁରୁଷେର ତତ୍ତ୍ୱ ।
ଦ୍ୱିତୀୟ ପୁରୁଷେର ଏବେ ଶୁନହ ମହତ୍ତ୍ୱ । ୨୪୦ ।
ସେଇ ପୁରୁଷ ଅନନ୍ତ କୋଟି ବ୍ରହ୍ମାଣ୍ଡ ସୃଜିୟା ।
ଏକୈକମୂର୍ତ୍ତ୍ୟେ ପ୍ରବେଶିଲା ବହୁ ମୂର୍ତ୍ତି ହୈୟା ।
ପ୍ରବେଶ କରିୟା ଦେଖେ ସବ ଅନ୍ଧକାର ।
ରହିତେ ନାହିକ ସ୍ଥାନ, କରିଲ ବିଚାର । ୨୪୧ ।
ନିଜାଙ୍ଗ ସ୍ୱେଦଜଲେ ବ୍ରହ୍ମାଣ୍ଡାର୍ଦ୍ଧ ଭରିଲ ।
ସେଇ ଜଲେ ଶେଷଶଯ୍ୟାୟ ଶୟନ କରିଲ ।
ତାଁର ନାଭିପଦ୍ମ ହୈତେ ଉଠିଲ ଏକ ପଦ୍ମ ।
ସେଇ ପଦ୍ମେ ହଇଲ ବ୍ରହ୍ମାର ଜନ୍ମସଦ୍ମ । ୨୪୪ ।
ସେଇ ପଦ୍ମନାଲେ ହୈଲ ଚୌଦ୍ଦଭୁବନ ।
ତେହେଁ ବ୍ରହ୍ମା ହଞା ସୃଷ୍ଟି କରିଲ ସୃଜନ ।

ବିଷ୍ଣୁରୂପ ହଞା କରେ ଜଗତ-ପାଲନେ ।
ଗୁଣାତୀତ ବିଷ୍ଣୁ — ସ୍ପର୍ଶ ନାହିଁ ମାୟା-ସନେ । ୨୪୬ ।
ରୁଦ୍ର-ରୂପ ଧରି କରେ ଜଗତ-ସଂହାର ।
ସୃଷ୍ଟି ସ୍ଥିତି ପ୍ରଳୟ ଇଚ୍ଛାୟ ଯାଁହାର ।
ବ୍ରହ୍ମା ବିଷ୍ଣୁ ଶିବ ତାଁର ଗୁଣାବତାର ।
ସୃଷ୍ଟି-ସ୍ଥିତି ପ୍ରଲୟେର ତିନେ ଅଧିକାର ।
ହିରଣ୍ୟଗର୍ଭ ଅନ୍ତର୍ଯ୍ୟାମୀ ଗର୍ଭୋଦକଶାୟୀ ।
ସହସ୍ରଶୀର୍ଷାଦି କରି ବେଦେ ଯାରେ ଗାଇ ।
ଏଇ ତ ଦ୍ୱିତୀୟ ପୁରୁଷ ବ୍ରହ୍ମାଣ୍ଡ-ଈଶ୍ୱର ।
ମାୟାର ଆଶ୍ରୟ ହୟ—ତଭୁ ମାୟାପାର । ୨୫୦ ।
ତୃତୀୟ ପୁରୁଷ ବିଷ୍ଣୁ ଗୁଣ-ଅବତାର ।
ଦୁଇ ଅବତାର ଭିତର ଗଣନା ତାଁହାର ।
ବିରାଟ ବ୍ୟଷ୍ଟି ଜୀବେର ତେଁହୋ ଅନ୍ତର୍ଯ୍ୟାମୀ ।
କ୍ଷୀରୋଦକଶାୟୀ ତେଁହୋ ପାଲନକର୍ତ୍ତା ସ୍ୱାମୀ ।
ପୁରୁଷାବତାରେର ଏଇ କୈଲ ନିରୂପଣ ।
ଲୀଲାବତାରେର ଏବେ ଶୁନ ସନାତନ । ୨୫୩ ।
ଲୀଲାବତାର କୃଷ୍ଣେର ନାହିକ ଗଣନ ।
ପ୍ରଧାନ କରିୟା କହି ଦିଗ୍‌ଦରଶନ । ୨୫୪ ।
ମତ୍ସ୍ୟ କୂର୍ମ ରଘୁନାଥ ନୃସିଂହ ବାମନ ।
ବରାହାଦି ଲେଖା ଯାର ନା ଯାୟ ଗଣନ । ୨୫୫ ।

---

୪୩ ଶ୍ଳୋକର ଅନ୍ୱୟ ଆଦି ୫ମ ପରି: ୬୨ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଯାହାଙ୍କର ଲୋମକୂପବାସୀ ବ୍ରହ୍ମାଣ୍ଡାଧିପତି ବ୍ରହ୍ମା ବିଷ୍ଣୁ ଓ ଶିବ ଯାହାଙ୍କର ଏକ ନିଶ୍ୱାସ ପତନର ସମୟବ୍ୟାପୀ ଜଗତରେ ପ୍ରକଟ ରହନ୍ତି ସେହି ମହାବିଷ୍ଣୁ ଯାହାଙ୍କର ଅଂଶାନୁଅଂଶ ଏହିଭୂତ ଶ୍ରୀଗୋଲୋକପଦ୍ମଦଳସ୍ଥ ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୪୩ଶ ଶ୍ଳୋକାର୍ଥ ।

ସେଇ ପୁରୁଷ—ପ୍ରଥମପୁରୁଷ ବା ମହାବିଷ୍ଣୁ । ୨୪୧ ।

ବହୁମୂର୍ତ୍ତିହୈୟା—ପ୍ରଥମପୁରୁଷ ବ୍ରହ୍ମାଣ୍ଡଗଣ ସୃଷ୍ଟି କରି ପ୍ରତ୍ୟେକ ବ୍ରହ୍ମାଣ୍ଡରେ ଏକ ଏକ ମୂର୍ତ୍ତି ହୋଇ ପ୍ରବେଶ କଲେ । ଏହି ମୂର୍ତ୍ତି ଦ୍ୱିତୀୟପୁରୁଷ ବା ଗର୍ଭୋଦକଶାୟୀ । ୨୪୧ ।

ଶେଷଶଯ୍ୟାୟ—ଅନନ୍ତଶଯ୍ୟାରେ । ୨୪୩ । ତେହେଁ—ଦ୍ୱିତୀୟପୁରୁଷ । ୨୪୫ ।

ଯାଁହାର—ସେହି ଦ୍ୱିତୀୟପୁରୁଷଙ୍କର । ୨୪୭ !

ତୃତୀୟପୁରୁଷ ବିଷ୍ଣୁ—(କ୍ଷୀରୋଦଶାୟୀ) ଏ ପୁରୁଷାବତାର ଓ ଗୁଣାବତାର ଉଭୟରେ ଗଣନୀୟ । ୨୫' ।

ତଥାହି ( ଭାଃ—୧୦।୨।୪୦ )—
ମତ୍ସ୍ୟାଶ୍ୱକଚ୍ଛପବରାହନୃସିଂହହଂସ-
ରାଜନ୍ୟବିପ୍ରବିବୁଧେଷୁ କୃତାବତାରଃ ।
ତ୍ୱଂ ପାସି ନସ୍ତ୍ରିଭୁବନଞ୍ଚ ତଥାଽଧୁନେଶ,
ଭାରଂ ଭୁବୋ ହର ଯଦୂତ୍ତମ ବନ୍ଦନଂ ତେ ।୪୪।
ଲୀଳାବତାରେର କୈଲ ଦିଗ୍‌ଦରଶନ ।
ଗୁଣାବତାରେର ଏବେ ଶୁନ ବିବରଣ । ୨୫୭ ।
ବ୍ରହ୍ମା ବିଷ୍ଣୁ ଶିବ—ତିନ ଗୁଣ-ଅବତାର ।
ତ୍ରିଗୁଣାଙ୍ଗୀ କରି କରେ ସୃଷ୍ଟ୍ୟାଦି ବ୍ୟବହାର ।
ଭକ୍ତିମିଶ୍ର-କୃତପୁଣ୍ୟ କୋନ ଜୀବୋତ୍ତମ ।
ରଜୋଗୁଣେ ବିଭାବିତ କରି ତାର ମନ । ୨୫୮ ।
ଗର୍ଭୋଦକଶାୟିଦ୍ୱାରେ ଶକ୍ତି ସଞ୍ଚାରି ।
ବ୍ୟଷ୍ଟି-ସୃଷ୍ଟି କରେ କୃଷ୍ଣ ବ୍ରହ୍ମା-ରୂପ ଧରି ।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୯ )—
ଭାସ୍ୱାନ୍ ଯଥାଶ୍ମସକଲେଷୁ ନିଜେଷୁ ତେଜଃ,
ସ୍ୱୀୟଂ କିୟତ୍ ପ୍ରକଟୟତ୍ୟପି ତଦ୍ୱଦତ୍ର ।
ବ୍ରହ୍ମା ଯ ଏଷ ଜଗଦଣ୍ଡବିଧାନକର୍ତ୍ତା,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୪୫ ।

ହେ ଈଶ ! ( ଅନ୍ୟଦାଯଥା ) ମତ୍ସ୍ୟାଶ୍ୱ କଚ୍ଛପ ବରାହ ନୃସିଂହ ହଂସ ରାଜନ୍ୟ ବିପ୍ରବିବୁଧେଷୁ କୃତାବତାରଃ ସନ୍ ( ଅସ୍ମାନ୍ ଦେବାନ୍ ) ତ୍ରିଭୁବନଂ—ତ୍ରିଭୁବନସ୍ଥାନ୍ ସାଧୁଜନାନ୍ ଚ ପାସି ତଥା ଅଧୁନା ( ଅପି ) ଭୁବଃଭାରଂ ହର, ( ହେ ) ଯଦୂତ୍ତମ ! ତେ-ତୁଭ୍ୟଂ ବନ୍ଦନଂ । ୪୪ଶ ଶ୍ଳୋକ ।

ଯଥା ଭାସ୍ୱାନ୍—ସୂର୍ଯ୍ୟଃ ନିଜେଷୁ ଅଶ୍ମସକଲେଷୁ ସୂର୍ଯ୍ୟକାନ୍ତାଖ୍ୟେଷୁ ସ୍ୱୀୟଂ କିୟତ୍ ତେଜଃ ପ୍ରକଟୟତି, ଅପି ଶବ୍ଦାତ୍ ତେନ ତଦୁପାଧିକାଂଶେନ ଦାହାଦିକାର୍ଯ୍ୟଂ ସ୍ୱୟମେବ କରୋତି, ତଦ୍ୱତ୍ ଯ ଏଷଃ-ପୁରୁଷଃ ଅତ୍ର ଜୀବବିଶେଷେ, କିଞ୍ଚିତ୍ ତେଜଃ ପ୍ରକଟୟତି ତେନ ତଦୁପାଧିକାଂଶେନ ସ୍ୱୟମେବ, ବ୍ରହ୍ମା (ସନ୍) ଜଗଦଣ୍ଡବିଧାନକର୍ତ୍ତା ଭବତି, ତଂ ଆଦିପୁରୁଷଂ ଗୋବିନ୍ଦଂ ଅହଂ ଭଜାମି । ୪୫ଶ ଶ୍ଳୋକ ।

ଦେବତାମାନେ ସ୍ତୁତିପୂର୍ବକ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ହେ ଈଶ ! ଆପଣ ମତ୍ସ୍ୟ ହୟଗ୍ରୀବ କୂର୍ମ, ବରାହ, ନୃସିଂହ, ହଂସ, ଶ୍ରୀରାମ, ପରଶୁରାମ, ବାମନ, ରାଜା, ବ୍ରାହ୍ମଣ, ଦେବତା ପ୍ରଭୃତି ଅବତାର ହୋଇ ପୂର୍ବେ ଯେପରି ଆମ୍ଭମାନଙ୍କୁ ଓ ତ୍ରିଭୁବନକୁ ରକ୍ଷା କରିଅଛନ୍ତି, ବର୍ତ୍ତମାନ ସେହିପରି ପୃଥିବୀର ଭାର ହରଣ କରନ୍ତୁ । ହେ ଯଦୂତ୍ତମ ! ଆପଣଙ୍କୁ ପ୍ରଣାମ କରୁଅଛୁଁ । ୪୪ଶ ଶ୍ଳୋକାର୍ଥ ।

ଅସଂଖ୍ୟ ପୃଥକ୍ ପୃଥକ୍ ଜୀବମାନଙ୍କର ତୃତୀୟପୁରୁଷ ଅନ୍ତର୍ଯ୍ୟାମୀ, ତାଙ୍କର ଧାମ କ୍ଷୀରୋଦକସ୍ଥ ଶ୍ୱେତଦ୍ୱୀପ ଏବଂ ତାଙ୍କର ଗୁଣ ଜଗତ୍ ପାଳନ କରିବା । ଅତଏବ ସେ ଜଗତର ସ୍ୱାମୀ । ୨୫୬ ।

ତ୍ରିଗୁଣାଙ୍ଗୀକରି—ସତ୍ତ୍ୱ ରଜଃ ତମ ତ୍ରିଗୁଣକୁ ଅଙ୍ଗୀକାର କରି । ୨୫୭ ।

ଶ୍ରୀକୃଷ୍ଣ କୌଣସି କୌଣସି ସମୟରେ ପୁଣ୍ୟାତ୍ମା କୌଣସି ଜୀବଙ୍କଠାରେ ସ୍ୱାଂଶ ଶ୍ରୀ ଗର୍ଭୋଦକଶାୟୀଙ୍କଦ୍ୱାରା ଶକ୍ତି ସଞ୍ଚାର କରାଇ ତଦୁପାଧିକ ଅଂଶଦ୍ୱାରା ବ୍ରହ୍ମା ହୋଇ ବ୍ୟଷ୍ଟି ସୃଷ୍ଟି କରନ୍ତି । ୨୫୭।୨୫୮ ।

ସୂର୍ଯ୍ୟ ଯେପରି ସୂର୍ଯ୍ୟକାନ୍ତ ମଣିରେ ନିଜର କିଞ୍ଚିତ୍ ତେଜ ପ୍ରକଟ କରି ତଦ୍ୱାରା ଦାହାଦି କାର୍ଯ୍ୟ କରନ୍ତି ତଦ୍ରୂପ ଯେ ଜୀବବିଶେଷରେ କିଞ୍ଚିତ୍ ତେଜ ପ୍ରକଟ କରି ତଦ୍ୱାରା ବ୍ୟଷ୍ଟି ସୃଷ୍ଟି-କର୍ତ୍ତା ହୁଅନ୍ତି, ସେହି ଆଦି ପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୪୫ଶ ଶ୍ଳୋକାର୍ଥ ।

କୋନ କଲେ ଯଦି ଯୋଗ୍ୟ ଜୀବ ନାହି ପାୟ ।
ଆପନେ ଈଶ୍ୱର ତବେ ଅଂଶେ ବ୍ରହ୍ମା ହୟ ।୨୬୦।
ତଥାହି ( ଭାଃ—୧୦।୩୮।୨୬ )—
ଯସ୍ୟାଙ୍ଘ୍ରିପଙ୍କଜରଜୋଽଖିଲଲୋକପାଲୈ-
ର୍ମୌଲ୍ୟୁତ୍ତମୈର୍ଧୃତମୁପାସିତତୀର୍ଥତୀର୍ଥମ୍ ।
ବ୍ରହ୍ମା ଭବୋଽହମପି ଯସ୍ୟ କଳାଃ କଳାୟାଃ,
ଶ୍ରୀଶ୍ଚୋଦ୍ୱହେମ ଚିରମସ୍ୟ ନୃପାସନଂ କ୍ୱ । ୪୬ ।
ନିଜାଂଶ କଳାୟ କୃଷ୍ଣ ତମୋଗୁଣ ଅଙ୍ଗୀ କରି ।
ସଂହାରାର୍ଥେ ମାୟା ସଙ୍ଗେ ରୁଦ୍ର-ରୂପ ଧରି ।୨୬୧।
ମାୟା ସଙ୍ଗେ ବିକାରି ରୁଦ୍ର ଭିନ୍ନାଭିନ୍ନ-ରୂପ ।
ଜୀବତତ୍ତ୍ୱ ନହେ, ନହେ କୃଷ୍ଣେର ସ୍ୱରୂପ ।
ଦୁଗ୍ଧ ଯେନ ଅମ୍ଳଯୋଗେ ଦଧିରୂପ ଧରେ ।
ଦୁଗ୍ଧାନ୍ତର ବସ୍ତୁ ନହେ, ଦୁଗ୍ଧ ହୈତେ ନାରେ ।
ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୫ )—
କ୍ଷୀରଂ ଯଥା ଦଧି ବିକାରବିଶେଷଯୋଗାତ୍,
ସଞ୍ଜାୟତେ ନ ତୁ ତତଃ ପୃଥଗସ୍ତି ହେତୋଃ ।
ଯଃ ଶମ୍ଭୁତାମପି ତଥା ସମୁପୈତି କାର୍ଯ୍ୟାତ୍,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୪୭ ।

---

ଯଥା ବିକାରବିଶେଷ ଯୋଗାତ୍ କ୍ଷୀରଂ-ଦୁଗ୍ଧଂ ଦଧି ସଞ୍ଜାୟତେ, ତତଃ ହେତୋଃ ଦୁଗ୍ଧାତ୍ ନ ପୃଥକ୍ ଅସ୍ତି, ତୁ ଏବଂ ତଥା କାର୍ଯ୍ୟାତ୍—ସଂହାର କାର୍ଯ୍ୟବଶାତ୍ ଯଃ ପୁରୁଷଃ ଶମ୍ଭୁତାଂ ଅପି ସମୁପୈତି ତଂ ଆଦିପୁରୁଷଂ ଗୋବିନ୍ଦଂ ଅହଂ ଭଜାମି । ୪୭ ଶ୍ଳୋକଃ ।

---

ଆପନେ ଈଶ୍ୱର—ଗର୍ଭୋଦକଶାୟୀ । ୨୬୦ ।

୪୬ ଶ୍ଳୋକର ଅନ୍ୱୟ-ଆଦି: ୫ମ ପରି: ୨୧ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣକୁମାର ଶାମ୍ବ ଦୁର୍ଯ୍ୟୋଧନଙ୍କ ଗୃହରେ ଅବରୁଦ୍ଧ ଥିବାରୁ ଶ୍ରୀବଳରାମ ତାହାଙ୍କୁ ଆଣିବାକୁ ଯାଇ କୌରବମାନଙ୍କଠାରୁ ଶ୍ରୀକୃଷ୍ଣଙ୍କ ଅପମାନସୂଚକ କଥା ଶୁଣି କହୁଅଛନ୍ତି । ଯଥା—

ଯେଉଁ ଶ୍ରୀକୃଷ୍ଣଙ୍କର ପାଦପଦ୍ମରେଣୁ ଗଙ୍ଗାଦି ତୀର୍ଥମାନଙ୍କୁ ତୀର୍ଥ କରିଅଛି ଏବଂ ବ୍ରହ୍ମା, ମହାଦେବ, ମୁଁ ( ବଳରାମ ) ଓ ଲକ୍ଷ୍ମୀଦେବୀ ଯାହାଙ୍କର ଅଂଶର ଅଂଶ ଏବଂ ଯାହାଙ୍କର ପାଦପଦ୍ମରେଣୁ ଆମ୍ଭେମାନେ ଚିରକାଳ ବହନ କରୁଁ, ସେହି ଶ୍ରୀକୃଷ୍ଣଙ୍କର ରାଜସିଂହାସନ କେଉଁ-ଠାରେ । ୪୬ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କର ନିଜର ଅଂଶ ସଙ୍କର୍ଷଣ, ତାହାଙ୍କର ଅଂଶ ଶ୍ରୀ ସଦାଶିବ, ତାହାଙ୍କର ଅଂଶ ଗୁଣାବତାର ରୁଦ୍ର ( ଶିବ ),ଏହିହେତୁ ଶିବ ଅଂଶାଂଶହେତୁ ଶ୍ରୀକୃଷ୍ଣଙ୍କର ଅଂଶ କଳା, ଶ୍ରୀକୃଷ୍ଣ ସଙ୍କର୍ଷଣ ଓ ସଦାଶିବ ଏମାନେ ନିର୍ଗୁଣ, ରୁଦ୍ର ତମୋଗୁଣୀ ଏବଂ ମାୟାସଙ୍ଗୀ ହେତୁ ବିକାରୀ କିନ୍ତୁ ଜୀବ ନୁହନ୍ତି, ଅଥଚ ଶ୍ରୀକୃଷ୍ଣଙ୍କର ସ୍ୱରୂପ ମଧ୍ୟ ନୁହନ୍ତି । ଏହାର ଭାବ ଏହି ଯେ,ଶ୍ରୀକୃଷ୍ଣଙ୍କର ଅଂଶ କଳା ହେତୁ ଶିବ ଶ୍ରୀଭଗବତ୍ତତ୍ତ୍ୱ ଅଟନ୍ତି ଶ୍ରୀକୃଷ୍ଣଙ୍କଠାରୁ ଅଭିନ୍ନ, କିନ୍ତୁ ଭଗବତ୍ତତ୍ତ୍ୱ ମାୟାତୀତ ହେତୁ ପ୍ରାକୃତ ଗୁଣ-ରହିତ ଅର୍ଥାତ୍ ନିର୍ଗୁଣ; କିନ୍ତୁ ଶିବ ପ୍ରାକୃତ ତମୋଗୁଣଯୁକ୍ତ ହେତୁ ବିକାରୀ ଏଣୁ ଶ୍ରୀଭଗବ-ତତ୍ତ୍ୱରୁ ଭିନ୍ନ । ଅତଏବ ଶ୍ରୀକୃଷ୍ଣଙ୍କର ଭିନ୍ନାଭିନ୍ନ ରୂପ, ଯେପରି ଦୁଗ୍ଧ ଅମ୍ଳଯୋଗରେ ବିକୃତ ହୋଇ ଦଧି ହୁଏ, ଦଧି ଦୁଗ୍ଧ ବ୍ୟତୀତ ଅପର ବସ୍ତୁ ନୁହେ, ଏଣୁ ଦଧି ଦୁଗ୍ଧରୁ ଅଭିନ୍ନ, କିନ୍ତୁ ବିକୃତ ହୋଇଥିବାରୁ ଆଉ ଦୁଗ୍ଧ ନୁହେ, ଏଣୁ ଭିନ୍ନ । ୨୬୧।୨୬୨।୨୬୩ ।

ଦୁଗ୍ଧ ଯେପରି ବିକାର ବିଶେଷଯୋଗରେ ଦଧି ହୁଏ କିନ୍ତୁ ଦଧି ନିଜର କାରଣ ଦୁଗ୍ଧଠାରୁ ପୃଥକ ପଦାର୍ଥ ନୁହେଁ, ତଦ୍ରୂପ ଯେ ସଂହାରାଦି କାର୍ଯ୍ୟ ସକାଶେ ରୁଦ୍ର ହୋଇଅଛନ୍ତି, ସେହି ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୪୭ଶ ଶ୍ଳୋକାର୍ଥ ।

ଶିବ ମାୟାଶକ୍ତିଯୁକ୍ତ ତମୋଗୁଣାବେଶ ।
ମାୟାତୀତ ଗୁଣାତୀତ—ବିଷ୍ଣୁ ପରମେଶ । ୨୬୪ ।
ତଥାହି ( ଭାଃ—୧୦।୮୮।୨ )—
ଶିବଃ ଶକ୍ତିଯୁତଃ ଶଶ୍ୱତ୍ ତ୍ରିଲିଙ୍ଗୋ ଗୁଣସଂବୃତଃ ।
ବୈକାରିକସ୍ତୈଜସଶ୍ଚ ତାମସଶ୍ଚେତ୍ୟହଂ ତ୍ରିଧା ୪୮ ।
ତଥାହି ( ଭାଃ—୧୦।୮୮।୫ )—
ହରିର୍ହି ନିର୍ଗୁଣଃ ସାକ୍ଷାତ୍ ପୁରୁଷଃ ପ୍ରକୃତେଃ ପରଃ ।
ସ ସର୍ବଦୃଗୁପଦ୍ରଷ୍ଟା ତଂ ଭଜନ୍ନିର୍ଗୁଣୋ
ଭବେତ୍ । ୪୯ ।

ପାଳନାର୍ଥ ସ୍ୱାଂଶ ବିଷ୍ଣୁ-ରୂପେ ଅବତାର ।
ସତ୍ତ୍ୱଗୁଣଦ୍ରଷ୍ଟା, ତାତେ ଗୁଣ-ମାୟାପାର ।୨୬୫।
ସ୍ୱରୂପ-ଐଶ୍ୱର୍ଯ୍ୟ-ପୂର୍ଣ୍ଣ କୃଷ୍ଣ-ସମ ପ୍ରାୟ ।
'କୃଷ୍ଣ-ଅଂଶୀ,ତେଁହୋ ଅଂଶ' ବେଦେ ହେନ ଗାୟ ।
ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୬ )—
ଦୀପାର୍ଚ୍ଚିରେବ ହି ଦଶାନ୍ତରମଭ୍ୟୁପେତ୍ୟ,
ଦୀପାୟତେ ବିବୃତହେତୁସମାନଧର୍ମ୍ମା ।
ଯସ୍ତାଦୃଗେବ ହି ଚ ବିଷ୍ଣୁତୟା ବିଭାତି,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୫୦ ।

ଶିବଃ ଶଶ୍ୱତ୍ ଶକ୍ତିଯୁତଃ ତ୍ରିଲିଙ୍ଗଃ—ଗୁଣତ୍ରୟୋପାଧିକଃ ବୈକାରିକଃ—ସାତ୍ତ୍ୱିକଃ, ତୈଜସଃ— ରାଜସଃ, ତାମସଶ୍ଚ ଇତି ଅହଂ ଅହଂତତ୍ତ୍ୱଂ ହି ତଦ୍ରୂପେଣ, ତ୍ରିଧା (ସ ଚ ତଦଧିଷ୍ଠାତା) ଗୁଣସଂବୃତଃ । ୪୮ଶ ଶ୍ଳୋକଃ ।

ପ୍ରକୃତେଃ ପରଃ ହରିଃ ହି ନିର୍ଗୁଣଃ—ଗୁଣାତୀତଃ ସାକ୍ଷାତ୍ ( ଏବ ) ପୁରୁଷଃ—ଈଶ୍ୱରଃ, ସଃ—ହରିଃ ସର୍ବଦୃକ୍—ସର୍ବେଷାଂ ଶିବବ୍ରହ୍ମାଦୀନାଂ ଦୃକ୍— ଜ୍ଞାନଂ ଯସ୍ମାତ୍ ତଥାଭୂତଃ ସନ୍, ଉପଦ୍ରଷ୍ଟା—ତଦାଦି ସାକ୍ଷୀ ଭବତି ଅତଃ, ତଂ ଭଜନ୍ ନିର୍ଗୁଣଃ—ଗୁଣାତୀତଫଲଭାଗ୍ ଭବେତ୍ । ୪୯ଶ ଶ୍ଳୋକ ।

ଦୀପାର୍ଚ୍ଚିଃ—ଦୀପଶିଖା ଏବହି—ଯଥା ଦଶାନ୍ତରଂ ଅଭ୍ୟୁପେତ୍ୟ ବିବୃତ ହେତୁ ସମାନ ଧର୍ମା—ବିବୃତଃ—ବିସ୍ତାରିତଃ ହେତୋଃ—ମୂଳଦୀପସ୍ୟ ସମାନଃ—ସଦୃଶଃ ଧର୍ମଃ ଯସ୍ୟା ସା, ଦୀପାୟତେ—ପୂର୍ବଦୀପବତ୍ ଆଚରତି ତତ୍ ସଦୃଶତୟା ପ୍ରକାଶତେ, ତାଦୃକ୍ ଏବ ଯଃ— ପୁରୁଷଃ, ବିଷ୍ଣୁତୟା — ବିଷ୍ଣୁରୂପେଣ ଚ ବିଭାତି ହି ତଂ ଆଦିପୁରୁଷଂ ଗୋବିନ୍ଦଂ ଅହଂ ଭଜାମି । ୫୦ଶ ଶ୍ଳୋକ ।

ବିଷ୍ଣୁ—କୃଷ୍ଣ । ୨୬୪ ।

ଶିବ ପ୍ରକୃତିଯୁକ୍ତ ଓ ତମୋଗୁଣରେ ଅବିଷ୍ଟ ଅର୍ଥାତ୍ ତମୋଗୁଣ ପ୍ରଧାନ । ଶ୍ରୀକୃଷ୍ଣ ମାୟାତୀତ ହେତୁ ଗୁଣାତୀତ ଏବଂ ବ୍ରହ୍ମା ଶିବାଦିଙ୍କର ନିୟନ୍ତା ହେତୁ ପରମେଶ୍ୱର । ୨୬୪ ।

ଶ୍ରୀଶୁକଦେବ ଗୋସ୍ୱାମୀ କହୁଅଛନ୍ତି—ଶିବ ସର୍ବଦା ଶକ୍ତିଯୁକ୍ତ (ପ୍ରକୃତିଯୁକ୍ତ ) ତ୍ରିଲିଙ୍ଗ ଏବଂ ଗୁଣସମ୍ଭୂତ, କାରଣ ଅହଙ୍କାର ସାତ୍ତ୍ୱିକ, ରାଜସ ଏବଂ ତାମସ ଏହି ତିନି ପ୍ରକାର । ଶିବ ଅହଙ୍କାର ତତ୍ତ୍ୱର ଅଧିଷ୍ଠାତା, ଅହଙ୍କାର ତ୍ରିଗୁଣଯୁକ୍ତ ଏଣୁ ସେ ତ୍ରିଲିଙ୍ଗ । ୪୮ଶ ଶ୍ଳୋକାର୍ଥ ।

ହରି ନିର୍ଗୁଣ ସ୍ୱୟଂ ଈଶ୍ୱର ପ୍ରକୃତିର ପର ବ୍ରହ୍ମା ଶିବ ଆଦିଙ୍କର ଜ୍ଞାନଦାତା ଏବଂ ସର୍ବସାକ୍ଷୀ, ତାହାଙ୍କୁ ଭଜନା କଲେ ନିର୍ଗୁଣଭାବ ପ୍ରାପ୍ତି ହୁଏ । ୪୯ଶ ଶ୍ଳୋକାର୍ଥ ।

ବର୍ତ୍ତମାନ ଗୁଣାବତାର ବିଷ୍ଣୁଙ୍କ ବିଷୟ କହୁଅଛନ୍ତି— କୃଷ୍ଣସ୍ୱାଂଶରେ ବିଷ୍ଣୁ ହୋଇ ସତ୍ତ୍ୱଗୁଣ ପ୍ରତି ଦୃଷ୍ଟିପାତଦ୍ୱାରା ଜଗତର ପାଳନ କାର୍ଯ୍ୟ କରନ୍ତି, ଗୁଣସ୍ପର୍ଶ କରନ୍ତି ନାହିଁ । ଯେହିହେତୁ ପ୍ରକୃତିର ଅତୀତ ତାହାଙ୍କର ସ୍ୱରୂପ ଐଶ୍ୱର୍ଯ୍ୟ ପ୍ରାୟ କୃଷ୍ଣଙ୍କ ସମାନ । ୨୬୫ ।

ଗୋଟିଏ ଦୀପଶିଖା ଦଶାନ୍ତର ପ୍ରାପ୍ତ ହୋଇ (ଅନ୍ୟ ବଳିତାରେ ଲାଗି ) ଅନ୍ୟ ଗୋଟିଏ ଦୀପ ହୁଏ କିନ୍ତୁ ଏହି ଦୁଇ ଦୀପର ପ୍ରକାଶ ଧର୍ମ ସମାନ ହୁଏ, ତଦ୍ରୂପ ଯେଉଁ ଗୋବିନ୍ଦ

ବ୍ରହ୍ମା ଶିବ—ଆଜ୍ଞାକାରୀ ଭକ୍ତ-ଅବତାର ।
ପାଳନାର୍ଥେ ବିଷ୍ଣୁ — କୃଷ୍ଣେର ସ୍ୱରୂପ-ଆକାର ।

ତଥାହି ( ଭାଃ — ୨।୬।୩୦ )—

ସୃଜାମି ତନ୍ନିଯୁକ୍ତୋଽହଂ ହରୋ ହରତି ତଦ୍ୱଶଃ
ବିଶ୍ୱଂ ପୁରୁଷରୂପେଣ ପରିପାତି ତ୍ରିଶକ୍ତିଧୃକ୍ । ୫୧ ।

ମନ୍ୱନ୍ତରାବତାର ଏବେ ଶୁନ ସନାତନ ।
ଅସଂଖ୍ୟ ଗଣନ ତାର, ଶୁନହ କାରଣ ।୨୬୮।
ବ୍ରହ୍ମାର ଏକଦିନେ ହୟ ଚୌଦ୍ଦ ମନ୍ୱନ୍ତର ।
ଚୌଦ୍ଦ-ଅବତାର ତାହାଁ କରେନ ଈଶ୍ୱର ।
ଏ ଚୌଦ୍ଦ ଏକଦିନେ, ମାସେ ଚାରିଶତ-ବିଶ ।
ବ୍ରହ୍ମାର ବତ୍ସରେ ପଞ୍ଚ-ହାଜାର-ଚଲ୍ଲିଶ । ୨୭୦
ଶତେକ ବତ୍ସର ହୟ ଜୀବନ ବ୍ରହ୍ମାର ।
ପଞ୍ଚ ଲକ୍ଷ ଚାରି ହାଜାର ମନ୍ୱନ୍ତରାବତାର ।
ଅନନ୍ତ ବ୍ରହ୍ମାଣ୍ଡେ ଐଛେ କରହ ଗଣନ ।
ମହାବିଷ୍ଣୁର ଏକଶ୍ୱାସ ବ୍ରହ୍ମାର ଜୀବନ । ୨୭୨ ।
ମହାବିଷ୍ଣୁର ନିଶ୍ୱାସେର ନାହିକ ପର୍ଯ୍ୟନ୍ତ ।
ଏକ ମନ୍ୱନ୍ତରାବତାରେର ଦେଖ ଲେଖାର ଅନ୍ତ ।
ସ୍ୱାୟମ୍ଭୁବେ 'ଯଜ୍ଞ' ସ୍ୱାରୋଚିଷେ 'ବିଭୁ' ନାମ ।
ଔତ୍ତମେ 'ସତ୍ୟସେନ' ତାମସେ 'ହରି' ଅଭିଧାନ
ରୈବତେ 'ବୈକୁଣ୍ଠ', ଚାକ୍ଷୁଷେ 'ଅଜିତ',
ବୈବସ୍ୱତେ 'ବାମନ' ।
ସାବର୍ଣ୍ଣେ 'ସାର୍ବଭୌମ', ଦକ୍ଷସାବର୍ଣ୍ଣେ
'ଋଷଭ' ଗଣନ । ୨୭୫ ।
ବ୍ରହ୍ମସାବର୍ଣ୍ଣେ 'ବିଷ୍ୱକ୍‌ସେନ', 'ଧର୍ମସେତୁ'
ଧର୍ମସାବର୍ଣ୍ଣେ ।
ରୁଦ୍ରସାବର୍ଣ୍ଣେ 'ସୁଧାମା', 'ଯୋଗେଶ୍ୱର'
ଦେବସାବର୍ଣ୍ଣେ । ୨୭୬ ।
ଇନ୍ଦ୍ରସାବର୍ଣ୍ଣେ 'ବୃହଦ୍ଭାନୁ' ଅଭିଧାନ ।
ଏଇ ଚୌଦ୍ଦ-ମନ୍ୱନ୍ତରେ ଚୌଦ୍ଦ-ଅବତାର-ନାମ ।
ଯୁଗାବତାର ଏବେ ଶୁନ ସନାତନ ।
ସତ୍ୟ ତ୍ରେତା ଦ୍ୱାପର କଲି—ଚାରି ଯୁଗେର
ଗଣନ । ୨୭୮ ।
ଶୁକ୍ଳ ରକ୍ତ କୃଷ୍ଣ ପୀତ—କ୍ରମେ ଚାରି ବର୍ଣ୍ଣ ।
ଚାରି ବର୍ଣ୍ଣ ଧରି କୃଷ୍ଣ କରାୟ ଯୁଗଧର୍ମ । ୨୭୯ ।

ତଥାହି

(ଭାଃ—୧୦।୮।୧୩, ୧୧।୫।୨୧, ୧୧।୫।୨୪)—

ଆସନ୍ ବର୍ଣ୍ଣାସ୍ତ୍ରୟୋ ହ୍ୟସ୍ୟ ଗୃହ୍ଣତୋଽନୁଯୁଗଂ
ତନୂଃ ।
ଶୁକ୍ଳୋ ରକ୍ତସ୍ତଥା ପୀତ ଇଦାନୀଂ କୃଷ୍ଣତାଂ
ଗତଃ । ୫୨ ।

---

ସ୍ୱରୂପ ଆକାର — ସମାନ ଧର୍ମୀ ହେତୁ ସ୍ୱରୂପ ଆକାର । ଅହଂ ତନ୍ନିଯୁକ୍ତଃ ( ସନ୍ ) ବିଶ୍ୱଂ ସୃଜାମି, ହରଃ ତଦ୍‌ବଶଃ (ସନ୍) ହରତି ତ୍ରିଶକ୍ତିଧୃକ୍ ପୁରୁଷରୂପେଣ—ବିଷ୍ଣୁନାମାବତାରେଣ, ପରିପାତି । ୫୧ଶ ଶ୍ଳୋକ ।

---

ବିଷ୍ଣୁରୂପୀ ( ଗୁଣାବତାର ବିଷ୍ଣୁ ) ହୁଅନ୍ତି, ସେହି ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୫୦ଶ ଶ୍ଳୋକାର୍ଥ ।

ଶ୍ରୀବ୍ରହ୍ମା ଶ୍ରୀନାରଦଙ୍କୁ କହୁଅଛନ୍ତି— ତାହାଙ୍କର ନିଯୋଗରେ ମୁଁ ବିଶ୍ୱସୃଷ୍ଟି କରେଁ, ହର ତାହାଙ୍କର ଅଧୀନରେ ବିଶ୍ୱସଂହାର କରନ୍ତି, ସେହିପରି ତ୍ରିଶକ୍ତିଶାଳୀ ହରି ବିଷ୍ଣୁ ( ପୁରୁଷ ) ରୂପରେ ବିଶ୍ୱପାଳନ କରନ୍ତି । ୫୧ଶ ଶ୍ଳୋକାର୍ଥ ।

ଚତୁର୍ଦ୍ଦଶ ମନ୍ୱନ୍ତରାବତାରମାନଙ୍କର ନାମ କହୁଅଛନ୍ତି । ୨୭୪ ।

୫୨ଶ ଶ୍ଳୋକର ଅନ୍ୱୟ ଆଦି. ୩ୟ ପରି. ୭ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କର ନାମକରଣ ସମୟରେ ମହର୍ଷି ଗର୍ଗାଚାର୍ଯ୍ୟ ଶ୍ରୀନନ୍ଦରାଜାଙ୍କୁ କହିଥିଲେ— ତୁମ୍ଭର ଏହି ପୁତ୍ର ଯୁଗେ ଯୁଗେ ଶରୀର ଗ୍ରହଣ କରି ଶୁକ୍ଳ, ରକ୍ତ ଓ ପୀତ ତିନବର୍ଣ୍ଣ ହୋଇଥିଲେ, ସମ୍ପ୍ରତି ଏ କୃଷ୍ଣ ହୋଇଅଛନ୍ତି । ୫୨ଶ ଶ୍ଳୋକାର୍ଥ ।

କୃତେ ଶୁକ୍ଲଶ୍ଚତୁର୍ବାହୁର୍ଜଟିଲୋ ବଲ୍କଲାମ୍ବରଃ ।
କୃଷ୍ଣାଜିନୋପବୀତାକ୍ଷାନ୍ ବିଭ୍ରଦ୍ଦଣ୍ଡକମଣ୍ଡଲୂ ।୪୩।
ତ୍ରେତାୟାଂ ରକ୍ତବର୍ଣ୍ଣୋଽସୌ ଚତୁର୍ବାହୁ-
ସ୍ତ୍ରିମେଖଳଃ ।
ହିରଣ୍ୟକେଶସ୍ତ୍ରୟ୍ୟାତ୍ମା ସ୍ରୁକ୍‌ସ୍ରୁବାଦ୍ୟୁପ-
ଲକ୍ଷଣଃ । ୪୪ ।
ସତ୍ୟଯୁଗେ ଧ୍ୟାନଧର୍ମ କରାୟ ଶୁକ୍ଲମୂର୍ତ୍ତି ଧରି ।
କର୍ଦ୍ଦମକେ ବର ଦିଲ ଯେଁହୋ କୃପା କରି ।୨୮୦।
କୃଷ୍ଣଧ୍ୟାନ କରେ ଲୋକ 'ଜ୍ଞାନ-ଅଧିକାରୀ' ।
ତ୍ରେତାର ଧର୍ମ ଯଜ୍ଞ କରାୟ ରକ୍ତବର୍ଣ୍ଣ ଧରି ।
କୃଷ୍ଣପଦ ଅର୍ଚ୍ଚନ ହୟ ଦ୍ୱାପରେର ଧର୍ମ ।
କୃଷ୍ଣବର୍ଣ୍ଣେ କରାୟ ଲୋକେ କୃଷ୍ଣାର୍ଚ୍ଚନକର୍ମ ।୨୮୨।
ତଥାହି ( ଭାଃ—୧୧।୫।୨୭ )—
ଦ୍ୱାପରେ ଭଗବାନ୍ ଶ୍ୟାମଃ ପୀତବାସା ନିଜାୟୁଧଃ ।
ଶ୍ରୀବତ୍ସାଦିଭିରଙ୍କୈଶ୍ଚ ଲକ୍ଷଣୈରୁପଲକ୍ଷିତଃ ।୪୫।
ତଥାହି ତତ୍ରୈବ ( ୧୧।୫।୨୯ )—
ନମସ୍ତେ ବାସୁଦେବାୟ ନମଃ ସଙ୍କର୍ଷଣାୟ ଚ ।
ପ୍ରଦ୍ୟୁମ୍ନାୟାନିରୁଦ୍ଧାୟ ତୁଭ୍ୟଂ ଭଗବତେ ନମଃ ।୪୬

---

କୃତେ—ସତ୍ୟଯୁଗେ ଶୁକ୍ଲ—ଶୁକ୍ଲବର୍ଣ୍ଣଃ ଶୁକ୍ଲାକାମାର, ଚତୁର୍ବାହୁଃ ଜଟିଲଃ ବଲ୍କଲାମ୍ବରଃ କୃଷ୍ଣାଜିନୋପବୀତାକ୍ଷାନ୍ ଦଣ୍ଡଂ କମଣ୍ଡଲୁଂ ଚ ବିଭ୍ରତ୍ । ୪୩ଶ ଶ୍ଳୋକଃ ।

ତ୍ରେତାୟାଂ ଅସୌ—ଭଗବାନ୍ ରକ୍ତବର୍ଣ୍ଣଃ ଚତୁର୍ବାହୁଃ ତ୍ରିମେଖଳଃ—ତ୍ରିଗୁଣ ଦୀକ୍ଷାଙ୍ଗଭୂତା ମେଖଳା—କଟିସୂତ୍ରଂ ଯସ୍ୟ ସଃ, ହିରଣ୍ୟକେଶଃ—ପିଙ୍ଗଳକେଶଃ, ତ୍ରୟ୍ୟାତ୍ମା—ଋଗାଦି ବେଦତ୍ରୟପ୍ରତିପାଦିତଃ ଆତ୍ମା—ମୂର୍ତ୍ତିଃ ଯସ୍ୟ ସଃ, ସ୍ରୁକ୍‌ସ୍ରୁବାଦ୍ୟୁପଲକ୍ଷଣଃ—ସ୍ରୁକ୍‌ସ୍ରୁବାଦି ଉପଲକ୍ଷଣଂ—ଚିହ୍ନଂ ଯସ୍ୟ ସଃ । ୪୪ଶ ଶ୍ଳୋକଃ ।

ବାସୁଦେବାୟ ତେ ନମଃ, ସଙ୍କର୍ଷଣାୟ ଚ ନମଃ, ପ୍ରଦ୍ୟୁମ୍ନାୟ—ଅନିରୁଦ୍ଧାୟ ତୁଭ୍ୟଂ ଭଗବତେ ନମଃ । ୪୬ଶ ଶ୍ଳୋକଃ ।

---

ଶ୍ରୀକରଭାଜନ ଶ୍ରୀଜନକଙ୍କୁ କହୁଅଛନ୍ତି—ସତ୍ୟଯୁଗରେ ଭଗବାନ୍ ଶୁକ୍ଲବର୍ଣ୍ଣ ଚତୁର୍ବାହୁ ଜଟାଧାରୀ, ବଲ୍କଲାମ୍ବର, କୃଷ୍ଣସାରମୃଗଚର୍ମଧାରୀ ଯଜ୍ଞସୂତ୍ରବିଶିଷ୍ଟ ଦଣ୍ଡକମଣ୍ଡଳୁଧାରୀ ହୋଇଥିଲେ । ୪୩ଶ ଶ୍ଳୋକାର୍ଥ ।

ଶ୍ରୀକରଭାଜନ କହୁଅଛନ୍ତି—ତ୍ରେତାଯୁଗରେ ଭଗବାନ୍ ରକ୍ତବର୍ଣ୍ଣ ଚତୁର୍ବାହୁ ତ୍ରିମେଖଳ ହିରଣ୍ୟକେଶ ତ୍ରୟ୍ୟାତ୍ମା ସ୍ରୁକ ସ୍ରୁବ ଆଦି ଉପଲକ୍ଷିତ ଯଜ୍ଞରୂପରେ ଅବତୀର୍ଣ୍ଣ ହୋଇଥିଲେ । ୪୪ଶ ଶ୍ଳୋକାର୍ଥ ।

କର୍ଦ୍ଦମକେ ବରଦିଲ—ଏହା ଶ୍ରୀମଦ୍‌ଭାଗବତ ୩ୟ ସ୍କନ୍ଧ ୨୧ ଅଧ୍ୟାୟରେ ଦ୍ରଷ୍ଟବ୍ୟ ।

କୃଷ୍ଣବର୍ଣ୍ଣ—କୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇ । ୨୮୨

୪୫ ଶ୍ଳୋକର ଅନ୍ୱୟ—ଆଦି: ୩ୟ ପରି: ୮ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଦ୍ୱାପର ଯୁଗରେ ଭଗବାନ୍ ଶ୍ୟାମବର୍ଣ୍ଣ ପୀତବସନ, ଚକ୍ରାଦିଆୟୁଧଧାରୀ ଶ୍ରୀବତ୍ସ ନାମକ ଲକ୍ଷ୍ମୀରେଖାଯୁକ୍ତ ଧ୍ୱଜ ବଜ୍ରାଦି ଚିହ୍ନରେ ଅଙ୍କିତ ଓ କୌସ୍ତୁଭ ଆଦି ଅଳଙ୍କାରରେ ଭୂଷିତ ହୋଇ ଅବତୀର୍ଣ୍ଣ ହୁଅନ୍ତି । ୪୫ଶ ଶ୍ଳୋକାର୍ଥ ।

ଶ୍ରୀକରଭାଜନ ଜନକଙ୍କୁ କହୁଅଛନ୍ତି—ହେ ଭଗବନ୍ ! ତୁମ୍ଭଙ୍କୁ ନମସ୍କାର, ତୁମ୍ଭେ ବାସୁଦେବ, ତୁମ୍ଭଙ୍କୁ ନମସ୍କାର, ତୁମ୍ଭେ ସଙ୍କର୍ଷଣ, ତୁମ୍ଭଙ୍କୁ ନମସ୍କାର, ତୁମ୍ଭେ ପ୍ରଦ୍ୟୁମ୍ନ, ତୁମ୍ଭଙ୍କୁ ନମସ୍କାର, ତୁମ୍ଭେ ଅନିରୁଦ୍ଧ ତୁମ୍ଭଙ୍କୁ ନମସ୍କାର । ୪୬ଶ ଶ୍ଳୋକାର୍ଥ ।

ଏଇ ମନ୍ତ୍ରେ ଦ୍ୱାପରରେ କରେ କୃଷ୍ଣାର୍ଚ୍ଚନ ।
କୃଷ୍ଣନାମସଙ୍କୀର୍ତ୍ତନ—କଲିଯୁଗେର ଧର୍ମ ।୨୮୩।
ପୀତବର୍ଣ୍ଣ ଧରି ତବେ କୈଲ ପ୍ରବର୍ତ୍ତନ ।
ପ୍ରେମଭକ୍ତି ଦିଲ ଲୋକେ ଲଞା ଭକ୍ତଗଣ ॥
ଧର୍ମପ୍ରବର୍ତ୍ତନ କରେ ବ୍ରଜେନ୍ଦ୍ରନନ୍ଦନ ।
ପ୍ରେମେ ଗାୟ ନାଚେ ଲୋକ କରେ ସଙ୍କୀର୍ତ୍ତନ ।

ତଥାହି ( ଭାଃ—୧୧।୫।୩୨ )—

କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦମ୍ ।
ଯଜ୍ଞୈଃ ସଙ୍କୀର୍ତ୍ତନପ୍ରାୟୈର୍ଯଜନ୍ତି ହି ସୁମେଧସଃ ।୪୭

ଆର ତିନ ଯୁଗେ ଧ୍ୟାନାଦିକେ ଯେଇ ଫଲ ହୟ ।
କଲିଯୁଗେ କୃଷ୍ଣନାମେ ସେଇ ଫଲ ପାୟ ।୨୮୬।

ତଥାହି ( ଭାଃ—୧୨।୩।୫୧।୫୨ )—

କଲେର୍ଦୋଷନିଧେ ରାଜନ୍ନସ୍ତି ହ୍ୟେକୋ ମହାନ୍ ଗୁଣଃ ।
କୀର୍ତ୍ତନାଦେବ କୃଷ୍ଣସ୍ୟ ମୁକ୍ତବନ୍ଧଃ ପରଂ ବ୍ରଜେତ୍ । ୪୮
କୃତେ ଯଦ୍ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।
ଦ୍ୱାପରେ ପରିଚର୍ଯ୍ୟାୟାଂ କଲୌ ତଦ୍ଧରି-କୀର୍ତ୍ତନାତ୍ । ୪୯ ।*

ହେ ରାଜନ୍ ! ଦୋଷନିଧେଃ—ଦୋଷଣାଂ ନିଧେଃ ଅପି କଲେଃ ଏକଃ କୀର୍ତ୍ତନାଦିର-ରୂପଃ ମହାନ୍ ଗୁଣଃ ଅସ୍ତି ହି ଯସ୍ମାତ୍ କୃଷ୍ଣସ୍ୟ କୀର୍ତ୍ତନାତ୍ ଏବ ମୁକ୍ତବନ୍ଧଃ ସନ୍ ପରଂ ବ୍ରଜେତ୍ ୪୮ଶ ଶ୍ଳୋକଃ ।

କୃତେ—ସତ୍ୟଯୁଗେ ବିଷ୍ଣୁଂ ଧ୍ୟାୟତଃ ଯତ୍ ତତ୍ ତ୍ରେତାୟାଂ ମଖୈଃ ଯଜତଃ ଦ୍ୱାପରେ ପରିଚର୍ଯ୍ୟାୟାଂ କଲୌ ହରିକୀର୍ତ୍ତନାତ୍ (ତତ୍ପ୍ରାପ୍ନୋତି) । ୪୯ଶ ଶ୍ଳୋକଃ ।

କଲିଯୁଗର ସାଧାରଣ ଧର୍ମ ଶ୍ରୀକୃଷ୍ଣ ନାମସଙ୍କୀର୍ତ୍ତନ, ଏହି ଯୁଗଧର୍ମ ଶ୍ରୀକୃଷ୍ଣ ପୀତବର୍ଣ୍ଣ ଧରି ପ୍ରବର୍ତ୍ତନ କରନ୍ତି; କିନ୍ତୁ ବୈବସ୍ୱତମନୁଙ୍କର ଅଷ୍ଟାବିଂଶତି ଚତୁର୍ଯୁଗୀୟ ଏହି କଲିଯୁଗର ସେହି ନାମସଂକୀର୍ତ୍ତନ ଯୁଗଧର୍ମ ହେଲେହେଁ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ସ୍ୱୟଂ ନିଜ କାର୍ଯ୍ୟରେ ଅବତୀର୍ଣ୍ଣ ହୋଇ ଯୁଗଧର୍ମ ନାମସଂକୀର୍ତ୍ତନ ପ୍ରଚାର ଓ ତତ୍ସହ ନିଜର ଅନର୍ପିତ ପ୍ରେମଭକ୍ତି ଦାନ କରିଅଛନ୍ତି । ଏ ବିଷୟର ସିଦ୍ଧାନ୍ତ ଆଦି ଲୀଳାର ତୃତୀୟ ପରିଚ୍ଛେଦରେ ରହିଅଛି । ୨୮୩—୨୮୫ ।

୪୭ ଶ୍ଳୋକର ଅନ୍ୱୟ—ଆଦି. ୩ୟ ପରି: ୧୧ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

କଲିଯୁଗରେ ଯେଉଁ ବ୍ୟକ୍ତିମାନେ ବିବେକୀ ହୁଅନ୍ତି ସେମାନେ ନିଶ୍ଚୟ ସଂକୀର୍ତ୍ତନ ପ୍ରଧାନ ଯଜ୍ଞଦ୍ୱାରା ଅଙ୍ଗ ଉପାଙ୍ଗ ରୂପ ଅସ୍ତ୍ର ଓ ସୈନ୍ୟ ପରିବେଷ୍ଟିତ ଗୌରବର୍ଣ୍ଣ କୃଷ୍ଣନାମ ଗ୍ରହଣକାରୀ ଓ ଶ୍ରୀକୃଷ୍ଣଉପଦେଶକାରୀ ମହାପୁରୁଷ ଶ୍ରୀକୃଷ୍ଣଚୈତନ୍ୟଙ୍କୁ ଯାଜନ କରନ୍ତି । ୪୭ଶ ଶ୍ଳୋକାର୍ଥ ।

ଯୁଗଧର୍ମର ବିଷୟ ସମାହାରରେ କହୁଅଛନ୍ତି ଯେ—ସତ୍ୟ-ତ୍ରେତା-ଦ୍ୱାପର ଯୁଗ-ମାନଙ୍କରେ ଧ୍ୟାନ ଯଜ୍ଞ ଓ ଶ୍ରୀକୃଷ୍ଣ ପରିଚର୍ଯ୍ୟାଦ୍ୱାରା ଯେଉଁ ଫଳ ଲାଭ ହୁଏ, କଲିଯୁଗରେ ଶ୍ରୀକୃଷ୍ଣଙ୍କର ନାମକୀର୍ତ୍ତନଦ୍ୱାରା ସେହି ଫଳ ଲାଭ ହୁଏ ।୨୮୬ ।

ଶ୍ରୀଶୁକଦେବ ଗୋସ୍ୱାମୀ କହୁଅଛନ୍ତି—ହେ ରାଜନ୍ ! କଲିଯୁଗର ସମୁଦାୟ ଦୋଷ ମଧ୍ୟରେ ଗୋଟିଏ ମହତ୍ତ୍ୱଗୁଣ ଅଛି । ତାହା ଏହି ଯେ—ଯେଉଁ ବ୍ୟକ୍ତି ଶ୍ରୀକୃଷ୍ଣଙ୍କର ନାମ କୀର୍ତ୍ତନ କରେ ସେ ବନ୍ଧନରୁ ମୁକ୍ତ ହୋଇ ପରମଗତି ଲାଭ କରେ । ୪୮ଶ ଶ୍ଳୋକାର୍ଥ ।

ଶ୍ରୀଶୁକଦେବଙ୍କ ବାକ୍ୟ—ସତ୍ୟଯୁଗରେ ବିଷ୍ଣୁଙ୍କ ଧ୍ୟାନଦ୍ୱାରା ତ୍ରେତାରେ ଯଜ୍ଞଦ୍ୱାରା, ଦ୍ୱାପରରେ ପରିଚର୍ଯ୍ୟାଦ୍ୱାରା ଯାହା ଲାଭ ହୁଏ, କଲିଯୁଗରେ ଶ୍ରୀହରିକୀର୍ତ୍ତନଦ୍ୱାରା ତାହା ଲାଭ ହୁଏ । ୪୯ ଶ୍ଳୋକାର୍ଥ ।

ତଥାହି ବିଷ୍ଣୁପୁରାଣେ (୬।୨।୧୭),
ପାଦ୍ମୋତ୍ତରଖଣ୍ଡେ ( ୭୨।୨୫ ),
ବୃହନ୍ନାରଦୀୟେ ( ୩୮।୯୭ )—

ଧ୍ୟାୟନ୍ କୃତେ ଯଜନ୍ ଯଜ୍ଞୈସ୍ତ୍ରେତାୟାଂ
ଦ୍ୱାପରେଽର୍ଚ୍ଚୟନ୍ ।
ଯଦାପ୍ନୋତି ତଦାପ୍ନୋତି କଳୌ ସଂକୀର୍ତ୍ତ୍ୟ
କେଶବମ୍ । ୬୦ ।

ତଥାହି ( ଭାଃ—୧୧।୫।୩୬ )—

କଳିଂ ସଭାଜୟନ୍ତ୍ୟାର୍ଯ୍ୟା ଗୁଣଜ୍ଞାଃ ସାରଭାଗିନଃ ।
ଯତ୍ର ସଂକୀର୍ତ୍ତନେନୈବ ସର୍ବସ୍ୱାର୍ଥୋଽପି
ଲଭ୍ୟତେ । ୬୧ ।*

ପୂର୍ବବତ୍ ଲିଖି ଯବେ ଯୁଗାବତାରଗଣ ।
ଅସଂଖ୍ୟ, ସଂଖ୍ୟା ତାର ନା ହୟ ଗଣନ । ୨୮୭ ।
ତ୍ରେଯୁଗେର ଅବତାରେର ଏଇ ତ ଗଣନ ।
ଶୁନି ଭଙ୍ଗୀ କରି ତାଁରେ ପୁଛେ ସନାତନ ।
ରାଜମନ୍ତ୍ରୀ ସନାତନ—ବୁଦ୍ଧ୍ୟେ ବୃହସ୍ପତି ।
ପ୍ରଭୁର କୃପାତେ ପୁଛେ ଅସଙ୍କୋଚମତି—
ଅତି କ୍ଷୁଦ୍ର ଜୀବ ମୁଞି—ନୀଚ ନୀଚାଚାର ।
କେମନେ ଜାନିବ—କଳିତେ କୋନ ଅବତାର?
ପ୍ରଭୁ କହେ—ଅନ୍ୟାବତାର ଶାସ୍ତ୍ର-ଦ୍ୱାରେ ଜାନି ।
କଳି-ଅବତାର ତୈଛେ ଶାସ୍ତ୍ରବାକ୍ୟେ ମାନି । ୨୯୧
ସର୍ବଜ୍ଞ ମୁନିର ବାକ୍ୟ ଶାସ୍ତ୍ର—ପରମାଣ ।
ଆମାସଭା-ଜୀବେର ହୟ ଶାସ୍ତ୍ରଦ୍ୱାରା ଜ୍ଞାନ ।
ଅବତାର ନାହି କହେ—ଆମି ଅବତାର ।
ମୁନିସବ ଜାନି କରେ ଲକ୍ଷଣ ବିଚାର । ୨୯୩ ।

ତଥାହି ( ଭାଃ—୧୦।୧୦।୩୪ )—

ଯସ୍ୟାବତାରା ଜ୍ଞାୟନ୍ତେ ଶରୀରେଷ୍ୱଶରୀରିଣଃ ।
ତୈସ୍ତୈରତୁଲ୍ୟାତିଶୟୈର୍ବୀର୍ଯ୍ୟୈର୍ଦେହିଷ୍ୱ-
ସଙ୍ଗତୈଃ । ୬୨ ।*

---

କୃତେ—ସତ୍ୟେ ଧ୍ୟାୟନ୍ ତ୍ରେତାୟାଂ ଯଜ୍ଞୈଃଯଜନ୍ ଦ୍ୱାପରେ ଅର୍ଚ୍ଚୟନ୍ ଯତ୍—ଫଳଂ ଆପ୍ନୋତି କଳୌ କେଶବଂସଂକୀର୍ତ୍ତ୍ୟ ତତ୍ ଆପ୍ନୋତି । ୬୦ ଶ୍ଲୋକଃ ।

ଯତ୍ର—କଳୌ, ସଂକୀର୍ତ୍ତନେନ ( ସାଧନାନ୍ତରନିରପେକ୍ଷେଣ ) ଏବ ସର୍ବଃ ଅପି ସ୍ୱାର୍ଥଃ ( ସାଧନସହସ୍ରୈଃ ସାଧ୍ୟଃ ) ଲଭ୍ୟତେ ସାରଭାଗିନଃଗୁଣଜ୍ଞାଃ ଆର୍ଯ୍ୟାଃ (ତଂ) କଳିଂ ସଭାଜୟନ୍ତି । ୬୧ ଶ୍ଲୋକଃ ।

ଅତୁଲ୍ୟାତିଶୟୈଃ—ନାସ୍ତି ତୁଲ୍ୟଂ ଅତିଶୟଃ— ଆଧିକ୍ୟଂ ଚ ଯେଭ୍ୟଃ ତୈଃ ଅସମୋର୍ଦ୍ଧ୍ୱୈଃ ଦେହିଷୁ—ପ୍ରାକୃତଜୀବେଷୁ, ଅସଙ୍ଗତୈଃ—ଅନୁପପନ୍ନୈଃ, ତୈଃ ତୈଃ ବୀର୍ଯ୍ୟୈଃ—ପରାକ୍ରମୈଃ, ଶରୀରେଷୁ—ପ୍ରାକୃତେଷୁ, ଅଶରୀରିଣଃ— ପ୍ରାକୃତଶରୀରରହିତସ୍ୟ, ଯସ୍ୟ ତବ ଅବତାରାଃ ଜ୍ଞାୟନ୍ତେ । ୬୨ ଶ୍ଲୋକଃ ।

---

ସତ୍ୟଯୁଗରେ ଧ୍ୟାନଦ୍ୱାରା ତ୍ରେତାରେ ଯଜ୍ଞଦ୍ୱାରା ଦ୍ୱାପରଯୁଗରେ ଅର୍ଚ୍ଚନଦ୍ୱାରା ଯାହା ଲାଭ ହୁଏ କଳିଯୁଗରେ ଶ୍ରୀକେଶବ କୀର୍ତ୍ତନଦ୍ୱାରା ତାହା ଲାଭ ହୁଏ । ୬୦ ଶ୍ଲୋକାର୍ଥ ।

ସାରଗ୍ରାହୀ ଗୁଣଜ୍ଞ ଶ୍ରେଷ୍ଠଲୋକମାନେ କଳିଯୁଗକୁ ଆଶ୍ରୟ କରନ୍ତି କାରଣ କଳିଯୁଗରେ ନାମ ସଂକୀର୍ତ୍ତନମାତ୍ରଦ୍ୱାରା ସମୁଦାୟ ସ୍ୱାର୍ଥ ଲାଭ ହୁଏ ୬୧ ଶ୍ଲୋକାର୍ଥ ।

ପୂର୍ବବତ୍—ପୂର୍ବଲିଖିତ ମନ୍ୱନ୍ତରାବତାର ପରି । ୨୮୭ ।

କଳିତେ—ଏହି ବର୍ତ୍ତମାନ କଳିଯୁଗରେ ।

ଶ୍ରୀଯମଳାର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ଆପଣ ପ୍ରାକୃତଶରୀରରହିତ ଏବଂ ଅସମୋର୍ଦ୍ଧ୍ୱ, ଆପଣଙ୍କର ଅବତାର ସମସ୍ତ ପ୍ରାକୃତ ଜୀବମାନଙ୍କଠାରେ ଅସମ୍ଭବ ପରାକ୍ରମଦ୍ୱାରା ଜଣା ଯାନ୍ତି । ୬୨ ଶ୍ଲୋକାର୍ଥ ।

ସ୍ୱରୂପ ଲକ୍ଷଣ ଆର ତଟସ୍ଥ ଲକ୍ଷଣ ।
ଏଇ ଦୁଇ ଲକ୍ଷଣେ ବସ୍ତୁ ଜାନେ ମୁନିଗଣ ।୨୯୪।
ଆକୃତି ପ୍ରକୃତି ଏଇ —ସ୍ୱରୂପ ଲକ୍ଷଣ ।
କାର୍ଯ୍ୟଦ୍ୱାରାଏ କୁ ଜ୍ଞାନ ଏଇ — ତଟସ୍ଥଲକ୍ଷଣ ।
ଭାଗବତାରମ୍ଭେ ବ୍ୟାସ ମଙ୍ଗଲାଚରଣେ ।
ପରମେଶ୍ୱର ନିରୂପିଲ ଏ ଦୁଇ ଲକ୍ଷଣେ ।୨୯୬।

ତଥାହି ( ଭାଃ —୧।୧।୧ ) —

ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେ ସ୍ୱଭିଜ୍ଞଃ ସ୍ୱରାଟ୍ ।
ତେନେ ବ୍ରହ୍ମ ହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ର ସୂରୟଃ ।
ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋ ମୃଷା,
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି । ୬୩ ।

ଏଇ ଶ୍ଲୋକେ 'ପର-ଶବ୍ଦେ' କୃଷ୍ଣନିରୂପଣ ।
ସତ୍ୟ ଶବ୍ଦେ କହେ ତାଁର ସ୍ୱରୂପ ଲକ୍ଷଣ ।୨୯୭।

---

ଅବତାର ଦୁଇଲକ୍ଷଣଦ୍ୱାରା ଜଣାଯାନ୍ତି ଯଥା—ସ୍ୱରୂପଲକ୍ଷଣ ( ଆକୃତି ପ୍ରକୃତି ) ତଟସ୍ଥଲକ୍ଷଣ ( କାର୍ଯ୍ୟ ) ୨୯୪—୨୯୫ ।

୬୩ ଶ୍ଲୋକର ଅନ୍ୱୟ—ମଧ: ୮ମ ପରି: ୫୧ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଯେ ସୃଷ୍ଟବସ୍ତୁମାନଙ୍କରେ ସତ୍ତାସ୍ୱରୂପରେ ବର୍ତ୍ତମାନ ଅଛନ୍ତି ବୋଲି ତାହାର ଅସ୍ତିତ୍ୱ ପ୍ରତୀତ ହେଉଅଛି ଏବଂ ଅବସ୍ତୁ ଅର୍ଥାତ୍ ଆକାଶକୁସୁମାଦି ଅଲୀକ ପଦାର୍ଥରେ ଯାହାଙ୍କର ସମ୍ବନ୍ଧ ନାହିଁ ବୋଲି ସେମାନଙ୍କର ଉପଲବ୍ଧି ହେଉ ନାହିଁ, ସୁତରାଂ ଯେ ଏହିପରି ଦୃଶ୍ୟମାନ ଜଗତର ସୃଷ୍ଟି ସ୍ଥିତି ଓ ପ୍ରଳୟ କାରଣ, ଯେ ସର୍ବଜ୍ଞ ଓ ସ୍ୱତଃସିଦ୍ଧଜ୍ଞାନ ସ୍ୱରୂପ, ଏବଂ ଯେଉଁ ବେଦରେ ଜ୍ଞାନୀମାନେ ମଧ୍ୟ ମୁଗ୍ଧ ହୁଅନ୍ତି ସେହି ବେଦକୁ ଯେ—ଆଦିକବି ବ୍ରହ୍ମାଙ୍କ ହୃଦୟରେ ସଙ୍କଳ୍ପମାତ୍ର ପ୍ରକାଶ କରିଅଛନ୍ତି ଏବଂ ତେଜ ଜଳ ଓ ମୃତ୍ତିକାଦିର ବିକାରସ୍ୱରୂପ କାଚାଦି ଏକବସ୍ତୁରେ ଅନ୍ୟ ବସ୍ତୁର ଭ୍ରମ ଯେପରି ଅଧିଷ୍ଠାନର ସତ୍ୟତ୍ୱହେତୁ ସତ୍ୟ ବୋଲି ପ୍ରତୀତ ହୁଏ ସେହି ଯାହାଙ୍କର ସତ୍ୟତାରେ ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣର ସୃଷ୍ଟି ଭୂତ ଇନ୍ଦ୍ରିୟ ଦେବତା ବସ୍ତୁତଃ ମିଥ୍ୟା ହୋଇ ସୁଦ୍ଧା ସତ୍ୟରୂପେ ପ୍ରତୀତ ହେଉଅଛନ୍ତି, ଅଥବା ତେଜରେ ଜଳଭ୍ରମାଦି ଯେପରି ବସ୍ତୁତଃ ମିଥ୍ୟା ସେହିପରି ଯାହାଙ୍କ ବ୍ୟତୀତ ଗୁଣତ୍ରୟର ସୃଷ୍ଟି ସମସ୍ତ ମିଥ୍ୟା ( ଯାହାଙ୍କର ପରମାର୍ଥସତ୍ୟତ୍ୱ ପ୍ରତିପାଦନ ନିମିତ୍ତ ଆଦ୍ୟନ୍ତଯୁକ୍ତ ଅପାରବିଶ୍ୱର ବସ୍ତୁତଃ ମିଥ୍ୟାତ୍ୱ ନ ହେଲେହେଁ ମିଥ୍ୟାତ୍ୱ ଉକ୍ତ ହୋଇଅଛି ) ଏବଂ ନିଜର ତେଜଃ ପ୍ରଭାବରେ ଯାହାଙ୍କଠାରେ କୁହକ ଅର୍ଥାତ୍ ମାୟିକ ଉପାଧି ସମ୍ବନ୍ଧ ନିରସ୍ତ ହୋଇଅଛି ସେହି ସତ୍ୟ ସ୍ୱରୂପ ପରମେଶ୍ୱରଙ୍କୁ ଧ୍ୟାନ କରୁଁ । ୬୩ ଶ୍ଲୋକାର୍ଥ ।

ଏହିଶ୍ଲୋକେ—'ଜନ୍ମାଦ୍ୟସ୍ୟ' ଉପକ୍ରମୋକ୍ତ ଶ୍ଲୋକ ।

ପରଶବ୍ଦେ—ଶ୍ଲୋକସ୍ଥ 'ପରଂ' ଶବ୍ଦଦ୍ୱାରା ।

କୃଷ୍ଣନିରୂପଣ—ପରତତ୍ତ୍ୱନିରୂପଣ ଅର୍ଥାତ୍ କୃଷ୍ଣପରତତ୍ତ୍ୱ ।

ସତ୍ୟ— ଶ୍ଲୋକସ୍ଥ 'ସତ୍ୟଂ' ଶବ୍ଦଦ୍ୱାରା ।

ସ୍ୱରୂପଲକ୍ଷଣ—ସତ୍ୟଂ ଶବ୍ଦଦ୍ୱାରା ତତ୍ତ୍ୱବସ୍ତୁ ଶ୍ରୀକୃଷ୍ଣଙ୍କର ସଚ୍ଚିଦାନନ୍ଦସ୍ୱରୂପ ବ୍ୟକ୍ତ ହୋଇଅଛି । ୨୯୭ ।

ଶଣ୍ଟୃଷ୍ଟ୍ୟାଦିକ କୈଲ, ବେଦ ବ୍ରହ୍ମାକେ ପଢ଼ାଇଲ
ଅର୍ଥାଭିଜ୍ଞତା ସ୍ୱରୂପଶକ୍ତ୍ୟେ ମାୟା ଦୂର କୈଲ ।
ଏଇ ସବ କାର୍ଯ୍ୟ ତାର ତଟସ୍ଥ ଲକ୍ଷଣ ।
ଅନ୍ୟ ଅବତାର ଐଛେ ଜାନେ ମୁନିଗଣ ।୨୯୯।
ଅବତାର କାଲେ ହୟ ଜଗତେ ଗୋଚର ।
ଏଇ ଦୁଇ ଲକ୍ଷଣେ କେହୋ ଜାନୟେ ଈଶ୍ୱର ।
ସନାତନ କହେ—ଯାତେ ଈଶ୍ୱର ଲକ୍ଷଣ ।
ପୀତବର୍ଣ୍ଣ, କାର୍ଯ୍ୟ—ପ୍ରେମଦାନ ସଂକୀର୍ତ୍ତନ ।୩୦୧
କଲିକାଲେ ସେଇ କୃଷ୍ଣାବତାର ନିଶ୍ଚୟ ।
ସୁଦୃଢ଼ କରିୟା କହ, ଯାଉକ ସଂଶୟ । ୩୦୨ ।
ପ୍ରଭୁ କହେ—ଚତୁରାଲି ଛାଡ଼ ସନାତନ ।
ଶକ୍ତ୍ୟାବେଶାବତାରେର ଶୁନ ବିବରଣ ।
ଶକ୍ତ୍ୟାବେଶାବତାର କୃଷ୍ଣେର ଅସଂଖ୍ୟ ଗଣନ ।
ଦିଗ୍‌ଦରଶନ କହି ମୁଖ୍ୟାମୁଖ୍ୟ-କଥନ । ୩୦୪ ।
ଶକ୍ତ୍ୟାବେଶ ଦୁଇ ରୂପ—ଗୌଣ ମୁଖ୍ୟ ଦେଖି ।
ସାକ୍ଷାତ୍‌ଶକ୍ତ୍ୟେ 'ଅବତାର' ଆଭାସେ 'ବିଭୂତି'
ଲିଖି । ୩୦୫ ।

---

ବେଦପଢ଼ାଇଲ— ତେନେ ବ୍ରହ୍ମହୃଦା ଯ ଆଦିକବୟେ ।
ଅର୍ଥାଭିଜ୍ଞତା—ଶ୍ଳୋକସ୍ଥ ଅର୍ଥେଷ୍ୱଭିଜ୍ଞ । ୨୯୮ ।
ଏହିସବକାର୍ଯ୍ୟ—ବେଦପଢ଼ାଇବା ଓ ମାୟା ଦୂର କରିବା । ୨୯୯ ।
କେହୋ—ବିଜ୍ଞବ୍ୟକ୍ତି । ୩୦୦ ।

ଶ୍ରୀସନାତନଗୋସ୍ୱାମୀ କହିଲେ ଯେ—ଶାସ୍ତ୍ର ଅନୁସାରେ,ଅର୍ଥାତ୍ କୃଷ୍ଣବର୍ଣ୍ଣଂ ଶ୍ଳୋକ-ଦ୍ୱାରା କଳିଯୁଗାବତାର ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପଲକ୍ଷଣ ପୀତବର୍ଣ୍ଣ ଏବଂ ତଟସ୍ଥଲକ୍ଷଣ ପ୍ରେମଦାନ ଓ ନାମସଂକୀର୍ତ୍ତନ ପ୍ରଚାର, ଅତଏବ ଏହି ଅବତାର କିଏ ? ଆପଣ ଏହା ମୋତେ ସ୍ପଷ୍ଟକରି କହନ୍ତୁ ଯହିଁରେ କି ମୋର ସଂଶୟଚ୍ଛେଦ ହେବ ।

ଏହାର ଭାବ ଏହି ଯେ—ଭକ୍ତ ଓ ଭଗବାନଙ୍କ ଭିତରେ ପ୍ରେମରହସ୍ୟ ଚାଲିଅଛି ଅର୍ଥାତ୍ ଶ୍ରୀମନ୍ମହାପ୍ରଭୁ 'ମୁଁ ଭଗବାନ୍' ଏ କଥା କହିବାକୁ ଇଚ୍ଛା କରୁନାହାନ୍ତି ଏବଂ ସନାତନ ଗୋସ୍ୱାମୀ ଶ୍ରୀମନ୍ମହାପ୍ରଭୁଙ୍କ ଶ୍ରୀମୁଖରୁ ସେହି କଥା ଶୁଣିବା ନିମିତ୍ତ ଆଗ୍ରହାନ୍ୱିତ, ଏହି ହେତୁ ଉପରୋକ୍ତ ପ୍ରଶ୍ନୋତ୍ତରମାନ ଅବତାରଣା ହୋଇଅଛି, ଶ୍ରୀମନ୍ମହାପ୍ରଭୁ ଯେ ସ୍ୱୟଂ ଭଗବାନ୍ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଏହି ବିଷୟରେ ସନାତନ ଗୋସ୍ୱାମୀଙ୍କର ବାସ୍ତବିକ କୌଣସି ସଂଶୟ ନ ଥିଲା, ତାହା ସର୍ବଜ୍ଞ ଶ୍ରୀମନ୍ମହାପ୍ରଭୁ ଜାଣନ୍ତି ଏବଂ ସେହି ହେତୁ ଗୋସ୍ୱାମୀଙ୍କର ପ୍ରଶ୍ନର ସ୍ପଷ୍ଟ ଉତ୍ତର ନ ଦେଇ ପ୍ରଭୁ ରହସ୍ୟ ଭାବରେ କହିଲେ, "ଚତୁରାଲି ଛାଡ଼ ସନାତନ" । ୩୦୧ — ୩୦୨ ।

କୌଣସି କୌଣସି ମହତ୍ତମ ଜୀବମାନଙ୍କଠାରେ କୌଣସି କୌଣସି ବିଶେଷ କାର୍ଯ୍ୟ ସାଧନେ ଯେଉଁ ଭଗବତ୍ ଶକ୍ତି ନିହିତ ହୋଇଥାଏ ସେହି ସେହି ମହତ୍ତମ ଜୀବମାନେ ଶ୍ରୀଭଗବାନଙ୍କର ମୁଖ୍ୟଶକ୍ତ୍ୟାବେଶାବତାର, ଯେପରି କି ସନକନାରଦାଦି ଏବଂ ଯେଉଁ ଯେଉଁ ଜୀବମାନଙ୍କଠାରେ ଶ୍ରୀଭଗବତ୍ ଐଶ୍ୱର୍ଯ୍ୟର ଆଭାସ ଥିବାହେତୁ ସେମାନେ ସ୍ଥିରଚରମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କରନ୍ତି ସେମାନେ ଶ୍ରୀଭଗବାନଙ୍କର ଗୌଣଶକ୍ତ୍ୟାବେଶାବତାର ବା ବିଭୂତି । ଏହାର ଉଦାହରଣ—ଶ୍ରୀମଦ୍‌ଭଗବଦ୍‌ଗୀତାର ୧୦ମ ଅଧ୍ୟାୟ ବିଭୂତି ଯୋଗ ଓ ଶ୍ରୀମଦ୍‌ଭାଗବତର ଏକାଦଶସ୍କନ୍ଧରେ ୧୬ଶ ଅଧ୍ୟାୟରେ ଦ୍ରଷ୍ଟବ୍ୟ । ୩୦୫ ।

ସନକାଦି ନାରଦ ପୃଥୁ ପରଶୁରାମ ।
ଜୀବରୂପ ବ୍ରହ୍ମାର 'ଆବେଶାବତାର' ନାମ ॥
ବୈକୁଣ୍ଠେ ଶେଷ—ଧରା ଧରୟେ ଅନନ୍ତ ।
ଏଇ ମୁଖ୍ୟାବେଶାବତାର—ବିସ୍ତାରେ ନାହି ଅନ୍ତ
ସନକାଦ୍ୟେ ଜ୍ଞାନଶକ୍ତି, ନାରଦେ ଭକ୍ତିଶକ୍ତି ।
ବ୍ରହ୍ମାୟ ସୃଷ୍ଟିଶକ୍ତି, ଅନନ୍ତେ ଭୂଧାରଣଶକ୍ତି ॥
ଶେଷେ ସ୍ୱ-ସେବନଶକ୍ତି ପୃଥୁତେ ପାଳନ ।
ପରଶୁରାମେ ଦୁଷ୍ଟନାଶକ-ବୀର୍ଯ୍ୟସଞ୍ଚାରଣ ।୩୦୯।

ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ (୧୮)–

ଜ୍ଞାନଶକ୍ତ୍ୟାଦିକଳୟା ଯତ୍ରାବିଷ୍ଟୋ ଜନାର୍ଦ୍ଦନଃ ।
ତ ଆବେଶା ନିଗଦ୍ୟନ୍ତେ ଜୀବା ଏବ
ମହତ୍ତମାଃ । ୭୪

'ବିଭୂତି' କହୟେ ଯୈଛେ ଗୀତା ଏକାଦଶେ ।
ଜଗତ୍ ବ୍ୟାପିଲ କୃଷ୍ଣେର ଶକ୍ତ୍ୟାଭାସାବେଶେ ।୩୧୦

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍(୧୦।୪୧,୪୨)—

ଯଦ୍‌ଯଦ୍‌ବିଭୂତିମତ୍ ସତ୍ତ୍ୱଂ ଶ୍ରୀମଦୂର୍ଜ୍ଜିତମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶ-
ସମ୍ଭବମ୍ । ୭୫ ।

ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜ୍ଜୁନ ।
ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ
ଜଗତ୍ । ୭୬ ।

ଜନାର୍ଦ୍ଦନଃ ଜ୍ଞାନଶକ୍ତ୍ୟାଦିକଳୟା ଯତ୍ର—ଯେଷୁ ମହତ୍ତମ ଜୀବେଷୁ ଆବିଷ୍ଟଃ ଭବତି, ଋଷିଭିଃ ତେ ମହତ୍ତମାଃ ଜୀବାଃ ଏବ ଆବେଶାଃ ନିଗଦ୍ୟନ୍ତେ—କଥ୍ୟନ୍ତେ । ୭୪ ଶ୍ଳୋକଃ ।

ବିଭୂତିମତ୍ ଶ୍ରୀମତ୍ ଊର୍ଜ୍ଜିତମେବ ବା ଯତ୍ ଯତ୍ ସତ୍ତ୍ୱଂ—ବସ୍ତୁଭବତି ତତ୍ତତ୍ ଏବ ମମ ତେଜୋଽଂଶସମ୍ଭବଂ—ତେଜୋଽଂଶେନ- ଶକ୍ତିଲେଶେନସମ୍ଭୂତଂ—ବିଦ୍ଧି, ତ୍ୱଂ ଅବଗଚ୍ଛ—ପ୍ରତୀହି । ୭୫ ଶ୍ଳୋକଃ ।

ଜନାର୍ଦ୍ଦନ ଶ୍ରୀକୃଷ୍ଣ ଜ୍ଞାନଶକ୍ତ୍ୟାଦିକଳାଦ୍ୱାରା ଯେଉଁ ଜୀବରେ ଆବିଷ୍ଟ ହୁଅନ୍ତି ସେହି ମହତ୍ତମ ଜୀବଙ୍କୁ ଆବେଶାବତାର କୁହାଯାଏ । ୭୪ ଶ୍ଳୋକାର୍ଥ ।

ଗୀତା—ଶ୍ରୀମଦ୍‌ଭଗବଦ୍‌ଗୀତା ।

ଏକାଦଶ—ଶ୍ରୀମଦ୍‌ଭାଗବତର ଏକାଦଶସ୍କନ୍ଧ । ୩୧୦ ।

ଏହି ସଂସାରେ ଐଶ୍ୱର୍ଯ୍ୟସମନ୍ୱିତ ସମ୍ପତ୍ତିବିଶିଷ୍ଟ ବଳପ୍ରଭାବାଦିସମ୍ପନ୍ନ ଯେ ଯେ ବସ୍ତୁ ଅଛନ୍ତି ସେ ସମସ୍ତ ମୋର ଶକ୍ତ୍ୟଂଶସମ୍ଭୂତ ବୋଲି ତୁମ୍ଭେ ଜାଣ । ୭୫ ଶ୍ଳୋକାର୍ଥ ।

୭୬ ଶ୍ଳୋକର ଅନ୍ୱୟ—ଆଦି; ୨ୟ ପରିଚ୍ଛେଦ ୬ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ଅର୍ଜ୍ଜୁନ ! ତୁମ୍ଭର ଏ ସମସ୍ତ ବହୁବିଧ ବିଭୂତିବିଷୟକ ଜ୍ଞାନର ପ୍ରୟୋଜନ କଅଣ ? ମୂଳତଃ ଏତିକି ଜାଣ ଯେ ମୁଁ ମୋର ଅଂଶଦ୍ୱାରା (ପୁରୁଷାଖ୍ୟ-ଅଂଶଦ୍ୱାରା ପରମାତ୍ମରୂପେ) ଏହି ଚିତ୍‌ଜଡ଼ାତ୍ମକ (ସୂକ୍ଷ୍ମସ୍ଥୂଳାତ୍ମକ) ଜଗତକୁ ବ୍ୟାପି ରହିଅଛି । ଅର୍ଥାତ୍ ଯେପରି ବସ୍ତ୍ରରେ ତନ୍ତୁ ଥାଏ ସେହିପରି ଏହି ଅନୁଭବନୀୟ ଓ ଦୃଶ୍ୟମାନ ବିଶ୍ୱ ଜଗତରେ ମୁଁ ଓତଃପ୍ରୋତଃଭାବରେ ମୋର ପୁରୁଷାଖ୍ୟଅଂଶଦ୍ୱାରା (ପରମାତ୍ମାଭାବରେ) ରହିଅଛି । ୭୬ ଶ୍ଳୋକାର୍ଥ ।

ଏଇ ତ କହିଲ ଶକ୍ତ୍ୟାବେଶ-ଅବତାର ।
ବାଲ୍ୟ-ପୌଗଣ୍ଡ ଧର୍ମେର ଶୁନହ ବିଚାର । ୩୧୧ ।
କିଶୋରଶେଖର ଧର୍ମୀ ବ୍ରଜେନ୍ଦ୍ରନନ୍ଦନ ।
ପ୍ରକଟଲୀଲ କରିବାରେ ଯବେ କରେ ମନ ॥
ଆଦୌ ପ୍ରକଟ କରାୟ ମାତା-ପିତା ଭକ୍ତଗଣେ ।
ପାଛେ ପ୍ରକଟ ହୟ ଜନ୍ମାଦିକ ଲୀଲାକ୍ରମେ । ୩୧୩ ।
ତଥାହି ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ

ବିଭାବଲହର୍ଯ୍ୟାମ୍ (୬୭)

ବୟସୋ ବିବିଧତ୍ୱେଽପି ସର୍ବଭକ୍ତିରସାଶ୍ରୟଃ ।
ଧର୍ମୀ କିଶୋର ଏବାତ୍ର ନିତ୍ୟଲୀଲା
ବିଲାସବାନ୍ । ୬୭ ।

ପୂତନା ବଧାଦି ଯତ ଲୀଲା କ୍ଷଣେ କ୍ଷଣେ ।
ସବ ଲୀଲା ନିତ୍ୟ ପ୍ରକଟ କରେ ଅନୁକ୍ରମେ ।
ଅନନ୍ତ ବ୍ରହ୍ମାଣ୍ଡ—ତାର ନାହିକ ଗଣନ ।
କୋନ ଲୀଲା କୋନ ବ୍ରହ୍ମାଣ୍ଡେ ହୟ ପ୍ରକଟନ ।
ଏଇମତ ସବ ଲୀଲା—ଯେନ ଗଙ୍ଗାଧାର ।
ସେ ସେ ଲୀଲା ପ୍ରକଟ କରେ ବ୍ରଜେନ୍ଦ୍ରକୁମାର ।
କ୍ରମେ ବାଲ୍ୟ-ପୌଗଣ୍ଡ-କୈଶୋରତା ପ୍ରାପ୍ତି ।
ରାସ ଆଦି ଲୀଲା କରେ କୈଶୋରେ ନିତ୍ୟ ସ୍ଥିତି ।

---

ବୟସଃ ବିବିଧତ୍ୱେଽପି ଅତ୍ର ସର୍ବଭକ୍ତିରସାଶ୍ରୟଃ ନିତ୍ୟଲୀଲାବିଲାସବାନ୍ କିଶୋର ଏବ ଧର୍ମୀ—ସର୍ବେଗୁଣାଃସନ୍ତି ଅସ୍ମିନ୍ନିତି ଧର୍ମୀତ୍ୟୁକ୍ତୋ ବର୍ତ୍ତିତଃ । ୬୭ ଶ୍ଳୋକ ।

---

ସ୍ୱୟଂରୂପଙ୍କର ବାଲ୍ୟ ପୌଗଣ୍ଡଧର୍ମର ବିଷୟ କହୁଅଛନ୍ତି । ୩୧୧ ।

ଧର୍ମୀ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ନବକିଶୋରରୂପହିଁ ନିତ୍ୟରୂପ, କିନ୍ତୁ ସେ ପ୍ରକଟ-ଲୀଳାରେ ଜନ୍ମାଦି ଲୀଳାକ୍ରମରେ ବାଲ୍ୟପୌଗଣ୍ଡ ଧର୍ମକୁ ଅବଲମ୍ବନ କରି ସେହି ସେହି ରୂପ ପ୍ରକଟ କରନ୍ତି । ୩୧୨-୩୧୩ ।

ବୟସରେ ବାଲ୍ୟ, କୈଶୋର, ପୌଗଣ୍ଡ ଏହିପ୍ରକାର ଭେଦ ଥିଲେ ସୁଦ୍ଧା ସର୍ବଭକ୍ତି-ରସାଶ୍ରୟ ସର୍ବଗୁଣାନ୍ୱିତ ଓ ନିତ୍ୟନୂତନ ଲୀଳାବିଶିଷ୍ଟ କୈଶୋର ବୟସହିଁ ଶ୍ରୀକୃଷ୍ଣଙ୍କର ପ୍ରଶସ୍ତ । ୬୭ ଶ୍ଳୋକାର୍ଥ ।

ପ୍ରକଟ କରେ—ଅନନ୍ତ ବ୍ରହ୍ମାଣ୍ଡରେ ପ୍ରକଟ କରନ୍ତି । ୩୧୪ ।

ଅନୁକ୍ରମେ—କ୍ରମାନୁସାରେ । ୩୧୪ ।

ସବଲୀଳା—ପୂତନାବଧାଦି । ଯେନଗଙ୍ଗାଧାର—ବ୍ରହ୍ମାଣ୍ଡମାନଙ୍କରେ ଅନବଚ୍ଛିନ୍ନରୂପେ ।

ଏକଲୀଳା ଏକ ବ୍ରହ୍ମାଣ୍ଡରେ ସମାପ୍ତି ମାତ୍ର, ତତ୍କାଳୀନ ଅନ୍ୟ ବ୍ରହ୍ମାଣ୍ଡରେ ଆରମ୍ଭ ହୁଏ ଓ ତାହା ସେଠାରେ ସମାପ୍ତି ମାତ୍ର ଅନ୍ୟ ବ୍ରହ୍ମାଣ୍ଡରେ ଆରମ୍ଭ ହୁଏ । ଏହିପରି ପ୍ରତ୍ୟେକ ଲୀଳା କ୍ରମେ କ୍ରମେ ବ୍ରହ୍ମାଣ୍ଡମାନଙ୍କରେ ଅଭିନୀତ ହୁଏ । ତାହାର ଦୃଷ୍ଟାନ୍ତ ପରବର୍ତ୍ତୀ ୩୧୯ ଠାରୁ ୩୨୮ ପର୍ଯ୍ୟନ୍ତ ପୟାରମାନଙ୍କରେ ବୁଝାଇ ଅଛନ୍ତି । ୩୧୬ ।

କିଶୋରେ ନିତ୍ୟସ୍ଥିତି— ଶ୍ରୀକୃଷ୍ଣ ପ୍ରକଟଲୀଳାରେ ବାଲ୍ୟପୌଗଣ୍ଡ ଓ ତତ୍ପରେ କୈଶୋର ଅବସ୍ଥାକୁ କ୍ରମେ କ୍ରମେ ଲାଭ କରନ୍ତି, ଏହି କୈଶୋର ଅବସ୍ଥାରେ ପ୍ରକଟଲୀଳା ଶେଷ ପର୍ଯ୍ୟନ୍ତ ଅବସ୍ଥାନ କରନ୍ତି ଅର୍ଥାତ୍ ଦେହୀମାନଙ୍କ ତୁଲ୍ୟ ତାହାଙ୍କର କ୍ରମେ ଯୌବନ, ପ୍ରୌଢ଼ ଓ ବାର୍ଦ୍ଧକ୍ୟ ଅବସ୍ଥାନ୍ତର ଘଟେ ନାହିଁ । ୩୧୭ ।

ନିତ୍ୟଲୀଳା କୃଷ୍ଣେର ସର୍ବଶାସ୍ତ୍ରେ କୟ ।
ବୁଝିତେ ନା ପାରି, ଲୀଲା କେମତେ ନିତ୍ୟ ହୟ ?
ଦୃଷ୍ଟାନ୍ତ ଦିୟା କହି ଯଦି, ତବେ ଲୋକ ଜାନେ ।
କୃଷ୍ଣଲୀଳା ନିତ୍ୟ—ଜ୍ୟୋତିଶ୍ଚକ୍ର-ପ୍ରମାଣେ ।୩୧୯।
ଜ୍ୟୋତିଶ୍ଚକ୍ରେ ସୂର୍ଯ୍ୟ ଯେନ ଭ୍ରମେ ରାତ୍ରିଦିନେ ।
ସପ୍ତଦ୍ୱୀପାମ୍ବୁଧି ଲଙ୍ଘି ଫିରେ କ୍ରମେ କ୍ରମେ ।୩୨୦।
ରାତ୍ରିଦିନେ ହୟ—ଷାଠି ଦଣ୍ଡ ପରମାଣ ।
ତିନସହସ୍ର ଛୟଶତ ପଲ ତାର ମାନ । ୩୨୧ ।
ସୂର୍ଯ୍ୟୋଦୟ ହୈତେ ଷାଠି ପଲ କ୍ରମୋଦୟ ।
ସେଇ 'ଏକଦଣ୍ଡ' ଅଷ୍ଟଦଣ୍ଡେ 'ପ୍ରହର' ହୟ ।
ଏକ ଦୁଇ ତିନ ଚାରି ପ୍ରହରେ ଅସ୍ତ ହୟ ।
ଚାରି ପ୍ରହର ରାତ୍ରି ଗେଲେ ପୁନ ସୂର୍ଯ୍ୟୋଦୟ ।

ଐଛେ କୃଷ୍ଣଲୀଲାମଣ୍ଡଳ ଚୌଦ୍ଦ ମନ୍ୱନ୍ତରେ ।
ବ୍ରହ୍ମାଣ୍ଡମଣ୍ଡଳ ବ୍ୟାପି କ୍ରମେ କ୍ରମେ ଫିରେ ।
ସଓୟାଶତ ବତ୍ସର କୃଷ୍ଣେର ପ୍ରକଟ ପ୍ରକାଶ ।
ତାହାଁ ଯୈଛେ ବ୍ରଜପୁରେ କରିଲ ବିଲାସ ।୩୨୫।
ଅଲାତଚକ୍ରବତ୍ ସେଇ ଲୀଲା ଚକ୍ର ଫିରେ ।
ସବ ଲୀଲା ସବ ବ୍ରହ୍ମାଣ୍ଡେ କ୍ରମେ ଉଦୟ କରେ ।
ଜନ୍ମ ବାଲ୍ୟ ପୌଗଣ୍ଡ କୈଶୋର ପ୍ରକାଶ ।
ପୂତନାବଧାଦି କରି ମୌଷଲାନ୍ତ ବିଲାସ । ୩୨୬ ।
କୋନ ବ୍ରହ୍ମାଣ୍ଡେ କୋନ ଲୀଲାର ହୟ ଅବସ୍ଥାନ ।
ତାତେ 'ନିତ୍ୟ ଲୀଲା' କହେ ଆଗମ ପୁରାଣ ।
ଗୋଲୋକ ଗୋକୁଳଧାମ—'ବିଭୁ' କୃଷ୍ଣସମ ।
କୃଷ୍ଣେଚ୍ଛାୟ ବ୍ରହ୍ମାଣ୍ଡଗଣେ ତାହାର ସଙ୍କ୍ରମ ।

---

ଐଛେ ଇତି, ଯଥା ସୂର୍ଯ୍ୟୋଦୟମାରଭ୍ୟ ଷଷ୍ଟିପଲାନାଂ କ୍ରମୋଦୟଃ ତଥା କୃଷ୍ଣଲୀଲାନାଂ ଜନ୍ମାରଭ୍ୟ ମୌଷଲାନ୍ତମୁଦୟଃ ଇତ୍ୟର୍ଥଃ । ୩୨୪ । ଚ, ଚ,

ଗବାଂ ଲୋକଃ ଗୋଲୋକ ଏବମ୍ଭୂତଂ ଗୋକୁଳମିତ୍ୟର୍ଥଃ, ବିଶେଷ ବିବେଚନ ମାଧ୍ୱଲୀଳାୟାଂ ଦ୍ୱିତୀୟ ପରିଚ୍ଛେଦେ ଦର୍ଶିତଂ । ୩୨୯ । ଚ, ଚ,

---

ଯେପରି ସୂର୍ଯ୍ୟଦେବ ଉଦୟକାଳରେ ଦିବସର ପ୍ରଥମ ପଳରୁ କ୍ରମେ ଷାଠିଏ ପଳ ବା ଏକ ଦଣ୍ଡ ଭୋଗ କରନ୍ତି, ଦଣ୍ଡପରେ ଦଣ୍ଡ ଭୋଗ କରି ୬୦ ଦଣ୍ଡ ଭୋଗ କଲା ପରେ ପୁନର୍ବାର ଉଦୟର ପ୍ରଥମ ପଳରେ ଉପସ୍ଥିତ ହୁଅନ୍ତି । ୩୨୪ ।

ସଓୟାଶତ—ସେହିପରି ଶ୍ରୀକୃଷ୍ଣଲୀଳା ଜନ୍ମରୁ ଆରମ୍ଭ କରି ମୌଷଲାନ୍ତ ଲୀଳାପର୍ଯ୍ୟନ୍ତ ୧୨୫ ବର୍ଷ ବ୍ୟାପୀ ପ୍ରକଟଲୀଳା ଏକ ଏକ ବ୍ରହ୍ମାଣ୍ଡରେ ପ୍ରକାଶ କରି କ୍ରମେ ୧୪ ମନ୍ୱନ୍ତର ପରେ ପୁନର୍ବାର ପୂର୍ବୋକ୍ତ ପରି ଜନ୍ମଲୀଳା ପ୍ରକାଶ କରନ୍ତି । ୩୨୫ ।

ସଓୟାଶତ—ଏକଶତ ପଚିଶ ।

ବ୍ରଜପୁରେ—ବ୍ରଜଧାମରେ ଓ ଶ୍ରୀମଥୁରା ଓ ଶ୍ରୀଦ୍ୱାରକାପୁରଦ୍ୱୟରେ । ୩୨୫ । ।

ଅପ୍ରକଟଲୀଳା ଓ ନିତ୍ୟ ପ୍ରକଟ ଲୀଳା ମଧ୍ୟ ନିତ୍ୟ; ଅର୍ଥାତ୍ ଏକବ୍ରହ୍ମାଣ୍ଡରେ ଲୀଳା ପ୍ରକଟ କାଳ ଉପସ୍ଥିତ ହୋଇ ନ ଥିଲେ ମଧ୍ୟ ଅନ୍ୟ କୌଣସି ବ୍ରହ୍ମାଣ୍ଡମାନଙ୍କରେ ତତ୍ତତ୍ଲୀଳା କ୍ରମେ କ୍ରମେ ପ୍ରକାଶ ହେଉ ଅଛନ୍ତି, ଅତଏବ ପ୍ରକଟ ଲୀଳାମାନ ନିତ୍ୟ । ୩୨୮ ।

ଗୋଲୋକ ଗୋକୁଳ—ଏଠାରେ ଗୋଲୋକ ଗୋକୁଳ ଶବ୍ଦର ବିଶେଷଣ ଅର୍ଥାତ୍ ଗୋମାନଙ୍କର ଲୋକ ଯେ ଗୋକୁଳ ।

ବିଭୁ—ବ୍ୟାପକ । ତାହାର ସଂକ୍ରମ—ଗୋକୁଳର ପ୍ରକାଶ । ୩୨୯ ।

ଅତଏବ ଗୋଲୋକ ସ୍ଥାନେ ନିତ୍ୟ-ବିହାର ।
ବ୍ରହ୍ମାଣ୍ଡଗଣେ କ୍ରମେ ପ୍ରାକଟ୍ୟ ତାହାର । ୩୩୦ ।
ବ୍ରଜେ କୃଷ୍ଣ ସର୍ବୈଶ୍ୱର୍ଯ୍ୟ ପ୍ରକାଶେ ପୂର୍ଣ୍ଣତମ ।
ପୁରୀଦ୍ୱୟେ ପରବ୍ୟୋମେ—ପୂର୍ଣ୍ଣତର ପୂର୍ଣ୍ଣ ।୩୩୧।

ତଥାହି ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ
ବିଭାବଲହର୍ଯ୍ୟାମ୍ ( ୧୧୮—୧୨୦ )—

ହରିଃ ପୂର୍ଣ୍ଣତମଃ ପୂର୍ଣ୍ଣତରଃ ପୂର୍ଣ୍ଣ ଇତି ତ୍ରିଧା ।
ଶ୍ରେଷ୍ଠମଧ୍ୟାଦିଭିଃ ଶବ୍ଦୈର୍ନାଟ୍ୟେ ଯଃ
ପରିପଠ୍ୟତେ । ୬୮ ।
ପ୍ରକାଶିତାଖିଲଗୁଣଂ ସ୍ମୃତଃ ପୂର୍ଣ୍ଣତମୋ ବୁଧୈଃ ।
ଅସର୍ବବ୍ୟଞ୍ଜକଃ ପୂର୍ଣ୍ଣତରଃ ପୂର୍ଣ୍ଣୋଽଲ୍ପଦର୍ଶକଃ ।୬୯।
କୃଷ୍ଣସ୍ୟ ପୂର୍ଣ୍ଣତମତା ବ୍ୟକ୍ତାଭୂଦ୍ ଗୋକୁଲାନ୍ତରେ ।
ପୂର୍ଣ୍ଣତା ପୂର୍ଣ୍ଣତରତା ଦ୍ୱାରକାମଥୁରାଦିଷୁ । ୭୦ ।

ଏକ କୃଷ୍ଣ ବ୍ରଜେ ପୂର୍ଣ୍ଣତମ ଭଗବାନ ।
ଆର ସବ ସ୍ୱରୂପ—ପୂର୍ଣ୍ଣତର ପୂର୍ଣ୍ଣ ନାମ । ୩୩୨ ।
ସଂକ୍ଷେପେ କହିଲ କୃଷ୍ଣେର ସ୍ୱରୂପ ବିଚାର ।
ଅନନ୍ତ କହିତେ ନାରେ ଏହାର ବିସ୍ତାର ।
ଅନନ୍ତ ସ୍ୱରୂପ କୃଷ୍ଣେର—ନାହିକ ଗଣନ ।
ଶାଖାଚନ୍ଦ୍ରନ୍ୟାୟେ କରି ଦିଗ୍‌ଦରଶନ । ୩୩୪ ।
ଇହା ଯେଇ ପଡ଼େ ଶୁନେ—ସେଇ ଭାଗ୍ୟବାନ୍ ।
କୃଷ୍ଣେର ସ୍ୱରୂପତତ୍ତ୍ୱେର ହୟ କିଛୁ ଜ୍ଞାନ । ୩୩୫ ।
ଶ୍ରୀରୂପ ରଘୁନାଥ ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୩୩୬।

ଇତି ଶ୍ରୀ ଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ସମ୍ବନ୍ଧତତ୍ତ୍ୱନିରୂପଣେ ଶ୍ରୀଭଗବଦ୍‌ସ୍ୱରୂପ-
ଭେଦବିଚାରେ ନାମ ବିଂଶ ପରିଚ୍ଛେଦଃ ।

---

ନାଟ୍ୟେ ଶ୍ରେଷ୍ଠମଧ୍ୟାଦିଭିଃ ଶବ୍ଦୈଃ ଯଃ ହରିଃ ପୂର୍ଣ୍ଣତମଃ ପୂର୍ଣ୍ଣତରଃ ପୂର୍ଣ୍ଣଃ ଇତି ତ୍ରିଧା ପରିକୀର୍ତ୍ତିତଃ, ପ୍ରକାଶିତାଖିଲଗୁଣଃ ପୂର୍ଣ୍ଣତମଃ, ଅସର୍ବବ୍ୟଞ୍ଜକଃ ପୂର୍ଣ୍ଣତରଃ ଅଲ୍ପଦର୍ଶକଃ ପୂର୍ଣ୍ଣଃ ( ଇତିଃ ବୁଧୈଃ ସ୍ମୃତଃ ) ଗୋକୁଳାନ୍ତରେ କୃଷ୍ଣସ୍ୟ ପୂର୍ଣ୍ଣତମତା ଦ୍ୱାରକାମଥୁରାଦିଷୁ ପୂର୍ଣ୍ଣତା ପୂର୍ଣ୍ଣତର ତାର ବ୍ୟକ୍ତା ଅଭୂତ୍ । ୬୮।୬୯।୭୦ ଶ୍ଳୋକ ।

କ୍ରମୋତ୍ କିବ ବିବକ୍ଷିତଃ, ଯତଃ ମଥୁରାୟାଂ ପୂର୍ଣ୍ଣତରଃ, ଦ୍ୱାରକାୟାଂ ପୂର୍ଣ୍ଣଃ, ପରବ୍ୟୋମ୍ନ୍ୟପି ପୂର୍ଣ୍ଣ ଇତ । ୩୩୧ । ବି. ନ.

---

ଶ୍ରୀକୃଷ୍ଣଙ୍କର ଶ୍ରୀଗୋଲୋକଧାମରେ ନିତ୍ୟ ଅପ୍ରକଟ ଲୀଳା ହୁଏ । ସ୍ୱେଚ୍ଛାମୟ ଶ୍ରୀକୃଷ୍ଣ ବ୍ରହ୍ମାଣ୍ଡମାନଙ୍କରେ ଜୀବମାନଙ୍କ ପ୍ରତି କୃପାପୂର୍ବକ ସେହି ଅପ୍ରକଟ ଲୀଳାକୁ ବ୍ରହ୍ମାଣ୍ଡମାନଙ୍କରେ ପ୍ରକଟ କରିବା କାରଣ ଗୋଲୋକଧାମକୁ ବ୍ରହ୍ମାଣ୍ଡମାନଙ୍କରେ କ୍ରମେ କ୍ରମେ ପ୍ରକଟ କରି ସେଠାରେ ଲୀଳାମାନ ପ୍ରକଟ କରନ୍ତି । ୩୩୦ ।

ଶ୍ରୀକୃଷ୍ଣ ଶ୍ରୀବ୍ରଜଧାମରେ ସର୍ବୈଶ୍ୱର୍ଯ୍ୟ ପ୍ରକାଶ କରନ୍ତି ବୋଲି ସେଠାରେ ପୂର୍ଣ୍ଣତମ, ଶ୍ରୀମଥୁରାପୁରୀରେ କିଞ୍ଚିତ୍‌ନ୍ୟୂନ ଐଶ୍ୱର୍ଯ୍ୟ ପ୍ରକାଶ କରନ୍ତି ବୋଲି ପୂର୍ଣ୍ଣତର ଓ ଦ୍ୱାରକାପୁରରେ ତଦପେକ୍ଷା କିଞ୍ଚିତ୍‌ନ୍ୟୂନ ଐଶ୍ୱର୍ଯ୍ୟ ପ୍ରକାଶ କରନ୍ତି ବୋଲି ପୂର୍ଣ୍ଣ ଓ ପରବ୍ୟୋମରେ ଦ୍ୱାରକାତୁଲ୍ୟ ଐଶ୍ୱର୍ଯ୍ୟ ପ୍ରକାଶ କରନ୍ତି ବୋଲି ସେଠାରେ ମଧ୍ୟ ପୂର୍ଣ୍ଣ । ୩୩୧ ।

ନାଟ୍ୟଶାସ୍ତ୍ରରେ ଶ୍ରେଷ୍ଠ ଓ ମଧ୍ୟାଦିଭେଦରେ ହରି ପୂର୍ଣ୍ଣତମ, ପୂର୍ଣ୍ଣତର ଓ ପୂର୍ଣ୍ଣ ବୋଲି କଥିତ ହୁଅନ୍ତି । ଅଖିଳଗୁଣପ୍ରକାଶକ ପୂର୍ଣ୍ଣତମ, ତଦପେକ୍ଷା ଅଲ୍ପଗୁଣପ୍ରକାଶକ ପୂର୍ଣ୍ଣତର । ତାହା ଅପେକ୍ଷା ଅଲ୍ପଗୁଣପ୍ରକାଶକ ପୂର୍ଣ୍ଣ । ପଣ୍ଡିତମାନେ ଏହିପରି ପ୍ରକାଶ କରନ୍ତି, ଗୋକୁଳ ମଧ୍ୟରେ ଶ୍ରୀକୃଷ୍ଣଙ୍କର ପୂର୍ଣ୍ଣତମତା, ମଥୁରାରେ ପୂର୍ଣ୍ଣତରତା ଏବଂ ଦ୍ୱାରକାରେ ପୂର୍ଣ୍ଣତା ବ୍ୟକ୍ତ ହୋଇଅଛି । ୬୮।୬୯।୭୦ ଶ୍ଳୋକାର୍ଥ ।

ଇତି ଶ୍ରୀ ଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ ଶ୍ରୀଚୈତନ୍ୟ ସ୍ୱରୂପଂ ।
ମଧ୍ୟଲୀଳା ବିଂଶ ପରିଚ୍ଛେଦ ସମାପ୍ତ ।



# ଏକବିଂଶ ପରିଚ୍ଛେଦ ।



ଅଗତ୍ୟେକଗତିଂ ନତ୍ୱା ହୀନାର୍ଥାଧିକସାଧକମ୍ ।
ଶ୍ରୀଚୈତନ୍ୟଂ ଲିଖାମ୍ୟସ୍ୟ ମାଧୁର୍ଯ୍ୟୈଶ୍ୱର୍ଯ୍ୟ-
ଶୀକରମ୍ । ୧ ।

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର, ଜୟ ଗୌରଭକ୍ତବୃନ୍ଦ । ୧ ।

ସର୍ବସ୍ୱରୂପେର ଧାମ ପରବ୍ୟୋମଧାମେ ।
ପୃଥକ୍ ପୃଥକ୍ ବୈକୁଣ୍ଠ ସବ—ନାହିକ ଗଣନେ ।
ଶତସହସ୍ରାୟୁତ ଲକ୍ଷକୋଟି ଯୋଜନ ।
ଏକୈକ ବୈକୁଣ୍ଠେର ବିସ୍ତାର ବର୍ଣ୍ଣନ । ୩ ।
ସବ ବୈକୁଣ୍ଠ—ବ୍ୟାପକ ଆନନ୍ଦଚିନ୍ମୟ ।
ପାରିଷଦ—ଷଡ୍ଐଶ୍ୱର୍ଯ୍ୟପୂର୍ଣ୍ଣ ସବ ହୟ । ୪ ।

---

# ମଧ୍ୟଲୀଳା ଏକବିଂଶ ପରିଚ୍ଛେଦ ।



ଅଗତ୍ୟେକଗତିଂ ହୀନାର୍ଥାଧିକସାଧକଂ—ହୀନାନାଂ ସତ୍କର୍ମରହିତାନାଂ ଅତିନୀଚ୍ନାନାଂ, ଜନାନାଂ ଯେ ଅର୍ଥାଃ—ପ୍ରୟୋଜନାନି ଧର୍ମ୍ମାଦୟୋ ବା ତେଷାଂ ଅଧିକଂ ଯଥାସ୍ୟାତ୍ତଥା ସାଧକଂ ଶ୍ରୀଚୈତନ୍ୟଂ ନତ୍ୱା ଅସ୍ୟ ଶ୍ରୀଚୈତନ୍ୟସ୍ୟ ମାଧୁର୍ଯ୍ୟୈଶ୍ୱର୍ଯ୍ୟ ଶୀକରଂ ଲିଖାମି । ୧ମ ଶ୍ଲୋକ ।

ସର୍ବସ୍ୱରୂପେର—ସର୍ବାବତାରସ୍ୟ ଇତ୍ୟର୍ଥଃ । ସର୍ବଧାମାନାଂ ବୈକୁଣ୍ଠ ଇତି—ନାମ ଇତ୍ୟର୍ଥ । ୨ । ବି. ଚ.

ସର୍ବେ ବୈକୁଣ୍ଠାଃ ବ୍ୟାପକାଃ ଅଥଚ ଆନନ୍ଦଚିନ୍ମୟାଃ ଇତ୍ୟର୍ଥଃ ପାରିଷଦୈଃ ଷଡ୍ଐଶ୍ୱର୍ଯ୍ୟେଣ ଚ । ୪ । ବି. ଚ.

---

ଯେ ଅଗତିର ଏକମାତ୍ର ଗତି ଏବଂ ନୀଚଜାତିମାନଙ୍କର ଧର୍ମ୍ମାଦି ପ୍ରୟୋଜନଠାରୁ ଅଧିକ ଦାତା, ସେହି ଶ୍ରୀଚୈତନ୍ୟମହାପ୍ରଭୁଙ୍କୁ ପ୍ରଣାମପୂର୍ବକ ତାହାଙ୍କର ( ଶ୍ରୀଚୈତନ୍ୟରୂପୀ କୃଷ୍ଣଙ୍କର ) ମାଧୁର୍ଯ୍ୟ ଐଶ୍ୱର୍ଯ୍ୟର କଣାମାତ୍ର ଲେଖୁଅଛି । ୧ମ ଶ୍ଲୋକାର୍ଥ ।

ସର୍ବସ୍ୱରୂପେର—ଶ୍ରୀକୃଷ୍ଣଙ୍କର ସର୍ବଅବତାରମାନଙ୍କର । ଭଗବତ୍ତ ଅବତାର ଧାମ-ମାନଙ୍କର ନାମ ବୈକୁଣ୍ଠ, ସମସ୍ତ ବୈକୁଣ୍ଠପରବ୍ୟୋମ ମଧ୍ୟରେ ବିଦ୍ୟମାନ ।

ନାହିଁକ ଗଣନ—ଅସଂଖ୍ୟ । ୨ ।

ଶ୍ରୀ ବୈକୁଣ୍ଠନାଥମାନଙ୍କର ଲୀଳା ପ୍ରକାଶେ ପ୍ରତ୍ୟେକ ବୈକୁଣ୍ଠ ପୃଥକ୍, ଏହି ହେତୁ ପ୍ରତ୍ୟେକ ବୈକୁଣ୍ଠର ବିସ୍ତାର ଶତକୋଟି ଇତ୍ୟାଦିଦ୍ୱାରା ନିର୍ଣ୍ଣୟ କରୁଅଛନ୍ତି । ଏତଦ୍ୱାରା ବୈକୁଣ୍ଠମାନେ ସୀମାବଦ୍ଧ ହେଲ ପରି ବୋଧ ହେଉଥିବାରୁ ତାହା ନିରାକରଣ ଉଦ୍ଦେଶ୍ୟରେ କହୁଅଛନ୍ତି ଯେ, ସମସ୍ତ ବୈକୁଣ୍ଠ ଅର୍ଥାତ୍ ପ୍ରତ୍ୟେକ ବୈକୁଣ୍ଠ ବ୍ୟାପକ ( ବିଭୁ ) ଆନନ୍ଦ ଚିନ୍ମୟ, ଏଣୁ ବୈକୁଣ୍ଠନାଥମାନଙ୍କ ତୁଲ୍ୟ ଅନନ୍ତ ଓ ସର୍ବଗ, ସେଠାରେ ଶ୍ରୀ ବୈକୁଣ୍ଠନାଥଙ୍କର ପାର୍ଷଦମାନେ ମଧ୍ୟ ତତ୍ତୁଲ୍ୟ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ । ଏତଦ୍ୱାରା ଜଣା ଯାଉଅଛି ଯେ, ବୈକୁଣ୍ଠନାଥ, ତତ୍ପାର୍ଷଦ ଓ ତତ୍ଧାମ ଏସମସ୍ତ ଚିଦାନନ୍ଦମୟ ଓ ବିଭୁ । ୩ । ୪ ।

ଅନନ୍ତ ବୈକୁଣ୍ଠ ଏକଦେଶେ ଯାର ।
ସେଇ ପରବ୍ୟୋମଧାମେର କେ କରୁ ବିସ୍ତାର ?
ଅନନ୍ତ ବୈକୁଣ୍ଠ ପରବ୍ୟୋମ ଯାର 'ଦଳଶ୍ରେଣୀ' ।
ସର୍ବୋପରି କୃଷ୍ଣଲୋକ 'କର୍ଣ୍ଣିକାଖ୍ୟ' ଗଣି । ୬ ।
ଏଇମତ ଷଡ୍ଐଶ୍ୱର୍ଯ୍ୟ—ସ୍ଥାନ, ଅବତାର ।
ବ୍ରହ୍ମା ଶିବ ଅନ୍ତ ନା ପାୟ, ଜୀବ କୋନ ଛାର ।

ତଥାହି ( ଭାଃ—୧୦।୧୪।୨୦ )—

କୋ ବେତ୍ତି ଭୂମନ୍ ଭଗବନ୍ ପରାତ୍ମନ୍,
ଯୋଗେଶ୍ୱରୋତୀର୍ଭବତସ୍ତ୍ରିଲୋକ୍ୟାମ୍ ।
କ୍ୱ ବା କଥଂ ବା କତି ବା କଦେତି,
ବିସ୍ତାରୟନ୍ କ୍ରୀଡ଼ସି ଯୋଗମାୟାମ୍ । ୭ ।
ଏଇମତ କୃଷ୍ଣେର ଦିବ୍ୟ ସଦ୍‌ଗୁଣ ଅନନ୍ତ ।
ବ୍ରହ୍ମା-ଶିବ-ସନକାଦି ନା ପାୟ ଯାର ଅନ୍ତ । ୮ ।

ତଥାହି ( ଭାଃ—୧୦।୧୪।୭ )—

ଗୁଣାତ୍ମନସ୍ତେଽପି ଗୁଣାନ୍ ବିମାତୁଂ,
ହିତାବତୀର୍ଣ୍ଣସ୍ୟ କ ଈଶିରେଽସ୍ୟ ।
କାଲେନ ଯୈର୍ବା ବିମିତାଃ ସୁକଳ୍ପୈ-
ର୍ଭୂପାଂଶବଃ ଖେ ମିହିକା ଦ୍ୟୁଭାସଃ । ୯ ।

(ହେ) ଭୂମନ୍ ! ଭଗବନ୍ ! ପରାତ୍ମନ୍ ! ଯୋଗେଶ୍ୱର ! ଭବତଃ ଊତୀଃ ଲୀଳାଃ କ୍ୱ କଥଂ ବା କଦା କତି ବା ଇତି ତ୍ରିଲୋକ୍ୟାଂ କଃ ବେତ୍ତି ? ଅହୋ ଯୋଗମାୟାଂ—ମହାସ୍ୱରୂପଶକ୍ତିଂ ବିସ୍ତାରୟନ ତ୍ୱଂ କ୍ରୀଡ଼ସି । ଇତ୍ୟନ୍ୱୟ ଶ୍ଲୋକ ।

ଗୁଣାତ୍ମନଃ-ଗୁଣାଧିଷ୍ଠାତୁଃ ଅସ୍ୟ—ବିଶ୍ୱସ୍ୟ ହିତାବତୀର୍ଣ୍ଣସ୍ୟ- ପାଳନାୟ ଅବତୀର୍ଣ୍ଣସ୍ୟ, ଅପି ତେ—ତବ ଗୁଣାନ୍ ବିମାତୁଂ—ଏତାବନ୍ତଃ ଇତି ଗଣୟିତୁଂ ଅପି, ଯୈଃ ସୁକଳ୍ପୈଃ—ଅତିନିପୁଣୈଃ ଜନୈଃ, କାଲେନ—ବହୁଜନ୍ମନା, ଭୂପାଂଶବ— ଭୂପରମାଣବଃ, ଖେ—ଆକାଶେ, ମିହିକାଦ୍ୟୁଭାସଃ - ମିହିକା-ହିମକଣାଃ ଦିବନକ୍ଷତ୍ରାଦି କିରଣପରମାଣବଃ ବା ବିମିତାଃ—ବିଶେଷେଣ ଗଣିତାଃ ଭବେୟୁଃ ତଥାଭୂତା ଅପି, କେ ଜନାଃ ଈଶିରେ । ଇତ୍ୟନ୍ୱୟ ଶ୍ଲୋକ ।

ପରବ୍ୟୋମଙ୍କ ମାହାତ୍ମ୍ୟ ଓ ସ୍ୱରୂପବର୍ଣ୍ଣନ କରୁଅଛନ୍ତି—ଯେଉଁ ପରବ୍ୟୋମଙ୍କ ଏକ ଅଂଶରେ ଉପରୋକ୍ତ ପ୍ରକାର ଅସଂଖ୍ୟ ବୈକୁଣ୍ଠମାନ ବିନ୍ୟସ୍ତ ତାହାର ଯେ ପରିମାଣ କେତେ ତାହା କିଏ ବର୍ଣ୍ଣନ କରିବ ।

ସେହି ପରବ୍ୟୋମଙ୍କର ସ୍ୱରୂପ ଗୋଟିଏ ପଦ୍ମଫୁଲପରି ଯାହାଙ୍କର ପାଖୁଡ଼ାମାନଙ୍କରେ ଶ୍ରୀବୈକୁଣ୍ଠଧାମମାନ ଓ ମଧ୍ୟସ୍ଥ ବୀଜକୋଷରେ ଶ୍ରୀକୃଷ୍ଣଧାମମାନ ରହିଅଛନ୍ତି । ୫।୬ ।

ଏହି ପୟାରଦ୍ୱାରା ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ପ୍ରକାଶ କରି କହୁଅଛନ୍ତି ଯେ, ଯାହାଙ୍କର ଧାମ ଓ ଅବତାର ଆଦି ଏହିପ୍ରକାର ଷଡ୍ଐଶ୍ୱର୍ଯ୍ୟପୂର୍ଣ୍ଣ ଅର୍ଥାତ୍ ସର୍ବଗ ଅନନ୍ତ ଓ ଚିଦାନନ୍ଦମୟ ତାହାଙ୍କର ଅନ୍ତ କିଏ ପାଇ ପାରେ । ଯେତେବେଳେ ବ୍ରହ୍ମା ଶିବ ପାଇ ନାହାନ୍ତି, କ୍ଷୁଦ୍ରଜୀବର କି ଶକ୍ତି ତାହା ଅନୁଭବ କରିବ । ୭ ।

ଶ୍ରୀକୃଷ୍ଣଙ୍କୁ ବ୍ରହ୍ମା ସ୍ତୁତିପୂର୍ବକ କହୁଅଛନ୍ତି—ହେ ଭୂମନ୍ ( ଅପରିଚ୍ଛିନ୍ନ ) ଭଗବନ୍ ! ପରମାତ୍ମନ୍ ! ଯୋଗେଶ୍ୱର ! ଆପଣଙ୍କର ଲୀଳା ସମସ୍ତ କେଉଁ ସ୍ଥାନରେ କିରୂପରେ କେଉଁ ସମୟରେ ବା କେତେ ପ୍ରକାର ହୁଏ ତାହା ଏହି ତ୍ରିଲୋକ ମଧ୍ୟରେ କିଏ ଜାଣେ ? ଆପଣ ଯୋଗମାୟା ବିସ୍ତାରପୂର୍ବକ କ୍ରୀଡ଼ା କରୁଅଛନ୍ତି । ଇତ୍ୟନ୍ୱୟ ଶ୍ଲୋକାର୍ଥ ।

ଶ୍ରୀବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ଆପଣ ଗୁଣାଧିଷ୍ଠାତା ଏହି ବିଶ୍ୱର ହିତାର୍ଥେ ଅବତୀର୍ଣ୍ଣ ହୋଇଅଛନ୍ତି । ଆପଣଙ୍କର ଗୁଣମାନ ଏହି ପ୍ରକାର ଏହା ଜାଣିବା ଦୂରରେ ଥାଉ, ଗଣନା କରିବାକୁ କେହି ସମର୍ଥ ହେବେ ନାହିଁ । ଯେଉଁ ନିପୁଣ ବ୍ୟକ୍ତିମାନେ ବହୁ ଜନ୍ମ ଚେଷ୍ଟା କରି ପୃଥିବୀର ପରମାଣୁ ଆକାଶର ହିମକଣା କିମ୍ବା ନକ୍ଷତ୍ରମାନଙ୍କର କିରଣପୁଞ୍ଜ ଗଣନା କରିବାକୁ ସମର୍ଥ ହୁଅନ୍ତି, ସେମାନେ ମଧ୍ୟ ଆପଣଙ୍କର ଗୁଣଗଣ ଗଣନା କରିବାକୁ ଅକ୍ଷମ । ଇତ୍ୟନ୍ୱୟ ଶ୍ଲୋକାର୍ଥ ।

ବ୍ରହ୍ମାଦିକ ରହୁ, ଅନନ୍ତ ସହସ୍ରବଦନ ।
ନିରନ୍ତର ଗାୟ ଗୁଣେର ଅନ୍ତ ନାହି ପାନ । ୯ ।

ତଥାହି ( ଭାଃ — ୨।୭।୪୦ )—

ନାନ୍ତଂ ବିଦାମ୍ୟହମମୀ ମୁନୟୋଽଗ୍ରଜାସ୍ତେ,
ମାୟାବଲସ୍ୟ ପୁରୁଷସ୍ୟ କୁତୋଽବରା ଯେ ।
ଗାୟନ୍ ଗୁଣାନ୍ ଦଶଶତାନନ ଆଦିଦେବଃ,
ଶେଷୋଽଧୁନାପି ସମବସ୍ୟତି ନାସ୍ୟ ପାରମ୍ । ୪ ।

ସେହୋ ରହୁ ସର୍ବଜ୍ଞଶିରୋମଣି କୃଷ୍ଣ ।
ନିଜ ଗୁଣେର ଅନ୍ତ ନା ପାୟ, ହୟେନ ସତୃଷ୍ଣ । ୧୦ ।

ତଥାହି ( ଭାଃ — ୧୦।୮୭।୩୬ ) —

ଦ୍ୟୁପତୟ ଏବ ତେ ନ ଯୟୁରନ୍ତମନନ୍ତତୟା,
ତ୍ୱମପି ଯଦନ୍ତରାଣ୍ଡନିଚୟା ନନୁ ସାବରଣାଃ ।
ଖ ଇବ ରଜାଂସି ବାନ୍ତି ବୟସା ସହ ଯଚ୍ଛ୍ରୁତୟ-
ସ୍ତ୍ୱୟି ହି ଫଲନ୍ତ୍ୟତନ୍ନିରସନେନ ଭବନ୍ନିଧନାଃ । ୫ ।

ସେହୋ ରହୁ, ବ୍ରଜେ ଯବେ କୃଷ୍ଣ-ଅବତାର ।
ତାଁର ଚରିତ ବିଚାରିତେ ମନ ନା ପାୟ ପାର ।
ପ୍ରାକୃତାପ୍ରାକୃତ-ସୃଷ୍ଟି କୈଲ ଏକକ୍ଷଣେ ।
ଅଶେଷ ବୈକୁଣ୍ଠାଣ୍ଡ ସ୍ୱସ୍ୱନାଥ ସନେ । ୧୧ ।

---

ପୁରୁଷସ୍ୟ ମାୟାବଲସ୍ୟ ଅନ୍ତଂ ଅହଂ ନ ବିଦାମି ( ବେଦ୍ମି ) ତଥା ତେ — ତବ ଅଗ୍ରଜାଃ ଅମୀମୁନୟଃ—ସନକାଦୟସ୍ତଥା, ଅପରେ ଚ ଯେ ତେ କୁତଃ (ବିଦନ୍ତି) ଦଶଶତାନନଃ ଆଦିଦେବଃ ଶେଷଃ ଅପି ଅସ୍ୟଗୁଣାନ୍ ଗାୟନ୍ ଅଧୁନା (ଅପି) ପାରଂ ନ ସମବସ୍ୟତି— ନିଶ୍ଚିନୋତି । ୪ର୍ଥଶ୍ଳୋକ

ହେ ଭଗବନ୍ ! ଅନନ୍ତତୟା—ଅନନ୍ତତ୍ୱେନ ଏବ, ତେ—ତବଅନ୍ତଂ—ଏତାବତ୍ତ୍ୱଂ ଦ୍ୟୁପତୟଃ— ସ୍ୱର୍ଗାଦିଲୋକପତୟଃ ବ୍ରହ୍ମାଦୟୋଽପି ନ ଯୟୁଃ —ପ୍ରାପୁଃ, ଯସ୍ମାତ୍ତ୍ୱଂ ଅପି ଆତ୍ମନଃ ଅନ୍ତଂ ନାଯାସି, ଯଦନ୍ତରା— ଯସ୍ୟ ତବ ଅନ୍ତରା ମଧ୍ୟେ ନନୁ—ଅହୋ ବୟସା—କାଲକ୍ରମେଣ ଖେ—ଆକାଶେ ରଜାଂସି ଇବ ସାବରଣାଃ—ଉତ୍ତରୋତ୍ତର ଦଶଗୁଣ ସପ୍ତାବରଣଯୁକ୍ତାଃ ଅଣ୍ଡ-ନିଚୟାଃ ସହ—ଏକଦାଏବ ନ ତୁ ପର୍ଯ୍ୟାୟେଣ ବାନ୍ତି— ପରିଭ୍ରମନ୍ତି, ଭବନ୍ନିଧନାଃ—ଭବତ— ତ୍ୱୟି ନିଧନଂ—ସମାପ୍ତିଃ ଯାସାଂ ତାଃ ଶ୍ରୁତୟଃ ଅତନ୍ନିରସନେନ ତ୍ୱୟି ଫଲନ୍ତି ହି । ୫ମ ଶ୍ଳୋକାନ୍ୱୟ ।

---

ଶ୍ରୀବ୍ରହ୍ମା ଶ୍ରୀନାରଦଙ୍କୁ କହୁଅଛନ୍ତି— ତୁମ୍ଭର ଅଗ୍ରଜ ସନକାଦି ଋଷିମାନେ ଏବଂ ମୁଁ ମଧ୍ୟ ସେହି ପରମପୁରୁଷଙ୍କର ମାୟାବଳର ଇୟତ୍ତା କରି ପାରୁ ନାହୁଁ, ଅପରମାନେ କପରି କରିବେ । ସହସ୍ରବଦନ ଆଦିଦେବ ଶେଷ ଯାହାଙ୍କର ଗୁଣମାନ ଗାନ କରି ଏପର୍ଯ୍ୟନ୍ତ ଶେଷ କରି ପାରି ନାହାନ୍ତି । ୪ର୍ଥ ଶ୍ଳୋକାର୍ଥ ।

ଶ୍ରୁତିମାନେ ଶ୍ରୀଭଗବାନଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି— ହେ ଭଗବନ୍ ! ଆପଣ ଅନନ୍ତ, ବ୍ରହ୍ମାଦି ଦେବତାମାନେ ଆପଣଙ୍କ ଅନ୍ତ ପାଆନ୍ତି ନାହିଁ; ସେମାନଙ୍କ କଥା ଦୂରେ ଥାଉ, ଆପଣ ତ ଆପଣଙ୍କ ଅନ୍ତ ପାଆନ୍ତି ନାହିଁ, ସାବରଣ ବ୍ରହ୍ମାଣ୍ଡଗଣ ଆକାଶରେ ରେଣୁକଣା ପରି କାଳଚକ୍ର-ଦ୍ୱାରା ପରିବର୍ତ୍ତିତ ହୋଇ ଆପଣଙ୍କ ଶରୀର ମଧ୍ୟରେ ପରିଭ୍ରମଣ କରନ୍ତି । ଅତଏବ ଶ୍ରୁତିମାନେ ତାତ୍ପର୍ଯ୍ୟ ବୃତ୍ତିଦ୍ୱାରା ବିଚାର କରି ତାହାର ଫଳସ୍ୱରୂପ ଆପଣଙ୍କଠାରେ ପର୍ଯ୍ୟବସିତ ହୁଅନ୍ତି । ୫ମ ଶ୍ଳୋକାର୍ଥ ।

ପ୍ରାକୃତାପ୍ରାକୃତ ସୃଷ୍ଟି— ଜଡ଼ମୟ ଓ ଚିନ୍ମୟ ସୃଷ୍ଟି; ବ୍ରହ୍ମା ବତ୍ସାବାଳକ ହରଣ କଲା ପରି ଘଟନା; ଏ ବିଷୟ ଶ୍ରୀମଦ୍‌ଭାଗବତ ଦଶମସ୍କନ୍ଧ ୧୪ ଅଧ୍ୟାୟରେ ଦ୍ରଷ୍ଟବ୍ୟ ।

ବୈକୁଣ୍ଠାଣ୍ଡ—ବୈକୁଣ୍ଠ ଓ ବ୍ରହ୍ମାଣ୍ଡ ।

ସ୍ୱସ୍ୱନାଥସନେ—ବୈକୁଣ୍ଠନାଥ ଓ ବ୍ରହ୍ମାଣ୍ଡନାଥ ସହିତ । ୧୧ ।

ଏମନ୍ତ ଅନନ୍ତ ନାହି ଶ୍ରୁତ୍ୟେ ଅନ୍ତ ।
ଯାହାର ଶ୍ରବଣେ ଚିତ୍ତ ହୟ ଅବଧୂତ ।୧୩।
'କୃଷ୍ଣବତ୍ସୈରସଙ୍ଖ୍ୟାତୈଃ'— ଶୁକଦେବ ବାଣୀ ।
କୃଷ୍ଣ ସଙ୍ଗେ କତ ଗୋପ—ସଂଖ୍ୟା ନାହି ଜାନି ।
ଏକ ଏକ ଗୋପ କରେ ଯେ ବତ୍ସ ଚାରଣ ।
କୋଟି-ଅର୍ବୁଦ ପଦ୍ମ-ଶଙ୍ଖ ତାହାର ଗଣନ ।୧୫।
ବେତ୍ର ବେଣୁ ଦଲ ଶୃଙ୍ଗ ବସ୍ତ୍ର ଅଲଙ୍କାର ।
ଗୋପଗଣେର ଯତ -- ତାର ନାହି ଲେଖା ପାର ।
ସବେ ହୈଲ ଚତୁର୍ଭୁଜ ବୈକୁଣ୍ଠେର ପତି ।
ପୃଥକ୍-ପୃଥକ୍ ବ୍ରହ୍ମାଣ୍ଡେର ବ୍ରହ୍ମା କରେ ସ୍ତୁତି ।
ଏକ କୃଷ୍ଣଦେହ ହୈତେ ସଭାର ପ୍ରକାଶେ ।
କ୍ଷଣେକେ ସଭାର ସେଇ ଶରୀରେ ପ୍ରବେଶେ ।୧୮।
ଇହା ଦେଖି ବ୍ରହ୍ମା ହୈଲ ମୋହିତ ବିସ୍ମିତ ।
ସ୍ତୁତି କରି ଏଇ ପାଛେ କରିଲ ନିଶ୍ଚିତ—

ଯେ କହେ—କୃଷ୍ଣେର ବୈଭବ ମୁଞି ସବ ଜାନୋଁ ।
ସେ ଜାନୁକ, କାୟମନେ ମୁଞି ଏଇ ମାନୋଁ ।୨୦।
ଏଇ ଯେ ତୋମାର ଅନନ୍ତ ବୈଭବାମୃତସିନ୍ଧୁ ।
ମୋର ବାଙ୍ମନୋଗମ୍ୟ ନହେ ଏକ ବିନ୍ଦୁ ।

ତଥାହି ( ଭାଃ—୧୦।୧୪।୩୮ )
ଜାନନ୍ତ ଏବ ଜାନନ୍ତୁ କିଂ ବହୂକ୍ତ୍ୟା ନ ମେ ପ୍ରଭୋ ।
ମନସୋ ବପୁଷୋ ବାଚୋ ବୈଭବଂ ତବ ଗୋଚରଃ ।୨।

କୃଷ୍ଣେର ମହିମା ରହୁ, କେବା ତାର ଜ୍ଞାତା ?
ବୃନ୍ଦାବନ ସ୍ଥାନେର ଦେଖ ଐଶ୍ୱର୍ଯ୍ୟ ଅଦ୍ଭୁତା ।୨୨
ଷୋଲ କ୍ରୋଶ ବୃନ୍ଦାବନ—ଶାସ୍ତ୍ରେ ପରକାଶେ ।
ତାର ଏକଦେଶେ ବୈକୁଣ୍ଠାଜାଣ୍ଡଗଣ ଭାସେ ।

---

ହେ ପ୍ରଭୋ ! ଜାନନ୍ତ ଏବ ଜାନନ୍ତୁ ବହୂକ୍ତ୍ୟାକଂ ! ତବବୈଭବଂ ମେ—ମମବ୍ରହ୍ମଣଃ, ମନସଃ ବପୁଷଃ ବାଚଃ (ଚ) ଗୋଚରଃ ବିଷୟଃ ନ ଭବତି । ସ୍ପଷ୍ଟ ଶ୍ଳୋକଃ ।

---

ଅବଧୂତ—ସ୍ତମ୍ଭିତ ।୧୩।

କୃଷ୍ଣବତ୍ସୈରସଙ୍ଖ୍ୟାତୈ—ଶ୍ରୀକୃଷ୍ଣଙ୍କର ବହୁ ଅସଙ୍ଖ୍ୟ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ସଖା, ଗୋପବାଳକ ଓ ଗୋବତ୍ସ ଅସଙ୍ଖ୍ୟ ।୧୪।

ଗୋପଗଣେର—ଗୋପବାଳକମାନଙ୍କର ।୧୬।

ସବେହୈଲ— ଗୋପବାଳକମାନେ ସେମାନଙ୍କର ବେତ୍ର ବେଣୁ ଶୃଙ୍ଗ ବସ୍ତ୍ର ଅଲଙ୍କାର ଆଦି ଓ ଗୋବତ୍ସମାନେ ଏ ସମସ୍ତେ ଚତୁର୍ଭୁଜ ନାରାୟଣ ହେଲେ ।୧୭।

ଶ୍ରୀକୃଷ୍ଣଙ୍କୁ ବ୍ରହ୍ମା ସ୍ତୁତି କରି ଉପସଂହାରରେ ଏହି କଥା କହୁଅଛନ୍ତି ।୧୯।

ହେ ପ୍ରଭୋ ! ଯେ କହେ ମୁଁ ଶ୍ରୀକୃଷ୍ଣଙ୍କର ବୈଭବ ଜାଣେ ସେ ଜାଣୁ, କିନ୍ତୁ ମୁଁ ମନୋବାକ୍ୟଦ୍ୱାରା ଏହାହିଁ ବୁଝୁଅଛି ଯେ—ଆପଣଙ୍କର ବୈଭବାମୃତସିନ୍ଧୁର ଏକ ବିନ୍ଦୁ ସୁଦ୍ଧା ମୁଁ ଜାଣିବାକୁ ଅକ୍ଷମ ।୨୦।୨୧।

ଶ୍ରୀବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିର ଉପସଂହାରରେ କହୁଅଛନ୍ତି—ହେ ପ୍ରଭୋ ! ଯେଉଁମାନେ କହନ୍ତି ଆମ୍ଭେମାନେ ଶ୍ରୀକୃଷ୍ଣଙ୍କର ମହିମା ଜାଣୁଁ ସେମାନେ ଜାଣନ୍ତୁ ପଛକେ ଅଧିକ ଆଉ କ'ଣ କହିବି, ଆପଣଙ୍କର ମହିମା ମୋର କାୟମନୋବାକ୍ୟର ଗୋଚର ନୁହେଁ । ସ୍ପଷ୍ଟ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କର ମହିମା ଅତି ଦୁର୍ବିଜ୍ଞେୟ ସେ କଥାଟି ବା କିଏ ଜାଣେ, ତାହା ଛାଡ଼ି ଶ୍ରୀବୃନ୍ଦାବନଧାମର ଯେ ଐଶ୍ୱର୍ଯ୍ୟ ମହିମା ତାହା ବର୍ଣ୍ଣନ କଲେ ଚମତ୍କୃତ ହେବାକୁ ହୁଏ, ଯେହେତୁ ଏହି ପୃଥିବୀରେ ଶ୍ରୀବ୍ରଜମଣ୍ଡଳ ୮୪ କ୍ରୋଶ ମଧ୍ୟରେ ଶ୍ରୀବୃନ୍ଦାବନଧାମ ୧୬ କ୍ରୋଶ । ଏହି ସେହି ବୃନ୍ଦାବନଧାମର ଏକଅଂଶରେ ଅନନ୍ତ ବୈକୁଣ୍ଠ ଏବଂ ଅନନ୍ତବ୍ରହ୍ମାଣ୍ଡ ଯୁଗପତ୍ ପ୍ରକାଶ ହୋଇଥିଲେ ।୨୨।୨୩।

ଅପାର ଐଶ୍ୱର୍ଯ୍ୟ କୃଷ୍ଣେର — ନାହିକ ଗଣନ ।
ଶାଖାଚନ୍ଦ୍ର ନ୍ୟାୟେ କରି ଦିକ୍‌ଦରଶନ । ୨୪ ।
ଐଶ୍ୱର୍ଯ୍ୟ କହିତେ ସ୍ଫୁରିଲ କୃଷ୍ଣେର ଐଶ୍ୱର୍ଯ୍ୟ-ସାଗର
ମନୋନ୍ଦ୍ରିୟ ଡୁବିଲ ପ୍ରଭୁର, ହଇଲ ଫାଁପର ।
ଭାଗବତେର ଏଇ ଶ୍ଲୋକ ପଢ଼ିଲା ଆପନେ ।
ଅର୍ଥ ଆସ୍ୱାଦିତେ ସୁଖେ କରେନ ବ୍ୟାଖ୍ୟାନେ ।୨୬।

ତଥାହି ( ଭାଃ — ୩।୨।୨୧ ) —

ସ୍ୱୟନ୍ତ୍ୱସାମ୍ୟାତିଶୟସ୍ତ୍ର୍ୟଧୀଶଃ,
ସ୍ୱାରାଜ୍ୟଲକ୍ଷ୍ମ୍ୟାପ୍ତସମସ୍ତକାମଃ ।
ବଳିଂ ହରଦ୍ଭିଶ୍ଚିରଲୋକପାଲୈଃ,
କିରୀଟକୋଟୀଡ଼ିତପାଦପୀଠଃ । ୭ ।

ପରମ ଈଶ୍ୱର କୃଷ୍ଣ — ସ୍ୱୟଂ ଭଗବାନ୍ ।
ତାତେ ବଡ଼, ତାର ସମ, କେହୋ ନାହି ଆନ ।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୧ )—

ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ।
ଅନାଦିରାଦିର୍ଗୋବିନ୍ଦଃ ସର୍ବକାରଣକାରଣମ୍ । ୮ ।

ବ୍ରହ୍ମା ବିଷ୍ଣୁ ହର—ଏଇ ସୃଷ୍ଟ୍ୟାଦି-ଈଶ୍ୱର ।
ତିନେ ଆଜ୍ଞାକାରୀ କୃଷ୍ଣେର, କୃଷ୍ଣ ଅଧୀଶ୍ୱର ।୨୮।

ତଥାହି ( ଭାଃ — ୨।୬।୩୦ ) —

ସୃଜାମି ତନ୍ନିଯୁକ୍ତୋଽହଂ ହରୋ ହରତି ତଦ୍‌ବଶଃ ।
ବିଶ୍ୱଂ ପୁରୁଷରୂପେଣ ପରିପାତି ତ୍ରିଶକ୍ତିଧୃକ୍ । ୯ ।

ଏ ସାମାନ୍ୟ, ତ୍ର୍ୟଧୀଶ୍ୱରେର ଶୁନ ଅର୍ଥ ସାର ।
ଜଗତ୍‌କାରଣ ତିନ ପୁରୁଷାବତାର । ୨୯ ।

---

ଅସାମ୍ୟାତିଶୟଃ ତ୍ର୍ୟଧୀଶଃ—ବ୍ରହ୍ମାଣ୍ଡସ୍ଥିତ ସର୍ବଭୂତସ୍ଥାନାଂ ଅଧୀଶଃ, ସ୍ୱାରାଜ୍ୟଲକ୍ଷ୍ମ୍ୟାପ୍ତସମସ୍ତକାମଃ-ସ୍ୱାରାଜ୍ୟଲକ୍ଷ୍ମୀ-ପରମାନନ୍ଦସ୍ୱରୂପସମ୍ପତ୍ତ୍ୟା ଏବ ପ୍ରାପ୍ତ ସମସ୍ତ ଭୋଗଃ, ବଳିଂ—କରଂ ଅର୍ହଣଂ ବା ହରଦ୍ଭିଃ—ସମର୍ପୟଦ୍ଭିଃ, ଚିରଲୋକପାଲୈଃ—ଚିରକାଲୀନୈଃ ଲୋକପାଲୈଃ କିରୀଟ କୋଟୀଡ଼ିତ ପାଦପୀଠଃ—କିରୀଟକୋଟ୍ୟା—ମୁକୁଟାଗ୍ରେଣ ଈଡ଼ିତଂ—ସ୍ତୁତଂ ପାଦପୀଠଂ ଯସ୍ୟ ସଃ, ତୁ ସ୍ୱୟଂ । ୭ମ ଶ୍ଲୋକଃ ।

---

ଶ୍ରୀବିଦୁରଙ୍କୁ ଶ୍ରୀଉଦ୍ଧବ କହୁଅଛନ୍ତି—ଯାହାଙ୍କର ସମାନ କିମ୍ବା ଯାହାଙ୍କ ଅପେକ୍ଷା ଅଧିକ କେହି ନାହିଁ, ଯେ ତ୍ର୍ୟଧୀଶ ( ପୁରୁଷମାନଙ୍କର ଲୋକମାନଙ୍କର ଗୁଣମାନଙ୍କର ଅଧୀଶ ) ଓ ପରମାନନ୍ଦସ୍ୱରୂପ ସମ୍ପତ୍ତି ସମସ୍ତ ଭୋଗପ୍ରାପ୍ତ ହୋଇଅଛନ୍ତି । ଚିରଲୋକପାଳମାନେ ଉପହାର ସମର୍ପଣପୂର୍ବକ କୋଟି କୋଟି କିରୀଟାଗ୍ରଦ୍ୱାରା ଯାହାଙ୍କର ସିଂହାସନମୂଳରେ ସ୍ତୁତି କରନ୍ତି ସେହି ସ୍ୱୟଂ ( ଶ୍ରୀକୃଷ୍ଣ ) ଆମ୍ଭମାନଙ୍କର ପ୍ରଭୁ । ୭ମ ଶ୍ଲୋକାର୍ଥ ।

୮ମ ଶ୍ଲୋକର ଆଦି. ୨ୟ ପରି. ୧୮ଶ ଶ୍ଲୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ ( ବ୍ରଜେନ୍ଦ୍ରନନ୍ଦନ ) ଈଶ୍ୱରମାନଙ୍କର ଶ୍ରେଷ୍ଠ ଏଣୁ ପରମେଶ୍ୱର ସଚ୍ଚିଦାନନ୍ଦ-ବିଗ୍ରହ ( ସଚ୍ଚିଦାନନ୍ଦସ୍ୱରୂପ ) ସ୍ୱୟଂ ଅନାଦି ( ସ୍ୱପ୍ରକାଶ ) ଏବଂ ଆଦି ( ସର୍ବତତ୍ତ୍ୱର ପ୍ରକାଶକ ବା ମୂଳାଶ୍ରୟ ) ଏବଂ ସର୍ବକାରଣର କାରଣ ( ବୀଜସ୍ୱରୂପ ) ଗୋବିନ୍ଦ ( ଗୋପାଳ ) ୮ମ ଶ୍ଲୋକାର୍ଥ ।

୯ମ ଶ୍ଲୋକର ଅନ୍ୱୟ ମଧ୍ୟ. ୨୦ଶ ପରି. ୫୧ ଶ୍ଲୋକ ଦ୍ରଷ୍ଟବ୍ୟ ।

ଶ୍ରୀବ୍ରହ୍ମା ଶ୍ରୀନାରଦଙ୍କୁ କହୁଅଛନ୍ତି—ତାହାଙ୍କର ନିୟୋଗରେ ମୁଁ ବିଶ୍ୱସୃଷ୍ଟି କରେଁ, ହର ତାହାଙ୍କର ଅଧୀନରେ ବିଶ୍ୱସଂହାର କରନ୍ତି, ତ୍ରିଶକ୍ତିଶାଳୀ ସେହି ହରି ବିଷ୍ଣୁ ( ପୁରୁଷ ) ରୂପରେ ବିଶ୍ୱପାଳନ କରନ୍ତି । ୯ମ ଶ୍ଲୋକାର୍ଥ ।

ଏ ସାମାନ୍ୟ—ଗୁଣାବତାର ବ୍ରହ୍ମା, ବିଷ୍ଣୁ, ହର, ଏମାନେ ତ୍ର୍ୟଧୀଶ ଏହା ସାମାନ୍ୟ ଶବ୍ଦର ଅର୍ଥ । ୨୯ ।

ମହାବିଷ୍ଣୁ, ପଦ୍ମନାଭ, କ୍ଷୀରୋଦକସ୍ୱାମୀ ।
ଏଇ ତିନ – ସ୍ଥୂଲ-ସୂକ୍ଷ୍ମ-ସର୍ବ-ଅନ୍ତର୍ଯ୍ୟାମୀ । ୩୦ ।
ଏଇ ତିନ— ସର୍ବାଶ୍ରୟ ଜଗତ-ଈଶ୍ୱର ।
ଏହୋ ସବ କଲା-ଅଂଶ, କୃଷ୍ଣ ଅଧୀଶ୍ୱର । ୩୧ ।
ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୮ )—
ଯସ୍ୟୈକନିଃଶ୍ୱସିତକାଲମଥାବଲମ୍ବ୍ୟ,
ଜୀବନ୍ତି ଲୋମବିଲଜା ଜଗଦଣ୍ଡନାଥାଃ ।
ବିଷ୍ଣୁର୍ମହାନ୍ ସ ଇହ ଯସ୍ୟ କଲାବିଶେଷୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୧୦ ।
ଏହୋ ଅର୍ଥ ମଧ୍ୟମ ଆର ଅର୍ଥ ଶୁନ ସାର –
ତିନ ଆବାସ ସ୍ଥାନ କୃଷ୍ଣେର, ଶାସ୍ତ୍ରେ ଖ୍ୟାତି ଯାର ।
ଅନ୍ତଃପୁର—ଗୋଲୋକ, ଶ୍ରୀବୃନ୍ଦାବନ ।
ଯାହାଁ ନିତ୍ୟ ସ୍ଥିତି ମାତା-ପିତା-ବନ୍ଧୁଗଣ । ୩୩ ।
ମଧୁରୈଶ୍ୱର୍ଯ୍ୟ ମାଧୁର୍ଯ୍ୟ-କୃପାଦି ଭାଣ୍ଡାର ।
ଯୋଗମାୟା ଦାସୀ ଯାହାଁ—ରାସାଦି ଲୀଲା ସାର ।

ତଥାହି ଗୋସ୍ୱାମିପାଦୋକ୍ତ ଶ୍ଲୋକଃ—
କରୁଣାନିକୁରମ୍ବକୋମଲେ,
ମଧୁରୈଶ୍ୱର୍ଯ୍ୟବିଶେଷ ଶାଲିନି ।
ଜୟତି ବ୍ରଜରାଜନନ୍ଦନେ,
ନ ହି ଚିନ୍ତାକଣିକାଭ୍ୟୁଦେତି ନଃ । ୧୧ ।

---

କରୁଣାନିକୁରମ୍ବ କୋମଲେ—କରୁଣାୟାଃ ନିକୁରମ୍ବେନ—ସମୂହେନ—କୋମଳଃ ସ୍ୱଭାବଃ ଯସ୍ୟ ତସ୍ମିନ୍. ମଧୁରୈଶ୍ୱର୍ଯ୍ୟବିଶେଷଶାଲିନି – ମନୋହରୈଶ୍ୱର୍ଯ୍ୟପ୍ରକଟନପରେ ବ୍ରଜରାଜନନ୍ଦନେ—ଶ୍ରୀକୃଷ୍ଣେ ଜୟତି—ଅସମୋର୍ଦ୍ଧ୍ୱଂ ଉତ୍କର୍ଷଂ ଆବିଷ୍କୁର୍ବତି ସତି, ନଃ—ଅସ୍ମାକଂ ଚିନ୍ତାକଣିକା—ଚିନ୍ତାଲେଶଃ ନ ଅଭ୍ୟୁଦେତି । ୧୧ଶ ଶ୍ଲୋକଃ ।

---

ମହାବିଷ୍ଣୁ—ପ୍ରଥମପୁରୁଷ, ପଦ୍ମନାଭ—ଦ୍ୱିତୀୟପୁରୁଷ । କ୍ଷୀରୋଦକଶାୟୀ—ତୃତୀୟପୁରୁଷ । ୧୦ମ ଶ୍ଲୋକ—ଆଦି, ୫ମ ପରି, ୯ମ ଶ୍ଲୋକ ଦ୍ରଷ୍ଟବ୍ୟ ।

ଯହାଙ୍କର ଲୋମକୂପବାସୀ ବ୍ରହ୍ମାଣ୍ଡାଧିପତି ବ୍ରହ୍ମା ବିଷ୍ଣୁ ଓ ଶିବ ଯାହାଙ୍କର ଏକା ନିଶ୍ୱାସପତନର ସମୟବ୍ୟାପୀ ଜଗତରେ ପ୍ରକଟ ହୁଅନ୍ତି, ସେହି ମହାବିଷ୍ଣୁ ଯାହାଙ୍କର ଅଂଶାନୁଅଂଶ ଏବଂ ଭୂତ ଶ୍ରୀଗୋଲୋକ ପଦ୍ମଦଳସ୍ଥ ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୧୦ମ ଶ୍ଲୋକାର୍ଥ

ଏହୋଅର୍ଥମଧ୍ୟମ—ପ୍ରଥମ, ଦ୍ୱିତୀୟ, ତୃତୀୟପୁରୁଷ, ଏମାନେ କୃଷ୍ଣାଧୀଶ ଏହା ମଧ୍ୟମ । ୩୨ ।

ଉପରୋକ୍ତ ତିନି ଆବାସ ଅର୍ଥ ମଧ୍ୟରୁ ସ୍ୱଧାମର ( ସ୍ୱୟଂଭଗବତୋ ଧାମ ) ବିଷୟ କହୁଅଛନ୍ତି— ଶ୍ରୀଗୋଲୋକହିଁ ଶ୍ରୀବୃନ୍ଦାବନ ଯାହାକି ଶ୍ରୀକୃଷ୍ଣଙ୍କର ଅନ୍ତଃପୁର ଅର୍ଥାତ୍ ଉତ୍ତମ ଆବାସ ପିତା, ମାତା, ବନ୍ଧୁବାନ୍ଧବ ଯେଉଁ ଏହି ସ୍ଥାନରେ ଶ୍ରୀକୃଷ୍ଣ ନିତ୍ୟବିହାର କରନ୍ତି । ଏହି ସ୍ଥାନ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଐଶ୍ୱର୍ଯ୍ୟରୂପ ଶ୍ରୀକୃଷ୍ଣଙ୍କର କୃପାମୃତର ଭଣ୍ଡାର ଅର୍ଥାତ୍ ପ୍ରେମମୂର୍ତ୍ତିପୂର୍ଣ୍ଣ । ଏହି ସ୍ଥାନରେ ଯୋଗମାୟା ( ଲୀଳାପ୍ରକାଶିକା ସ୍ୱରୂପଶକ୍ତି ) ଶ୍ରୀକୃଷ୍ଣଙ୍କର ଦାସୀ ହୋଇ ଶ୍ରୀକୃଷ୍ଣଙ୍କର ରାସାଦିଲୀଳା ବିସ୍ତାର କରନ୍ତି । ୩୩।୩୪ ।

ଯେ କରୁଣା ସମୂହରେ କୋମଳ ସ୍ୱଭାବ, ଯେ ମଧୁର ଐଶ୍ୱର୍ଯ୍ୟର ବିଳାସଶାଳୀ ସେହି ବ୍ରଜରାଜନନ୍ଦନ ଶ୍ରୀକୃଷ୍ଣ ଜୟଯୁକ୍ତ ଥାଉଁ ଥାଉଁ ଆମ୍ଭମାନଙ୍କର ( ତାଙ୍କଠାରେ ) ଚିନ୍ତାର ଲେଶମାତ୍ର ସ୍ଥିତ ଉପସ୍ଥିତ ହେଉନାହିଁ । ୧୧ଶ ଶ୍ଲୋକାର୍ଥ ।

ତାର ତଳେ ପରବ୍ୟୋମ—ବିଷ୍ଣୁଲୋକ ନାମ ।
ନାରାୟଣ-ଆଦି ଅନନ୍ତ ସ୍ୱରୂପେର ଧାମ । ୩୫ ।
ମଧ୍ୟମ ଆବାସ କୃଷ୍ଣେର—ଷଡ଼ୈଶ୍ୱର୍ଯ୍ୟଭଣ୍ଡାର ।
ଅନନ୍ତ ସ୍ୱରୂପ ଯାହାଁ କରେନ ବିହାର ।
ଅନନ୍ତ ବୈକୁଣ୍ଠ ଯାହାଁ ଭଣ୍ଡାର କୋଠର ।
ପାରିଷଦଗଣ ଷଡ଼ୈଶ୍ୱର୍ଯ୍ୟ ଆଛେ ଭରି । ୩୬ ।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୩ )—
ଗୋଲୋକନାମ୍ନି ନିଜଧାମ୍ନି ତଳେ ଚ ତସ୍ୟ,
ଦେବୀମହେଶହରିଧାମସୁ ତେଷୁ ତେଷୁ ।
ତେ ତେ ପ୍ରଭାବନିଚୟା ବିହିତାଶ୍ଚ ଯେନ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୧୨ ।

ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ
( ୫।୨୪୭, ୨୪୮ ) ପଦ୍ମପୁରାଣବଚନେ—
ପ୍ରଧାନପରମବ୍ୟୋମ୍ନୋରନ୍ତରେ ବିରଜା ନଦୀ ।
ବେଦାଙ୍ଗସ୍ୱେଦଜନିତୈସ୍ତୋୟୈଃ ପ୍ରସ୍ରାବିତା ଶୁଭା ।
ତସ୍ୟାଃ ପାରେ ପରବ୍ୟୋମ୍ନି ତ୍ରିପାଦ୍‌ଭୂତଂ ସନାତନମ୍ ।
ଅମୃତଂ ଶାଶ୍ୱତଂ ନିତ୍ୟମନନ୍ତଂ ପରମଂ ପଦମ୍ ।୧୪।

ତସ୍ୟ—ଶ୍ରୀକୃଷ୍ଣସ୍ୟ ଗୋଲୋକନାମ୍ନି ନିଜଧାମ୍ନି ତଳେ ଦେବୀ ମହେଶ ହରିଧାମସୁ—ଦେବ୍ୟାଦୀନାଂ ଯଥୋତ୍ତରଂ ଊର୍ଦ୍ଧ୍ୱୋର୍ଦ୍ଧ୍ୱପ୍ରଭାବତ୍ୱାତ୍ ତଲ୍ଲୋକାନାମୂର୍ଦ୍ଧ୍ୱୋର୍ଦ୍ଧ୍ୱଭାବତ୍ୱଂ ଗୋଲୋକସ୍ୟ ସର୍ବୋର୍ଦ୍ଧ୍ୱଗାମିତ୍ୱଂ ସର୍ବବ୍ୟାପକତ୍ୱଂଚ ବ୍ୟବସ୍ଥାପିତମସ୍ତି, ତେଷୁ ତେଷୁ ଚ ଯେନ ତେ ତେ ପ୍ରଭାବନିଚୟାଃ ବିହିତାଶ୍ଚ, ତଂ ଆଦିପୁରୁଷଂ ଗୋବିନ୍ଦଂ ଅହଂ ଭଜାମି । ୧୨ଶ ଶ୍ଲୋକ ।

ପ୍ରଧାନପରବ୍ୟୋମ୍ନୋଃ ଅନ୍ତରେ—ମଧ୍ୟେ, ବେଦାଙ୍ଗସ୍ୱେଦଜନିତତୋୟୈଃ ବେଦାଙ୍ଗସ୍ୟ ଭଗବତଃ ଘର୍ମଜନିତୈଃ ତୋୟୈଃ, ପ୍ରସ୍ରାବିତା—ପ୍ରବାହିତା ଶୁଭା—ତ୍ରିଲୋକପାବନୀ ବିରଜା ନଦୀ ଅସ୍ତି; ତସ୍ୟାଃ—ବିରଜାୟାଃ ପାରେ ତ୍ରିପାଦ୍‌ଭୂତଂ ସନାତନଂ ଅମୃତଂ (ସ୍ୱଷ୍ଟୁମଧୁରଂ) ଶାଶ୍ୱତଂ—ନୂତନଂ ନିତ୍ୟଂ ଅନନ୍ତଂ ପରମଂ ପଦଂ ପରବ୍ୟୋମ ( ଅସ୍ତି ) । ୧୩।୧୪ ଶ୍ଲୋକ ।

ଶ୍ରୀକୃଷ୍ଣଙ୍କର ମଧ୍ୟମ ଆବାସର କଥା କହୁଅଛନ୍ତି—

ତାରତଳେ—ଗୋଲୋକର ତଳେ ।

ପରବ୍ୟୋମ—ବିଷ୍ଣୁଲୋକ ନାମ, ପରବ୍ୟୋମ ମଧ୍ୟରେ ବୈକୁଣ୍ଠ, ଯାହାର ନାମ ବିଷ୍ଣୁଲୋକ । ୩୫ ।

ସେହି ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଭଣ୍ଡାରର ଗୋଟିଏ ଗୋଟିଏ ବୈକୁଣ୍ଠ ଗୋଟିଏ ଗୋଟିଏ କୋଠରି ଏବଂ ସେଠାକାର ପାରିଷଦଗଣ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ । ୩୬ ।

ଗୋଲୋକ ଶ୍ରୀକୃଷ୍ଣଙ୍କର ନିଜଧାମ, ଏବଂ ସର୍ବୋର୍ଦ୍ଧ୍ୱବର୍ତ୍ତୀ, ତାହା ତଳେ ହରିଧାମ ( ବୈକୁଣ୍ଠ ) ତାହା ତଳେ ମହେଶଧାମ, ତାହା ତଳେ ଦେବୀଧାମ, ଏହି ସମସ୍ତ ଧାମରେ ଯେ ଉତ୍ତରୋତ୍ତର ଧାମ ବିହିତ ଐଶ୍ୱର୍ଯ୍ୟବିଧାନ କରୁଅଛନ୍ତି ସେହି ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୧୨ଶ ଶ୍ଲୋକାର୍ଥ ।

ପ୍ରକୃତି ଏବଂ ପରବ୍ୟୋମ ମଧ୍ୟରେ ଶ୍ରୀ ଭଗବାନଙ୍କର ସ୍ୱେଦଜଳସମ୍ଭୂତା ବିରଜା ନଦୀ ପ୍ରବାହିତା ହେଉଅଛନ୍ତି । ଏହି ବିରଜାର ଅପରପାରରେ ତ୍ରିପାଦ ବିଭୂତିଶାଳୀ ସନାତନ ନିତ୍ୟ—ନୂତନ ଅମୃତ ନିତ୍ୟ ଓ ଅନନ୍ତ ପରବ୍ୟୋମନାମକ ସ୍ଥାନ ଅଛି । ୧୩।୧୪ଶ ଶ୍ଲୋକାର୍ଥ ।

ତାର ତଳେ ବାହ୍ୟାବାସ—ବିରଜାର ପାର ।
ଅନନ୍ତ ବ୍ରହ୍ମାଣ୍ଡ ଯାହିଁ କୋଠରି ଅପାର । ୩୯ ।
'ଦେବୀଧାମ' ନାମ ତାର, ଜୀବ ଯାର ବାସୀ ।
ଜଗଲ୍ଲକ୍ଷ୍ମୀ ରଖି ରହେ ଯାହିଁ ମାୟା ଦାସୀ ।
ଏଇ ତିନ ଧାମେର ହୟ କୃଷ୍ଣ ଅଧୀଶ୍ବର ।
ଗୋଲୋକ ପରବ୍ୟୋମ—ପ୍ରକୃତିର ପର । ୪୧ ।
ଚିଚ୍ଛକ୍ତି-ବିଭୂତି ଧାମ —'ତ୍ରିପାଦୈଶ୍ବର୍ଯ୍ୟ' ନାମ ।
ମାୟିକ ବିଭୂତି —'ଏକପାଦ'-ଅଭିଧାନ । ୪୨ ।
ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ
( ୫।୨୮୭ )—
ତ୍ରିପାଦ୍‌ବିଭୂତେର୍ଧାମତ୍ୱାତ୍ ତ୍ରିପାଦ୍‌ଭୂତଂ ହି
ତତ୍ ପଦମ୍ ।
ବିଭୂତିର୍ମାୟିକୀ ସର୍ବା ପ୍ରୋକ୍ତା ପାଦାତ୍ମିକା
ଯତଃ । ୧୫ ।
ତ୍ରିପାଦ-ବିଭୂତି କୃଷ୍ଣେର—ବାକ୍ୟ-ଅଗୋଚର ।
ଏକପାଦ-ବିଭୂତିର ଶୁନହ ବିସ୍ତାର— । ୪୩ ।
ଅନନ୍ତବ୍ରହ୍ମାଣ୍ଡେର ଯତ ବ୍ରହ୍ମା-ରୁଦ୍ରଗଣ ।
'ଚିରଲୋକପାଲ' ଶବ୍ଦେ ତାହାର ଗଣନ ।
ଏକଦିନ ଦ୍ଵାରକାତେ କୃଷ୍ଣ ଦେଖିବାରେ ।
ବ୍ରହ୍ମା ଆଇଲ ଦ୍ବାରପାଲ ଜାନାଇଲ କୃଷ୍ଣେରେ ।
କୃଷ୍ଣ ବୋଲେନ—କୋନ ବ୍ରହ୍ମା, କି ନାମ ତାହାର
ଦ୍ବାରୀ ଆସି ବ୍ରହ୍ମାକେ ପୁଛିଲ ଆରବାର । ୪୬ ।
ବିସ୍ମିତ ହଇୟା ବ୍ରହ୍ମା ଦ୍ବାରୀକେ କହିଲା—
କହ ଗିୟା, ସନକ ପିତା ଚତୁର୍ମୁଖ ଆଇଲା ।
କୃଷ୍ଣେ ଜାନାଇୟା ଦ୍ଵାରୀ ବ୍ରହ୍ମା ଲଞା ଗେଲା ।
କୃଷ୍ଣେର ଚରଣେ ବ୍ରହ୍ମା ଦଣ୍ଡବତ ହୈଲା । ୪୮ ।
କୃଷ୍ଣ ମାନ୍ୟ-ପୂଜା କରି ତାରେ ପ୍ରଶ୍ନ କୈଲ—
କି ଲାଗି ତୋମାର ଇହାଁ ଆଗମନ ହୈଲ ?
ବ୍ରହ୍ମା କହେ—ତାହା ପାଛେ କରିବ ନିବେଦନ ।
ଏକ ସଂଶୟ ମନେ, ତାହା କରହ ଛେଦନ । ୫୦ ।
'କୋନ ବ୍ରହ୍ମା' ପୁଛିଲେ ତୁମି କୋନ ଅଭିପ୍ରାୟେ ?
ଆମା ବଇ ଜଗତେ ଆର କୋନ ବ୍ରହ୍ମା ହୟେ ?
ଶୁନି ହାସି କୃଷ୍ଣ ତବେ କରିଲେନ ଧ୍ୟାନେ ।
ଅସଂଖ୍ୟ ବ୍ରହ୍ମାର ଗଣ ଆଇଲ ତତକ୍ଷଣେ । ୫୨ ।
ଦଶ ବିଶ ସହସ୍ରାୟୁତ ଲକ୍ଷ-ବଦନ ।
କୋଟ୍ୟର୍ବୁଦ-ମୁଖ, କାରୋ ନାହିକ ଗଣନ ।

---

ତ୍ରିପାଦ୍ ବିଭୂତେର୍ଧାମତ୍ୱାତ୍ ତତ୍ ପଦଂ ( ପରବ୍ୟୋମ ) ହି ତ୍ରିପାଦଭୂତଂ, ଯତଃ ସର୍ବା ମାୟିକୀ ବିଭୂତିଃ ପାଦାତ୍ମିକା ପ୍ରୋକ୍ତା । ୧୫ଶ ଶ୍ଲୋକଃ ।
ଜଗଲ୍ଲକ୍ଷ୍ମୀ—ମାୟାରୂପ ଜଗତ୍ ସମ୍ପତ୍ତିଃ । ଅ. ଚ. ।

---

ତାରତଳେ—ପରବ୍ୟୋମର ତଳେ । ବିରଜାର ଅପରପାର୍ଶ୍ୱରେ ଶ୍ରୀକୃଷ୍ଣଙ୍କର ବାହ୍ୟଧାମ । ସେହି ଧାମର ଅନ୍ତର୍ଗତ ଅନନ୍ତ ବ୍ରହ୍ମାଣ୍ଡ ଏବଂ ପ୍ରତ୍ୟେକ ବ୍ରହ୍ମାଣ୍ଡ ଗୋଟିଏ ଗୋଟିଏ କୋଠରୀ । ଏହି ଧାମର ନାମ ଦେବୀଧାମ । ସେହି କୋଠରୀମାନଙ୍କରେ ଜୀବମାନେ ବାସ କରନ୍ତି । ଏ ବାହ୍ୟାବାସ ଶ୍ରୀକୃଷ୍ଣଙ୍କର ଜଗଲ୍ଲକ୍ଷ୍ମୀଙ୍କର ( ମାୟିକ ସମ୍ପତ୍ତିର ) ଭଣ୍ଡାର ଏବଂ ଏଠାରେ ଗୁଣମୟୀ ମାୟା ତାହାଙ୍କର ଦାସୀ । ୩୯।୪୦ ।

ଏ ତିନଧାମେ—ସ୍ୱଧାମ ( ଶ୍ରୀଗୋଲୋକ ) ମଧ୍ୟଧାମ ( ଶ୍ରୀବୈକୁଣ୍ଠ ) ଓ ବାହ୍ୟଧାମ ( ଦେବୀଧାମ ), ଗୋଲୋକ ଏବଂ ବୈକୁଣ୍ଠ ହି ଗୁଣମୟୀ ମାୟାର ଅତୀତ ସ୍ଥାନ । ଏହି ଗୋଲୋକ ଏବଂ ବୈକୁଣ୍ଠ ଏମାନେ ଶ୍ରୀକୃଷ୍ଣଙ୍କର ଚିତ୍‌ଶକ୍ତି ( ସ୍ୱରୂପଶକ୍ତିର ) ବୈଭବଧାମ, ଏମାନଙ୍କର ନାମ ତ୍ରିପାଦବିଭୂତି, ଗୁଣମୟୀ ମାୟିକଧାମର ନାମ ଏକପାଦ ବିଭୂତି । ୪୨ ।

ସେହି ଧାମ ( ପରବ୍ୟୋମ ) ତ୍ରିପାଦବିଭୂତିର ଧାମ ହେତୁ ତାହା ତ୍ରିପାଦସ୍ୱରୂପ । ଯେହେତୁ ସମସ୍ତ ମାୟିକ ବିଭୂତିକୁ ଏକପାଦସ୍ୱରୂପ କୁହ ଯାଏ ଅର୍ଥାତ୍ ପରବ୍ୟୋମରେ ମାୟିକ ବିଭୂତି ନାହିଁ । ଏହା ଜଣାଇବା କାରଣ ତ୍ରିପାଦସ୍ୱରୂପ କୁହାଯାଏ । ୧୫ଶ ଶ୍ଲୋକାର୍ଥ ।

ରୁଦ୍ରଗଣ ଆଇଲା ଲକ୍ଷକୋଟି-ବଦନ ।
ଇନ୍ଦ୍ରଗଣ ଆଇଲା ଲକ୍ଷକୋଟି-ନୟନ ॥ ୫୪ ॥
ଦେଖି ଚତୁର୍ମୁଖ ବ୍ରହ୍ମା ଫାଁପର ହଇଲା ।
ହସ୍ତିଗଣ ମଧ୍ୟେ ଯେନ ଶଶକ ରହିଲା ॥
ଆସି ସବ ବ୍ରହ୍ମା କୃଷ୍ଣ ପାଦପୀଠ ଆଗେ ।
ଦଣ୍ଡବତ୍ କରି ପଡ଼େ, ମୁକୁଟ ପାଦପୀଠେ ଲାଗେ ॥
କୃଷ୍ଣେର ଅଚିନ୍ତ୍ୟ ଶକ୍ତି ଲଖିତେ କେହୋ ନାରେ
ଯତ ବ୍ରହ୍ମା, ତତ ମୂର୍ତ୍ତି, ଏକଇ ଶରୀରେ ॥ ୫୭ ॥
ପାଦପୀଠ ମୁକୁଟାଗ୍ର ସଂଘଟ୍ଟେ ଉଠେ ଧ୍ୱନି ।
'ପାଦପୀଠକେ ସ୍ତୁତି କରେ ମୁକୁଟ' ହେନ ଜାନି
ଯୋଡ଼ହାଥେ ବ୍ରହ୍ମା ରୁଦ୍ରାଦି କରେନ ସ୍ତବନ—
ବଡ଼ କୃପା କୈଲେ ପ୍ରଭୁ ! ଦେଖାଇଲେ ଚରଣ ॥
ଭାଗ୍ୟ ଆମାର—ବୋଲାଇଲା 'ଦାସ' ଅଙ୍ଗୀକରି ।
କୋନ ଆଜ୍ଞା ହୟ, ତାହା କରି ଶିରେ ଧରି ॥ ୬୦ ॥
କୃଷ୍ଣ କହେ—ତୋମାସବା ଦେଖିତେ ଚିତ୍ତ ହୈଲ
ତାହା ଲାଗି ଏକତ୍ର ସଭାରେ ବୋଲାଇଲ ॥
ସୁଖୀ ହଓ ସଭେ—କିଛୁ ନାହି ଦୈତ୍ୟ ଭୟ ?
ତାରା କହେ—ତୋମାର ପ୍ରସାଦେ ସର୍ବତ୍ର ଜୟ ॥
ସମ୍ପ୍ରତି ଯେବା ହୋଇଥିଲ ପୃଥିବୀତେ ଭାର ।
ଅବତୀର୍ଣ୍ଣ ହଞା ତାହା କରିଲେ ସଂହାର ॥ ୬୩ ॥
ଦ୍ୱାରକାଦି ବିଭୁ—ତାର ଏଇ ତ ପ୍ରମାଣ—
'ଆମାର ବ୍ରହ୍ମାଣ୍ଡେ କୃଷ୍ଣ' ସଭାର ହୈଲ ଜ୍ଞାନ ॥
କୃଷ୍ଣ-ସହ ଦ୍ୱାରକା ବୈଭବ ଅନୁଭବ ହୈଲ ।
ଏକତ୍ର ମିଳନେ କେହୋ କାହୋ ନା ଦେଖିଲ ॥
ତବେ କୃଷ୍ଣ ସର୍ବ ବ୍ରହ୍ମାଗଣେ ବିଦାୟ ଦିଲ ।
ଦଣ୍ଡବତ ହଞା ସଭେ ନିଜଘରେ ଗେଲ ॥ ୬୬
ଦେଖି ଚତୁର୍ମୁଖ ବ୍ରହ୍ମାର ହୈଲ ଚମତ୍କାର ।
କୃଷ୍ଣେର ଚରଣେ ଆସି କୈଲ ନମସ୍କାର ॥ ୬୭
ବ୍ରହ୍ମା ବୋଲେ—ପୂର୍ବେ ଆମି ଯେ ନିଶ୍ଚୟ କୈଲ ।
ତାର ଉଦାହରଣ ଆମି ଆଜ ସେ ଦେଖିଲ ॥ ୬୮

ତଥାହି (ଭାଃ—୧୦।୧୪।୩୮)—

ଜାନନ୍ତ ଏବ ଜାନନ୍ତୁ କିଂ ବହୂକ୍ତ୍ୟା ନ ମେ ପ୍ରଭୋ
ମନସୋ ବପୁଷୋ ବାଚୋ ବୈଭବଂ ତବ
ଗୋଚରଃ ॥ ୧୬୯ ॥

କେନ ସହ ଏକତ୍ରସ୍ଥାନେ ମିଳନଂ ଇତି କୋଽପି ନାପଶ୍ୟତ୍—ନ ଜ୍ଞାତବାନ୍ ସ୍ୱସ୍ୱବ୍ରହ୍ମାଣ୍ଡ ଏବ ଇତି । ବି. ଚ.

ଶ୍ରୀକୃଷ୍ଣ ନିଜର ଅଚିନ୍ତ୍ୟଶକ୍ତି ପ୍ରଭାବରୁ ପ୍ରତ୍ୟେକ ବ୍ରହ୍ମାଣ୍ଡନାଥ ବ୍ରହ୍ମା, ରୁଦ୍ର ଇନ୍ଦ୍ରଙ୍କ ନିକଟ ଏକ ଏକ ମୂର୍ତ୍ତିରେ ପ୍ରକାଶ ହେଲେ ଅର୍ଥାତ୍ ଏକ ଏକ ବ୍ରହ୍ମାଣ୍ଡନାଥମାନେ ଅନ୍ୟ ବ୍ରହ୍ମାଣ୍ଡନାଥମାନଙ୍କୁ ଏବଂ ସେମାନଙ୍କ ନିକଟ ପ୍ରକାଶିତ ଶ୍ରୀକୃଷ୍ଣଙ୍କୁ ଦେଖି ପାରିଲେ ନାହିଁ । ପ୍ରତ୍ୟେକ ବ୍ରହ୍ମାଣ୍ଡନାଥ ମନେ କଲେ ଯେ, ଶ୍ରୀକୃଷ୍ଣ ଆମ୍ଭର ବ୍ରହ୍ମାଣ୍ଡରେ ବିଦ୍ୟମାନ ଅଛନ୍ତି । ୫୭ ।

ସବା—ଏକବ୍ରହ୍ମାଣ୍ଡର ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଲୋକପାଳମାନେ । ୬୧ ।

ଏହି ପରିଚ୍ଛେଦରେ ୨୨ ଓ ୨୩ ପୟାରରେ ଶ୍ରୀବୃନ୍ଦାବନର ବିଭୂତି ପ୍ରକାଶିତ ହୋଇଅଛି । ଉପରୋକ୍ତ ପୟାରମାନଙ୍କରେ ପ୍ରକାଶ ହେଲା ଯେ, ଦ୍ୱାରକାସ୍ଥ ଯେଉଁ ସ୍ଥାନରେ ଶ୍ରୀକୃଷ୍ଣ ସମାସୀନ ଥିଲେ ସେହି ସ୍ଥାନରେ ଅନନ୍ତକୋଟି ବ୍ରହ୍ମାଣ୍ଡନାଥମାନେ ଯୁଗପତ୍ ଉପସ୍ଥିତ ହୋଇ ଶ୍ରୀକୃଷ୍ଣଙ୍କୁ ପୂଜା କଲେ । ଏତଦ୍ଦ୍ୱାରା ଶ୍ରୀଦ୍ୱାରକାଧାମର ବିଭୂତି ପ୍ରମାଣିତ ହୋଇଅଛି ଅର୍ଥାତ୍ ଭୌମ ଶ୍ରୀବୃନ୍ଦାବନବତ୍ ଭୌମ ଦ୍ୱାରକା ମଧ୍ୟ ଚିନ୍ମୟଧାମ ଓ ସ୍ୱପ୍ରକାଶ । ୬୪ ।

୧୬୯ ଶ୍ଳୋକର ଅନ୍ୱୟ ଏହି ପରିଚ୍ଛେଦର ୨୭ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିର ଉପସଂହାରରେ କହୁଅଛନ୍ତି—ହେ ପ୍ରଭୋ ! ଯେଉଁମାନେ କହନ୍ତି 'ଅମ୍ଭେମାନେ, ଶ୍ରୀକୃଷ୍ଣଙ୍କର ମହିମା ଜାଣୁ' ସେମାନେ ଜାଣନ୍ତୁ ପଛକେ, ଅଧିକ ଆଉ କଅଣ କହିବି ଆପଣଙ୍କର ମହିମା ମୋର କାୟମନୋବାକ୍ୟର ଗୋଚର ନୁହେଁ । ୧୬୯ ଶ୍ଳୋକାର୍ଥ ।

କୃଷ୍ଣ କହେ-ଏଇ ବ୍ରହ୍ମାଣ୍ଡ ପଞ୍ଚାଶତକୋଟିଯୋଜନ
ଅତି କ୍ଷୁଦ୍ର ତାତେ ତୋମାର ଚାରି ବଦନ । ୬୯
କୋନ ବ୍ରହ୍ମାଣ୍ଡ ଶତକୋଟି, କୋନ ଲକ୍ଷକୋଟି ।
କୋନ ନିୟୁତକୋଟି, କୋନ କୋଟି-କୋଟି ॥
ବ୍ରହ୍ମାଣ୍ଡାନୁରୂପ ବ୍ରହ୍ମାର ଶରୀର-ବଦନ ।
ଏଇରୂପେ ପାଳି ଆମି ବ୍ରହ୍ମାଣ୍ଡେର ଗଣ । ୭୦ ।
'ଏକପାଦ ବିଭୂତି' ଇହାର ନାହିଁ ପରିମାଣ ।
ତ୍ରିପାଦବିଭୂତି-ପରବ୍ୟୋମେର କେ କରେ
ପରିମାଣ ? ୭୧ ।

ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ
ପଦ୍ମପୁରାଣବଚନଂ (୫।୨୪୮)—

ତସ୍ୟାଃ ପାରେ ପରବ୍ୟୋମ ତ୍ରିପାଦ୍ଭୂତଂ ସନାତନମ୍
ଅମୃତଂ ଶାଶ୍ୱତଂ ନିତ୍ୟ ମନନ୍ତଂ ପରମପଦମ୍ ।୧୬।

ତବେ କୃଷ୍ଣ ବ୍ରହ୍ମାରେ ଦିଲେନ ବିଦାୟ ।
କୃଷ୍ଣେର ବିଭୂତି ସ୍ୱରୂପ ଜାନନ ନା ଯାୟ । ୭୨ ।
'ତ୍ର୍ୟଧୀଶ୍ୱର'-ଶବ୍ଦେର ଅର୍ଥ ଗୂଢ଼ ଆରୋ ହୟ ।
'ତ୍ରି' ଶବ୍ଦେ—କୃଷ୍ଣେର ତିନଲୋକ କହୟ ।୭୪
ଗୋଲୋକାଖ୍ୟ—ଗୋକୁଲ, ମଥୁରା, ଦ୍ୱାରାବତୀ ।
ଏଇ ତିନଲୋକେ କୃଷ୍ଣେର ସହଜ ନିତ୍ୟସ୍ଥିତି ।
ଅନ୍ତରଙ୍ଗ ପୂର୍ଣ୍ଣୈଶ୍ୱର୍ଯ୍ୟପୂର୍ଣ୍ଣ ତିନ ଧାମ ।
ତିନେ ଅଧୀଶ୍ୱର—କୃଷ୍ଣ ସ୍ୱୟଂଭଗବାନ ।୭୬।
ପୂର୍ବ-ଉକ୍ତ ବ୍ରହ୍ମାଣ୍ଡେର ଯତ ଦିକ୍‌ପାଲ ।
ଅନନ୍ତ-ବୈକୁଣ୍ଠାବରଣ—'ଚାରଲୋକପାଲ'।୭୭
ତା-ସଭାର ମୁକୁଟ କୃଷ୍ଣପାଦ ପୀଠ-ଆଗେ ।
ଦଣ୍ଡବତକାଲେ ତାର ମଣି ପୀଠେ ଲାଗେ । ୭୮
ମଣି -ପୀଠେ ଠେକାଠେକି—ଉଠେ ଝନଝନି ।
'ପୀଠେ ସ୍ତୁତି କରେ ମୁକୁଟ' ହେନ ଅନୁମାନି ।୭୯।
ନିଜ ଚିଚ୍ଛକ୍ତ୍ୟେ କୃଷ୍ଣ ନିତ୍ୟ ବିରାଜମାନ ।
ଚିଚ୍ଛକ୍ତି-ସମ୍ପତ୍ତ୍ୟେର 'ଷଡ଼ୈଶ୍ୱର୍ଯ୍ୟ' ନାମ । ୮୦ ।

ଗୋଲୋକସ୍ୟ ଗୋକୁଲ ପ୍ରକାଶବିଶେଷତ୍ୱେନୈତଦୁକ୍ତଂ ଅତଏବ ଉକ୍ତଂ ଯତ୍ର ଗୋଲୋକନାମସ୍ୟାତ୍ତ ତତ୍ତ୍ୱଗୋକୁଲ ବୈଭବ ଇତି । ବି, ଚ. ।

୧୬ଶ ଶ୍ଲୋକର ଅନ୍ୱୟ ଏହି ପରିଚ୍ଛେଦର ୧୪ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଏହି ବିରଜାର ଅପରପାରରେ ତ୍ରିପାଦବିଭୂତିଶାଳୀ ସନାତନ, ନିତ୍ୟନୂତନ ଅମୃତ ନିତ୍ୟ ଓ ଅନନ୍ତ ପରବ୍ୟୋମନାମକ ସ୍ଥାନ ଅଛି । ୧୬ଶ ଶ୍ଲୋକାର୍ଥ ।

ତ୍ର୍ୟଧୀଶ୍ୱର ଶବ୍ଦର ପୂର୍ବପୟାରମାନଙ୍କରେ ତିନିପ୍ରକାର ଅର୍ଥ କରଗଲେ । ଯଥା—୧ମ ଗୁଣାବତାର ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ଏହି ତିନିଙ୍କର ଈଶ୍ୱର । ୨ୟ—୧ମ ୨ୟ ଓ ୩ୟ ପୁରୁଷାବତାର ଏହି ତିନିଙ୍କର ଈଶ୍ୱର । ୩ୟ—ଅନ୍ତଃପୁର ଶ୍ରୀଗୋଲୋକ ମଧ୍ୟପୁର ଶ୍ରୀବୈକୁଣ୍ଠ ଓ ବାହ୍ୟପୁର ବ୍ରହ୍ମାଣ୍ଡ ଏ ତିନିଙ୍କର ଈଶ୍ୱର, ବର୍ତ୍ତମାନ ସର୍ବୋତ୍କୃଷ୍ଟ ବା ଗୂଢ଼ ଅର୍ଥ କହୁଅଛନ୍ତି ।୭୪।

ଗୋଲୋକ ଗୋକୁଲର ପ୍ରକାଶ ବିଶେଷ ହେତୁ ଗୋକୁଳକୁ ଗୋଲୋକ ବୋଲାଯାଏ ସେହି ଗୋକୁଳ, ମଥୁରା ଓ ଦ୍ୱାରକା ଏହି ତିନିଧାମରେ ଶ୍ରୀକୃଷ୍ଣ ସ୍ୱୟଂରୂପରେ ନିତ୍ୟ ବିହାର କରନ୍ତି । ୭୫ ।

ଅନ୍ତରଙ୍ଗ ପୂର୍ଣ୍ଣୈଶ୍ୱର୍ଯ୍ୟପୂର୍ଣ୍ଣ—ମାଧୁର୍ଯ୍ୟଐଶ୍ୱର୍ଯ୍ୟପୂର୍ଣ୍ଣ । ୭୬ ।

ଅନୁମାନ ହୁଏ ମୁକୁଟମାନେ ଝୁଣ୍ଣୁ ଝୁଣ୍ଣୁ ଶବ୍ଦଦ୍ୱାରା ସିଂହାସନକୁ ଆଉ ସ୍ତୁତି କରୁଅଛନ୍ତି କି ? । ୭୯ ।

ପୂର୍ବୋକ୍ତ ୭ମ ଶ୍ଲୋକର 'ବଲି···ପାଦପୀଠଃ' ଏହାର ଅର୍ଥ ୭୭—୭୮—୭୯ ପୟାର ମାନଙ୍କରେ ବ୍ୟକ୍ତ । ଉକ୍ତ ୭ମ ଶ୍ଲୋକର 'ସ୍ୱାରାଜ୍ୟ——କାମ' ଏହାର ଅର୍ଥ କରୁଅଛନ୍ତି । ଚିଚ୍ଛକ୍ତି ହିଁ ତାହାଙ୍କର ରାଜ୍ୟ, ଷଡ଼ୈଶ୍ୱର୍ଯ୍ୟ ସେହି ରାଜ୍ୟ ସମ୍ପତ୍ତି, ସେହି ସମ୍ପତ୍ତିର ଅଧିଷ୍ଠାତ୍ରୀ ଲକ୍ଷ୍ମୀହିଁ ସ୍ୱାରାଜ୍ୟ ଲକ୍ଷ୍ମୀ, ଯଦ୍ଦ୍ୱାରା ଶ୍ରୀକୃଷ୍ଣ ନିତ୍ୟପୂର୍ଣ୍ଣକାମତ୍ୱ ପ୍ରାପ୍ତ ହୋଇଅଛନ୍ତି । ୮୦ ।

ସେହି 'ସ୍ୱାରାଜ୍ୟଲକ୍ଷ୍ମୀ' କରେ ନିତ୍ୟ ପୂର୍ଣ୍ଣ-କାମ ।
ଅତଏବ ବେଦେ କହେ — ସ୍ୱୟଂ ଭଗବାନ୍ । ୮୧ ।
କୃଷ୍ଣେର ଐଶ୍ୱର୍ଯ୍ୟ ଅପାର—ଅମୃତେର ସିନ୍ଧୁ ।
ଅବଗାହିତେ ନାରିଲ, ତାର ଛୁଁଇଲ ଏକ ବିନ୍ଦୁ ।
ଐଶ୍ୱର୍ଯ୍ୟ କହିତେ ପ୍ରଭୁର କୃଷ୍ଣସ୍ଫୂର୍ତ୍ତି ହୈଲ ।
ମାଧୁର୍ଯ୍ୟେ ମଜିଲ ମନ, ଏକ ଶ୍ଳୋକ ପଢ଼ିଲ । ୮୩

ତଥାହି (ଭାଃ—୩।୨।୧୨)—

ଯନ୍ମର୍ତ୍ତ୍ୟଲୀଲୌପୟିକଂ ସ୍ୱଯୋଗ-
ମାୟାବଲଂ ଦର୍ଶୟତା ଗୃହୀତମ୍ ।
ବିସ୍ମାପନଂ ସ୍ୱସ୍ୟ ଚ ସୌଭଗର୍ଦ୍ଧେଃ,
ପରଂ ପଦଂ ଭୂଷଣଭୂଷଣାଙ୍ଗମ । ୧୮ ।

ଯଥାରାଗଃ—
କୃଷ୍ଣେର ଯତେକ ଖେଲା, ସର୍ବୋତ୍ତମ ନରଲୀଳା
ନରବପୁ ତାହାର ସ୍ୱରୂପ ।
ଗୋପବେଶ ବେଣୁକର ନବକିଶୋର ନଟବର,
ନରଲୀଲାର ହୟ ଅନୁରୂପ । ୮୪ ।
କୃଷ୍ଣେର ମଧୁର ରୂପ ଶୁନ ସନାତନ !
ଯେରୂପେର ଏକକଣ, ଡୁବାୟ ସବ ତ୍ରିଭୁବନ;
ସର୍ବପ୍ରାଣୀ କରେ ଆକର୍ଷଣ । ଧ୍ରୁ । ୮୫ ।
ଯୋଗମାୟା ଚିଚ୍ଛକ୍ତି ବିଶୁଦ୍ଧସତ୍ତ୍ୱ-ପରିଣତି;
ତାଁର ଶକ୍ତି ଲୋକେ ଦେଖାଇତେ ।
ଏଇରୂପ-ରତନ, ଭକ୍ତଗଣେର ଗୂଢ଼ଧନ,
ପ୍ରକଟ କୈଲ ନିତ୍ୟଲୀଳା ହୈତେ । ୮୬ ।

---

ସ୍ୱଯୋଗମାୟାବଲଂ ଦର୍ଶୟତା (ଅବାପ୍ତ୍ ତଂ ସକଳବୈଭବଂ ବିଦ୍ୱଦ୍‌ଗଣ ବିସ୍ମାପନାୟ ଇତି ଭାବଃ) ଯନ୍ମର୍ତ୍ତ୍ୟଲୀଳୋପୟିକଂ—ଯନ୍ମର୍ତ୍ତ୍ୟଲୀଳାସୁ ଔପୟିକଂ—ଯୋଗ୍ୟଂ ନରାକୃତି ଇତ୍ୟର୍ଥଃ, ଗୃହୀତଂ (ନ କେବଲ ମେତାବତ୍ତ୍ୱ ତସ୍ୟୈବ ରୂପାନ୍ତରେ ତାଦୃଶତ୍ୱାନୁଭବାତ୍ତ ତଦାପି ପ୍ରତିକ୍ଷଣଂ ଅପୂର୍ବପ୍ରକାଶାତ୍ତ) ସ୍ୱସ୍ୟ (ଅପି) ଚ ବିସ୍ମାପନଂ, (ଯତଃ) ସୌଭଗର୍ଦ୍ଧେଃ ପରଂ ପଦଂ ଭୂଷଣଭୂଷଣାଙ୍ଗ—ଭୂଷଣାନାଂ ଭୂଷଣାନି ଅଙ୍ଗାନି ଯସ୍ମିନ୍ ତଂ ) ୧୮ଶ ଶ୍ଳୋକ ।

ତାହାର, ତସ୍ୟ ଶ୍ରୀକୃଷ୍ଣସ୍ୟ ନରାକାର ଏବ ସ୍ୱରୂପଂ, ଅନୁରୂପଂ ଯୋଗ୍ୟମିତ୍ୟର୍ଥଃ । ଶ୍ରୀରାମଚନ୍ଦ୍ରାଦିଲୀଳା ପ୍ରତିଷେଧାର୍ଥମାହ ଗୋପବେଶ ଇତ୍ୟାଦି । ୮୪ । ବି. ଚ.

ଯେରୂପେର—ଯଦ୍ରୂପସ୍ୟ ଯତ୍ସ୍ୱରୂପସ୍ୟ ଇତ୍ୟର୍ଥଃ, ତତ୍ସମାସୋକ୍ତ୍ୟା ତତ୍ସ୍ୱରୂପସ୍ୟ ସମୁଦ୍ରତ୍ୱଂ । ବି, ଚ, ୮୫ ।

ଯୋଗମାୟାଇତି । ଯୋଗମାୟୈବ ଚିଚ୍ଛକ୍ତିସ୍ତସ୍ୟା ଏବବିଶୁଦ୍ଧ ସତ୍ତ୍ୱରୂପେଣ ପରିଣାମ ଇତ୍ୟର୍ଥଃ, ତାର ଶକ୍ତି ତସ୍ୟାଃ ସାମର୍ଥ୍ୟଂ । ୮୬ । ବି. ଚ.

---

ଶ୍ରୀବିଦୁରଙ୍କୁ ଶ୍ରୀଉଦ୍ଧବ କହୁଅଛନ୍ତି—ଶ୍ରୀକୃଷ୍ଣ ନିଜ ଯୋଗମାୟା ବଳ ଦେଖାଇବା କାରଣ ନିଜର ବିସ୍ମୟଜନକ ସୌଭାଗ୍ୟ ସମ୍ପତ୍ତିର ପରମପଦ ଏବଂଭୂଷଣମାନଙ୍କର ଭୂଷଣତ୍ୱ ସମ୍ପାଦକ ନରାକୃତି ସ୍ୱସ୍ୱରୂପ ପ୍ରକାଶ କରିଥିଲେ । ୧୮ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କର ଯେତେପ୍ରକାର ନିତ୍ୟ ଲୀଳା ଅଛି ଯଥା—ଶ୍ରୀରଘୁନାଥ, ଶ୍ରୀନାରାୟଣ, ଶ୍ରୀନୃସିଂହାଦି, ସେଥିମଧ୍ୟରେ ନବକିଶୋର ନଟବର ଗୋପବେଶ ବେଣୁକର ଏହି ନରାକୃତି ଲୀଳାହିଁ ସର୍ବୋତ୍ତମ କାରଣ—ତାହାଙ୍କର ସ୍ୱସ୍ୱରୂପହିଁ ନବକିଶୋର ଦ୍ୱିଭୁଜ ନରରୂପ ତେଣୁ ସେହି ରୂପର ଗୋପବେଶ ବେଣୁକର ଓ ନଟବର ବେଶ ଯୋଗ୍ୟ ବେଶ । ୮୪ ।

ଶ୍ରୀକୃଷ୍ଣଙ୍କର ପ୍ରକଟ ଲୀଳା ବିଷୟ କହୁଅଛନ୍ତି—ଭକ୍ତମାନଙ୍କର ଅତି ଗୂଢ଼ଧନ ଯେ ନବକିଶୋର ନଟବର ଗୋପବେଶ ବେଣୁକର ଏବଂପ୍ରକାର ସ୍ୱସ୍ୱରୂପ, ଯାହାକି ନିତ୍ୟ ଲୀଳାର ସର୍ବୋତ୍ତମରୂପ, ତାହା ଭକ୍ତମାନଙ୍କ ପ୍ରତି କୃପାପୂର୍ବକ ଏ ସଂସାରରେ ପ୍ରକଟ କଲେ ଏବଂ ସେହିରୂପସମୁଦ୍ରର ଏକକଣାଦ୍ୱାରା ସର୍ବ ଜଗତ୍‌ବାସିମାନଙ୍କୁ ଆକର୍ଷଣ କଲେ, ଏତଦ୍ୱାରା ବିଶୁଦ୍ଧ ସତ୍ତ୍ୱର ପରିଣତି ଚିତ୍‌ଶକ୍ତିରୂପ ଯୋଗମାୟାଙ୍କର କି ବଳ, ତାହା ଜଗତରେ ଦେଖାଇଲେ । ୮୫-୬

ରୂପ ଦେଖି ଆପନାର, କୃଷ୍ଣେର ହୟ ଚମତ୍କାର
ଆସ୍ୱାଦିତେ ମନେ ଉଠେ କାମ ।
'ସ୍ୱସୌଭାଗ୍ୟ' ଯାର ନାମ, ସୌନ୍ଦର୍ଯ୍ୟାଦି ଗୁଣଗ୍ରାମ,
ଏଇରୂପ ତାର ନିତ୍ୟଧାମ । ୮୭ ।
ଭୂଷଣେର ଭୂଷଣ ଅଙ୍ଗ, ତାହେ ଲଲିତ ତ୍ରିଭଙ୍ଗ,
ତାର ଉପର ଭ୍ରୂଧନୁ-ନର୍ତ୍ତନ ।
ତେରଛ—ନେତ୍ରାନ୍ତ-ବାଣ, ତାର ଦୃଢ଼ ସନ୍ଧାନ,
ବିନ୍ଧେ ରାଧା-ଗୋପିଗଣ-ମନ । ୮୮ ।
କୋଟିବ୍ରହ୍ମାଣ୍ଡ ପରବ୍ୟୋମ, ତାଁହା ଯେ ସ୍ୱରୂପଗଣ,
ତା-ସଭାର ବଲେ ହରେ ମନ ।
'ପତିବ୍ରତା-ଶିରୋମଣି', ଯାରେ କହେ ବେଦବାଣୀ,
ଆକର୍ଷୟେ ସେଇ ଲକ୍ଷ୍ମୀଗଣ । ୮୯ ।
ଚଢ଼ି ଗୋପୀ-ମନୋରଥେ, ମନ୍ମଥେର ମନମଥେ
ନାମ ଧରେ 'ମଦନମୋହନ' ।
ଜିନି ପଞ୍ଚଶର ଦର୍ପ, ସ୍ୱୟଂ ନବକନ୍ଦର୍ପ,
ରାସ କରେ ଲଞା ଗୋପୀଗଣ । ୯୦ ।
ନିଜ-ସମ ସଖା ସଙ୍ଗେ, ଗୋଗଣ-ଚାରଣ ରଙ୍ଗେ,
ବୃନ୍ଦାବନେ ସ୍ୱଚ୍ଛନ୍ଦ-ବିହାର ।
ଯାଁର ବେଣୁଧ୍ୱନି ଶୁନି, ସ୍ଥାବର ଜଙ୍ଗମ ପ୍ରାଣୀ,
ପୁଲକ କମ୍ପ ଅଶ୍ରୁ ବହେ ଧାର । ୯୧ ।

---

ସୌଭଗସ୍ୟ ଭାବଃ ସୌଭଗ୍ୟଂ ... ସ୍ୱସୌଭାଗ୍ୟମିତ୍ୟାଦି । ଯସ୍ୟ ସୌନ୍ଦର୍ଯ୍ୟଗ୍ରାମସ୍ୟ ସ୍ୱସୌଭାଗ୍ୟେନାମ ତଦେବ ଏତଦ୍ରୂପଂ ଧାମଆଶ୍ରୟ ଇତ୍ୟର୍ଥଃ । ୮୭ । ଚ. ଚ.
'ବିସ୍ମାପନଂ ସ୍ୱସ୍ୟ ଚ' ଇତ୍ୟସ୍ୟ ଚକାରସ୍ୟଫଳମାହ କୋଟିତ୍ୟାଦି । ଚ. ଚ. ୮୯

---

ଜଗତ୍‌ବାସୀ ସ୍ଥିରଚରମାନେ ଯେ କେବଳ ସେରୂପରେ ମୁଗ୍ଧ ହୋଇଥିଲେ ତାହା ନୁହେଁ, ଶ୍ରୀକୃଷ୍ଣ ଆପଣା ରୂପରେ ଆପେ ମୋହିତ ହୋଇ ତାହା ଆସ୍ୱାଦନ କରିବା ସକାଶେ ଲାଳାୟିତ ହୋଇଥିଲେ । ସେରୂପର ଏପ୍ରକାର ଅନିର୍ବଚନୀୟ ମୋହିନୀ ଶକ୍ତିର କାରଣ ଏହି ଯେ ସୌନ୍ଦର୍ଯ୍ୟାଦି ଗୁଣଗଣ ଯାହାକୁ ସ୍ୱସୌଭାଗ୍ୟ କୁହାଯାଏ ସେ ସମସ୍ତ ଏହି ରୂପରେ ନିତ୍ୟ ବିଦ୍ୟମାନ, ଅତଏବ ସେହିରୂପ ଅଭିନବ ବା ନିତ୍ୟ ନୂତନ । ୮୭ ।

ଶ୍ରୀକୃଷ୍ଣଙ୍କର ଅଙ୍ଗର ଲାବଣ୍ୟ ଅତୁଳନୀୟ, ଲୋକେ ଅଙ୍ଗର ଶୋଭା ବୃଦ୍ଧି କରିବା ସକାଶେ ଭୂଷଣ ପିନ୍ଧନ୍ତି, କିନ୍ତୁ ଶ୍ରୀକୃଷ୍ଣଙ୍କର ଅଙ୍ଗର ଶୋଭାଦ୍ୱାରା ଭୂଷଣମାନେ ଶୋଭାପ୍ରାପ୍ତ ହୁଅନ୍ତି । ୮୮ ।

ତେରଛ—ବକ୍ର । ନେତ୍ରାନ୍ତ—ନେତ୍ରକୋଣ ।

କୋଟି କୋଟି ବ୍ରହ୍ମାଣ୍ଡ ଓ ପରବ୍ୟୋମସ୍ଥ କୋଟି କୋଟି ବୈକୁଣ୍ଠରେ ଶ୍ରୀକୃଷ୍ଣଙ୍କର ଅଂଶକଳା ଓ ବିଳାସ ମୂର୍ତ୍ତିମାନେ ଅଛନ୍ତି; ସେମାନେ ଓ ବେଦପ୍ରସିଦ୍ଧ ପତିବ୍ରତାଶିରୋମଣି ଲକ୍ଷ୍ମୀମାନେ ଶ୍ରୀକୃଷ୍ଣଙ୍କର ଏହି ଗୋପରୂପରେ ମୋହିତ ହୁଅନ୍ତି । ୮୯ ।

ଶ୍ରୀକୃଷ୍ଣ ସ୍ୱୟଂ ଅଂଶୀ ହେତୁ ପ୍ରାକୃତା ପ୍ରାକୃତ ମଦନମାନଙ୍କର ମୂଳ, ଏଣୁ ନବକନ୍ଦର୍ପ ଏବଂ ତେଣୁ ପ୍ରାକୃତାପ୍ରାକୃତ ମନ୍ମଥମାନଙ୍କର ଚିତ୍ତକ୍ଷୋଭକାରକ, ଏଥିଯୋଗୁଁ ତାହାଙ୍କର ନାମ ମଦନମୋହନ ( ସାକ୍ଷାତ୍ ମନ୍ମଥ ମନ୍ମଥ ) ୯୦ ।

ଚଢ଼ି ଗୋପୀ ମନୋରଥ—ଗୋପୀମାନଙ୍କର ମନରୂପ ରଥରେ ଶ୍ରୀକୃଷ୍ଣ ନିତ୍ୟ ଆରୂଢ଼ ଅର୍ଥାତ୍ ଗୋପୀମାନଙ୍କ ମନରେ ଶ୍ରୀକୃଷ୍ଣ ବ୍ୟତୀତ ଅନ୍ୟ ବିଷୟ ସ୍ଥାନ ପାଏ ନାହିଁ । ୯୦ ।

ସ୍ୱଚ୍ଛନ୍ଦ—ଅବାଧ । ୯୧ ।

ମୁକ୍ତାହାର ବକପାଁତି, ଇନ୍ଦ୍ରଧନୁ ପିଞ୍ଛତତି'
ପୀତାମ୍ବର ବିଜୁରୀ ସଞ୍ଚାର ।
କୃଷ୍ଣନବଜଳଧର, ଜଗତ-ଶସ୍ୟ-ଉପର,
ବରଷୟେ ଲୀଳାମୃତଧାର । ୯୨ ।

ମାଧୁର୍ଯ୍ୟ-ଭଗବତ୍ତା-ସାର, ବ୍ରଜେ କୈଲ ପରଚାର,
ତାହା ଶୁକ – ବ୍ୟାସେର ନନ୍ଦନ ।
ସ୍ଥାନେ-ସ୍ଥାନେ ଭାଗବତେ, ବର୍ଣ୍ଣିୟାଛେ
ଜାନାଇତେ,
ଯାହା ଶୁନି ମାତେ ଭକ୍ତଗଣ । ୯୩ ।

କହିତେ କୃଷ୍ଣେର ରସେ, ଶ୍ଳୋକ ପଡେ
ପ୍ରେମାବେଶେ,
ପ୍ରେମେ ସନାତନେର ହାତେ ଧରି ।
ଗୋପୀଭାଗ୍ୟ କୃଷ୍ଣଗୁଣ, ଯେ କରିଲ ବର୍ଣ୍ଣନ,
ଭାବାବେଶେ ମଥୁରାନାଗରୀ । ୯୪ ।

ତଥାହି (ଭାଃ—୧୦।୪୪।୧୪)—
ଗୋପ୍ୟସ୍ତପଃ କିମଚରନ୍ ଯଦମୁଷ୍ୟ ରୂପଂ,
ଲାବଣ୍ୟସାରମସମୋର୍ଦ୍ଧମନନ୍ୟସିଦ୍ଧମ୍ ।
ଦୃଗ୍‌ଭିଃ ପିବନ୍ତ୍ୟନୁସବାଭିନବଂ ଦୁରାପ-
ମେକାନ୍ତଧାମ ଯଶସଃ ଶ୍ରିୟ ଐଶ୍ୱରସ୍ୟ । ୧୯ ।

---

ଶ୍ରୀକୃଷ୍ଣଙ୍କର ରୂପବର୍ଣ୍ଣନ କରୁଅଛନ୍ତି—ଶ୍ରୀକୃଷ୍ଣଙ୍କରୂପ ନବଜଳଧରତୁଲ୍ୟ ଏବଂ ନୂତନ ମେଘ ଉଦୟ ହେଲେ ବକମାନେ ଯେପରି ପଂକ୍ତି ଧରି ମେଘ ତଳେ ଉଡ଼ନ୍ତି, ଶ୍ରୀକୃଷ୍ଣଙ୍କର ହୃଦୟଲମ୍ବିତ ମୁକ୍ତାହାର ସେହିପରି ଶୋଭା ବିସ୍ତାର କରୁଅଛି । ନବଜଳଧର ଶୀର୍ଷସ୍ଥାନରେ ଇନ୍ଦ୍ରଧନୁତୁଲ୍ୟ ଶ୍ରୀକୃଷ୍ଣଙ୍କର ଚୂଡ଼ାଗ୍ରସ୍ଥ ମୟୂର ପିଞ୍ଛ ଶୋଭା ପାଉଅଛି, ନବଜଳଧରରେ ବିଦ୍ୟୁତ୍‌-ତୁଲ୍ୟ ତାଙ୍କ ପୀତାମ୍ବର ଶୋଭାପାଉଅଛି । ନବଜଳଧର ବାରିବର୍ଷଣଦ୍ୱାରା ଶସ୍ୟଉତ୍ପାଦନ କରନ୍ତି । ଶ୍ରୀକୃଷ୍ଣରୂପ ଅଭିନବ ଜଳଧର ଜଗଦ୍‌ବାସୀ ସ୍ଥିରଚରଜୀବମାନଙ୍କ ଉପରେ ଲୀଳାମୃତଧାରା ବର୍ଷଣ କରୁଅଛନ୍ତି । ୯୨ ।

ଷଡ଼ୈଶ୍ୱର୍ଯ୍ୟର ସମଷ୍ଟି ଭଗବତ୍ତା, ତାହାର ସାର୍ଯ୍ୟାସ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ, ଶ୍ରୀକୃଷ୍ଣ ତାଙ୍କର ସେହି ମାଧୁର୍ଯ୍ୟ ସମ୍ପତ୍ତିକୁ ଶ୍ରୀବୃନ୍ଦାବନ ଧାମରେ ସମସ୍ତଙ୍କୁ ଦାନ କରିଥିଲେ, ତାହା ବାଦରାୟଣି ଶ୍ରୀଶୁକଦେବ ଶ୍ରୀମଦ୍‌ଭାଗବତରେ ସ୍ଥାନେ ସ୍ଥାନେ ବର୍ଣ୍ଣନ କରିଅଛନ୍ତି । ୯୩ ।

୧୯ଶ ଶ୍ଳୋକର ଅନ୍ୱୟ—ଆଦି. ୪ର୍ଥ ପରି: ୨୪ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ମଥୁରାପୁର ନରନାରୀମାନେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି କୁହାକୁହି ହେଉଛନ୍ତି – ଗୋପୀମାନେ କି ତପସ୍ୟା କରିଅଛନ୍ତି ଯେ ଏହାଙ୍କର ( ଶ୍ରୀକୃଷ୍ଣଙ୍କର ) ରୂପ ଯାହାକି ଲାବଣ୍ୟରସଦ୍ୱାରା ଗଠିତ, ଯାହାର ସମାନ କିମ୍ବା ଊର୍ଦ୍ଧ୍ୱ ନାହିଁ, ଯାହାକି ଅନ୍ୟାନ୍ୟ ଅଳଙ୍କାରଦ୍ୱାରା ବୃଦ୍ଧିପ୍ରାପ୍ତ ହୁଏ ନା ଅର୍ଥାତ୍‌ ସ୍ୱତଃସିଦ୍ଧ ଶୋଭାମୟ ଏବଂ ଯାହା ଯଶଃ ଶ୍ରୀ ଏବଂ ଐଶ୍ୱର୍ଯ୍ୟର ଏକମାତ୍ର ଆଶ୍ରୟ ନିତ୍ୟନୂତନ ଏବଂ ଅନ୍ୟ ପକ୍ଷରେ ଦୁଷ୍ପ୍ରାପ୍ୟ ଏହିପରି ରୂପକୁ ସେମାନେ ଦର୍ଶନେନ୍ଦ୍ରିୟଦ୍ୱାରା ପାନ କରନ୍ତି । ୧୯ ଶ୍ଳୋକାର୍ଥ ।

ଯଥାରାଗଃ—

ତାରୁଣ୍ୟାମୃତ ପାରାବାର, ତରଙ୍ଗ ଲାବଣ୍ୟସାର,
ତାହେ ସେ ଆବର୍ତ୍ତ ଭାବୋଦ୍ଗମ ।
ବଂଶୀଧ୍ୱନି ଚକ୍ରବାତ, ନାରୀର ମନ ତୃଣ-ପାତ,
ତାହା ଡୁବାୟ, ନା ହୟ ଉଦ୍ଗମ । ୯୫ ।
ସଖି ହେ ! କୋନ ତପ କୈଲ ଗୋପୀଗଣ ?
କୃଷ୍ଣ-ରୂପ-ମାଧୁରୀ, ପିବି ପିବି ନେତ୍ର ଭରି,
ଶ୍ଳାଘ୍ୟ କରେ ଜନ୍ମ ତନୁ ମନ । ଧ୍ରୁ ।

ଯେ-ମାଧୁରୀ ଊର୍ଦ୍ଧ୍ୱ ଆନ, ନାହି ଯାର ସମାନ,
ପରବ୍ୟୋମେ ସ୍ୱରୂପେର ଗଣେ ।
ଯେଁହୋ ସବ-ଅବତାରୀ, ପରବ୍ୟୋମେ ଅଧିକାରୀ,
ଏ ମାଧୁର୍ଯ୍ୟ ନାହି ନାରାୟଣେ । ୯୬ ।
ତାତେ ସାକ୍ଷୀ ସେଇ ରମା ନାରାୟଣେର ପ୍ରିୟତମା,
ପତିବ୍ରତାଗଣେର ଉପାସ୍ୟା ।
ତେଁହୋ ଯେ ମାଧୁର୍ଯ୍ୟ ଲୋଭେ, ଛାଡ଼ି ସବ କାମଭୋଗେ,
ବ୍ରତ କରି କରିଲ ତପସ୍ୟା । ୯୮ ।

---

ତାରୁଣ୍ୟଂ ତରୁଣତା ଯୌବନମିତି ଯାବତ୍ ତଦେବାମୃତପାରାବାରଃ ସମୁଦ୍ରଃ ତସ୍ୟ ଲାବଣ୍ୟସାର ଏବ ତରଙ୍ଗଃ ଭାବୋଦ୍‌ଗମେ ଅପାଙ୍ଗବୀକ୍ଷଣାଦୀନାଂ ଆବର୍ତ୍ତେ ଭ୍ରମସ୍ଥାନମ୍, ଚକ୍ରବାତଃ ଚକ୍ରାକାରବାତଃ, ଚକ୍ରାବାତଃ ତୃଣାଦୀନାଂ ଊର୍ଦ୍ଧ୍ୱଗମନଂ ବ୍ୟାବୃତ୍ତ୍ୟ ତତ୍ରୈବ ତାନ୍ ନିମଜ୍ଜୟତି ନତୂନ୍ୟଦଗମୟତୀତ୍ୟର୍ଥଃ, ଏତଦେବ ପ୍ରାୟୋନିଭଙ୍କାୟୈ କଣ୍ଠରୁଦ୍ଧାୟ ଇତି ପାଠଂ କଲ୍ପୟତି । ୯୫ । ଚ.ଚ.

ସ୍ୱରୂପେରଗଣେ—ଅବତାରଗଣେ, ଯିହୋଁ ଇତି, ଯୋହି ସର୍ବେଷାଂ ଅବତାରୀ ତସ୍ମିନ୍ ଅପି ନାରାୟଣେ - ଏତନ୍ମାଧୂର୍ଯ୍ୟଂ ନାସ୍ତୀତ୍ୟର୍ଥଃ । ୯୬ । ଚ. ଚ.

---

ଶ୍ରୀକୃଷ୍ଣଙ୍କର ନବଯୌବନ ଅମୃତର ସମୁଦ୍ରସ୍ୱରୂପ, ଲାବଣ୍ୟସାର ସେଥିରତରଙ୍ଗ, ସେହି ସମୁଦ୍ରରେ ଅପାଙ୍ଗବୀକ୍ଷଣାଦି ଭାବୋଦ୍‌ଗମ ଆବର୍ତ୍ତ ( ଭଉଁରି ) ବଂଶୀଧ୍ୱନି ଚକ୍ରବାୟୁ (ଘୂର୍ଣ୍ଣିଅଭୂତ); ସେହି ବଂଶୀଧ୍ୱନିରୂପ ଚକ୍ରବାୟୁ ନାରୀମାନଙ୍କର ମନରୂପ ତୃଣ ସବ ଉଡ଼ାଇ ନେଇ ସେହି ସମୁଦ୍ରରେ ପକାଇ ବୁଡ଼ାଇ ଦିଏ । ସେମାନେ ଆଉ ସେଥିରୁ ବାହାରି ପାରନ୍ତି ନାହିଁ । ୯୫ ।

ହେ ସଖି ! ଗୋପୀମାନେ ଏପରି କି ତପସ୍ୟା କରିଥିଲେ ଯେ ସେମାନେ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ନେତ୍ରଦ୍ୱାରା ବାରମ୍ବାର ପାନକରି ସେମାନଙ୍କର ଜନ୍ମ ଦେହ ଓ ମନ କୃତାର୍ଥ କରନ୍ତି । ୯୬ ।

ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ଅସାଧାରଣ କାରଣ ତାହାଠାରୁ ଉତ୍କୃଷ୍ଟ କିମ୍ବା ତାହାର ସମାନ ଆଉ ନାହିଁ । ପରବ୍ୟୋମରେ ଯେଉଁ ଅବତାରମାନେ ଏବଂ ଏହିସବୁ ଅବତାରମାନଙ୍କର ମୂଳ ଯେ ମହାନାରାୟଣ ଏମାନଙ୍କର ରୂପମାଧୁର୍ଯ୍ୟ ମଧ୍ୟ ଶ୍ରୀକୃଷ୍ଣଙ୍କର ରୂପମାଧୁର୍ଯ୍ୟର ତୁଲ୍ୟ ନୁହେଁ । ତାହାର ପ୍ରମାଣ ଏହି ଯେ, ଶ୍ରୀନାରାୟଣଙ୍କର ପ୍ରିୟତମା ଏବଂ ଜଗତରେ ପତିବ୍ରତାମାନଙ୍କର ଉପାସ୍ୟା ଶ୍ରୀମତୀ ଲକ୍ଷ୍ମୀଠାକୁରାଣୀ ଶ୍ରୀକୃଷ୍ଣଙ୍କର ରୂପମାଧୁର୍ଯ୍ୟର ଆସ୍ୱାଦନ ଲୋଭରେ ସମସ୍ତ ଭୋଗାଭିଳାଷ ତ୍ୟାଗ କରି ବ୍ରତଧାରଣପୂର୍ବକ ତପସ୍ୟା କରିଥିଲେ । ୯୭ । ୯୮ ।

ଯେଇ ଚ ମାଧୁର୍ଯ୍ୟସାର, ଅନ୍ୟ ସିଦ୍ଧି ନାହି ତାର,
ତେଁହୋ ମାଧୁର୍ଯ୍ୟାଦି-ଗୁଣଖନି ।
ଆର ସବ ପ୍ରକାଶେ, ତାର ଦତ୍ତ ଗୁଣ ଭାସେ,
ଯାହାଁ ଯତ ପ୍ରକାଶେ କାର୍ଯ୍ୟ ଜାନି ।୯୯।
ଗୋପୀଭାବ ଦର୍ପଣ, ନବ ନବ କ୍ଷଣେ କ୍ଷଣ,
ତାର ଆଗେ କୃଷ୍ଣେର ମାଧୁର୍ଯ୍ୟ ।
ଦୋଁହେ କରେ ହୁଡ଼ାହୁଡ଼ି, ବାଢ଼େ, ମୁଖ ନାହି,
ମୁଡ଼ି
ନବ ନବ ଦୋଁହାର ପ୍ରାଚୁର୍ଯ୍ୟ । ୧୦୦ ।
କର୍ମ ତପ ଯୋଗ ଜ୍ଞାନ, ବିଧିଭକ୍ତି ଜପ ଧ୍ୟାନ,
ଇହା ହୈତେ ମାଧୁର୍ଯ୍ୟ ଦୁର୍ଲଭ ।
କେବଳ ଯେ ରାଗମାର୍ଗେ, ଭଜେ କୃଷ୍ଣ ଅନୁରାଗେ
ତାରେ କୃଷ୍ଣ-ମାଧୁର୍ଯ୍ୟ ସୁଲଭ ।୧୦୧।
ସେଇ ରୂପ ବ୍ରଜାଶ୍ରୟ, ଐଶ୍ୱର୍ଯ୍ୟମାଧୁର୍ଯ୍ୟମୟ,
ଦିବ୍ୟ-ଗୁଣଗଣ-ରତ୍ନାଲୟ ।
ଆନେର ବୈଭବ-ସତ୍ତା, କୃଷ୍ଣଦତ୍ତ-ଭଗବତ୍ତା,
କୃଷ୍ଣ ସର୍ବ-ଅଂଶୀ ସର୍ବାଶ୍ରୟ ।୧୦୨।
ଶ୍ରୀ ଲଜ୍ଜା ଦୟା କୀର୍ତ୍ତି, ଧୈର୍ଯ୍ୟବୈଶାରଦୀ-ମତି,
ଏସବ କୃଷ୍ଣେ ପ୍ରତିଷ୍ଠିତ ।
ସୁଶୀଲ ମୃଦୁ ବଦାନ୍ୟ, କୃଷ୍ଣସମ ନାହି ଅନ୍ୟ,
କୃଷ୍ଣ କରେ ଜଗତେର ହିତ । ୧୦୩ ।

---

ତାଁର ଦତ୍ତ ଇତି । ତଦତ୍ତଗୁଣ ଏବ ଭାସତେ—ପ୍ରକାଶତେ ଯତ୍ର ଯାଦୃକ୍ ପ୍ରକାଶଃ ସତୁ କାର୍ଯ୍ୟ ଦ୍ୱାରୈବ ଜ୍ଞାୟତେଽଇତ୍ୟର୍ଥଃ । ୯୯ ଚ. ଚ.

---

ଏହିପ୍ରକାର ଯେ ଶ୍ରୀକୃଷ୍ଣ ମାଧୁର୍ଯ୍ୟ ତାହା ପ୍ରାକୃତାପ୍ରାକୃତ ସମସ୍ତ ମାଧୁର୍ଯ୍ୟମାନଙ୍କର ସାର ବା ମୂଳ ଏବଂ ସେହିହେତୁ ସ୍ୱୟଂ ସ୍ୱତଃସିଦ୍ଧ, ସେ ଅନ୍ୟ କାହାରଦ୍ୱାରା ସିଦ୍ଧ ନୁହନ୍ତି ।

ଶ୍ରୀକୃଷ୍ଣ ଏହିପରି ମାଧୁର୍ଯ୍ୟ ସୌକୁମାର୍ଯ୍ୟାଦି ଗୁଣମାନଙ୍କର ଆଧାର, ଅତ୍ ସମସ୍ତ ଅବତାର, ଅଂଶକଳାଦି ସ୍ୱରୂପମାନଙ୍କର ଯେ ସମସ୍ତ ଗୁଣ ଅଛି ସେ ସମସ୍ତ ଶ୍ରୀକୃଷ୍ଣଙ୍କର ଦତ୍ତ । ଯାହାଙ୍କଠାରେ ଯେ ପରିମାଣରେ ସେ ଗୁଣମାନ ଦତ୍ତ ହୋଇଅଛି ତାହା ତାହାଙ୍କର କାର୍ଯ୍ୟ ଦ୍ୱାରା ଜଣାଯାଏ । ୯୯ ।

ବ୍ରଜଦେବୀମାନଙ୍କର ଭାବରୂପଦର୍ପଣ ପ୍ରତିକ୍ଷଣ ନୂତନ ଆକାର ଧାରଣ କରନ୍ତି, ସେହି ଦର୍ପଣ ସମ୍ମୁଖରେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ମୂର୍ତ୍ତି କ୍ଷଣେ କ୍ଷଣେ ନୂତନତ୍ୱ ଲାଭ କରନ୍ତି । ଶ୍ରୀବ୍ରଜଦେବୀମାନଙ୍କର ଭାବ ଶ୍ରୀକୃଷ୍ଣମାଧୁର୍ଯ୍ୟ ଦର୍ଶନ କରି ନବ ନବ ରୂପରେ ବଢ଼ନ୍ତି, ଏବଂ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ମଧ୍ୟ ତଦ୍ରୂପ ବଢ଼ନ୍ତି । ଉଭୟଙ୍କର ଭାବ ଓ ମାଧୁର୍ଯ୍ୟ ଏହିପରି ପରସ୍ପରକୁ ଜୟ କରିବା କାରଣ ଅତି ଶୀଘ୍ର ବୃଦ୍ଧି ପ୍ରାପ୍ତ ହୁଅନ୍ତି, କେହି ପରାଜୟ ସ୍ୱୀକାର କରନ୍ତି ନାହିଁ । ୧୦୦ ।

ରାଗମାର୍ଗେ—ଗୋପୀମାନଙ୍କର ଅନୁଗତ୍ୟରେ ।

ସୁଲଭ – ପ୍ରଚୁର ଲଭ୍ୟ ହୁଏ । ୧୦୧ ।

ବ୍ରଜାଶ୍ରୟ—କେବଳ ବ୍ରଜଧାମରେ ବ୍ୟକ୍ତ ।

ଆନେର —ପରବ୍ୟୋମସ୍ଥ ଏବଂ ବ୍ରହ୍ମାଣ୍ଡରେ ପ୍ରକଟ ଅନ୍ୟ ଅବତାର ମାନଙ୍କର ।

ସତ୍ତା –ବିଦ୍ୟମାନତା ।

ନ୍ୟାସ ନାରାୟଣାଦି ଅବତାର ମାନଙ୍କଠାରେ ଯେଉଁ ଭଗବତ୍ତା ଦେଖାଯାଏ ସେ ସମସ୍ତ ଶ୍ରୀକୃଷ୍ଣଙ୍କ ଦତ୍ତ କାରଣ ଶ୍ରୀକୃଷ୍ଣ ସେମାନଙ୍କର ଅଂଶୀ ଓ ଆଶ୍ରୟ । ୧୦୨ ।

କୃଷ୍ଣ ଦେଖି ନାନା ଜନ, କୈଲ ନିମିଷ-ନିନ୍ଦନ,
ବ୍ରଜେ ବିଧି ନିନ୍ଦେ ଗୋପୀଗଣ ।
ସେଇସବ ଶ୍ଲୋକ ପଢ଼ି, ମହାପ୍ରଭୁ ଅର୍ଥ କରି,
ସୁଖେ ମାଧୁର୍ଯ୍ୟ କରେ ଆସ୍ୱାଦନ । ୧୦୪।

ତଥାହି (ଭାଃ—୯।୨୪।୬୫)—
ଯସ୍ୟାନନଂ ମକରକୁଣ୍ଡଳଚାରୁକର୍ଣ୍ଣ-
ଭ୍ରାଜତ୍କପୋଲସୁଭଗଂ ସବିଲାସହାସମ୍ ।
ନିତ୍ୟୋତ୍ସବଂ ନ ତତୃପୁର୍ଦୃଶିଭିଃ ପିବନ୍ତ୍ୟୋ,
ନାର୍ଯ୍ୟୋ ନରାଶ୍ଚ ମୁଦିତାଃ କୁପିତା ନିମେଶ୍ଚ ।୨୭।

ତଥାହି ତତ୍ରୈବ (ଭାଃ—୧୦।୩୧।୧୫)—
ଅଟତି ଯଦ୍ଭବାନହ୍ନି କାନନଂ
ତ୍ରୁଟି ଯୁଗାୟତେ ତ୍ୱାମପଶ୍ୟତାମ୍ ।
କୁଟିଳକୁନ୍ତଳଂ ଶ୍ରୀମୁଖଞ୍ଚ ତେ,
ଜଡ଼ ଉଦୀକ୍ଷତାଂ ପକ୍ଷ୍ମକୃଦ୍ଦୃଶାମ୍ ।୨୧।

ଯସ୍ୟ—ଶ୍ରୀକୃଷ୍ଣସ୍ୟ ମକରକୁଣ୍ଡଳଚାରୁକର୍ଣ୍ଣଭ୍ରାଜତ୍କପୋଲସୁଭଗଂ — ମକର-କୁଣ୍ଡଳାଭ୍ୟାଂ ଚାରୁ ଦେଦୀପ୍ୟମାନୌ ଯୌ କର୍ଣ୍ଣୌ ତାଭ୍ୟାଂ ଭ୍ରାଜନ୍ତୌ ଯୌ କପୋଲୌ ତାଭ୍ୟାଂ ସୁଭଗଂ ଦ୍ରଷ୍ଟୃଜନ ମନୋହରଂ, ସବିଲାସହାସଂ —ବିଲାସୈଃ ହର୍ଷୋତ୍ଫୁଲ୍ଲସ୍ୟ ଗୃହଲ୍ଲାଦଭିଃ ଦ୍ୟୋତମାନୈଃ ସହିତଃ ହାସଃ ଯତ୍ରତତ୍, ନିତ୍ୟୋତ୍ସବଂ—ନିତ୍ୟଂ ଉତ୍ସବଂ ଯସ୍ମାତ୍ ତତ୍, ଆନନଂ ନାର୍ଯ୍ୟଃ—ଗୋପ୍ୟଃ, ନରାଃ —ସୁବଳାଦୟଃ ଚ ଦୃଶିଭିଃ—ନେତ୍ରାଞ୍ଜଳିଭିଃ ପିବନ୍ତ୍ୟଃ (ଅପି) ନ ତତୃପୁଃ (ନିମେଷୋନ୍ମେଷମାତ୍ର ବ୍ୟବଧାନମପ୍ୟସହମାନାଃ ତତ୍କର୍ତ୍ତ୍ରେ) ନିମେଶ୍ଚ କୁପିତାଃ ବଭୂବୁଃ । ୨୦ଶ ଶ୍ଲୋକଃ ।

ବିଧି—ବିଧାତା । ୧୦୪ ।

ଶ୍ରୀଶୁକଦେବ ଗୋସ୍ୱାମୀ କହୁଅଛନ୍ତି—ଶ୍ରୀକୃଷ୍ଣଙ୍କର ଶ୍ରୀମୁଖଚନ୍ଦ୍ରମା ଯହିଁରେ କର୍ଣ୍ଣଯୁଗଳ ମକରକୁଣ୍ଡଳଦ୍ୱାରା ଶୋଭମାନ ଏବଂ ଗଣ୍ଡଦ୍ୱୟ ସେମାନଙ୍କର ଆଭାଦ୍ୱାରା ଉଜ୍ଜ୍ୱଳିତ ଯହିଁରେ ବିଳାସାଖ୍ୟ ହାସ୍ୟ ବିରାଜିତ ଏବଂ ଯାହା ନିତ୍ୟୋତ୍ସବମୟ ଏପ୍ରକାର ଶ୍ରୀମୁଖଚନ୍ଦ୍ରମା ଗୋପଗୋପୀ-ମାନେ ନେତ୍ରାଞ୍ଜଳିଦ୍ୱାରା ସର୍ବଦା ପାନ କରି ସୁଦ୍ଧା ଅତୃପ୍ତି ହେତୁ ନିମେଷ ପତନରେ ଅସନ୍ତୁଷ୍ଟ ହୋଇ ନିମେଷ ସୃଷ୍ଟିକର୍ତ୍ତାଙ୍କ ପ୍ରତି କୁପିତ ହୋଇଥିଲେ । ୨୦ଶ ଶ୍ଲୋକାର୍ଥ ।

୨୧ଶ ଶ୍ଲୋକର ଅନ୍ୱୟ—ଅନ୍ତ: ୪ର୍ଥ ପରିଚ୍ଛେଦ ୨୧ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଗୋପୀମାନେ ଶ୍ରୀକୃଷ୍ଣ ଦର୍ଶନ ସୁଖଲାଭ ଧକାଶେ ସର୍ବ ସଙ୍ଗ ପରିତ୍ୟାଗ କରି ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହେଲେହେଁ ଶ୍ରୀକୃଷ୍ଣ ଗୋଚାରଣାଦି ସକାଶେ ସେମାନଙ୍କ ନିକଟରୁ ଅନ୍ତରିତ ହେଲେ ବିଚ୍ଛେଦ କାଳରେ ସେମାନେ ବଡ଼ ଦୁଃଖ ଅନୁଭବ କରନ୍ତି । ମହାରାସରେ ଗୋପୀମାନଙ୍କ ତ୍ୟାଗ କରି ଶ୍ରୀକୃଷ୍ଣ ଅନ୍ତରିତ ହେବାରୁ ଗୋପୀମାନେ ପୂର୍ବୋକ୍ତ ଭାବକୁ ଲକ୍ଷ୍ୟ କରି କ୍ରନ୍ଦନ କରୁଅଛନ୍ତି । ହେ କୃଷ୍ଣ ! ତୁମ୍ଭେ ଦିନବେଳେ ଗୋଚାରଣାଦି କରିବା ସକାଶେ ବୃନ୍ଦାବନକୁ ଗମନ କଲେ ତୁମ୍ଭର ଅଦର୍ଶନରେ ବ୍ରଜବାସୀମାନେ (ଆମ୍ଭେମାନେ) ଏକତ୍ରୁଟିକାଳକୁ (ଏକ କ୍ଷଣର ୨୭୦୦ ଭାଗର ଏକ ଭାଗକୁ) ଏକ ଯୁଗପରି ବୋଧ କରନ୍ତି, ଅର୍ଥାତ୍ ତୁମ୍ଭର ଅତି ଅଳ୍ପ ସମୟ ବିଚ୍ଛେଦହିଁ ଅତ୍ୟନ୍ତ ଅଧିକ କାଳପରି ଅନୁଭୂତ ହୁଏ, ପୁଣି ଯେତେବେଳେ ତୁମ୍ଭେ ବନ ପ୍ରଦେଶରୁ ପ୍ରତ୍ୟାବର୍ତ୍ତନ କର ସେତେବେଳେ ତୁମ୍ଭର କୁଟିଳକୁନ୍ତଳସମନ୍ୱିତ ଶ୍ରୀମୁଖଚନ୍ଦ୍ରମା ଦର୍ଶନ କରି ଦର୍ଶକମାନେ ଅକ୍ଷିର ନିମେଷକର୍ତ୍ତା ବିଧାତାଙ୍କୁ ଅଜ୍ଞ ବୋଲି କହନ୍ତି ଅର୍ଥାତ୍ ତୁମ୍ଭର ଶ୍ରୀମଦର୍ଶନକାରୀମାନେ ନିର୍ନିମେଷଲୋଚନରେ ଶ୍ରୀମୁଖ ଦର୍ଶନ କରି ସୁଦ୍ଧା ଅତୃପ୍ତ ହୁଅନ୍ତି । ସେପରି ଅବସ୍ଥାରେ ଆଖିରେ ନିମେଷପାତଜନିତ ମୁଖଦର୍ଶନରେ ବ୍ୟାଘାତ ହେତୁ ଅତ୍ୟନ୍ତ ଅଧୈର୍ଯ୍ୟ ପ୍ରକାଶପୂର୍ବକ ନିମେଷକର୍ତ୍ତାଙ୍କର ନିନ୍ଦା କରନ୍ତି । ୨୧ଶ ଶ୍ଲୋକାର୍ଥ ।

ଯଥାରାଗଃ—

କାମଗାୟତ୍ରୀମନ୍ତ୍ରରୂପ, ହୟ କୃଷ୍ଣସ୍ୱରୂପ,
ସାର୍ଦ୍ଧ ଚବିଶ ଅକ୍ଷର ତାର ହୟ ।
ସେ ଅକ୍ଷର ଚନ୍ଦ୍ର ହୟ, କୃଷ୍ଣେ କରି ଉଦୟ,
ତ୍ରିଜଗତ୍ କୈଲ କାମମୟ ।୧୦୫।

ସଖି ହେ ! କୃଷ୍ଣମୁଖ ଦ୍ୱିଜରାଜରାଜ ।
କୃଷ୍ଣବପୁ-ସିଂହାସନେ, ବସି ରାଜ୍ୟଶାସନେ,
କରି ସଙ୍ଗେ ଚନ୍ଦ୍ରେର ସମାଜ । ଧ୍ରୁ ।

ଦୁଇ ଗଣ୍ଡ ସୁଚିକ୍କଣ, ଜିନି ମଣିଦର୍ପଣ,
ସେଇ ଦୁଇ ପୂର୍ଣ୍ଣଚନ୍ଦ୍ର ଜାନି ।
ଲଲାଟ ଅଷ୍ଟମୀ ଇନ୍ଦୁ, ତାହାତେ ଚନ୍ଦନବିନ୍ଦୁ,
ସେହୋ ଏକ ପୂର୍ଣ୍ଣଚନ୍ଦ୍ର ମାନି । ୧୦୬ ।

କର-ନଖ ଚାଁଦେର ଠାଟ, ବଂଶୀ-ଉପର କରେ ନାଟ,
ତାର ଗୀତ—ମୁରଲୀର ତାନ ।
ପଦନଖ-ଚନ୍ଦ୍ରଗଣ, ତଲେ କରେ ନର୍ତ୍ତନ,
ନୂପୁରେର ଧ୍ୱନି ଯାର ଗାନ ।୧୦୮।

ନାଚେ ମକରକୁଣ୍ଡଳ, ନେତ୍ର-ଲୀଳାକମଲ,
ବିଳାସୀ ରାଜା ସତତ ନାଚୟ ।
ଭ୍ରୂଧନୁ ନାସା ବାଣ, ଧନୁର୍ଗୁଣ ଦୁଇ କାଣ,
ନାରୀମନ ଲକ୍ଷ୍ୟ ବିନ୍ଧେ ତାୟ । ୧୦୯ ।

ଏଇ ଚାଁଦେର ବଡ଼ ନାଟ, ପସାରି ଚାଁଦେର ହାଟ,
ବିନିମୂଲେ ବିଲାୟ ନିଜାମୃତ ।
କାହୋ ସ୍ମିତ-ଜ୍ୟୋତ୍ସ୍ନାମୃତେ କାହାକେ ଅଧରାମୃତେ,
ସବ ଲୋକ କରେ ଆପ୍ୟାୟିତ ।୧୧୦।

ବିପୁଲ ଆୟତାରୁଣ, ମଦନ-ମଦଘୂର୍ଣ୍ଣନ,
ମନ୍ତ୍ରୀ ଯାର ଏ ଦୁଇ ନୟନ ।
ଲାବଣ୍ୟକେଲିସଦନ, ଜନନେତ୍ର-ରସାୟନ,
ସୁଖମୟ ଗୋବିନ୍ଦବଦନ । ୧୧୧ ।

ଯାର ପୁଣ୍ୟପୁଞ୍ଜଫଳେ, ସେ ମୁଖ-ଦର୍ଶନ ମିଳେ,
ଦୁଇ ଆଁଖ୍ୟେ କି କରିବ ପାନେ ।
ଦ୍ୱିଗୁଣ ବାଢ଼େ ତୃଷ୍ଣା-ଲୋଭ, ପିତେ ନାରେ ମନଃକ୍ଷୋଭ,
ଦୁଃଖେ କରେ ବିଧିର ନିନ୍ଦନେ ।୧୧୨।

---

କାମଗାୟତ୍ରୀ—କାମଦେବାୟ ବିଦ୍ମହେ ପୁଷ୍ପବାଣାୟ ଧୀମହି ତନ୍ନୋଽନଙ୍ଗଃ ପ୍ରଚୋଦୟାତ୍ ( ଏହା ସାଢ଼େଚବିଶ ଅକ୍ଷର । )

ତନ୍ତ୍ରଶାସ୍ତ୍ରାନୁସାରେ ମନ୍ତ୍ରରୂପୀ ଦେବତା ଶ୍ରୀବୃନ୍ଦାବନର ଅପ୍ରାକୃତ କନ୍ଦର୍ପ ଶ୍ରୀକୃଷ୍ଣଙ୍କର ଉପାସନା କାମବୀଜ ଓ କାମଗାୟତ୍ରୀଦ୍ୱାରା ହୁଏ । ଏହି କାମବୀଜ (କ୍ଲୀଂ) ମୂର୍ତ୍ତିମାନ ପୁରୁଷ ଏବଂ ଏହି ଗାୟିତ୍ରୀ ତାହାଙ୍କର ସ୍ୱରୂପ, ଗାୟତ୍ରୀର ପ୍ରତ୍ୟେକ ଅକ୍ଷର ଏକ ଏକ ଚନ୍ଦ୍ର ଏଣୁ ସାଢ଼େଚବିଶଅକ୍ଷର ସାଢ଼େ ଚବିଶ ଚନ୍ଦ୍ର । ମନ୍ତ୍ରମୟ ଦେବତା ହେତୁ ଶ୍ରୀକୃଷ୍ଣଙ୍କର ସ୍ୱରୂପ ମଧ୍ୟ ସାଢ଼େ ଚବିଶ ଚନ୍ଦ୍ର । ଶ୍ରୀକୃଷ୍ଣ ମୂଳ କନ୍ଦର୍ପ ହେତୁ ଅଂଶକଳାଦ୍ୱାରା ତ୍ରିଜଗତ୍‌କୁ କାମମୟ କରିଅଛନ୍ତି ବା ତ୍ରିଜଗତ୍‌ରେ ଅଭିଳାଷର ବିଷୟ ହୋଇଅଛନ୍ତି । ୧୦୫ ।

( ଯସ୍ୟାନନ ) ଶ୍ଳୋକର ଅର୍ଥ ଆସ୍ୱାଦନ କରୁଅଛନ୍ତି ।

ଶ୍ରୀକୃଷ୍ଣଙ୍କର ମୁଖରୂପ ଚନ୍ଦ୍ର ଏକ ଚନ୍ଦ୍ର, ସେ ଚନ୍ଦ୍ରମାନଙ୍କର ରାଜା । ୧୦୬ ।

ସମାଜ — ଦଳ । ଦୁଇଗଣ୍ଡ—ଦୁଇଚନ୍ଦ୍ର । ଲଲାଟ—ଅର୍ଦ୍ଧଚନ୍ଦ୍ର । ଲଲାଟରେ ଚନ୍ଦନବିନ୍ଦୁ ଏକଚନ୍ଦ୍ର । ଅର୍ଥାତ୍ ଶ୍ରୀମୁଖ ୧ ଚନ୍ଦ୍ର । ୨ଗଣ୍ଡ ଓ ଚନ୍ଦନବିନ୍ଦୁ ତିନିଚନ୍ଦ୍ର ଓ ଲଲାଟ ଅର୍ଦ୍ଧଚନ୍ଦ୍ର, ଏରୂପ ସାଢ଼େ ଚାରି ଚନ୍ଦ୍ର ।

ଦୁଇ କରରେ ଦଶ ନଖ, ଦଶ ଚନ୍ଦ୍ର, ଦୁଇ ପାଦର ଦଶ ନଖ, ଦଶ ଚନ୍ଦ୍ର, ଏରୂପ କୋଡ଼ିଏ ଚନ୍ଦ୍ର ଓ ସର୍ବ ମୋଟ ସାଢ଼େ ଚବିଶ ଚନ୍ଦ୍ର । ୧୦୭ ।

ନା ହଲେକ ଲକ୍ଷ କୋଟି, ସବେ ହଲ ଆଁଖି ଦୁଇ,
ତାହେ ହଲ ନିମେଷ-ଆଚ୍ଛାଦନ ।
ବିଧି ଜଡ ତପୋଧନ, ରସଶୂନ୍ୟ ତାର ମନ,
ନାହିଁ ଜାଣେ ଯୋଗ୍ୟ ସୃଜନ ।୧୧୩।
ଯେ ଦେଖିବେ କୃଷ୍ଣାନନ, ତା'ର କରେ ଦ୍ୱିନୟନ
ବିଧି ହୋଇ ହେନ ଅବିଚାର ।
ମୋର ଯଦି ବୋଲ ଧରେ, କୋଟି ଆଁଖି ତାର କରେ,
ତବେ ଜାନି ଯୋଗ୍ୟ ସୃଷ୍ଟି ତାର ।୧୧୪।
କୃଷ୍ଣାଙ୍ଗମାଧୁର୍ଯ୍ୟସିନ୍ଧୁ, ସୁମଧୁର ମୁଖ-ଇନ୍ଦୁ,
ଅତି ମଧୁର ସ୍ମିତ-ସୁକିରଣେ ।
ଏ ତିନେ ଲାଗିଲ ମନ, ଲୋଭେ କରେ ଆସ୍ୱାଦନ
ଶ୍ଲୋକ ପଢ଼େ ସ୍ୱହସ୍ତଚାଳନେ ।୧୧୫।
ତଥାହି କର୍ଣ୍ଣାମୃତେ (୯୨)—
ମଧୁରଂ ମଧୁରଂ ବପୁରସ୍ୟ ବିଭୋ-
ର୍ମଧୁରଂ ମଧୁରଂ ବଦନଂ ମଧୁରମ୍ ।
ମଧୁଗନ୍ଧି ମୃଦୁସ୍ମିତମେତଦହୋ,
ମଧୁରଂ ମଧୁରଂ ମଧୁରଂ ମଧୁରମ୍ ।୨।*

ଯଥାରାଗଃ—

ସନାତନ ! କୃଷ୍ଣମାଧୁର୍ଯ୍ୟ ଅମୃତେର ସିନ୍ଧୁ ।
ମୋର ମନ ସନ୍ନିପାତି, ସବ ପିତେ କରେ ମତି,
ଦୁର୍ଦ୍ଦୈବ-ବୈଦ୍ୟ ନା ଦେୟ ଏକବିନ୍ଦୁ । ଧ୍ରୁ ।
କୃଷ୍ଣାଙ୍ଗ ଲାବଣ୍ୟପୂର, ମଧୁର ହୈତେ ସୁମଧୁର
ତାତେ ଯେଇ ମୁଖ-ସୁଧାକର ।
ମଧୁର ହୈତେ ସୁମଧୁର, ତାହା ହୈତେ ସୁମଧୁର,
ତାର ଯେଇ ସ୍ମିତ-ଜ୍ୟୋତ୍ସ୍ନାଭର ।୧୧୭।
ମଧୁର ହୈତେ ସୁମଧୁର, ତାହା ହୈତେ ସୁମଧୁର,
ତାହା ହୈତେ ଅତି ସୁମଧୁର ।
ଆପନାର ଏକ କଣେ, ବ୍ୟାପେ ସବ ତ୍ରିଭୁବନେ,
ଦଶଦିଗେ ବ୍ୟାପେ ଯାର ପୂର ।୧୧୮।

---

ତାଦୃଶାନନ୍ତ ତନ୍ମାଧୁର୍ଯ୍ୟ ମନୁଭୂୟ ସାଶ୍ଚର୍ଯ୍ୟମାହ—ଅସ୍ୟ ବିଭୋର୍ବପୁଃ ମଧୁରଂ ମଧୁରଂ ଅତି ସୁମଧୁର ମିତ୍ୟର୍ଥଃ । ପୁନଃ ଶ୍ରୀମୁଖମାଲୋକ୍ୟ ସଶିରଶ୍ଚାଳନମାହ—ବଦନନ୍ତୁ ମଧୁରଂ ମଧୁରଂ ମଧୁରଂ ଅତିତରାଂ ମଧୁର ମିତ୍ୟର୍ଥଃ । ତଦଗ୍ରେ ତୁ ମନ୍ଦଭୂୟ ସ ଶୀତ୍କାରଂ ତନ୍ନିର୍ଦ୍ଦେଶକତର୍ଜ୍ଜନୀଚାଳନପୂର୍ବକମାହ । ଏତତ୍ତୁ ମୃଦୁସ୍ମିତନ୍ତୁ ମଧୁରଂ ମଧୁରଂ ମଧୁରଂ ମଧୁରଂ ଅତିତମାଂ ସୁମଧୁରଂ ଇତ୍ୟର୍ଥଃ । କୀଦୃଶଂ ମଧୁଗନ୍ଧି ମଧୁସୌରଭ୍ୟଯୁକ୍ତଂ, ମୁଖାବ୍ଜସ୍ୟ ମକରନ୍ଦରୂପତ୍ୱାତ୍ତୁ ସର୍ବମାଦକମିତ୍ୟର୍ଥଃ, ସ୍ମରତେ ଲୃତମଧୁପାନତ୍ୱାତ୍ତୁ ତଦୀୟଗନ୍ଧି ବା । ଇତି । ସାରଙ୍ଗରଙ୍ଗଦା ।

---

ଲକ୍ଷକୋଟି — ଅସଂଖ୍ୟ ।୧୧୪।

ଶ୍ରୀକୃଷ୍ଣଙ୍କର ସର୍ବାବୟବ ମାଧୁର୍ଯ୍ୟର ସାଗର । ଯେପରି ସାଗରର ସାରବସ୍ତୁ ଚନ୍ଦ୍ର, ସେହିପରି ଏ ମାଧୁର୍ଯ୍ୟସାଗରର ସାରବସ୍ତୁ ଶ୍ରୀମୁଖଚନ୍ଦ୍ର, ଚନ୍ଦ୍ରଙ୍କର ସାରବସ୍ତୁ ସୁଧା, ଶ୍ରୀକୃଷ୍ଣଙ୍କର ମୁଖଚନ୍ଦ୍ରର ସାରବସ୍ତୁ ମୃଦୁହାସ୍ୟ, ଏହି ମୃଦୁହାସ୍ୟର ଛଟା ଚନ୍ଦ୍ରଙ୍କର କିରଣତୁଲ୍ୟ ।୧୧୫।

ସ୍ୱହସ୍ତଚାଳନେ—ହାତହଲାଇ ଅବଲମ୍ବ କରି ।୧୧୫।

ଠାକୁର ଶ୍ରୀବିଲ୍ୱମଙ୍ଗଳ କହୁଅଛନ୍ତି—ଏହି ଶ୍ରୀକୃଷ୍ଣଙ୍କର ଶ୍ରୀଅଙ୍ଗ ଅତି ମଧୁର । ପୁଣି ସେଥିରେ ଏହି ଶ୍ରୀମୁଖଚନ୍ଦ୍ର ଅତି ସୁମଧୁରତର । ଅହୋ ! ଏହି ମଧୁଗନ୍ଧଯୁକ୍ତ ମୃଦୁହାସ୍ୟ ଅତି ସୁମଧୁରତମ । ୨ୟ ଶ୍ଲୋକାର୍ଥ ।

ସନ୍ନିପାତି— ସନ୍ନିପାତବିକାରଗ୍ରସ୍ତ । ଦୁର୍ଦ୍ଦୈବବୈଦ୍ୟ—ଦୁର୍ଦ୍ଦୈବରୂପବୈଦ୍ୟ ।୧୧୬।

ପୂର—ପରିପୂର୍ଣ୍ଣ । ଭର—ଭରିପୂର୍ଣ୍ଣ ।୧୧୭।

ଆପନାର—ସ୍ମିତଜ୍ୟୋତ୍ସ୍ନାର । ଯାର ପୂର—ଜ୍ୟୋତ୍ସ୍ନାର ପ୍ରବାହ ।୧୧୮।

ସ୍ମିତକିରଣ ସୁକର୍ପୂରେ, ପୈଶେ ଅଧର-ମଧୁରେ,
ସେଇ ମଧୁ ମାତାୟ ତ୍ରିଭୁବନେ ।
ବଂଶୀଛିଦ୍ର ଆକାଶେ, ତାର ଗୁଣ ଶବ୍ଦେ ପୈଶେ,
ଧ୍ୱନିରୂପେ ପାଞା ପରିଣମେ । ୧୧୯ ।
ସେ ଧ୍ୱନି ଚୌଦିଗେ ଧାୟ,
ଅଣ୍ଡ ଭେଦି ବୈକୁଣ୍ଠେ ଯାୟ
ଜଗତେର ବଲେ ପୈଶେ କାଣେ ।
ସଭା ମାତୋୟାଲ କରି, ବଲାତ୍କାରେ ଆନେ ଧରି
ବିଶେଷତ ଯୁବତୀର ଗଣେ । ୧୨୦ ।
ଧ୍ୱନି ବଡ଼ ଉଦ୍ଧତ, ପତିବ୍ରତାର ଭାଙ୍ଗେ ବ୍ରତ,
ପତି କୋଲେ ହୈତେ କାଢ଼ି ଆନେ ।
ବୈକୁଣ୍ଠେର ଲକ୍ଷ୍ମୀଗଣେ, ଯେଇ କରେ ଆକର୍ଷଣେ,
ତାର ଆଗେ କେବା ଗୋପୀଗଣେ । ୧୨୧ ।
ନୀବି ଖସାୟ ପତି-ଆଗେ, ଗୃହଧର୍ମ କରାୟ ତ୍ୟାଗେ
ବଲେ ଧରି ଆନେ କୃଷ୍ଣ-ସ୍ଥାନେ ।
ଲୋକଧର୍ମ ଲଜ୍ଜା ଭୟ, ସବ ଜ୍ଞାନ ଲୁପ୍ତ ହୟ,
ଐଛେ ନାଚାୟ ସବ ନାରୀଗଣେ । ୧୨୨ ।
କାଣେର ଭିତର ବାସା କରେ,
ଆପନେ ତାହାଁ ସଦା ସ୍ଫୁରେ
ଅନ୍ୟ ଶବ୍ଦ ନା ଦେୟ ପ୍ରବେଶିତେ ।
ଆନ୍ କଥା ନା ଶୁନେ କାଣ,
ଆନ୍ ବୁଲିତେ ବୋଲୟ ଆନ୍,
ଏଇ କୃଷ୍ଣେର ବଂଶୀର ଚରିତେ । ୧୨୩ ।
ପୁନ କହେ ବାହ୍ୟଜ୍ଞାନେ,
ଆନ୍ କହିତେ କହି ଆନେ
କୃଷ୍ଣକୃପା ତୋମାର ଉପରେ ।
ମୋର ଚିତ୍ତ ଭ୍ରମ କରି, ନିଜୈଶ୍ୱର୍ଯ୍ୟମାଧୁରୀ,
ମୋର ମୁଖେ ଶୁନାୟ ତୋମାରେ । ୧୨୪ ।
ଆମି ତ ବାଉଲ, ଆନ କହିତେ ଆନ କହି ।
କୃଷ୍ଣେର ମାଧୁର୍ଯ୍ୟାମୃତ ସ୍ରୋତେ ଯାଇ ବହି ।
ତବେ ପ୍ରଭୁ କ୍ଷଣ ଏକ ମୌନ କରି ରହେ ।
ମନେ ଧୈର୍ଯ୍ୟ କରି ପୁନ ସନାତନେ କହେ ।
କୃଷ୍ଣେର ମାଧୁରୀ ଆର ମହାପ୍ରଭୁର ମୁଖେ ।
ଯେଇ ଇହା ଶୁନେ ସେଇ ଭାସେ ପ୍ରେମସୁଖେ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୧୨୮ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ସମ୍ବନ୍ଧତତ୍ତ୍ୱବିଚାରେ ଶ୍ରୀକୃଷ୍ଣୈଶ୍ୱର୍ଯ୍ୟମାଧୁର୍ଯ୍ୟ
ବର୍ଣ୍ଣନଂ ନାମ ଏକବିଂଶ ପରିଚ୍ଛେଦଃ ।

---

ସ୍ମିତକିରଣ ସୁକର୍ପୂର—ସ୍ମିତକିରଣରୂପ ସୁକର୍ପୂର ।

ବଂଶୀଛିଦ୍ରଆକାଶେ—ବଂଶୀଛିଦ୍ରାନ୍ତର୍ଗତ ଆକାଶରେ ।

ତାର ଗୁଣ—ଆକାଶର ଗୁଣ । ଶବ୍ଦ—ଶବ୍ଦତନ୍ମାତ୍ର ।

ପୈଶେ—ପ୍ରବେଶ କରି । ୧୧୯ ।

ଶ୍ରୀକୃଷ୍ଣଙ୍କର ଈଷଦ୍ଧାସ୍ୟରୂପସୁଗନ୍ଧିକା ବଂଶୀଛିଦ୍ର ମଧ୍ୟରେ ପ୍ରବେଶ କରି ତାହାର ଅନ୍ତର୍ଗତ ଆକାଶର ଗୁଣ ଶବ୍ଦତନ୍ମାତ୍ରରେ ଧ୍ୱନିରୂପେ ପରିଣତ ହୁଏ । ୧୧୯ ।

ଅଣ୍ଡଭେଦି—ବ୍ରହ୍ମାଣ୍ଡଭେଦି । ଜଗତ୍ରେ—ନିଜଗତ୍ରେ । ୧୨୦ ।

ଆପନେ—ବଂଶୀଧ୍ୱନି । ୧୨୨ ।

ପୁନଃ କହେ ବାହ୍ୟଜ୍ଞାନେ—ମହାପ୍ରଭୁ ଉପରୋକ୍ତ ପୟାରମାନ ଅର୍ଦ୍ଧବାହ୍ୟ ଅବସ୍ଥାରେ କହି ବର୍ତ୍ତମାନ ପୂର୍ଣ୍ଣ ବାହ୍ୟଜ୍ଞାନ ଲାଭ କରି ଶ୍ରୀସନାତନଙ୍କୁ କହୁଅଛନ୍ତି । ୧୨୪ ।

ଏକବିଂଶ ପରିଚ୍ଛେଦ ସମାପ୍ତ ।



## ଦ୍ୱାବିଂଶ ପରିଚ୍ଛେଦ ।



ବନ୍ଦେ ଶ୍ରୀକୃଷ୍ଣଚୈତନ୍ୟଦେବଂ ତଂ
କରୁଣାର୍ଣ୍ଣବମ୍ ।
କଳାବପ୍ୟତିଗୂଢ଼େୟଂ ଭକ୍ତିର୍ଯେନ
ପ୍ରକାଶିତା ।୧। *
ଜୟ ଜୟ ଶ୍ରୀକୃଷ୍ଣଚୈତନ୍ୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।

ଏଇ ତ କହିଲ ସମ୍ବନ୍ଧତତ୍ତ୍ୱର ବିଚାର ।
ବେଦଶାସ୍ତ୍ରେ ଉପଦେଶେ—କୃଷ୍ଣ ଏକ ସାର ।
ଏବେ କହି ଶୁନ ଅଭିଧେୟେର ଲକ୍ଷଣ ।
ଯାହା ହୈତେ ପାଇ— କୃଷ୍ଣ, କୃଷ୍ଣପ୍ରେମଧନ ॥
'କୃଷ୍ଣଭକ୍ତି ଅଭିଧେୟ' ସର୍ବଶାସ୍ତ୍ରେ କୟ ।
ଅତଏବ ମୁନିଗଣ କରିୟାଛେ ନିଶ୍ଚୟ । ୪ ।

---

## ଦ୍ୱାବିଂଶ ପରିଚ୍ଛେଦ ।



ବନ୍ଦେ ଇତି—ତଂ ଶ୍ରୀକୃଷ୍ଣଚୈତନ୍ୟଦେବଂ ବନ୍ଦେ ଅହଂ ନମାମି, କଥମ୍ଭୂତଂ କରୁଣାର୍ଣ୍ଣବଂ —ଦୟାସମୁଦ୍ରଂ, ଯେନ ଶ୍ରୀକୃଷ୍ଣଚୈତନ୍ୟେନ କଲୌକଲିଯୁଗେ ଇୟଂ ଅତିଗୂଢ଼ାପି – ଅତ୍ୟନ୍ତ ଗୋପନୀୟାପି ଭକ୍ତିଃ ବୈଧିରାଗାନୁଗା ପ୍ରକାଶିତା—ପ୍ରକଟିତା । ଇତି । ୧ମଶ୍ଳୋକ ।

ଅଭିଧେୟ ତତ୍ତ୍ୱ ପ୍ରସଙ୍ଗାର୍ଥଂ ପୂର୍ବୋପରିଚ୍ଛେଦୋକ୍ତଂ ସମ୍ବନ୍ଧତତ୍ତ୍ୱଂ ଅନୁବଦତି ପଦ୍ୟୈକେନ ଏଇତ ଇତି । ଶ୍ରୀକୃଷ୍ଣ ଏବ ସମ୍ବନ୍ଧତତ୍ତ୍ୱଂ ଇତ୍ୟର୍ଥଃ । ବ. ଚ. । ୨ ।

---

ଅତି ଗୋପନୀୟ ହେଲେ ସୁଦ୍ଧା ଏହି ଭକ୍ତିତତ୍ତ୍ୱକୁ କଳିଯୁଗରେ ଯେ ପ୍ରକାଶ କରି ଅଛନ୍ତି, ସେହି କରୁଣାସାଗର ଶ୍ରୀକୃଷ୍ଣଚୈତନ୍ୟଦେବଙ୍କୁ ମୁଁ ବନ୍ଦନା କରେଁ । ୧ମଶ୍ଳୋକାର୍ଥ ।

ପୂର୍ବ ପରିଚ୍ଛେଦମାନଙ୍କରେ ସମ୍ବନ୍ଧ ତତ୍ତ୍ୱ ବିଚାର କରି ତାହାର ଉପସଂହାରରେ ଶ୍ରୀମନ୍ ମହାପ୍ରଭୁ ଶ୍ରୀସନାତନ ଗୋସ୍ୱାମୀଙ୍କୁ କହୁଅଛନ୍ତି—ବେଦଶାସ୍ତ୍ରମାନଙ୍କର ଉପଦେଶ ଅନୁସାରେ ଶ୍ରୀକୃଷ୍ଣହିଁ ସମ୍ବନ୍ଧ ତତ୍ତ୍ୱ । ୨ ।

ଏହି ପରିଚ୍ଛେଦରେ ଅଭିଧେୟ ତତ୍ତ୍ୱର ବିଚାର କରୁଅଛନ୍ତି—ଯେଉଁ ଅଭିଧେୟ ତତ୍ତ୍ୱଦ୍ୱାରା ଶ୍ରୀକୃଷ୍ଣ ( ସମ୍ବନ୍ଧତତ୍ତ୍ୱ ) ଏବଂ ଶ୍ରୀକୃଷ୍ଣ ପ୍ରେମଧନ ( ପ୍ରୟୋଜନତତ୍ତ୍ୱ ) ଲାଭ ହୁଏ । ୩ ।

ଅଭିଧେୟର ସ୍ୱରୂପ କହୁଅଛନ୍ତି—ଶ୍ରୀକୃଷ୍ଣ ଭକ୍ତିହିଁ ଅଭିଧେୟ, ଅର୍ଥାତ୍ କୃଷ୍ଣଭକ୍ତିହିଁ ଜୀବର କର୍ତ୍ତବ୍ୟ । ୪ ।

ତଥାହି ମୂଳବାକ୍ୟମ୍—

ଶ୍ରୁତିର୍ମାତା ପୃଷ୍ଟା ଦିଶତି ଭବଦାରାଧନବିଧିଂ,
ଯଥା ମାତୁର୍ବାଣୀ ସ୍ମୃତିରପି ତଥା ବକ୍ତି ଭଗିନୀ ।
ପୁରାଣାଦ୍ୟା ଯେ ବା ସହଜନିବହାସ୍ତେ
ତଦନୁଗାଃ,
ଅତଃ ସତ୍ୟଂ ଜ୍ଞାତଂ ମୁରହର ଭବାନେବ
ଶରଣମ୍ । ୧ ।

ଅଦ୍ୱୟ-ଜ୍ଞାନତତ୍ତ୍ୱ କୃଷ୍ଣ ସ୍ୱୟଂଭଗବାନ୍ ।
ସ୍ୱରୂପ-ଶକ୍ତିରୂପେ ତାଁର ହୟ ଅବସ୍ଥାନ । ୫ ।
ସ୍ୱାଂଶ-ବିଭିନ୍ନାଂଶରୂପେ ହଇୟା ବିସ୍ତାର ।
ଅନନ୍ତ ବୈକୁଣ୍ଠ ବ୍ରହ୍ମାଣ୍ଡେ କରେନ ବିହାର । ୬ ।

ସ୍ୱାଂଶ ବିସ୍ତାର—ଚତୁର୍ବ୍ୟୂହ ଅବତାରଗଣ ।
ବିଭିନ୍ନାଂଶ—ଜୀବ ତାଁର ଶକ୍ତିତେ ଗଣନ । ୭ ।
ସେଇ ବିଭିନ୍ନାଂଶ ଜୀବ ଦୁଇ ତ ପ୍ରକାର ।
ଏକ ନିତ୍ୟମୁକ୍ତ, ଏକେର ନିତ୍ୟସଂସାର । ୮ ।
ନିତ୍ୟମୁକ୍ତ—ନିତ୍ୟ କୃଷ୍ଣଚରଣେ ଉନ୍ମୁଖ ।
'କୃଷ୍ଣପାରିଷଦ' ନାମ—ଭୁଞ୍ଜେ ସେବା-ସୁଖ । ୯ ।
'ନିତ୍ୟବଦ୍ଧ'—କୃଷ୍ଣ ହୈତେ ନିତ୍ୟ ବହିର୍ମୁଖ ।
ନିତ୍ୟସଂସାରୀ ଭୁଞ୍ଜେ ନରକାଦି ଦୁଃଖ । ୧୦ ।
ସେଇ-ଦୋଷେ ମାୟାପିଶାଚୀ ଦଣ୍ଡ କରେ ତାରେ ।
ଆଧ୍ୟାତ୍ମିକାଦି ତାପତ୍ରୟ ତାରେ ଜାରି ମାରେ ।

---

ଶ୍ରୁତିଃ ମାତା—ଜନୟିତ୍ରୀ ମାତୃବତ୍ ସର୍ବଦା ହିତକାରିଣୀତ୍ୱାତ୍, ପୃଷ୍ଟା—ଜିଜ୍ଞାସିତା ସତୀ ଭବଦାରାଧନବିଧିଂ ଦିଶତି—ଆଜ୍ଞାପୟତି, ଯଥା ମାତୁଃ ବାଣୀ ସ୍ମୃତିଃ ଭଗିନୀ ଅପି (ଶ୍ରୁତିଜାତତ୍ୱାତ୍) ପୃଷ୍ଟା ସତୀ, ତଥା ବକ୍ତି—ଭବଦାରାଧନବିଧିଂ କଥୟତି । ଯେ ବା ପୁରାଣାଦ୍ୟାଃ—ପୁରାଣତନ୍ତ୍ରାଦୟଃ, ସହଜନିବହାଃ—ସହୋଦରାଃ ତେ ଚ—ତଦନୁଗାଃ—ଜନନୀଭଗିନ୍ୟୋଃ ଅନୁଗାଃ ସନ୍ତଃ ଭବଦାରାଧନବିଧିଂ ବଦନ୍ତି, ଅତଃ (ହେ) ମୁରହର ! ଭବାନ୍ ଏବ ଶରଣଂ ଇତି ସତ୍ୟଂ ଜ୍ଞାତଂ । ୧ମ ଶ୍ଳୋକ ।

---

ହେ ମୁରହର ! ମାତା ଶ୍ରୁତିଙ୍କୁ ପଚାରିଲେ ସେ ଆପଣଙ୍କର ଆରାଧନା କରିବାର ଉପଦେଶ କରନ୍ତି, ମାତା ଯାହା ଉପଦେଶ କରନ୍ତି ଭଗିନୀ ସ୍ମୃତି ମଧ୍ୟ ସେହି କଥା ଉପଦେଶ କରନ୍ତି, ପୁରାଣାଦି ଭ୍ରାତାମାନେ ମଧ୍ୟ ଜନନୀ ଓ ଭଗିନୀଙ୍କର ଅନୁଗତ ହୋଇ ସେହି କଥା କହନ୍ତି, ଅତଏବ ଆପଣ ଯେ ଏକମାତ୍ର ଆଶ୍ରୟ ଏହା ସତ୍ୟ ବୁଝିଅଛୁ । ୧ମ ଶ୍ଳୋକାର୍ଥ ।

ଅଭିଧେୟମାନେ ଅବଶ୍ୟ କର୍ତ୍ତବ୍ୟ, ଶ୍ରୀକୃଷ୍ଣଭକ୍ତି ଯେ ଅଭିଧେୟ ତାହା ନିମ୍ନଲିଖିତ ୧୩ ପୟାର ପର୍ଯ୍ୟନ୍ତ ପୟାରମାନଙ୍କଦ୍ୱାରା ବର୍ଣ୍ଣନା କରୁଅଛନ୍ତି । ଜୀବ ସର୍ବଦା ଦୁଃଖଗ୍ରସ୍ତ ହେତୁ ଆତ୍ୟନ୍ତିକ ଦୁଃଖନିବୃତ୍ତିପୂର୍ବକ ପରମ ସୁଖ ଲାଭ କରିବାକୁ ଜୀବର ଅଭିଳାଷ ଏବଂ ତନ୍ନିମିତ୍ତ ଜୀବର ପ୍ରବୃତ୍ତି, ଶ୍ରୀକୃଷ୍ଣଭକ୍ତିଦ୍ୱାରା ତାହାହିଁ ଲଭନ୍ତି । ୫ ।

ସ୍ୱରୂପ ଶକ୍ତିରୂପେ—ସ୍ୱରୂପରେ ଏବଂ ଶକ୍ତିରୂପରେ । ୫ ।

ଅବତାରଗଣ—ପରବ୍ୟୋମସ୍ଥ ଅବତାରଗଣ ଏବଂ ବ୍ରହ୍ମାଣ୍ଡସ୍ଥ ଅବତାରଗଣ ।

ଶ୍ରୀକୃଷ୍ଣଙ୍କର ବିଭିନ୍ନଶକ୍ତିହିଁ ଜୀବ । ୭ । ନିତ୍ୟସଂସାର—ନିତ୍ୟବଦ୍ଧ । ୮ ।

ନିତ୍ୟସଂସାରୀ—ବ୍ରହ୍ମାଣ୍ଡାନ୍ତର୍ଗତ ଜୀବମାନେ । ଯେଉଁମାନେ ଶ୍ରୀକୃଷ୍ଣ-ବହିର୍ମୁଖ ସେମାନେ ନିତ୍ୟସଂସାରୀ । ୧୦ ।

ସେଇ ଦୋଷେ—ବହିର୍ମୁଖତା ଦୋଷରୁ, ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଏହି ତିନି ତାପଦ୍ୱାରା ମାୟାଦେବୀ ଜୀବଙ୍କୁ କଷଣ ଦିଅନ୍ତି । ୧୧ ।

କାମ-କ୍ରୋଧେର ଦାସ ହଞା ତାର ଲାଥି ଖାୟ ।
ଭ୍ରମିତେ ଭ୍ରମିତେ ଯଦି ସାଧୁ ବୈଦ୍ୟ ପାୟ ॥ ୧୨ ॥
ତାର ଉପଦେଶମନ୍ତ୍ରେ ପିଶାଚୀ ପଲାୟ ।
କୃଷ୍ଣଭକ୍ତି ପାୟ ତବେ କୃଷ୍ଣ ନିକଟ ଯାୟ ॥ ୧୩ ॥
ତଥାହି ଭକ୍ତିରସାମୃତସିନ୍ଧୌ (୩।୨।୬)
କାମାଦୀନାଂ କତି ନ କତିଧା ପାଲିତା ଦୁର୍ନିଦେଶା
ସ୍ତେଷାଂ ଜାତା ମୟି ନ କରୁଣା ନ ତ୍ରପା ନୋପଶାନ୍ତିଃ ।
ଉତ୍ସୃଜ୍ୟୈତାନଥ ଯଦୁପତେ ସାମ୍ପ୍ରତଂ ଲବ୍ଧବୁଦ୍ଧି-
ସ୍ତ୍ୱାମାୟାତଃ ଶରଣମଭୟଂ ମାଂ ନିୟୁଙ୍କ୍ଷ୍ୱାତ୍ମଦାସ୍ୟେ ॥ ୩ ॥
କୃଷ୍ଣଭକ୍ତି ହୟ—ଅଭିଧେୟ-ପ୍ରଧାନ ।
ଭକ୍ତିମୁଖନିରୀକ୍ଷକ – କର୍ମ-ଯୋଗ ଜ୍ଞାନ ॥ ୧୪ ॥
ଏଇ ସବ ସାଧନେର ଅତି ତୁଚ୍ଛ ଫଲ ।
କୃଷ୍ଣଭକ୍ତି ବିନେ ତାହା ଦିତେ ନାରେ ବଲ ।

କାମାଦୀନାଂ କତିଧା ଦୁର୍ନିଦେଶାଃ (ଦୁଷ୍ଟାଜ୍ଞାଃ) କତି—ପ୍ରକାରାଃ ଅସ୍ମାଭିଃ ନ ପାଲିତାଃ ଅପିତୁ ପାଲିତା ଏବ ତଥାପି, ତେଷାଂ—କାମାଦୀନାଂ ମୟି— ବିଷୟେ କରୁଣା— ଦୟା ତ୍ରପା—ଲଜ୍ଜା ଉପଶାନ୍ତିଃ ନ ଜାତା ଅଥ—ଅନନ୍ତରଂ ହେ ଯଦୁପତେ ! ସାମ୍ପ୍ରତଂ— ଇଦାନୀଂ ତାନ୍— କାମାଦୀନ୍ ଉତ୍ସୃଜ୍ୟ ( ତ୍ୟକ୍ତ୍ୱା ) ଲବ୍ଧବୁଦ୍ଧିଃ ସନ୍, ଅଭୟଂ ଶରଣଂ ତ୍ୱାଂ ଆୟାତଃ — ପ୍ରାପ୍ତଃ, ମାଂ ଆତ୍ମଦାସ୍ୟେ—ସ୍ୱଦାସ୍ୟେ ନିୟୁଙ୍କ୍ଷ୍ୱ— ନିଯୋଜୟ । ଇତ୍ୟନ୍ୱୟଃ ।
ଅପିଚ କୃଷ୍ଣଭକ୍ତିଂ ବିନା କର୍ମଯୋଗଜ୍ଞାନଂ ତତ୍ତତ୍ଫଳଂ ଦାତୁଂ ନ ଶକ୍ନୋତି, ଅତଃ ଭକ୍ତିରେବ ଅଭିଧେୟା । ୧୪।୧୫ । ଚ, ଚ. ।

କାମକ୍ରୋଧେର— ଷଡ଼୍‌ବର୍ଗର । ଭ୍ରମିତେ ଭ୍ରମିତେ - ସଂସାର ବର୍ତ୍ମରେ ବୁଲୁ ବୁଲୁ । ସାଧୁବୈଦ୍ୟ—ସାଧୁରୂପବୈଦ୍ୟ । ୧୨ । ତାର—ସାଧୁଙ୍କର ( ଗୁରୁଙ୍କର । ) ଉପଦେଶମନ୍ତ୍ର—ଶ୍ରୀକୃଷ୍ଣ ଉପଦେଶମନ୍ତ୍ର । ପିଶାଚୀ ମାୟାପିଶାଚୀ ।
ପଲାୟ—ମନ୍ତ୍ରର ଉପଦେଶଦ୍ୱାରା ମାୟାପିଶାଚୀ ବିତାପ ଓ ଷଡ଼୍‌ବର୍ଗ ହେଉଛି ପଳାଏ, ଅର୍ଥାତ୍ ଜୀବର ଆତ୍ୟନ୍ତିକ ଦୁଃଖ ନିବୃତ୍ତି ହୁଏ ଏବଂ କୃଷ୍ଣଭକ୍ତି ଲାଭ କରି ଜୀବ ଶ୍ରୀକୃଷ୍ଣଙ୍କ ଶ୍ରୀଚରଣ ଲାଭ କରେ । ଏହାଦ୍ୱାରା ପ୍ରେମ ସୁଖ ଲାଭ ହୁଏ । ଏହିହେତୁ ଶ୍ରୀକୃଷ୍ଣଭକ୍ତି ଅଭିଧେୟ ।
ମୁଁ କାମାଦି ଷଡ଼୍‌ବର୍ଗର ନାନାପ୍ରକାର ଦୁର୍ନିଦେଶ କେତେପ୍ରକାର ପାଳନ କରିନାହିଁ । ତଥାପି ମୋ ପ୍ରତି ସେମାନଙ୍କର ଦୟା ହେଲା ନାହିଁ । ସେମାନେ ଦଧ ନିବୃତ୍ତ ହେଲେ ନାହିଁ । ହେ ଯଦୁପତେ ! ଆପଣଙ୍କ କୃପାରୁ ବର୍ତ୍ତମାନ ମୋର ଜ୍ଞାନଲାଭ ହୋଇଅଛି । ମୁଁ ସେମାନଙ୍କୁ ତ୍ୟାଗ କରି ଆପଣଙ୍କର ଅଭୟଚରଣ ଆଶ୍ରୟ କଲି, ମୋତେ ଆପଣଙ୍କ ଦାସ୍ୟରେ ନିଯୁକ୍ତ କରନ୍ତୁ । ଶ୍ଳୋକାର୍ଥ ।
କର୍ମ, ଯୋଗ, ଜ୍ଞାନ ଏମାନେ ଅଭିଧେୟ ହେଲେହେଁ ଶ୍ରୀକୃଷ୍ଣଭକ୍ତିହିଁ ପ୍ରଧାନ ଅଭିଧେୟ, ତାହାର କାରଣ ଏହି ଯେ—କର୍ମସାଧନର ଫଳଭୁକ୍ତି ତାହା ଅନିତ୍ୟ, ଯୋଗସାଧନର ଫଳ ଅଣିମାଦି ସିଦ୍ଧି ଜ୍ଞାନସାଧନର ଫଳ ମୁକ୍ତି ( ଆତ୍ୟନ୍ତିକ ଦୁଃଖ ନିବୃତ୍ତି ) କିନ୍ତୁ ଏହି ଫଳମାନ ଭକ୍ତିର ସାହାଯ୍ୟ ବ୍ୟତୀତ ଲାଭ ହୁଏ ନାହିଁ, ଶ୍ରୀକୃଷ୍ଣଭକ୍ତି ଅନନ୍ୟାପେକ୍ଷ ଓ ଏହାଙ୍କର ଅଯାଚିତ ଫଳ ଆତ୍ୟନ୍ତିକ ଦୁଃଖ ନିବୃତ୍ତି ( ମୁକ୍ତି ) ଏବଂ ଅଭିଲଷିତ ଫଳ ନିତ୍ୟ ପରମସୁଖସ୍ୱରୂପ ଶ୍ରୀକୃଷ୍ଣ-ଚରଣାରବିନ୍ଦ ପ୍ରାପ୍ତି ଏହିହେତୁ ଶ୍ରୀକୃଷ୍ଣଭକ୍ତିର ଅଭିଲଷିତ ଫଳ ତୁଳନାରେ କର୍ମ, ଯୋଗ ଓ ଜ୍ଞାନର ଅଭିଲଷିତ ଫଳମାନେ ତୁଚ୍ଛ । ଅତଏବ ଶ୍ରୀକୃଷ୍ଣଭକ୍ତିହିଁ ଜୀବର ଏକମାତ୍ର ଅଭିଧେୟ । ୧୪।୧୫ ।

ତଥାହି (ଭାଃ ୧।୫।୧୨)—

ନୈଷ୍କର୍ମ୍ମ୍ୟମପ୍ୟଚ୍ୟୁତଭାବବର୍ଜ୍ଜିତଂ,
ନ ଶୋଭତେ ଜ୍ଞାନମଲଂ ନିରଞ୍ଜନମ୍ ।
କୁତଃ ପୁନଃ ଶଶ୍ୱଦଭଦ୍ରମୀଶ୍ୱରେ,
ନ ଚାର୍ପିତଂ କର୍ମ୍ମ ଯଦପ୍ୟକାରଣମ୍ । ୪ ।

ତଥାହି ତତ୍ରୈବ (୨।୪।୧୭)—

ତପସ୍ୱିନୋ ଦାନପରା ଯଶସ୍ୱିନୋ,
ମନସ୍ୱିନୋ ମନ୍ତ୍ରବିଦଃ ସୁମଙ୍ଗଳାଃ ।
କ୍ଷେମଂ ନ ବିନ୍ଦନ୍ତି ବିନା ଯଦର୍ପଣଂ,
ତସ୍ମୈ ସୁଭଦ୍ରଶ୍ରବସେ ନମୋ ନମଃ । ୫ ।

କେବଳ ଜ୍ଞାନମୁକ୍ତି ହେତେ ନାରେ ଭକ୍ତି ବିନେ ।
କୃଷ୍ଣୋନ୍ମୁଖେ ସେଇ ମୁକ୍ତି ହୟ
ବିନା-ଜ୍ଞାନେ । ୧୭

ତଥାହି ତତ୍ରୈବ (୧୦।୧୪।୪)

ଶ୍ରେୟଃସୃତିଂ ଭକ୍ତିମୁଦସ୍ୟ ତେ ବିଭୋ,
କ୍ଲିଶ୍ୟନ୍ତି ଯେ କେବଳବୋଧଲବ୍ଧୟେ ।
ତେଷାମସୌ କ୍ଲେଶଳ ଏବ ଶିଷ୍ୟତେ,
ନାନ୍ୟଦ୍ୟଥା ସ୍ଥୂଳତୁଷାବଘାତିନାମ୍ । ୬ ।

ନିରଞ୍ଜନଂ—ଉପାଧିଶୂନ୍ୟଂ ଜ୍ଞାନଂ ନୈଷ୍କର୍ମ୍ମ୍ୟଂ ଅପି ଅଚ୍ୟୁତଭାବବର୍ଜ୍ଜିତଂ—ଅଚ୍ୟୁତେ ଭାବଃ-ଭକ୍ତିଃ ତଦ୍‌ବର୍ଜ୍ଜିତଂ ଚେତ୍, ଅଲଂ—ଅତ୍ୟର୍ଥଂ ନ ଶୋଭତେ, (ସମ୍ୟକ୍ ପାରେଷାପୁ ନ କଲୁତେ ତଦା) ଶଶ୍ୱତ୍—ସାଧନକାଲେ ଫଳକାଲେ ଚ ଅଭଦ୍ରଂ—ଦୁଃଖରୂପଂ ଯତ୍‌କାମ୍ୟଂ ଯଦପି ଅକାରଣଂ ଅକାମ୍ୟଂ, କର୍ମ ଈଶ୍ୱରେ ନ ଅର୍ପିତଂ ଚେତ୍ କୁତଃ ପୁନଃ ଶୋଭତେ ।୪ର୍ଥ ଶ୍ଳୋକ

ତପସ୍ୱିନଃ ଦାନପରାଃ ଯଶସ୍ୱିନଃ ମନସ୍ୱିନଃ ମନ୍ତ୍ରବିଦଃ ସୁମଙ୍ଗଳାଃ (ଚ ପୁରୁଷାଃ) ଯଦର୍ପଣଂ ବିନା କ୍ଷେମଂ ନ ବିନ୍ଦନ୍ତି, ସୁଭଦ୍ରଶ୍ରବସେ ତସ୍ମୈ ନମଃ ନମଃ । ୫ମ ଶ୍ଳୋକ ।

ହେ ବିଭୋ ! ଶ୍ରେୟଃ ସୃତିଂ—ଶ୍ରେୟସାଂ—ଅଭ୍ୟୁଦୟାପବର୍ଗ ଲକ୍ଷଣାନାଂ ଧର୍ମାର୍ଥକାମ ମୋକ୍ଷାଣାଂ ବା ସୃତିଃ—ଷରଣଂ ଯସ୍ୟାଃ ତାଂ, ତେ-ତବ ଭକ୍ତିଂ ଉଦସ୍ୟ—ତ୍ୟକ୍ତ୍ୱା ଯେ—ଜନାଃ କେବଳ ବୋଧଲବ୍ଧୟେ—ଜ୍ଞାନମାତ୍ର ପ୍ରାପ୍ତ୍ୟର୍ଥଂ କ୍ଲିଶ୍ୟନ୍ତି – ଶାସ୍ତ୍ରାଭ୍ୟାସାଦି କ୍ଳେଶଂ କୁର୍ବନ୍ତି, ସ୍ଥୂଳତୁଷାବଘାତିନାଂ—ଅଳ୍ପପ୍ରମାଣଂ ଧାନ୍ୟ ପରିତ୍ୟଜ୍ୟ ଅନ୍ତଃସାରହୀନାନ୍ ସ୍ଥୂଳଧାନ୍ୟାଭାସାନ୍ ତୁଷାନ୍, ଅବଘ୍ନତାଂ, ଯଥା (ତଥା) ଅସୌ—ଶାସ୍ତ୍ରାଭ୍ୟାସାଦିଜନିତଃ, କ୍ଳେଶଳଃ – କ୍ଳେଶ ଏବ ଅବଶିଷ୍ୟତେ ନ ଅନ୍ୟତ୍ ଜ୍ଞାନଂ ତୁ ନୈବ ଭବତୀତ୍ୟର୍ଥଃ । ୬ଷ୍ଠ ଶ୍ଳୋକ ।

ଶ୍ରୀ ନାରଦମୁନି ଶ୍ରୀବ୍ୟାସଦେବଙ୍କୁ କହୁଅଛନ୍ତି—ଶୁଭାଶୁଭ କର୍ମଲେଶରହିତ ଜୀବର ବ୍ରହ୍ମଙ୍କ ସହିତ ଏକାକାର ଜ୍ଞାନ ନୈଷ୍କର୍ମ୍ୟ, ଏହି ଜ୍ଞାନଦ୍ୱାରା ଅବିଦ୍ୟାଖ୍ୟ ଉପାଧିର ନିବର୍ତ୍ତନ ହୁଏ ବୋଲି ଏହା ନିରଞ୍ଜନ । ଏପ୍ରକାର ଜ୍ଞାନ ଯଦି ଶ୍ରୀଭଗବାନଙ୍କର ଭକ୍ତିବର୍ଜ୍ଜିତ ହୁଏ, ତାହା ଅକାରଣ—ଅର୍ଥାତ୍ ତଦ୍ୱାରା ଶ୍ରୀଭଗବତ୍ ସାକ୍ଷାତ୍କାର ଲାଭ ହୁଏ ନାହିଁ, ଭଗବଦ୍‌ଭକ୍ତିହୀନ ନୈଷ୍କର୍ମ୍ୟ ନିରଞ୍ଜନ ଜ୍ଞାନର ଯଦି ଏହି ଦଶା ହୁଏ, ତେବେ ଶ୍ରୀଭଗବତ୍ ଚରଣରେ ଅନର୍ପିତ—ଅର୍ଥାତ୍ ଭକ୍ତିଶୂନ୍ୟ ସାଧନକାଳରେ ଓ ଫଳକାଳରେ ଦୁଃଖପ୍ରଦ କାମ୍ୟ ଓ ଅକାମ୍ୟ କର୍ମମାନ ଯେ ଅକାରଣ, ସେଥିରେ ଅଉ କି କଥା । ୪ର୍ଥ ଶ୍ଳୋକାର୍ଥ ।

ଶ୍ରୀଶୁକଦେବ ଶ୍ରୀପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି—ତପସ୍ୱୀ, ଦାନଶୀଳ, ଯଶସ୍ୱୀ, ଯୋଗୀ, ଜପଶୀଳ ଓ ସଦାଚାରସମ୍ପନ୍ନ ଯାହାଙ୍କଠାରେ ନିଜ ତପସ୍ୟାଦି କର୍ମ ଅର୍ପଣ ନ କଲେ ମଙ୍ଗଳପ୍ରାପ୍ତ ହୁଅନ୍ତି ନାହିଁ, ସେହି ମଙ୍ଗଳଯଶସ୍ୱୀଙ୍କର (ଶ୍ରୀକୃଷ୍ଣଙ୍କର) ଚରଣାରବିନ୍ଦରେ ମୋର ପୁନଃ ପୁନଃ ପ୍ରଣାମ । ୫ମ ଶ୍ଳୋକାର୍ଥ ।

ଶ୍ରୀବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ହେ ପ୍ରଭୋ ! ଯେଉଁ ବ୍ୟକ୍ତିମାନେ ଧାନ ଛାଡି ସାର ଲାଭାର୍ଥ ଅନ୍ତଃସାରଶୂନ୍ୟ ଧାନତୁଷ ପ୍ରଚୁରମାନ ଅଗାଡ଼ିକୁ କୁଟନ୍ତି ସେମାନଙ୍କର

ତଥାହି ଶ୍ରୀଗୀତାୟାମ୍ (୭।୧୪)—

ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ
ତରନ୍ତି ତେ । ୬ ।

କୃଷ୍ଣନିତ୍ୟଦାସ ଜୀବ ତାହା ଭୁଲିଗେଲ ।
ସେଇ ଦୋଷେ ମାୟା ତାର ଗଳାୟ ବାନ୍ଧିଲ ।
ତାତେ କୃଷ୍ଣ ଭଜେ, କରେ ଗୁରୁର ସେବନ ।
ମାୟାଜାଲ ଛୁଟେ, ପାୟ କୃଷ୍ଣେର ଚରଣ । ୧୮ ।

ଚାରିବର୍ଣ୍ଣାଶ୍ରମୀ ଯଦି କୃଷ୍ଣ ନାହି ଭଜେ ।
ସ୍ୱକର୍ମ କରିତେ ସେଇ ରୌରବେ ପଡ଼ି ମଜେ ।

ତଥାହି (ଭାଃ ୧୧।୫।୨—୩) –

ମୁଖବାହୂରୁପାଦେଭ୍ୟଃ ପୁରୁଷସ୍ୟାଶ୍ରମୈଃ ସହ ।
ଚତ୍ୱାରୋ ଜଜ୍ଞିରେ ବର୍ଣ୍ଣା ଗୁଣୈର୍ବିପ୍ରାଦୟଃ
ପୃଥକ୍ । ୮ ।

ଯ ଏଷାଂ ପୁରୁଷଂ ସାକ୍ଷାଦାତ୍ମପ୍ରଭବମୀଶ୍ୱରମ୍ ।
ନ ଭଜନ୍ତ୍ୟବଜାନନ୍ତି ସ୍ଥାନାଦ୍ ଭ୍ରଷ୍ଟାଃ
ପତନ୍ତ୍ୟଧଃ । ୯ ।

ପୁରୁଷସ୍ୟ – ଭଗବତଃ ମୁଖବାହୂରୁପାଦେଭ୍ୟଃ ଗୁଣୈଃ—ସତ୍ତ୍ୱାଦିଭିଃ ଆଶ୍ରମୈଃ—ବ୍ରହ୍ମଚର୍ଯ୍ୟାଦିଭିଃ ସହ ପୃଥକ ବିପ୍ରାଦୟ ଚତ୍ୱାରଃ ବର୍ଣ୍ଣାଃ ଜଜ୍ଞିରେ; ଏଷାଂ (ମଧ୍ୟେ) ଯେ-ଜନାଃ ସାକ୍ଷାତ୍ ଆତ୍ମପ୍ରଭବଂ ଈଶ୍ୱରଂ ନ ଭଜନ୍ତି—ଅବଜାନନ୍ତି ତେ ସ୍ଥାନାତ୍ ଭ୍ରଷ୍ଟାଃ (ସନ୍ତଃ) ଅଧଃପତନ୍ତି । ୮।୯। ଶ୍ଳୋକ ।

ଅପିଚ କୃଷ୍ଣୋନ୍ମୁଖେ ଇତି । ବି. ଚ. .

ଅପିଚ କୃଷ୍ଣ ଇତିଦ୍ୱାଭ୍ୟାଂ; କୃଷ୍ଣନିତ୍ୟଦାସ ଇତି ଜୀବସ୍ୟତତ୍ତ୍ୱଂ ଅସ୍ମାଭିଃ ସ୍ୱରୂପତଃ କୃଷ୍ଣଭକ୍ତେନ ଜୀବେନ ଭକ୍ତିରେବ କର୍ତ୍ତବ୍ୟା ଭକ୍ତତ୍ୱାତ୍ ଅତଃ ଭକ୍ତିରେବ ଅଭିଧେୟା ।୧୮। ବି.ଚ.

ଅପିଚ ଗୃହ ଇତି । ୧୯ । ବି, ଚ.

ଯେପରି ସାରଲାଭ ହୁଏ ନାହିଁ, କେବଳ କ୍ଲେଶମାତ୍ର ଲାଭହୁଏ, ସେହିପରି ସମସ୍ତ ମଙ୍ଗଳମାନଙ୍କର ଉତ୍ସସ୍ୱରୂପ ଆପଣଙ୍କ ଭକ୍ତି ପରିତ୍ୟାଗ କରି ଯେଉଁମାନେ ଅଭେଦ ବ୍ରହ୍ମଜ୍ଞାନ ଲାଭ ସକାଶେ ଶାସ୍ତ୍ରାଭ୍ୟାସାଦିରେ ଶ୍ରମ କରନ୍ତି ସେମାନଙ୍କର ଶ୍ରମ ଉକ୍ତ ଅଜ୍ଞାନ ଲୁବ୍ଧ ବ୍ୟକ୍ତିମାନଙ୍କ ପରି କ୍ଲେଶଦ ମାତ୍ର ହୁଏ ଅର୍ଥାତ୍ ମୁକ୍ତିଲାଭ ହୁଏ ନାହିଁ । ୬ଷ୍ଠ ଶ୍ଳୋକାର୍ଥ ।

କେବଳ ଜ୍ଞାନର ଲକ୍ଷ୍ୟ ବସ୍ତୁ ଯେ ମୁକ୍ତି ତାହା ଭକ୍ତିଦ୍ୱାରା ବିନା ଜ୍ଞାନସାଧନରେ ଅନାୟାସରେ ଲାଭହୁଏ । ୧୬ ।

୭ମ ଶ୍ଳୋକର ଅନ୍ୱୟ—ମଧ୍ୟଖଣ୍ଡ ୨୦ଶ ପରିଚ୍ଛେଦ ୧୫ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନ୍ ଅର୍ଜ୍ଜୁନଙ୍କୁ କହୁଅଛନ୍ତି—ମୋର (ପରମେଶ୍ୱରଙ୍କର) ଏହି ଅତ୍ୟଦ୍ଭୁତା ତ୍ରିଗୁଣାତ୍ମିକା ଶକ୍ତି (ମାୟା) ଦୁସ୍ତରଣୀୟା ଏହା ପ୍ରସିଦ୍ଧ; ତଥାପି ଯେଉଁ ବ୍ୟକ୍ତି ଐକାନ୍ତିକୀ ଭକ୍ତିପୂର୍ବକ ମୋତେ ଭଜେ ସେ ଏହି ଦୁସ୍ତରମାୟାକୁ ପାରହୁଏ ଅର୍ଥାତ୍ ମୋତେ ଜାଣିପାରେ । ୭ମ ଶ୍ଳୋକାର୍ଥ ।

ଜୀବର ସ୍ୱରୂପ ନିତ୍ୟ କୃଷ୍ଣଦାସ ଅତଏବ ଜୀବ ସ୍ୱରୂପତଃ କୃଷ୍ଣଭକ୍ତ ଏହିହେତୁ ଜୀବର କର୍ତ୍ତବ୍ୟ ଶ୍ରୀକୃଷ୍ଣଭଜନ ଏଣୁ ଶ୍ରୀକୃଷ୍ଣଭଜନହିଁ ଜୀବର ଅଭିଧେୟ । ୧୭ ।

ଜୀବ ସ୍ୱରୂପତଃ ଶ୍ରୀକୃଷ୍ଣଭକ୍ତଅଟେ; ଏଣୁ ବ୍ରାହ୍ମଣ,କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ବର୍ଣ୍ଣଗତ ଓ ଗୃହସ୍ଥ ବ୍ରହ୍ମଚାରୀ ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ଆଶ୍ରମଗତ ହୋଇ ଯଦି ବିଧିପୂର୍ବକ ଉକ୍ତ ବର୍ଣ୍ଣାଶ୍ରମଗତ ସ୍ୱଧର୍ମ ପାଳନ କରନ୍ତି; କିନ୍ତୁ କୃଷ୍ଣଭଜନ କରନ୍ତି ନାହିଁ ତାହାହେଲେ ସେମାନେ ମାୟାହିତରୁ ଉଦ୍ଧାର ପାଆନ୍ତି ନାହିଁ ଅର୍ଥାତ୍ ଜନ୍ମମରଣ ପ୍ରବାହ ମଧ୍ୟରେ ଭ୍ରମଣ କରନ୍ତି । ୧୮ ।

ଶ୍ରୀଯୋଗେନ୍ଦ୍ର ଜନକମହାରାଜଙ୍କୁ କହୁଅଛନ୍ତି—ଶ୍ରୀଭଗବାନଙ୍କର ମୁଖ, ବାହୁ, ଉରୁ ଓ ଚରଣରୁ ଗୁଣର ତାରତମ୍ୟାନୁସାରେ ଚାରି ଆଶ୍ରମସହ ବ୍ରାହ୍ମଣାଦି ଚାରି ବର୍ଣ୍ଣ ଜନ୍ମିଅଛନ୍ତି ।

ଜ୍ଞାନୀ ଜୀବନ୍ମୁକ୍ତି ଦଶା ପାଇନୁ କରି ମାନେ ।
ବସ୍ତୁତ ବୁଦ୍ଧି ଶୁଦ୍ଧ ନହେ ଭକ୍ତି-ବିନେ । ୨୦ ।
ତଥାହି (ଭାଃ ୧୦।୨।୨୭)
ଯେଽନ୍ୟେଽରବିନ୍ଦାକ୍ଷ ବିମୁକ୍ତମାନିନ-
ସ୍ତ୍ୱଯ୍ୟସ୍ତଭାବାଦବିଶୁଦ୍ଧବୁଦ୍ଧୟଃ ।
ଆରୁହ୍ୟ କୃଚ୍ଛ୍ରେଣ ପରଂ ପଦଂ ତତଃ,
ପତନ୍ତ୍ୟଧୋଽନାଦୃତଯୁଷ୍ମଦଙ୍ଘ୍ରୟଃ । ୧୦ ।
କୃଷ୍ଣ ସୂର୍ଯ୍ୟସମ, ମାୟା ହୟ ଅନ୍ଧକାର ।
ଯାହାଁ କୃଷ୍ଣ, ତାହାଁ ନାହି ମାୟାର ଅଧିକାର ।୨୧।

ହେ ଅରବିନ୍ଦାକ୍ଷ ! ଅନ୍ୟେ ଯେ ବିମୁକ୍ତମାନିନଃ—ବିମୁକ୍ତାଃ ବୟଂ ଇତି ମନ୍ୟମାନାଃ ହ୍ୱୟି ଅସ୍ତଭାବାତ୍-ଭକ୍ତେଃ ଅଭାବାତ୍, ଅବିଶୁଦ୍ଧବୁଦ୍ଧୟଃ କୃଚ୍ଛ୍ରେଣ-ବହୁଜନ୍ମତପସା, ପରଂ ପଦଂ ମୋକ୍ଷସନ୍ନିହିତଂ ସତ୍କୁଳ ତପଃ—ଶ୍ରୁତ୍ୟାଦି, ଆରୁହ୍ୟ ନାଦୃତ ଯୁଷ୍ମଦଂଘ୍ରୟଃ—ନ ଆଦୃତଃ ଯୁଷ୍ମଦଂଘ୍ରିର୍ୟୈଃ ତେ ତାଦୃଶାଃ ସନ୍ତଃ, ତତଃ ପତନ୍ତି—ବିଘ୍ନୈଃ ଅଭିଭୂୟନ୍ତେ । ୧୦ମ ଶ୍ଳୋକ ।

ଅପିଚ ଜ୍ଞାନୀଇତ, ଭକ୍ତିଂ ବିନା ନ ଜ୍ଞାନିନଃ ବୁଦ୍ଧିଶୁଦ୍ଧିଃ ଅତ ଭକ୍ତିରେବ ଅଭିଧେୟ । ଇତି ଭାବଃ । ବି. ଚ. ।

ତଦେବ ଉପସଂହରତି କୃଷ୍ଣ ଇତି ଦ୍ୱାଭ୍ୟାଂ । ଅୟମର୍ଥଃ-ମାୟାତୁ ଶ୍ରୀକୃଷ୍ଣନିକଟଂ ଗନ୍ତୁଂ ନଶକ୍ନୋତି, ତଦାଶ୍ରୟେଣୈବ ମାୟାବନ୍ଧାତ୍ ମୁଚ୍ୟତେ ଅତସ୍ତଦ୍ଭକ୍ତିରେବାଭିଧେୟା ଇତି ଭାବଃ । ବି, ଚ, ।

---

ଯେଉଁ ବ୍ୟକ୍ତିମାନେ ଅଜ୍ଞତାପ୍ରଯୁକ୍ତ କିମ୍ବା ଜାଣି ଶୁଣି ନିଜ ପିତା ପରମପୁରୁଷ ଶ୍ରୀଭଗବାନଙ୍କୁ ଭଜନ କରନ୍ତି ନାହିଁ, ସେମାନେ ସ୍ୱସ୍ୱବର୍ଣ୍ଣାଶ୍ରମରୁ ଅଧଃପତିତ ହୁଅନ୍ତି, ଅର୍ଥାତ୍ ଯେଉଁମାନେ ଅଜ୍ଞତାପ୍ରଯୁକ୍ତ ଭଗବାନଙ୍କୁ ଭଜନ୍ତି ନାହିଁ, ସେମାନେ ନରକଗାମୀ ହୁଅନ୍ତି । ଯେଉଁମାନେ ଜାଣି ଶୁଣି ଭଜନ୍ତି ନାହିଁ ସେପ୍ରକାର କୃତଘ୍ନମାନେ ମହାନରକରେ ପଡ଼ନ୍ତି । ୯ମ ଶ୍ଳୋକାର୍ଥ ।

ଯେଉଁ ଜ୍ଞାନମାର୍ଗାଶ୍ରିତ ବ୍ୟକ୍ତିମାନେ ଭଗବଦ୍ ଭକ୍ତିକୁ ଅନାଦର କରି ଜ୍ଞାନଦ୍ୱାରା ମୁକ୍ତିଲାଭର ବାସନାରେ ଜ୍ଞାନ ଆଲୋଚନାପୂର୍ବକ ନିଜକୁ ଜୀବିତ ଅବସ୍ଥାରେ ମୁକ୍ତ ବୋଲି ମନେ କରନ୍ତି, ତାହା ସେମାନଙ୍କର ଭ୍ରମ, କାରଣ ଦାମ୍ଭିକତାପ୍ରଯୁକ୍ତ ସେମାନଙ୍କର ବୁଦ୍ଧି ମଳିନ, ଅତଏବ ସେମାନେ ବାସ୍ତବ ମୁକ୍ତାବସ୍ଥା ପ୍ରାପ୍ତ ହୁଅନ୍ତି ନାହିଁ, କେବଳ ଶ୍ରୀଭଗବଦ୍‌ଭକ୍ତିଦ୍ୱାରାହିଁ ବୁଦ୍ଧି ନିର୍ମଳ ହୁଏ ଏବଂ ବୁଦ୍ଧି ନିର୍ମଳ ହେଲେ ମୁକ୍ତିଲାଭ ହୁଏ । ୨୦ ।

ଶ୍ରୀକୃଷ୍ଣଙ୍କ ପ୍ରତି ଦେବସ୍ତୁତି—ହେ ପଦ୍ମପଲାଶଲୋଚନ ଶ୍ରୀକୃଷ୍ଣ ! ଆପଣଙ୍କ ଠାରେ ଭକ୍ତି ଅଭାବରୁ ଯେଉଁମାନେ ଅଶୁଦ୍ଧବୁଦ୍ଧି ଅଥଚ ଆପଣାକୁ ଜୀବନ୍ମୁକ୍ତ ବୋଲି ଅଭିମାନ କରନ୍ତି, ସେମାନେ ବହୁଜନ୍ମର ଆୟାସଲଭ୍ୟ ମୁକ୍ତିର ସନ୍ନିକଟସ୍ଥପଦ ଲାଭ କରିଥିଲେ ସୁଦ୍ଧା ଆପଣଙ୍କର—ଶ୍ରୀଚରଣାରବିନ୍ଦ ଅନାଦର ଦୋଷରୁ ଅଧଃପତିତ ହୁଅନ୍ତି । ୧୦ମ ଶ୍ଳୋକାର୍ଥ ।

ଭକ୍ତି ବ୍ୟତୀତ କି ପ୍ରକାରେ ବୁଦ୍ଧି ନିର୍ମଳ ହୁଏ ନାହିଁ ତାହା ଉଦାହରଣଦ୍ୱାରା ବୁଝାଉ-ଅଛନ୍ତି । ଯେପରି ସୂର୍ଯ୍ୟରଶ୍ମି ପ୍ରକାଶ ମାତ୍ର ଅନ୍ଧକାର ସ୍ୱତଃ ଦୂରୀଭୂତ ହୁଏ, ସେହିପରି ଶ୍ରୀକୃଷ୍ଣ ନାମ ଉଦୟ ମାତ୍ର ମାୟା ( ବୁଦ୍ଧିର ମାଲିନ୍ୟ ) ସ୍ୱତଃ ଦୂରୀଭୂତ ହୁଏ । ୨୧ ।

ତଥାହି (ଭାଃ ୨।୭।୪୬) —
ବିଲଜ୍ଜମାନୟା ଯସ୍ୟ ସ୍ଥାତୁମୀକ୍ଷାପଥେଽମୁୟା ।
ବିମୋହିତା ବିକତ୍ଥନ୍ତେ ମମାହମିତି ଦୁର୍ଦ୍ଧିୟଃ ।
'କୃଷ୍ଣ ! ତୋମାର ହଙ' ଯଦି ବୋଲେ ଏକବାର !
ମାୟାବନ୍ଧ ହୈତେ କୃଷ୍ଣ ତାରେ କରେ ପାର ॥
ତଥାହି ହରିଭକ୍ତିବିଲାସେ (୧୧।୩୯୨)
ରାମାୟଣବଚନମ୍ ।
ସକୃଦେବ ପ୍ରପନ୍ନୋ ଯସ୍ତବାସ୍ମୀତି ଚ ଯାଚତେ ।
ଅଭୟଂ ସର୍ବଦା ତସ୍ମୈ ଦଦାମ୍ୟେତଦ୍‌ବ୍ରତଂ ମମ । ୧୨ ।
ଭୁକ୍ତି-ମୁକ୍ତି-ସିଦ୍ଧିକାମୀ ସୁବୁଦ୍ଧି ଯଦି ହୟ ।
ଗାଢ଼ଭକ୍ତିଯୋଗେ ତବେ କୃଷ୍ଣେରେ ଭଜୟ ।
ତଥାହି (ଭାଃ ୨।୩।୧୦)—
ଅକାମଃ ସର୍ବକାମୋ ବା ମୋକ୍ଷକାମ ଉଦାରଧୀଃ ।
ତୀବ୍ରେଣ ଭକ୍ତିଯୋଗେନ ଯଜେତ ପୁରୁଷଂ ପରମ୍ । ୧୩ ।

ଯସ୍ୟ ଈକ୍ଷାପଥେ ସ୍ଥାତୁଂ ବିଲଜ୍ଜମାନୟା ଅମୁୟା—ମାୟୟା ବିମୋହିତାଃ (ଅସ୍ମଦାଦୟଃ) ଦୁର୍ଦ୍ଧିୟଃ 'ମମ ଅହଂ' ଇତି ବିକତ୍ଥନ୍ତେ ଚ । ୧୧ଶ ଶ୍ଲୋକ ।

ଯଃ ପ୍ରପନ୍ନଃ—ଶରଣଂ ଗତଃ ସନ୍ ତବ ଅସ୍ମି—ଭବାମି ଇତି ସକୃଦେବ ( ଅପି ) ଯାଚତେ ସର୍ବଦା ତସ୍ମୈ ଅଭୟଂ ଦଦାମି, ମମ ଏତତ୍ ବ୍ରତଂ । ୧୨ଶ ଶ୍ଲୋକ ।

ସର୍ବକାମଃ ମୋକ୍ଷକାମଃ ଅକାମଃ— ଏକାନ୍ତ ଭକ୍ତଃ ବା ଉଦାରଧୀଃ ପୁରୁଷଃ, ତୀବ୍ରେଣ-ଦୃଢ଼େଣ ସ୍ୱଭାବତଃ ଯଦ୍‌ବା ସର୍ବେଷ ସାଧ୍ୟେଷୁ ପରମସାଧକତମେନ, ଭକ୍ତିଯୋଗେନ ପରଂ ପୁରୁଷଂ ଯଜେତ । ୧୩ଶ ଶ୍ଲୋକାର୍ଥ ।

ତଦା କଥଂ ସର୍ବେ ଭକ୍ତ୍ୟା ତଂ ନ ଭଜନ୍ତ ଇତିଚେତ୍ ତତ୍ରାହ 'ସୁକ୍ତି' ଇତି, ଯେଷାଂ ବୁଦ୍ଧିରସ୍ତି ତ ଏବଭକ୍ତ୍ୟା ତଂ ଭଜନ୍ତୀତ୍ୟର୍ଥଃ । ୨୩ । ବି, ଚ,

ଶ୍ରୀବ୍ରହ୍ମା ଶ୍ରୀନାରଦଙ୍କୁ କହୁଅଛନ୍ତି—ଯେଉଁ ଭଗବାନଙ୍କ ଦୃଷ୍ଟିପଥରେ ମାୟା ଅବସ୍ଥାନ କରିବାକୁ ଲଜ୍ଜିତ ହୁଅନ୍ତି, ଦୁର୍ବୁଦ୍ଧି ବ୍ୟକ୍ତିମାନେ ସେହି ମାୟାଦ୍ୱାରା ବିମୋହିତ ହୋଇ 'ମୁଁ' ଓ 'ମୋର' ଏହିପରି ଶ୍ଳାଘା କରନ୍ତି । ୧୧ ଶ ଶ୍ଲୋକାର୍ଥ ।

ଭକ୍ତିର ଅଭିଧେୟ ତତ୍ତ୍ୱର ଉପସଂହାର କରୁଅଛନ୍ତି—ଯେଉଁ ବ୍ୟକ୍ତି ଶ୍ରୀକୃଷ୍ଣଙ୍କୁ ଥରେ ମାତ୍ର ଆତ୍ମନିବେଦନ କରେ ସେ ଶ୍ରୀକୃଷ୍ଣ କୃପାରୁ ମାୟାବନ୍ଧନରୁ ଉଦ୍ଧାର ପାଏ । ୨୨ ।

ଯେଉଁ ବ୍ୟକ୍ତି ମୋର ଶରଣାଗତ ହୋଇ "ମୁଁ ତୁମ୍ଭର" ଏକଥା ଥରେ ମାତ୍ର କହେ ମୁଁ ସର୍ବଦା ତାହାକୁ ଅଭୟଦାନ କରେ ଏହା ମୋହର ବ୍ରତ । ୧୨ଶ ଶ୍ଲୋକାର୍ଥ ।

ଯେଉଁ ବ୍ୟକ୍ତିମାନେ ଭୋଗକାମୀ, ମୁକ୍ତିକାମୀ, ବା ସିଦ୍ଧିକାମୀ, ସେମାନଙ୍କର ଯଦି ସୁବୁଦ୍ଧି ହୁଏ ଅର୍ଥାତ୍ ଶ୍ରୀକୃଷ୍ଣଭଜନହିଁ ସର୍ବପ୍ରକାର କାମନା—ଫଳପ୍ରଦ, ଏହି ବୁଦ୍ଧି ଜାତ ହୁଏ ତେବେ ସେମାନେ ତତ୍ତତ୍ ଫଳ ଆଶାରେ ଗାଢ଼ଭକ୍ତିପୂର୍ବକ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି । ୨୩ ।

ଶ୍ରୀଶୁକଦେବ ଗୋସ୍ୱାମୀ କହୁଅଛନ୍ତି—ଅକାମ ( ଏକାନ୍ତ ଭକ୍ତ ) ପରମପୁରୁଷ ଭଗବାନଙ୍କୁ ଦୃଢ଼ ଭକ୍ତି ଯୋଗରେ ଭଜନ କରନ୍ତି, ସର୍ବକାମୀ-( ନାନାବିଧଫଳାଭିଳାଷୀ ) ଏବଂ ମୋକ୍ଷକାମୀ ( ମୁକ୍ତିଫଳାଭିଳାଷୀ ) ବ୍ୟକ୍ତିମାନେ ଯଦି ସୁବୁଦ୍ଧି ହୁଅନ୍ତି ଅର୍ଥାତ୍ ଭଗବାନ୍ ଏକମାତ୍ର ଭଜନୀୟ ଏହିପ୍ରକାର ବୁଦ୍ଧି ସେମାନଙ୍କର ହୁଏ, ତେବେ ସେମାନେ ତତ୍ତତ୍‌ଫଳଲାଭାର୍ଥ ତୀବ୍ରଭକ୍ତି-ଯୋଗରେ ଶ୍ରୀଭଗବାନଙ୍କୁ ଭଜନ କରନ୍ତି । ୧୩ଶ ଶ୍ଲୋକାର୍ଥ ।

ଅନ୍ୟକାମୀ ଯଦି କରେ କୃଷ୍ଣେର ଭଜନ ।
ନା ମାଗିଲେଓ କୃଷ୍ଣ ତାରେ ଦେନ ସ୍ୱଚରଣ ।
କୃଷ୍ଣ କହେ—ଆମାୟ ଭଜେ, ମାଗେ ବିଷୟସୁଖ ।
ଅମୃତ ଛାଡ଼ି ବିଷ ମାଗେ, ଏଇ ବଡ଼ ମୂର୍ଖ ।
ଆମି ବିଜ୍ଞ, ଏଇ ମୂର୍ଖେ ବିଷୟ କେନେ ଦିବ ?
ସ୍ୱଚରଣାମୃତ ଦିୟା ବିଷୟ ଭୁଲାଇବ । ୨୭ ।

ତଥାହି (ଭାଃ ୫।୧୯।୨୬)—
ସତ୍ୟଂ ଦିଶତ୍ୟର୍ଥିତମର୍ଥିତୋ ନୃଣାଂ,
ନୈବାର୍ଥଦୋ ଯତ୍ ପୁନରର୍ଥିତା ଯତଃ ।
ସ୍ୱୟଂ ବିଧତ୍ତେ ଭଜତାମନିଚ୍ଛତା-
ମିଚ୍ଛାପିଧାନଂ ନିଜପାଦପଲ୍ଲବମ୍ । ୧୪ ।
କାମ ଲାଗି କୃଷ୍ଣ ଭଜେ, ପାୟ କୃଷ୍ଣରସେ ।
କାମ ଛାଡ଼ି ଦାସ ହୈତେ ହୟ ଅଭିଲାଷେ । ୨୭ ।

---

ଯଦ୍‌ବା କାମେନାପି ଭଜତାଂ କୃପୟା ପରମହିତମେବ ବିଧତ୍ତେ ଇତ୍ୟାହ୍ନଃ ସତ୍ୟଂ ଦିଶତୀତି । ଅର୍ଥିତଃ ଅର୍ଥିତଂ ଦଦାତୀତି ସତ୍ୟଂ ପୁନଃ ଅର୍ଥିତୋ ନୈବ ଦଦାତି କୁତଃ, ଯତ୍ ଅର୍ଥଦଃ ସଃ ବିଷୟାସ୍ୱାଦନାର୍ଥଃ, ତର୍ହି କିଂ ଦଦାତି ଇତ୍ୟପେକ୍ଷାୟାମାହ୍ନଃ ନିଜପାଦପଲ୍ଲବମନିଚ୍ଛତାମପି ତେଷାଂ ସ୍ୱୟଂ ବିଧତ୍ତେ, ଯତଃ କୋଽପି କାମୋ ନୋଦେତି, ଅତଏବ ଅନର୍ଥପ୍ରାର୍ଥନେ ପରମାର୍ଥଦ ଏବ ଏବଂ ପ୍ରକୃତିର୍ଭଗବାନ୍ ଯଥା ମାତା ବାଲାନଂ ମୃଦମପହାୟାପ୍ୟରୁଦତାମନିଚ୍ଛତାଂ ଶର୍କରାଂ ଦଦାତି ଜ୍ଞାତରସୋ ହି ବାଲୋ ମୃଦମପହାୟ ଶର୍କରାମ୍ୟାମନୁରଜ୍ୟତେ, ତଦ୍‌ବଦିତିଭାବଃ । ୧୪ଶ ଶ୍ଳୋକ ।

ନନୁ ତଥା ସତ୍ୟପି ଅନ୍ୟକାମିନାଂ ଭକ୍ତାନାଂ ତତ୍ତଦ୍‌ବାସନା ତୁ ତଥୈବାସ୍ତୀତି ଚେନ୍ନେତ୍ୟାହ 'କାମ' ଇତି । ତତ୍ତଦ୍‌ବାସନା କୃଷ୍ଣଦାସତ୍ୱେ ପର୍ଯ୍ୟବସ୍ୟତି ଇତି ନ ତେଷାଂ ଅନ୍ୟ ବାସନାସ୍ତୀତିଭାବଃ । ୨୭ ।

ଭୁକ୍ତିମୁକ୍ତ୍ୟାଦିକାମିନାଂ ଶ୍ରୀକୃଷ୍ଣଭଜନେ ଫଳମାହ 'ଅନ୍ୟ' ଇତି । ତେଷାଂ କୃଷ୍ଣଚରଣ-ପ୍ରାପ୍ତିରେବ ତଦ୍‌ଭଜନଫଳମିତ୍ୟର୍ଥଃ । ବ, ତ ।

ତତ୍ରହେତୁଂ ଦର୍ଶୟତି 'କୃଷ୍ଣ' ଇତି,-ଶ୍ରୀକୃଷ୍ଣଦର୍ଶୈବ ତତ୍ର ହେତୁରିତିଭାବଃ । ବ, ତ,

---

ଭୁକ୍ତିମୁକ୍ତି ଆଦି କାମନାକାରୀମାନେ ତତ୍ତତ୍‌କାମନାର ଫଳଲାଭ ସକାଶେ ଶ୍ରୀକୃଷ୍ଣଙ୍କ ଭଜନା କରନ୍ତି, କିନ୍ତୁ ସର୍ବକାମନାନିବାରକ ଶ୍ରୀକୃଷ୍ଣଙ୍କର ଚରଣାରବିନ୍ଦ ସେମାନେ ପ୍ରାର୍ଥନା କରନ୍ତି ନାହିଁ । ଏପରି ହେଲେ ସୁଦ୍ଧା ଶ୍ରୀକୃଷ୍ଣ କୃପାପୂର୍ବକ ସେମାନଙ୍କର ତତ୍ତତ୍‌କାମନାର ତୁଚ୍ଛଫଳ ପରିବର୍ତ୍ତରେ ତାହାଙ୍କର ଶ୍ରୀଚରଣାରବିନ୍ଦ ଦାନ କରନ୍ତି, ତଦ୍ୱାରା ସକାମଭକ୍ତମାନଙ୍କର ସର୍ବବିଧ କାମନା ନିଃଶେଷିତ ହୁଏ । ୨୪।୨୫।୨୭ ।

ଶ୍ରୀକୃଷ୍ଣଙ୍କ ସ୍ତୁତିପୂର୍ବକ ଦେବତାମାନେ କହୁଅଛନ୍ତି—ହେ ଭଗବନ୍ ! ଆପଣ ଫଳକାମ ବ୍ୟକ୍ତିମାନଙ୍କର କାମ୍ୟଫଳ ଦାନ କରନ୍ତି ଏହା ସତ୍ୟ, କିନ୍ତୁ ତାହା ଲାଭ କରି କାମନାଶୀଳ ବ୍ୟକ୍ତିର ପ୍ରାର୍ଥନା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୁଏ ବୋଲି ଆପଣ ଅର୍ଥଦହେତୁ ସେହି ଅନର୍ଥ କାମ୍ୟଫଳ ଦାନ ନ କରି ସେମାନେ ପ୍ରାର୍ଥନା ନ କଲେ ସୁଦ୍ଧା ସର୍ବକାମନାର ଆଚ୍ଛାଦକ ଆପଣଙ୍କର ଶ୍ରୀଚରଣକମଳ କୃପାପୂର୍ବକ ସ୍ୱୟଂ ଦାନ କରନ୍ତି । ୧୪ଶ ଶ୍ଳୋକାର୍ଥ ।

ସକାମଭକ୍ତମାନେ ଶ୍ରୀକୃଷ୍ଣଙ୍କର ଚରଣାରବିନ୍ଦ ଲାଭ କଲେ ସୁଦ୍ଧା ସେମାନଙ୍କର କାମନା ସେହିପରି ରହିଥାଏ । ଏପରି ତର୍କର ମୀମାଂସା କରୁଅଛନ୍ତି—ଫଳ ଅଭିଳାଷରେ ଶ୍ରୀକୃଷ୍ଣଙ୍କ ଭଜନା କରି ତାହାଙ୍କର ଶ୍ରୀଚରଣାରବିନ୍ଦର ମଧୁ ଲାଭ ହେଲେ ଭକ୍ତର ଆଉ କାମନାରେ ଆସକ୍ତି ରହେ ନାହିଁ, ଶ୍ରୀକୃଷ୍ଣଙ୍କ ସେବାରେହିଁ ସେ କାମନା ପର୍ଯ୍ୟବସିତ ହୁଏ । ଯେପରି କୌଣସି ବାଳକ

ତଥାହି ହରିଭକ୍ତିସୁଧୋଦୟେ (୭।୨୮)—
ସ୍ଥାନାଭିଲାଷୀ ତପସି ସ୍ଥିତୋଽହଂ,
ତ୍ୱାଂ ପ୍ରାପ୍ତବାନ୍ ଦେବମୁନୀନ୍ଦ୍ରଗୁହ୍ୟମ୍ ।
କାଚଂ ବିଚିନ୍ୱନ୍ନିବ ଦିବ୍ୟରତ୍ନଂ,
ସ୍ୱାମିନ୍ କୃତାର୍ଥୋଽସ୍ମି ବରଂ ନ ଯାଚେ ।
ସଂସାର ଭ୍ରମିତେ କୋନଭାଗ୍ୟେ କେହୋ ତରେ ।
ନଦୀର ପ୍ରବାହେ ଯେନ କାଷ୍ଠ ଲାଗେ ତୀରେ ॥
ତଥାହି (ଭାଃ ୧୦।୩୮।୫)—
ମୈବଂ ମମାଧମସ୍ୟାପି ସ୍ୟାଦେବାଚ୍ୟୁତ-
ଦର୍ଶନମ୍ ।
ହ୍ରିୟମାଣଃ କାଳନଦ୍ୟାଃ କ୍ୱଚିତ୍ତରତି
କଶ୍ଚନ । ୧୬ ।
କୋନ ଭାଗ୍ୟେ କାରୋ ସଂସାର କ୍ଷୟୋନ୍ମୁଖ ହୟ ।
ସାଧୁ ସଙ୍ଗେ ତବେ କୃଷ୍ଣେ ରତି ଉପଜୟ । ୨୯ ।
ତଥାହି (ଭାଃ ୧୦।୫୧।୫୪)—
ଭବାପବର୍ଗୋ ଭ୍ରମତୋ ଯଦା ଭବେତ୍,
ଜନସ୍ୟ ତର୍ହ୍ୟଚ୍ୟୁତ ସତ୍ସମାଗମଃ ।
ସତ୍ସଙ୍ଗମୋ ଯର୍ହି ତଦୈବ ସଦ୍ଗତୌ,
ପରାବରେଶେ ତ୍ୱୟି ଜାୟତେ ରତିଃ । ୧୭ ।

ସ୍ଥାନାଭିଲାଷୀ ତପସି ସ୍ଥିତଃ ଅହଂ ଦେବମୁନୀନ୍ଦ୍ରଗୁହ୍ୟଂ ତ୍ୱାଂ କାଚଂ ବିଚିନ୍ୱନ୍ ଦିବ୍ୟରତ୍ନମିବ ସମ୍ପ୍ରାପ୍ତବାନ୍ । ହେ ସ୍ୱାମିନ୍ ! କୃତାର୍ଥଃ ଅସ୍ମି, ବରଂ ନ ଯାଚେ । ୧୫ଶ ଶ୍ଲୋକଃ ।

ମୈବଂ ଅଧମସ୍ୟ-ନୀଚସ୍ୟାପି ମମ ଅଚ୍ୟୁତଦର୍ଶନଂ ସ୍ୟାଦେବ, ଯତଃ କାଳନଦ୍ୟା ହ୍ରିୟମାଣଃ କଶ୍ଚନ କ୍ୱଚିତ୍ତ ତରତି । ୧୬ଶ ଶ୍ଲୋକଃ ।

କେନାପି ଭାଗ୍ୟେନ କଦାଚିତ୍ତ କସ୍ୟ ତଦ୍ଭକ୍ତୌ ରୁଚିର୍ଜାୟତେ ଇତ୍ୟାହ 'ସଂସାର' ଇତି । ସଂସାର ଭ୍ରମିତେ-କସ୍ମିନ୍ ଜନ୍ମନି, ତରେ-ସଂସାରତରଣୋପାୟଭୂତ ଭକ୍ତୌ ରୁଚିର୍ଜାୟତେ ଇତ୍ୟର୍ଥଃ । ୨୮ । ବ, ଚ ।

ମାଟି ଖାଇବା ସକାଶେ ମାକୁ ପ୍ରାର୍ଥନା କଲେ, 'ମାଟି ଖାଇଲେ ବାଳକର ଅନର୍ଥ ହେବ' ଏହା ଭାବି ମା ସେହି ବାଳକକୁ ଲଡ଼ୁ ଦିଅନ୍ତି, ସେହି ବାଳକ ଲଡ଼ୁର ରସ ପାଇଲେ ତାହାର ମାଟି ପ୍ରତି ଅଭିଳାଷ ନ ରହି ଲଡ଼ୁ ପ୍ରତି ପ୍ରଧାବିତ ହୁଏ । ୨୭ ।

ଧ୍ରୁବ ଶ୍ରୀଭଗବାନଙ୍କୁ କହୁଅଛନ୍ତି—ହେ ପ୍ରଭୋ ! ଯେପରି କାଚ ଅନ୍ୱେଷଣ କରୁ କରୁ କେହି ଦିବ୍ୟ ରତ୍ନ ଲାଭ କରେ, ସେହିପରି ମୁଁ ସ୍ଥାନ୍ୟଲାଭ ସକାଶେ ତପସ୍ୟା କରି ଦେବ-ମୁନୀନ୍ଦ୍ରମାନଙ୍କର ଦୁଷ୍ପ୍ରାପ୍ୟ ଆପଣଙ୍କୁ ଲାଭ କରିଅଛି, ଅତଏବ ମୁଁ କୃତାର୍ଥ ହୋଇଅଛି । ମୋର ବରର ଆବଶ୍ୟକ ନାହିଁ । ୧୫ଶ ଶ୍ଲୋକାର୍ଥ ।

ଭକ୍ତି ଅଭିଧେୟ ହେଲେହେଁ ସହଜଲଭ୍ୟ ନୁହେ, ସେହିହେତୁ କହୁଅଛନ୍ତି—ଯେପରି ନଦୀର ସ୍ରୋତବେଗରେ ଅନେକ କାଷ୍ଠ ଭାସି ଯାଉଁ ଯାଉଁ ସେଥି ମଧ୍ୟରୁ କୌଣସି କାଷ୍ଠଖଣ୍ଡ ଦୈବାତ୍ କୂଳରେ ଲାଗେ, ସେହି ଜୀବମାନେ ଜନ୍ମମୃତ୍ୟୁର ପ୍ରବାହ ମଧ୍ୟରେ କାହାର କୌଣସି ଜନ୍ମରେ କୌଣସି ସୁକୃତବଳରେ ସଂସାରତରଣଉପାୟଭୂତ ଶ୍ରୀଭଗବଦ୍‌ଭକ୍ତିରେ ରୁଚି ଜନ୍ମେ । ୨୮ ।

ଶ୍ରୀଅକ୍ରୂର ବ୍ରଜଗମନକାଳରେ ମନେ ମନେ କହୁଅଛନ୍ତି—ମୁଁ ଅଧମ ମୋର ଶ୍ରୀକୃଷ୍ଣ-ଦର୍ଶନ ଘଟିବ ନାହିଁ, ଏପରି ଆଶଙ୍କାର ପ୍ରୟୋଜନ କଣ, କାରଣ ନଦୀପ୍ରବାହରେ ପତିତ ତୃଣାଦି ମଧ୍ୟରୁ କେହି କୌଣସି ସମୟରେ ନଦୀର କୂଳ ପ୍ରାପ୍ତ ହୁଅନ୍ତି, ସେହିପରି ଜନ୍ମମୃତ୍ୟୁପ୍ରବାହ ତୁଲ୍ୟ ଜୀବ ମଧ୍ୟ କାଳନଦୀର କୂଳ ପ୍ରାପ୍ତ ହୁଅନ୍ତି । ଅତଏବ ମୁଁ ଅଧମ ହେଲେ ସୁଦ୍ଧା ଶ୍ରୀକୃଷ୍ଣଙ୍କ କୃପାରୁ ମୋ ଭାଗ୍ୟରେ ତାହାଙ୍କର ଦର୍ଶନ ଘଟି ପାରେ । ୧୬ଶ ଶ୍ଲୋକାର୍ଥ ।

କୃଷ୍ଣ ଯଦି କୃପା କରେ କୋନ ଭାଗ୍ୟବାନେ ।
ଗୁରୁ ଅନ୍ତର୍ଯ୍ୟାମିରୂପେ ଶିଖାୟ ଆପନେ । ୩୦ ।
ତଥାହି (ଭାଃ ୧୧।୨୯)—
ନୈବୋପଯନ୍ତ୍ୟପଚିତିଂ କବୟସ୍ତବେଶ,
ବ୍ରହ୍ମାୟୁଷାପି କୃତମୃଦ୍ଧମୁଦଃ ସ୍ମରନ୍ତଃ ।
ଯୋଽନ୍ତର୍ବହିସ୍ତନୁଭୃତାମଶୁଭଂ ବିଧୁନ୍-
ନାଚାର୍ଯ୍ୟଚୈତ୍ତ୍ୟବପୁଷା ସ୍ୱଗତିଂ ବ୍ୟନକ୍ତି ।
ସାଧୁସଙ୍ଗେ କୃଷ୍ଣଭକ୍ତ୍ୟେ ଶ୍ରଦ୍ଧା ଯଦି ହୟ ।
ଭକ୍ତିଫଲ 'ପ୍ରେମ' ହୟ—ସଂସାର ଯାୟ
କ୍ଷୟ । ୩୧ ।

ହେ ଅଚ୍ୟୁତ ? ଭ୍ରମତଃ-ସଂସରତଃ ଜନସ୍ୟ ଯଦା ( ତ୍ୱଦନୁଗ୍ରହେଣ ) ଭବାପବର୍ଗଃ-ଭବସ୍ୟ ଅପବର୍ଗଃ-ଅନ୍ତଃ ଭବେତ୍, ତର୍ହି ସତ୍ସମାଗମଃ-ସତାଂ ସଙ୍ଗଃସ୍ୟାତ୍ । ଯର୍ହି ସତ୍ସଙ୍ଗମଃ (ଭବେତ୍) ତଦା ଏବ ସଦ୍‌ଗତୌ ପରାବରେଶେ ତ୍ୱୟି ରତିଃ ଜାୟତେ । ୧୨ଶ ଶ୍ଳୋକଃ ।

ତଦ୍ ବ୍ୟୁତ୍ପତ୍ତିକ୍ରମମାହ—କେନାପି ଭାଗ୍ୟେନ ସଂସାରକ୍ଷୟସ୍ୟ କାଲଃ ପ୍ରାପ୍ତଃ ଭବେତ୍, ତଦା ଭଗବଦ୍‌ଭକ୍ତସଙ୍ଗୋ ଭବେତ୍, ତଦାତ କୃଷ୍ଣଭକ୍ତୌ ରୁଚ ର୍ଜାୟତେ । ବି. ଚ ।

ତଦ୍ ରତୌ ଅପରମପିକ୍ରମମାହ 'କୃଷ୍ଣ' ଇତି । କୃଷ୍ଣକୃପୟାତଭକ୍ତୌ ରୁଚର୍ଭବତୀତି-ଭାବଃ । ୩୦ । ବି. ଚ ।

ସାଧୁସଙ୍ଗପ୍ରଭାବମାହ 'ସାଧୁ' ଇତି ଦ୍ୱିଭିଃ । ବି: ଚ ।

---

ଭକ୍ତିରେ ରୁଚି ଜନ୍ମିବାରେ କ୍ରମ କହୁଅଛନ୍ତି—କୌଣସି ଭାଗ୍ୟବଳରୁ କୌଣସି ଜୀବର ସଂସାରକ୍ଷୟ କାଳ ଉପସ୍ଥିତ ହେଲେ ଯେତେବେଳେ ଶ୍ରୀଭଗବଦ୍‌ଭକ୍ତଙ୍କର ସଙ୍ଗ ଲାଭ ହୁଏ ଏବଂ ତତ୍ପ୍ରଭାବରୁ ଶ୍ରୀକୃଷ୍ଣଙ୍କ ଭକ୍ତିରେ ରୁଚି ଜାତ ହୁଏ । ୨୯ ।

ଶ୍ରୀ ମୁଚୁକୁନ୍ଦ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ହେ ଅଚ୍ୟୁତ ! ସଂସାର ଭ୍ରମଣ କରୁ କରୁ କୌଣସି ଜୀବର ଯେତେବେଳେ ସଂସାରକ୍ଷୟ କାଳ ଉପସ୍ଥିତ ହୁଏ, ସେତେବେଳେ ତାହାର ଆପଣଙ୍କର ଭକ୍ତସଙ୍ଗ ଲାଭ ହୁଏ । ସତ୍ସଙ୍ଗ ହେଲେ ସାଧୁମାନଙ୍କର ଆଶ୍ରୟ ଏବଂ କାର୍ଯ୍ୟକାରଣର ନିୟନ୍ତା ଆପଣଙ୍କ ଠାରେ ତାହାର ରତି ଜାତ ହୁଏ । ୧୨ଶ ଶ୍ଳୋକାର୍ଥ ।

ରତିଜାତର ଅନ୍ୟକ୍ରମ କହୁଅଛନ୍ତି—ଶ୍ରୀକୃଷ୍ଣଙ୍କ କୃପାଦ୍ୱାରା ତାହାଙ୍କ ଭକ୍ତିରେ ଜୀବର ରୁଚି ହୁଏ ଏବଂ ସେ ମନ୍ତ୍ରଗୁରୁ ଓ ଶିକ୍ଷାଗୁରୁରୂପରେ ଉପଦେଶ ଦିଅନ୍ତି ଓ ଅନ୍ତର୍ଯ୍ୟାମୀରୂପରେ ସ୍ଫୂର୍ତ୍ତି କରାନ୍ତି । ୩୦ ।

୧୮ଶ ଶ୍ଳୋକର ଅନ୍ୱୟ—ଆଦିଃ ୧ମ ପରିଃ ୨୦ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ହେ ପ୍ରଭୋ ! ବ୍ରହ୍ମବିଦ୍‌ମାନେ ବ୍ରହ୍ମାଙ୍କର ପରମାୟୁ ଲାଭ କରି ମଧ୍ୟ ପରମାନନ୍ଦ ଲାଭ-ଦ୍ୱାରା ଆପଣଙ୍କ କୃତ ଉପକାର ଋଣରୁ ମୁକ୍ତ ହୋଇ ପାରନ୍ତି ନାହିଁ । କାରଣ ଆପଣ ଜୀବର ସର୍ବ ପ୍ରକାର ଅମଙ୍ଗଳ ଦୂର କରିବା ଅଭିପ୍ରାୟରେ ବାହାରେ ଗୁରୁରୂପରେ ( ଭକ୍ତଶ୍ରେଷ୍ଠରୂପରେ ଦୃଷ୍ଟାନ୍ତ ଓ ଉପଦେଶଦ୍ୱାରା ) ଏବଂ ଅନ୍ତରରେ ଅନ୍ତର୍ଯ୍ୟାମୀ ରୂପରେ ( ସଦସତ୍ ବୁଦ୍ଧିର ପ୍ରେରଣାଦ୍ୱାରା ) ତତ୍ତ୍ୱଜ୍ଞାନ ଓ ଭକ୍ତି ଶିକ୍ଷା ଦେଇ ନିଜକୁ ପରିଚିତ କରାନ୍ତି । ୧୮ଶ ଶ୍ଳୋକାର୍ଥ ।

ସାଧୁସଙ୍ଗର ପ୍ରଭାବ ବିଷୟ କହୁଅଛନ୍ତି—ସାଧୁସଙ୍ଗ ବଳରେ ଜୀବର ଶ୍ରୀଭଗବଦ୍-ଭକ୍ତିରେ ରୁଚି ହୁଏ ଏବଂ ସେ ଦୀକ୍ଷା ଓ ଶିକ୍ଷା ଲାଭ କରି ଭକ୍ତି ଯାଜନ କରନ୍ତି । ତଦ୍ୱାରା ଆନୁଷଙ୍ଗିକ ତାହାଙ୍କର ସଂସାର କ୍ଷୟ ହୁଏ ଏବଂ ଭକ୍ତିର ଫଳ ଶ୍ରୀକୃଷ୍ଣଙ୍କର ପ୍ରେମ ଲାଭ ହୁଏ । ୩୧ ।

ତଥାହି (ଭାଃ ୧୧।୨୦।୮)—

ଯଦୃଚ୍ଛୟା ମତ୍କଥାଦୌ ଜାତଶ୍ରଦ୍ଧସ୍ତୁ ଯଃ ପୁମାନ୍ ।
ନ ନିର୍ବିଣ୍ଣୋ ନାତିସକ୍ତୋ ଭକ୍ତିଯୋଗୋଽସ୍ୟ ସିଦ୍ଧିଦଃ । ୧୯ ।

ମହତ୍କୃପା ବିନା କୋନ କର୍ମେ 'ଭକ୍ତି' ନୟ ।
କୃଷ୍ଣଭକ୍ତି ଦୂରେ ରହୁ, ସଂସାର ନହେ କ୍ଷୟ । ୩୨ ।

ତଥାହି (ଭାଃ ୫।୧୨।୧୨)—

ରହୂଗଣୈତତ୍ତପସା ନ ଯାତି,
ନ ଚେଜ୍ୟୟା ନିର୍ବପଣାଦ୍‌ଗୃହାଦ୍‌ବା ।
ନ ଛନ୍ଦସା ନୈବ ଜଲାଗ୍ନିସୂର୍ଯ୍ୟୈ-
ର୍ବିନା ମହତ୍ପାଦରଜୋଽଭିଷେକମ୍ । ୨୦ ।

ଯଦୃଚ୍ଛୟା—କେନାପି ପରମସ୍ୱତନ୍ତ୍ରଭଗବଦ୍‌ଭକ୍ତସଙ୍ଗତତ୍କୃପାଜାତପରମମଙ୍ଗଲୋଦୟେନ, ମତ୍କଥାଦୌ ତୁ ଜାତଶ୍ରଦ୍ଧଃ ଯଃ ପୁମାନ୍ ନ ଅତିସକ୍ତଃ-ଦେହଗେହକଳତ୍ରାଦିଷୁ ନ ଅତିସକ୍ତଃ, ନ ନିର୍ବିଣ୍ଣଃ, ଅସ୍ୟ-ଜନସ୍ୟ ଭକ୍ତିଯୋଗଃ ସିଦ୍ଧିଦଃ-ଫଳଦଃ ଭବତି । ୧୯ଶ ଶ୍ଳୋକଃ ।

ହେ ରହୂଗଣ ! ମହତ୍ପାଦ ରଜୋଽଭିଷେକଂ ବିନା ଏତତ୍—ଭଗବତ୍ ସଂଜ୍ଞଂ ତତ୍ତ୍ୱଂ ଛନ୍ଦସା—ବ୍ରହ୍ମଚର୍ଯ୍ୟେଣ ନ, ଗୃହାତ୍—ଗାର୍ହସ୍ଥ୍ୟେନ ନ, ତପସା—ବାନପ୍ରସ୍ଥେନ ନ, ନିର୍ବପଣାତ୍—ସନ୍ନ୍ୟାସାତ୍ ନ, ଇଜ୍ୟୟା—ତତ୍ ତତ୍ ତତ୍ତଦ୍ଦେବତୋପାସନାୟା ଚ ନ; ଜଲାଗ୍ନିସୂର୍ଯ୍ୟୈଃ (ଉପାସିତୈଃ) ନ ଯାତି—ପ୍ରାପ୍ନୋତି । ୨୦ଶ ଶ୍ଳୋକ ।

କୋନକର୍ମେ କେନାପି କର୍ମଣା । ୩୨ । ବି. ଚ. ।

ଶ୍ରୀକୃଷ୍ଣ ଶ୍ରୀଉଦ୍ଧବଙ୍କୁ କହୁଅଛନ୍ତି— ଯେଉଁ ପୁରୁଷ ସଂସାରରେ ଅତିଶକ୍ତ ନିର୍ବିଣ୍ଣ ବା ଆସକ୍ତ ନୁହେ, ତାହାର ଯଦି କୌଣସି ପରମସ୍ୱତନ୍ତ୍ର ଭଗବଦ୍ ସଙ୍ଗ ଓ ତତ୍କୃପାଜାତ ମଙ୍ଗଳୋଦୟରେ ମୋର କଥାଦିରେ ଶ୍ରଦ୍ଧା ଜାତ ହୁଏ, ତେବେ ସେହି ପୁରୁଷର ଭକ୍ତିଯୋଗ ସିଦ୍ଧ ହୁଏ । ୧୯ଶ ଶ୍ଳୋକାର୍ଥ ।

ଶ୍ରୀଭଗବଦ୍‌ଭକ୍ତଙ୍କ କୃପାବ୍ୟତୀତ ଅନ୍ୟ କୌଣସି ପ୍ରକାର କର୍ମଦ୍ୱାରା ଭକ୍ତିଲାଭ ହୁଏ ନାହିଁ, ଭକ୍ତିଲାଭ ତ ଦୂରର କଥା ସଂସାର କ୍ଷୟ ମଧ୍ୟ ହୁଏ ନାହିଁ । ୩୨ ।

ଶ୍ରୀଭରତ କହୁଅଛନ୍ତି—ହେ ରହୂଗଣ ! ଶ୍ରୀଭଗବଦ୍‌ଭକ୍ତଙ୍କ ଚରଣରେଣୁଦ୍ୱାରା ଅଭିଷେକ ଭିନ୍ନ ( ଭଗବଦ୍‌ଭକ୍ତଙ୍କ ଶ୍ରୀଚରଣାଶ୍ରୟବ୍ୟତୀତ ) ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ବା ସନ୍ନ୍ୟାସଦ୍ୱାରା ଭିନ୍ନ ଭିନ୍ନ କର୍ମଫଳଦାତା ଦେବତାମାନଙ୍କ ଉପାସନାଦ୍ୱାରା ଅଥବା ଜଳ ଅଗ୍ନି ସୂର୍ଯ୍ୟଙ୍କ ଉପାସନାଦ୍ୱାରା ଭଗବାନଙ୍କ ଲାଭ ହୁଏ ନାହିଁ । ୨୦ଶ ଶ୍ଳୋକାର୍ଥ ।

ତଥାହି ତତ୍ରୈବ (ଭାଃ ୭।୫।୩୨)—
ନୈଷାଂ ମତିସ୍ତାବଦୁରୁକ୍ରମାଙ୍ଘ୍ରିଂ,
ସ୍ପୃଶତ୍ୟନର୍ଥାପଗମୋ ଯଦର୍ଥଃ ।
ମହୀୟସାଂ ପାଦରଜୋଽଭିଷେକଂ,
ନିଷ୍କିଞ୍ଚନାନାଂ ନ ବୃଣୀତ ଯାବତ୍ । ୨୧ ।

'ସାଧୁସଙ୍ଗ ସାଧୁସଙ୍ଗ' ସର୍ବ ଶାସ୍ତ୍ରେ କୟ ।
ଲବ-ମାତ୍ର ସାଧୁସଙ୍ଗେ ସର୍ବସିଦ୍ଧି ହୟ । ୩୩ ।

ତଥାହି (ଭାଃ ୧।୧୮।୧୩)—
ତୁଲୟାମ ଲବେନାପି ନ ସ୍ୱର୍ଗଂ
ନା ପୁନର୍ଭବମ୍ ।
ଭଗବତ୍ସଙ୍ଗିସଙ୍ଗସ୍ୟ ମର୍ତ୍ତ୍ୟାନାଂ
କିମୁତାଶିଷଃ । ୨୨ ।

କୃଷ୍ଣ କୃପାଲୁ ଅର୍ଜୁନେରେ ଲକ୍ଷ୍ୟ କରିୟା ।
ଜଗତେରେ ରାଖିୟାଛେ ଉପଦେଶ ଦିୟା । ୩୪ ।

ନିଷ୍କିଞ୍ଚନାନାଂ—ନିରସ୍ତବିଷୟାଭିମାନାନାଂ, ମହୀୟସାଂ—ମହଦ୍ଭକ୍ତାନାଂ ପାଦରଜୋଽଭିଷେକଂ—ପାଦରଜସା ଅଭିଷେକଂ, ଯାବତ୍ ନ ବୃଣୀତ, ତାବତ୍ (ଶ୍ରୁତିବାକ୍ୟତୋ ଜ୍ଞାତେଽପି) ଏଷାଂ—ଗୃହାସକ୍ତାନାଂ ମତିଃ ଉରୁକ୍ରମାଙ୍ଘ୍ରିଂ—ଉରୁକ୍ରମସ୍ୟ ଅଙ୍ଘ୍ରିଂ, ନ ସ୍ପୃଶତି—ପ୍ରାପ୍ନୋତି, (ଅସମ୍ଭାବନାଦିଭିଃ ବାଧ୍ୟତେ) ଅନର୍ଥାପଗମଃ—ଅନର୍ଥସ୍ୟ ତତ୍ତ୍ୱସ୍ଫୂର୍ତ୍ତିବନ୍ଧସ୍ୟ ଅପଗମଃ, ଯଦର୍ଥ—ଯସ୍ୟ ଅଙ୍ଘ୍ରିସ୍ପର୍ଶିନ୍ୟାଃ ମତେଃ ଅର୍ଥଃ ପ୍ରୟୋଜନଂ, ମହଦନୁଗ୍ରହାଭାବାତ୍ ନ ତତ୍ତ୍ୱବିନଷ୍ଟାଃ ନାପି ମୋକ୍ଷଃ ତେଷାମିତ୍ୟର୍ଥଃ । ୨୧ଶ ଶ୍ଳୋକ ।

ଭଗବତ୍ସଙ୍ଗିସଙ୍ଗସ୍ୟ—ଭଗବତ୍ସଙ୍ଗିନୋ ବଷ୍ଟୁଭକ୍ତାଃ ତେଷାଂ ସଙ୍ଗସ୍ୟ ଲବେନ—ଅତ୍ୟଳ୍ପକାଳେନ ଅପି ସ୍ୱର୍ଗଂ ନ ତୁଳୟାମଃ—ସମଂ ପଶ୍ୟାମଃ, ଅପୁନର୍ଭବଂ (ଅପି) ନ ତୁଲୟାମଃ ମର୍ତ୍ତ୍ୟାନାଂ ଆଶିଷଃ—ରାଜ୍ୟାଦ୍ୟାଃ କିମୁତ । ୨୨ଶ ଶ୍ଳୋକ ।

ଲବମାତ୍ର ସାଧୁସଙ୍ଗେ—ସାଧୁସଙ୍ଗସ୍ୟ ଅତ୍ୟଳ୍ପକାଳଃ । ବି, ତ.

ଭଗବଦ୍‌ଭକ୍ତ ବାକ୍ୟେ ଶ୍ରଦ୍ଧାବାନ୍ ଜନଏବ କୃଷ୍ଣଭକ୍ତୌ ଅଧିକାରୀତି ବକ୍ତୁମାଦୌ ତଦ୍‌ବାକ୍ୟମାହ 'କୃଷ୍ଣ' ଇତିଦ୍ୱାଭ୍ୟାଂ, ଅସ୍ୟାର୍ଥଃ ଶ୍ରୀକୃଷ୍ଣବାକ୍ୟଗୀତାଶାସ୍ତ୍ରମତଂ ତଦ୍‌ଭକ୍ତିରେବ ଶ୍ରେଷ୍ଠସାଧନମିତି ଭଗବଦ୍‌ଭକ୍ତବାକ୍ୟଂ । ୩୪ । ବି. ତ. ।

ପ୍ରହ୍ଲାଦ ନିଜ ଗୁରୁପୁତ୍ରଙ୍କୁ କହୁଅଛନ୍ତି—ଯେପର୍ଯ୍ୟନ୍ତ ବିଷୟ ଅଭିମାନରହିତ ଭଗବଦ୍ଭକ୍ତମାନଙ୍କର ଶ୍ରୀଚରଣଧୂଳିଦ୍ୱାରା ସଂସାରୀବ୍ୟକ୍ତିମାନେ ଅଭିଷିକ୍ତ ନ ହୁଅନ୍ତି ସେପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କର ପାଦପଦ୍ମରେ ସେମାନଙ୍କର ମତି ହୁଏ ନାହିଁ । ଶ୍ରୀକୃଷ୍ଣଙ୍କର ପାଦପଦ୍ମରେ ମତି ଜନ୍ମିଲେ ସମସ୍ତ ଅନର୍ଥର ନିବୃତ୍ତି ହୁଏ । ୨୧ଶ ଶ୍ଳୋକାର୍ଥ ।

ଶାସ୍ତ୍ରମାନେ ସାଧୁସଙ୍ଗ କରିବାର ବାରମ୍ବାର ଆଦେଶ କରିଅଛନ୍ତି କାରଣ ସାଧୁସଙ୍ଗର ମହତ୍ତ୍ୱ ଏହି ଯେ, ଅତିଅଳ୍ପକାଳ ସାଧୁସଙ୍ଗଦ୍ୱାରା ସର୍ବସିଦ୍ଧିପ୍ରଦ ଶ୍ରୀଭଗବଦ୍‌ଭକ୍ତିଲାଭ ହୁଏ । ୩୩ ।

ଶ୍ରୀଶୌନକାଦିଋଷିମାନେ ଶ୍ରୀସୂତଙ୍କୁ କହୁଅଛନ୍ତି—ଭଗବତ୍ ଭକ୍ତଙ୍କର ସହିତ ଅତି ଅଳ୍ପକାଳ ସଙ୍ଗଲାଭ ହେଲେ ଯେଉଁ ଫଳ ହୁଏ (ଯେ ଭକ୍ତ୍ୟଙ୍କୁର ଜାତ ହୁଏ) ତାହା ସହିତ ସ୍ୱର୍ଗ ବା ମୋକ୍ଷର ତୁଳନାର ସମ୍ଭାବନା କରାଯାଏ ନାହିଁ । ମରଣଶୀଳ ମନୁଷ୍ୟମାନଙ୍କର ରାଜ୍ୟାଦି ସୁଖର କଥା ଆଉ କଣ କହିବ । ୨୨ଶ ଶ୍ଳୋକାର୍ଥ ।

ଶ୍ରୀଭଗବତ୍ ଭକ୍ତି ଯେ ଏକମାତ୍ର ଅଭିଧେୟ ଏହା ସ୍ୱୟଂ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବଦ୍‌ଗୀତାରେ ଶ୍ରୀଅର୍ଜୁନଙ୍କୁ ଲକ୍ଷ୍ୟକରି ଜଗଦବାସୀମାନଙ୍କ ଉପଦେଶ ଦେଇଅଛନ୍ତି । ୩୪ ।

ତଥାହି ଶ୍ରୀଗୀତାୟାମ୍ (୧୮।୬୪।୬୫)—
ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।
ଇଷ୍ଟୋଽସି ମେ ଦୃଢ଼ମିତି ତତୋ ବକ୍ଷ୍ୟାମି ତେ ହିତମ୍ ।
ମନ୍ମନା ଭବ ମଦ୍ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ । ୫୪ ।

ପୂର୍ବେ ଅଜ୍ଞା—ବେଦ ଧର୍ମ କର୍ମ ଯୋଗ ଜ୍ଞାନ ।
ସବ ସାଧି ଶେଷେ ଏଇ ଆଜ୍ଞା ବଲବାନ୍ । ୫୫ ।
ଏଇ-ଆଜ୍ଞାବଲେ ଭକ୍ତେର ଶ୍ରଦ୍ଧା ଯଦି ହୟ ।
ସର୍ବକର୍ମ ତ୍ୟାଗ କରି ସେ କୃଷ୍ଣ ଭଜୟ । ୫୬ ।

ତଥାହି ଭାଃ ୧୧।୨୦।୯)—
ତାବତ୍ କର୍ମାଣି କୁର୍ବୀତ ନ ନିର୍ବିଦ୍ୟେତ ଯାବତା ।
ମତ୍କଥାଶ୍ରବଣାଦୌ ବା ଶ୍ରଦ୍ଧା ଯାବନ୍ନ ଜାୟତେ । ୨୫ ।

---

ହେ ଅର୍ଜୁନ ! ପରମଂ ସର୍ବଗୁହ୍ୟତମଂ ମେବଚଃ ଶୃଣୁ ( ଯତସ୍ତ୍ୱଂ ) ଦୃଢ଼ଂ ମେ-ମମ, ଇଷ୍ଟଃ—ପ୍ରିୟତମଃ ଅସି, ତତଃ ତେ ହିତଂ ବକ୍ଷ୍ୟାମି,ମନ୍ମନାଃ—ମଚ୍ଚିତ୍ତଃ, ମଦ୍ଭକ୍ତଃ—ମଦ୍ଭଜନଶୀଳ ମଦ୍ୟାଜୀ—ମଦ୍ୟଜନଶୀଳଃ, ଭବ, ମାଂ ( ଏବ ) ନମସ୍କୁରୁ, ତ୍ୱଂ ହି ମେ ପ୍ରିୟଃ ଅସି, ( ଅତଃ ) ସତ୍ୟଂ (ଯଥାଭବତ୍ୟେବ) ତେ—ତୁଭ୍ୟଂ ଅହଂ ପ୍ରତିଜାନେ—ପ୍ରତିଜ୍ଞାଂ କରୋମି, ( ମତ୍ପ୍ରସାଦ-ଲବ୍ଧଜ୍ଞାନେନ ) ମାମେବ ଏଷ୍ୟସି – ପ୍ରାପ୍ସ୍ୟସି । ୬୩।୬୪ଶ ଶ୍ଳୋକ ।

କୃଷ୍ଣଭକ୍ତୌ ଅଧିକାରଣମାହ 'ଏଇ' ଇତି । କୃଷ୍ଣଭକ୍ତିରେବ ଶ୍ରେଷ୍ଠସାଧନମିତି ପୂର୍ବୋକ୍ତେ ଭଗବଦ୍ୱାକ୍ୟେ ଯଦା ଯସ୍ୟ ଶ୍ରଦ୍ଧା ଭବତି ସ ଏବ ତଦା ତଦ୍ଭକ୍ତୌ ଅଧିକାରୀ ଇତ୍ୟର୍ଥଃ । ଵ, ତ ।

---

ହେ ଅର୍ଜୁନ ! ମୁଁ ପୂର୍ବେ ତୁମ୍ଭଙ୍କୁ ଯାହା ଯାହା କହିଥିଲି ସେ ସମସ୍ତ ଅପେକ୍ଷା ଗୁହ୍ୟତମ କଥା ପୁନର୍ବାର କହୁଅଛି ଶ୍ରବଣ କର । ତୁମ୍ଭେ ମୋର ଅତ୍ୟନ୍ତ ପ୍ରିୟ, ତେଣୁ ତୁମ୍ଭର ହିତକଥା କହୁଅଛି—ମୋପ୍ରତି ଚିତ୍ତ ଦିଅ, ମୋତେ ଭଜନ କର, ମୋତେ ଅର୍ଚ୍ଚନ କର, ମୋତେ ପ୍ରଣାମକର, ତୁମ୍ଭେ ମୋର ଅତ୍ୟନ୍ତ ପ୍ରିୟ, ମୁଁ ପ୍ରତିଜ୍ଞା କରି ତୁମ୍ଭଙ୍କୁ କହୁଅଛି ଏପ୍ରକାର କଲେ ମୋତେ ପ୍ରାପ୍ତ ହେବ ।୬୩।୬୪ଶ ଶ୍ଳୋକାର୍ଥ ।

ଶ୍ରୀଭଗବାନ୍ ଶ୍ରୀମଦ୍ଭଗବଦ୍ଗୀତାରେ ବେଦୋକ୍ତ ନିଷ୍କାମକର୍ମର ଶ୍ରେଷ୍ଠତ୍ୱରୂପ ଧର୍ମସାଧନର ଆଜ୍ଞା ଦେଇ ସର୍ବଶେଷରେ ଶ୍ରୀଭଗବଦ୍ଭକ୍ତିର ସର୍ବଶ୍ରେଷ୍ଠତ୍ୱରୂପ ସାଧନର ଅଜ୍ଞା ଦେଇଅଛନ୍ତି । ପୂର୍ବାପର ବିଚାରରେ ପର ଆଜ୍ଞା ବଳବାନ୍, ଅତଏବ ମନୁଷ୍ୟ କ୍ରମବିକାଶର କର୍ମଜ୍ଞାନାଦିର ସାଧନର ପର ଚିତ୍ତ ନିର୍ମଳ ହେଲେ ଭକ୍ତି ସାଧନ କରିବ । ୫୫ ।

ଉପର୍ଯ୍ୟୁକ୍ତ ଶ୍ଳୋକସ୍ଥ 'ମନ୍ମନାଭବ' ଏହି ଆଜ୍ଞା ବଳରେ ଅଟନ୍ତି ଭକ୍ତି ଶ୍ରେଷ୍ଠ ସାଧନ ଏହି ବିଶ୍ୱାସରେ ଯେଉଁ ବ୍ୟକ୍ତି ଶ୍ରୀଭଗବଦ୍ଭକ୍ତିରେ ଶ୍ରଦ୍ଧାବାନ୍ ହୁଅନ୍ତି, ସେ କର୍ମଜ୍ଞାନାଦି ତ୍ୟାଗ କରି ଶ୍ରଦ୍ଧାରେ ସହିତ ଶ୍ରୀକୃଷ୍ଣ ଭଜନ କରନ୍ତି । ୫୬ ।

୨୫ ଶ୍ଳୋକର ଅନ୍ୱୟ—ମଧ୍ୟ ଖଣ୍ଡ ୯ମ ପରିଚ୍ଛେଦ ୨୨ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି—ଯେ ପର୍ଯ୍ୟନ୍ତ ଚିତ୍ତ ଶୁଦ୍ଧ ହୋଇ ବୈରାଗ୍ୟ ନ ଜନ୍ମେ ବା ମୋର କଥା ଶ୍ରବଣାଦିରେ ରତି ନ ଜନ୍ମେ ସେହି ପର୍ଯ୍ୟନ୍ତ ନିତ୍ୟନୈମିତ୍ତିକାଦି କର୍ମ ସମସ୍ତ ଆଚରଣ କରିବ । ୨୫ଶ ଶ୍ଳୋକାର୍ଥ ।

'ଶ୍ରଦ୍ଧା'-ଶବ୍ଦେ ବିଶ୍ୱାସ କହେ ସୁଦୃଢ଼ ନିଶ୍ଚୟ ।
କୃଷ୍ଣଭକ୍ତି କୈଲେ—ସର୍ବକର୍ମ କୃତ ହୟ ॥ ୩୬

ତଥାହି (ଭାଃ ୪।୩୧।୧୪)—

ଯଥା ତରୋର୍ମୂଳନିଷେଚନେନ,
ତୃପ୍ୟନ୍ତି ତତ୍ସ୍କନ୍ଧଭୁଜୋପଶାଖାଃ ।
ପ୍ରାଣୋପହାରାଚ୍ଚ ଯଥେନ୍ଦ୍ରିୟାଣାଂ,
ତଥୈବ ସର୍ବାର୍ହଣମଚ୍ୟୁତେଜ୍ୟା । ୧୭ ।

ଶ୍ରଦ୍ଧାବାନ ଜନ ହୟ ଭକ୍ତ୍ୟେ ଅଧିକାରୀ ।
ଉତ୍ତମ, ମଧ୍ୟମ, କନିଷ୍ଠ, ଶ୍ରଦ୍ଧା-ଅନୁସାରୀ ॥ ୩୮ ॥
ଶାସ୍ତ୍ର-ଯୁକ୍ତ୍ୟେ ସୁନିପୁଣ ଦୃଢ଼ ଶ୍ରଦ୍ଧା ଯାର ।
'ଉତ୍ତମ ଅଧିକାରୀ' ସେଇ ତାରୟେ ସଂସାର ॥ ୩୯ ॥

---

ନାନାକର୍ମଭିଃ ତତ୍ତତ୍ ଦେବତାପ୍ରୀତିର୍ନିର୍ମଗ୍ନାନ୍ୟପି ଫଳାନି ହରିପ୍ରୀତ୍ୟାହବନ୍ତି କେବଳଂ ତତ୍ତଦ୍ଦେବତାରାଧନେନତୁ ନ ଜାୟତେ ଇତି ସଦୃଷ୍ଟାନ୍ତମାହ-ଯଥେତି । ମୂଳାତ୍ ପ୍ରଥମବିଭାଗାଃ ସ୍କନ୍ଧାଃ ତଦ୍ବିଭାଗାଃ ଭୁଜାଃ ତେଷାମପ୍ୟୁପଶାଖା, ଉପଲକ୍ଷଣମେତତ୍ ପତ୍ର ପୁଷ୍ପାଦୟୋଽପି ତୃପ୍ୟନ୍ତେ ନ ତୁ ମୂଳମେକଂ ବିନା ସ୍ୱସ୍ୱନିଷେଚନେନ, ପ୍ରାଣସ୍ୟୋପହରଣଂ ଭୋଜନଂ ତସ୍ମାଦେବ ଇନ୍ଦ୍ରିୟାଣାଂ ତୃପ୍ତିଃ ନତୁ ତତ୍ତଦିନ୍ଦ୍ରିୟେଷୁ ପୃଥକ୍ ପୃଥଗନୁଲେପନାତ୍, ତଥା ଅଚ୍ୟୁତାରାଧନମେବ ସର୍ବଦେବତାରାଧନଂ ନ ପୃଥଗିତ୍ୟର୍ଥଃ । ୧୭ଶ ଶ୍ଳୋକଃ ।

ଯୁକ୍ତିସ୍ତୁବ ଶାସ୍ତ୍ରାନୁଗତୈବ ଜ୍ଞେୟା । ୩୯ । ଚ, ଚ.

---

ଶ୍ରୀକୃଷ୍ଣଙ୍କର ଭକ୍ତି ସାଧନ କଲେ କରଣୀୟ ଯାହା କିଛି ସମସ୍ତ କରା ହୁଏ, ଏହିପ୍ରକାର ସୁଦୃଢ଼ ନିଶ୍ଚୟାତ୍ମକ ବିଶ୍ୱାସହିଁ ଶ୍ରଦ୍ଧା । ୩୬ ।

ପ୍ରଚେତାମାନଙ୍କୁ ଶ୍ରୀନାରଦ କହୁଅଛନ୍ତି—ଭିନ୍ନ ଭିନ୍ନ ଦେବତାଙ୍କର ପ୍ରୀତି ନିମିତ୍ତ କର୍ମଦ୍ୱାରା ଯେଉଁ ଫଳ ଲାଭ ହୁଏ ତାହା ଶ୍ରୀଭଗବାନଙ୍କର ପ୍ରୀତିରୁହିଁ ହୁଏ, କେବଳ ସେହି ସେହି ଦେବତାମାନଙ୍କର ଆରାଧନାରୁ କିଛି ହୁଏ ନାହିଁ । ଯେପରି ବୃକ୍ଷର ମୂଳରେ ଜଳ ଦେଲେ ସ୍କନ୍ଧ, ଶାଖା, ଉପଶାଖା, ପତ୍ର, ପୁଷ୍ପାଦି ପୁଷ୍ଟ ହୁଅନ୍ତି, ମୂଳରେ ଜଳ ନ ଦେଇ ବୃକ୍ଷର ପ୍ରତ୍ୟେକ ଅବୟବରେ ଜଳ ଦେଲେ କୌଣସି ଫଳ ଲାଭ ହୁଏ ନାହିଁ ଏବଂ ଯେପରି ପ୍ରାଣର ପୁଷ୍ଟି ସକାଶେ ଭୋଜନ କଲେ ସମସ୍ତ ଇନ୍ଦ୍ରିୟମାନ ତୃପ୍ତ ହୁଅନ୍ତି, ପ୍ରତ୍ୟେକ ଇନ୍ଦ୍ରିୟରେ ଲକ୍ଷ୍ୟ ଦ୍ରବ୍ୟ ଅନୁଲେପନ କଲେ କାହାର ତୃପ୍ତି ହୁଏ ନାହିଁ, ସେହିପରି ଶ୍ରୀଭଗବାନ୍ ଅଚ୍ୟୁତଙ୍କର ଆରାଧନା-ଦ୍ୱାରା ସମସ୍ତ ଦେବତାମାନେ ତୃପ୍ତ ହୁଅନ୍ତି । ୧୭ ଶ ଶ୍ଳୋକାର୍ଥ ।

ପୂର୍ବକଥିତମତେ ଭକ୍ତିରେ ଯାହାଙ୍କର ସୁଦୃଢ଼ ବିଶ୍ୱାସ, ସେମାନେ ଭକ୍ତିର ଅଧିକାରୀ ଅର୍ଥାତ୍ ଭକ୍ତିସାଧନ କରିବାର ଉପଯୋଗୀ । ଏମାନେ ଶ୍ରଦ୍ଧାର ତାରତମ୍ୟ ଅନୁସାରେ ଉତ୍ତମ ମଧ୍ୟମ ଓ କନିଷ୍ଠ ଅଟନ୍ତି । ୩୮ ।

ଯେଉଁ ବ୍ୟକ୍ତିଙ୍କର ଶ୍ରୀକୃଷ୍ଣଙ୍କଠାରେ ଦୃଢ଼ ଶ୍ରଦ୍ଧା ଏବଂ ଯେ ଶାସ୍ତ୍ରଜ୍ଞାନରେ ଏବଂ ଶାସ୍ତ୍ରାନୁଗତ ଯୁକ୍ତିରେ ସୁନିପୁଣ (ପାରଦର୍ଶୀ) ସେହି ବ୍ୟକ୍ତି ଭକ୍ତିର ଉତ୍ତମ ଅଧିକାରୀ । ସେ ଭକ୍ତିଲାଭ କରି ନିଜେ ଉଦ୍ଧାର ହୁଅନ୍ତି ଏବଂ ଶାସ୍ତ୍ର ଯୁକ୍ତିବଳରେ ଓ ନିଜ ଭକ୍ତି ପ୍ରଭାବରେ ଅପରକୁ ଭକ୍ତି ପଥକୁ ଆଣି ଉଦ୍ଧାର କରନ୍ତି । ୩୯ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୧)—
ଶାସ୍ତ୍ରେ ଯୁକ୍ତୌ ଚ ନିପୁଣଃ ସର୍ବଥା ଦୃଢ଼ନିଶ୍ଚୟଃ ।
ପ୍ରୌଢ଼ଶ୍ରଦ୍ଧୋଽଧିକାରୀ ଯଃ ସ ଭକ୍ତାବୁତ୍ତମୋ ମତଃ । ୨୬ ।

ଶାସ୍ତ୍ରଯୁକ୍ତି ନାହି ଜାନେ ଦୃଢ଼ଶ୍ରଦ୍ଧାବାନ୍ ।
'ମଧ୍ୟମ ଅଧିକାରୀ' ସେଇ ମହାଭାଗ୍ୟବାନ୍ । ୪୦ ।

ତଥାହି ତତ୍ରୈବ (୧।୨।୧୨)—
ଯଃ ଶାସ୍ତ୍ରାଦିଷ୍ୱନିପୁଣଃ ଶ୍ରଦ୍ଧାବାନ୍ ସ ତୁ ମଧ୍ୟମଃ । ୨୮ ।

ତଥାହି ତତ୍ରୈବ (୧।୨।୧୩)—

ଯାହାର କୋମଳ ଶ୍ରଦ୍ଧା ସେ 'କନିଷ୍ଠ ଜନ' ।
କ୍ରମେ କ୍ରମେ ତେଁହୋ ଭକ୍ତ ହଇବେ ଉତ୍ତମ । ୪୧ ।

---

ଯଃ ଶାସ୍ତ୍ରେ ଯୁକ୍ତୌ ଚ ନିପୁଣଃ—ପ୍ରବୀଣଃ, ସର୍ବଥା—ତତ୍ତ୍ୱବର୍ଗେଣ ସାଧନବର୍ଗେଣ ପୁରୁଷାର୍ଥ ବର୍ଗେଣ ଚ, ଦୃଢ଼ନିଶ୍ଚୟଃ ପ୍ରୌଢ଼ଶ୍ରଦ୍ଧଃ ସ ଉତ୍ତମଃ ଅଧିକାରୀ ମତଃ । ୨୬ଶ ଶ୍ଲୋକଃ ।

ଶାସ୍ତ୍ରାଦିଷୁ ଅନିପୁଣଃ—ନିପୁଣସଦୃଶଃ ବଳବଦ୍‌ବାଧେ ଦତ୍ତେପତ ସମାଧାତୁମସମର୍ଥଃ, ତଥାପି ଶ୍ରଦ୍ଧାବାନ୍—ମନସି ଦୃଢ଼ନିଶ୍ଚୟଃ ଯଃ ସଃ ମଧ୍ୟମଃ ଅଧିକାରୀ ମତଃ । ୨୮ଶ ଶ୍ଲୋକଃ ।

ଶାସ୍ତ୍ରଯୁକ୍ତି ନାହିଁ ଜାନେ, ଶାସ୍ତ୍ରାଦିଷ୍ୱନିପୁଣଃ ଅନିପୁଣ ଇତି । ନିପୁଣସଦୃଶଃ ବଳବଦ୍‌ବାଧେ ଦତ୍ତେ ସତି ସମାଧାତୁ ମସମର୍ଥଇତ୍ୟର୍ଥଃ । ତଥାପି ଦୃଢ଼ ଶ୍ରଦ୍ଧାବାନ୍ ମନସି ଦୃଢ଼ନିଶ୍ଚୟ ଏବେତ୍ୟର୍ଥଃ । ୨୮ । ଚ. ଚ.

କୋମଳ ଶ୍ରଦ୍ଧା—ଶାସ୍ତ୍ର ଯୁକ୍ତ୍ୟନ୍ତରେଣ ଭେତ୍ତୁଂ ଶକ୍ୟା । ୪୧ । ଚ. ଚ.

---

ଯେ ଶାସ୍ତ୍ରରେ ଓ ଶାସ୍ତ୍ରାନୁଗତ ଯୁକ୍ତିରେ ବିଶେଷ ପାରଦର୍ଶୀ ତତ୍ତ୍ୱବର୍ଗର, ସାଧନବର୍ଗର ଓ ପୁରୁଷାର୍ଥ ବର୍ଗରହାଏ ଶ୍ରୀଭଗବାନ୍ ଯେ ଏକମାତ୍ର ଉପାସ୍ୟ ଓ ପ୍ରୀତିର ବିଷୟ ଯାହାଙ୍କର ଏହି ରୂପ ସୁଦୃଢ଼ ନିଶ୍ଚୟାତ୍ମକ ବିଶ୍ୱାସ, ସେହି ବ୍ୟକ୍ତି ଭକ୍ତିର ଉତ୍ତମ ଅଧିକାରୀ । ୨୬ଶ ଶ୍ଲୋକାର୍ଥ ।

ଯେଉଁ ବ୍ୟକ୍ତି ଶାସ୍ତ୍ରଜ୍ଞ କିନ୍ତୁ ଦୃଢ଼ରୂପେ ଶାସ୍ତ୍ରାନୁଗତ ଯୁକ୍ତି ସ୍ଥାପନ କରି ପାରନ୍ତି ନାହିଁ, ଅଥଚ ଯାହାଙ୍କର ଭଗବତ୍ ଭକ୍ତିରେ ସୁଦୃଢ଼ ବିଶ୍ୱାସ, ସେହି ବ୍ୟକ୍ତି ମଧ୍ୟମ ଅଧିକାରୀ ଏବଂ ଶ୍ରୀଭଗବାନଙ୍କଠାରେ ଅଟଳ ବିଶ୍ୱାସ ହେତୁ ପରମଭାଗ୍ୟବାନ୍ । ୪୦ ।

ଯେଉଁ ବ୍ୟକ୍ତି ଶାସ୍ତ୍ରରେ ଯୁକ୍ତିନିପୁଣସଦୃଶ ଅର୍ଥାତ୍ ଶାସ୍ତ୍ରଜ୍ଞ ହୋଇ ସୁଦ୍ଧା ଦୃଢ଼ରୂପେ ଯୁକ୍ତି ପ୍ରଦର୍ଶନ କରି ପାରନ୍ତି ନାହିଁ ତଥାପି ଯାହାର ଶ୍ରୀଭଗବାନଙ୍କଠାରେ ଅଟଳ ବିଶ୍ୱାସ, ସେହି ବ୍ୟକ୍ତି ମଧ୍ୟମ ଅଧିକାରୀ । ୨୮ ଶ୍ଲୋକାର୍ଥ ।

ଯାହାଙ୍କର କୋମଳ ଶ୍ରଦ୍ଧା ଅର୍ଥାତ୍ ବିରୁଦ୍ଧଶାସ୍ତ୍ରଯୁକ୍ତିଦ୍ୱାରା ଯାହାଙ୍କର ବିଶ୍ୱାସ ଶିଥିଳ ହୁଏ, ସେହି ବ୍ୟକ୍ତି ଭକ୍ତିର କନିଷ୍ଠ ଅଧିକାରୀ; କିନ୍ତୁ ସେ ଯଦି ବିରୁଦ୍ଧବାଦୀଙ୍କ ମତ ନ ଶୁଣନ୍ତି ଏବଂ ଦୃଢ଼ରୂପେ ଭକ୍ତଙ୍କ ସହ ଭକ୍ତିଶାସ୍ତ୍ର ଆଲୋଚନା କରନ୍ତି, ତାହାହେଲେ କ୍ରମେ କ୍ରମେ ତାହାଙ୍କର ଶାସ୍ତ୍ର ଓ ଶାସ୍ତ୍ରଯୁକ୍ତିରେ ଜ୍ଞାନ ଓ ଶ୍ରୀଭଗବାନଙ୍କଠାରେ ସୁଦୃଢ଼ ବିଶ୍ୱାସ ଲାଭ ହୁଏ । ଏହିପ୍ରକାରରେ ସେ ଉତ୍ତମ ଅଧିକାରୀ ହୁଅନ୍ତି । ୪୧ ।

ତଥାହି ତତ୍ରୈବ ( ୧୧।୨।୧୩ )—

ଯୋ ଭବେତ୍ କୋମଳଶ୍ରଦ୍ଧଃ ସ କନିଷ୍ଠୋ

ନିଗଦ୍ୟତେ । ୨୯ ।

ରତିପ୍ରେମ-ତାରତମ୍ୟେ ଭକ୍ତ-ତରତମ ।

ଏକାଦଶସ୍କନ୍ଧେ ତାର କରିଯାଛେ ଲକ୍ଷଣ । ୪୨ ।

ତଥାହି ( ଭାଃ ୧୧।୨।୪୫,୪୬,୪୭ )—

ସର୍ବଭୂତେଷୁ ଯଃ ପଶ୍ୟେଦ୍ ଭଗବଦ୍ଭାବମାତ୍ମନଃ ।

ଭୂତାନି ଭଗବତ୍ୟାତ୍ମନ୍ୟେଷ ଭାଗବତୋତ୍ତମଃ ।୩୦

ଈଶ୍ୱରେ ତଦଧୀନେଷୁ ବାଲିଶେଷୁ ଦ୍ୱିଷତ୍ସୁ ଚ ॥

ପ୍ରେମ ମୈତ୍ରୀ କୃପୋପେକ୍ଷା ଯଃ କରୋତି ସ

ମଧ୍ୟମଃ । ୩୧

ଅର୍ଚ୍ଚାୟାମେବ ହରୟେ ପୂଜାଂ ଯଃ ଶ୍ରଦ୍ଧୟେହତେ

ନ ତଦ୍ଭକ୍ତେଷୁ ଚାନ୍ୟେଷୁ ସ ଭକ୍ତଃ ପ୍ରାକୃତଃ

ସ୍ମୃତଃ । ୩୨

---

ଯଃ କୋମଳ ଶ୍ରଦ୍ଧଃ—ଶାସ୍ତ୍ରଯୁକ୍ତ୍ୟନ୍ତରେଣ ଚେଲ୍ତୁଂ ଶକ୍ୟଃ, ସଃ କନିଷ୍ଠ—ଅଧିକାରୀ, ନିଗଦ୍ୟତେ—କଥ୍ୟତେ । ୨୯ଶ ଶ୍ଲୋକଃ ।

ଯଃ ଈଶ୍ୱରେ—ଭଗବତି ତଦଧୀନେଷୁ—ଭଗବଦ୍ଭକ୍ତେଷୁ, ବାଲିଶେଷୁ—ଅଜ୍ଞେଷୁ ଦ୍ୱିଷତ୍ସୁ—ଭଗବଦ୍ଭକ୍ତଦ୍ୱେଷିଷୁ ବା (ଚ) ପ୍ରେମ, ମୈତ୍ରୀ କୃପା ଉପେକ୍ଷା (ଚତାଃ) କରୋତି ସଃ ମଧ୍ୟମଃ । ୩୧ଶ ଶ୍ଲୋକଃ ।

ଯଃ ହରୟେ ( ହରିଂ ପ୍ରୀଣୟିତୁଂ ) ଅର୍ଚ୍ଚାୟାମେବ ଶ୍ରଦ୍ଧୟା ପୂଜାଂ ଈହତେ, ତଦ୍ଭକ୍ତେଷୁ ଅନ୍ୟେଷୁ ଚ (ପୂଜାଂ ନ ଈହତେ) ସଃ ପ୍ରାକୃତଃ କନିଷ୍ଠଃ, ସ୍ମୃତଃ । ୩୨ଶ ଶ୍ଲୋକଃ ।

---

ଯେଉଁ ବ୍ୟକ୍ତିଙ୍କର ଭକ୍ତି ବିଷୟ ବିରୁଦ୍ଧଶାସ୍ତ୍ର ଓ ଯୁକ୍ତିଦ୍ୱାରା ଶିଥିଳ ହୋଇ ପାରେ, ସେ ଭକ୍ତିର କନିଷ୍ଠ ଅଧିକାରୀ । ୨୯ ଶ୍ଲୋକାର୍ଥ ।

ଶ୍ରଦ୍ଧାର ତାରତମ୍ୟ ଅନୁସାରେ ଭକ୍ତର ତାରତମ୍ୟ ଦେଖାଇ ବର୍ତ୍ତମାନ ରତିପ୍ରେମର ତାରତମ୍ୟ ଅନୁସାରେ ଭକ୍ତ ତାରତମ୍ୟ ବିଷୟ କହୁଅଛନ୍ତି । ୪୨ ।

୩୦ ଶ୍ଲୋକର ଅନ୍ୱୟ ମଧ୍ୟ: ୮ମ ପରି: ୪୨ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକନକଙ୍କୁ ହରି କହୁଅଛନ୍ତି— ଯେଉଁ ବ୍ୟକ୍ତି ସ୍ଥାବରଜଙ୍ଗମାଦି ସମସ୍ତ ପଦାର୍ଥରେ ନିଜମନ୍ତ୍ରାରୂପେ ଶ୍ରୀହରିଙ୍କର ନିରତିଶୟ ଐଶ୍ୱର୍ଯ୍ୟ ଦର୍ଶନ କରନ୍ତି ଅର୍ଥାତ୍ ପଦାର୍ଥବିଶେଷର ତାରତମ୍ୟ ଦେଖନ୍ତି ନାହିଁ ଏବଂ ଶ୍ରୀହରିଙ୍କଠାରେ ସମସ୍ତ ପଦାର୍ଥ ଦେଖନ୍ତି, ସେ ପରମ ଭାଗବତ । ୩୦ଶ ଶ୍ଲୋକାର୍ଥ ।

ଯେଉଁ ବ୍ୟକ୍ତି ଈଶ୍ୱରଙ୍କଠାରେ ଭକ୍ତି, ଭଗବଦ୍ଭକ୍ତମାନଙ୍କ ସହ ମିତ୍ରତା, ଅଜ୍ଞଲୋକଙ୍କ ପ୍ରତି କୃପା ଏବଂ ଭକ୍ତିବିଦ୍ୱେଷୀମାନଙ୍କୁ ଉପେକ୍ଷା କରନ୍ତି ସେ ମଧ୍ୟମ ଭକ୍ତ । ୩୧ଶ ଶ୍ଲୋକାର୍ଥ ।

ଯେଉଁ ବ୍ୟକ୍ତି ଶ୍ରଦ୍ଧାପୂର୍ବକ ପ୍ରତିମାରେ ଶ୍ରୀହରିଙ୍କୁ ପୂଜା କରନ୍ତି, କିନ୍ତୁ ଭଗବଦ୍ଭକ୍ତ କିମ୍ବା ଅନ୍ୟ କାହାରିକୁ ପୂଜା କରନ୍ତି ନାହିଁ, ସେ କନିଷ୍ଠଭକ୍ତ ଅର୍ଥାତ୍ ସେ ପ୍ରାରବ୍ଧ ଭକ୍ତି ଲାଭ କରିଅଛନ୍ତି । କ୍ରମେ କ୍ରମେ ଉତ୍ତମ ହେବେ । ୩୨ଶ ଶ୍ଲୋକାର୍ଥ ।

ସବ ମହାଗୁଣଗଣ ବୈଷ୍ଣବଶରୀରେ ।
କୃଷ୍ଣଭକ୍ତେ କୃଷ୍ଣେର ଗୁଣ ସକଲ ସଞ୍ଚାରେ ।୪୩।
ତଥାହି ( ଭାଃ ୫।୧୮।୧୨ )—
ଯସ୍ୟାସ୍ତି ଭକ୍ତିର୍ଭଗବତ୍ୟକିଞ୍ଚନା,
ସର୍ବୈର୍ଗୁଣୈସ୍ତତ୍ର ସମାସତେ ସୁରାଃ ।
ହରାବଭକ୍ତସ୍ୟ କୁତୋ ମହଦ୍‌ଗୁଣା,
ମନୋରଥେନାସତି ଧାବତୋ ବହିଃ ।୩୩।
ଏଇ ସବ ଗୁଣ ହୟ ବୈଷ୍ଣବଲକ୍ଷଣ ।
ସବ କହା ନାହି ଯାୟ, କରି ଦିଗ୍‌ଦରଶନ ।୪୪।

କୃପାଲୁ, ଅକୃତଦ୍ରୋହ, ସତ୍ୟସାର ସମ ।
ନିର୍ଦୋଷ, ବଦାନ୍ୟ, ମୃଦୁ, ଶୁଚି, ଅକିଞ୍ଚନ ।
ସର୍ବୋପକାରକ, ଶାନ୍ତ, କୃଷ୍ଣୈକଶରଣ ।
ଅକାମ, ଅନୀହ, ସ୍ଥିର, ବିଜିତଷଡ଼୍‌ଗୁଣ ।୪୬।
ମିତଭୁକ, ଅପ୍ରମତ୍ତ, ମାନଦ, ଅମାନୀ ।
ଗମ୍ଭୀର, କରୁଣ, ମୈତ୍ର, କବି, ଦକ୍ଷ, ମୌନୀ ।
ତଥାହି ( ଭାଃ ୩।୨୫।୨୦ )—
ତିତିକ୍ଷବଃ କାରୁଣିକାଃ ସୁହୃଦଃ ସର୍ବଦେହିନାମ୍ ।
ଅଜାତଶତ୍ରବଃ ଶାନ୍ତାଃ ସାଧବଃ ସାଧୁଭୂଷଣାଃ ।୩୪।

---

ତିତିକ୍ଷବଃ କାରୁଣିକାଃ ସର୍ବଦେହିନାଂ ସୁହୃଦଃ ଅଜାତଶତ୍ରବଃ ଶାନ୍ତାଃ—ଶମଦମାଦି-ସାଧନ ଚତୁଷ୍ଟୟସମ୍ପନ୍ନାଃ, ସାଧୁଭୂଷଣାଃ—ସ୍ୱୟଂ ସାଧବୋଽପି ଯେ ସାଧୂନ୍ ଅର୍ନାଷ୍ଟ ଭୂଷୟନ୍ତି—ମାନୟନ୍ତିତେ, ସାଧବଃ ଉଚ୍ୟନ୍ତେ । ୩୪ଶ ଶ୍ଳୋକଃ ।

---

୩୩ଶ ଶ୍ଳୋକର ଅନ୍ୱୟ ଆଦି ୮ପରି: ୫ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଦ୍ରଶ୍ରବା ଶ୍ରୀଭଗବାନଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି—ଯେଉଁ ବ୍ୟକ୍ତିଙ୍କର ଶ୍ରୀଭଗବାନଙ୍କ ଠାରେ ନିଷ୍କାମଭକ୍ତି ଜନ୍ମେ ସେହି ଭକ୍ତିପ୍ରସାଦରୁ ସେହି ବ୍ୟକ୍ତିଙ୍କ ଶରୀରରେ ଶ୍ରୀଭଗବାନ ଅନୁଚରଦେବତା ଓ ମୁନିମାନଙ୍କ ସହ ଧର୍ମ, ଜ୍ଞାନ, ବୈରାଗ୍ୟାଦି ଗୁଣମାନଙ୍କ ସହ ସମ୍ୟକ୍‌ରୂପେ ବଶୀଭୂତ ହୋଇ ବାସ କରନ୍ତି । ଅର୍ଥାତ୍ ସେହି ଭାଗ୍ୟବାନ୍ ବ୍ୟକ୍ତିଙ୍କ ଶରୀରରେ ଶ୍ରୀଭଗବାନ ଦେବତା ଓ ମୁନିମାନଙ୍କର ତାବତୀୟ ସଦ୍‌ଗୁଣମାନ ପ୍ରକାଶ ପାଆନ୍ତି । ଶ୍ରୀଭଗବାନଙ୍କର ଅଭକ୍ତ ଅର୍ଥାତ୍ ବହିର୍ମୁଖ ବ୍ୟକ୍ତିଙ୍କର ମନ ସର୍ବଦା ଅକିଞ୍ଚିତ୍କର ବିଷୟ ସୁଖଲାଳସାରେ ଭ୍ରମଣ କରୁଥିବା ହେତୁ ସେ ଶ୍ରୀହରିଭକ୍ତର ମହତ୍ ଗୁଣମାନ ପାଆନ୍ତି ନାହିଁ । ୩୩ଶ ଶ୍ଳୋକାର୍ଥ ।

ଅକୃତଦ୍ରୋହ—କାହାରି ଅନିଷ୍ଟ କରନ୍ତି ନାହିଁ ।
ସତ୍ୟସାର—ସତ୍ୟବାଦୀ । ସମ—ନିରପେକ୍ଷ ।
ମୃଦୁ—କୋମଳସ୍ୱଭାବ । ଅକିଞ୍ଚନ—ନିରଭିମାନୀ, ନିଷ୍କାମ । ୪୫ ।
କୃଷ୍ଣୈକଶରଣ—ଶ୍ରୀକୃଷ୍ଣଙ୍କୁ ଐକାନ୍ତିକଭାବରେ ଯେ ଆଶ୍ରୟ କରିଅଛନ୍ତି ।
ଅନୀହ—ଚେଷ୍ଟାଶୂନ୍ୟ ।

ବିଜିତଷଡ଼୍‌ଗୁଣ—କାମକ୍ରୋଧାଦି ଷଡ଼୍‌ରିପୁକୁ ଜୟ କରିଅଛନ୍ତି । କିମ୍ବା କ୍ଷୁଧା, ପିପାସା, ଜରା, ବ୍ୟାଧି, ଶୋକ, ମୋହକୁ ଜୟ କରିଅଛନ୍ତି । ୪୬ ।

ମିତଭୁକ୍—ପରିମିତାହାରୀ । ଅପ୍ରମତ୍ତ—ସାବଧାନ ବା ସତର୍କ ।
ମାନଦ—ଅପରକୁ ସମ୍ମାନ କରନ୍ତି । ଅମାନୀ—ଅଭିମାନଶୂନ୍ୟ ।
କବି—ବିଜ୍ଞ । ମୌନୀ—ବୃଥା ଆଳାପତ୍ୟାଗୀ । ୪୭ ।

ଶ୍ରୀକପିଳଦେବ କହୁଅଛନ୍ତି—ଯେଉଁ ସମସ୍ତ ପୁରୁଷ ସହିଷ୍ଣୁ, କରୁଣାଶୀଳ, ସକଳ ପ୍ରାଣୀର ସୁହୃତ୍, ଅଜାତଶତ୍ରୁ, ଶମଦମାଦି—ସାଧନ ଚତୁଷ୍ଟୟସମ୍ପନ୍ନ ଓ ସାଧୁମାନଙ୍କର ସମ୍ମାନକର୍ତ୍ତା ସେମାନେ ଠିକ ସାଧୁ । ୩୪ଶ ଶ୍ଳୋକାର୍ଥ ।

ତଥାହି ତତ୍ରୈବ ( ଭାଃ ୫।୫।୨ )—

ମହତ୍ସେବାଂ ଦ୍ୱାରମାହୁର୍ବିମୁକ୍ତେ-
ସ୍ତମୋଦ୍ୱାରଂ ଯୋଷିତାଂ ସଙ୍ଗିସଙ୍ଗମ୍ ।
ମହାନ୍ତସ୍ତେ ସମଚିତ୍ତାଃ ପ୍ରଶାନ୍ତା,
ବିମନ୍ୟବଃ ସୁହୃଦଃ ସାଧବୋ ଯେ । ୩୫ ।

କୃଷ୍ଣଭକ୍ତିଜନ୍ମମୂଳ ହୟ—ସାଧୁସଙ୍ଗ ।
କୃଷ୍ଣପ୍ରେମ ଜନ୍ମେ ତେଁହୋ ପୁନ ମୁଖ୍ୟ ଅଙ୍ଗ ।୪୮।

ତଥାହି ( ଭାଃ ୧୦।୫୧।୫୩ ) —
ଭବାପବର୍ଗୋ ଭ୍ରମତୋ ଯଦା ଭବେତ୍,
ଜନସ୍ୟ ତର୍ହ୍ୟଚ୍ୟୁତ ସତ୍ସମାଗମଃ ।
ସତ୍ସଙ୍ଗମୋ ଯର୍ହି ତଦୈବ ସଦ୍ଗତୌ,
ପରାବରେଶେ ତ୍ୱୟି ଜାୟତେ ରତିଃ । ୩୬ ।

ତଥାହି ତତ୍ରୈବ ( ଭାଃ ୧୧।୨।୨୮ )—
ଅତ ଆତ୍ୟନ୍ତିକଂ କ୍ଷେମଂ ପୃଚ୍ଛାମୋ
ଭବତୋଽନଘାଃ ।
ସଂସାରେଽସ୍ମିନ୍ କ୍ଷଣାର୍ଦ୍ଧୋଽପି ସତ୍ସଙ୍ଗଃ
ସେବଧିର୍ନୃଣାମ୍ । ୩୭।

---

ମହତ୍ସେବାଂ ବିମୁକ୍ତେଃଦ୍ୱାରଂ ଆହୁଃ, ଯୋଷିତାଂ ସଙ୍ଗିସଙ୍ଗଂ ( ଯେ ସଙ୍ଗିନଃ ତେଷାଂ ସଙ୍ଗଂ ଚ ) ତମୋଦ୍ୱାରଂ—ତମସଃ ସଂସାରସ୍ୟଦ୍ୱାରଂ, ଯେ ସମଚିତ୍ତାଃ ପ୍ରଶାନ୍ତାଃବିମନ୍ୟବଃ ସୁହୃଦଃ ସାଧବଃ ତେ ମହାନ୍ତଃ । ୩୫ଶ ଶ୍ଳୋକଃ ।

ଅତଃ—ପୁନଃ ଭବଦ୍ଦର୍ଶନସ୍ୟ ଦୁର୍ଲ୍ଲଭତ୍ୱାତ୍ ଅନଘାଃ ଆତ୍ୟନ୍ତିକଂ ନିରତିଶୟଂ କ୍ଷେମଂ ଭବତଃ ପୃଚ୍ଛାମଃ । ଅସ୍ମିନ୍ ସଂସାରେ କ୍ଷଣାର୍ଦ୍ଧଃ—କ୍ଷଣକାଳଭବଃ, ଅପି ସତ୍ସଙ୍ଗଃ ନୃଣାଂ ସେବଧିଃ —ସର୍ବାଭୀଷ୍ଟଦଃନିଧିଃ । ୩୭ଶ ଶ୍ଳୋକଃ ।

ଭଗବତ୍‌ସଙ୍ଗ ଏବ କର୍ତ୍ତବ୍ୟ ଇତ୍ୟାହ 'କୃଷ୍ଣ' ଇତି । ସାଧୁସଙ୍ଗଃ ଭଗବଦ୍‌ଭକ୍ତସଙ୍ଗଃ ଭକ୍ତସଙ୍ଗାତ୍ କୃଷ୍ଣଭକ୍ତିର୍ଭବତି ଅତସ୍ତତ୍ସଙ୍ଗଃ କର୍ତ୍ତବ୍ୟ ଇତି ଭାବଃ । ୪୮ । ବି, ଚ,

---

ଶ୍ରୀଋଷଭଦେବ ପୁତ୍ରମାନଙ୍କୁ କହୁଅଛନ୍ତି—ପଣ୍ଡିତମାନେ ମହତ୍‌ସେବାକୁ ମୁକ୍ତିର ଦ୍ୱାର ଓ ଯୋଷିତ୍ ସଙ୍ଗିମାନଙ୍କର ସଙ୍ଗକୁ ସଂସାରର କାରଣ ବୋଲି କହନ୍ତି । ଯେଉଁ ବ୍ୟକ୍ତିମାନେ ସମସ୍ତଙ୍କର ସୁହୃତ୍ ପ୍ରଶାନ୍ତ, କ୍ରୋଧହୀନ ଏବଂ ସର୍ବପ୍ରାଣୀରେ ସମଦର୍ଶୀ ସେମାନେ ମହତ୍ । ୩୫ଶ ଶ୍ଳୋକାର୍ଥ ।

ସାଧୁସଙ୍ଗ—ଭଗବତ୍ ଭକ୍ତ ସଙ୍ଗ, ଭକ୍ତସଙ୍ଗରୁ କୃଷ୍ଣଭକ୍ତି ଜାତ ହୁଏ, ଅତଏବ ଭକ୍ତସଙ୍ଗ କର୍ତ୍ତବ୍ୟ ଏବଂ ତହିଁରୁ କ୍ରମେ ଶ୍ରୀକୃଷ୍ଣପ୍ରେମ ଲାଭ ହୁଏ । ୪୮ ।

୩୬ ଶ୍ଳୋକର ଅନୁବାଦ ଏହିପରିଚ୍ଛେଦର ୧୭ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀମୁଚୁକୁନ୍ଦ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ହେ ଅଚ୍ୟୁତ ! ସଂସାର ଭ୍ରମଣ କରୁ କରୁ କୌଣସି ଜୀବର ଯେତେବେଳେ ସଂସାର କ୍ଷୟକାଳ ଉପସ୍ଥିତ ହୁଏ, ସେତେବେଳେ ତାହାର ଶ୍ରୀଭଗବଦ୍‌ଭକ୍ତଙ୍କର ସଙ୍ଗ ଲାଭ ହୁଏ ଏବଂ ସତ୍ ସଙ୍ଗ ହେଲେ ସାଧୁମାନଙ୍କର ଆଶ୍ରୟ ଏବଂ କାର୍ଯ୍ୟ କାରଣର ନିୟନ୍ତା ଆପଣଙ୍କଠାରେ ତାହାର ରତି ଜାତ ହୁଏ । ୩୬ଶ ଶ୍ଳୋକାର୍ଥ ।

ବିଦେହରାଜା ନିମି ନବଯୋଗେନ୍ଦ୍ରଙ୍କୁ ପଚାରୁଅଛନ୍ତି—ହେ ଅନଘ ! ( [illegible] ) ଋଷିଗଣ ! ଆପଣମାନଙ୍କୁ ନିରତିଶୟ ମଙ୍ଗଳ ପଚାରୁଅଛି । ଏହି ସଂସାରରେ କ୍ଷଣାର୍ଦ୍ଧକାଳ ସାଧୁସଙ୍ଗ ମନୁଷ୍ୟମାନଙ୍କର ସର୍ବାଭୀଷ୍ଟପ୍ରଦ ନିଧି ସ୍ୱରୂପ । ଏହାର ଭାବ ଏହି ଯେ—ସାଧୁସଙ୍ଗ ଅତ୍ୟନ୍ତ ଦୁର୍ଲ୍ଲଭ । ୩୭ଶ ଶ୍ଳୋକାର୍ଥ ।

ତଥାହି ତତ୍ରୈବ ( ଭାଃ ୩।୨୫।୨୪ )—
ସତାଂ ପ୍ରସଙ୍ଗାନ୍ମମ ବୀର୍ଯ୍ୟସମ୍ବିଦୋ,
ଭବନ୍ତି ହୃତ୍କର୍ଣ୍ଣରସାୟନାଃ କଥାଃ ।
ତଜ୍ଜୋଷଣାଦାଶ୍ୱପବର୍ଗବର୍ତ୍ମନି,
ଶ୍ରଦ୍ଧା ରତିର୍ଭକ୍ତିରନୁକ୍ରମିଷ୍ୟତି । ୩୮ ।

ଅସତ୍ସଙ୍ଗ ତ୍ୟାଗ ଏଇ ବୈଷ୍ଣବ-ଆଚାର ।
ସ୍ତ୍ରୀସଙ୍ଗୀ ଏକ 'ଅସାଧୁ'— କୃଷ୍ଣାଭକ୍ତ ଆର ।୪୯।

ତଥାହି ( ଭାଃ ୩।୩୧।୩୫ )—
ନ ତଥାସ୍ୟ ଭବେନ୍ମୋହୋ ବନ୍ଧଶ୍ଚାନ୍ୟପ୍ରସଙ୍ଗତଃ
ଯୋଷିତ୍ସଙ୍ଗାଦ୍ୟଥା ପୁଂସୋ ଯଥା
ତତ୍ସଙ୍ଗିସଙ୍ଗତଃ । ୩୯ ।

ତତ୍ରୈବ ତତ୍ରୈବ ( ଭାଃ ୩।୩୧।୩୩।୩୪ )—
ସତ୍ୟଂ ଶୌଚଂ ଦୟା ମୌନଂ ବୁଦ୍ଧିର୍ହ୍ରୀଃ
ଶ୍ରୀର୍ଯଶଃ କ୍ଷମା
ଶମୋ ଦମୋ ଭଗଶ୍ଚେତି ଯତ୍ସଙ୍ଗାଦ୍ୟାତି
ସଙ୍କ୍ଷୟମ୍ । ୪୦ ।
ତେଷ୍ୱଶାନ୍ତେଷୁ ମୂଢ଼େଷୁ ଖଣ୍ଡିତାତ୍ମସ୍ୱସାଧୁଷୁ ।
ସଙ୍ଗଂ ନ କୁର୍ଯ୍ୟାଚ୍ଛୋଚ୍ୟେଷୁ ଯୋଷିତ୍-
କ୍ରୀଡ଼ାମୃଗେଷୁ ଚ । ୪୧ ।

ଯଥା ଯୋଷିତ୍ସଙ୍ଗାତ୍ ଯଥା (ଚ ତତ୍ ସଙ୍ଗିସଙ୍ଗତଃ—ଯୋଷିତ୍ସଙ୍ଗିନାଂ ସଙ୍ଗାତ୍ ପୁଂସଃ ବନ୍ଧଃ ମୋହଶ୍ଚ ଭବେତ୍ । ତଥା ଅନ୍ୟପ୍ରସଙ୍ଗତଃ ଅସ୍ୟ—ପୁଂସଃ ମୋହାଦି ନ ଭବେତ୍ । ୩୯ଶ ଶ୍ଳୋକଃ ।

ଯତ୍ସଙ୍ଗାତ୍ ସତ୍ୟଂ, ଶୌଚଂ, ଦୟା, ମୌନଂ, ବୁଦ୍ଧିଃ, ହ୍ରୀଃ, ଶ୍ରୀଃ, ଯଶଃ, କ୍ଷମା, ଶମଃ, ଦମଃ, ଭଗଃ ଚ ଇତି ସଙ୍କ୍ଷୟଂ ଯାତି, ତେଷୁ ଅଶାନ୍ତେଷୁ ମୂଢ଼େଷୁ ଅସାଧୁଷୁ ଖଣ୍ଡିତାତ୍ମସୁ—ଦେହାତ୍ମବୁଦ୍ଧିଷୁ, ଯୋଷିତ୍କ୍ରୀଡ଼ାମୃଗେଷୁ—ଯୋଷିତାଂ କ୍ରୀଡ଼ା ମୃଗଇବ ଅଧୀନେଷୁ ଚ ଶୋଚ୍ୟେଷୁ ସଙ୍ଗଂ ନ କୁର୍ଯ୍ୟାତ୍ । ୪୦।୪୧ ଶ୍ଳୋକଃ ।

ଅପିଚ କୃଷ୍ଣଇତି । ଭଗବଦ୍ଭକ୍ତସଙ୍ଗାତ୍ କୃଷ୍ଣପ୍ରେମ ଭବତି, ଅତଃ ସଃ କର୍ତ୍ତବ୍ୟ ଇତି ଭାବଃ । ବି. ଚ.

ଭଗବଦ୍ଭକ୍ତସ୍ୟ ଆଚରଣମାତ୍ର "ଅସତ" ଇତି । ବି. ଚ.

୩୮ଶ ଶ୍ଳୋକର ଅନ୍ୱୟ ଆଦି ୧ ପରି ୩୦ଶତ୍ର ଶ୍ଳୋକରେ ଦ୍ରଷ୍ଟବ୍ୟ ।

ସାଧୁମାନଙ୍କର ସଙ୍ଗରେ ମୋର (ଭଗବାନଙ୍କର) ମାହାତ୍ମ୍ୟ ପ୍ରକାଶକ କଥା ଆଲୋଚିତ ହେଲେ ତାହା ଭକ୍ତର ହୃଦୟ ଓ କର୍ଣ୍ଣର ସୁଖଦାୟକ ହୁଏ, ସେପ୍ରକାର କଥା ଆସ୍ୱାଦନଦ୍ୱାରା ମୁକ୍ତିପ୍ରଦ ଭଗବାନଙ୍କଠାରେ ଶୀଘ୍ର ଶ୍ରଦ୍ଧା, ରତି ଓ ଭକ୍ତି କ୍ରମେ ଉତ୍ପନ୍ନ ହୁଏ । ୩୮ ଶ ଶ୍ଳୋକାର୍ଥ ।

ଭଗବଦ୍ଭକ୍ତଙ୍କ ଆଚରଣ ବିଷୟ କହୁଅଛନ୍ତି ।

ସ୍ତ୍ରୀସଙ୍ଗୀ—ଲମ୍ପଟ । କୃଷ୍ଣାଭକ୍ତ— ଶ୍ରୀକୃଷ୍ଣଙ୍କର ଅଭକ୍ତ ବହିର୍ମୁଖ ।

ଶ୍ରୀକପିଳଦେବ ମାଙ୍କୁ କହୁଅଛନ୍ତି—ସ୍ତ୍ରୀ ସଙ୍ଗ ଓ ସ୍ତ୍ରୀ ସଙ୍ଗୀର ସଙ୍ଗଦ୍ୱାରା ପୁରୁଷର ଯେପରି ମୋହ ଓ ସଂସାରବନ୍ଧନ ଜାତ ହୁଏ, ଅନ୍ୟବ୍ୟକ୍ତିର ସଙ୍ଗରେ ସେପରି ହୁଏ ନାହିଁ । ୩୯ଶ ଶ୍ଳୋକାର୍ଥ ।

ସ୍ତ୍ରୀସଙ୍ଗ—ସ୍ତ୍ରୀ ସଙ୍ଗ ବାସନାରେ ସେହି ବିଷୟ ଆଲୋଚନା କରିବା ।

ଯେଉଁ ଅସତ୍ସଙ୍ଗଦ୍ୱାରା ପୁରୁଷର ସତ୍ୟ, ଶୌଚ, ଦୟା, ମୌନ, ବୁଦ୍ଧି, ଲଜ୍ଜା, ଶ୍ରୀ, ଯଶ, କ୍ଷମା, ଶମ, ଦମ ଓ ଐଶ୍ୱର୍ଯ୍ୟ ଏ ସମସ୍ତ ବିନଷ୍ଟ ହୁଏ, ସେହି ଅଶାନ୍ତ ମୂଢ଼ ଅସାଧୁ ଦେହରେ

ତଥାହି ହରିଭକ୍ତିବିଲାସେ ( ୧୦।୨୨୪ )—
ଭକ୍ତିରସାମୃତସିନ୍ଧୌ ( ୧।୨।୫୧ )
କାତ୍ୟାୟନସଂହିତାବଚନମ୍ ।—
ବରଂ ହୁତବହଜ୍ୱାଲା-ପଞ୍ଜରାନ୍ତର୍ବ୍ୟବସ୍ଥିତିଃ ।
ନ ଶୌରିଚିନ୍ତାବିମୁଖ-ଜନସଂବାସବୈଶସମ୍ ।୪୨।
ତଥାହି ଗୋସ୍ୱାମିପାଦୋକ୍ତ ଶ୍ଲୋକପାଦଃ—
ମା ଦ୍ରାକ୍ଷୀଃ କ୍ଷୀଣପୁଣ୍ୟାନ୍ କ୍ୱଚିଦପି

ଭଗବଦ୍ଭକ୍ତିହୀନାନ୍ ମନୁଷ୍ୟାନ୍ । ୪୩ ।
ଏ ସବ ଛାଡ଼ିଯା ଆର ବର୍ଣ୍ଣାଶ୍ରମ ଧର୍ମ ।
ଅକିଞ୍ଚନ ହଞା ଲୟ କୃଷ୍ଣୈକ ଶରଣ । ୫୦ ।
ତଥାହି ଶ୍ରୀଗୀତାୟାମ୍ ( ୧୮।୬୬ )—
ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି
ମା ଶୁଚଃ । ୪୪ ।

---

ହୁତବହ ଜ୍ୱାଲା ପଞ୍ଜରାନ୍ତଃ ବ୍ୟବସ୍ଥିତିଃ—ଜ୍ୱଳଦଗ୍ନି ନିବାସଃ, ବରଂ, ଶୌରିଚିନ୍ତା-ବିମୁଖଜନସଂବାସବୈଶସଂ—ଶୌରିଃ—କୃଷ୍ଣଃତସ୍ୟ ଚିନ୍ତାୟା ଅପି ବିମୁଖଃ ଯଃ ଜନଃ ତେନ ସଂବାସଃ—ସହବାସ ଏବ ବୈଶସଂ—ପୀଡ଼ା, ନ (ଏବଂଭୁତୋଽଭବ୍ୟଂ) । ୪୨ଶ ଶ୍ଲୋକଃ ।

ଭଗବଦ୍ଭକ୍ତିହୀନାନ୍ (ଅତଏବ) କ୍ଷୀଣପୁଣ୍ୟାନ୍ ମନୁଷ୍ୟାନ୍ କ୍ୱଚିତ୍ ଲୌକିକକାର୍ଯ୍ୟାଦୌ ଅପି ମା—ନ, ଦ୍ରାକ୍ଷ୍ୟଃ—ଦୃଷ୍ଟବାନ୍ (ଭୂମିତି) । ୪୩ ଶ୍ଲୋକଃ ।

ତତୋଽପି ଗୃହ୍ୟତମମନ-ଦାଚରଣାଦ୍ 'ଏଇ' ଇତି । ବି. ଚ.

---

ଅସ୍ପୃଶ୍ୟ ବିଶିଷ୍ଟ ଏବଂ ସ୍ତ୍ରୀର କ୍ରୀଡ଼ାମୃଗ ( ସ୍ତ୍ରୀ ପରତନ୍ତ୍ର ) ଶୋଚ୍ୟବ୍ୟକ୍ତିଙ୍କର ସଙ୍ଗ କଦାଚ କରିବ ନାହିଁ । ୪୦।୪୧ଶ୍ଲୋକାର୍ଥ ।

ବରଂ ପ୍ରଜ୍ୱଳିତହୁତାଶନର ଶିଖାଯୁକ୍ତ ପଞ୍ଜର ମଧ୍ୟରେ ଅବସ୍ଥାନ କରିବା ଭଲ, ତଥାପି ଯେପରି ଶ୍ରୀକୃଷ୍ଣଙ୍କ ଚିନ୍ତାବିମୁଖଜନର ସହବାସରୁ କ୍ଲେଶ ଭୋଗିବାକୁ ନ ହୁଏ । ୪୨ ଶ୍ଲୋକାର୍ଥ ।

ଭଗବତ୍ ଭକ୍ତିହୀନ କ୍ଷୀଣପୁଣ୍ୟ ମନୁଷ୍ୟମାନଙ୍କୁ ଲୌକିକକାର୍ଯ୍ୟାଦିରେ ସୁଦ୍ଧା ଦେଖିବ ନାହିଁ । ୪୩ ଶ୍ଲୋକାର୍ଥ ।

ଏସବ୍ଛାଡ଼ିଯା—ପୂର୍ବବର୍ଣ୍ଣିତ ଅସତ୍ ସଙ୍ଗାଦି ।
ବର୍ଣ୍ଣାଶ୍ରମଧର୍ମ —ଜାତିଗତ ଓ ଆଶ୍ରମଗତ ଧର୍ମରେ ଅନାସକ୍ତ ହୋଇ ।
ଅକିଞ୍ଚନ—ଦେହଦୈହିକରେ ନିରଭିମାନ ।
କୃଷ୍ଣୈକଶରଣ—ଏକାନ୍ତଭାବରେ କୃଷ୍ଣଶରଣ ।
୪୪ ଶ୍ଲୋକର ଅନ୍ୱୟ—ମଧ୍ୟ: ୯ମ ପରିଃ ୬୧ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ଅର୍ଜୁନ ! ତୁମ୍ଭେ ସର୍ବ ଧର୍ମ ଓ କର୍ମ ପରିତ୍ୟାଗ ପୂର୍ବକ ଏକମାତ୍ର ମୋର ଶରଣାପନ୍ନ ହୁଅ, ମୁଁ ତୁମ୍ଭଙ୍କୁ କର୍ମତ୍ୟାଗରୂପ ପାପରୁ ଉଦ୍ଧାର କରିବି, ଶୋକ କର ନା । ୪୪ ଶ୍ଲୋକାର୍ଥ ।

ଭକ୍ତବତ୍ସଲ କୃତଜ୍ଞ ସମର୍ଥ ବଦାନ୍ୟ ।
ହେନ କୃଷ୍ଣ ଛାଡ଼ି ପଣ୍ଡିତ ନାହି ଭଜେ ଅନ୍ୟ ।

ତଥାହି ( ଭାଃ ୧୦।୪୮।୨୬ )—

କଃ ପଣ୍ଡିତସ୍ତ୍ୱଦପରଂ ଶରଣଂ ସମୀୟାଦ୍-
ଭକ୍ତପ୍ରିୟାଦୃତଗିରଃ ସୁହୃଦଃ କୃତଜ୍ଞାତ୍ ।
ସର୍ବାନ୍ ଦଦାତି ସୁହୃଦୋ ଭଜତୋଽଭିକାମା-
ନାତ୍ମାନମପ୍ୟୁପଚୟାପଚୟୌ ନ ଯସ୍ୟ । ୪୫ ।

ଅଜ୍ଞଜନେର ହୟ ଯଦି କୃଷ୍ଣଗୁଣଜ୍ଞାନ ।
ଅନ୍ୟ ତ୍ୟଜି ଭଜେ, ତାତେ ଉଦ୍ଧବ ପ୍ରମାଣ ।୫୨।

ତଥାହି ( ଭାଃ ୩।୨।୨୩ )—

ଅହୋ ବକୀ ଯଂ ସ୍ତନକାଳକୂଟଂ,
ଜିଘାଂସୟାପାୟୟଦପ୍ୟସାଧ୍ୱୀ ।
ଲେଭେ ଗତିଂ ଧାତ୍ର୍ୟୁଚିତାଂ ତତୋଽନ୍ୟଂ,
କଂ ବା ଦୟାଳୁଂ ଶରଣଂ ବ୍ରଜେମ । ୪୬ ।

---

ଯଃ ଭଜତଃ—ଭଜତେ, ସୁହୃଦଃ—ସୁହୃଦେ, ସର୍ବାନ୍ ଅଭିକାମାନ୍ ଆତ୍ମାନମପି ଦଦାତି ଯସ୍ୟ ଉପଚୟାପଚୟୌ ନ (ସ୍ତଃ), ଭକ୍ତପ୍ରିୟାତ୍ ଋତଗିରଃ ସୁହୃଦଃ କୃତଜ୍ଞାତ୍ ତ୍ୱତ୍—ତ୍ୱତ୍ତଃ, ଅପରଂ କଃ ପଣ୍ଡିତଃ ଶରଣଂ ସମୀୟାତ୍ । ୪୫ଶ୍ଳୋକଃ ।

ଅହୋ—ଆଶ୍ଚର୍ଯ୍ୟଂ ଦୟାଳୁତା, ଜିଘାଂସୟା—ହନ୍ତୁଂଇଚ୍ଛୟାଅପି ସ୍ତନକାଳକୂଟଂ—ସ୍ତନୟୋଃସମ୍ଭୂତଂ କାଳକୂଟଂ—ବିଷଂ, ଯଂ—ଶ୍ରୀକୃଷ୍ଣଂ ଅପାୟୟତ୍, ବକୀ—ପୂତନା, ଅସାଧ୍ୱୀ—ଦୁଷ୍ଟା ଅପି, ଧାତ୍ର୍ୟୁଚିତାଂ—ଧାତ୍ର୍ୟାଃ—ଯଶୋଦାୟାଃ ଉଚିତାଂ ଗତିଂ ଲେଭେ, ଭକ୍ତବେଶମାତ୍ରେଣ ଯଃ ସଦ୍‌ଗତିଂ ଦତ୍ତବାନ୍ ଇତ୍ୟର୍ଥଃ, ତତଃ ଅନ୍ୟଂ କଂ ବା ଦୟାଳୁଂ ଶରଣଂ ବ୍ରଜେମ । ୪୬ଶ ଶ୍ଳୋକଃ ।

'ଜନ୍ମକର୍ମ୍ମୈକଶରଣେ' ଇତ୍ୟେତଦ୍‌ଦର୍ଶୟତି 'ଭକ୍ତବତ୍ସଳ' ଇତି । ଅନ୍ୟ ଦେବତାନ୍ତରଂ, ପଣ୍ଡିତାଃ କୃଷ୍ଣମେବ ଭଜନ୍ତୀତ୍ୟର୍ଥଃ । ବି. ଚ.

ପଣ୍ଡିତାଃ କୃଷ୍ଣମେବ ଭଜନ୍ତୀତ୍ୟତ୍ର ସଦାଗ୍ରହଂ ପ୍ରମାଣୟତି—'ଅଜ୍ଞଜନେର' ଇତି ଅତ୍ର ଉଦ୍ଧବଃ ପ୍ରମାଣମିତ୍ୟର୍ଥଃ । ବି. ଚ,

---

ଅନ୍ୟ— କୃଷ୍ଣଙ୍କ ଭିନ୍ନ ଅନ୍ୟଦେବତା । ୫୧ ।

ଶ୍ରୀଅକ୍ରୂର ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ଯେ ଭଜନକାରୀ ସୁହୃଦ୍ ବ୍ୟକ୍ତିଙ୍କର ସମସ୍ତ କାମନା ପୂରଣ କରନ୍ତି ଏବଂ ନିଜ ଆତ୍ମାକୁ ପର୍ଯ୍ୟନ୍ତ ଦାନ କରନ୍ତି । ଯାହାଙ୍କର ହ୍ରାସ ବା ବୃଦ୍ଧି ନାହିଁ, ସେହି ଭକ୍ତପ୍ରିୟ, ସତ୍ୟସଙ୍କଳ୍ପ, ସୁହୃଦ୍, କୃତଜ୍ଞ ଆପଣଙ୍କ ବ୍ୟତୀତ ପଣ୍ଡିତମାନେ ଅନ୍ୟ କାହାର ଶରଣ ଗ୍ରହଣ କରିବେ । ୪୫ ଶ୍ଳୋକାର୍ଥ ।

ଶ୍ରୀଉଦ୍ଧବ ଶ୍ରୀବିଦୁରଙ୍କୁ କହୁଅଛନ୍ତି—ଦୁଷ୍ଟା ପୂତନା ପ୍ରାଣ ବିନାଶ ସଙ୍କାଶେ ଯାହାଙ୍କୁ ସ୍ତନସମ୍ଭୂତ କାଳକୂଟ ବିଷ ପାନ କରାଇ ଜନନୀ ଯୋଗ୍ୟ ଗତି ଲାଭ କରିଅଛି, ସେହି ଶ୍ରୀକୃଷ୍ଣ ଭିନ୍ନ ଆଉ ଏପରି ଦୟାଳୁ କିଏ ଅଛି ଯେ ତାହାଙ୍କୁ ଭଜନା କରିବୁଁ । ୪୬ଶ ଶ୍ଳୋକାର୍ଥ ।

ଶରଣାଗତ ଅକିଞ୍ଚନେର ଏକଇ ଲକ୍ଷଣ ।
ତାର ମଧ୍ୟେ ପ୍ରବେଶୟେ 'ଆତ୍ମସମର୍ପଣ' । ୬୩ ।
ତଥାହି ହରିଭକ୍ତିବିଳାସେ (୧୧।୪୧୭।୪୧୮)—
ଆନୁକୂଲ୍ୟସ୍ୟ ସଂକଳ୍ପଃ ପ୍ରାତିକୂଲ୍ୟବିବର୍ଜ୍ଜନମ୍ ।
ରକ୍ଷିଷ୍ୟତୀତି-ବିଶ୍ୱାସୋ ଗୋପ୍ତୃତ୍ୱେ ବରଣଂ ତଥା ।

ଆତ୍ମନିକ୍ଷେପ କାର୍ପଣ୍ୟେ ଷଡ୍‌ବିଧା ଶରଣାଗତିଃ
ତବାସ୍ମୀତି ବଦନ୍ ବାଚ୍ୟ ତଥୈବ ମନସା ବଦନ୍ ।
ତତ୍ସ୍ଥାନମାଶ୍ରିତସ୍ତନ୍ୱା ମୋଦତେ ଶରଣାଗତଃ ॥
ଶରଣ ଲଞା କରେ କୃଷ୍ଣେ ଆତ୍ମସମର୍ପଣ ।
କୃଷ୍ଣ ତାରେ କରେ ତତ୍କାଲେ ଆତ୍ମସମ । ୬୪ ।

---

ଅନୁକୂଲ୍ୟସ୍ୟ—ଭଗବଦ୍‌ଭଜନାନୁକୂଲତାୟାଃ ସଙ୍କଳ୍ପଃ—କର୍ତ୍ତବ୍ୟତ୍ୱେନ ନିୟମଃ, ପ୍ରାତିକୂଲ୍ୟବିବର୍ଜ୍ଜନଂ—ତଦ୍‌ବିପରୀତସ୍ୟବର୍ଜ୍ଜନଂ, ଗୋପ୍ତୃତ୍ୱେ—ପତିତ୍ୱେନ, ବରଣଂ—ସ୍ୱୀକରଣଂ ପ୍ରାର୍ଥନଂ ବା, ତଥା—ବିଶ୍ୱାସରୂପେ ପ୍ରୀତିରୂପେ ଚ ସଖ୍ୟେ, ରକ୍ଷିଷ୍ୟତୀତି ବିଶ୍ୱାସଃ, ଆତ୍ମନିକ୍ଷେପ-କାର୍ପଣ୍ୟେ—ଆତ୍ମନଃ ନିକ୍ଷେପଃ—ସମର୍ପଣଂ, କାର୍ପଣ୍ୟଂ ଚ ଭଗବନ୍ ? ରକ୍ଷ ରକ୍ଷ ଇତ୍ୟାଦି ପ୍ରକାରେଣ ଆର୍ତ୍ତିତ୍ୱଂ, ଇତି ଷଡ଼ବିଧା ଶରଣାଗତିଃ । ତବ (ଅହଂ) ଅସ୍ମି ଇତି ବାଚ୍ୟବଦନ୍ ତଥା-ଏବ ମନସା ବଦନ୍ ତନ୍ୱା—ଦେହେନ, ତତ୍ସ୍ଥାନଂ—ତସ୍ୟ ଭଗବତଃସ୍ଥାନଂ ଶ୍ରୀମଥୁରାଦିକଂ ଆଶ୍ରିତଃ ମୋଦତେ—ଯଃ ଆନନ୍ଦଂ ଅନୁଭବତି ସଃ ଶରଣାଗତଃ । ୪୭।୪୮ ଶ୍ଳୋକ ।

ଶ୍ରୀକୃଷ୍ଣେ ଆତ୍ମସମର୍ପଣମାତ୍ର 'ଶରଣ' ଇତି—ଶ୍ରୀକୃଷ୍ଣାତ୍ମସମତ୍ୱମେବ ତତ୍ଫଳମିତ୍ୟର୍ଥ । ବି. ଚ. ।

---

ଶରଣାଗତିର ପ୍ରଧାନ ଅଙ୍ଗ ଆତ୍ମନିବେଦନ ଅର୍ଥାତ୍ ପତିତ୍ୱରେ ବରଣପୂର୍ବକ ଆତ୍ମ-ନିବେଦନ । ଅକିଞ୍ଚନତ୍ୱ ଶରଣାଗତିର ଏକ ଅଙ୍ଗ । ୬୩ ।

ଭଗବତ୍ ଭଜନର ଅନୁକୂଳ ବିଷୟରେ ସଙ୍କଳ୍ପ, ଅର୍ଥାତ୍ ଭଗବତ୍ ଭଜନ କର୍ତ୍ତବ୍ୟ-ରୂପେ ନିୟମ, ତଦ୍‌ବିପରୀତର ବର୍ଜନ, ଭଗବାନ ରକ୍ଷା କରିବେ ଏହିପରି ଦୃଢ଼ ବିଶ୍ୱାସ, ଭଗବାନଙ୍କୁ ପତିରୂପେ ସ୍ୱୀକାର ବା ପ୍ରାର୍ଥନା, ଭଗବାନଙ୍କଠାରେ ଆତ୍ମସମର୍ପଣ, ହେ ଭଗବାନ୍ ! ରକ୍ଷା କର ରକ୍ଷା କର ଏହିପ୍ରକାରେ ଆର୍ତ୍ତିତ୍ୱ ଶରଣାଗତିର ଲକ୍ଷଣ ଏହି ଛ ପ୍ରକାର ଅଟେ । ହେ ପ୍ରଭୋ ! 'ମୁଁ ଆପଣଙ୍କର' ବାକ୍ୟଦ୍ୱାରା ଯେ ଏହା କହନ୍ତି, ମନରେ ସେହିପରି ବିଶ୍ୱାସ କରନ୍ତି, ଏବଂ ଦେହଦ୍ୱାରା ମଥୁରାଦି ଧାମକୁ ଆଶ୍ରୟ କରି ଆନନ୍ଦ ଅନୁଭବ କରନ୍ତି, ସେହି ବ୍ୟକ୍ତି ଶରଣା-ଗତ । ୪୭।୪୮ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କୁ ଆତ୍ମସମର୍ପଣ କଲେ ଜୀବ ତତ୍ଫଳସ୍ୱରୂପ ଶ୍ରୀକୃଷ୍ଣଙ୍କର ଆତ୍ମୀୟତ୍ୱ ଲାଭ କରନ୍ତି । ୬୪ ।

ତଥାହି (ଭାଃ ୧୧।୨୯।୩୪)—

ମର୍ତ୍ତ୍ୟୋ ଯଦା ତ୍ୟକ୍ତସମସ୍ତକର୍ମା,
ନିବେଦିତାତ୍ମା ବିଚିକୀର୍ଷିତୋ ମେ ।
ତଦାମୃତତ୍ୱଂ ପ୍ରତିପଦ୍ୟମାନୋ,
ମୟାତ୍ମଭୂୟାୟ ଚ କଳ୍ପତେ ବୈ । ୪୯ ।*

ଏବେ ସାଧନଭକ୍ତି ଲକ୍ଷଣ ଶୁନ ସନାତନ ।
ଯାହା ହୈତେ ପାଇ କୃଷ୍ଣପ୍ରେମ-ମହାଧନ ।୫୫।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୨)—

କୃତିସାଧ୍ୟା ଭବେତ୍ ସାଧ୍ୟଭାବା ସା ସାଧନାଭିଧା
ନିତ୍ୟସିଦ୍ଧସ୍ୟ ଭାବସ୍ୟ ପ୍ରାକଟ୍ୟଂ ହୃଦି ସାଧ୍ୟତା ।୫୦

---

ମର୍ତ୍ତ୍ୟଃ—ମନୁଷ୍ୟଃ ଯଦା ତ୍ୟକ୍ତସମସ୍ତକର୍ମା ସନ୍ ମେ—ମହ୍ୟଂ ନିବେଦିତାତ୍ମା ଭବତି, ତଦା ଅସୌ ମୟା ବିଚିକୀର୍ଷିତଃ—ବିଶିଷ୍ଟଂ କର୍ତ୍ତୁଂ ଇଷ୍ଟୋଭବତି । ତତଶ୍ଚ ଅମୃତଂ—ମୋକ୍ଷଂ ପ୍ରତିପଦ୍ୟମାନଃ, ମୟା ସହ ଆତ୍ମଭୂୟାୟ ମଦୈକ୍ୟାୟ ସମାନୈଶ୍ୱର୍ଯ୍ୟାୟ ଇତି ଯାବତ୍ କଳ୍ପତେ—ଯୋଗ୍ୟଃ ଭବତି । ୪୯ଶ ଶ୍ଲୋକଃ ।

କୃତୀତି, ସାମାନ୍ୟତୋ ଲକ୍ଷିତା ଉତ୍ତମାଭକ୍ତିଃ, କୃତ୍ୟା—ଇନ୍ଦ୍ରିୟପ୍ରେରଣୟା ସାଧ୍ୟା ଚେତ୍, ସା ସାଧନାଭିଧାନା ଭବତି । କୃତ୍ୟାସ୍ତଦନ୍ତର୍ଭବନ୍ତୁ ପୂର୍ବାନ୍ୱୟିନ୍ୟା ଯତ୍ନାନ୍ତର୍ଭବତ୍ ଇନ ଭାବାଦ୍ୟନୁଭବରୂପାୟା ବ୍ୟବଚ୍ଛେଦାର୍ଥମାହ ସାଧ୍ୟୋଭାବଃ ପ୍ରେମାଦିରୂପୋ ଯୟା ସା ନତୁ ଭାବଦିକା ସା ହି ତଦଙ୍ଗତ୍ୱାତ୍ ସାଧ୍ୟରୂପୈବେତି । ସାଧ୍ୟଭାବା ଇତ୍ୟନେନ ଚ ସାଧ୍ୟରୂପାନ୍ତରସ୍ୟ ଚ ପରିହୃତା ଉତ୍ତମାୟା ଏବ ଉତ୍କ୍ରାନ୍ତତ୍ୱାତ୍, ଭାବସ୍ୟ ସାଧ୍ୟତ୍ୱେ କୃତ୍ରିମତ୍ୱାତ୍ ପରମପୁରୁଷାର୍ଥତ୍ୱାଭାବଃ ସ୍ୟାଦିତ୍ୟାଶଙ୍କ୍ୟାହ—ନିତ୍ୟେତି, ଭଗବଦ୍ଭକ୍ତି—ବିଶେଷବୃତ୍ତି ବିଶେଷତ୍ୱେନାଗ୍ରେ ସାଧୟିଷ୍ୟମାନତ୍ୱାଦିତି ଭାବଃ । ୫୦ଶ୍ଲୋକ ।

---

ଶ୍ରୀଭଗବାନ ଉଦ୍ଧବଙ୍କୁ କହୁଅଛନ୍ତି—ମନୁଷ୍ୟ ଯେତେବେଳେ ସମସ୍ତ କର୍ମତ୍ୟାଗପୂର୍ବକ ମୋଠାରେ ଆତ୍ମସମର୍ପଣ କରନ୍ତି, ସେତେବେଳେ ସେ ମୁକ୍ତିଲାଭ କରି ଭଗବତ୍ସଦୃଶ ଐଶ୍ୱର୍ଯ୍ୟ ଭୋଗର ଯୋଗ୍ୟ ହୁଅନ୍ତି । ୪୯ଶ ଶ୍ଲୋକାର୍ଥ ।

ଭକ୍ତିର ସାଧନପ୍ରଣାଳୀ ବିଷୟରେ ଉପଦେଶ ଦେଉଅଛନ୍ତି । ୫୫ ।

ଇନ୍ଦ୍ରିୟଗଣର ପ୍ରେରଣା ଅର୍ଥାତ୍ ଶ୍ରବଣ କୀର୍ତ୍ତନ ଓ ଦର୍ଶନାଦିଦ୍ୱାରା ସାଧନୀୟା ଉକ୍ତ ଭକ୍ତିକୁ ସାଧନଭକ୍ତି କୁହାଯାଏ । ଏତଦ୍ଦ୍ୱାରା ଭାବ ଓ ପ୍ରେମ ସାଧ୍ୟ ହୁଏ । ଭାବ ଓ ପ୍ରେମ ସାଧ୍ୟ ହୁଏ ଏତଦ୍ଦ୍ୱାରା ସେମାନଙ୍କର କୃତ୍ରିମତା ରୂପ ଭ୍ରମ ଆଶଙ୍କା କରି ତାହା ଖଣ୍ଡନପୂର୍ବକ କହୁଅଛନ୍ତି ଭାବ ଓ ପ୍ରେମ ନିତ୍ୟସିଦ୍ଧବସ୍ତୁ ତାହା ଜୀବହୃଦୟରେ ଉଦ୍ଦୀପନକରଣର ନାମ ସାଧନ । ୫୦ଶ ଶ୍ଲୋକାର୍ଥ ।

ଶ୍ରବଣାଦି-କ୍ରିୟା ତାର 'ସ୍ୱରୂପଲକ୍ଷଣ' ।
'ତଟସ୍ଥଲକ୍ଷଣେ' ଉପଜାୟ ପ୍ରେମଧନ । ୫୬ ।
ନିତ୍ୟସିଦ୍ଧ କୃଷ୍ଣପ୍ରେମ—'ସାଧ୍ୟ' କଭୁ ନୟ ।
ଶ୍ରବଣାଦି ଶୁଦ୍ଧଚିତ୍ତେ କରୟେ ଉଦୟ । ୫୭ ।
ଏଇ ତ ସାଧନଭକ୍ତି ଦୁଇ ତ ପ୍ରକାର ।
ଏକ ବୈଧୀଭକ୍ତି, ରାଗାନୁଗାଭକ୍ତି ଆର । ୫୮ ।

ରାଗହୀନ ଜନ ଭଜେ ଶାସ୍ତ୍ରେର ଆଜ୍ଞାୟ ।
'ବୈଧୀଭକ୍ତି' ବଲି ତାରେ ସର୍ବଶାସ୍ତ୍ରେ ଗାୟ । ୫୯ ।

ତଥାହି (ଭାଃ ୨।୧।୫)—

ତସ୍ମାଦ୍ଭାରତ ସର୍ବାତ୍ମା ଭଗବାନ୍ ହରିରୀଶ୍ୱରଃ ।
ଶ୍ରୋତବ୍ୟ କୀର୍ତ୍ତିତବ୍ୟଶ୍ଚ ସ୍ମର୍ତ୍ତବ୍ୟଶ୍ଚେଚ୍ଛତାଭୟମ୍ ।

---

ତସ୍ମାତ୍ ହେ ଭାରତ ! ଅଭୟଂ ଇଚ୍ଛତା (ଜନେନ) ସର୍ବାତ୍ମା ଭଗବାନ୍ ଈଶ୍ୱରଃ ହରିଃ ଶ୍ରୋତବ୍ୟଃ କୀର୍ତ୍ତିତବ୍ୟଶ୍ଚ ସ୍ମର୍ତ୍ତବ୍ୟଶ୍ଚ । ୫୧ ଶ୍ଳୋକଃ ।

---

ତାର—ସାଧନଭକ୍ତିର ।

ଭଜଧାତୁର ଅର୍ଥ ସେବା, ଶ୍ରବଣ, କୀର୍ତ୍ତନ ଓ ସ୍ମରଣ ପ୍ରଭୃତି ସେବା ଅଙ୍ଗ ଭକ୍ତିର ସାଧନ । ଏହା ଭକ୍ତିର ସ୍ୱରୂପରୁ ଅଭିନ୍ନହେତୁ ଭକ୍ତିର ସ୍ୱରୂପ ଲକ୍ଷଣ । ଯେପରି ଗୌରବର୍ଣ୍ଣ ପୁରୁଷ ଏଠାରେ ଗୌରବର୍ଣ୍ଣ ପୁରୁଷର ସ୍ୱରୂପରୁ ଅଭିନ୍ନରୂପେ ପୁରୁଷକୁ ପରିଚୟ କରାଏ ବୋଲି ଏହି ଗୌରବର୍ଣ୍ଣ ପୁରୁଷର ସ୍ୱରୂପ ଲକ୍ଷଣ ।

ତଟସ୍ଥଲକ୍ଷଣ - ଯେ ଲକ୍ଷଣ ସ୍ୱରୂପରୁ ଭିନ୍ନ ହୋଇ ଲକ୍ଷ୍ୟବସ୍ତୁକୁ ପରିଚିତ କରାଏ, ଯେପରି କେହି କାହାକୁ ପ୍ରଶ୍ନ କଲା, 'ଦେବଦତ୍ତଙ୍କ ଗୃହ କେଉଁଠି', ଉତ୍ତରଦାତା ଅଙ୍ଗୁଳି ନିର୍ଦ୍ଦେଶଦ୍ୱାରା ଦେଖାଇ ଦେଲେ, 'ସେହି ଘର-ଯାହାର ଚାଳରେ କାକ ବସିଅଛି ।' ଏଠାରେ ଲକ୍ଷ୍ୟବସ୍ତୁ ଗୃହ, ଭିନ୍ନବସ୍ତୁ କାକଦ୍ୱାରା ପରିଚିତ ହେଲା, ଅତଏବ କାକ ଗୃହର ତଟସ୍ଥଲକ୍ଷଣ, ସେହିପରି ରୋମାଞ୍ଚ କମ୍ପ ଓ ଅଶ୍ରୁ ଆଦି ପ୍ରେମର ଚିହ୍ନ ଭକ୍ତିର ତଟସ୍ଥଲକ୍ଷଣ । ୫୬ ।

କୃଷ୍ଣପ୍ରେମଜନନୀ ନୁହନ୍ତି ଅର୍ଥାତ୍ କାହାର କୌଣସି ପ୍ରକ୍ରିୟାଦ୍ୱାରା ସୃଷ୍ଟ ହୁଅନ୍ତି ନାହିଁ । କାରଣ ଏହା ନିତ୍ୟସିଦ୍ଧ ଅର୍ଥାତ୍ ଅନାଦିକାଳରୁ ରହିଅଛନ୍ତି । ତେବେ ଏହା ମଳିନଚିତ୍ତରେ ଉଦୟ ହୁଅନ୍ତି ନାହିଁ । ଶ୍ରବଣାଦି ଶ୍ରୀକୃଷ୍ଣ ସେବାଦ୍ୱାରା ଚିତ୍ତ ନିର୍ମଳ ହେଲେ ଶ୍ରୀକୃଷ୍ଣପ୍ରେମ ସେଥିରେ ପ୍ରକାଶ ପାଆନ୍ତି । ୫୭ ।

ଉପରୋକ୍ତ ସାଧନଭକ୍ତି ଦୁଇ ପ୍ରକାର—ବୈଧୀ ଓ ରାଗାନୁଗା । ୫୮ ।

ବୈଧୀ ଭକ୍ତିର ଲକ୍ଷଣ କହୁଅଛନ୍ତି— ଯେଉଁମାନେ ନିଜର ମଙ୍ଗଳକାମନାରେ ଶାସ୍ତ୍ରର ଆଜ୍ଞାକୁ ବଳବାନ୍ ମନେ କରି ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି ଏବଂ ନ କଲେ ବିପରୀତ ଫଳ ହେବ ବୋଲି ଭୟ କରନ୍ତି, ଏହି ପ୍ରକାର ଶ୍ରୀକୃଷ୍ଣ ସେବା ବୈଧୀଭକ୍ତି । ଏଠାରେ ସେବାରେ ଅନୁରାଗ ନାହିଁ । ୫୯ ।

ଶ୍ରୀଶୁକଦେବଗୋସ୍ୱାମୀ ପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି—ହେ ପରୀକ୍ଷିତ ! ଯେଉଁମାନେ ଭୟରୁ ପରିତ୍ରାଣ ଇଚ୍ଛା କରନ୍ତି ଅଥବା ମୁକ୍ତି ଇଚ୍ଛା କରନ୍ତି ଅଥବା ନିର୍ବିଘ୍ନରେ ଭଗବତ୍‌ସେବା ଇଚ୍ଛା କରନ୍ତି, ସେମାନଙ୍କର ଈଶ୍ୱର ସର୍ବାତ୍ମା ଭଗବାନ୍ ହରିଙ୍କର ଗୁଣ ପ୍ରଭୃତି ଶ୍ରବଣ କରିବା, କୀର୍ତ୍ତନ କରିବା ଓ ସ୍ମରଣ କରିବା କର୍ତ୍ତବ୍ୟ । ୫୧ ଶ୍ଳୋକାର୍ଥ ।

ତଥାହି ଶ୍ରୀଭାଗବତେ (୧୧।୫।୨,୩)—

ମୁଖବାହୂରୁପାଦେଭ୍ୟଃ ପୁରୁଷସ୍ୟାଶ୍ରମୈଃ ସହ ।
ଚତ୍ୱାରୋ ଜଜ୍ଞିରେ ବର୍ଣ୍ଣା ଗୁଣୈର୍ବିପ୍ରାଦୟଃ ପୃଥକ୍ । ୫୨ ।
ଯ ଏଷାଂ ପୁରୁଷଂ ସାକ୍ଷାତ୍ ଆତ୍ମପ୍ରଭବମୀଶ୍ୱରମ୍ ।
ନ ଭଜନ୍ତ୍ୟବଜାନନ୍ତି ସ୍ଥାନାଦ୍‌ଭ୍ରଷ୍ଟାଃ ପତନ୍ତ୍ୟଧଃ । ୫୩ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୫)
ପାଦ୍ମୋତ୍ତରଖଣ୍ଡବଚନମ୍ (୭୨।୧୦୦)—

ସ୍ମର୍ତ୍ତବ୍ୟଃ ସତତଂ ବିଷ୍ଣୁର୍ବିସ୍ମର୍ତ୍ତବ୍ୟୋ ନ ଜାତୁଚିତ୍
ସର୍ବେ ବିଧିନିଷେଧାଃ ସ୍ୟୁରେତୟୋରେବ କିଙ୍କରାଃ ।

ବିବିଧାଙ୍ଗ ସାଧନଭକ୍ତିର ବହୁତ ବିସ୍ତାର ।
ସଂକ୍ଷେପେ କହିୟେ କିଛୁ ସାଧନାଙ୍ଗ ସାର । ୬୦ ।
ଗୁରୁପଦାଶ୍ରୟ, ଦୀକ୍ଷା, ଗୁରୁର ସେବନ ।
ସଦ୍ଧର୍ମ୍ମଶିକ୍ଷାପୃଚ୍ଛା, ସାଧୁମାର୍ଗାନୁଗମନ । ୬୧ ।
କୃଷ୍ଣପ୍ରୀତେ ଭୋଗତ୍ୟାଗ, କୃଷ୍ଣତୀର୍ଥେ ବାସ ।
ଯାବତ୍-ନିର୍ବାହ ପ୍ରତିଗ୍ରହ, ଏକାଦଶ୍ୟୁପବାସ ।
ଧାତ୍ର୍ୟଶ୍ୱତ୍ଥ-ଗୋ-ବିପ୍ର-ବୈଷ୍ଣବ-ପୂଜନ ।
ସେବାନାମାପରାଧାଦି ଦୂରେ ବର୍ଜ୍ଜନ । ୬୩ ।
ଅବୈଷ୍ଣବସଙ୍ଗ ବହିର୍ମ୍ମୁଖ୍ୟ ନା କରିବ ।
ବହୁଗ୍ରନ୍ଥକଳାଭ୍ୟାସ ବ୍ୟାଖ୍ୟାନ ବର୍ଜ୍ଜିବ । ୬୪ ।

---

ବିଷ୍ଣୁଃ ସତତଂ ସ୍ମର୍ତ୍ତବ୍ୟଃ ନ ଜାତୁଚିତ୍ ବିସ୍ମର୍ତ୍ତବ୍ୟଃ ସର୍ବେ ବିଧିନିଷେଧାଃ ଏତୟୋ—ସ୍ମର୍ତ୍ତବ୍ୟତ୍ୱାସ୍ମର୍ତ୍ତବ୍ୟତ୍ୱୟୋଃ, ବିଧିନିଷେଧୟୋଃ, ଏବ କିଙ୍କରାଃ-ଅଧୀନାଃ ସ୍ୟୁଃ । ୫୪ ।

---

୫୨ ଓ ୫୩ ଶ୍ଲୋକର ଅନ୍ୱୟ—ଏହି ପରିଚ୍ଛେଦର ୮ମ ଓ ୯ମ ଶ୍ଲୋକରେ ଦ୍ରଷ୍ଟବ୍ୟ।

ଶ୍ରୀଯୋଗେନ୍ଦ୍ର ଜନକଙ୍କୁ କହୁଅଛନ୍ତି—ଶ୍ରୀଭଗବାନ୍‌ଙ୍କର ମୁଖ, ବାହୁ, ଉରୁ ଓ ଚରଣରୁ ଗୁଣର ତାରତମ୍ୟ ଅନୁସାରେ ଚାରି ଆଶ୍ରମ ସହ ବ୍ରାହ୍ମଣାଦି ଚାରି ବର୍ଣ୍ଣ ଜନ୍ମି ଅଛନ୍ତି। ଯେଉଁ ବ୍ୟକ୍ତି ଅଜ୍ଞତାପ୍ରଯୁକ୍ତ କିମ୍ବା ଜାଣି ଶୁଣି ନିଜର ପିତା ପରମପୁରୁଷ ଶ୍ରୀଭଗବାନଙ୍କୁ ଭଜନ କରନ୍ତି ନାହିଁ, ସେମାନେ ସ୍ୱ ସ୍ୱ ବର୍ଣ୍ଣାଶ୍ରମରୁ ଅଧଃପତିତ ହୁଅନ୍ତି ଅର୍ଥାତ୍ ଯେଉଁମାନେ ଅଜ୍ଞତାବଶତଃ ଭଗବାନ୍‌ଙ୍କୁ ଭଜନ୍ତି ନାହିଁ ସେମାନେ ନରକଗାମୀ ହୁଅନ୍ତି । ଯେଉଁମାନେ ଜାଣି ଶୁଣି ଭଜନ୍ତି ନାହିଁ ସେ ଦୁଷ୍କୃତଘ୍ନମାନେ ମହାନରକରେ ପତିତ ହୁଅନ୍ତି । ୫୨ । ୫୩ ଶ୍ଲୋକାର୍ଥ ।

ବିଷ୍ଣୁଙ୍କୁ ସର୍ବଦା ସ୍ମରଣ କରିବ, କଦାପି ବିସ୍ମୃତ ହେବ ନାହିଁ । ସର୍ବପ୍ରକାର ବିଧି ଓ ନିଷେଧ ଏହି ଦୁଇର ଅନ୍ତର୍ଭୁକ୍ତ ଅର୍ଥାତ୍ ବିଷ୍ଣୁଙ୍କୁ ସ୍ମରଣ କଲେ ସର୍ବବିଧ ସତ୍କର୍ମ କରା ହୁଏ ଏବଂ ବିଷ୍ଣୁଙ୍କୁ ବିସ୍ମୃତ ହେଲେ ସର୍ବବିଧ ଅସତ୍କର୍ମ କରା ହୁଏ । ୫୪ ଶ୍ଲୋକାର୍ଥ ।

ସାଧନଭକ୍ତିର ଅନେକ ଅଙ୍ଗ, ସେଥିରୁ ପ୍ରଧାନ ଅଙ୍ଗର ବିଷୟ କହୁଅଛନ୍ତି । ୬୧ ।

ପୃଚ୍ଛା—ପ୍ରଶ୍ନ କରିବା ।

ସାଧୁମାର୍ଗାନୁଗମନ—ବୈଷ୍ଣବୋଚିତ ଆଚରପାଳନ । ୬୧ ।

ଯାବତ୍ ନିର୍ବାହ ପ୍ରତିଗ୍ରହ— ପ୍ରୟୋଜନାନୁଯାୟୀ ଉପାର୍ଜନ ବା ଭିକ୍ଷା ।୬୨।

ବହୁଗ୍ରନ୍ଥକଳାଭ୍ୟାସ ବ୍ୟାଖ୍ୟାନ ବର୍ଜନ—ଭଗବତ୍ ବହିର୍ମୁଖ ଗ୍ରନ୍ଥ ଅଭ୍ୟାସ କରିବା କିମ୍ବା ତାହା ବ୍ୟାଖ୍ୟା କରିବା ଅନାବଶ୍ୟକ । ୬୪ ।

ହାନିଲାଭ ସମ, ଶୋକାଦିର ବଶ ନା ହଇବ ।
ଅନ୍ୟ ଦେବ ଅନ୍ୟ ଶାସ୍ତ୍ର ନିନ୍ଦା ନା କରିବ ।୬୫।
ବିଷ୍ଣୁ ବୈଷ୍ଣବନିନ୍ଦା ଗ୍ରାମ୍ୟବାର୍ତ୍ତା ନା ଶୁନିବ ।
ପ୍ରାଣିମାତ୍ରେ ମନୋବାକ୍ୟେ ଉଦ୍‌ବେଗ ନା ଦିବ ।
ଶ୍ରବଣ, କୀର୍ତ୍ତନ, ସ୍ମରଣ, ପୂଜନ, ବନ୍ଦନ ।
ପରିଚର୍ଯ୍ୟା ଦାସ୍ୟ, ସଖ୍ୟ, ଆତ୍ମନିବେଦନ ।୬୭।
ଅଗ୍ରେ ନୃତ୍ୟ ଗୀତ ବିଜ୍ଞପ୍ତି ଦଣ୍ଡବନ୍ନତି ।
ଅଭ୍ୟୁତ୍ଥାନ, ଅନୁବ୍ରଜ୍ୟା, ତୀର୍ଥଗୃହେ ଗତି ।୬୮।
ପରିକ୍ରମା, ସ୍ତବ ପାଠ, ଜପ, ସଂକୀର୍ତ୍ତନ ।
ଧୂପ-ମାଲ୍ୟ-ଗନ୍ଧ, ମହାପ୍ରସାଦ ଭୋଜନ ।୬୯।
ଆରତ୍ରିକ-ମହୋତ୍ସବ-ଶ୍ରୀମୂର୍ତ୍ତିଦର୍ଶନ ।
ନିଜପ୍ରିୟ-ଦାନ, ଧ୍ୟାନ, ତଦୀୟ-ସେବନ ।୭୦।
'ତଦୀୟ' – ତୁଳସୀ, ବୈଷ୍ଣବ, ମଥୁରା, ଭାଗବତ ।
ଏଇ ଚାରି ସେବା ହୟ କୃଷ୍ଣେର ଅଭିମତ ।୭୧।
କୃଷ୍ଣାର୍ଥେ ଅଖିଲ ଚେଷ୍ଟା, ତତ୍କୃପାବଲୋକନ ।
ଜନ୍ମଦିନାଦି ମହୋତ୍ସବ ଲଞା ଭକ୍ତଗଣ ।୭୨।
ସର୍ବଥା ଶରଣାପତ୍ତି, କାର୍ତ୍ତିକାଦି ବ୍ରତ ।
ଚତୁଃଷଷ୍ଟି ଅଙ୍ଗ ଏଇ ପରମ ମହତ୍ତ୍ୱ ।୭୩।
'ସାଧୁସଙ୍ଗ, ନାମକୀର୍ତ୍ତନ, ଭାଗବତଶ୍ରବଣ ।
ମଥୁରାବାସ, ଶ୍ରୀମୂର୍ତ୍ତି ଶ୍ରଦ୍ଧାୟେ ସେବନ' ।୭୪।
ସକଲସାଧନ ଶ୍ରେଷ୍ଠ ଏଇ ପଞ୍ଚ ଅଙ୍ଗ ।
କୃଷ୍ଣପ୍ରେମ ଜନ୍ମାୟ ଏଇ ପାଁଚେର ଅଲ୍ପ ସଙ୍ଗ ।

---

ହାନିରେ ଦୁଃଖ କରିବ ନାହିଁ, ଲାଭରେ ଆନନ୍ଦ ପ୍ରକାଶ କରିବ ନାହିଁ, ଶୋକ ରାଗାଦିରେ ଅଭିଭୂତ ହେବ ନାହିଁ । ୬୫ ।

ଗ୍ରାମ୍ୟବାର୍ତ୍ତା – ପର ଚର୍ଚ୍ଚା । ୬୬ ।

ବିଜ୍ଞପ୍ତି—ଜଣାଣ ଅଭ୍ୟୁତ୍ଥାନ—ଶ୍ରୀମୂର୍ତ୍ତି ବିଜୟକାଳରେ ତାଙ୍କୁ ଦେଖି ଉଠି ପଡ଼ିବା ।

ଅନୁବ୍ରଜ୍ୟା—ଶ୍ରୀମୂର୍ତ୍ତି ସଙ୍ଗେ ଗମନ । ୬୮ ।

ଜପ—ମନ୍ତ୍ରର ମୃଦୁ ଉଚ୍ଚାରଣ ।

ଆରତ୍ରିକ ଦର୍ଶନ—ମହୋତ୍ସବ ଦର୍ଶନ । ତଦୀୟ ସେବନ—ଶ୍ରୀକୃଷ୍ଣଙ୍କ ସମ୍ବନ୍ଧୀୟ ଅର୍ଥାତ୍ ତୁଳସୀ, ବୈଷ୍ଣବ, ମଥୁରା ଓ ଭାଗବତାଦି ସେବନ ।୭୦ ।

ଭାଗବତ—ଭକ୍ତିପ୍ରତିପାଦକ ଶାସ୍ତ୍ର ତହିଁ ମଧ୍ୟରେ ଶ୍ରୀମଦ୍‌ଭାଗବତ ପ୍ରଧାନ । ୭୧ ।

କୃଷ୍ଣାର୍ଥେ ଅଖିଳ ଚେଷ୍ଟା—ଲୌକିକ ଓ ବୈଦିକ ଆଦି ଯେ ସମସ୍ତ କାର୍ଯ୍ୟ କରାଯାଏ ସେ ସମସ୍ତ ଶ୍ରୀକୃଷ୍ଣଙ୍କର ସେବା ଅନୁକୂଳରେ ଉକ୍ତର କରିବା ଉଚିତ । ତତ୍କୃପାବଲୋକନ—ଶ୍ରୀକୃଷ୍ଣଙ୍କର କୃପାକୁ ବିଶ୍ୱାସସହ ଅପେକ୍ଷା କରି ରହିବା । ୭୨ ।

ସର୍ବଥା ଶରଣାପତ୍ତି—ନିଷ୍କପଟରେ 'ମୁଁ କୃଷ୍ଣଙ୍କର' ଏହା କାୟମନୋବାକ୍ୟରେ ସ୍ୱୀକାର କରିବା । କାର୍ତ୍ତିକାଦି ବ୍ରତ—କାର୍ତ୍ତିକାଦି ଭଗବତ୍ ବ୍ରତ । ୭୩ ।

ମଥୁରାବାସ—ମଥୁରାମଣ୍ଡଳରେ ବାସ, ଯଦି ଶାରୀରିକ ନ ଘଟେ ତେବେ ସିଦ୍ଧ ଦେହକୁ ଆଶ୍ରୟ କରି ମାନସିକରେ ବାସ । ୭୪ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୪୩)—

ସଜାତୀୟାଶୟେ ସ୍ନିଗ୍ଧେ ସାଧୌ ସଙ୍ଗଃ ସ୍ୱତୋ ବରେ ।
ଶ୍ରୀମଦ୍ଭାଗବତାର୍ଥାନାମାସ୍ୱାଦୋ ରସିକୈଃ ସହ ।୫୫।
ଶ୍ରଦ୍ଧା ବିଶେଷତଃ ପ୍ରୀତିଃ ଶ୍ରୀମୂର୍ତ୍ତେରଙ୍ଘ୍ରିସେବନେ ।
ନାମସଙ୍କୀର୍ତ୍ତନଂ ଶ୍ରୀମନ୍ମଥୁରାମଣ୍ଡଳେ ସ୍ଥିତିଃ ।୫୬।

ତଥାହି ତତ୍ରୈବ (୧।୨।୧୧୦) —

ଦୁରୂହାଦ୍ଭୁତବୀର୍ଯ୍ୟେଽସ୍ମିନ୍ ଶ୍ରଦ୍ଧା ଦୂରେଽସ୍ତୁ ପଞ୍ଚକେ ।
ଯତ୍ର ସ୍ୱଳ୍ପୋଽପି ସମ୍ବନ୍ଧଃ ସଦ୍ଧିୟାଂ ଭାବଜନ୍ମନେ ।
ଏକ ଅଙ୍ଗ ସାଧେ — କେହୋ ସାଧେ ବହୁ ଅଙ୍ଗ ।
ନିଷ୍ଠା ହୈଲେ ଉପଜୟେ ପ୍ରେମେର ତରଙ୍ଗ ।

---

ସାଧୌ ସାମୀପ୍ୟେ ତତଃ-କଥନୋପବେଶନାଦି କର୍ତ୍ତବ୍ୟଂ, କଥମ୍ଭୂତେ ସାଧୌ ସ୍ୱତୋବରେ-ଆତ୍ମନୋଽଧିକେ, ପୁନଃ କଥମ୍ଭୂତେ, ସଜାତୀୟାଶୟେ-ସ୍ୱସମାନାନ୍ତଃକରଣେ, ପୁନଃ କଥମ୍ଭୂତେ, ସ୍ନିଗ୍ଧେ ମହାଶୀତଳସ୍ୱଭାବେ, ରସିକୈଃ ସହ-ସାଧୁଜନୈଃ ସହ, ଶ୍ରୀମଦ୍ଭାଗବତାର୍ଥାନାଂ ଆସ୍ୱାଦନଂ କର୍ତ୍ତବ୍ୟଂ । ୫୫ ଶ୍ଲୋକ ।

ଶ୍ରଦ୍ଧା ବିଶେଷତଃ—ମହାଗାଢ଼ ଶ୍ରଦ୍ଧାକରଣେନ ଶ୍ରୀମୂର୍ତ୍ତେଃ ଅଂଘ୍ରିସେବନେ—ଶ୍ରୀବିଗ୍ରହାଦେଃ ସେବାବିଧାନେ, ନାମସଙ୍କୀର୍ତ୍ତନଂ ଶ୍ରୀମନ୍ମଥୁରାମଣ୍ଡଳେ—ଶ୍ରୀବୃନ୍ଦାବନେ ସ୍ଥିତିଃ । ୫୬ ଶ୍ଲୋକ ।

ଦୁରୂହାଦ୍ଭୁତବୀର୍ଯ୍ୟେ ଅସ୍ମିନ୍-ସାଧୁସଙ୍ଗାଦିକେ ପଞ୍ଚକେ ଶ୍ରଦ୍ଧା ଦୂରେ ଅସ୍ତୁ ଯତ୍ର ସ୍ୱଳ୍ପଃ ଅପି ସମ୍ବନ୍ଧଃ ସଦ୍ଧିୟାଂ-ନିରପରାଧଚିତ୍ତାନାଂ ଭାବ ଜନ୍ମନେ-ଭାବସ୍ୟ ଜନ୍ମନେ-ଅଭିବ୍ୟକ୍ତୟେ ସମର୍ଥଃ ଭବତି । ୫୭ ଶ୍ଲୋକ ।

---

ନିଜର ସମାନ ଅନ୍ତଃକରଣବିଶିଷ୍ଟ ସ୍ନେହବାନ୍ ଏବଂ ନିଜଠାରୁ ଉତ୍କୃଷ୍ଟ ସାଧୁଙ୍କ ସହିତ କଥୋପକଥନ ଓ ଉପବେଶନାଦି କରିବ; ଭକ୍ତଙ୍କ ସହିତ ଶ୍ରୀମଦ୍ଭାଗବତର ଅର୍ଥ ଆସ୍ୱାଦନ କରିବ । ୫୫ ଶ୍ଲୋକାର୍ଥ ।

ବିଶେଷ ଶ୍ରଦ୍ଧାର ସହିତ ଶ୍ରୀମୂର୍ତ୍ତି ସେବାରେ ପ୍ରୀତି କରିବ, ନାମସଙ୍କୀର୍ତ୍ତନ କରିବ ଓ ଶ୍ରୀବୃନ୍ଦାବନରେ ବାସ କରିବ । ୫୬ ଶ୍ଲୋକାର୍ଥ ।

ଦୁରୂହ ଅଦ୍ଭୁତ ଶକ୍ତିଶାଳୀ ଏହି ପଞ୍ଚ ଅଙ୍ଗରେ (ସାଧୁସଙ୍ଗ, ନାମସଙ୍କୀର୍ତ୍ତନ, ଭାଗବତ ଶ୍ରବଣ, ମଥୁରାବାସ ଓ ଶ୍ରୀମୂର୍ତ୍ତିସେବନ) ଶ୍ରଦ୍ଧା ଦୂରେ ଥାଉ, ଅଣୁମାତ୍ର କୌଣସିପ୍ରକାର ସମ୍ବନ୍ଧ ଘଟିଲେ ନିରପରାଧଚିତ୍ତ ବ୍ୟକ୍ତିମାନଙ୍କର ଅନ୍ତଃକରଣରେ ଭାବ ଜାତ ହୁଏ । ୫୭ ଶ୍ଲୋକାର୍ଥ ।

ଆପଣାର ବାସନା ଅନୁସାରେ ବହୁଅଙ୍ଗସାଧନ କର କିମ୍ବା କୌଣସି ଏକ ଅଙ୍ଗ-ସାଧନ କର, କିନ୍ତୁ ଅବିଚଳିତଚିତ୍ତରେ ଦୃଢ଼ବିଶ୍ୱାସ ସହିତ ସାଧନ କଲେ କୃଷ୍ଣପ୍ରେମ ଲାଭ ହୁଏ । ୭୬ ।

ଏକ ଅଙ୍ଗେ ସିଦ୍ଧି ପାଇଲ ବହୁ ଭକ୍ତଗଣ ।
ଅମ୍ବରୀଷାଦି ଭକ୍ତେର ବହୁ ଅଙ୍ଗ-ସାଧନ । ୭୭ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୨୯)
ପଦ୍ୟାବଲ୍ୟାଂ (୫୩)—

ଶ୍ରୀବିଷ୍ଣୋଃ ଶ୍ରବଣେ ପରୀକ୍ଷିଦଭବଦ୍
ବୈୟାସକିଃ କୀର୍ତ୍ତନେ
ପ୍ରହ୍ଲାଦଃ ସ୍ମରଣେ ତଦଙ୍ଘ୍ରିଭଜନେ
ଲକ୍ଷ୍ମୀଃ ପୃଥୁଃ ପୂଜନେ ।
ଅକ୍ରୂରସ୍ତ୍ୱଭିବନ୍ଦନେ କପିପତିର୍ଦାସ୍ୟେଽଥ
ସଖ୍ୟେଽର୍ଜ୍ଜୁନଃ,
ସର୍ବସ୍ୱାତ୍ମନିବେଦନେ ବଲିରଭୂତ୍
କୃଷ୍ଣାପ୍ତିରେଷାଂ ପରମ୍ । ୫୮ ।

ତଥାହି (ଭାଃ ୯।୪।୧୮—୨୦)—
ସ ବୈ ମନଃ କୃଷ୍ଣପଦାରବିନ୍ଦୟୋ-
ର୍ବଚାଂସି ବୈକୁଣ୍ଠଗୁଣାନୁବର୍ଣ୍ଣନେ ।
କରୌ ହରେର୍ମନ୍ଦିରମାର୍ଜ୍ଜନାଦିଷୁ,
ଶ୍ରୁତିଂ ଚକାରାଚ୍ୟୁତସତ୍କଥୋଦୟେ । ୫୯ ।
ମୁକୁନ୍ଦଲିଙ୍ଗାଲୟଦର୍ଶନେ ଦୃଶୌ,
ତଦ୍ଭୃତ୍ୟଗାତ୍ରସ୍ପର୍ଶେଽଙ୍ଗସଙ୍ଗମମ୍ ।
ଘ୍ରାଣଞ୍ଚ ତତ୍ପାଦସରୋଜସୌରଭେ,
ଶ୍ରୀମତ୍ତୁଳସ୍ୟା ରସନାଂ ତଦର୍ପିତେ । ୬୦ ।
ପାଦୌ ହରେଃ କ୍ଷେତ୍ରପଦାନୁସର୍ପଣେ,
ଶିରୋ ହୃଷୀକେଶପଦାଭିବନ୍ଦନେ ।
କାମଞ୍ଚ ଦାସ୍ୟେ ନ ତୁ କାମକାମ୍ୟୟା,
ଯଥୋତ୍ତମଃ ଶ୍ଲୋକଜନାଶ୍ରୟା ରତିଃ । ୬୧ ।

---

ଶ୍ରୀବିଷ୍ଣୋଃ ଶ୍ରବଣେ ପରୀକ୍ଷିତ୍, କୀର୍ତ୍ତନେ ବୈୟାସକିଃ ଶୁକଃ, ସ୍ମରଣେ ପ୍ରହ୍ଲାଦଃ ତଦଂଘ୍ରିଭଜନେ ଲକ୍ଷ୍ମୀଃ, ପୂଜନେ ପୃଥୁଃ, ଅଭିବନ୍ଦନେ ଅକ୍ରୂରଃ, ଦାସ୍ୟେ କପିପତିଃ-ହନୁମାନ୍, ଅଥ ସଖ୍ୟେ ଅର୍ଜ୍ଜୁନଃ, ସର୍ବସ୍ୱାତ୍ମନିବେଦନେ ବଲିଃ, ଏତେନଷ୍ଟୌତଃ ଅଭୂତ୍, ପରଂ କେବଲଂ, ଏଷାଂ ଏକୈକାଙ୍ଗନିଷ୍ଠୟା କୃଷ୍ଣପ୍ରାପ୍ତିରଭୂତ୍ । ୫୮ ଶ୍ଲୋକ ।

ସଃ—ଅମ୍ବରୀଷଃ, କୃଷ୍ଣପଦାରବିନ୍ଦୟୋଃ ମନଃ, ବୈକୁଣ୍ଠଗୁଣାନୁବର୍ଣ୍ଣନେ ବଚାଂସି ହରେଃ ମନ୍ଦିରମାର୍ଜ୍ଜନାଦିଷୁ କରୌ, ଅଚ୍ୟୁତସତ୍କଥୋଦୟେ ଶ୍ରୁତିଂ—ଶ୍ରୋତ୍ରଂ, ଚକାର । ମୁକୁନ୍ଦଲିଙ୍ଗାଲୟ ଦର୍ଶନେ—ମୁକୁନ୍ଦସ୍ୟ ଲିଙ୍ଗାନାଂ—ପ୍ରତିମାନାଂ, ଆଲୟାନାଂ ଚ ଦର୍ଶନେ, ଦୃଶୌ—ନୟନେ, ତଦ୍ଭୃତ୍ୟଗାତ୍ରସ୍ପର୍ଶେ ଅଙ୍ଗସଙ୍ଗମଂ, ଶ୍ରୀମତ ତୁଳସ୍ୟାଃ—ଶ୍ରୀମତ୍ୟାଃ ତୁଳସ୍ୟାଃ—ତତ୍ପାଦ ସରୋଜସୌରଭେ—ତତ୍ପାଦସରୋଜସମ୍ପର୍କେଣ ଯତ୍ ସୌରଭଂ ତସ୍ମିନ୍—ଭଗବଚ୍ଚରଣାର୍ପିତ ତୁଳସୀଗନ୍ଧେ, ଘ୍ରାଣଂ ଚ ତଦର୍ପିତେ—ମହାପ୍ରସାଦାନ୍ନେ, ରସନାଂ—ଜିହ୍ୱାଂ, ହରେଃ କ୍ଷେତ୍ର ପଦାନୁସର୍ପଣେ ପାଦୌ, ହୃଷୀକେଶ—ପଦାଭିବନ୍ଦନେ ଶିରଃ, ଦାସ୍ୟେ କାମଂ—ଅଭିଲାଷଂ ଚ ନତୁ କାମକାମ୍ୟୟା—ଭୋଗେଚ୍ଛୟା, ଉତ୍ତମଶ୍ଲୋକଜନାଶ୍ରୟା ରତିଃ ଯଥା—ଯେନ ପ୍ରକାରେଣ ଅଭୂତ୍ । ୫୯।୬୦।୬୧ ।

---

ମହାରାଜ ଶ୍ରୀପରୀକ୍ଷିତ ଶ୍ରୀକୃଷ୍ଣଙ୍କ କଥାଶ୍ରବଣରେ, ଶ୍ରୀଶୁକଦେବ କୀର୍ତ୍ତନରେ, ଶ୍ରୀ ପ୍ରହ୍ଲାଦ ସ୍ମରଣରେ, ଲକ୍ଷ୍ମୀ ପାଦସେବାରେ, ମହାରାଜ ପୃଥୁ ପୂଜନରେ, ଅକ୍ରୂର ବନ୍ଦନରେ, ଶ୍ରୀହନୁମାନ୍ ଦାସ୍ୟରେ, ଅର୍ଜ୍ଜୁନ ସଖ୍ୟରେ ଏବଂ ମହାରାଜ ବଲି ସର୍ବସ୍ୱ ସହିତ ଆତ୍ମ-ନିବେଦନରେ ଏହିରୂପ ନିଷ୍ଠା ସହିତ ଏକାଙ୍ଗ ସାଧନଦ୍ୱାରା ଏମାନଙ୍କର ଶ୍ରୀକୃଷ୍ଣପ୍ରାପ୍ତି ଘଟିଥିଲା । ୫୮ ଶ୍ଲୋକାର୍ଥ ।

ଶ୍ରୀଶୁକଦେବଗୋସ୍ୱାମୀ କହୁଅଛନ୍ତି—ସେହି ମହାରାଜ ଅମ୍ବରୀଷ ଶ୍ରୀକୃଷ୍ଣ ପାଦପଦ୍ମରେ ମନ, ଶ୍ରୀକୃଷ୍ଣଗୁଣାନୁବର୍ଣ୍ଣନରେ ବାଟିନ୍ଦ୍ରିୟ, ହରିମନ୍ଦିରମାର୍ଜ୍ଜନାଦିରେ କରଦ୍ୱୟ, ଅଚ୍ୟୁତଙ୍କର ପବିତ୍ର

କାମ ତ୍ୟାଗି କୃଷ୍ଣ ଭଜେ ଶାସ୍ତ୍ର-ଆଜ୍ଞା ମାନି ।
ଦେବ-ଋଷି-ପିତ୍ରାଦିକେର କଭୁ ନହେ ଋଣୀ ।

ତଥାହି (ଭାଃ ୧୧।୫।୪୧)—

ଦେବର୍ଷିଭୂତାପ୍ତନୃଣାଂ ପିତୃଣାଂ,
ନ କିଙ୍କରୋ ନାୟମୃଣୀ ଚ ରାଜନ୍ ।
ସର୍ବାତ୍ମନା ଯଃ ଶରଣଂ ଶରଣ୍ୟଂ,
ଗତୋ ମୁକୁନ୍ଦଂ ପରିହୃତ୍ୟ କର୍ତ୍ତମ୍ । ୭୨ ।

ବିଧିଧର୍ମ ଛାଡି ଭଜେ କୃଷ୍ଣେର ଚରଣ ।
ନିଷିଦ୍ଧ ପାପାଚାରେ ତାର କଭୁ ନହେ ମନ ॥
ଅଜ୍ଞାନେଓ ଯଦି ହୟ ପାପ ଉପସ୍ଥିତ ।
କୃଷ୍ଣ ତାରେ ଶୁଦ୍ଧ କରେ, ନା କରେ ପ୍ରାୟଶ୍ଚିତ୍ତ । ୮୦ ।

ହେ ରାଜନ୍ ! ଯଃ—ଜନଃ, କର୍ତ୍ତଂ—କୃତ୍ୟଂ ଭେଦଂ ବା ପରିହୃତ୍ୟ ସର୍ବାତ୍ମନା ଶରଣ୍ୟଂ ମୁକୁନ୍ଦଂ ଶରଣଂ ଗତଃ, ଅୟଂ ଦେବର୍ଷିଭୂତାପ୍ତନୃଣାଂ ପିତୃଣାଂ ନ କିଙ୍କରଃ ନ ଋଣୀ ଚ । ୭୨ ଶ୍ଳୋକଃ ।

ଭକ୍ତସ୍ୟ ବିଧିନିଷେଧନିବୃତ୍ତେଃ କୃତକୃତ୍ୟତାମାହ 'କର୍ମ' ଇତି । ଚ. ଚ.

ନିଷିଦ୍ଧକର୍ମାଚରଣେ ଭକ୍ତସ୍ୟ ପ୍ରାୟଶ୍ଚିତ୍ତଂ ନାସ୍ତୀତ୍ୟାହ 'ବିଧି' ଇତି ଦ୍ୱାଭ୍ୟାଂ । ଚ. ଚ.

---

କଥାରେ ଶ୍ରବଣ, ମୁକୁନ୍ଦଙ୍କର ଶ୍ରୀବିଗ୍ରହ ଓ ଆଳୟଦର୍ଶନରେ ନେତ୍ର ଦ୍ୱୟ, ଭଗବଦ୍‌ଭକ୍ତଙ୍କର ଗାତ୍ରସ୍ପର୍ଶରେ ଅଙ୍ଗସଙ୍ଗମ, ଭଗବତ୍ର ପାଦପଦ୍ମସୌରଭଯୁକ୍ତ ତୁଳସୀ ସୌରଭରେ ଘ୍ରାଣେନ୍ଦ୍ରିୟ, ଭଗବନ୍ନିବେଦିତ ଅନ୍ନାଦିର ସ୍ୱାଦଗ୍ରହଣରେ ରସନା, ଭଗବତ୍‌କ୍ଷେତ୍ରଗମନରେ ପାଦଦ୍ୱୟ ଏବଂ ହୃଷୀକେଶଙ୍କର ଚରଣବନ୍ଦନରେ ମସ୍ତକ ନିୟୁକ୍ତ କରିଥିଲେ । ଭଗବଦ୍ଦାସ୍ୟରେ ଅଭିଳାଷ ହେତୁ ଭଗବତ୍ର ନିବେଦିତ ସ୍ରକ୍‌ଚନ୍ଦନାଦି ଗ୍ରହଣ କରୁଥିଲେ । କିନ୍ତୁ ତାହା ଭୋଗବାଞ୍ଛାରେ ନୁହେଁ, କାରଣ ଭଗବାନଙ୍କର ଏକାନ୍ତ ଆଶ୍ରିତ ବ୍ୟକ୍ତିମାନଙ୍କର ଏହିପରି ରତି ହୋଇଥାଏ । ୬୯।୭୦।୭୧ ଶ୍ଳୋକାର୍ଥ ।

ଯେଉଁମାନେ ଶାସ୍ତ୍ର ଆଜ୍ଞା ସ୍ୱୀକାରପୂର୍ବକ ଶ୍ରୀକୃଷ୍ଣଙ୍କୁ ଭଜନ୍ତି ଅର୍ଥାତ୍ ଭକ୍ତିର ସାଧନ କରନ୍ତି, ସେମାନଙ୍କୁ ବିଧିକର୍ମ ତ୍ୟାଗ ହେତୁ ଅପରାଧୀ ହେବାକୁ ହୁଏ ନାହିଁ । କାରଣ ଶ୍ରୀକୃଷ୍ଣ ସର୍ବେଶ, ଶ୍ରୀକୃଷ୍ଣଭଜନଦ୍ୱାରା ଦେବତା, ପିତୃ ଓ ଋଷି ଆଦି ସମସ୍ତଙ୍କର ତୃପ୍ତି ଜନ୍ମେ ।୭୮।

ଶ୍ରୀକରଭାଜନ ବିଦେହଙ୍କୁ କହୁଅଛନ୍ତି—ହେ ରାଜନ୍ ! ଯେଉଁ ବ୍ୟକ୍ତି କର୍ମ ବା ଭେଦ-ଦୃଷ୍ଟି ତ୍ୟାଗପୂର୍ବକ ସର୍ବତୋଭାବେ ଶରଣାଗତପାଳକ ମୁକୁନ୍ଦଙ୍କର ଶରଣାଗତ ହୁଅନ୍ତି, ସେ ବ୍ୟକ୍ତି ଦେବତା, ଋଷି, ଭୂତ, ପିତୃଗଣ ବା କୁଟୁମ୍ବାଦିଙ୍କଠାରେ ଅଋଣୀ ହେତୁ କିଙ୍କର ହୁଅନ୍ତି ନାହିଁ । ୭୨ ଶ୍ଳୋକାର୍ଥ ।

ବୈଦିକକର୍ମରୁ ନିବୃତ୍ତ ହୋଇ ଯେଉଁ ବ୍ୟକ୍ତି ଏକାନ୍ତଭାବରେ ଶ୍ରୀକୃଷ୍ଣଙ୍କୁ ଭଜେ, ତାଙ୍କର ମନ ନିଷିଦ୍ଧକର୍ମ ଓ ପାପକର୍ମ ପ୍ରତି ଯାଏ ନାହିଁ । ଯଦି ସେ ଭ୍ରମପ୍ରମାଦାଦିବଶତଃ କ୍ୱଚିତ୍ ନିଷିଦ୍ଧ କର୍ମ କରନ୍ତି, ସେଥି ସକାଶେ ତାହାଙ୍କୁ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ନାହିଁ । ତାହାଙ୍କର ଅନ୍ତର୍ନିହିତ ଶରଣାଗତବତ୍ସଳ ଶ୍ରୀକୃଷ୍ଣ ନିଷିଦ୍ଧ କର୍ମଜନିତ ପାପରୁ ତାଙ୍କ ଉଦ୍ଧାର କରନ୍ତି । ୭୯।୮୦ ।

ତଥାହି (ଭାଃ—୧୧।୨।୪୨)—

ସ୍ୱପାଦମୂଲଂ ଭଜତଃ ପ୍ରିୟସ୍ୟ,
ତ୍ୟକ୍ତାନ୍ୟଭାବସ୍ୟ ହରିଃ ପରେଶଃ ।
ବିକର୍ମ ଯଚ୍ଚୋତ୍ପତିତଂ କଥଞ୍ଚିତ୍,
ଧୁନୋତି ସର୍ବଂ ହୃଦି ସନ୍ନିବିଷ୍ଟଃ ।୬୩।

ଜ୍ଞାନ-ବୈରାଗ୍ୟ ଭକ୍ତେର କଭୁ ନହେ ଅଙ୍ଗ ।
ଅହିଂସା-ଯମନିୟମାଦି ବୁଲେ କୃଷ୍ଣଭକ୍ତସଙ୍ଗ ।୮୧।

ତଥାହି (ଭାଃ ୧୧।୨୦।୩୧)—

ତସ୍ମାନ୍ମଦ୍ଭକ୍ତିଯୁକ୍ତସ୍ୟ ଯୋଗିନୋ ବୈ ମଦାତ୍ମନଃ ।
ନ ଜ୍ଞାନଂ ନ ଚ ବୈରାଗ୍ୟଂ ପ୍ରାୟଃ ଶ୍ରେୟୋ
ଭବେଦିହ । ୬୪ ।

ବିକର୍ମନିବୃତ୍ତିମୁକ୍ତା ନିଷେଧନିବୃତ୍ତିସ୍ୟ ପ୍ରାୟଶ୍ଚିତ୍ତନିବୃତ୍ତମାହ, ସ୍ୱପାଦମୂଲମିତି । ତ୍ୟକ୍ତଃ ଅନ୍ୟସ୍ମିନ୍ ଦେହାଦୌ ଦେବତାନ୍ତରେ ବା ଭାବଃ ଯେନ, ଅତଏବ ତସ୍ୟ ବିକର୍ମଣି ପ୍ରବୃତ୍ତି ନ ସମ୍ଭବତି, ଯଚ୍ଚ କଥଞ୍ଚିତ୍ ପ୍ରମାଦାଦିନା ଉତ୍ପତିତଂ ଭବେତ୍, ତଦପି ହରିର୍ଧୁନୋତି । ନନୁ ଯମସ୍ତ୍ରଂ ନ ମନ୍ୟେତ ତତ୍ରାହ ପରେଶଃ, ନନୁ ଚ ଶ୍ରୁତିସ୍ମୃତି ମମୈବାଜ୍ଞେ ଇତି ଭଗବଦ୍‌ବଚନାତ୍ ସ୍ୱାଜ୍ଞାଭଙ୍ଗକଥଂ ସହେତ ତତ୍ରାହ ପ୍ରିୟସ୍ୟ, ନନୁ ନାୟଂ ପାପକ୍ଷୟାର୍ଥଂ ଭଜତେ ତତ୍ରାହ ହୃଦି ସନ୍ନିବିଷ୍ଟଃ, ନ ହି ବସ୍ତୁଶକ୍ତି ରର୍ଥିତାମପେକ୍ଷତେ ଇତ୍ୟର୍ଥଃ । ୬୩ଶ୍ଲୋକ ।

ତସ୍ମାତ୍—ଭକ୍ତେଃ ସର୍ବଶ୍ରେଷ୍ଠତ୍ୱାତ୍, ବୈ ମଭକ୍ତିଯୁକ୍ତସ୍ୟ, ମଦାତ୍ମନଃ ଯୋଗିନଃ—ଭକ୍ତିଯୋଗବିଶିଷ୍ଟସ୍ୟ, ଇହ ନ ଜ୍ଞାନଂ, ନ ଚ ବୈରାଗ୍ୟଂ ପ୍ରାୟଃ ପ୍ରାୟଃ ଶ୍ରେୟଃ ଭବେତ୍ । ୬୪ ଶ୍ଲୋକ ।

ଭକ୍ତେରନ୍ୟାନପେକ୍ଷତ୍ୱାତ୍ ନ ଜ୍ଞାନବୈରାଗ୍ୟାଦ୍ୟପେକ୍ଷା ଇତ୍ୟାହ ଜ୍ଞାନ ଇତି । ୮୧ ଚ. ଚ.

ଶ୍ରୀକରଭଜନ କହୁଅଛନ୍ତି—ଯେଉଁ ତ୍ୟକ୍ତ ଦେବତାନ୍ତର ଭଜନ ତ୍ୟାଗପୂର୍ବକ ଏକାନ୍ତଭାବରେ ଶ୍ରୀଭଗବଚ୍ଚରଣାରବିନ୍ଦକୁ ଆଶ୍ରୟ କରନ୍ତି, ଭଗବାନଙ୍କର ସେହି ପ୍ରିୟ ଭକ୍ତଙ୍କର ଦୈବାତ୍ ଯଦି କୌଣସି ବିକର୍ମ ଉପସ୍ଥିତ ହୁଏ, ତାହାଙ୍କ ହୃଦୟସ୍ଥ ପରମେଶ୍ୱର ହରି ସେ ସମସ୍ତ ଧ୍ୱଂସ କରନ୍ତି । ୬୩ ଶ୍ଲୋକାର୍ଥ ।

ଭକ୍ତିସାଧକଙ୍କର ଜ୍ଞାନ ଓ ବୈରାଗ୍ୟ ସାଧନ କରିବାକୁ ହୁଏ ନାହିଁ କିମ୍ବା ଯମ ନିୟମାଦି ସାଧନ କରିବାକୁ ହୁଏ ନାହିଁ, କାରଣ ଭକ୍ତି ଗୁଣାତୀତ ଶ୍ରୀହରିଙ୍କଠାରେ ଅର୍ପିତ ହେତୁ ତାହା ଅନ୍ୟ କୌଣସି ସାଧନର ଅପେକ୍ଷା କରନ୍ତି ନାହିଁ । ପରନ୍ତୁ ଜ୍ଞାନବୈରାଗ୍ୟାଦି ସାଧନ ତଦୁତ୍ତ ଫଳସିଦ୍ଧି ସକାଶେ ଭକ୍ତିଦେବୀଙ୍କର ମୁଖାପେକ୍ଷୀ ହୁଅନ୍ତି, ଅତଏବ ଭକ୍ତିସାଧକଙ୍କର ଭକ୍ତିହିଁ ମୁଖ୍ୟ ସାଧନ, ଜ୍ଞାନ, ବୈରାଗ୍ୟ, ଅହିଂସା, ଯମ, ନିୟମାଦି ଭକ୍ତିଦେବୀଙ୍କର କୃପାପ୍ରାର୍ଥୀ । ସେହିମାନେ ଭକ୍ତିଙ୍କ ଅନୁସଙ୍ଗରେ ଭକ୍ତଙ୍କ ନିକଟରେ ଉପସ୍ଥିତ ହୁଅନ୍ତି । ୮୧ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି—ମୋର ଭକ୍ତିଯୁକ୍ତ ମୋର ଏକାନ୍ତ ଭକ୍ତମାନଙ୍କର ପ୍ରାୟ ଜ୍ଞାନବୈରାଗ୍ୟସାଧନ ବ୍ୟତୀତ ମଙ୍ଗଳ ଲାଭ ହୁଏ, ଅର୍ଥାତ୍ ଯେଉଁମାନେ କ୍ରମଭକ୍ତିମାର୍ଗରେ ପ୍ରବୃତ୍ତ ହୁଅନ୍ତି, ସେମାନଙ୍କର ଜ୍ଞାନ ଓ ବୈରାଗ୍ୟସାଧନର ପ୍ରୟୋଜନ ହୁଏ । କିନ୍ତୁ ଯେଉଁମାନେ ପ୍ରେମଲକ୍ଷଣାଭକ୍ତିର ସାଧନ କରନ୍ତି, ସେମାନଙ୍କର ଜ୍ଞାନବୈରାଗ୍ୟସାଧନ ନିଷ୍ପ୍ରୟୋଜନ । ୬୪ ଶ୍ଲୋକାର୍ଥ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୨୮)

ସ୍କନ୍ଦପୁରାଣବଚନମ୍ ।

ଏତେ ନ ହ୍ୟଦ୍ଭୁତା ବ୍ୟାଧ

ତବାହିଂସାଦୟୋ ଗୁଣାଃ ।

ହରିଭକ୍ତୌ ପ୍ରବୃତ୍ତା ଯେ

ନ ତେ ସ୍ୟୁଃ ପରତାପିନଃ । ୭୫ ।

ବୈଧିଭକ୍ତିସାଧନେର କୈଲ ବିବରଣ ।
'ରାଗାନୁଗା'—ଭକ୍ତିର ଲକ୍ଷଣ ଶୁନ ସନାତନ ।
ରାଗାତ୍ମିକା ଭକ୍ତି ମୁଖ୍ୟା ବ୍ରଜବାସୀଜନେ ।
ତାର ଅନୁଗତ ଭକ୍ତିର 'ରାଗାନୁଗା' ନାମେ ।

ତଥାହି ତତ୍ରୈବ (୧।୨।୧୩୧)—

ବିରାଜନ୍ତୀମଭିବ୍ୟକ୍ତଂ ବ୍ରଜବାସିଜନାଦିଷୁ ।
ରାଗାତ୍ମିକାମନୁସୃତା ଯା ସା ରାଗାନୁଗୋ-
ଚ୍ୟତେ ।୭୬।

---

ହେ ବ୍ୟାଧ ! ତବ (ଇଦାନୀଂ) ଏତେ ଅହିଂସାଦୟଃଗୁଣାଃ ନ ହି ଅଦ୍ଭୁତାଃ ( ଯତୋ )
ଯେ ଜନାଃ ହରିଭକ୍ତୌ ପ୍ରବୃତ୍ତାଃ ତେ ପରତାପିନଃ ନ ସ୍ୟୁଃ । ୭୫ ଶ୍ଳୋକ ।

ବ୍ରଜବାସିଜନାଦିଷୁ ଅଭିବ୍ୟକ୍ତଂ (ଯଥା ସ୍ୟାତ୍ତଥା) ବିରାଜନ୍ତୀଂ ରାଗାତ୍ମିକାଂ ଅନୁଗତ୍ୟ ଯା ସା ରାଗାନୁଗା ଉଚ୍ୟତେ । ୭୬ ଶ୍ଳୋକ ।

---

ଶ୍ରୀନାରଦଙ୍କ ଉପଦେଶରେ କୌଣସି ବ୍ୟାଧ ପଶୁହିଂସାତ୍ୟାଗପୂର୍ବକ ଶ୍ରୀହରିସେବା-ପରାୟଣ ହୋଇଥିଲେ । ଦିନେ ଶ୍ରୀନାରଦ ଶ୍ରୀପର୍ବତ ଋଷିଙ୍କ ସହିତ ତାଙ୍କୁ ଦେଖିବାକୁ ଆସନ୍ତେ ବ୍ୟାଧ ଦୂରରୁ ଶ୍ରୀଗୁରୁଙ୍କୁ (ନାରଦଙ୍କୁ) ଦେଖି ଶୀଘ୍ର ତାଙ୍କ ନିକଟକୁ ଯାଇ ଦଣ୍ଡ ପ୍ରଣାମ କଲା ସମୟରେ ଦେଖିଲେ ସେହି ସ୍ଥାନରେ କେତେକ ପିପିଲିକା ରହିଅଛନ୍ତି, ତେଣୁ ସେ ଉତ୍ତରୀୟ ବସନଦ୍ୱାରା ପିପିଲିକାମାନଙ୍କୁ ଯତ୍ନପୂର୍ବକ ଅପସାରଣ କରି ଶ୍ରୀଗୁରୁଦେବଙ୍କୁ ଦଣ୍ଡପ୍ରଣାମ କଲେ । ଏହା ଦେଖି ଶ୍ରୀପର୍ବତ ଋଷି କହିଲେ—

ହେ ବ୍ୟାଧ ! ତୁମ୍ଭର ଏପ୍ରକାର ଅହିଂସାଦି ଗୁଣ ସମସ୍ତ ଅତ୍ୟାଶ୍ଚର୍ଯ୍ୟ ନୁହେଁ, କାରଣ ଯେଉଁ ବ୍ୟକ୍ତିମାନେ ଶ୍ରୀହରିଙ୍କ ଭକ୍ତିରେ ପ୍ରବୃତ୍ତ ହୁଅନ୍ତି, ସେମାନେ କଦାପି ଅପରକୁ ଦୁଃଖ ଦିଅନ୍ତି ନାହିଁ । ୭୫ ଶ୍ଳୋକାର୍ଥ ।

ବୈଧିଭକ୍ତି ବା ମର୍ଯ୍ୟାଦାମାର୍ଗର ଭକ୍ତିର ବିଷୟ କୁହାଇ ବର୍ତ୍ତମାନ ରାଗାନୁଗା ବା ରାଗ-ମାର୍ଗର ଭକ୍ତିର ବିଷୟ କହୁଅଛନ୍ତି । ୮୨ ।

ରାଗାନୁଗା ରାଗାତ୍ମିକାଭକ୍ତିର ଅନୁଗା ହେତୁ ରାଗାତ୍ମିକା ନ ବୁଝିଲେ ରାଗାନୁଗା ବୁଝା ଯାଏ ନାହିଁ, ଏଣୁ ରାଗାତ୍ମିକା ବିଷୟ କହୁଅଛନ୍ତି—ଏହି ରାଗାତ୍ମିକା ଭକ୍ତି ଦ୍ୱାରକା ଓ ମଥୁରାହିରେ ଥିଲେ ହେଁ ବ୍ରଜବାସୀମାନଙ୍କଠାରେ ଏହା ବିଶୁଦ୍ଧଭାବରେ ରହିଅଛି । କାରଣ ଦ୍ୱାରକା ମଥୁରାହିରେ ଏହା ଐଶ୍ୱର୍ଯ୍ୟମିଶ୍ର, ଏହି କଥ୍ୟସିଦ୍ଧ ବ୍ରଜବାସୀମାନଙ୍କର ବିଶୁଦ୍ଧ ରାଗାତ୍ମିକା ଭକ୍ତିର ଅନୁଗମନରେ ସାଧନଭକ୍ତିର ନାମ ରାଗାନୁଗା ଭକ୍ତି । ୮୩ ।

ବ୍ରଜବାସିମାନଙ୍କଠାରେ ସ୍ପଷ୍ଟରୂପେ ବିରାଜମାନ ଯେ ରାଗାତ୍ମିକା ଭକ୍ତି ତାହାଙ୍କର ଅନୁବର୍ତ୍ତନେ ଯେଉଁ ଭକ୍ତି ତାହାକୁ ରାଗାନୁଗା କୁହାଯାଏ । ୭୬ ଶ୍ଳୋକାର୍ଥ ।

ଇଷ୍ଟେ ଗାଢ଼ତୃଷ୍ଣା ରାଗେର ସ୍ୱରୂପଲକ୍ଷଣ ।
ଇଷ୍ଟେ ଆବିଷ୍ଟତା—ତାର ତଟସ୍ଥଲକ୍ଷଣ ।୮୪।
ରାଗମୟୀ ଭକ୍ତିର ହୟ 'ରାଗାତ୍ମିକା' ନାମ ।
ତାହା ଶୁନି ଲୁବ୍ଧ ହୟ କୋନ ଭାଗ୍ୟବାନ ।୮୫।
ଲୋଭେ ବ୍ରଜବାସିଭାବେ କରେ ଅନୁଗତି ।
ଶାସ୍ତ୍ରଯୁକ୍ତି ନାହି ମାନେ—ରାଗାନୁଗାର ପ୍ରକୃତି ।
ତଥାହି ତତ୍ରୈବ (୧।୨।୧୩୧)—
ଇଷ୍ଟେ ସ୍ୱାରସିକୀ ରାଗଃ —
ପରମାବିଷ୍ଟତା ଭବେତ୍ ।

ତନ୍ମୟୀ ଯା ଭବେଦ୍ଭକ୍ତିଃ
ସାତ୍ର ରାଗାତ୍ମିକୋଦିତା ।୭୭।

ତଥାହି ତତ୍ରୈବ (୧।୨।୧୪୮)—

ତତ୍ତଦ୍ଭାବାଦିମାଧୁର୍ଯ୍ୟେ ଶ୍ରୁତେ ଧୀର୍ଯଦପେକ୍ଷତେ ।
ନାତ୍ର ଶାସ୍ତ୍ରଂ ନ ଯୁକ୍ତିଞ୍ଚ ତଲ୍ଲୋଭୋତ୍ପତ୍ତି-
ଲକ୍ଷଣମ୍ । ୭୮ ।
'ବାହ୍ୟ' 'ଅନ୍ତର' ଇହାର ଦୁଇ ତ ସାଧନ ।
ବାହ୍ୟ—ସାଧକଦେହେ କରେ ଶ୍ରବଣ-କୀର୍ତ୍ତନ ।

ଇଷ୍ଟେ—ସ୍ୱାନୁକୂଲବିଷୟେ, ସ୍ୱାରସିକୀ, ସ୍ୱାଭାବିକୀ ପରମାବିଷ୍ଟତା (ଯା,ସା) ରାଗଃଭବେତ୍, ତନ୍ମୟୀ—ତଦେକପ୍ରେରିତା, ଯା ଭକ୍ତିଃ ଭବେତ୍, ଅତ୍ର ସା ରାଗାତ୍ମିକା ଉଦିତା । ୭୭ ଶ୍ଳୋକ ।

ତତ୍ତଦ୍ଭାବାଦିମାଧୁର୍ଯ୍ୟେ—ଶ୍ରୀଭାଗବତାଦି ସିଦ୍ଧାନ୍ତନିର୍ଦ୍ଦେଶଶାସ୍ତ୍ରେଷୁ, ଶ୍ରୁତେ—ଶ୍ରବଣେନ ଯତ୍କଥିତ୍ ଅନୁଭୂତେ ସତି, ଯତ୍—ଯସ୍ୟ ଧୀଃ-ବୁଦ୍ଧିଃ, ଶାସ୍ତ୍ରଂ ବିଧିବାକ୍ୟଂ ନ, ଯୁକ୍ତିଂ ଚ ନ ଅପେକ୍ଷତେ ଅନନ୍ତଦେବ ଲୋଭୋତ୍ପତ୍ତି ଲକ୍ଷଣଂ । ୭୮ ଶ୍ଳୋକ ।

ରାଗାନୁଗାବୋଧାର୍ଥଂ ରାଗାତ୍ମିକାୟାଃ ଲକ୍ଷଣମାହ, ଇଷ୍ଟେ ଇତି । ଆବିଷ୍ଟତାତଟସ୍ଥେନ ପ୍ରେମମୟୀ ତୃଷ୍ଣା ଇତ୍ୟର୍ଥଃ । ୮୪ ବି, ନ, ।

ରାଗର ଲକ୍ଷଣ କହୁଅଛନ୍ତି—ଅଭୀଷ୍ଟବସ୍ତୁରେ ପ୍ରଗାଢ଼ ଲାଳସା ଓ ତହିଁରେ ଆବିଷ୍ଟତା ନାମ ରାଗ, ଏହି ପ୍ରଗାଢ଼ ଲାଳସାହିଁ ରାଗର ସ୍ୱରୂପ ଲକ୍ଷଣ ଏବଂ ଆବିଷ୍ଟତା ତାହାର ତଟସ୍ଥ ଲକ୍ଷଣ । ୮୪ ।

ଏହି ରାଗପୂର୍ଣ୍ଣ ଯେଉଁ ଭକ୍ତି ତାହାର ନାମ ରାଗାତ୍ମିକା । ଏହି ରାଗାତ୍ମିକା ଭକ୍ତି ମାହାତ୍ମ୍ୟ ଶୁଣି ଯଦି କୌଣସି ଭାଗ୍ୟବାନ୍ ଲୋକ ତାହା ପ୍ରାପ୍ତି ସକାଶେ ଲାଳସାଯୁକ୍ତ ହୁଅନ୍ତି ତେବେ ସେମାନେ ଶ୍ରୀବ୍ରଜବାସୀମାନଙ୍କର ରାଗମୟୀ ଭକ୍ତିଭାବର ଅନୁସରଣ କରନ୍ତି । ଏହିପ୍ରକାର ଅନୁସରଣର ନାମ ରାଗାନୁଗା ଭକ୍ତି । ରାଗାନୁଗା ଭକ୍ତିର ଅନୁସରଣକାରୀମାନେ ଶାସ୍ତ୍ର ଓ ଯୁକ୍ତିର ଅପେକ୍ଷା ରଖନ୍ତି ନାହିଁ । ଏହାର ଭାବ ଏହି ଯେ, ରାଗାନୁଗା ଭକ୍ତି ସଖ୍ୟ, ବାତ୍ସଲ୍ୟ, ମଧୁର ଭାବାଦିର ମାଧୁର୍ଯ୍ୟଶ୍ରବଣରୁ ଜାତ ହେତୁ ତାହା ଜାତ ହେଲେ ଭଗବତ୍ପ୍ରାପ୍ତି ବିଷୟରେ ଶାସ୍ତ୍ରଯୁକ୍ତିର ଅପେକ୍ଷା ରହେ ନାହିଁ । ୮୫ ।

ନିଜର ଅଭୀଷ୍ଟ ବସ୍ତୁରେ ସ୍ୱାଭାବିକୀ ପ୍ରେମମୟୀ ତୃଷ୍ଣା ହେତୁ ଯେଉଁ ପରମାବିଷ୍ଟତା ତାହାର ନାମ ରାଗ, ସେହି ରାଗମୟୀ ଯେ ଭକ୍ତି ତାହାର ନାମ ରାଗାତ୍ମିକା । ୭୭ ଶ୍ଳୋକାର୍ଥ ।

ଶ୍ରୀ ବ୍ରଜବାସିମାନଙ୍କର ଭାବମାଧୁର୍ଯ୍ୟବିଷୟ ଶ୍ରୀମଦ୍ଭାଗବତାଦି ସିଦ୍ଧ ଶାସ୍ତ୍ରମାନଙ୍କରୁ ଶୁଣି, ଶ୍ରବଣଦ୍ୱାରା ଯତ୍କିଞ୍ଚିତ୍ ଅନୁଭବ କରି ବୁଦ୍ଧି ଯେତେବେଳେ ବିଧିବାକ୍ୟ କିମ୍ବା ତଦନୁଗତ ଯୁକ୍ତିକୁ ଅପେକ୍ଷା ନ କରି ସେହି ସେହି ଭାବରେ ପ୍ରବୃତ୍ତ ହୁଏ, ସେହି ଅବସ୍ଥାକୁ ଲୋଭୋତ୍ପତ୍ତିର ଲକ୍ଷଣ ବୁଝାଯାଏ । ୭୮ ଶ୍ଳୋକାର୍ଥ ।

ଇହାର—ରାଗାନୁଗା ଭକ୍ତିର । ଶ୍ରବଣ କୀର୍ତ୍ତନ—ଶ୍ରବଣ କୀର୍ତ୍ତନାଦି ସାଧନାଙ୍ଗ ।୮୬।

ମନେ—ନିଜ ସିଦ୍ଧଦେହ କରିୟା ଭାବନ ।
ରାତ୍ରିଦିନେ କରେ ବ୍ରଜେ କୃଷ୍ଣେର ସେବନ ॥ ୮୮

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୫୧)—
ସେବା ସାଧକରୂପେଣ ସିଦ୍ଧରୂପେଣ ଚାତ୍ର ହି ।
ତଦ୍ଭାବଲିପ୍ସୁନା କାର୍ଯ୍ୟା ବ୍ରଜଲୋକାନୁସାରତଃ ॥
ନିଜାଭୀଷ୍ଟ-କୃଷ୍ଣପ୍ରେଷ୍ଠ-ପାଛେ ତ ଲାଗିୟା ।
ନିରନ୍ତର ସେବା କରେ ଅନ୍ତର୍ମନା ହଞା ॥ ୮୯ ॥

ତଥାହି ତତ୍ରୈବ (୧।୨।୧୫୦)—
କୃଷ୍ଣଂ ସ୍ମରନ୍ ଜନଞ୍ଚାସ୍ୟ ପ୍ରେଷ୍ଠଂ ନିଜସମୀହିତମ୍ ।
ତତ୍ତତ୍କଥାରତଶ୍ଚାସୌ କୁର୍ଯ୍ୟାଦ୍ୱାସଂ ବ୍ରଜେ ସଦା । ୭୦ ।
ଦାସ ସଖା ପିତାଦି ପ୍ରେୟସୀର ଗଣ ।
ରାଗମାର୍ଗେ ଏଇ ସବେର ଭାବେର ଗଣନ ॥ ୯୦ ॥

---

ଅନ୍ୱ— ଉପାସନାୟାଂ ତଦ୍ଭାବଲିପ୍ସୁନା—ତସ୍ୟ ବ୍ରଜସ୍ଥସ୍ୟ ନିଜାଭୀଷ୍ଟସ୍ୟ ଶ୍ରୀକୃଷ୍ଣ-ପ୍ରେଷ୍ଠସ୍ୟ ଯଃ ଭାବଃ—ରତିବିଶେଷଃ ତଲ୍ଲିପ୍ସୁନା-ଲଦ୍ଧେଚ୍ଛୁନା, ସାଧକରୂପେଣ—ଯଥାବସ୍ଥିତ-ଦେହେନ, ସିଦ୍ଧରୂପେଣ ଅନ୍ତଶ୍ଚିନ୍ତିତାଭୀଷ୍ଟତତ୍ସେବୋପଯୋଗିଦେହେନ ଚ ବ୍ରଜଲୋକାନୁସାରତଃ—ଶ୍ରୀକୃଷ୍ଣପ୍ରେଷ୍ଠଜନାଃ ତଦନୁସାରତଃ, ହି ସେବାକାର୍ଯ୍ୟା । ୬୯ ।

ପ୍ରେଷ୍ଠଂ—ନିଜଭାବୋଚିତ ଲୀଳାବିଳାସିନଂ, କୃଷ୍ଣଂ, ଅସ୍ୟ— କୃଷ୍ଣସ୍ୟ, ନିଜସମୀହିତଂ—ସ୍ୱାଭିଲଷଣୀୟଂ, ଜନଂ ଚ ସ୍ମରନ୍, ଅସୌ-ସାଧକଃ ତତ୍ତତ୍କଥାରତଃ ସନ୍—ସଦା ବ୍ରଜେବାସଂ କୁର୍ଯ୍ୟାତ୍, ( ସାଧକଶରୀରେଣାସାମର୍ଥ୍ୟେ ମନସାପିତି) ୭୦ଶ ଶ୍ଳୋକ ।

ରାଗାନୁଗାୟାଃ ପରପାଟୀମାହ-'ନିଜାଭୀଷ୍ଟ' । ଇତି । ୮୯ ଦ, ନ,
ରାଗାତ୍ମିକାୟାଃ ସ୍ୱରୂପମାହ ଦାସ ଇତି । ଦ. ଚ,

---

ନିଜର ଅଭୀଷ୍ଟ ଶ୍ରୀକୃଷ୍ଣପ୍ରିୟ ବ୍ରଜବାସିଙ୍କର ଭାବଲୁବ୍ଧ ବ୍ୟକ୍ତି ଏହି ରାଗାନୁଗାଭକ୍ତିରେ ଏହି ଦେହଦ୍ୱାରା ( ଶାରୀରିକ ଚେଷ୍ଟାଦ୍ୱାରା ) ଏବଂ ମନଭାବିତ ନିଜର ଅଭୀଷ୍ଟ ଶ୍ରୀକୃଷ୍ଣପାର୍ଷଦ ଦେହଦ୍ୱାରା ବ୍ରଜବାସୀଙ୍କର ଅନୁଗତ ହୋଇ ଶ୍ରୀକୃଷ୍ଣସେବା କରିବା ଉଚିତ । ୬୯ । ଶ୍ଳୋକାର୍ଥ ।

ଯେଉଁ ବ୍ୟକ୍ତି ରାଗାନୁଗାମାର୍ଗରେ ଶ୍ରୀକୃଷ୍ଣ ସେବାରେ ଲୋଭଯୁକ୍ତ ହୁଅନ୍ତି ସେ ବ୍ରଜବାସୀ ଶ୍ରୀକୃଷ୍ଣଙ୍କର ପ୍ରିୟ ଦାସ, ସଖା, ଗୁରୁବର୍ଗ ଓ ପ୍ରେୟସୀବର୍ଗଙ୍କ ମଧ୍ୟରୁ ଯାହାଙ୍କ ଭାବରେ ଲୁବ୍ଧ ତାହାଙ୍କର ଅନୁଗତରୂପରେ ନିଜର ମାନସିକ ଦେହ ଭାବନା କରି ବ୍ରଜରେ ଅବସ୍ଥାନପୂର୍ବକ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ନିଜାଭୀଷ୍ଟ ସେବା କରିବେ । ୮୯ ।

ଶ୍ରୀକୃଷ୍ଣଙ୍କୁ ଏବଂ ନିଜର ଅଭୀଷ୍ଟ ଶ୍ରୀକୃଷ୍ଣପ୍ରିୟ ବ୍ରଜବାସୀଙ୍କୁ ସ୍ମରଣକରି ନିଜର ଅଭିଳଷିତ ଶ୍ରୀକୃଷ୍ଣଙ୍କର ଲୀଳାକଥାରେ ଅନୁରକ୍ତହୋଇ ସମର୍ଥ ହେଲେ ଏହି ଶରୀରରେ ସର୍ବଦା ବ୍ରଜଧାମରେ ବାସ କରିବ । ତଦଭାବେ ମନଦ୍ୱାରା ସର୍ବଦା ବାସ କରିବ । ୭୦ ଶ୍ଳୋକାର୍ଥ ।

ତଥାହି (ଭାଃ ୩।୨୫।୩୬) —

ନ କର୍ହିଚିନ୍ମତ୍ପରାଃ ଶାନ୍ତରୂପେ,
ନଙ୍‌କ୍ଷ୍ୟନ୍ତି ନୋ ମେଽନିମିଷୋ ଲେଢ଼ି ହେତିଃ ।
ଯେଷାମହଂ ପ୍ରିୟ ଆତ୍ମା ସୁତଶ୍ଚ,
ସଖା ଗୁରୁଃ ସୁହୃଦୋ ଦୈବମିଷ୍ଟମ୍ । ୭୧ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୬୨)—

ପତିପୁତ୍ରସୁହୃଦ୍‌ଭ୍ରାତୃ- ପିତୃବନ୍ମିତ୍ରବଦ୍ଧରିମ୍ ।
ଯେ ଧ୍ୟାୟନ୍ତି ସଦୋଦ୍‌ଯୁକ୍ତାସ୍ତେଭ୍ୟୋଽପୀହ
ନମୋନମଃ ।୭୨।

ଏଇମତ ଭଜେ ଯେବା ରାଗାନୁଗାଭକ୍ତି ।
କୃଷ୍ଣେର ଚରଣେ ତାର ଉପଜାୟ ପ୍ରୀତି ।୯୧।

ପ୍ରୀତ୍ୟଙ୍କୁରେର—'ରତି' 'ଭାବ' ହୟ ଦୁଇ ନାମ ।
ଯାହା ହୈତେ ବଶ ହୟ ଶ୍ରୀଭଗବାନ୍ ।୯୨।
ଯାହା ହୈତେ ପାଇ କୃଷ୍ଣେର ପ୍ରେମସେବନ ।
ଏଇ ତ କହିଲ 'ଅଭିଧେୟ'-ବିବରଣ ।୯୩।
ଅଭିଧେୟ ସାଧନଭକ୍ତି ଏଇ କହିଲ ସନାତନ ।
ସଂକ୍ଷେପେ କହିଲ ବିସ୍ତାର ନା ଯାୟ ବର୍ଣ୍ଣନ ।।
ଅଭିଧେୟ ସାଧନଭକ୍ତି ଶୁନେ ଯେଇ ଜନ ।
ଅଚିରାତେ ପାୟ ସେଇ କୃଷ୍ଣପ୍ରେମଧନ । ୯୪ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୯୬।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ଅଭିଧେୟ ଭକ୍ତିତତ୍ତ୍ୱବର୍ଣ୍ଣନେ ନାମ
ଦ୍ୱାଦଶ ପରିଚ୍ଛେଦଃ ।

---

ଶାନ୍ତରୂପେ — ଶାନ୍ତଂ ଅବିକୃତଂ ରୂପଂ ଯସ୍ୟ ତସ୍ମିନ୍ ବୈକୁଣ୍ଠେ ମତ୍ପରାଃ ତଦ୍‌ବାସିନଃ-ଲୋକାଃ କର୍ହିଚିତ୍—କଦାଚଦପି, ନ ନଙ୍କ୍ଷ୍ୟନ୍ତି ଭୋଗହୀନାଃ ଭବନ୍ତି, ଅନିମିଷଃ ମେ ହେତିଃ ମଦାୟୁଂ କାଲଚକ୍ରଂ ନ ଲେଢି —ଗ୍ରାସ୍‌ନତ୍ରସତେ, ଯେଷାଂ ଅହଂ ପ୍ରିୟଃ ଆତ୍ମା ସୁତଃ ସଖା ଗୁରୁଃ ସୁହୃଦଃ ଦୈବଂ ଇଷ୍ଟଂ ଚ ।୭୧ ।

ଇହ ଯେ ସଦା ଉଦ୍‌ଯୁକ୍ତାଃ (ଯତ୍ନଃ) ହରିଂ ପତିପୁତ୍ରସୁହୃଦ୍‌ଭ୍ରାତୃପିତୃବତ୍ ମିତ୍ରବତ୍ (ଚ) ଧ୍ୟାୟନ୍ତି ତେଭ୍ୟ ଅପି ନମଃ ନମଃ । ୭୨ଶ ଶ୍ଳୋକ ।

---

ଶ୍ରୀ କପିଳଦେବ ମାତାଙ୍କୁ କହୁଅଛନ୍ତି—ବୈକୁଣ୍ଠବାସୀ ମତ୍ପରାୟଣ ଲୋକମାନେ କଦାପି ଭୋଗହୀନ ହୁଅନ୍ତି ନାହିଁ । ମୋର ଅନିମିଷ କାଳଚକ୍ର ସେମାନଙ୍କୁ ଗ୍ରାସ କରେ ନାହିଁ, ଅର୍ଥାତ୍ ସ୍ୱର୍ଗାଦି ଭୋଗ୍ୟବସ୍ତୁ କାଳବଶତଃ କ୍ଷୟଶୀଳ, କିନ୍ତୁ ବୈକୁଣ୍ଠର ଭୋଗ୍ୟବସ୍ତୁ ନିତ୍ୟ ଏବଂ ଅକ୍ଷୟ, ଯେହେତୁ ଯେଉଁମାନେ ମୋତେ ପ୍ରିୟ (କାନ୍ତ) ଆତ୍ମା (ପରମାତ୍ମା) ସୁତ, ସଖା, ଗୁରୁ, ଆତ୍ମୀୟ ଏବଂ ଆଶ୍ରୟଣୀୟରୂପରେ ଭଜନ କରନ୍ତି, ସେମାନେ ଅକ୍ଷୟ ଭୋଗ ଲାଭ କରନ୍ତି । ୭୧ଶ ଶ୍ଳୋକାର୍ଥ ।

ଯେଉଁମାନେ ସର୍ବଦା ଯତ୍ନସହକାରେ ଶ୍ରୀକୃଷ୍ଣଙ୍କୁ ପତି ପୁତ୍ର ସୁହୃଦ୍ (ନିରପେକ୍ଷ ହିତକାରୀ) ଭ୍ରାତା ପିତା ମିତ୍ରବତ୍ ( ସଦ୍‌ବନ୍ଧୁସଦୃଶ ) ଭାବନା କରନ୍ତି, ସେମାନଙ୍କୁ ବାରମ୍ବାର ପ୍ରଣାମ । ୭୨ଶ ଶ୍ଳୋକାର୍ଥ ।

ଏଇମତ—ପୂର୍ବକଥିତ ବାହ୍ୟାନ୍ତର ସାଧନଦ୍ୱାରା । ୯୧ ।

ପ୍ରୀତ୍ୟଙ୍କୁରେର—ପ୍ରେମ ଅଙ୍କୁର ଅବସ୍ଥା, ଏହାଙ୍କର ଦୁଇ ନାମ—ରତି ଓ ଭାବ । ଯାହା—ରତି ବା ଭାବ । ୯୨ ।

ଅଭିଧେୟ—ରାଗାନୁଗାଭକ୍ତି । ୯୩ ।

ଅଭିଧେୟ ସାଧନଭକ୍ତି—ବୈଧୀ ଓ ରାଗାନୁଗା ସାଧନଭକ୍ତି । ୯୪ ।

ମଧ୍ୟଲୀଳା ଦ୍ୱାଦଶ ପରିଚ୍ଛେଦ ସମାପ୍ତ ।

## ତ୍ରୟୋବିଂଶ ପରିଚ୍ଛେଦ ।

ଚିରାଦଦତ୍ତଂ ନିଜଗୁପ୍ତବିତ୍ତଂ,
ସ୍ୱପ୍ରେମନାମାମୃତମତ୍ୟୁଦାରଃ ।
ଆପାମରଂ ଯୋ ବିତତାର ଗୌରଃ,
କୃଷ୍ଣୋ ଜନେଭ୍ୟସ୍ତମହଂ ପ୍ରପଦ୍ୟେ ।୧।
ଜୟଜୟ ଗୌରଚନ୍ଦ୍ର, ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ ।୧।
ଏବେ ଶୁନ ଭକ୍ତିଫଳ—ପ୍ରେମ 'ପ୍ରୟୋଜନ' ।
ଯାହାର ଶ୍ରବଣେ ହୟ ଭକ୍ତିରସଜ୍ଞାନ ।୨।
କୃଷ୍ଣେ ରତି ଗାଢ଼ ହୈଲେ—'ପ୍ରେମ' ଅଭିଧାନ ।
କୃଷ୍ଣଭକ୍ତିରସେର ଏଇ 'ସ୍ଥାୟିଭାବ' ନାମ ।୩।

ତଥାହି ଭକ୍ତିରସାମୃତସିନ୍ଧୌ (୧।୩।୧)—

ଶୁଦ୍ଧସତ୍ତ୍ୱବିଶେଷାତ୍ମା ପ୍ରେମସୂର୍ଯ୍ୟାଂଶୁ ସାମ୍ୟଭାକ୍ ।
ରୁଚିଭିଶ୍ଚିତ୍ତମାସୃଣ୍ୟ-କୃଦସୌ ଭାବ ଉଚ୍ୟତେ ।୨
ଏଇ ଦୁଇ ଭାବେର ସ୍ୱରୂପ ତଟସ୍ଥ-ଲକ୍ଷଣ ।
ପ୍ରେମେର ଲକ୍ଷଣ ଏବେ ଶୁନ ସନାତନ ।୪।

## ତ୍ରୟୋବିଂଶ ପରିଚ୍ଛେଦ ।



ଅତ୍ୟୁଦାରଃ ଯଃ ଗୌରଃ କୃଷ୍ଣଃ ଚିରାତ୍ ଅଦତ୍ତଂ-ଅନର୍ପିତଂ ନିଜଗୁପ୍ତବିତ୍ତଂ ସ୍ୱଗୋପନୀୟଧନଂ ସ୍ୱପ୍ରେମନାମାମୃତଂ ଆପାମରଂ ଜନେଭ୍ୟଃ ବିତତାର ତଂ ଗୌରଂ କୃଷ୍ଣଂ ଅହଂ ପ୍ରପଦ୍ୟେ । ୧ମ ଶ୍ଳୋକ ।

ଶୁଦ୍ଧସତ୍ତ୍ୱବିଶେଷାତ୍ମା କୃଷ୍ଣସ୍ୟ ସ୍ୱରୂପଶକ୍ତିରୂପଃ ଶୁଦ୍ଧସତ୍ତ୍ୱବିଶେଷଃ ଯଃ ସଏବ ଆତ୍ମା ତନ୍ନିତ୍ୟପ୍ରିୟଜନାଧିଷ୍ଠାନକତୟା ନିତ୍ୟସିଦ୍ଧଂ ସ୍ୱରୂପଂ ଯସ୍ୟ ସଃ, ପ୍ରେମସୂର୍ଯ୍ୟାଂଶୁସାମ୍ୟଭାକ୍—ପ୍ରେମାଙ୍କୁରରୂପଃ ସୂର୍ଯ୍ୟଃ ତସ୍ୟ ଅଂଶବଃ ଉଦୟିଷ୍ୟମାଣାବସ୍ଥେ ଗୃହ୍ୟତେ, ତୈସ୍ତୁ ତେଷାଂ ସାମ୍ୟଭାକ୍ ଇତି, ପ୍ରେମ୍ଣଃ ପ୍ରଥମଚ୍ଛବିରୂପଃ ଇତ୍ୟର୍ଥଃ, ରୁଚିଭିଃ-ପ୍ରାପ୍ତ୍ୟ-ଭିଲାଷ ସହ୍ନର୍ଦ୍ଦୁକାନୁଗତ୍ୟାଭିଲାଷ ସୌହାର୍ଦ୍ଦାଭିଲାଷୈଃ, ଚିତ୍ତମାସୃଣ୍ୟକୃତ୍-ଚିତ୍ତାଦ୍ରତାକୃତ୍, ଅସୌ-ଭକ୍ତିବିଶେଷଃ, ଭାବ ଉଚ୍ୟତେ । ୨ୟ ଶ୍ଳୋକଃ ।

ପ୍ରେମଃ ସ୍ୱରୂପମାହ 'କୃଷ୍ଣେ' ଇତି, ଶ୍ରୀକୃଷ୍ଣବିଷୟେର୍ଗାଢ଼ତୈବ ପ୍ରେମ, ଯତଃ 'କୃଷ୍ଣଭକ୍ତି' ଇତି । ୧ ଟି. ଚ. ।

ଏଇ ଦୁଇ—ଏତୌଦ୍ୱୌ ଶୁଦ୍ଧସତ୍ତ୍ୱବିଶେଷାତ୍ମା ଚିତ୍ତମାସୃଣ୍ୟକୃତୌ । ୨ ଟି. ଚ. ।

ପରମଦୟାଳୁ ଯେଉଁ ଶ୍ରୀକୃଷ୍ଣଚୈତନ୍ୟ ଚିରକାଳବ୍ୟାପୀ ଅଦତ୍ତ ନିଜ ଗୋପନୀୟ ଧନରୂପ ପ୍ରେମନାମକ ଅମୃତ କିମ୍ବା ପ୍ରେମପ୍ରଦ ନାମାମୃତ ଅତି ନୀଚ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତଙ୍କୁ ବିତରଣ କରିଥିଲେ, ମୁଁ ତାଙ୍କୁ ଏକାନ୍ତ ଆଶ୍ରୟ କରେଁ । ୧ମ ଶ୍ଳୋକାର୍ଥ ।

ଭାବଭକ୍ତିଙ୍କର ଅବସ୍ଥାନ୍ତର, ତାହା ଶୁଦ୍ଧସତ୍ତ୍ୱବିଶେଷାତ୍ମକ ପ୍ରେମରୂପ ସୂର୍ଯ୍ୟଙ୍କର ପ୍ରଥମ ଛବି ଅଟନ୍ତି । ଏହା ରୁଚିଦ୍ୱାରା ଅର୍ଥାତ୍ ଭଗବତ୍ ପ୍ରାପ୍ତି ଅଭିଳାଷ, ତଦୀୟ ଆନୁକୂଲ୍ୟାଭିଳାଷ ଓ ସୌହାର୍ଦ୍ଦ୍ୟାଭିଳାଷଦ୍ୱାରା ଚିତ୍ତର ସ୍ନିଗ୍ଧତା ସମ୍ପାଦନ କରନ୍ତି । ୨ୟ ଶ୍ଳୋକାର୍ଥ ।

ଏଇ ଦୁଇ— ପ୍ରେମର ପ୍ରଥମ ଛବି ବା, ପ୍ରଥମାବସ୍ଥାରୁ ଭାବର ସ୍ୱରୂପ ଲକ୍ଷଣ, ଏବଂ ଚିତ୍ତ ସ୍ନିଗ୍ଧକର, ଭାବର ତଟସ୍ଥଲକ୍ଷଣ । ୪ ।

ତଥାହି ତତ୍ରୈବ (୧।୩।୧)—

ସମ୍ୟଙ୍ମସୃଣିତସ୍ୱାନ୍ତୋ ମମତ୍ୱାତିଶୟାଙ୍କିତଃ ।
ଭାବଃ ସ ଏବ ସାନ୍ଦ୍ରାତ୍ମା ବୁଧୈଃ ପ୍ରେମ ନିଗଦ୍ୟତେ

ଭକ୍ତିରସାମୃତସିନ୍ଧୌ (୧।୪।୨)—
ହରିଭକ୍ତିବିଳାସେ (୧୧।୩୮୨)—
ନାରଦପଞ୍ଚରାତ୍ରବଚନମ୍—

ଅନନ୍ୟମମତା ବିଷ୍ଣୌ ମମତା ପ୍ରେମସଙ୍ଗତା ।
ଭକ୍ତିରିତ୍ୟୁଚ୍ୟତେ ଭୀଷ୍ମ-ପ୍ରହ୍ଲାଦୋଦ୍ଧବ-
ନାରଦୈଃ । ୪ ।

କୋନ ଭାଗ୍ୟେ କୋନ ଜୀବେର ଶ୍ରଦ୍ଧା ଯଦି ହୟ
ତବେ ସେଇ ଜୀବ ସାଧୁସଙ୍ଗ କରୟ । ୫ ।
ସାଧୁସଙ୍ଗ ହୈତେ ହୟ ଶ୍ରବଣ-କୀର୍ତ୍ତନ ।
ସାଧନଭକ୍ତ୍ୟେ ହୟ ସର୍ବାନର୍ଥନିବର୍ତ୍ତନ । ୬ ।
ଅନର୍ଥନିବୃତ୍ତି ହୈତେ ଭକ୍ତ୍ୟେ ନିଷ୍ଠା ହୟ ।
ନିଷ୍ଠା ହୈତେ ଶ୍ରବଣାଦ୍ୟେ ରୁଚି ଉପଜୟ ।
ରୁଚି ହୈତେ ଭକ୍ତ୍ୟେ ହୟ ଆସକ୍ତି ପ୍ରଚୁର ।
ଆସକ୍ତି ହୈତେ ଚିତ୍ତେ ଜନ୍ମେ କୃଷ୍ଣେ ପ୍ରୀତ୍ୟଙ୍କୁର
ସେଇ ଭାବ ଗାଢ଼ ହୈଲେ ଧରେ 'ପ୍ରେମ' ନାମ ।
ସେଇ ପ୍ରେମ ପ୍ରୟୋଜନ—ସର୍ବାନନ୍ଦଧାମ । ୯ ।

---

ସମ୍ୟକ୍ ମସୃଣିତଂ ଭାବସ୍ୟ ପ୍ରଥମଦଶାପେକ୍ଷୟା ଅତିଶୟମାର୍ଦ୍ରଂ ସ୍ୱାନ୍ତଂ—ଚିତ୍ତଂ ଯସ୍ମିନ୍ ମମତ୍ୱଂ ଶ୍ରୀକୃଷ୍ଣେ ସାନ୍ଦ୍ରାତ୍ମା ନିବିଡ଼ ସ୍ୱରୂପଃ ପ୍ରଥମଦଶାପେକ୍ଷୟା ପରମାନନ୍ଦୋତ୍କର୍ଷଂ ପ୍ରାପ୍ତ ଇତି ଯାବତ୍ ସ ଏବ ଭାବଃ ସମ୍ୟକ୍ ମସୃଣିତସ୍ୱାନ୍ତଃ ମମତ୍ୱାତିଶୟାଙ୍କିତଃ ସାନ୍ଦ୍ରାତ୍ମା (ସନ୍) ବୁଧୈଃ ପ୍ରେମାନିଗଦ୍ୟତେ ଅସ୍ୟ ଶ୍ଳୋକଃ ।

ଅନନ୍ୟ ମମତା ଇତି, ବିଷ୍ଣୌ ଭଗବତି ପ୍ରେମସଂପ୍ଲୁତା-ପ୍ରେମରସବ୍ୟାପ୍ତା ଯା ମମତା ମମାୟମିତି ଭାବଃ ସା ଭକ୍ତିଃ ପ୍ରେମଲକ୍ଷଣେତି ଭୀଷ୍ମାଦିଭିଃ ତଦ୍ଭବଭିଃ ଉଚ୍ୟତେ, କଥମ୍ଭୂତା ମମତା, ନ ବିଦ୍ୟତେ ଅନ୍ୟସ୍ମିନ୍ ଦେହଗେହାଦୌ ମମତା ଯସ୍ୟାଃ ସା । ୪ର୍ଥ ଶ୍ଳୋକଃ ।

ପ୍ରେମପ୍ରାଦୁର୍ଭାବକ୍ରମମାହ— କୋନ ଇତ୍ୟାଦିଭିଃ । ବି. ଚ. ।

---

ଭାବର ଯେଉଁ ଅବସ୍ଥାରେ ଲୋକର ଚିତ୍ତ ଅତିଶୟ ଆର୍ଦ୍ର ହୁଏ ଶ୍ରୀକୃଷ୍ଣଙ୍କଠାରେ ଅତିଶୟ ମମତା ଜନ୍ମେ ଏବଂ ନିବିଡ଼ ଆନନ୍ଦ ଲାଭ ହୁଏ, ଭାବର ସେହି ଅବସ୍ଥାକୁ ପ୍ରେମ କୁହାଯାଏ । ଅସ୍ୟ ଶ୍ଳୋକାର୍ଥ ।

ଯହିଁରେ ଦେହ ଓ ଗୃହାଦି ପ୍ରତି ମମତା ଅର୍ଥାତ୍ ମୋର ଏହି ଭାବ ନାହିଁ ଅଥଚ ଶ୍ରୀକୃଷ୍ଣ ପ୍ରତି ପ୍ରେମରସ ବ୍ୟାପ୍ତ ମମତା ଅର୍ଥାତ୍ ଶ୍ରୀକୃଷ୍ଣ ମୋର ଏହି ଭାବ ଅଛି, ତାହାକୁ ଭୀଷ୍ମ, ପ୍ରହ୍ଲାଦ, ଉଦ୍ଧବ ଓ ନାରଦ ପ୍ରଭୃତି ପ୍ରେମଲକ୍ଷଣାଭକ୍ତି ବୋଲି କହନ୍ତି । ୪ର୍ଥ ଶ୍ଳୋକାର୍ଥ ।

ପ୍ରେମର ପ୍ରାଦୁର୍ଭାବର କ୍ରମ କହୁଅଛନ୍ତି । ୫ ।
ଶ୍ରଦ୍ଧା—ଶ୍ରୀକୃଷ୍ଣଙ୍କ ଭକ୍ତିରେ ଶ୍ରଦ୍ଧା । ସାଧୁସଙ୍ଗ— ଭଗବତ୍ ଭକ୍ତସଙ୍ଗ । ୬ ।
ସାଧନଭକ୍ତ୍ୟେ—ଶ୍ରବଣକୀର୍ତ୍ତନାଦି ସାଧନାଙ୍ଗରୁ । ୬ ।
ରୁଚି—ଚିତ୍ତର ପାପବୀଜ ନାଶ ହେତୁ ଭକ୍ତିର ମାଧୁର୍ଯ୍ୟାନୁଭବ ।
ଆସକ୍ତି—ଅବିଦ୍ୟା ନିବୃତ୍ତି ହେତୁ ଶ୍ରୀକୃଷ୍ଣଙ୍କଠାରେ ମନୋଽଭିନିବେଶ । ୭ ।
ସର୍ବାନର୍ଥ ନିବର୍ତ୍ତନ—ଅସତ୍ ଅଭିଳାଷ ତ୍ୟାଗ କିମ୍ବା ଅପ୍ରାରବ୍ଧ ପ୍ରାରବ୍ଧ ପାପନାଶ ।୬।
ନିଷ୍ଠା – ଆଗ୍ରହ ସହ ପୁନଃ ପୁନଃ ଭଜନ କରିବା । ୭ ।
ପ୍ରୀତ୍ୟଙ୍କୁର— ରତି । ୮ । ପ୍ରେମ ପ୍ରୟୋଜନ—ପ୍ରୟୋଜନ ତତ୍ତ୍ୱ । ୯ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୪।୧୧) —
ଆଦୌ ଶ୍ରଦ୍ଧା ତତଃ ସାଧୁସଙ୍ଗୋଽଥ ଭଜନକ୍ରିୟା
ତତୋଽନର୍ଥନିବୃତ୍ତିଃ ସ୍ୟାତ୍ତତୋ ନିଷ୍ଠା
ରୁଚିସ୍ତତଃ ।୫।
ଅଥାସକ୍ତିସ୍ତତୋ ଭାବସ୍ତତଃ ପ୍ରେମାଭ୍ୟୁଦଞ୍ଚତି ।
ସାଧକାନାମୟଂ ପ୍ରେମ୍ଣଃ ପ୍ରାଦୁର୍ଭାବେ ଭବେତ୍
କ୍ରମଃ ।୬।

ତଥାହି (ଭାଃ ୩।୨୫।୨୪) —
ସତାଂ ପ୍ରସଙ୍ଗାନ୍ମମ ବୀର୍ଯ୍ୟସଂବିଦୋ,
ଭବନ୍ତି ହୃତ୍କର୍ଣ୍ଣରସାୟନାଃ କଥାଃ ।
ତଜ୍ଜୋଷଣାଦାଶ୍ୱପବର୍ଗବର୍ତ୍ମନି,
ଶ୍ରଦ୍ଧାରତିର୍ଭକ୍ତିରନୁକ୍ରମିଷ୍ୟତି ।୭।

ଯାହାର ହୃଦୟେ ଏଇ ଭାବାଙ୍କୁର ହୟ ।
ତାହାତେ ଏତେକ ଚିହ୍ନ—ସର୍ବଶାସ୍ତ୍ରେ କୟ ।୧୦।

ତଥାହି ଭକ୍ତିରସାମୃତସିନ୍ଧୌ (୧।୩।୧୧) —
କ୍ଷାନ୍ତିରବ୍ୟର୍ଥକାଲତ୍ୱଂ ବିରକ୍ତିର୍ମାନଶୂନ୍ୟତା ।
ଆଶାବନ୍ଧଃ ସମୁତ୍କଣ୍ଠା ନାମଗାନେ ସଦା ରୁଚିଃ ।୮।
ଆସକ୍ତିସ୍ତଦ୍ଗୁଣାଖ୍ୟାନେ ପ୍ରୀତିସ୍ତଦ୍ବସତିସ୍ଥଲେ ।
ଇତ୍ୟାଦୟୋଽନୁଭାବାଃ ସ୍ୟୁର୍ଜାତଭାବାଙ୍କୁରେ
ଜନେ ।୯।

---

ଆଦୌ—ପ୍ରଥମ ସାଧୁସଙ୍ଗେ ଶାସ୍ତ୍ର ଶ୍ରବଣଦ୍ୱାରା, ଶ୍ରଦ୍ଧା ବିଶ୍ୱାସଃ, ତତଃ ସାଧୁସଙ୍ଗଃ—ଭଜନ-ରୀତି-ଶିକ୍ଷାନିବନ୍ଧନଃ, ଅଥ ଭଜନକ୍ରିୟା, ତତଃ ଅନର୍ଥନିବୃତ୍ତିଃ ସ୍ୟାତ୍, ତତଃ ନିଷ୍ଠା—ଅବିକ୍ଷେପେଣ ସାତତ୍ୟଂ, ତତଃ ରୁଚିଃ-ଅଭିଲାଷଃ, ଅଥ ଆସକ୍ତିଃ ତତଃ ଭାବଃ ତତଃ ପ୍ରେମା ଅଭ୍ୟୁଦଞ୍ଚତି ସାଧକାନାଂ ପ୍ରେମ୍ଣଃ ପ୍ରାଦୁର୍ଭାବେ ଅୟଂ କ୍ରମଃ ଭବେତ୍ । ୫।୬ ଶ୍ଳୋକଃ ।

୭ମ ଶ୍ଳୋକର ଅନ୍ୱୟ ଆଦି ୧ମ ପରିଃ ୩୦ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଜାତଭାବାଙ୍କୁରେ ଜନେ କ୍ଷାନ୍ତିଃ, ଅବ୍ୟର୍ଥକାଲତ୍ୱଂ, ବିରକ୍ତିଃ, ମାନଶୂନ୍ୟତା, ଆଶାବନ୍ଧଃ ସମୁତ୍କଣ୍ଠା, ନାମ—ଗାନେ ସଦାରୁଚିଃ, ତଦ୍ଗୁଣାଖ୍ୟାନେ ଆସକ୍ତିଃ ତଦ୍ବସତିସ୍ଥଲେ ପ୍ରୀତିଃ ଇତ୍ୟାଦୟଃ ଅନୁଭାବାଃ ସ୍ୟୁଃ । ୮।୯ ଶ୍ଳୋକ ।

---

ପ୍ରେମୋଦୟର ବହୁବିଧ କ୍ରମ ମଧ୍ୟରୁ ଗୋଟିଏ କ୍ରମ କହୁଅଛନ୍ତି—ପ୍ରଥମେ ଶ୍ରଦ୍ଧା (ପ୍ରଥମେ ସାଧୁମାନଙ୍କଠାରୁ ଶାସ୍ତ୍ରଶ୍ରବଣଦ୍ୱାରା ଶ୍ରଦ୍ଧା ଅର୍ଥାତ୍ ବିଶ୍ୱାସ ଜାତ ହୁଏ) ତପରେ ସାଧୁସଙ୍ଗ (ସାଧୁମାନଙ୍କ ସହିତ ମିଳିତ ହୋଇ ଭଜନକ୍ରିୟା ଲାଭ) ତପରେ ଭଜନକ୍ରିୟା (ଭଜନକରଣ) ତପରେ ଅନର୍ଥନିବୃତ୍ତି (ଅପ୍ରାରବ୍ଧ ଓ ପ୍ରାରବ୍ଧ ପାପନାଶ) ତପରେ ନିଷ୍ଠା (ଆଗ୍ରହ ସହିତ ପୁନଃ ପୁନଃ ଭଜନ) ତପରେ ରୁଚି (ମାଧୁର୍ଯ୍ୟାନୁଭବ) ତପରେ ଆସକ୍ତି (ଶ୍ରୀକୃଷ୍ଣଙ୍କଠାରେ ମନୋନିବେଶ) ତାହା ପରେ ଭାବ (ପ୍ରୀତ୍ୟଙ୍କୁର) ତପରେ ପ୍ରେମ ଉଦୟ ହୁଅନ୍ତି । ସାଧକମାନଙ୍କର ପ୍ରେମାବିର୍ଭାବର ଏହାହିଁ କ୍ରମ । ୫।୬ ଶ୍ଳୋକାର୍ଥ ।

ଶ୍ରୀକପିଳଦେବ ଦେବମାତାଙ୍କୁ କହୁଅଛନ୍ତି—ସାଧୁମାନଙ୍କର ସଙ୍ଗରେ ମୋର (ଭଗବାନଙ୍କର) ମାହାତ୍ମ୍ୟପ୍ରକାଶକ କଥା ଆଲୋଚିତ ହେଲେ ତାହା ଜୀବର ହୃଦୟ ଓ କର୍ଣ୍ଣର ସୁଖଦାୟକ ହୁଏ । ସେପ୍ରକାର କଥା ଆସ୍ୱାଦନଦ୍ୱାରା ମୁକ୍ତିପ୍ରଦ ଭଗବାନଙ୍କଠାରେ ତାହାଙ୍କର ଶୀଘ୍ର ଶ୍ରଦ୍ଧା, ରତି ଓ ଭକ୍ତି କ୍ରମେ କ୍ରମେ ଉତ୍ପନ୍ନ ହୁଏ । ୭ମ ଶ୍ଳୋକାର୍ଥ ।

ଯାହାଙ୍କର ଭାବାଙ୍କୁର ଜନ୍ମିଅଛି ତାହାଙ୍କଠାରେ କ୍ଷାନ୍ତି, ଅବ୍ୟର୍ଥକାଲତ୍ୱ, ବିରକ୍ତି, ମାନଶୂନ୍ୟତା, ଆଶାବନ୍ଧ, ସମୁତ୍କଣ୍ଠା, ଭଗବନ୍ନାମଗାନରେ ସଦାରୁଚି ଭଗବତ୍ ଗୁଣକଥନରେ ଆସକ୍ତି, ଓ ଭଗବତ୍ ବାସସ୍ଥାନରେ ପ୍ରୀତି, ଇତ୍ୟାଦି ଅନୁଭବ ସକଳ ପ୍ରକାଶ ପାଏ ୮ମ ଓ ୯ମ ଶ୍ଳୋକାର୍ଥ ।

ଏହି ନବ ପ୍ରୀତ୍ୟଙ୍କୁର ଯାର ଚିତ୍ତେ ହୟ ।
ପ୍ରାକୃତ-କ୍ଷୋଭେ ତାର କ୍ଷୋଭ ନାହି ହୟ ॥୧୧॥

ତଥାହି ( ଭାଃ ୧।୧୯।୧୫ )—
ତଂ ମୋପଯାତଂ ପ୍ରତିଯନ୍ତୁ ବିପ୍ରା ।
ଗଙ୍ଗା ଚ ଦେବୀ ଧୃତଚିତ୍ତମୀଶେ ।
ଦ୍ୱିଜୋପସୃଷ୍ଟଃ କୁହକସ୍ତକ୍ଷକୋ ବା,
ଦଶତ୍ୱଲଂ ଗାୟତ ବିଷ୍ଣୁଗାଥାଃ । ୧୦ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୩।୦ )—
ଶ୍ରୀହରିଭକ୍ତି ସୁଧୋଦୟବଚନମ୍ ( ୬।୩୭ )—
ବାଗ୍‌ଭିସ୍ତୁବନ୍ତୋ ମନସା ସ୍ମରନ୍ତ-
ସ୍ତନ୍ୱା ନମନ୍ତୋଽପ୍ୟନିଶଂ ନ ତୃପ୍ତାଃ ।
ଭକ୍ତାଃ ସ୍ରବନ୍ନେତ୍ରଜଳାଃ ସମଗ୍ର-
ମାୟୁର୍ହରେରେବ ସମର୍ପୟନ୍ତି । ୧୧ ।

କୃଷ୍ଣେତର ସମ୍ବନ୍ଧ-ବାର୍ତ୍ତା କାଲ ନାହି ଯାୟ ।
ଭୁକ୍ତି ସିଦ୍ଧି ଇନ୍ଦ୍ରିୟାର୍ଥ ତାରେ ନାହି ଭାୟ ॥୧୨॥

ତଥାହି ( ଭାଃ ୫।୧୪।୪୩ )—
ଯୋ ଦୁସ୍ତ୍ୟଜାନ୍ ଦାରସୁତାନ୍ ସୁହୃଦ୍ରାଜ୍ୟଂ
ହୃଦି ସ୍ପୃଶଃ ।
ଜହୌ ଯୁବୈବ ମଲବଦୁତ୍ତମଃଶ୍ଲୋକଲାଲସଃ ।୧୨।

ହେ ବିପ୍ରାଃ ! (ଭବନ୍ତଃ) ଦେବୀ ଗଙ୍ଗା ଚ ଈଶେ ଧୃତଚିତ୍ତଂ ତଂ ମା-ମାଂ ଉପଯାତଂ ଶରଣାଗତଂ, ପ୍ରତିଯନ୍ତୁ—ଜାନନ୍ତୁ, ଦ୍ୱିଜୋପସୃଷ୍ଟଃ— ଦ୍ୱିଜେରିତଃ କୁହକଃ ତକ୍ଷକଃ ବା ଅଲଂ ଦଶତୁ, ବିଷ୍ଣୁଗାଥାଃ ଗାୟତ । ୧୦ମ ଶ୍ଳୋକ ।

ଭକ୍ତାଃ ଅନିଶଂ ବାଗ୍‌ଭିଃ ସ୍ତୁବନ୍ତଃ, ମନସା ସ୍ମରନ୍ତଃ, ତନ୍ୱା ନମନ୍ତଃ, ଅପି ନ ତୃପ୍ତାଃ, ସ୍ରବନ୍ନେତ୍ରଜଳାଃ (ସନ୍ତଃ) ସମଗ୍ରଂ ଆୟୁଃ (କାଳଂ) ହରେଃ ଏବ ସମର୍ପୟନ୍ତି । ୧୧ଶ ଶ୍ଳୋକ ।

ଯଃ—ଭରତଃ, ଉତ୍ତମଶ୍ଳୋକଲାଲସଃ ( ସନ୍ ) ହୃଦିସ୍ପୃଶଃ—ମନୋଜ୍ଞାନ୍ ଦୁସ୍ତ୍ୟଜାନ୍ ସୁହୃଦ୍ରାଜ୍ୟଦାରସୁତାନ୍ (ଚ) ଯୁବୈବ ମଲବତ୍ ଜହୌ । ୧୨ଶ ଶ୍ଳୋକଃ ।

କ୍ଷାନ୍ତ୍ୟାଦୀନାଂ ନବାନାମର୍ଥକଥନଂ ଡ୍ରାକ୍ଷତେତ୍ୟାଦି ।୧୧। ବି. ଚ.

ଏହି ଉପରୋକ୍ତ ୯ଟି ପ୍ରୀତ୍ୟଙ୍କୁର ଲକ୍ଷଣ କହୁଅଛନ୍ତି ।

କ୍ଷାନ୍ତିର ଲକ୍ଷଣ—କ୍ଷୋଭ ( ଦେହଦୈହିକ ସମ୍ବନ୍ଧରେ ଦୁଃଖ ) ଉପସ୍ଥିତ ହେଲେ ଜାତରତିଭକ୍ତ ସେଥିରେ କ୍ଷୋଭିତ ନ ହୋଇ ଶ୍ରୀକୃଷ୍ଣ ସେବା ତତ୍ପର ହୁଅନ୍ତି । ୧୧ ।

ଶାପଗ୍ରସ୍ତ ମହାରାଜା କହୁଅଛନ୍ତି—ହେ ବ୍ରାହ୍ମଣଗଣ ! ମୁଁ ଶ୍ରୀକୃଷ୍ଣଙ୍କଠାରେ ଚିତ୍ତ ସମର୍ପଣ କରିଅଛି ଆପଣମାନେ ଓ ଦେବୀ ଗଙ୍ଗା ମୋତେ ଶରଣାଗତ ବୋଲି ଅଙ୍ଗୀକାର କରନ୍ତୁ, ଦ୍ୱିଜ ପ୍ରେରିତ କୁହକ ଅଥବା ତକ୍ଷକ ନାମକ ସର୍ପ ମୋତେ ଦଂଶନ କରୁ, କିନ୍ତୁ ଆପଣମାନେ ଶ୍ରୀକୃଷ୍ଣ କଥା କୀର୍ତ୍ତନ କରନ୍ତୁ । ୧୦ମ ଶ୍ଳୋକାର୍ଥ ।

ଭକ୍ତମାନେ ଶ୍ରୀହରିଙ୍କୁ ନିରନ୍ତର ବାକ୍ୟଦ୍ୱାରା ସ୍ତବ, ମନଦ୍ୱାରା ସ୍ମରଣ, ଶରୀରଦ୍ୱାରା ପ୍ରଣାମ କରି ସୁଦ୍ଧା ତୃପ୍ତ ନ ହୋଇ ସାଶ୍ରୁନୟନରେ ସମସ୍ତ କାଳ ଶ୍ରୀହରିଙ୍କୁ ସମର୍ପଣ କରନ୍ତି, ଅର୍ଥାତ୍ ଏକ ମୁହୂର୍ତ୍ତକାଳ ସୁଦ୍ଧା ବୃଥାରେ ନଷ୍ଟ ନ କରି ଯାବଜ୍ଜୀବନ ହରି ସେବାରେ ତତ୍ପର ହୁଅନ୍ତି । ୧୧ଶ ଶ୍ଳୋକାର୍ଥ ।

ଅବ୍ୟର୍ଥ କାଳତ୍ୱ ବିଷୟ କହୁଅଛନ୍ତି । ୧୨ ।

ବିରକ୍ତି ବିଷୟ କହୁଅଛନ୍ତି—ସ୍ୱର୍ଗାଦିଭୋଗ ଯୋଗସିଦ୍ଧି ଓ ବୈଷୟିକ ସୁଖ ତାହାଙ୍କୁ ଭଲ ଲାଗେ ନାହିଁ । ୧୨ ।

ଶ୍ରୀଶୁକଦେବ ଶାପଗ୍ରସ୍ତ ମହାରାଜାଙ୍କୁ କହୁଅଛନ୍ତି—ମହାରାଜ ଭରତ ଶ୍ରୀକୃଷ୍ଣଙ୍କ ଲୀଳାରେ ଯୌବନକାଳରେ ମନୋଜ୍ଞ ଦୁସ୍ତ୍ୟଜ୍ୟ ସ୍ତ୍ରୀ ପୁତ୍ର ସୁହୃଦ୍ ଓ ରାଜ୍ୟାଦି ସମସ୍ତ ମଳବତ୍ ତ୍ୟାଗ କରିଥିଲେ । ୧୨ ଅର୍ଥ ।

ସର୍ବୋତ୍ତମ ଆପନାକେ 'ହୀନ' କରି ମାନେ ।
ତଥା ହି ଭକ୍ତିରସାମୃତସିନ୍ଧୌ (୧।୩।୧୫)
ପାଦ୍ମବଚନମ୍—
ହରୌ ରତିଂ ବହନ୍ନେଷ ନରେନ୍ଦ୍ରାଣାଂ ଶିଖାମଣିଃ ।
ଭିକ୍ଷାମଟନ୍ନରିପୁରେ ଶ୍ୱପାକମପି ବନ୍ଦତେ । ୧୩ ।
'କୃଷ୍ଣ କୃପା କରିବେନ' ଦୃଢ଼ କରି ଜାନେ । ୧୩ ।
ତଥାହି ଭକ୍ତିରସାମୃତସିନ୍ଧୌ (୧।୩।୧୬)—
ଶ୍ରୀସନାତନଗୋସ୍ୱାମୀବାକ୍ୟମ୍—
ନ ପ୍ରେମା ଶ୍ରବଣାଦିଭକ୍ତିରପି ବା ଯୋଗୋଽଥବା ବୈଷ୍ଣବୋ,
ଜ୍ଞାନଂ ବା ଶୁଭକର୍ମ ବା କିୟଦହୋ ସଜ୍ଜାତିରପ୍ୟସ୍ତି ବା ।
ହୀନାର୍ଥାଧିକସାଧକେ ତ୍ୱୟି ତଥାପ୍ୟଚ୍ଛେଦ୍ୟମୂଲା ସତୀ,
ହେ ଗୋପୀଜନବଲ୍ଲଭ ବ୍ୟଥୟତେ ହା ହା ମଦାଶୈବ ମାମ୍ । ୧୪ *
ସମୁତ୍କଣ୍ଠା ହୟ ସଦା ଲାଲସାପ୍ରଧାନ ।
ନାମଗାନେ ସଦାରୁଚି ଲୟେ କୃଷ୍ଣ ନାମ ॥
ତଥାହି ଶ୍ରୀକୃଷ୍ଣକର୍ଣାମୃତେ (୩୨)—
ତ୍ୱଚ୍ଛୈଶବଂ ତ୍ରିଭୁବନାଦ୍ଭୁତମିତ୍ୟବେହି,
ମଚ୍ଚାପଲଞ୍ଚ ତବ ବା ମମ ବାଧିଗମ୍ୟମ୍ ।
ତତ୍ କିଂ କରୋମି ବିରଲଂ ମୁରଲୀବିଲାସି,
ମୁଗ୍ଧଂ ମୁଖାମ୍ବୁଜମୁଦୀକ୍ଷିତୁମୀକ୍ଷଣାଭ୍ୟାମ୍ । ୧୫ ।

ନରେନ୍ଦ୍ରାଣାଂ ଶିଖାମଣିଃ ଏଷଃ ଭଗୀରଥଃ, ହରୌ ରତିଂ ବହନ୍ ଅରିପୁରେ ଭିକ୍ଷାଂ ଅଟନ୍ ଶ୍ୱପାକଂ ଅପି ବନ୍ଦତେ । ୧୩ଶ୍ଳୋକଃ ।

ପ୍ରେମା ବା (ଫଳେଚ୍ଛୁ) ଶ୍ରବଣାଦିଭକ୍ତିରପି ଅଥବା ଯୋଗୋ ବୈଷ୍ଣବଃ (ବିଷ୍ଣୁଧ୍ୟାନମନ୍ତ୍ରଂ) ଜ୍ଞାନଂ (ବ୍ରହ୍ମନିଷ୍ଠଂ) ବା ଶୁଭକର୍ମ (ବର୍ଣ୍ଣାଶ୍ରମାଚାରବିଧିରୂପଂ) ବା ଅହୋ କିୟଦ୍ଦୂର ସଜ୍ଜାତିଃ (ତଦ୍‌ଯୋଗ୍ୟତାହେତୁଃ) ଅପିବା ନାସ୍ତି, ଅତଏବ ହେ ଗୋପୀଜନବଲ୍ଲଭ ! ତଥାପି ହୀନାର୍ଥାଧିକସାଧକେ ତ୍ୱୟି ଅଚ୍ଛେଦ୍ୟମୂଲା ସତୀ ହାହା ମତ୍ (ମମ) ଆଶା ମାଂ ବ୍ୟଥୟତେ । ୧୪ଶ ଶ୍ଳୋକଃ ।

ମାନଶୂନ୍ୟତା ବିଷୟରେ କହୁଅଛନ୍ତି— ମହତ୍ତ୍ୱ ମର୍ଯ୍ୟାଦାସମ୍ପନ୍ନ ହୋଇଥିଲେ ସୁଦ୍ଧା ଆପଣାକୁ ହୀନ ମନେ କରନ୍ତି । ୧୫ ।

ସର୍ବରାଜାଙ୍କ ଶ୍ରେଷ୍ଠ ଏହି ମହାରାଜ ଭଗୀରଥ ଶ୍ରୀକୃଷ୍ଣଙ୍କଠାରେ ରତି ଲାଭ କରି ଶତ୍ରୁର ଗୃହରେ ଭିକ୍ଷା କରନ୍ତି ଓ ଚଣ୍ଡାଳଙ୍କୁ ସୁଦ୍ଧା ପ୍ରଣାମ କରନ୍ତି । ୧୩ଶ ଶ୍ଳୋକାର୍ଥ ।

ଆଶାବନ୍ଧ—ଶ୍ରୀକୃଷ୍ଣ କୃପା କରିବେ ଏହାରେ ଆଶା । ୧୩ ।

ହେ ଗୋପୀଜନବଲ୍ଲଭ ! ଆପଣଙ୍କଠାରେ ମୋର ପ୍ରେମ ନାହିଁ କି ଶ୍ରବଣାଦି ଭକ୍ତି ନାହିଁ, ବୈଷ୍ଣବ ଯୋଗ ନାହିଁ, ବ୍ରହ୍ମ ନିଷ୍ଠାରୂପ ଜ୍ଞାନ ନାହିଁ, ବର୍ଣ୍ଣାଶ୍ରମୋଚିତ ସତ୍କର୍ମ ନାହିଁ, ଏପରି କି ମୋର ସଜ୍ଜାତି ମଧ୍ୟ ନାହିଁ, ତଥାପି ହେ ପତିତପାବନ ! ଆପଣଙ୍କୁ ପାଇବା ସକାଶେ ଆଶା ଅବିଚ୍ଛିନ୍ନଭାବରେ ମୋତେ ବଡ଼ କଷ୍ଟ ଦେଉଅଛି । ୧୪ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କଠାରେ ବିଶେଷ ଲାଳସାହିଁ ସମୁତ୍କଣ୍ଠା । ୧୪ ।

* ଶ୍ଳୋକର ଅନ୍ୱୟ—ମଧ୍ୟ: ୨ୟପରି: ୯ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ଅଦର୍ଶନରେ ଉଦ୍‌ଘୂର୍ଣ୍ଣା ଦଶା ପ୍ରାପ୍ତ ହେବା ଅବସ୍ଥାରେ ଶ୍ରୀକୃଷ୍ଣଙ୍କର ସାକ୍ଷାତ୍କାର ସ୍ଫୂର୍ତ୍ତି ହେବାରୁ କହୁଅଛନ୍ତି— ହେ ନାଗରେନ୍ଦ୍ର, ତୁମ୍ଭର କୈଶୋର ଜନିତ ମାଧୁର୍ଯ୍ୟାଦିର ମାହାତ୍ମ୍ୟ ଏବଂ ମୋର ତୁମ୍ଭ ସକାଶେ ଏ ଚପଳତା ଏହା ତ୍ରିଭୁବନରେ ଅଦ୍ଭୁତ, ଏହା ତୁମ୍ଭେ ସ୍ମରଣ କରି ଦେଖ, ଏ ଦୁଇଟି ବିଷୟ କେବଳ ତୁମ୍ଭେ ଓ ମୁଁ ଏ ଦୁହେଁ ଜାଣୁ, ଅର୍ଥାତ୍ ଅପର କେହି ଜାଣିବା ଦୂରେ ଥାଉ ମୋର ପ୍ରାଣର ସଖୀମାନେ ସୁଦ୍ଧା ଜାଣନ୍ତି ନାହିଁ, ଜାଣିଥିଲେ କି

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୬।୧୬ )—

ରୋଦନବିନ୍ଦୁମକରନ୍ଦସ୍ୟନ୍ଦିଦୃଗିନ୍ଦୀବରାଦ୍ୟ ଗୋବିନ୍ଦ ।
ତବ ମଧୁରସ୍ୱରକଣ୍ଠୀ ଗାୟତି ନାମାବଳୀଂ ବାଲା । ୧୬ ।

କୃଷ୍ଣଗୁଣଗାନେ ସଦା ସର୍ବଦା ଆସକ୍ତି ।

ତଥାହି ଶ୍ରୀକୃଷ୍ଣକର୍ଣାମୃତେ ( ୯୨ )—

ମଧୁରଂ ମଧୁରଂ ବପୁରସ୍ୟ ବିଭୋ-
ର୍ମଧୁରଂ ମଧୁରଂ ବଦନଂ ମଧୁରମ୍ ।
ମଧୁଗନ୍ଧି ମୃଦୁସ୍ମିତମେତଦହୋ,
ମଧୁରଂ ମଧୁରଂ ମଧୁରଂ ମଧୁରମ୍ । ୧୭ ।

କୃଷ୍ଣଲୀଳାସ୍ଥାନେ କରେ ସର୍ବଦା ବସତି । ୧୫ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୬।୧୭ )—

କଦାହଂ ଯମୁନାତୀରେ ନାମାନି ତବ କୀର୍ତ୍ତୟନ୍ ।
ଉଦ୍‌ବାଷ୍ପଃ ପୁଣ୍ଡରୀକାକ୍ଷ ରଚୟିଷ୍ୟାମି ତାଣ୍ଡବମ୍ ।୧୮।

କୃଷ୍ଣେ ରତିର ଚିହ୍ନ ଏଇ କୈଲ ବିବରଣ ।
କୃଷ୍ଣପ୍ରେମେର ଚିହ୍ନ ଏବେ ଶୁନ ସନାତନ ।
ଯାର ଚିତ୍ତେ କୃଷ୍ଣପ୍ରେମା କରୟେ ଉଦୟ ।
ତାର ବାକ୍ୟ କ୍ରିୟାମୁଦ୍ରା ବିଜ୍ଞେ ନା ବୁଝୟ ।୧୬।

ହେ ଗୋବିନ୍ଦ ? ରୋଦନବିନ୍ଦୁ ମକରନ୍ଦସ୍ୟନ୍ଦି ଦୃଗିନ୍ଦୀବର ମଧୁରସ୍ୱରକଣ୍ଠୀ, ବାଳା ଚନ୍ଦ୍ରାବଳୀ, ଅଦ୍ୟ ତବ ନାମାବଲୀଂ ଗାୟତି ।

ରୋଦନବିନ୍ଦୁ ରଣ୍ଡୁକଣା ସା ଏବ ମକରନ୍ଦଂ ତସ୍ୟ ସ୍ୟନ୍ଦି କ୍ଷାରିଦୃଗ୍‌ରୂପ ଇନ୍ଦୀବରଂ ଯସ୍ୟାଃ ସା ବାଳା ଚନ୍ଦ୍ରାବଳୀ । ୧୬ଶ ଶ୍ଳୋକଃ ।

ହେ ପୁଣ୍ଡରୀକାକ୍ଷ ? ଅହଂ କଦା ତବ ନାମାନି କୀର୍ତ୍ତୟନ୍ ଉଦ୍‌ବାଷ୍ପଃ (ସନ୍) ଯମୁନାତୀରେ ତାଣ୍ଡବଂ ରଚୟିଷ୍ୟାମି । ୧୮ଶ ଶ୍ଳୋକ ।

ସେମାନେ ମୋତେ ପ୍ରବୋଧ ଦେଉଥାନ୍ତେ, ଅତଏବ ମୁଁ କୁଳବଧୂହେତୁ କପଟ ଭାବରେ ତୁମ୍ଭର ସାମ୍ୟ ରହିତ ବଂଶୀଯୁକ୍ତ ମନୋହର ମୁଖକମଳ ନିର୍ଭୟ ରୂପେ ଦେଖିବା ଏଥିର ଉପାୟ ତୁମ୍ଭେ କୁହ । ୧୫ଶ ଶ୍ଳୋକାର୍ଥ ।

ସର୍ବଦା ଶ୍ରୀକୃଷ୍ଣଙ୍କ ନାମକୀର୍ତ୍ତନ କରନ୍ତି । ୧୪ ।

ହେ ଗୋବିନ୍ଦ ? ଆଜ ଚନ୍ଦ୍ରାବଳୀ ରୋଦନ କରୁ କରୁ ମଧୁରସ୍ୱର ଯୁକ୍ତ କଣ୍ଠରେ ତୁମ୍ଭର ନାମ ଗାନ କରୁଥିଲେ । ୧୬ଶ ଶ୍ଳୋକାର୍ଥ ।

କୃଷ୍ଣ ଗୁଣବର୍ଣ୍ଣନରେ ଆସକ୍ତି । ୧୫ ।

୧୭ଶ ଶ୍ଳୋକର ଅନ୍ୱୟ—ମଧ୍ୟ ୨୧ପର: ୨୬ଶ ଶ୍ଳୋକ ଦ୍ରଷ୍ଟବ୍ୟ ।

ଠାକୁର ଶ୍ରୀବିଲ୍ୱମଙ୍ଗଳ କହୁଅଛନ୍ତି—ଏହି ଶ୍ରୀକୃଷ୍ଣଙ୍କର ଶ୍ରୀଅଙ୍ଗ ଅତି ସୁମଧୁର, ପୁଣି ସେଥିରେ ଏହି ଶ୍ରୀମୁଖଚନ୍ଦ୍ର ଅତି ସୁମଧୁରତର, ଆହା ଏହି ମଧୁଗନ୍ଧ ଯୁକ୍ତ ମୃଦୁହାସ୍ୟ ଅତି ସୁମଧୁରତମ । ୧୭ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କ ବସତିସ୍ଥାନରେ ପ୍ରୀତିହେତୁ ସେହିସ୍ଥାନରେ ସର୍ବଦା ବାସ କରନ୍ତି ବା ବାସ କରିବାର ଅଭିଳାଷୀ ହୁଅନ୍ତି । ୧୬ ।

ହେ କମଳଲୋଚନ ଶ୍ରୀକୃଷ୍ଣ ? ମୁ ଆପଣଙ୍କର ନାମକୀର୍ତ୍ତନ କରୁଁ କରୁଁ ଗଳଦଶ୍ରୁ ହୋଇ କେବେ ଯମୁନାତଟରେ ନୃତ୍ୟ କରିବି । ୧୮ଶ ଶ୍ଳୋକାର୍ଥ ।

ରତିର ଲକ୍ଷଣ କହି ପ୍ରେମର ଲକ୍ଷଣ କହୁଅଛନ୍ତି—ଯେଉଁ ବ୍ୟକ୍ତିଙ୍କ ଚିତ୍ତରେ ଶ୍ରୀକୃଷ୍ଣ-ପ୍ରେମ ଉଦୟ ହୋଇଅଛନ୍ତି, ତାହାଙ୍କର ବାକ୍ୟ ଓ କ୍ରିୟାର ପରିପାଟୀ ପଣ୍ଡିତମାନେ ମଧ୍ୟ ବୁଝି ପାରନ୍ତି ନାହିଁ । ୧୬ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୩।୧ ) –
ଧନ୍ୟସ୍ୟାୟଂ ନବପ୍ରେମା ଯସ୍ୟୋନ୍ମୀଲତି ଚେତସି ।
ଅନ୍ତର୍ବାଣୀଭିରପ୍ୟସ୍ୟ ମୁଦ୍ରା ସୁଷ୍ଠୁ ସୁଦୁର୍ଗମା ।୧୯।

ତଥାହି ( ଭାଃ ୧୧।୨।୪୦ )—
ଏବଂ ବ୍ରତଃ ସ୍ୱପ୍ରିୟନାମକୀର୍ତ୍ତ୍ୟା,
ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ ।
ହସତ୍ୟଥୋ ରୋଦିତି ରୌତି ଗାୟ-
ତ୍ୟୁନ୍ମାଦବନ୍ନୃତ୍ୟତି ଲୋକବାହ୍ୟଃ । ୨୦ ।

ପ୍ରେମକ୍ରମେ ବାଢ଼େ, ହୟ—ସ୍ନେହ, ମାନ, ପ୍ରଣୟ ।
ରାଗ, ଅନୁରାଗ, ଭାବ, ମହାଭାବ ହୟ । ୧୮ ।
ବୀଜ ଇକ୍ଷୁ ରସ ଗୁଡ଼ ତବେ ଖଣ୍ଡସାର ।
ଶର୍କରା ସିତା ମିଶ୍ରୀ ଶୁଦ୍ଧମିଶ୍ରୀ ଆର ॥
ଇହା ଯୈଛେ କ୍ରମେ ନିର୍ମଳ, କ୍ରମେ ବାଢ଼େ ସ୍ୱାଦ
ରତି ପ୍ରେମାଦିକେ ତୈଛେ ବାଢ଼ୟେ ଆସ୍ୱାଦ ।୨୧।
ଅଧିକାରିଭେଦେ ରତି ପଞ୍ଚ ପରକାର—
ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର ରତି ଆର ॥
ଏଇ ପଞ୍ଚ ସ୍ଥାୟିଭାବ ହୟ ପଞ୍ଚ ରସ ।
ଯେ ରସେ ଭକ୍ତ ସୁଖୀ—କୃଷ୍ଣ ହୟ ବଶ । ୨୨।
ପ୍ରେମାଦିକ ସ୍ଥାୟିଭାବସାମଗ୍ରୀ ମିଲନେ ।
କୃଷ୍ଣଭକ୍ତିରସସ୍ୱରୂପ ପାୟ ପରିଣାମେ ॥
ବିଭାବ, ଅନୁଭାବ, ସାତ୍ତ୍ୱିକ, ବ୍ୟଭିଚାରୀ ।
ସ୍ଥାୟିଭାବ 'ରସ' ହୟ ଏଇ ଗୂଢ ମର୍ମ । ୨୪ ।

---

ଯସ୍ୟ ଧନ୍ୟସ୍ୟ—ଜନସ୍ୟ ଚେତସି ନବପ୍ରେମା ଉନ୍ମୀଳତି, ଉଦୟତି ତସ୍ୟ ମୁଦ୍ରା ପରିପାଟୀ ଅନ୍ତର୍ବାଣୀଭିଃ—ଶାସ୍ତ୍ରବିଦ୍ଭିଃ ଅପି ସୁଷ୍ଠୁ ସୁଦୁର୍ଗମା ବୋଦ୍ଧୁମଶକ୍ୟା ୧୯ଶ ଶ୍ଳୋକଃ ।

---

ଯେଉଁ ଭାଗ୍ୟବାନ ବ୍ୟକ୍ତିଙ୍କ ଚିତ୍ତରେ ଏହି ନବୀନ ପ୍ରେମ ଉଦୟ ହୁଅନ୍ତି, ତାହାଙ୍କର ବାକ୍ୟାଦିର ପରିପାଟୀ ପଣ୍ଡିତ ବ୍ୟକ୍ତିମାନେ ମଧ୍ୟ ବୁଝି ପାରନ୍ତି ନାହିଁ । ୧୯ଶ ଶ୍ଳୋକାର୍ଥ ।

୨୦ ଶ୍ଳୋକର ଅନ୍ୱୟ—ଆଦି: ୭ମପରି· ୪ର୍ଥ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀଜନକଙ୍କୁ ନବଯୋଗେନ୍ଦ୍ରଙ୍କ ମଧ୍ୟରୁ ଅନ୍ୟତମ କବି କହୁଅଛନ୍ତି—ହେ ମହାରାଜ ! ଏହିପ୍ରକାରରେ ଶ୍ରୀହରିଭକ୍ତଜନ ଶ୍ରୀକୃଷ୍ଣଙ୍କ ନାମମାନଙ୍କ ମଧ୍ୟରୁ ନିଜର ପ୍ରିୟନାମମାନ କୀର୍ତ୍ତନ କରିବାରୁ ତାଙ୍କ ଚିତ୍ତରେ ମହାପ୍ରେମ ଉଦୟହେବାରୁ ଚଞ୍ଚଳତା ବଶତଃ ସେ ଲୋକାପେକ୍ଷା ରହିତ ଉନ୍ମାଦବତ୍ କେତେବେଳେ ହାସ୍ୟ, କେତେବେଳେ ରୋଦନ, କେତେବେଳେ ଚିତ୍କାର, କେତେବେଳେ ଗାନ, କେତେବେଳେ ବା ନୃତ୍ୟ କରନ୍ତି । ଅର୍ଥାତ୍ ଶ୍ରୀକୃଷ୍ଣ ପ୍ରେମଲାଭରେ ଭକ୍ତଙ୍କର ଏହି ଦଶା ହୁଏ । ୨୦ଶ ଶ୍ଳୋକାର୍ଥ ।

ଏହାର ଅର୍ଥ ମଧ୍ୟ, ୧୯ଶପରି, ୧୬୦ ଓ ୧୬୧ ପୟାରରେ ଦ୍ରଷ୍ଟବ୍ୟ । ୧୮।୧୯।୨୦ ।

ମଧ୍ୟ ୧୯ଶପରି, ୧୯୬।୧୯୬।୧୯୭ ପୟାର ଦ୍ରଷ୍ଟବ୍ୟ । ୨୧ ।

ଶାନ୍ତାଦି ପଞ୍ଚରତି ସ୍ଥାୟିଭାବ । ଏମାନେ ରସରେ ପରିଣତ ହେଲେ ତଦ୍ଦ୍ୱାରା ଭକ୍ତ ସୁଖୀ ହୁଅନ୍ତି ଓ କୃଷ୍ଣ ବଶହୁଅନ୍ତି । ୨୨ ।

ସ୍ଥାୟିଭାବ କିପ୍ରକାର ରସରେ ପରିଣତ ହୁଏ ସେ ବିଷୟ କହୁଅଛନ୍ତି—ଏହି ପଞ୍ଚରତିରେ ପ୍ରେମଠାରୁ ମହାଭାବ ପର୍ଯ୍ୟନ୍ତ ପ୍ରେମର ଅବସ୍ଥାନ୍ତରହିଁ ସ୍ଥାୟିଭାବ । ଏଥିରେ ଅପର ସାମଗ୍ରୀ ମିଳନ ହେଲେ ଏହି ମିଳିତ ଶ୍ରୀକୃଷ୍ଣଭକ୍ତି ରସରୂପରେ ପରିଣତ ହୁଏ । ୨୩ ।

ସାମଗ୍ରୀର ବିଷୟ କହୁଅଛନ୍ତି—ବିଭାବ, ଅନୁଭାବ, ସାତ୍ତ୍ୱିକ ଓ ବ୍ୟଭିଚାରୀ ଏହି ସାମଗ୍ରୀ ସ୍ଥାୟିଭାବ ସହିତ ମିଳିତ ହେଲେ ଭକ୍ତିରସ ହୁଏ । ୨୪ ।

ଦଧି ଯେନ ଖଣ୍ଡ ମରିଚ-କର୍ପୂର-ମିଳନେ ।
'ରସାଲାଖ୍ୟ' ରସ ହୟ ଅପୂର୍ବାସ୍ୱାଦନେ । ୨୪ ।
ଦ୍ୱିବିଧ 'ବିଭାବ'— ଆଲମ୍ବନ, ଉଦ୍ଦୀପନ ।
ବଂଶୀସ୍ୱରାଦି—'ଉଦ୍ଦୀପନ' କୃଷ୍ଣାଦି 'ଆଲମ୍ବନ' ।
'ଅନୁଭାବ'—ସ୍ମିତ-ନୃତ୍ୟ-ଗୀତାଦି ଉଦ୍ଭାସ୍ୱର ।
ସ୍ତମ୍ଭାଦି ସାତ୍ତ୍ୱିକ - ଅନୁଭାବେର ଭିତର ।
ନିର୍ବେଦ-ହର୍ଷାଦି ତେତ୍ରିଶ 'ବ୍ୟଭିଚାରୀ' ।
ସବ ମେଳି ରସ ହୟ ଚମତ୍କାରକାରୀ । ୨୮ ।
ପଞ୍ଚବିଧ ରସ — ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ।
ମଧୁର-ନାମ ଶୃଙ୍ଗାର ରସ ସଭାତେ ପ୍ରାବଲ୍ୟ ।
ଶାନ୍ତରସେ ଶାନ୍ତିରତି ପ୍ରେମପର୍ଯ୍ୟନ୍ତ ହୟ ।
ଦାସ୍ୟରତି ରାଗପର୍ଯ୍ୟନ୍ତ କ୍ରମେ ତ ବାଢ଼ୟ । ୩୦ ।
ସଖ୍ୟ-ବାତ୍ସଲ୍ୟ (ରତି) ପାୟ ଅନୁରାଗ ସୀମା ।
ସୁବଲାଦ୍ୟେର ଭାବପର୍ଯ୍ୟନ୍ତ ପ୍ରେମେର ମହିମା ।

ଶାନ୍ତାଦିରସେର 'ଯୋଗ' 'ବିୟୋଗ' ଦୁଇ ଭେଦ ।
ସଖ୍ୟ-ବାତ୍ସଲ୍ୟେ — ଯୋଗାଦିର ଅନେକ ବିଭେଦ
ରୂଢ଼-ଅଧିରୂଢ଼-ଭାବ କେବଲ ମଧୁରେ ।
ମହିଷୀଗଣେର 'ରୂଢ଼', 'ଅଧିରୂଢ଼' ଗୋପିକାନିକରେ
ଅଧିରୂଢ଼ ମହାଭାବ— ଦୁଇ ତ ପ୍ରକାର—
ସମ୍ଭୋଗେ 'ମଦନ', ବିରହେ 'ମୋହନ' ନାମ
ତାର । ୩୪ ।
ମଦନେର ଚୁମ୍ବନାଦି ହୟ ଅନନ୍ତ ବିଭେଦ ।
ଉଦ୍‌ଘୂର୍ଣ୍ଣା, ଚିତ୍ରଜଳ୍ପ ମୋହନେର ଦୁଇ ଭେଦ
ଚିତ୍ରଜଳ୍ପ ଦଶ-ଅଙ୍ଗ—ପ୍ରଜଳ୍ପାଦି ନାମ ।
ଭ୍ରମରଗୀତା-ଦଶଶ୍ଲୋକ ତାହାର ପ୍ରମାଣ । ୩୬ ।
'ଉଦ୍‌ଘୂର୍ଣ୍ଣା'—ବିବଶଚେଷ୍ଟା - 'ଦିବ୍ୟୋନ୍ମାଦ'
ନାମ ।
ବିରହେ କୃଷ୍ଣସ୍ଫୂର୍ତ୍ତି—ଆପନାକେ 'କୃଷ୍ଣ'-ଜ୍ଞାନ

---

ମୋହନୋ ମାଦନୋଽପ୍ୟେଷ ଦ୍ୱୟଂ ନିରୁକ୍ତିବଳାତ୍ ସମ୍ଭୋଗ ଏବେତି ଜୀବ ଗୋସ୍ୱାମୀ
ଟୀ. ଚ. ।

---

ସେଥିର ଉଦାହରଣ ସ୍ୱରୂପ କହୁଅଛନ୍ତି—ଯେପରି ନିଳବର୍ଣ୍ଣ ଦଧିର ସହିତ ଖଣ୍ଡ ମରିଚଗୁଣ୍ଡ ଓ କର୍ପୂର ମିଳନ କଲେ ରସାଳାନାମକ ସ୍ୱାଦୁ ପେୟ ପ୍ରସ୍ତୁତ ହୁଏ, ସ୍ଥାୟୀଭାବ ସହିତ ବିଭାବାଦି ମିଳନରେ ସେହିପରି ଭକ୍ତିରସ ଉତ୍ପନ୍ନ ହୁଏ । ୨୪ ।

ଆଲମ୍ବନ, ଉଦ୍ଦୀପନ, ବିଭାବ, ଅନୁଭାବ, ସାତ୍ତ୍ୱିକ, ବ୍ୟଭିଚାରୀ ଏ ସମସ୍ତ ଉଜ୍ଜ୍ୱଳ ନୀଳମଣିରେ ଦ୍ରଷ୍ଟବ୍ୟ । ୨୭ଠାରୁ ୨୮ ।

ଶୃଙ୍ଗାର ରସ ପଞ୍ଚରସ ମଧ୍ୟରେ ପ୍ରଧାନ, ଯେହେତୁ ସେଥିରେ ସବୁରସ ଅଛନ୍ତି । ୨୯ ।

ଶାନ୍ତାଦି ପଞ୍ଚରସରେ ପ୍ରେମଠାରୁ ମହାଭାବ ପର୍ଯ୍ୟନ୍ତ କିପ୍ରକାର ଅଛନ୍ତି, ତାହା ବୁଝାଉ ଅଛନ୍ତି । ଶାନ୍ତରସରେ ରତି ଓ ପ୍ରେମ, ଦାସ୍ୟରସରେ ରତି, ପ୍ରେମ, ସ୍ନେହ, ମାନ, ପ୍ରଣୟ ଓ ରାଗ ସଖ୍ୟ ବାତ୍ସଲ୍ୟରସରେ ରତି, ପ୍ରେମ, ସ୍ନେହ, ମାନ, ପ୍ରଣୟ, ରାଗ ଓ ଅନୁରାଗ, କିନ୍ତୁ ସୁବଳଆଦି ପ୍ରିୟନର୍ମ ସଖାମାନଙ୍କର ପ୍ରେମରେ ଭାବପର୍ଯ୍ୟନ୍ତ ବର୍ତ୍ତମାନ । ୩୦।୩୧ ।

ଏମାନ ଭକ୍ତିରସାମୃତସିନ୍ଧୁର ଉତ୍ତରଭାଗରେ ଦ୍ରଷ୍ଟବ୍ୟ । ୩୨ ।

ମଧୁରରସରେ ପ୍ରେମ ରତିଠାରୁ ମହାଭାବ ପର୍ଯ୍ୟନ୍ତ ବର୍ତ୍ତମାନ । ମହିଷୀମାନଙ୍କ ସେହି ଭାବର ନାମ ରୂଢ଼ ଏବଂ ଶ୍ରୀବ୍ରଜଦେବୀମାନଙ୍କର ଅଧିରୂଢ଼ । ୩୩ ।

ଅଧିରୂଢ଼ ମହାଭାବର ପ୍ରକରଣ କହୁଅଛନ୍ତି । ୩୪ ।

୩୫ ଠାରୁ ୩୯ ପର୍ଯ୍ୟନ୍ତ ଉଜ୍ଜ୍ୱଳ ନୀଳମଣି ଦ୍ରଷ୍ଟବ୍ୟ ।

ବିରହରେ କେତେବେଳେ ଗୋପୀମାନଙ୍କର ଶ୍ରୀକୃଷ୍ଣସ୍ଫୂର୍ତ୍ତିରୂପ ସାକ୍ଷାତ୍କାର ଓ କେତେବେଳେ ଗୋପୀମାନଙ୍କର ଆପଣାକୁ ଶ୍ରୀକୃଷ୍ଣବୋଲି ମନେ କରିବା । ୩୭ ।

ସମ୍ଭୋଗ, ବିପ୍ରଲମ୍ଭ,— ଦ୍ୱିବିଧ ଶୃଙ୍ଗାର ।
'ସମ୍ଭୋଗ'—ଅନନ୍ତ ଅଙ୍ଗ ନାହିଁ ଅନ୍ତ ତାର।୩୮।
ବିପ୍ରଲମ୍ଭ ଚତୁର୍ବିଧ — ପୂର୍ବରାଗ, ମାନ ।
ପ୍ରବାସାଖ୍ୟ, ଆର ପ୍ରେମବୈଚିତ୍ତ୍ୟ-ଆଖ୍ୟାନ ।
ରାଧିକାଦ୍ୟେ 'ପୂର୍ବରାଗ ପ୍ରସିଦ୍ଧ' 'ପ୍ରବାସ' 'ମାନେ'।
ପ୍ରେମବୈଚିତ୍ତ୍ୟ ଶ୍ରୀଦଶମେ ମହିଷୀଗଣେ । ୪୦ ।

ତଥାହି ( ଭାଃ ୧୦।୯୦।୧୫ )—

କୁରରି ବିଲପସି ତ୍ୱଂ ବୀତନିଦ୍ରା ନ ଶେଷେ,
ସ୍ୱପିତି ଜଗତି ରାତ୍ର୍ୟାମୀଶ୍ୱରୋ ଗୁପ୍ତବୋଧଃ ।
ବୟମିବ ସଖି କଚ୍ଚିଦ୍ଗାଢ଼ନିର୍ଭିନ୍ନଚେତା,
ନଳିନନୟନହାସୋଦାରଲୀଳେକ୍ଷିତେନ । ୨୧ ।

---

ଟୀ

ହେ କୁରରି ! ଜଗତି ତ୍ୱଂ (ଏବ ଏକା) ବୀତନିଦ୍ରା ସତୀ ନ ଶେଷେ—ଶୟନେଚ୍ଛାମପି ନକୁରୁଷେ, ଯତଃ ବିଲପସି—ଉଚ୍ଚୈଃ ପରିଦେବନମେବ କୁରୁଷେ, ଈଶ୍ୱରଃ ଶ୍ରୀକୃଷ୍ଣଃ ଅସ୍ମାକଂ ପତିସ୍ତୁ ରାତ୍ର୍ୟାଂ—ତଦନ୍ୱେଷଣ ଶକ୍ତିବିରୋଧିନ୍ୟାଂ, ଗୁପ୍ତବୋଧଃ—କ୍ୱାପିଅଜ୍ଞାନଃ ସନ୍, ଶେତେ, —ହେ ସଖି ? କଚ୍ଚିତ୍ ନଳିନନୟନ ହାସୋଦାରଲୀଳେକ୍ଷିତେନ—ନଳିନନୟନସ୍ୟ ହାସେନ ମଧୁରଂ ଉଦାରଂ ଯତ୍ ଲୀଳେକ୍ଷିତଂ ତେନ ବୟମିବ ଗାଢ଼—ନିର୍ଭିନ୍ନଚେତାଃ ଗାଢ଼ଂ—ଅତିଶୟେନ ନିର୍ଭିନ୍ନଚେତାଃ । ୨୧ଶ ଶ୍ଲୋକଃ ।

ଶୃଙ୍ଗାରେ ଶ୍ରୀରାଧା ଶ୍ରୀକୃଷ୍ଣ ବିଷୟକ ଏବ ଶୃଙ୍ଗାର ଚରମଶ୍ରେଷ୍ଠଃ ତଥା ତଦାସ୍ୟା-ଦସ୍ମୋଽପି ଚରମଶ୍ରେଷ୍ଠା ଇତ୍ୟାହ 'ବ୍ରଜେନ୍ଦ୍ର' ଇତ୍ୟାଦି ଏତମତ ଦାସ୍ୟେଦାସ୍ୟ ଇତ୍ୟନ୍ୱେନ । ଚ. ଚ. ୪୧ ।

---

ଶ୍ରୀମଦ୍ଭାଗବତର ୧୦ ସ୍କନ୍ଧ ୨୧-୨୨ ଅଧ୍ୟାୟରେ ଗୋପୀମାନଙ୍କର ପୂର୍ବରାଗ ୨୯ ଅଧ୍ୟାୟରେ ମାନ, ୪୬ ଅଧ୍ୟାୟରେ ପ୍ରବାସ ବର୍ଣ୍ଣିତ ଅଛି । କିନ୍ତୁ ଗୋପୀମାନଙ୍କର ପ୍ରେମ-ବୈଚିତ୍ତ୍ୟ ବିଷୟ ବର୍ଣ୍ଣନ ନାହିଁ, ୧୦ ସ୍କନ୍ଧ ୯୦ ଅଧ୍ୟାୟରେ ମହିଷୀମାନଙ୍କର ପ୍ରେମ ବୈଚିତ୍ତ୍ୟ ବର୍ଣ୍ଣନ ଅଛି ।

ମହିଷୀଗଣ ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ସହିତ ଜଳକ୍ରୀଡ଼ା କରୁଁ କରୁଁ ପ୍ରେମ ବୈଚିତ୍ତ୍ୟାବସ୍ଥାରେ ଉନ୍ମତ୍ତବତ୍ କହୁଅଛନ୍ତି ।

ହେ ସଖି କୁରରି ? ଏହି ଜଗତରେ ତୁମ୍ଭେ ଏକା ନିଦ୍ରାଶୂନ୍ୟା ହୋଇ ଉଚ୍ଚସ୍ୱରରେ ବିଳାପ କରୁଅଛ । ଆମ୍ଭମାନଙ୍କ ପତି ଶ୍ରୀକୃଷ୍ଣ ଏହି ରାତ୍ରିକାଳରେ କୌଣସି ଅଜ୍ଞାତସ୍ଥାନରେ ପ୍ରଚ୍ଛନ୍ନଭାବରେ ଶୋଇଅଛନ୍ତି ( ତେଣୁ ଆମ୍ଭେମାନେ ମଧ୍ୟ ତାଙ୍କପାଇଁ କାନ୍ଦୁଅଛୁଁ ) ହେ ସଖି ? ବୋଧହୁଏ ଆମ୍ଭମାନଙ୍କପରି ତୁମ୍ଭେ ମଧ୍ୟ ନଳିନନୟନ ଶ୍ରୀକୃଷ୍ଣଙ୍କର ସହାସ୍ୟକଟାକ୍ଷଦ୍ୱାରା ପ୍ରଗାଢ଼-ରୂପେ ଆକୃଷ୍ଟଚିତ୍ତା ହୋଇଅଛ ( ତେଣୁ ଆମ୍ଭମାନଙ୍କପରି ତୁମ୍ଭେ କାନ୍ଦୁଅଛ ) ଅତଏବ ମମ-ସମ୍ବନ୍ଧରୁ ତୁମ୍ଭେ ଆମ୍ଭମାନଙ୍କର ସଖୀ । ୨୧ ଶ ଶ୍ଲୋକାର୍ଥ ।

ବ୍ରଜେନ୍ଦ୍ରନନ୍ଦନ କୃଷ୍ଣ—ନାୟକଶିରୋମଣି ।
ନାୟିକାର ଶିରୋମଣି—ରାଧାଠାକୁରାଣୀ । ୪୧ ।

ତଥାହି ଭକ୍ତିରସାମୃତସିନ୍ଧୌ (୨।୧୭)—

ନାୟକାନାଂ ଶିରୋରତ୍ନଂ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।
ଯତ୍ର ନିତ୍ୟତୟା ସର୍ବେ ବିରାଜନ୍ତେ
ମହାଗୁଣାଃ । ୨୨ ।

ତଥାହି ଗୌତମୀୟତନ୍ତ୍ରେ—

ଦେବୀ କୃଷ୍ଣମୟୀ ପ୍ରୋକ୍ତା ରାଧିକା ପରଦେବତା ।
ସର୍ବଲକ୍ଷ୍ମୀମୟୀ ସର୍ବକାନ୍ତିଃ ସମ୍ମୋହିନୀ ପରା । ୨୩ ।
ଅନନ୍ତ କୃଷ୍ଣେର ଗୁଣ, ଚୌଷଟ୍ଟି ପ୍ରଧାନ ।
ଏକ ଏକ ଗୁଣ ଶୁନି ଜୁଡ଼ାୟ ଭକ୍ତ କାଣ । ୪୨ ।

---

କୃଷ୍ଣସ୍ତୁ ସ୍ୱୟଂଭଗବାନ୍ (ତଥା) ଯତ୍ର ଶ୍ରୀକୃଷ୍ଣେ ସର୍ବେ ମହାଗୁଣାଃ ନିତ୍ୟତୟା ବିରାଜନ୍ତେ (ଅତଏବ) ସଃ ନାୟକାନାଂ ଶିରୋରତ୍ନଂ ଇତି ଅନ୍ୱୟଃ । ୨୨ଶ ଶ୍ଳୋକାର୍ଥଃ ।

କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ ଇତି ଶ୍ରୀଭାଗବତ ବଚନାତ୍ ଶ୍ରୀକୃଷ୍ଣ ଏବ ସର୍ବ ନାୟକାନାଂ ଶ୍ରେଷ୍ଠଃ । ଯତ୍ର ଶ୍ରୀକୃଷ୍ଣେ ନିତ୍ୟତୟା—ଅପ୍ରଚ୍ୟୁତ ପରିପୂର୍ଣ୍ଣ ରୂପେଣ ସର୍ବେ ମହାଗୁଣାଃ ବିରାଜନ୍ତେ ଇତ୍ୟର୍ଥଃ । ଇତି ବ, ଚ, ୨୨ ଶ୍ଳୋ

---

ରସମାନଙ୍କ ମଧ୍ୟରେ ଶୃଙ୍ଗାର ରସହିଁ ଶ୍ରେଷ୍ଠ । ଏହି ରସରେ ବାସୁଦେବାଦି ନାୟକମାନଙ୍କ ମଧ୍ୟରେ ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ ସର୍ବଶ୍ରେଷ୍ଠ । ଯେହେତୁ ସେ ସ୍ୱୟଂଭଗବାନ ଓ ବାସୁଦେବାଦିଙ୍କର ମୂଳ, ସେହିପରି ମହିଷୀ ଗୋପୀ ପ୍ରଭୃତି ନାୟିକାମାନଙ୍କ ମଧ୍ୟରେ ଶ୍ରୀରାଧାଠାକୁରାଣୀ ସର୍ବଶ୍ରେଷ୍ଠା । ଏଥିର ଭାବ ଏହି ଯେ ଶୃଙ୍ଗାରରସରେ ଶ୍ରୀରାଧାକୃଷ୍ଣ ବିଷୟକ ଶୃଙ୍ଗାର ପରମ ଶ୍ରେଷ୍ଠ । ୪୧ ।

ଶ୍ରୀମଦ୍ଭାଗବତର ବଚନାନୁସାରେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ । ଅତଏବ ସେ ସର୍ବ ନାୟକମାନଙ୍କର ଶିରୋଭୂଷଣ, କାରଣ ଶ୍ରୀକୃଷ୍ଣଙ୍କଠାରେ ସବୁ ମହାଗୁଣମାନ ଅପ୍ରଚ୍ୟୁତ ପରିପୂର୍ଣ୍ଣରୂପରେ ବିରାଜମାନ କରନ୍ତି । ୨୨ ଶ୍ଳୋକାର୍ଥ ।

୨୩ଶ ଶ୍ଳୋକର ଅନ୍ୱୟ ଅଧି ୪ର୍ଥ ପରି: ୧୩ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଗ୍ରନ୍ଥକାର ଆଦିଲୀଳା ୪ର୍ଥ ପରିଚ୍ଛେଦର ୭୨ ଠାରୁ ୮୨ ପଦ୍ୟଦ୍ୱାରା ଏ ଶ୍ଳୋକର ଅର୍ଥ ପ୍ରକାଶ କରିଅଛନ୍ତି । ୧୩ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କର ଅସଂଖ୍ୟ ଗୁଣମାନଙ୍କ ମଧ୍ୟରୁ ପ୍ରଧାନ ୬୪ ଗୁଣର ବିଷୟ କହୁଅଛନ୍ତି । ୪୨ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୨।୧।୧୧ )—
ଅୟଂ ନେତା ସୁରମ୍ୟାଙ୍ଗଃ ସର୍ବସଲ୍ଲକ୍ଷଣାନ୍ୱିତଃ ।
ରୁଚିରସ୍ତେଜସା ଯୁକ୍ତୋ ବଲୀୟାନ୍
ବୟସାନ୍ୱିତଃ ।୨୪।
ବିବିଧାଦ୍ଭୁତଭାଷାବିତ୍ ସତ୍ୟବାକ୍ୟଃ ପ୍ରିୟମ୍ବଦଃ ।
ବାବଦୂକଃ ସୁପାଣ୍ଡିତ୍ୟୋ ବୁଦ୍ଧିମାନ୍
ପ୍ରତିଭାନ୍ୱିତଃ ।୨୫।
ବିଦଗ୍ଧଶ୍ଚତୁରୋ ଦକ୍ଷଃ କୃତଜ୍ଞଃ ସୁଦୃଢ଼ବ୍ରତଃ ।
ଦେଶକାଲସୁପାତ୍ରଜ୍ଞଃ ଶାସ୍ତ୍ରଚକ୍ଷୁଃ ଶୁଚିର୍ବଶୀ ।୨୬।
ସ୍ଥିରୋ ଦାନ୍ତଃ କ୍ଷମାଶୀଲୋ ଗମ୍ଭୀରୋ ଧୃତିମାନ୍ ସମଃ
ବଦାନ୍ୟୋ ଧାର୍ମିକଃ ଶୂରଃ କରୁଣୋ ମାନ୍ୟ-
ମାନକୃତ୍ । ୨୭ ।
ଦକ୍ଷିଣୋ ବିନୟୀ ହ୍ରୀମାନ୍ ଶରଣାଗତପାଳକଃ ।
ସୁଖୀ ଭକ୍ତସୁହୃତ୍ ପ୍ରେମବଶ୍ୟଃ ସର୍ବଶୁଭଙ୍କରଃ ।୨୮।
ପ୍ରତାପୀ କୀର୍ତ୍ତିମାନ୍ ରକ୍ତଲୋକଃ ସାଧୁସମାଶ୍ରୟଃ ।
ନାରୀଗଣମନୋହାରୀ ସର୍ବାରାଧ୍ୟଃ ସମୃଦ୍ଧିମାନ୍ ।୨୯।
ବରୀୟାନ୍ ଈଶ୍ୱରଶ୍ଚେତି ଗୁଣାସ୍ତସ୍ୟାନୁକୀର୍ତ୍ତିତାଃ ।
ସମୁଦ୍ରା ଇବ ପଞ୍ଚାଶଦ୍ ଦୁର୍ବିଗାହା ହରେରମୀ ।୩୦

ଅୟଂ ନେତା-ନାୟକଃ କୃଷ୍ଣଃ ସୁରମ୍ୟାଙ୍ଗଃ ପରମରମଣୀୟାଙ୍ଗ ସନ୍ନିବେଶଃ, ସଲ୍ଲକ୍ଷଣାନ୍ୱିତ—ସାମୁଦ୍ରିକଶାସ୍ତ୍ରୋକ୍ତ ଗୁଣୈଥ ଦ୍ୱାତ୍ରିଂଶତ୍ ଶୁଭଚିହ୍ନଯୁକ୍ତଃ ଅଙ୍ଗୋଥ ଷୋଡ଼ଶବର୍ଷୋପମନ୍ୱିତଶ୍ଚ ରୁଚିର-ଲୋଚନାନନ୍ଦ ସୌନ୍ଦର୍ଯ୍ୟ ବିଶିଷ୍ଟଃ, ତେଜସାଯୁକ୍ତଃ, ବଲୀୟାନ୍, ବୟସାନ୍ୱିତଃ, ନିତ୍ୟ-କିଶୋରବୟାଃ, ବିବିଧାଦ୍ଭୁତଭାଷାବିତ୍ —ନାନାପୂର୍ବଭବଭାଷାକୁଶଳଃ, ସତ୍ୟବାକ୍ୟଃ ପ୍ରିୟମ୍ବଦା-ବାବଦୂକଃ—ଶ୍ରୁତିମଧୁରରସାଳ ବାଗ୍‌ଦିଯୁକ୍ତ ବଚନପ୍ରୟୋଗକ୍ଷମଃ, ସୁପାଣ୍ଡିତ୍ୟଃ ଅପ୍ରାକୃତ ବିଦ୍ୟା-ନିପୁଣଃ ପ୍ରତିଭାନ୍ୱିତଃ ନବନବପ୍ରକାଶଶାଳବୁଦ୍ଧିଯୁକ୍ତଃ ବିଦଗ୍ଧଃକଳାବିଳାସକୁଶଳଃ ଚତୁରଃ ଦକ୍ଷଃ କୃତଜ୍ଞଃ ସୁଦୃଢ଼ବ୍ରତଃ ଦେଶକାଳପାତ୍ରଜ୍ଞଃ ଶାସ୍ତ୍ରଚକ୍ଷୁଃ ଶୁଚିଃ ବଶୀ ଜିତେନ୍ଦ୍ରିୟଃ ସ୍ଥିରଃ, ଅଫଳୋ-ଦୟ କର୍ମକର୍ତ୍ତା ଦାନ୍ତଃ କ୍ଲେଶସହିଷ୍ଣୁଃ କ୍ଷମାଶୀଳଃ ପରାପରାଧସହନଃ ଗମ୍ଭୀରଃ ଧୃତିମାନ୍ ପୂର୍ଣ୍ଣକାମଃ ସମଃ, ରାଗଦ୍ୱେଷବିହୀନଃ ବଦାନ୍ୟଃ ଉଦାରଃ ଧାର୍ମିକଃ ଶୂରଃ ସମରେ ଉତ୍ସାହାନ୍ୱିତଃ କରୁଣଃ ମାନ୍ୟମାନକୃତ୍ ମାନନୀୟଜନପୂଜକଃ ଦକ୍ଷିଣଃ ସରଳଃ ବିନୟୀ-ହ୍ରୀମାନ୍, ଅସ୍ତୁତିଂ ଯାଚ୍ୟାଂ ଲଜ୍ଜାଶୀଳଃ, ଶରଣାଗତପାଳକଃ, ସୁଖୀ, ଭକ୍ତସୁହୃତ୍ ସେବକମିତ୍ରଂ ପ୍ରେମବଶ୍ୟ ସର୍ବଶୁଭଙ୍କରଃ ସର୍ବେଷାଂ ହିତକାରୀ ପ୍ରତାପୀ କୀର୍ତ୍ତିମାନ୍, ରକ୍ତଲୋକଃ ଲୋକାନୁରାଗପାତ୍ର, ସାଧୁସମାଶ୍ରୟଃ ସଜ୍ଜନପକ୍ଷାଶ୍ରିତଃ, ନାରୀଗଣ-ମନୋହାରୀ, ସର୍ବାରାଧ୍ୟଃ; ସମୃଦ୍ଧିମାନ୍ , ବରୀୟାନ୍ ଈଶ୍ୱରଶ୍ଚ । ଇତ୍ଥ ଅମୀ ପଞ୍ଚାଶତଗୁଣାଃ ଅନୁକୀର୍ତ୍ତିତାଃ ତସ୍ୟ ହରେଃ ଗୁଣାଃ ସମୁଦ୍ରାଃ ପାରାବାରତାଃ ଇବ ଦୁର୍ବିଗାହାଃ-ସମ୍ୟକ୍ ଜ୍ଞାତୁମଶକ୍ୟାଃ । ଇତି ।
୨୪ଶ ଠାରୁ ୩୦ଶ ଶ୍ଳୋକ ।

ଏହି ନାୟକଶିରୋମଣି ଶ୍ରୀକୃଷ୍ଣ (୧) ସୁରମ୍ୟାଙ୍ଗ (୨) ସର୍ବଲକ୍ଷଣଯୁକ୍ତ (୩) ସୁନ୍ଦର (୪) ମହାତେଜା (୫) ବଳବାନ୍ (୬) କିଶୋରବୟସ୍ୟଯୁକ୍ତ (୭) ବିବିଧ ଅଦ୍ଭୁତଭାଷାଜ୍ଞ (୮) ସତ୍ୟବାନ୍ (୯) ପ୍ରିୟମ୍ବଦ (୧୦) ବାକ୍‌ପଟୁ (୧୧) ସୁପଣ୍ଡିତ (୧୨) ବୁଦ୍ଧିମାନ୍ (୧୩) ପ୍ରତିଭା-ଯୁକ୍ତ (୧୪) ବିଦଗ୍ଧ (୧୫) ଚତୁର, (୧୬) ଦକ୍ଷ (୧୭) କୃତଜ୍ଞ (୧୮) ସୁଦୃଢ଼ବ୍ରତ (୧୯) ଦେଶକାଳପାତ୍ରଜ୍ଞ (୨୦) ଶାସ୍ତ୍ରଦୃଷ୍ଟିଯୁକ୍ତ (୨୧) ଶୁଚି (୨୨) ଜିତେନ୍ଦ୍ରିୟ (୨୩) ସ୍ଥିର (୨୪) ଦାନ୍ତ [କ୍ଲେଶସହିଷ୍ଣୁ] (୨୫) କ୍ଷମାଶୀଳ (୨୬) ଗମ୍ଭୀର (୨୭) ଧୃତିମାନ୍ (୨୮) ରାଗ-ଦ୍ୱେଷଶୂନ୍ୟ (୨୯) ବଦାନ୍ୟ (୩୦) ଧାର୍ମିକ (୩୧) ଶୂର (୩୨) କରୁଣ (୩୩) ମାନଦ (୩୪) ଦକ୍ଷିଣ (୩୫) ବିନୟୀ (୩୬) ଲଜ୍ଜାଶୀଳ (୩୭) ଶରଣାଗତପାଳକ (୩୮) ସୁଖୀ (୩୯) ଭକ୍ତବନ୍ଧୁ (୪୦) ପ୍ରେମବଶ୍ୟ (୪୧) ସର୍ବଶୁଭଙ୍କର (୪୨) ପ୍ରତାପୀ (୪୩) କୀର୍ତ୍ତିମାନ୍ (୪୪) ଲୋକାନୁରକ୍ତ (୪୫) ସାଧୁମାନଙ୍କର ସମାଶ୍ରୟ (୪୬) ନାରୀଗଣମନୋହାରୀ (୪୭) ସର୍ବାରାଧ୍ୟ (୪୮) ସମୃଦ୍ଧିମାନ୍ (୪୯) ଶ୍ରେଷ୍ଠ (୫୦) ଐଶ୍ୱର୍ଯ୍ୟଯୁକ୍ତ, ଏହି ପଚାଶ ଗୁଣଯୁକ୍ତ ହୋଇ କୀର୍ତ୍ତିତ ହୋଇଅଛନ୍ତି । ଏମାନେ ସମୁଦ୍ରବତ୍ ଅତଳସ୍ପର୍ଶ । ୨୪ ଠାରୁ ୩୦ଶ ଶ୍ଳୋକାର୍ଥ ।

ତଥାହି ଭକ୍ତିରସାମୃତସିନ୍ଧୌ (୨।୧।୧୨)
ଜୀବେଷ୍ୱେତେ ବସନ୍ତୋଽପି ବିନ୍ଦୁବିନ୍ଦୁତୟା କ୍ୱଚିତ୍ ।
ପରିପୂର୍ଣ୍ଣତୟା ଭାନ୍ତି ତତ୍ରୈବ ପୁରୁଷୋତ୍ତମେ ।୩୧।

ତତ୍ରୈବ (୧୪।୧୯)—
ଅଥ ପଞ୍ଚଗୁଣା ଯେ ସ୍ୟୁରଂଶେନ ଗିରିଶାଦିଷୁ ।
ସଦା ସ୍ୱରୂପସମ୍ପ୍ରାପ୍ତଃ ସର୍ବଜ୍ଞୋ ନିତ୍ୟନୂତନଃ ।
ସଚ୍ଚିଦାନନ୍ଦସାନ୍ଦ୍ରାଙ୍ଗଃ ସର୍ବସିଦ୍ଧିନିଷେବିତଃ ।୩୨।
ଅଥୋଚ୍ୟନ୍ତେ ଗୁଣାଃ ପଞ୍ଚ ଯେ ଲକ୍ଷ୍ମୀଶାଦିବର୍ତ୍ତିନଃ ।
ଅବିଚିନ୍ତ୍ୟ ମହାଶକ୍ତିଃ କୋଟିବ୍ରହ୍ମାଣ୍ଡବିଗ୍ରହଃ ।
ଅବତାରାବଲୀବୀଜଂ ହତାରିଗତିଦାୟକଃ ।
ଆତ୍ମାରାମଗଣାକର୍ଷୀତ୍ୟମୀ କୃଷ୍ଣେ କିଲାଦ୍ଭୁତାଃ ।୩୩।
ସର୍ବାଦ୍ଭୁତଚମତ୍କାରଲୀଲାକଲ୍ଲୋଲବାରିଧିଃ ।
ଅତୁଲ୍ୟମଧୁରପ୍ରେମମଣ୍ଡିତପ୍ରିୟମଣ୍ଡଳଃ ।୩୪।
ତ୍ରିଜଗନ୍ମାନସାକର୍ଷିମୁରଲୀକଲକୂଜିତଃ ।
ଅସମାନୋର୍ଦ୍ଧ୍ୱରୂପଶ୍ରୀ-ବିସ୍ମାପିତଚରାଚରଃ ।୩୫।
ଲୀଳା ପ୍ରେମ୍ଣା ପ୍ରିୟାଧିକ୍ୟଂ ମାଧୁର୍ଯ୍ୟେ ବେଣୁ-
ରୂପୟୋଃ
ଇତ୍ୟସାଧାରଣଂ ପ୍ରୋକ୍ତଂ ଗୋବିନ୍ଦସ୍ୟ ଚତୁଷ୍ଟୟମ୍
ଏବଂ ଗୁଣାଶ୍ଚତୁର୍ଭେଦାଶ୍ଚତୁଃଷଷ୍ଟିରୁଦାହୃତାଃ ।୩୬।

---

ଏତେ ଗୁଣାଃ ବିନ୍ଦୁ ବିନ୍ଦୁତୟା କ୍ୱଚିତ୍ ଜୀବେଷୁ ବସନ୍ତଃ ଅପି ତତ୍ରୈବପୁରୁଷୋତ୍ତମେ ପରିପୂର୍ଣ୍ଣତୟା ଭାନ୍ତି । ୩୧ ଶ୍ଳୋକଃ ।

ଅଂଶେନ—ଯଥାସମ୍ଭବସ୍ୱାଂଶେନ, ଗିରିଶାଦିଷୁ—ଶ୍ରୀଶିବାଦିଷୁ, ଯେ ପଞ୍ଚଗୁଣାଃସ୍ୟୁଃ (ଅଥ ଉଚ୍ୟନ୍ତେ) ସଦାସ୍ୱରୂପ ସମ୍ପ୍ରାପ୍ତଃ ସର୍ବଜ୍ଞଃ ନିତ୍ୟ ନୂତନଃ, ସଚ୍ଚିଦାନନ୍ଦ ସାନ୍ଦ୍ରାଙ୍ଗଃ ସର୍ବସିଦ୍ଧି-ନିଷେବିତଃ । ଇତି ।୩୨ ।

ଲକ୍ଷ୍ମୀଶାଦି ବର୍ତ୍ତିନଃ ଯେ ପଞ୍ଚଗୁଣାଃ ଅଥ ଉଚ୍ୟନ୍ତେ—ଅବିଚିନ୍ତ୍ୟ ମହାଶକ୍ତିଃ, କୋଟି-ବ୍ରହ୍ମାଣ୍ଡବିଗ୍ରହଃ, ଅବତାରାବଲୀବୀଜଂ, ହତାରିଗତିଦାୟକଃ, ଆତ୍ମାରାମଗଣାକର୍ଷୀ ଇତ୍ୟମୀ କୃଷ୍ଣେ ଅଦ୍ଭୁତାଃ କିଲ । ୩୩ ।

ସର୍ବାଦ୍ଭୁତଚମତ୍କାରଲୀଲା-କଲ୍ଲୋଲବାରିଧିଃ,ଅତୁଲମଧୁର ପ୍ରେମମଣ୍ଡିତ ପ୍ରିୟମଣ୍ଡଳଃ ।୩୪।
ମୁରଲୀ କଲ କୂଜିତ ତ୍ରିଜଗନ୍ମାନସାକର୍ଷୀ । ଅସମାନୋର୍ଦ୍ଧ୍ୱରୂପ ଶ୍ରୀବିସ୍ମାପିତ ଚରାଚରଃ ।
ଲୀଳା ପ୍ରେମ୍ଣା ପ୍ରିୟାଧିକ୍ୟଂ ବେଣୁରୂପୟୋଃ ମାଧୁର୍ଯ୍ୟେ ଇତି ଗୋବିନ୍ଦସ୍ୟ ଅସାଧାରଣଂ ଚତୁଷ୍ଟୟଂ ପ୍ରୋକ୍ତଂ ଏବଂ ଚତୁର୍ଭେଦାଃ ଗୁଣାଃ ଚତୁଃଷଷ୍ଟି ଉଦାହୃତାଃ । ୩୫।୩୬ ଶ୍ଳୋକଃ ।

---

ଏହି ପୂର୍ବ ବର୍ଣ୍ଣିତ ପଞ୍ଚାଶତ୍ତି ଗୁଣ କୌଣସି କୌଣସି ଜୀବଙ୍କଠାରେ ବିନ୍ଦୁ ବିନ୍ଦୁ ଥାଏ, କିନ୍ତୁ ତାହା ପରିପୂର୍ଣ୍ଣରୂପେ ଶ୍ରୀଭଗବାନଙ୍କଠାରେ ବର୍ତ୍ତମାନ, ଏହାର ଭାବ ଏହି ଯେ,—ଭଗବାନ ଏହି ସମସ୍ତଗୁଣର ପୂର୍ଣ୍ଣାଶ୍ରୟ, ଭଗବତ୍ ଅନୁଗୃହୀତ ଜୀବଙ୍କଠାରେ ଏହି ସମସ୍ତ ଗୁଣ କିଞ୍ଚିତ୍ ଥାଏ, ଅପର ଜୀବମାନଙ୍କଠାରେ ଏହିଗୁଣମାନଙ୍କର କାହାରି କାହାରି ଆଭାସ ମାତ୍ର ଦେଖାଯାଏ । ୩୧ ଶ୍ଳୋକାର୍ଥ ।

(୧) ସଦାସ୍ୱରୂପ ସମ୍ପ୍ରାପ୍ତ ( ମାୟିକକାର୍ଯ୍ୟରେ ଅବଶୀକୃତ ) (୨) ସର୍ବଜ୍ଞ (୩) ନିତ୍ୟ ନୂତନ (୪) ସଚ୍ଚିଦାନନ୍ଦସାନ୍ଦ୍ରାଙ୍ଗ (ସଚ୍ଚିଦାନନ୍ଦ ଘନବିଗ୍ରହ) (୫) ସର୍ବସିଦ୍ଧି ନିଷେବିତ (ସମସ୍ତ ସିଦ୍ଧିମାନଙ୍କଦ୍ୱାରା ପୂଜିତ ) ଶ୍ରୀକୃଷ୍ଣଙ୍କର ଏହି ପାଞ୍ଚଗୁଣ ସ୍ୱାଂଶରେ ଶିବାଦିଙ୍କଠାରେ ( ଶିବଙ୍କ ଏବଂ ଯେଉଁ ସୃଷ୍ଟି ସମୟରେ ବ୍ରହ୍ମା ହେବାର ମହତ୍ ଜୀବଅଭାବରୁ ଭଗବାନ୍ ସ୍ୱାଂଶରେ ବ୍ରହ୍ମା ହୁଅନ୍ତି ସେହି ବ୍ରହ୍ମାଙ୍କଠାରେ) ଯଥାସମ୍ଭବ ବର୍ତ୍ତମାନ ।

ଅନନ୍ତ ଗୁଣ ଶ୍ରୀରାଧିକାର, ପଁଚିଶ ପ୍ରଧାନ ।
ଯେଇ ଗୁଣେର ବଶ ହୟ କୃଷ୍ଣ ଭଗବାନ ।୪୩

ତଥାହି ଉଜ୍ଜ୍ୱଳନୀଳମଣୌ ଶ୍ରୀରାଧା-
ପ୍ରକରଣେ ( ୯ )—

ଅଥ ବୃନ୍ଦାବନେଶ୍ୱର୍ଯ୍ୟାଃ କୀର୍ତ୍ତ୍ୟନ୍ତେ ପ୍ରବରା ଗୁଣାଃ
ମଧୁରେୟଂ ନବବୟାଶ୍ଚଳାପାଙ୍ଗୋଜ୍ଜ୍ୱଳସ୍ମିତା ।୩୬।
ଚାରୁସୌଭାଗ୍ୟରେଖାଢ୍ୟା ଗନ୍ଧୋନ୍ମାଦିତମାଧବା ।
ସଙ୍ଗୀତପ୍ରସରାଭିଜ୍ଞା ରମ୍ୟବାଙ୍ନର୍ମପଣ୍ଡିତା ।୩୭।
ବିନୀତା କରୁଣାପୂର୍ଣ୍ଣା ବିଦଗ୍ଧା ପାଟବାନ୍ୱିତା ।
ଲଜ୍ଜାଶୀଳା ସୁମର୍ଯ୍ୟାଦା ଧୈର୍ଯ୍ୟଗାମ୍ଭୀର୍ଯ୍ୟଶାଲିନୀ ୩୯।
ସୁବିଳାସା ମହାଭାବପରମୋତ୍କର୍ଷତର୍ଷିଣୀ ।
ଗୋକୁଳପ୍ରେମବସତିର୍ଜଗଚ୍ଛ୍ରେଣୀଲସଦ୍ୟଶାଃ ।୪୦।
ଗୁର୍ବର୍ପିତଗୁରୁସ୍ନେହା ସଖୀପ୍ରଣୟିତାବଶା ।
କୃଷ୍ଣପ୍ରିୟାବଳୀମୁଖ୍ୟା ସନ୍ତତାଶ୍ରବକେଶବା ।
ବହୁନା କିଂ ଗୁଣାସ୍ତସ୍ୟାଃ ସଂଖ୍ୟାତୀତା
ହରେରିବ ।୪୧।

ଅଥ ବୃନ୍ଦାବନେଶ୍ୱର୍ଯ୍ୟାଃ—ଶ୍ରୀରାଧାୟାଃ ପ୍ରବରାଃ ଗୁଣା କୀର୍ତ୍ତ୍ୟନ୍ତେ—ମଧୁରେୟଂ ନବବୟାଃ ଚଳାପାଙ୍ଗୋଜ୍ଜ୍ୱଳସ୍ମିତା ଇତ୍ୟାଦୟଃ, ତସ୍ୟାଃ ଗୁଣାଃ କିଂ ବହୁନା ହରେରିବ ସଂଖ୍ୟା-ତୀତାଃ । ୩୬।୪୧ ଶ୍ଳୋକ ।

(୧) ଅଚିନ୍ତ୍ୟ ମହାଶକ୍ତି ( ସୃଷ୍ଟିକର୍ତ୍ତୃତ୍ୱ ବ୍ରହ୍ମରୁଦ୍ରାଦି ମହାନ୍ତଭକ୍ତମାନଙ୍କର ପ୍ରାରବ୍ଧ ଖଣ୍ଡନ ଇତ୍ୟାଦି ) (୨) କୋଟିବ୍ରହ୍ମାଣ୍ଡ ବିଗ୍ରହ (୩) ଅବତାରମାନଙ୍କର ମୂଳ (୪) ହତାରି ଗତି-ଦାୟକ (ହତ ଶତ୍ରୁର ମୁକ୍ତିଦାତା) (୫) ଆତ୍ମାରାମ ଗଣାକର୍ଷୀ (ମୁକ୍ତପୁରୁଷମାନଙ୍କର ଆକର୍ଷଣକାରୀ) ଶ୍ରୀନାରାୟଣାଦିଙ୍କଠାରେ ଏହି ପଞ୍ଚଗୁଣ ବର୍ତ୍ତମାନ, କିନ୍ତୁ ଏମାନେ ଶ୍ରୀକୃଷ୍ଣଙ୍କଠାରେ ଅଦ୍ଭୁତରୂପେ ବର୍ତ୍ତମାନ ।

(୧) ଲୀଳା ମାଧୁର୍ଯ୍ୟ (୨) ପ୍ରେମମାଧୁର୍ଯ୍ୟ ( ୩ ) ବେଣୁମାଧୁର୍ଯ୍ୟ, ( ୪ ) ରୂପମାଧୁର୍ଯ୍ୟ, ଏହି ଚାରିଗୋଟି ଶ୍ରୀକୃଷ୍ଣଙ୍କଠାରେ ଅସାଧାରଣ ଗୁଣ, ଏହିରୂପେ ଚାରିପ୍ରକାରରେ ଶ୍ରୀକୃଷ୍ଣଙ୍କର ଚଉଷଠି ପ୍ରଧାନଗୁଣ ବର୍ଣ୍ଣିତ ହେଲା । ୩୨,୩୬ ଶ୍ଳୋକାର୍ଥ ।

ଅନନ୍ତର ଶ୍ରୀବୃନ୍ଦାବନେଶ୍ୱରୀ ଶ୍ରୀରାଧିକାଙ୍କର ପ୍ରଧାନ ପ୍ରଧାନ ଗୁଣମାନ କୀର୍ତ୍ତନ କରି ହେଉଅଛୁ ।

(୧) ମଧୁରା (ଚାରୁତାବିଶିଷ୍ଟ) ୨ ନବବୟାଃ (କିଶୋରୀ) ୩ ଚଞ୍ଚଳନୟନା,୪ ଉଜ୍ଜ୍ୱଳସ୍ମିତା, ୫ ଚାରୁସୌଭାଗ୍ୟରେଖାରେ ଭୂଷିତା (କର ଚରଣରେ ୫୦ ସୌଭାଗ୍ୟ ସୂଚକ ରେଖା ଅଛି) ୬ ସୁଗନ୍ଧରେ ଶ୍ରୀକୃଷ୍ଣଉନ୍ମାଦକାରିଣୀ, ୭ ଅତି ଉତ୍ତମ ସଙ୍ଗୀତ କଳାଭିଜ୍ଞା, ୮ ରମ୍ୟବାକ୍, ୯ ନର୍ମପଣ୍ଡିତା (ପରିହାସ ବିଶାରଦା) ୧୦ ବିନୀତା, ୧୧ କାରୁଣ୍ୟପୂର୍ଣ୍ଣା, ୧୨ ବିଦଗ୍ଧା (କେଳିବିଳାସ ପଣ୍ଡିତା) ୧୩ ପାଟବାନ୍ୱିତା, ୧୪ ଲଜ୍ଜାଶୀଳା, ୧୫ ସୁମର୍ଯ୍ୟାଦା, ୧୬ ଧୈର୍ଯ୍ୟଶାଲିନୀ, ୧୭ ଗାମ୍ଭୀର୍ଯ୍ୟଶାଲିନୀ, ୧୮ ସୁବିଳାସା, ୧୯ ମହାଭାବ ପରମୋତ୍କର୍ଷତର୍ଷିଣୀ, (ପରମୋତ୍କର୍ଷେ ମହାଭାବମୟୀ) ୨୦ ଗୋକୁଳ ପ୍ରେମବସତି (ଗୋକୁଳ ଜନପ୍ରିୟା) ୨୧ ଜଗଜ୍ଜନବ୍ୟାପ୍ତଯଶା, ୨୨ ଗୁରୁଜନାଙ୍କ ଶ୍ରେୟ-ସ୍ନେହପାତ୍ରୀ, ୨୩ ସଖୀସ୍ନେହାଧୀନା, ୨୪ କୃଷ୍ଣପ୍ରେୟସୀଗଣାବତଂସା, ୨୫ ସଦା ଶ୍ରୀକୃଷ୍ଣ ଯାହାଙ୍କର ବଚନାଧୀନ, ଅତଏବ ଶ୍ରୀକୃଷ୍ଣଙ୍କ ସଦୃଶ ଶ୍ରୀରାଧାଙ୍କର ଅନନ୍ତଗୁଣ, ମୁଁ ତାହାର କି ସଂଖ୍ୟା କରିବି । ୩୬।୪୧ ଅର୍ଥ ।

ନାୟକ ନାୟିକା ଦୁଇ- ରସେର 'ଆଲମ୍ବନ' ।
ସେଇ-ଦୁଇ-ଶ୍ରେଷ୍ଠ-- ରାଧା, ବ୍ରଜେନ୍ଦ୍ରନନ୍ଦନ ।୪୪
ଏଇମତ ଦାସ୍ୟେ ଦାସ, ସଖ୍ୟେ ସଖାଗଣ ।
ବାତ୍ସଲ୍ୟେ ମାତା ପିତା—ଆଶ୍ରୟାଲମ୍ବନ ୪୫।
ଏଇ ରସ ଅନୁଭବେ ଯୈଛେ ଭକ୍ତଗଣ ।
ଯୈଛେ ରସ ହୟ, ତାର ଶୁନହ ଲକ୍ଷଣ । ୪୬ ।
ତଥାହି ଭକ୍ତିରସାମୃତସିନ୍ଧୌ (୨।୧।୪)—
ଭକ୍ତିନିର୍ଦ୍ଧୂତଦୋଷାଣାଂ ପ୍ରସନ୍ନୋଜ୍ଜ୍ୱଲଚେତସାମ୍ ।
ଶ୍ରୀଭାଗବତରକ୍ତାନାଂ ରସିକାସଙ୍ଗରଙ୍ଗିଣାମ୍ ।୪୭।
ଜୀବନୀଭୂତଗୋବିନ୍ଦପାଦଭକ୍ତିସୁଖଶ୍ରିୟାମ୍ ।
ପ୍ରେମାନ୍ତରଙ୍ଗଭୂତାନି କୃତ୍ୟାନ୍ୟେବାନୁତିଷ୍ଠତାମ୍ ॥
ଭକ୍ତାନାଂ ହୃଦି ରାଜନ୍ତୀ ସଂସ୍କାରଯୁଗଳୋଜ୍ଜ୍ୱଳା ।
ରତିରାନନ୍ଦରୂପୈବ ନୀୟମାନା ତୁ ରସ୍ୟତାମ୍ ।୪୮।
କୃଷ୍ଣାଦିଭିର୍ବିଭାବାଦ୍ୟୈର୍ଗତୈରନୁଭବାଧ୍ୱନି ।
ପ୍ରୌଢ଼ାନନ୍ଦଚମତ୍କାରକାଷ୍ଠାମାପଦ୍ୟତେ
ପରାମ୍ । ୪୯ ।

ଭକ୍ତିନିର୍ଦ୍ଧୂତଦୋଷାଣାଂ ଭକ୍ତ୍ୟା ନିର୍ଦ୍ଧୂତାଃ କ୍ଷାଳିତାଃ ଦୋଷାଃଯେଷାଂ, ପ୍ରସନ୍ନୋଜ୍ଜ୍ୱଳ-ଚେତସାଂ ପ୍ରସନ୍ନଂ ଉଜ୍ଜ୍ୱଳଂ ଚେତୋ ଯେଷାଂ, ଶ୍ରୀଭାଗବତରକ୍ତାନାଂ ଶ୍ରୀଭାଗବତାର୍ଥାନାଂ ଆସ୍ୱାଦନେ ଅନୁରକ୍ତାନାଂ ରସିକାସଙ୍ଗରଙ୍ଗିଣାଂ ରସିକାନାଂ ରସାସ୍ୱାଦତତ୍ପରାଣାଂ, ଜୀବନୀଭୂତ ଗୋବିନ୍ଦ ପାଦଭକ୍ତିସୁଖଶ୍ରିୟାଂ ଜୀବନୀଭୂତା ଗୋବିନ୍ଦ ପାଦଭକ୍ତି ସୁଖଶ୍ରୀଃ—କୃଷ୍ଣସେବା ସୁଖସମ୍ପତ୍ତିଃ ଯେଷାଂ, ପ୍ରେମାନ୍ତରଙ୍ଗଭୂତାନି—ପ୍ରେମ୍ଣଃଅନ୍ତରଙ୍ଗଭୂତାନି କୃତ୍ୟାନି ଅନୁଷ୍ଠାନାଦୀନି ଅନୁତିଷ୍ଠତାଂ ଭକ୍ତାନାଂ ହୃଦି ସଂସ୍କାର—ଯୁଗଳୋଜ୍ଜ୍ୱଳା ଆନନ୍ଦରୂପା ରତି ଏବ ରାଜନ୍ତୀ ତୁ ଅନୁଭବାଧ୍ୱନି କୃଷ୍ଣାଦିଭିଃ ବିଭାବାଦ୍ୟୈଃ ଗତୈଃ ରସ୍ୟତାଂ ନୀୟମାନା ପରାଂ ପ୍ରୌଢାନନ୍ଦଚମତ୍କାରକାଷ୍ଠାଂ ଆପଦ୍ୟତେ । ୪୭।୪୯ ଶ୍ଳୋକ ।

ଯୈଛେ ଯେନପ୍ରକାରେଣ ଭକ୍ତଗଣୋଽନୁଗଚ୍ଛତୀତ୍ୟର୍ଥଃ ଏତଦେବସ୍ପଷ୍ଟୀକୁର୍ବନ୍ନାହ—ଯୈଛେରସହୟ ଇତି । ୪୬ ଚି. ଚ.

ରସ—ରସରାଜ ଶୃଙ୍ଗାର ।

ଆଲମ୍ବନ—ନାୟିକା ଶ୍ରୀରାଧା ରସର ଆଶ୍ରୟାବଲମ୍ବନ, ନାୟକ ଶ୍ରୀବ୍ରଜେନ୍ଦ୍ରନନ୍ଦନ ରସର ବିଷୟାଲମ୍ବନ । ୪୪ ।

ଏଇମତ—ଉପରୋକ୍ତ ମଧୁରରସ ସଦୃଶ ।

ଦାସ୍ୟେଦାସ – ଦାସ୍ୟରସରେ ଦାସମାନେ, ସଖ୍ୟରସରେ ସଖାମାନେ, ବାତ୍ସଲ୍ୟରସରେ ପିତାମାତାଦି ଗୁରୁବର୍ଗ, ସେହି ରସର ଆଶ୍ରୟାବଲମ୍ବନ ଏବଂ ଶ୍ରୀକୃଷ୍ଣ ବିଷୟାବଲମ୍ବନ । ୪୫ ।

ଉକ୍ତରସାନୁଗତ ଭକ୍ତମାନେ ଆପଣା ଆପଣା ଭାବାନୁସାରେ ଯେ ପ୍ରକାର ରସକୁ ଅନୁଭବ କରନ୍ତି ତାହାର ଲକ୍ଷଣ କହୁଛନ୍ତି । ୪୬ ।

ଭକ୍ତିଦ୍ୱାରା ଯେଉଁମାନଙ୍କର ଦୁର୍ବାସନାଜନିତ ଦୋଷ ନଷ୍ଟ ହୋଇଅଛି, ତେଣୁ ଚିତ୍ତ ପ୍ରସନ୍ନ ଓ ନିର୍ମଳ ହୋଇଅଛି, ଯେଉଁମାନେ ଭଗବତ୍ ସମ୍ବନ୍ଧୀୟ ବିଷୟରେ ଅନୁରକ୍ତ, ରସିକ ଭକ୍ତ ସଙ୍ଗ ଲାଲସାନ୍ୱିତ, ଶ୍ରୀକୃଷ୍ଣଙ୍କର ଶ୍ରୀଚରଣ ଭକ୍ତି ସୁଖସମ୍ପତ୍ତି ଯେଉଁମାନଙ୍କର ଜୀବନସ୍ୱରୂପ, ଯେଉଁମାନେ ପ୍ରେମୋଦୟକରି ସାଧନାର ଅନୁଷ୍ଠାନ କରନ୍ତି, ଏହିପ୍ରକାର ଭକ୍ତମାନଙ୍କ ହୃଦୟରେ ବିରାଜମାନ ପ୍ରାକ୍ତନ ଓ ଆଧୁନିକ ସଦ୍‌ଭକ୍ତି ବାସନାଦ୍ୱାରା ଉଜ୍ଜ୍ୱଳ ଓ ଆନନ୍ଦରୂପ ରତି ଅନୁଭବ ଲବ୍ଧ ଶ୍ରୀକୃଷ୍ଣାଦି ବିଭାବାଦିଦ୍ୱାରା ଆସ୍ୱାଦରୂପରସତ୍ୱକୁ ପ୍ରାପ୍ତ ହୋଇ ଚମତ୍କାରରୂପରେ ପ୍ରୌଢ଼ାନନ୍ଦ ଆସ୍ୱାଦନକରନ୍ତି । ୪୭।୪୯ ଶ୍ଳୋକାର୍ଥ ।

ଏଇ-ରସ-ଆସ୍ୱାଦ ନାହି ଅଭକ୍ତେର ଗଣେ ।
କୃଷ୍ଣଭକ୍ତଗଣ କରେ ରସ-ଆସ୍ୱାଦନେ । ୪୭ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୨।୫।୭୮ )
ସର୍ବଥୈବ ଦୁରୂହୋଽୟମଭକ୍ତୈର୍ଭଗବଦ୍ରସଃ ।
ତତ୍ପାଦାମ୍ବୁଜସର୍ବସ୍ୱୈର୍ଭକ୍ତୈରେବାନୁରସ୍ୟତେ ।
ସଂକ୍ଷେପେ କହିଲ ଏଇ 'ପ୍ରୟୋଜନ' ବର୍ଣ୍ଣନ ।
ପଞ୍ଚମ ପୁରୁଷାର୍ଥ ଏଇ— କୃଷ୍ଣପ୍ରେମଧନ ।୪୮ ।
ପୂର୍ବେ ପ୍ରୟାଗେ ଆମି ରସେର ବିଚାରେ ।
ତୋମାର ଭାଇ ରୂପେ କୈଲ ଶକ୍ତି ସଞ୍ଚାରେ ।୪୯
ତୁମିହ କରିହ ଭକ୍ତିଶାସ୍ତ୍ରେର ପ୍ରଚାର ।
ମଥୁରାର ଲୁପ୍ତତୀର୍ଥେର କରିହ ଉଦ୍ଧାର । ୫୦ ।
ବୃନ୍ଦାବନେ କୃଷ୍ଣସେବା ବୈଷ୍ଣବ-ଆଚାର ।
ଭକ୍ତି-ସ୍ମୃତି-ଶାସ୍ତ୍ର କରି କରିହ ପ୍ରଚାର । ୫୧ ।
'ଯୁକ୍ତବୈରାଗ୍ୟ' ସ୍ଥିତି ସବ ଶିଖାଇଲ ।
ଶୁଷ୍କ-ବୈରାଗ୍ୟ ଜ୍ଞାନ ସବ ନିଷେଧିଲ । ୫୨ ।

ତଥାହି ଶ୍ରୀଗୀତାୟାମ୍ ( ୧୨।୧୩-୧୦ )—

ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।
ନିର୍ମମୋ ନିରହଙ୍କାରଃ ସମଦୁଃଖସୁଖଃ କ୍ଷମୀ ।୪୭।
ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ନିଶ୍ଚୟଃ ।
ମୟ୍ୟର୍ପିତମନୋବୁଦ୍ଧିର୍ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ । ୪୮ ।
ଯସ୍ମାନ୍ନୋଦ୍ୱିଜତେ ଲୋକୋ ଲୋକାନ୍ନୋଦ୍ୱିଜତେ ଚ ଯଃ ।
ହର୍ଷାମର୍ଷଭୟୋଦ୍ୱେଗୈର୍ମୁକ୍ତୋ ଯଃ ସ ଚ ମେ ପ୍ରିୟଃ । ୪୯ ।

---

ଅଭକ୍ତୈଃ ଅସ୍ୟ ଭଗବଦ୍ରସଃ ସର୍ବଥା ଏବ ଦୁରୂହଃ, ତତ୍ପାଦାମ୍ବୁଜସର୍ବସ୍ୱୈଃ ଭକ୍ତୈଃ ଏବ ଅନୁରସ୍ୟତେ । ୪୭ ଶ୍ଳୋକଃ ।

ଅନାସକ୍ତସ୍ୟ (ସତଃ) ଯଥାର୍ହଂ (ସ୍ୱଭକ୍ତ୍ୟସଯୁକ୍ତମାତ୍ରଂ ଯଥାଯୋଗ୍ୟ ରୀତ୍ୟ) ବିଷୟାନୁପଯୁଞ୍ଜତଃ — ଭକ୍ତ୍ୟାନସ୍ୟ ପୁରୁଷସ୍ୟ, ଯତ୍ତ ବୈରାଗ୍ୟଂ ତତ୍ତୁ ଯୁକ୍ତଂ ଉଚ୍ୟତେ । ୪୭ ଶ୍ଳୋକଃ ।

ସର୍ବଭୂତାନାଂ ଅଦ୍ୱେଷ୍ଟା (ଦ୍ୱେଷରହିତଃ) ମୈତ୍ରଃ (ସୁହୃଦ୍ଭାବାପନ୍ନଃ) କରୁଣଃ 'କୃପା-ପରାୟଣଃ) ଏବ ଚ ନିର୍ମମଃ (ମମତାରହିତଃ) ନିରହଙ୍କାରଃ (ଗର୍ବଶୂନ୍ୟଃ) ସମଦୁଃଖସୁଖଃ— ସମେ — ତୁଲ୍ୟେ ଦୁଃଖସୁଖେ ଯସ୍ୟ ସଃ, କ୍ଷମୀ— କ୍ଷମାଶୀଳଃ ସତତଂ— ନିରନ୍ତରଂ, ସନ୍ତୁଷ୍ଟଃ — ପ୍ରସନ୍ନ-ଚିତ୍ତଃ, ଯୋଗୀ— ସମାହିତଚିତ୍ତଃ, ଯତାତ୍ମା— ସଂଯତଚିତ୍ତଃ, ଦୃଢ଼ନିଶ୍ଚୟଃ— ଦୃଢ଼ଃ— ସ୍ଥିରଃ ନିଶ୍ଚୟଃ— ଅଧ୍ୟବସାୟଃ ଯସ୍ୟ ସଃ, ମୟି— ଭଗବତି ଅର୍ପିତମନୋବୁଦ୍ଧିଃ— ଅର୍ପିତେ – ସ୍ଥାପିତେ ମନୋବୁଦ୍ଧୀ ଯସ୍ୟ ସଃ, ମଦ୍ଭକ୍ତଃ, ସଃ ମେ — ମମ ପ୍ରିୟଃ ।

ଯସ୍ମାତ୍ତୁ— ସାଧକାତ୍ତୁ ଲୋକଃ ନ ଉଦ୍ୱିଜତେ— ନୋଦ୍ୱେଗଂ ପ୍ରାପ୍ନୋତି, ଯଶ୍ଚ ଲୋକାତ୍ତୁ ନୋଦ୍ୱିଜତେ— ଉଦ୍ୱେଗଂ ଗଚ୍ଛତି, ଯଃ ହର୍ଷାମର୍ଷ ଭୟୋଦ୍ୱେଗୈଃ— ଆନନ୍ଦଦ୍ୱେଷ-ତ୍ରାସଚିତ୍ତକ୍ଷୋଭୈଃ, ମୁକ୍ତଃ— ବର୍ଜିତଃ ସ ଚ ମେ— ମମ ପ୍ରିୟଃ ।

---

ଏହି ଭଗବଦ୍ରସ ସର୍ବପ୍ରକାର ଅଭକ୍ତମାନଙ୍କ ପକ୍ଷରେ ଏବଂ ଭକ୍ତିହୀନ ପଣ୍ଡିତ ପକ୍ଷରେ ମଧ୍ୟ ଦୁଷ୍ପ୍ରାପ୍ୟ, କିନ୍ତୁ ତାହା ଶ୍ରୀକୃଷ୍ଣଙ୍କର ଏକାନ୍ତ ଭକ୍ତମାନେ ନିରନ୍ତର ଆସ୍ୱାଦନ କରନ୍ତି । ୪୭ ଶ୍ଳୋକାର୍ଥ ।

ପ୍ରୟୋଜନ ତତ୍ତ୍ୱ ଅର୍ଥାତ୍ (ପଞ୍ଚମପୁରୁଷାର୍ଥ ପ୍ରେମତତ୍ତ୍ୱ) ବିଷୟ ସମାପ୍ତ କଲେ ।

ରୂପେ— ଶ୍ରୀରୂପଗୋସ୍ୱାମୀଙ୍କୁ । ୪୯ । ଯୁକ୍ତବୈରାଗ୍ୟ— ଭକ୍ତିଯୁକ୍ତ ବୈରାଗ୍ୟ । ୫୦ ।

ଶୁଷ୍କବୈରାଗ୍ୟ— ଭକ୍ତିଶୂନ୍ୟ ବୈରାଗ୍ୟ । ୫୧ ।

ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ।
ସର୍ବାରମ୍ଭପରିତ୍ୟାଗୀ ଯୋ ମେ ଭକ୍ତଃ ସ ମେ
ପ୍ରିୟଃ । ୫୦ ।
ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ
କାଙ୍କ୍ଷତି ।
ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ ।
ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ
ଶୀତୋଷ୍ଣସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜ୍ଜିତଃ । ୫୨ ।
ତୁଲ୍ୟନିନ୍ଦାସ୍ତୁତିର୍ମୌନୀ ସନ୍ତୁଷ୍ଟୋ ଯେନ କେନଚିତ୍
ଅନିକେତଃ ସ୍ଥିରମତିର୍ଭକ୍ତିମାନ୍ ମେ
ପ୍ରିୟୋ ନରଃ । ୫୩ ।
ଯେ ତୁ ଧର୍ମ୍ମାମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ
ଶ୍ରଦ୍ଦଧାନା ମତ୍ପରମା ଭକ୍ତାସ୍ତେଽତୀବ ମେ
ପ୍ରିୟାଃ । ୫୪ ।

ଅନପେକ୍ଷଃ – ନିଷ୍ପୃହଃ, ଶୁଚିଃ—ବାହ୍ୟାଭ୍ୟନ୍ତରଶୌଚସମ୍ପନ୍ନଃ, ଦକ୍ଷଃ—ଅନଳସଃ ଉଦାସୀନଃ— ପକ୍ଷପାତରହିତଃ, ଗତବ୍ୟଥଃ—ଆଧିଶୂନ୍ୟଃ, ସର୍ବାରମ୍ଭପରିତ୍ୟାଗୀ— ସର୍ବାନ୍-ଆରମ୍ଭାନ୍ —କର୍ମଫଳାନି ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ, ଯଃ ମଦ୍ଭକ୍ତଃ ସ ମେ ପ୍ରିୟଃ ।

ଯଃ ନ ହୃଷ୍ୟତି—ଆନନ୍ଦତି, ନ ଦ୍ୱେଷ୍ଟି, ନ ଶୋଚତି, ନ କାଂକ୍ଷତି—କାମୟତେ, ଶୁଭାଶୁଭପରିତ୍ୟାଗୀ – ଶୁଭାଶୁଭେ—ପୁଣ୍ୟପାପେ ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ, ଯଃ ଭକ୍ତିମାନ୍—ମଦ୍ଭକ୍ତିଯୁକ୍ତଃ, ସଃ ମେ —ମମ ପ୍ରିୟଃ ।

ଶତ୍ରୌ ମିତ୍ରେ ଚ ତଥା ମାନାପମାନୟୋଃ—ପୂଜାପରିଭବୟୋଃ, ସମଃ—ତୁଲ୍ୟବୋଧଃ, ଶୀତୋଷ୍ଣସୁଖଦୁଃଖେଷୁ ସମଃ—ହର୍ଷବିଷାଦଶୂନ୍ୟଃ, ସଙ୍ଗବିବର୍ଜିତଃ—ଆସକ୍ତିରହିତଃ, ତୁଲ୍ୟ-ନିନ୍ଦାସ୍ତୁତିଃ —ତୁଲ୍ୟେ – ସମାନେ ନିନ୍ଦାସ୍ତୁତୀ ଯସ୍ୟ ସଃ, ମୌନୀ— ସଂଯତବାକ୍, ଯେନକେନଚିତ୍ —ଯଥାତଥାଲବ୍ଧେନ, ସନ୍ତୁଷ୍ଟଃ, ଅନିକେତଃ—ନିୟତବାସଶୂନ୍ୟଃ, ସ୍ଥିରମତିଃ—ଆତ୍ମତତ୍ତ୍ୱେ ନିଶ୍ଚଳମତିଃ, ଭକ୍ତିମାନ୍ ନରଃ ମେ —ମମ ପ୍ରିୟଃ ।

ଯେ ତୁ ଯଥୋକ୍ତଂ— ଉକ୍ତପ୍ରକାରଂ, ଇଦଂ ଧର୍ମାମୃତଂ—ଧର୍ମରୂପପୀୟୂଷଂ, ପର୍ଯ୍ୟୁପାସତେ —ଅନୁତିଷ୍ଠନ୍ତି, ଶ୍ରଦ୍ଦଧାନାଃ—ଶ୍ରଦ୍ଧାବନ୍ତଃ, ମତ୍ପରମାଃ — ଅହମେବ ପରମଃ—ନିରତିଶୟଗତିଃ ଯେଷାଂ ତେ, ତେ ଭକ୍ତାଃ ମେ - ମମ ଅତୀବ ପ୍ରିୟାଃ । ୪୮।୫୪ ଶ୍ଳୋକଃ ।

ଯେଉଁ ଭକ୍ତ ସର୍ବଜୀବରେ ଦ୍ୱେଷ ବୁଦ୍ଧିରହିତ, ସମସ୍ତଙ୍କର ସୁହୃଦ୍, ସମସ୍ତଙ୍କର ମଙ୍ଗଳା-କାଂକ୍ଷୀ, ସଂସାରରେ ମମତାଶୂନ୍ୟ, ଅହଙ୍କାରବିହୀନ, ଯାହାଙ୍କର ସୁଖ ଦୁଃଖରେ ସମାନ ଜ୍ଞାନ, ଯେ କ୍ଷମାପରାୟଣ, ସର୍ବଦା ପ୍ରସନ୍ନଚିତ୍ତ, ଭକ୍ତିଯୋଗଯୁକ୍ତ, ଜିତେନ୍ଦ୍ରିୟ, ମୋ ସେବାରେ ଦୃଢ଼ ଅଧ୍ୟବସାୟବିଶିଷ୍ଟ, ଏବଂ ଯେ ମୋଠାରେ ଏକମାତ୍ର ମନ ଓ ବୁଦ୍ଧି ଅର୍ପଣ କରିଅଛି, ସେହି ଭକ୍ତ ମୋର ଅତିଶୟ ପ୍ରିୟ । ଯାହାଙ୍କଠାରୁ କେହି ଉଦ୍ବେଗ ପ୍ରାପ୍ତ ହୁଅନ୍ତି ନାହିଁ, ଏବଂ ଯେ ନିଜେ ଅନ୍ୟଠାରୁ ଉଦ୍ବେଗପ୍ରାପ୍ତ ହେଲେ ମଧ୍ୟ ଉଦ୍ବିଗ୍ନ ହୁଅନ୍ତି ନାହିଁ, ଯେ ସୁଖରେ ଆନନ୍ଦିତ କିମ୍ବା ଦୁଃଖରେ ବିକଳ ହୁଅନ୍ତି ନାହିଁ, ବିପତ୍ପାତରେ ଭୀତ ହୁଅନ୍ତି ନାହିଁ, ଏବଂ ଯାହାଙ୍କର ଚିତ୍ତ ସର୍ବପ୍ରକାର ଉଦ୍ବେଗଶୂନ୍ୟ, ସେହି ଭକ୍ତ ମୋର ପ୍ରିୟ । ଯେ ଭକ୍ତ ଭୋଗରେ ନିସ୍ପୃହ ଏବଂ ବାହ୍ୟାଭ୍ୟନ୍ତର ଶୌଚସମ୍ପନ୍ନ, ଅନଳସ, ନିରପେକ୍ଷ ଆଧିଶୂନ୍ୟ ( ମାନସିକ ଦୁଃଖଶୂନ୍ୟ ) ଅନୁଷ୍ଠିତକର୍ମଫଳତ୍ୟାଗୀ, ସେ ମୋର ପ୍ରିୟ; ଯେ ଇଷ୍ଟପ୍ରାପ୍ତିରେ ହୃଷ୍ଟ ହୁଅନ୍ତିନାହିଁ, ଏବଂ ଅନିଷ୍ଟ ଘଟିଲେ ଦୁଃଖିତ ହୁଅନ୍ତିନାହିଁ, ପ୍ରିୟବିଚ୍ଛେଦରେ ଶୋକାତୁର ହୁଅନ୍ତିନାହିଁ, କାମନା କରନ୍ତି ନାହିଁ, ଯେ ପୁଣ୍ୟ ଓ ପାପକର୍ମ ତ୍ୟାଗ କରିଅଛନ୍ତି, ଯେ ମୋପ୍ରତି ଭକ୍ତିମାନ୍ ସେ ମୋର ପ୍ରିୟ । ଯେ ଶତ୍ରୁ ଓ ମିତ୍ରରେ ସମଦର୍ଶୀ, ମାନ ଓ ଅପମାନରେ ହର୍ଷବିଷାଦଶୂନ୍ୟ, ଯେ ଶୀତ ଓ ଉଷ୍ଣ

ତଥାହି ( ଭାଃ ୨।୨।୫ )—

ଚୀରାଣି କିଂ ପଥି ନ ସନ୍ତି ଦିଶନ୍ତି ଭିକ୍ଷାଂ,
ନୈବାଙ୍ଘ୍ରିପାଃ ପରଭୃତଃ ସରିତୋଽପ୍ୟଶୁଷ୍ୟନ୍ ।
ରୁଦ୍ଧା ଗୁହାଃ କିମଜିତୋଽବତି ନୋପସନ୍ନାନ୍,
କସ୍ମାଦ୍ଭଜନ୍ତି କବୟୋ ଧନଦୁର୍ମ୍ମଦାନ୍ଧାନ୍ । ୬୫ ।

ତବେ ସନାତନ ସବ ସିଦ୍ଧାନ୍ତ ପୁଛିଲ ।
ଭାଗବତସିଦ୍ଧାନ୍ତ ଗୂଢ଼ ସକଳ କହିଲ । ୬୩ ।
ହରିବଂଶେ କହିଯାଛେ ଗୋଲୋକେର ସ୍ଥିତି ।
ଇନ୍ଦ୍ର ଆସି କୈଲ ଯବେ ଶ୍ରୀକୃଷ୍ଣକେ ସ୍ତୁତି । ୬୪ ।
ମୌଷଲଲୀଲା ଆର କୃଷ୍ଣ-ଅନ୍ତର୍ଦ୍ଧାନ ।
କେଶାବତାର ଆର ଯତ ବିରୁଦ୍ଧ ବ୍ୟାଖ୍ୟାନ । ୬୫

ପଥି କିଂ ଚୀରାଣି—ବସ୍ତ୍ରଖଣ୍ଡାନି ନ ସନ୍ତି । ପରଭୃତଃ—ଅଂଘ୍ରିପାଃ, ଭିକ୍ଷାଂ ନୈବ ଦିଶନ୍ତି—ଦାସ୍ୟନ୍ତି କିଂ ? ସରିତଃ ଅପିଅଶୁଷ୍ୟନ୍—ଶୁଷ୍କାଃ କିଂ ? ଗୁହାଃ ରୁଦ୍ଧାଃ କିଂ ? ଅଜିତଃ କିଂ ଉପସନ୍ନାନ୍—ଶରଣାଗତାନ୍ ଜନାନ୍ ନ ଅବତି, କବୟଃ କିଂ ଧନଦୁର୍ମଦାନ୍ଧାନ୍—ଧନେନ ଯଃ ଦୁର୍ମଦଃ ତେନ ଅନ୍ଧାନ୍ ଭଜନ୍ତି । ୬୫ ଶ୍ଳୋକ ।

ସୁଖ ଓ ଦୁଃଖରେ ସମଭାବାପନ୍ନ, ଯେ ବିଷୟରେ ଅନାସକ୍ତ, ଯାହାଙ୍କର ନିନ୍ଦାସ୍ତୁତିରେ ସମାନଜ୍ଞାନ, ଯେ ସଂଯତବାକ୍, ଯଥାଲାଭରେ ସନ୍ତୁଷ୍ଟ, ଏକସ୍ଥାନରେ ନିୟତବାସଶୂନ୍ୟ ବା ମୋହଶୂନ୍ୟ ଓ ସ୍ଥିରମତି ( ପରମତତ୍ତ୍ୱରେ ଯାହାଙ୍କର ମତିସ୍ଥିର ), ସେହି ଭକ୍ତିମାନ୍ ବ୍ୟକ୍ତି ମୋର ପ୍ରିୟ । ଯେଉଁ ଭକ୍ତମାନେ ଉପରୋକ୍ତ ପ୍ରକାରରେ ଏହି ଅମୃତସଦୃଶ ଧର୍ମ ପ୍ରସଙ୍ଗସହିତ ଅନୁଷ୍ଠାନ କରନ୍ତି, ଏବଂ ଯେଉଁମାନେ ସର୍ବଦା ଶ୍ରଦ୍ଧାବାନ୍ ଯେଉଁମାନେ ମୋତେ ଏକମାତ୍ର ଗତି ବୋଲି ଅବଲମ୍ବନ କରିଅଛନ୍ତି, ସେହି ସମସ୍ତ ଭକ୍ତମାନେ ମୋର ଅତିବ ପ୍ରିୟ । ୪୮।୪୯।୫୦।୫୧।୫୨।୫୩।୫୪ ଶ୍ଳୋକାର୍ଥ ।

ଶ୍ରୀଶୁକଦେବବାକ୍ୟ—ପଥରେ ଜୀର୍ଣ୍ଣବସ୍ତ୍ର ପଡ଼ି ଥାଉଁ ଥାଉଁ, ପରପୋଷକ ତରୁମାନ ବିଦ୍ୟମାନ ଥାଉଁ ଥାଉଁ, ଜଳପୂର୍ଣ୍ଣ ଜଳାଶୟ ଥାଉଁ ଥାଉଁ,ଗିରିକନ୍ଦର ଥାଉଁ ଥାଉଁ,ସମସ୍ତ ଅଭାବରେ ଶରଣାଗତପାଳକ ଶ୍ରୀହରି ଥାଉଁ ଥାଉଁ ଅନ୍ନବସ୍ତ୍ର ଜଳ ବାସସ୍ଥାନ ନିମିତ୍ତ କି ସକାଶେ ସାଧୁବ୍ୟକ୍ତି-ମାନେ ଧନମଦାନ୍ଧ ବ୍ୟକ୍ତିମାନଙ୍କର ଉପାସନା କରିବେ । ୬୫ ଶ୍ଳୋକାର୍ଥ ।

ସିଦ୍ଧାନ୍ତ—ଶାସ୍ତ୍ରୀୟମୀମାଂସା । ଗୂଢ଼—ଗମ୍ଭୀର ।

ହରିବଂଶରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କର ଗୋବର୍ଦ୍ଧନଧାରଣର ପର ଇନ୍ଦ୍ର କୃଷ୍ଣଙ୍କୁ ଯେଉଁ ସ୍ତୁତି କରିଅଛନ୍ତି, ସେଥିରେ ଗୋଲୋକ ଶ୍ରୀକୃଷ୍ଣଙ୍କର ବାସସ୍ଥାନ ବୋଲି ବର୍ଣ୍ଣିତ ହୋଇଅଛି । ଏହି ସ୍ତୁତିର ଗୂଢ଼ ସିଦ୍ଧାନ୍ତ ଅଟେ ।

ଶ୍ରୀମଦ୍‌ଭାଗବତବର୍ଣ୍ଣିତ ମୌଷଲଲୀଳା ଓ ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ସେଥିରେ ବର୍ଣ୍ଣିତ କେଶାବତାର ମହିଷୀହରଣପ୍ରଭୃତି କେତେକ ବିଷୟ ସାଧାରଣ ମାୟାମୟ ବ୍ୟାଖ୍ୟା ଖଣ୍ଡନକରି ଗୂଢ଼ସିଦ୍ଧାନ୍ତ ବ୍ୟାଖ୍ୟା ଶ୍ରୀମନ୍ ମହାପ୍ରଭୁ ଶ୍ରୀସନାତନ ଗୋସ୍ୱାମିଙ୍କୁ ଶିକ୍ଷାଦେଲେ । ଏ ସମସ୍ତ ସିଦ୍ଧାନ୍ତ ଶ୍ରୀସନାତନ ଗୋସ୍ୱାମିଙ୍କ ଲିଖିତ ଶ୍ରୀମଦଭାଗବତର ବୈଷ୍ଣବତୋଷଣୀ ଟୀକା ଶ୍ରୀରୂପ ଗୋସ୍ୱାମିଙ୍କ ଲିଖିତ ଲଘୁଭାଗବତାମୃତ ଓ ଜୀବଗୋସ୍ୱାମିଙ୍କ ଲିଖିତ ଶ୍ରୀମଦ୍‌ଭାଗବତର କ୍ରମସନ୍ଦର୍ଭ ଟୀକାରେ ବର୍ଣ୍ଣିତ ହୋଇଅଛି । ୬୪ ।

ମଣ୍ଡିଷୀଦ୍ୱାରଣ-ଆଦି ସବ ମାୟାମୟ ।
ବ୍ୟାଖ୍ୟା ଶିଖାଇଲ ଯୈଛେ ସୁସିଦ୍ଧାନ୍ତ ହୟ । ୯୬ ।
ତବେ ସନାତନ ପ୍ରଭୁର ଚରଣେ ଧରିୟା ।
ନିବେଦନ କୈଲ ଦନ୍ତେ ତୃଣଗୁଚ୍ଛ ଲଞା । ୯୭ ।
ନୀଚଜାତି ନୀଚସେବୀ ମୁଞି ସୁପାମର ।
ସିଦ୍ଧାନ୍ତ ଶିଖାଇଲେ ଏଇ ବ୍ରହ୍ମାର ଅଗୋଚର । ୯୮ ।
ମୋର ମନ ତୁଚ୍ଛ, ଏଇ ସିଦ୍ଧାନ୍ତାମୃତସିନ୍ଧୁ ।
ମୋର ମନ ଛୁଁଇତେ ନାରେ ଇହାର ଏକ ବିନ୍ଦୁ
ପଙ୍ଗୁ ନାଚାଇତେ ଯଦି ହୟ ତୋମାର ମନ ।
ବର ଦେହ ମୋର ମାଥେ ଧରିୟା ଚରଣ । ୧୦୦ ।
'ମୁଞି ଯେ ଶିଖାଲୁଁ ତୋରେ ସ୍ଫୁରୁକ ସକଲ ।'
ଏଇ ତୋମାର ବର ହୈତେ ହବେ ମୋର
ବଲ । ୧୦୧ ।

ତବେ ମହାପ୍ରଭୁ ତାର ଶିରେ ଧରି କରେ ।
ବର ଦିଲ-'ଏଇ ସବ ସ୍ଫୁରୁକ ତୋମାରେ' । ୧୦୨ ।
ସଂକ୍ଷେପେ କହିଲ ପ୍ରେମ-ପ୍ରୟୋଜନ-ସମ୍ବାଦ ।
ବିସ୍ତାରି କହିଲ ନା ଯାୟ ପ୍ରଭୁର ପ୍ରସାଦ । ୧୦୩ ।
ପ୍ରଭୁର ଉପଦେଶାମୃତ ଶୁନେ ଯେଇ ଜନ ।
ଅଚିରାତେ ମିଲେ ତାରେ କୃଷ୍ଣପ୍ରେମଧନ । ୧୦୪ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୧୦୫ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ପ୍ରୟୋଜନପ୍ରେମବର୍ଣ୍ଣନଂ ନାମ
ତ୍ରୟୋବିଂଶପରିଚ୍ଛେଦଃ ।



ପ୍ରୟୋଜନ ସମ୍ବାଦ—ପ୍ରୟୋଜନ ତତ୍ତ୍ୱ । ଇତି ।

ମଧ୍ୟଲୀଳା ୨୩ଶ ପରିଚ୍ଛେଦ ସମାପ୍ତ ।



# ଚତୁର୍ବିଂଶ ପରିଚ୍ଛେଦ ।



ଆତ୍ମାରାମେତିପଦ୍ୟାର୍କସ୍ୟାର୍ଥାଂଶୂନ୍ ଯଃ ପ୍ରକାଶୟନ୍
ଜଗତ୍ତମୋ ଜହାରାବ୍ୟାତ୍ ସ ଚୈତନ୍ୟୋ-
ଦୟାଚଳଃ । ୧ ।

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୨ ।
ତବେ ସନାତନ ପ୍ରଭୁର ଚରଣେ ଧରିୟା ।
ପୁନରପି କହେ କିଛୁ ବିନତି କରିୟା —। ୩ ।
ପୂର୍ବେ ଶୁନିୟାଛି — ତୁମି ସାର୍ବଭୌମସ୍ଥାନେ ।
ଏକ ଶ୍ଲୋକେର ଆଠାର ଅର୍ଥ କରିୟାଛ
ବ୍ୟାଖ୍ୟାନେ । ୪ ।

ତଥାହି ଶ୍ଲୋକଃ ( ଭାଃ ୧।୭।୧୦ ) —
ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ ।୫।
ଆଶ୍ଚର୍ଯ୍ୟ ଶୁନିଞା ମୋର ଉତ୍କଣ୍ଠିତ ମନ ।
କୃପା କରି କହ ଯଦି, ଜୁଡ଼ାୟ ଶ୍ରବଣ । ୬ ।
ପ୍ରଭୁ କହେ — ଆମି ବାତୁଲ, ଆମାର ବଚନେ ।
ସାର୍ବଭୌମ-ବାତୁଲ — ତାହା ସତ୍ୟ କରି
ମାନେ । ୭ ।
କିବା ପ୍ରଲାପିଲାମ୍, କିଛୁ ନାହିକ ସ୍ମରଣେ ।
ତୋମାର ସଙ୍ଗ-ବଲେ ଯଦି କିଛୁ ହୟ ମନେ ।୮।
ସହଜେ ଆମାରେ କିଛୁ ଅର୍ଥ ନାହି ଭାସେ ।
ତୋମାସବାର ସଙ୍ଗ-ବଲେ ଯେ କିଛୁ ପ୍ରକାଶେ ।୯

## ଚତୁର୍ବିଂଶ ପରିଚ୍ଛେଦ ।



ଯଃ — ଚୈତନ୍ୟଃ ଆତ୍ମାରାମେତି ପଦ୍ୟାର୍କସ୍ୟ ଅର୍ଥାଂଶୂନ୍ — ଅର୍ଥାଃ ଏକଷଷ୍ଟିପ୍ରକାରାଃ ତେଏବ ଅଂଶବଃ କିରଣାଃ ତାନ୍, ପ୍ରକାଶୟନ୍ ଜଗତ୍ତମଃ — ଜଗତାଂ ତମଃ, ଜହାର, ସ ଚୈତନ୍ୟୋଦୟାଚଳଃ (ଅସ୍ମାନ୍) ଅବ୍ୟାତ୍ । ୧ ।

ପୂର୍ବେ — ମଧ୍ୟଲୀଳା — ୬ଷ୍ଠ ପରିଚ୍ଛେଦରେ ଦ୍ରଷ୍ଟବ୍ୟ ।

୨ୟ ଶ୍ଲୋକର ଅନ୍ୱୟ — ମଧ୍ୟ: ୬ଷ୍ଠ ପରି: ୧୬୩ ଶ୍ଲୋକ ଦ୍ରଷ୍ଟବ୍ୟ ।

---

ଯେ ଆତ୍ମାରାମ ଶ୍ଲୋକରୂପ ସୂର୍ଯ୍ୟଙ୍କର ଏକଷଠି ପ୍ରକାର ଅର୍ଥରୂପ କିରଣାବଳୀ ପ୍ରକାଶ କରି ଜଗତର ତମୋ ନାଶ କରି ଅଛନ୍ତି ସେହି ଚୈତନ୍ୟରୂପ ଉଦୟଗିରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୧ମ ଶ୍ଲୋକାର୍ଥ ।

ସୂତ ଶୌନକ ପ୍ରଭୃତିଙ୍କୁ କହିଲେ — ସର୍ବଚିତ୍ତାକର୍ଷକ ଶ୍ରୀହରିଙ୍କର ଅଦ୍ଭୁତ ଗୁଣର କଥା ଆଉ କଣ କହିବ ଯେ, ସେ ଆତ୍ମାରାମ ମୁନିମାନଙ୍କୁ ସୁଦ୍ଧା ଆକର୍ଷଣ କରନ୍ତି । ଯେହେତୁ ମାୟାବନ୍ଧଛେଦନକାରୀ ବା ଅହଙ୍କାରଶୂନ୍ୟ ବ୍ରହ୍ମାନନ୍ଦଅନୁଭବୀ ମୁନିମାନଙ୍କର କୌଣସି ଆକାଂକ୍ଷା ନ ଥିଲେହେଁ ସେମାନେ ସୁଦ୍ଧା ବଚନ୍ଦକର୍ମା ଭଗବାନଙ୍କୁ ଫଳାଭିସନ୍ଧିରହିତ ଭକ୍ତି କରନ୍ତି । ୨ୟ ଶ୍ଲୋକାର୍ଥ ।

ଏକାଦଶ ପଦ ଏଇ ଶ୍ଳୋକ ସୁନିର୍ମ୍ମଳ ।
ପୃଥକ୍ ନାନା ଅର୍ଥ ପଦେ କରେ ଝଲମଲ । ୮ ।
'ଆତ୍ମା'-ଶବ୍ଦେ ବ୍ରହ୍ମ, ଦେହ, ମନ, ଯତ୍ନ, ଧୃତି ।
ବୁଦ୍ଧି, ସ୍ୱଭାବ — ଏଇ ସାତ-ଅର୍ଥପ୍ରାପ୍ତି । ୯ ।

ତଥାହି ବିଶ୍ୱପ୍ରକାଶେ—

ଆତ୍ମା ଦେହମନୋବ୍ରହ୍ମସ୍ୱଭାବଧୃତିବୁଦ୍ଧିଷୁ ।
ପ୍ରଯତ୍ନେ ଚ । ୩ । ଇତି ।

ଏଇ ସାତେ ରମେ ଯେଇ, ସେଇ ଆତ୍ମାରାମଗଣ ।
ଆତ୍ମାରାମଗଣେର ଆଗେ କରିବ ଗଣନ । ୧୦ ।
'ମୁନ୍ୟାଦି ଶବ୍ଦେର ଅର୍ଥ କହି ଶୁନ ସନାତନ !
ପୃଥକ୍ ପୃଥକ୍ ଅର୍ଥ, ପାଛେ କରିବ ମିଲନ । ୧୧ ।
'ମୁନି'-ଶବ୍ଦେ — ମନନଶୀଳ, ଆର କହେ ମୌନୀ ।
ତପସ୍ୱୀ, ବ୍ରତୀ, ଯତି, ଆର ଋଷି, ମୁନି । ୧୨ ।
'ନିର୍ଗ୍ରନ୍ଥ'-ଶବ୍ଦେ କହେ — ଅବିଦ୍ୟାଗ୍ରନ୍ଥିହୀନ ।
ବିଧି ନିଷେଧ ବେଦଶାସ୍ତ୍ରଜ୍ଞାନାଦିବିହୀନ । ୧୩ ।
ମୂର୍ଖ-ନୀଚ-ମ୍ଳେଚ୍ଛ-ଆଦି ଶାସ୍ତ୍ରରକ୍ତଗଣ ।
ଧନସଞ୍ଚୟୀ, ନିର୍ଗ୍ରନ୍ଥ, ଆର ଯେ ନିର୍ଧନ । ୧୪ ।

ତଥାହି ତତ୍ରୈବ—

ନିର୍ନିଶ୍ଚୟେ ନିଷ୍କ୍ରମାର୍ଥେ ନିର୍ନିର୍ମ୍ମାଣନିଷେଧୟୋଃ ।୪।
ଗ୍ରନ୍ଥୋ ଧନେଽଥ ସନ୍ଦର୍ଭେ ବର୍ଣ୍ଣସଗ୍ରଥ-
ନେଽପି ଚ । ୫ ।

---

ନିର୍ ଶବ୍ଦସ୍ୟ ନିଶ୍ଚୟାର୍ଥତ୍ୱେନ ଧନସଞ୍ଚୟୀତି ବିବରଣଂ ନିଷେଧାର୍ଥେ ନ ତୁ ନିର୍ଧନେତି ବି, ଚ, ।

---

ଏକାଦଶ ପଦ—( ୧ ) ଆତ୍ମାରାମାଃ, ( ୨ ) ଚ ( ୩ ) ମୁନୟଃ ( ୪ ) ନିର୍ଗ୍ରନ୍ଥାଃ ( ୫ ) ଅପି ( ୬ ) ଉରୁକ୍ରମେ ( ୭ ) କୁର୍ବନ୍ତି ( ୮ ) ଅହୈତୁକୀଂ ( ୯ ) ଭକ୍ତିଂ ( ୧୦ ) ଇତ୍ଥମ୍ଭୂତଗୁଣଃ ( ୧୧ ) ହରିଃ । ୮ ।

ଉପରୋକ୍ତ ଏକାଦଶ ପଦରୁ ପ୍ରଥମେ ଆତ୍ମାରାମ ପଦର ଅର୍ଥ କରୁଅଛନ୍ତି । ୯ ।

୩ୟ ଶ୍ଳୋକ — ଆତ୍ମାଶବ୍ଦର ଦେହ, ମନ, ବ୍ରହ୍ମ, ସ୍ୱଭାବ, ଧୃତି, ବୁଦ୍ଧି ଓ ପ୍ରଯତ୍ନ ଏହି ସାତ ଅର୍ଥ । ୩ୟ ଶ୍ଳୋକାର୍ଥ ।

ଆଗେ—ପରେ । ୧୦ ।

ମୁନୟଃ ଶବ୍ଦର ଅର୍ଥ କରୁଅଛନ୍ତି । ୧୧ ।

କରିବ ମିଳନ—ଶ୍ଳୋକାର୍ଥରେ ମିଳନ କରିବେ । ୧୧ ।

ଅବିଦ୍ୟା ଗ୍ରନ୍ଥି ହୀନ— ମାୟାଗତ ଦେହ ବିଧି ନିଷେଧାତୀତ । ୧ ।

ବେଦ ବି ଶାସ୍ତ୍ରଜ୍ଞାନବିହୀନ —ଅର୍ଥାତ୍ ମୂର୍ଖ ନୀଚ । ୨ ।

ଶାସ୍ତ୍ରରକ୍ତ— ଯେଉଁମାନେ ଶାସ୍ତ୍ର ମାନନ୍ତି ନାହିଁ, ଯଥା—ମ୍ଳେଚ୍ଛ । ୩ ।

ଧନସଞ୍ଚୟୀ — ନିର୍ଦ୍ଧନ । ୪ ।

ନିର୍‌ଉପସର୍ଗ—ନିଶ୍ଚୟ, ନିଷ୍କ୍ରମଣ, ନିର୍ମାଣ ଓ ନିଷେଧ ଏହି ଅର୍ଥମାନଙ୍କରେ ପ୍ରଯୁକ୍ତ ହୁଏ । ଗ୍ରନ୍ଥଶବ୍ଦ, ଧନ, ସନ୍ଦର୍ଭ ଓ ବର୍ଣ୍ଣବିନ୍ୟାସ ଅର୍ଥରେ ପ୍ରଯୁକ୍ତ ହୁଏ ।

ନିର୍‌ଶବ୍ଦର ନିଶ୍ଚୟାର୍ଥରେ ଧନସଞ୍ଚୟୀ ଓ ନିଷେଧାର୍ଥରେ ନିର୍ଦ୍ଧନ ଏହି ଅର୍ଥ ଗ୍ରହଣ କରାହୋଇଅଛି । ୪ର୍ଥ ୫ମ ଶ୍ଳୋକାର୍ଥ ।

'ଉରୁକ୍ରମ'-ଶବ୍ଦେ କହେ— ବଡ଼ ଯାର କ୍ରମ ।
'କ୍ରମ'-ଶବ୍ଦେ କହେ – ପାଦବିକ୍ଷେପଣ ॥
ଶକ୍ତି, କମ୍ପଯୁକ୍ତ, ପରିପାଟୀ, ଶକ୍ତ୍ୟେ ଅକ୍ରମଣ ।
ଚରଣ ଚାଳନେ କାଁପାଇଲ ତ୍ରିଭୁବନ । ୧୭ ।

ତଥାହି ( ଭାଃ ୨।୭।୪୦ )—

ବିଷ୍ଣୋର୍ନୁ ବୀର୍ଯ୍ୟଗଣନାଂ କତମୋଽର୍ହତୀହ,
ଯଃ ପାର୍ଥିବାନ୍ୟପି କବିର୍ବିମମେ ରଜାଂସି ।
ଚସ୍କମ୍ଭ ଯଃ ସ୍ୱରହସାସ୍ଖଲତା ତ୍ରିପୃଷ୍ଠଂ,
ଯସ୍ମାତ୍ ତ୍ରିସାମ୍ୟସଦନାଦୁରୁ କମ୍ପୟାନମ୍ । ୬ ।

ବିଭୁରୂପେ ବ୍ୟାପେ ଶକ୍ତ୍ୟେ ଧାରଣ ପୋଷଣ ।
ମାଧୁର୍ଯ୍ୟଶକ୍ତ୍ୟେ ଗୋଲୋକ-ଐଶ୍ୱର୍ଯ୍ୟ ପରବ୍ୟୋମ
ମାୟାଶକ୍ତ୍ୟେ ବ୍ରହ୍ମାଣ୍ଡାଦି ପରିପାଟୀତେ ସୃଜନ ।
'ଉରୁକ୍ରମ'-ଶବ୍ଦେର ଏଇ ଅର୍ଥ ନିରୂପଣ । ୧୮ ।

ତଥାହି ବିଶ୍ୱପ୍ରକାଶେ—

କ୍ରମଃ ଶକ୍ତୌ ପରିପାଟ୍ୟାଂ କ୍ରମଶ୍ଚାଳନ-
କମ୍ପୟୋଃ । ୭ ।

ଇହ— ସଂସାରେ ଯଃ କବିଃ—ବୁଦ୍ଧିମାନ୍ ପୁରୁଷଃ, ପାର୍ଥିବାନି ରଜାଂସି ଅପି ବିମମେ – ବିଗଣିତବାନ୍ ତାଦୃଶଃ ଅପି କତମଃ ନୁ ଯଃ—ବିଷ୍ଣୁଃ, ଯସ୍ମାତ୍—କାରଣାତ୍ ତୈବିକ୍ରମେ ଅସ୍ଖଲତା —ପ୍ରତିଘାତଶୂନ୍ୟେନ, ସ୍ୱରହଂସା—ସ୍ୱପାଦବେଗେନ, ତ୍ରିସାମ୍ୟସଦନାତ୍— ତ୍ରିସାମ୍ୟରୂପଂ ସଦନଂ —ଅଧିଷ୍ଠାନଂ ପ୍ରଧାନଂ ତସ୍ମାତ୍ ଆରଭ୍ୟ, ଉରୁ—ଅଧିକଂ କମ୍ପମାନଂ କମ୍ପେନ ଯାନଂ ଯସ୍ୟ ଇତିବା ଅତଃ ତ୍ରିପୃଷ୍ଠଂ ଚସ୍କମ୍ଭ—ଧୃତବାନ୍ ତସ୍ୟ ବିଷ୍ଣୋଃ ବୀର୍ଯ୍ୟଗଣନାଂ (କର୍ତ୍ତୁଂ କଃ) ଅର୍ହତି । ୬ଷ୍ଠ ଶ୍ଲୋକଃ ।

ପାଦବିକ୍ଷେପଣ ଇତ୍ୟସ୍ୟାର୍ଥମାହ ଶକ୍ତିତ୍ୟାଦି । ଶକ୍ତ୍ୟାକାରଣଭୂତୟା ପରିପାଟୀକମ୍ପଯୁକ୍ତୟା ଆକ୍ରମଣମିତ୍ୟର୍ଥଃ । ଆକ୍ରମଣସ୍ୟ ଫଲମାହ ଚରଣେତ୍ୟାଦି । ବି, ଚ,

ବିଭୁରୂପେ ଇତ୍ୟାଦି ସୃଜନ ପର୍ଯ୍ୟନ୍ତଂ କ୍ରମସ୍ୟାର୍ଥ ବିଶେଷରୂପାଭ୍ୟାଃ ଶକ୍ତେର୍ବିବରଣଂ ଗୋଲୋକଃ—ଗବାଂଲୋକଃ ଗୋଲୋକଃ ଗୋକୁଲ ଇତ୍ୟର୍ଥଃ । ବି, ଚ,

ଉରୁକ୍ରମ ଶବ୍ଦର ଅର୍ଥ କରୁଅଛନ୍ତି— ଉରୁ ଶବ୍ଦର ଅର୍ଥ ବୃହତ୍, କ୍ରମଶବ୍ଦର ଅର୍ଥ ପାଦ ବିକ୍ଷେପ ଅର୍ଥାତ୍ ଶକ୍ତିବଳରେ ପରିପାଟୀର ସହିତ କମ୍ପଯୁକ୍ତ ଆକ୍ରମଣ ଯାହାଙ୍କଦ୍ୱାରା ହୁଏ ଅର୍ଥାତ୍ ଶ୍ରୀକୃଷ୍ଣ, ତାହାର ଫଳ ଏହି ଯେ ଚରଣଚାଳନଦ୍ୱାରା ତ୍ରିଭୁବନ କମ୍ପନ କରିଥିଲେ । ୧୭ ।

ଶ୍ରୀବ୍ରହ୍ମା ନାରଦଙ୍କୁ କହୁଅଛନ୍ତି— ଯେଉଁ ପଣ୍ଡିତ ବ୍ୟକ୍ତି ପୃଥିବୀର ପରମାଣୁ ସୁଦ୍ଧା ଗଣି ପାରନ୍ତି, ସେ ବିଷ୍ଣୁଙ୍କର ବୀର୍ଯ୍ୟ ଗଣନା କରିବାକୁ ସମର୍ଥ ନୁହନ୍ତି । ଯେଉଁ ବିଷ୍ଣୁ ପ୍ରତିଘାତଶୂନ୍ୟ ପାଦବେଗଦ୍ୱାରା ପ୍ରକୃତିର ଆବରଣ ପର୍ଯ୍ୟନ୍ତ କମ୍ପନ କରି ସତ୍ୟଲୋକ ପର୍ଯ୍ୟନ୍ତ ଧାରଣ କରିଥିଲେ ୬ଷ୍ଠ ଶ୍ଲୋକାର୍ଥ ।

କ୍ରମ ଶବ୍ଦର ଅର୍ଥ ବିଶେଷ ଶକ୍ତି (ଶ୍ରୀଭଗବତ୍‌ଶକ୍ତି) ତାହାର ବିବରଣ କହୁଅଛନ୍ତି— ଶ୍ରୀକୃଷ୍ଣ ବ୍ୟାପକଶକ୍ତିଦ୍ୱାରା ସର୍ବବ୍ୟାପି ସମସ୍ତ ବସ୍ତୁ ଧାରଣ କରିଅଛନ୍ତି ଓ ପ୍ରତିପାଳନ କରୁଅଛନ୍ତି । ମାଧୁର୍ଯ୍ୟ ଶକ୍ତିଦ୍ୱାରା ପରିପାଟୀର ସହିତ ଗୋଲୋକ ( ଗୋକୁଳ ) ଐଶ୍ୱର୍ଯ୍ୟ ଶକ୍ତିଦ୍ୱାରା ପରବ୍ୟୋମ ଏବଂ ମାୟା ଶକ୍ତିଦ୍ୱାରା ବ୍ରହ୍ମାଣ୍ଡାଦି ସୃଷ୍ଟି କରନ୍ତି । ୧୭।୧୮ ।

କ୍ରମଶବ୍ଦ ଶକ୍ତି ପରିପାଟୀ ଚାଳନ ଓ କମ୍ପ ଏହି ଅର୍ଥମାନଙ୍କରେ ପ୍ରଯୁକ୍ତ ହୁଏ । ୭ମ ଶ୍ଲୋକାର୍ଥ ।

'କୁର୍ବନ୍ତି' ପଦ ଏଇ ପରସ୍ମୈପଦ ହୟ ।
'କୃଷ୍ଣସୁଖ ନିମିତ୍ତ ଭଜନେ ତାତ୍ପର୍ଯ୍ୟ କହୟ ।୧୯।
ତଥାହି ପାଣିନିଃ ( ୧।୩।୭୨ )—
ସିଦ୍ଧାନ୍ତକୌମୁଦ୍ୟାଂ ଭ୍ୱାଦିପ୍ରକରଣେ—
ସ୍ୱରିତଞିତଃ କର୍ତ୍ତ୍ରଭିପ୍ରାୟେ କ୍ରିୟାଫଳେ । ୮ ।
'ହେତୁ'-ଶବ୍ଦେ କହେ—ଭୁକ୍ତି ଆଦି ବାଞ୍ଛାନ୍ତରେ ।
ଭୁକ୍ତି, ସିଦ୍ଧି, ମୁକ୍ତି—ମୁଖ୍ୟ ଏ ତିନ ପ୍ରକାରେ ।
ଏକ 'ଭୁକ୍ତି' କହେ—ଭୋଗ ଅନନ୍ତପ୍ରକାର ।
'ସିଦ୍ଧି' ଅଷ୍ଟାଦଶ, 'ମୁକ୍ତି' ପଞ୍ଚପ୍ରକାର । ୨୦ ।

ଏଇ ଯାହାଁ ନାହି, ତାହାଁ ଭକ୍ତି ଅହୈତୁକୀ ।
ଯାହା ହୈତେ ବଶ ହୟ ଶ୍ରୀକୃଷ୍ଣ କୌତୁକୀ ।
'ଭକ୍ତି'-ଶବ୍ଦେର ଅର୍ଥ ହୟ ଦଶବିଧାକାର—
ଏକ ସାଧନ, ପ୍ରେମଭକ୍ତି ନବପ୍ରକାର ।"
ରତିଲକ୍ଷଣା-ପ୍ରେମଲକ୍ଷଣା-ଇତ୍ୟାଦି ପ୍ରଚାର ।
ଭାବରୂପା, ମହାଭାବଲକ୍ଷଣରୂପା ଆର । ୨୩ ।
ଶାନ୍ତଭକ୍ତେର ରତି ବାଢ଼େ ପ୍ରେମପର୍ଯ୍ୟନ୍ତ ।
ଦାସ୍ୟଭକ୍ତେର ରତି ହୟ ରାଗଦଶା ଅନ୍ତ ।

ସ୍ୱରିତେତଃ ଞିତ୍ ଶ୍ଚ ଧାତୋଃ ତଦୈବାତ୍ମନେପଦଂ ସ୍ୟାତ୍ ଯଦା କର୍ତ୍ତାରଂ ଅଭି ସଙ୍କେତୋ ଭବେନ ପ୍ରେରିତ—ପ୍ରାପ୍ନୋତି ଯତ୍ କ୍ରିୟାଫଳଂ ତଦାତ୍ମନେପଦଂ । ଅତ୍ର ସୁଖପ୍ରାପ୍ତିରେବଫଳଂ ତତ୍ତୁ ଶ୍ରୀକୃଷ୍ଣସ୍ୟୈବ ନତୁ ମୁନୀନାଂ । ୮ମ ଶ୍ଳୋକାନ୍ୱୟଃ ।

ନବପ୍ରକାର ସାଦ୍ଧ ରତାଦି-ରତିପ୍ରେମ ସ୍ନେହମାନ ପ୍ରଣୟରାଗାନୁରାଗଭାବମହାଭାବାଃ ଇତି ନବ ସଂଖ୍ୟା । ବ, ଚ, ।

---

କୁର୍ବନ୍ତି—କର୍ତ୍ତାର କ୍ରିୟାଫଳପ୍ରାପ୍ତି ଅଭିପ୍ରାୟ ହେଲେ ଆତ୍ମନେପଦରେ ପ୍ରୟୋଗ ହୁଏ । କିନ୍ତୁ କର୍ତ୍ତାଭିନ୍ନ ଅପରର କ୍ରିୟାଫଳପ୍ରାପ୍ତିର ଅଭିପ୍ରାୟ ହେଲେ ପରସ୍ମୈପଦରେ ପ୍ରୟୋଗ ହୁଏ, କୁର୍ବନ୍ତି ଏହା ପରସ୍ମୈପଦନିଷ୍ପନ୍ନ, ତେଣୁ ମୁନିମାନଙ୍କର ଭଜନର ତାତ୍ପର୍ଯ୍ୟ ସ୍ୱସୁଖ ସକାଶେ ନ ହୋଇ ଭଜନୀୟ ଶ୍ରୀକୃଷ୍ଣଙ୍କ ସକାଶେ ଅଟେ । ୧୯ ।

ସ୍ୱରିତସ୍ୱର ଓ ଞ ଯହିଁରେ ଇତ୍ ହୁଏ ସେପରି କୃ ପ୍ରଭୃତି ଧାତୁ ଆତ୍ମନେପଦୀ ଓ ପରସ୍ମୈପଦୀ ଏହିରୂପ ଉଭୟପଦୀ ହୁଅନ୍ତି । ଯେଉଁଠାରେ କ୍ରିୟାଫଳ କର୍ତ୍ତାକୁ ପ୍ରାପ୍ତ କରାଏ ସେଠାରେ ଆତ୍ମନେପଦୀ ଏବଂ ଯେଉଁଠାରେ କ୍ରିୟାଫଳ କର୍ତ୍ତାଭିନ୍ନ ଅପରକୁ ପ୍ରାପ୍ତ କରାଏ ସେଠାରେ ପରସ୍ମୈପଦୀ । ୮ମ ଶ୍ଳୋକାର୍ଥ ।

ଅହୈତୁକୀ ଶବ୍ଦର ଅର୍ଥ କହୁଅଛନ୍ତି—ଭୁକ୍ତି ଆଦି ବାଞ୍ଛାନ୍ତର—ଭୋଗଆଦି କାମନା, ସେହି କାମନାମାନଙ୍କ ମଧ୍ୟରେ ଭୁକ୍ତିଭୋଗ୍ୟ, ସିଦ୍ଧି-ପ୍ରତିଷ୍ଠାଇଚ୍ଛା, ମୁକ୍ତି-ମୋକ୍ଷଇଚ୍ଛା । ୨୦ ।

ଅଷ୍ଟାଦଶସିଦ୍ଧି—୧ ଅଣିମା, ୨ ମହିମା ୩ ଲଘିମା, ୪ ପ୍ରାପ୍ତି, ୫ ପ୍ରାକାମ୍ୟ, ୬ ଈଶିତ୍ୱ, ୭ ବଶିତ୍ୱ, ୮ କାମାବସାୟିତ୍ୱ, ୯ ଊର୍ମ୍ମିମତ୍ତ୍ୱ, ୧୦ ଦୂରଶ୍ରବଣ, ୧୧ ଦୂରଦର୍ଶନ, ୧୨ ମନୋଜବ, ୧୩ କାମରୂପତା, ୧୪ ପରକାୟ ପ୍ରବେଶ, ୧୫ ଇଚ୍ଛାମୃତ୍ୟୁ, ୧୬ ଦେବକ୍ରୀଡ଼ାପ୍ରାପ୍ତି, ୧୭ ସଙ୍କଳ୍ପାନୁରୂପସିଦ୍ଧି, ୧୮ ଅପ୍ରତିହତ ଆଜ୍ଞା ।

ଅହୈତୁକୀ—କାମନାଶୂନ୍ୟ । ୨୧ ।

ଏକ ସାଧନ—ସାଧନଭକ୍ତି ।

ପ୍ରେମଭକ୍ତି ନବପ୍ରକାର ଯଥା—ରତି, ପ୍ରେମ, ସ୍ନେହ, ମାନ, ପ୍ରଣୟ, ରାଗ, ଅନୁରାଗ, ଭାବ, ମହାଭାବ । ୨୨ ।

ପର୍ଯ୍ୟନ୍ତ—ଏଠାରେ ସୀମା କରିବା । ଅନ୍ତ-ପୂର୍ଣ୍ଣରୂପରେ । ୨୪ ।

ସଖୀଗଣେର ରତି ଅନୁରାଗ ପର୍ଯ୍ୟନ୍ତ ।
ପିତୃ-ମାତୃ-ସ୍ନେହ-ଆଦି ଅନୁରାଗ ଅନ୍ତ । ୨୫ ।
କାନ୍ତାଗଣେର ରତି ପାୟ ମହାଭାବସୀମା ।
'ଭକ୍ତି' ଶବ୍ଦେର ଏଇ ସବ ଅର୍ଥେର ମହିମା ।
'ଇତ୍ଥମ୍ଭୂତ'-ଗୁଣ-ଶବ୍ଦେର ଶୁନହ ବ୍ୟାଖ୍ୟାନ ।
'ଇତ୍ଥଂ'ଶବ୍ଦେର ଭିନ୍ନ ଅର୍ଥ 'ଗୁଣ' ଶବ୍ଦେର ଆନ ।
'ଇତ୍ଥମ୍ଭୂତ' ଶବ୍ଦେର ଅର୍ଥ--ପୂର୍ଣ୍ଣାନନ୍ଦମୟ ।
ଯାର ଆଗେ ବ୍ରହ୍ମାନନ୍ଦ ତୃଣପ୍ରାୟ ହୟ । ୨୮ ।
ତଥାହି ଭକ୍ତିରସାମୃତସିନ୍ଧୌ ( ୧।୧।୨୬ )—
ହରିଭକ୍ତିସୁଧୋଦୟବଚନମ୍ ( ୧୪।୩୬ )—
ତ୍ୱତ୍ସାକ୍ଷାତ୍କରଣାହ୍ଲାଦବିଶୁଦ୍ଧାବ୍ଧିସ୍ଥିତସ୍ୟ ମେ ।
ସୁଖାନି ଗୋଷ୍ପଦାୟନ୍ତେ ବ୍ରାହ୍ମାଣ୍ୟପି
ଜଗଦ୍‌ଗୁରୋ । ୯ ।

ସର୍ବାକର୍ଷକ ସର୍ବାହ୍ଲାଦକ ମହା ରସାୟନ ।
ଆପନାର ବଲେ କରେ ସର୍ବ-ବିସ୍ମାରଣ । ୨୯ ।
ଭୁକ୍ତି ସିଦ୍ଧି ମୁକ୍ତି ସୁଖ ଛାଡ଼ାୟ ଯାର ଗନ୍ଧେ ।
ଅଲୌକିକ ଶକ୍ତି ଗୁଣେ କୃଷ୍ଣକୃପାୟ ବାନ୍ଧେ ।
ଶାସ୍ତ୍ରଯୁକ୍ତି ନାହି ଇହାଁ ସିଦ୍ଧାନ୍ତବିଚାର ।
ଏଇ ସ୍ୱଭାବଗୁଣେ ଯାତେ ମାଧୁର୍ଯ୍ୟେର ସାର ।୩୧।
'ଗୁଣ'-ଶବ୍ଦେର ଅର୍ଥ— କୃଷ୍ଣେର ଗୁଣ ଅନନ୍ତ ।
ସଚ୍ଚି-ଚିତ୍-ରୂପ-ଗୁଣ— ସବ ପୂର୍ଣ୍ଣାନନ୍ଦ । ୩୨ ।
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ କାରୁଣ୍ୟ ସ୍ୱରୂପ ପୂର୍ଣ୍ଣତା ।
ଭକ୍ତବାତ୍ସଲ୍ୟ ଆତ୍ମପର୍ଯ୍ୟନ୍ତ-ବଦାନ୍ୟତା ।
ଅଲୌକିକ ରୂପ-ରସ-ସୌରଭାଦି ଗୁଣ ।
କାରେ ମନ କୋନ ଗୁଣେ କରେ ଆକର୍ଷଣ ।୩୪।

କୃଷ୍ଣ କୃପାକର୍ତ୍ତୀ ବଧ୍ନାତି ଇତ୍ୟର୍ଥଃ । ୩୦ ବ, ଚ,
କେନାପି ଗୁଣେନ କସ୍ୟାପି ମନ ଆକର୍ଷତୀତ୍ୟର୍ଥଃ । ୩୪ ବ, ଚ,

**ଆନ**-ଅନ୍ୟ । ୨୬ । ଇତ୍ଥମ୍ଭୂତ-ଏହିପ୍ରକାର ଏଠାରେ ଭାବାର୍ଥ ଗୁଣର ବିଶେଷଣପୂର୍ଣ୍ଣାନନ୍ଦମୟ । ୨୮।

୯ ମ ଶ୍ଳୋକର ଅନ୍ୱୟ-ଆଦି ୭ମ ପର ✱ ପୃଷ୍ଠାର ଦ୍ରଷ୍ଟବ୍ୟ ।

ଶ୍ରୀ ପ୍ରହ୍ଲାଦ ନୃସିଂହଦେବଙ୍କୁ ସ୍ତୁତିକରୁଅଛନ୍ତି—ହେ ଜଗଦ୍‌ଗୁରୋ ଭଗବନ୍ ଆପଣଙ୍କ ଦର୍ଶନ ଲାଭ କରି ମୁଁ ଯେଉଁ ବିଶୁଦ୍ଧ ଆନନ୍ଦ ସମୁଦ୍ରରେ ନିମଗ୍ନ ହୋଇଅଛି, ତାହାର ତୁଳନାରେ ସମାଧିସ୍ଥ ବ୍ରହ୍ମାନୁଭବଜନିତ ଆନନ୍ଦ ଗୋଷ୍ପଦର ବାରିତୁଲ୍ୟ ଅର୍ଥାତ୍ ଅକିଞ୍ଚିତ୍କର । ୯ ।

ଇତ୍ଥମ୍ଭୂତ ପଦର ଅନ୍ୟ ଅର୍ଥ କରୁଅଛନ୍ତି— ଶ୍ରୀକୃଷ୍ଣଙ୍କ ଅଲୌକିକ ଶକ୍ତିଗୁଣ ସର୍ବାକର୍ଷକ, ସର୍ବାନନ୍ଦଦାୟକ, ମହାହ୍ଲାଦକାରକ ଏବଂ ସେହି ଗୁଣ ନିଜ ବଳରେ ସମସ୍ତ ସୁଖ ଦୁଃଖାଦିଦ୍ୱନ୍ଦ୍ୱଭାବକୁ ବିସ୍ମରଣ କରାଏ ଏବଂ ଯାହାର ଲେଶମାତ୍ର ସମ୍ବନ୍ଧ ଭୁକ୍ତି, ସିଦ୍ଧି, ଓ ମୁକ୍ତିସ୍ପୃହା ଦୂର କରାଏ ଏବଂ ପରିଣାମରେ ଶ୍ରୀକୃଷ୍ଣଙ୍କ କୃପାରଜ୍ଜୁଦ୍ୱାରା ବାନ୍ଧି ରଖେ ଅଥାତ୍ ଶ୍ରୀକୃଷ୍ଣଙ୍କ ନିତ୍ୟସେବାରେ ନିଯୁକ୍ତ କରାଏ । ୨୯।୩୦ ।

ଶ୍ରୀକୃଷ୍ଣଙ୍କର ଏପ୍ରକାର ଅଲୌକିକ ଗୁଣମାଧୁର୍ଯ୍ୟର ମାହାତ୍ମ୍ୟହେତୁ ସ୍ୱଭାବତଃ ପରମସ୍ୱତନ୍ତ୍ରତା ଏହା ଶ୍ରୀକୃଷ୍ଣଙ୍କ କୃପାପକ୍ଷରେ ଶାସ୍ତ୍ରଯୁକ୍ତି କିମ୍ବା ସିଦ୍ଧାନ୍ତାଦିର ଅପେକ୍ଷା କରନ୍ତି ନାହିଁ । ୩୧ ।

ଗୁଣଶବ୍ଦର ଅର୍ଥ କରୁଅଛନ୍ତି । ୩୨ ।

ଶ୍ରୀକୃଷ୍ଣ ପୂର୍ଣ୍ଣାନନ୍ଦମୟ ହେତୁ ତାହାଙ୍କର ସଚ୍ଚିଦାନନ୍ଦମୟରୂପ ଗୁଣ ଓ ଲୀଳା ଆଦି ସମସ୍ତ ପୂର୍ଣ୍ଣାନନ୍ଦମୟ । ତାହାଙ୍କର ଶ୍ରୀବିଗ୍ରହ ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ କାରୁଣ୍ୟ ଓ ଭକ୍ତବାତ୍ସଲ୍ୟ ଗୁଣମାନଙ୍କରେ ପୂର୍ଣ୍ଣ । ଭକ୍ତବାତ୍ସଲ୍ୟ ଗୁଣରେ ଭକ୍ତଠାରେ ଆପଣାକୁ ଦାନ କରନ୍ତି । ଏହିପରି ସେ ଦାତା ଶିରୋମଣି, ଶ୍ରୀକୃଷ୍ଣଙ୍କର ଶବ୍ଦ, ସ୍ପର୍ଶ, ରୂପ, ରସ, ଲୀଳା ଓ ବଂଶୀଧ୍ୱନି ଆଦି ଗୁଣମାନଙ୍କ ମଧ୍ୟରୁ କୌଣସି କୌଣସି ଗୁଣ କୌଣସି କୌଣସି ଭକ୍ତର ମନକୁ ଆକର୍ଷଣ କରନ୍ତି । ତାହାର ଉଦାହରଣ ନିମ୍ନରେ ଦର୍ଶାଉଅଛନ୍ତି । ୩୩।୩୪

ସନକାଦିର ମନ ହରିଲ ସୌରଭାଦିଗୁଣେ ।
ଶୁକଦେବେର ମନ ହରିଲ ଲୀଳା ଶ୍ରବଣେ ।୩୫।

ତଥାହି ( ଭାଃ— ୩।୧୫।୪୩ )—

ତସ୍ୟାରବିନ୍ଦନୟନସ୍ୟ ପଦାରବିନ୍ଦ-,
କିଞ୍ଜଲ୍କମିଶ୍ରତୁଲସୀମକରନ୍ଦବାୟୁଃ ।
ଅନ୍ତର୍ଗତଃ ସ୍ୱବିବରେଣ ଚକାର ତେଷାଂ,
ସଂକ୍ଷୋଭମକ୍ଷରଜୁଷାମପି ଚିତ୍ତତନ୍ୱୋଃ । ୧୦ ।

ତଥାହି ( ଭାଃ— ୨।୧।୯ )—

ପରିନିଷ୍ଠିତୋଽପି ନୈର୍ଗୁଣ୍ୟେ ଉତ୍ତମଶ୍ଳୋକ ଲୀଲୟା ।
ଗୃହୀତଚେତା ରାଜର୍ଷେ ଆଖ୍ୟାନଂ ଯଦଧୀତବାନ୍ । ୧୧ ।

ତଥାହି ( ଭାଃ— ୧୨।୧୨।୬୨ )—

ସ୍ୱସୁଖନିଭୃତଚେତାସ୍ତଦ୍‌ବ୍ୟୁଦସ୍ତାନ୍ୟଭାବୋ-
ଽପ୍ୟଜିତରୁଚିରଲୀଲାକୃଷ୍ଟସାରସ୍ତଦୀୟମ୍ ।
ବ୍ୟତନୁତ କୃପୟା ଯସ୍ତତ୍ତ୍ୱଦୀପଂ ପୁରାଣଂ,
ତମଖିଳବୃଜିନଘ୍ନଂ ବ୍ୟାସସୂନୁଂ ନତୋଽସ୍ମି ।୧୨।

ଶ୍ରୀଅଙ୍ଗ ରୂପେ ହରେ ଗୋପୀଗଣେର ମନ ।
ରୂପଗୁଣ ଶ୍ରବଣେ ରୁକ୍ମିଣ୍ୟାଦି-ଆକର୍ଷଣ । ୩୬ ।

---

୧୦ମ ଶ୍ଳୋକର ଅନ୍ୱୟ ମଧ୍ୟ ୧୭ ପରି. ୯ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ହେ ରାଜର୍ଷେ ! ନୈର୍ଗୁଣ୍ୟେ ପରିନିଷ୍ଠିତଃ ଅପି (ଅହଂ) ଉତ୍ତମଶ୍ଳୋକଲୀଲୟା ଗୃହୀତ ଚେତାଃସନ୍ ଯତ୍ ଅଖ୍ୟାନଂ ଅଧୀତବାନ୍ । ୧୧ଶ ଶ୍ଳୋକଃ ।

୧୨ଶ ଶ୍ଳୋକର ଅନ୍ୱୟ ମଧ୍ୟ ୧୭ଶ ପରି ୬ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

---

ଶ୍ରୀବ୍ରହ୍ମା ଦେବତାମାନଙ୍କୁ କହୁଅଛନ୍ତି—ସନକାଦି ଋଷିମାନେ ବ୍ରହ୍ମାନନ୍ଦାନୁଭବୀ ହେଲେହେଁ ସେହି କମଳନୟନ ଶ୍ରୀକୃଷ୍ଣଙ୍କର ଶ୍ରୀଚରଣାର୍ପିତ ପଦ୍ମକେଶରମିଶ୍ରିତ ତୁଳସୀର ସୁଗନ୍ଧ-ଯୁକ୍ତବାୟୁ ସେମାନଙ୍କର ନାସାବିବରରେ ପ୍ରବେଶ କରି ସେମାନଙ୍କର ଚିତ୍ତ ଏବଂ ଦେହକୁ ସଂକ୍ଷୋଭିତ କରିଥିଲା, ଅର୍ଥାତ୍ ସେମାନଙ୍କର ଚିତ୍ତରେ ଅତିଶୟ ହର୍ଷ ଓ ଦେହରେ ରୋମାଞ୍ଚ ଜାତ କରାଇଥିଲା । ୧୦ମ ଶ୍ଳୋକାର୍ଥ ।

ଶ୍ରୀଶୁକଦେବଗୋସ୍ୱାମୀ ଶ୍ରୀପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି—ହେ ରାଜର୍ଷେ ! ମୁଁ ମୋର ଅନ୍ତଃକରଣାଦି ସମସ୍ତ ନିର୍ଗୁଣ ବ୍ରହ୍ମରେ ଲୀନ କରିଥିଲି ସତ୍ୟ, କିନ୍ତୁ ଶ୍ରୀକୃଷ୍ଣଙ୍କ ଲୀଳାମାଧୁରୀ ମୋର ଚିତ୍ତକୁ ବଳପୂର୍ବକ ଆକର୍ଷଣ କରିବାରୁ ଶ୍ରୀମଦ୍‌ଭାଗବତ ଅଖ୍ୟାନ ମୁଁ ପିତାଙ୍କ ନିକଟରେ ଅଧ୍ୟୟନ କରିଥିଲି । ୧୧ଶ ଶ୍ଳୋକାର୍ଥ ।

ଯାହାଙ୍କର ଚିତ୍ତ ବ୍ରହ୍ମାନନ୍ଦରେ ପୂର୍ଣ୍ଣ ହେତୁ ଅନ୍ୟ ବିଷୟରେ ଭାବଶୂନ୍ୟ ହୋଇଥିଲା, ସେ ମଧ୍ୟ ଶ୍ରୀକୃଷ୍ଣଙ୍କର ରୁଚିକର ଲୀଳାରସ ଶ୍ରବଣରେ ଅଧୀର ହୋଇ ଶ୍ରୀକୃଷ୍ଣଙ୍କର ଲୀଳାମୟ ପରମାର୍ଥ ପ୍ରକାଶକ ଶ୍ରୀମଦ୍‌ଭାଗବତ କୃପାବଶତଃ ଲୋକରେ ପ୍ରକାଶ କରିଅଛନ୍ତି । ସେହି ଅଖିଳ ଦୁଃଖନାଶକ ଶ୍ରୀଶୁକଦେବଗୋସ୍ୱାମୀଙ୍କୁ (ମୋର ଗୁରୁଙ୍କ) ପ୍ରଣାମ କରେଁ । ୧୨ଶ ଶ୍ଳୋକାର୍ଥ ।

ତଥାହି (ଭାଃ ୧୦।୨୯।୩୭)—

ବୀକ୍ଷ୍ୟାଳକାବୃତମୁଖଂ ତବ କୁଣ୍ଡଳଶ୍ରୀ-
ଗଣ୍ଡସ୍ଥଳାଧରସୁଧଂ ହସିତାବଲୋକମ୍ ।
ଦତ୍ତାଭୟଞ୍ଚ ଭୁଜଦଣ୍ଡଯୁଗଂ ବିଲୋକ୍ୟ,
ବକ୍ଷଃ ଶ୍ରିୟୈକରମଣଞ୍ଚ ଭବାମ ଦାସ୍ୟଃ । ୧୩ ।

ତଥାହି ( ଭାଃ ୧୦।୫୨।୨୯ )—

ଶ୍ରୁତ୍ୱା ଗୁଣାନ୍ ଭୁବନସୁନ୍ଦର ଶୃଣ୍ୱତାଂ ତେ,
ନିର୍ବିଶ୍ୟ କର୍ଣ୍ଣବିବରୈର୍ହରତୋଽଙ୍ଗତାପମ୍ ।
ରୂପଂ ଦୃଶାଂ ଦୃଶିମତାମଖିଳାର୍ଥଲାଭଂ
ତ୍ୱୟ୍ୟଚ୍ୟୁତାବିଶତି ଚିତ୍ତମପତ୍ରପଂ ମେ । ୧୪ ।

ବଂଶୀଗୀତେ ରୂପେ ହରେ ଲକ୍ଷ୍ମ୍ୟାଦିକେର ମନ ।
ଯୋଗ୍ୟଭାବେ ଜଗତେ ଯତ ଯୁବତୀରଗଣ ।୩୬।

ତଥାହି (ଭାଃ ୧୦।୧୬।୩୬)—

କସ୍ୟାନୁଭାବୋଽସ୍ୟ ନ ଦେବ ବିଦ୍ମହେ,
ତବାଙ୍ଘ୍ରିରେଣୁସ୍ପର୍ଶାଧିକାରଃ ।
ଯଦ୍ୱାଞ୍ଛୟା ଶ୍ରୀର୍ଲଳନାଚରତ୍ତପୋ,
ବିହାୟ କାମାନ୍ ସୁଚିରଂ ଧୃତବ୍ରତା । ୧୫ ।

ତବ ଅଳକାବୃତମୁଖଂ କୁଣ୍ଡଳଶ୍ରୀଃଗଣ୍ଡସ୍ଥଳାଧରସୁଧଂ କୁଣ୍ଡଳୟୋଃ ଶ୍ରୀଃ—ଶୋଭା ଯୟୋଃତେ ଗଣ୍ଡସ୍ଥଳେ ଯସ୍ମିନ୍ ଅଧରେ ସୁଧା ଯସ୍ମିନ୍ ତତ୍ ଚ ମୁଖଂ, ହସିତାବଲୋକଂ—ହସିତେନ ସହ ଅବଲୋକଃ ଯସ୍ମିନ୍ ତତ୍ ଚ ମୁଖଂ ବୀକ୍ଷ୍ୟ ଦତ୍ତାଭୟଂ— ଦତ୍ତଂ ଅଭୟଂ ଯେନ, ଭୁଜଦଣ୍ଡଯୁଗଂ ଶ୍ରିୟୈକରମଣଂ—ଶ୍ରିୟଃ— ଲକ୍ଷ୍ମ୍ୟାଃ ଏକଂ—ମୁଖ୍ୟଂ, ରମଣଂ—ରତିଜନକଂ, ବକ୍ଷଶ୍ଚ ବିଲୋକ୍ୟ ଦାସ୍ୟଃ ଭବାମଃ । ୧୩ଶ ଶ୍ଳୋକଃ ।

ହେ ଭୁବନସୁନ୍ଦର ! ହେ ଅଚ୍ୟୁତ ! ଶୃଣ୍ୱତାଂ କର୍ଣ୍ଣବିବରୈଃ ନିର୍ବିଶ୍ୟ—ଅନ୍ତଃପ୍ରବିଶ୍ୟ ଅଙ୍ଗତାପଂ ହରତଃ ତେ— ତବ ଗୁଣାନ୍— ସର୍ବସୁଖଦତ୍ୱାଦୀନ୍ ତେଷୁ ଏକଂ ଏକଂ ଅପି, ଶ୍ରୁତ୍ୱା (ଶ୍ରବଣପଥପ୍ରାପ୍ତିମାତ୍ରେଣ) ମେ ଚିତ୍ତଂ ଅପତ୍ରପଂ—ଲଜ୍ଜାରହିତଂ ସତ୍, ତ୍ୱୟି ଆବିଶତି— ଆସମ୍ୟକ୍ ଅନୁସନ୍ଧାନାନ୍ତରରହିତତ୍ୱେନ ବିଶତି—ମଗ୍ନଂ ଭବତି । ୧୪ଶ ଶ୍ଳୋକଃ ।

ଯୋଗ୍ୟାଭାବେ ଇତି— ଯଥାଯୋଗ୍ୟଭାବେନ ଜଗଦ୍‌ଗତ ଯୁବତୀନାଂ ଚେତଂ ହରତୀତ୍ୟର୍ଥ ପୂର୍ବକଲକାଞ୍ଚ ହରେ ଇତ୍ୟନେନ ସମ୍ବନ୍ଧ । ବି, ଚ.

ଗୋପୀମାନେ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ହେ ସୁନ୍ଦର ! ତୁମ୍ଭର ଅଳକାବୃତ କୁଣ୍ଡଳ ସୁଶୋଭିତଗଣ୍ଡସ୍ଥଳ, ଈଷତ୍ ହାସ୍ୟଯୁକ୍ତ ଅଧରସୁଧା ଓ ସହାସ୍ୟ କଟାକ୍ଷ ଏହି ସମସ୍ତ ଯୁକ୍ତ ବଦନ-ମଣ୍ଡଳ ଦେଖି ଏବଂ ଅଭୟପ୍ରଦ ସୁନ୍ଦରଭୁଜଯୁଗଳ ଓ ଲକ୍ଷ୍ମୀରେଖାଯୁକ୍ତ ବକ୍ଷସ୍ଥଳ ଦର୍ଶନ କରି ଆମ୍ଭେ-ମାନେ ତୁମ୍ଭର ଦାସୀ ହେବାକୁ ଇଚ୍ଛା କରୁଅଛୁଁ । ୧୩ଶ ଶ୍ଳୋକାର୍ଥ ।

ରୁକ୍ମିଣୀଦେବୀ ଲେଖୁଅଛନ୍ତି—ହେ ଭୁବନସୁନ୍ଦର ! ହେ ଅଚ୍ୟୁତ, କର୍ଣ୍ଣବିବରଦ୍ୱାରା ଶ୍ରବଣକାରୀମାନଙ୍କର ଅନ୍ତଃକରଣରେ ପ୍ରବେଶ କରି ସେମାନଙ୍କର ନିଖିଳତାପ ହରଣ କରେ, ଏପ୍ରକାର ତୁମ୍ଭର ଗୁଣଗଣ ଏବଂ ଚକ୍ଷୁଷ୍ମାନ ବ୍ୟକ୍ତିମାନଙ୍କର ଚକ୍ଷୁର ସର୍ବାର୍ଥ ଲାଭସ୍ୱରୂପ ତୁମ୍ଭର ଯେ ରୂପରାଶି ତାହା ଶ୍ରବଣ କରି ମୋର ମନ ନିର୍ଲଜ୍ଜ ହୋଇ ତୁମ୍ଭଠାରେ ଆସକ୍ତ ହୋଇଅଛି । ୧୪ଶ ଶ୍ଳୋକାର୍ଥ ।

୧୫ ଶ୍ଳୋକର ଅନ୍ୱୟ—ମଧ୍ୟ: ୮ମ ପରି: ୩୪ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ନାଗପତ୍ନୀଗଣ କାଳୀୟନାଗର ଶିରୋପରି ଆରୂଢ଼ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି କହୁଅଛନ୍ତି—ହେ ଦେବ ! ତୁମ୍ଭର ଯେଉଁ ଚରଣରେଣୁ ସ୍ପର୍ଶକାମନାରେ ଲଳନାଶ୍ରେଷ୍ଠ ଲକ୍ଷ୍ମୀ ଠାକୁରାଣୀ ସ୍ୱର୍ଗ ପରିତ୍ୟାଗପୂର୍ବକ ବ୍ରତଧାରଣ କରି ବହୁକାଳ ତପସ୍ୟା କରିଅଛନ୍ତି । ଏହି କାଳୀୟ ନାଗ ଆପଣଙ୍କର ତାଦୃଶ ଶ୍ରୀଚରଣରେଣୁ ସ୍ପର୍ଶାଧିକାର କେଉଁ ସୁକୃତିବଳରେ ଲାଭ କଲେ ତାହା ଆମ୍ଭେମାନେ ଜାଣି ପାରୁନାହୁଁ । ଲକ୍ଷ୍ମୀ ଆଦି ନାରୀଗଣ ମନୋହାରିତ୍ୱ ଏହି ଶ୍ଳୋକର ପ୍ରମାଣ । ୧୫ଶ ଶ୍ଳୋକାର୍ଥ ।

ଯୋଗ୍ୟଭାବେ—ଯଥାଯୋଗ୍ୟଭାବରେ ମନୋହରଣ କରନ୍ତି । ୩୬ ।

ତଥାହି ( ଭାଃ ୧୦।୨୯।୪୦ )—

କା ସ୍ତ୍ୟଙ୍ଗ ତେ କଳପଦାମୃତବେଣୁଗୀତ-
ସମ୍ମୋହିତାର୍ଯ୍ୟଚରିତାନ୍ନ ଚଲେତ୍ ତ୍ରିଲୋକ୍ୟାମ୍ ।
ତ୍ରୈଲୋକ୍ୟସୌଭଗମିଦଞ୍ଚ ନିରୀକ୍ଷ୍ୟ ରୂପଂ,
ଯଦ୍ଗୋଦ୍ୱିଜଦ୍ରୁମମୃଗାଃ ପୁଲକାନ୍ୟବିଭ୍ରନ୍ । ୧୬ ।
ଗୁରୁତୁଲ୍ୟ ସ୍ତ୍ରୀଗଣେର ବାତ୍ସଲ୍ୟେ ଆକର୍ଷଣ ।
ଦାସ୍ୟ-ସଖ୍ୟାଦି ଭାବେ ପୁରୁଷାଦିଗଣ । ୩୮ ।
ପକ୍ଷୀ ମୃଗ ବୃକ୍ଷ ଲତା ଚେତନାଚେତନ ।
ପ୍ରେମେ ମତ୍ତ କରି ଆକର୍ଷୟେ କୃଷ୍ଣଗୁଣ ॥

ତଥାହି ପୂର୍ବଶ୍ଳୋକସ୍ୟ ପରାର୍ଦ୍ଧମ ( ୧୦।୨୯।୪୦ )—
ତ୍ରୈଲୋକ୍ୟସୌଭଗମିଦଞ୍ଚ ନିରୀକ୍ଷ୍ୟ ରୂପଂ,
ଯଦ୍ଗୋଦ୍ୱିଜଦ୍ରୁମମୃଗାଃ ପୁଲକାନ୍ୟବିଭ୍ରନ୍ ।୧୭।
'ହରି' ଶବ୍ଦେ ନାନା ଅର୍ଥ, ଦୁଇ ମୁଖ୍ୟତମ—
ସର୍ବ ଅମଙ୍ଗଳ ହରେ, ପ୍ରେମ ଦିଯା ହରେ ମନ ।
ଯୈଛେ-ତୈଛେ ଯୋଇ-କୋଇ କରଯେ ସ୍ମରଣ
ଚାରିବିଧ ପାପ ତାର କରେ ସଂହରଣ । ୪୧ ।

ତଥାହି (ଭାଃ ୧୧।୧୪।୧୯)—
ଯଥାଗ୍ନିଃ ସୁସମୃଦ୍ଧାର୍ଚ୍ଚିଃ କରୋତ୍ୟେଧାଂସି ଭସ୍ମସାତ୍ ।
ତଥା ମଦ୍‌ବିଷୟା ଭକ୍ତିରୁଦ୍ଧବୈନାଂସି କୃତ୍ସ୍ନଶଃ । ୧୮ ।

---

ଅନ୍ୱ - ହେ କୃଷ୍ଣ ! ତେ ତବ କଳପଦାମୃତ ବେଣୁଗୀତ ସମ୍ମୋହିତା—କଳାନି ମଧୁରାଣି ପଦାନି ଯସ୍ମିନ୍ ତତ୍ ଚ ତତ୍ ଅମୃତଂ ଅର୍ଦ୍ଧଂ ମୂର୍ଚ୍ଛିତଂ ନ ଯତ୍ର ବେଣୁଗୀତଂ ତେନ ସମ୍ମୋହିତା—ଅତ୍ୟନ୍ତୁଷ୍ଟଚିତ୍ତା ଇତି, ତ୍ରୈଲୋକ୍ୟ - ସୌଭଗଂ —ଲୋକତ୍ରୟେ ସୌଭଗଂ ସୌନ୍ଦର୍ଯ୍ୟାତିଶୟଯୁକ୍ତଂ, ଇଦଂ ରୂପଂ ଚ ନିରୀକ୍ଷ୍ୟ ଯତ୍ (ଯାଭ୍ୟାଂ ବେଣୁଗୀତଶ୍ରବଣ ରୂପଦର୍ଶନାଭ୍ୟାଂ) ଗୋଦ୍ରୁମ ଦ୍ୱିଜମୃଗାଃ ପୁଲକାନି ଅବିଭ୍ରନ୍—ଅଧାରଯନ୍, କା (ସା) ସ୍ତ୍ରୀ (ଯା) ଆର୍ଯ୍ୟଚରିତାତ୍—ସଦାଚାରାତ୍ ସ୍ୱଧର୍ମାତ୍ ନ ଚଲେତ୍ । ୧୬ଶ ଶ୍ଳୋକଃ ।

୧୭ଶ ଶ୍ଳୋକଃ— ପୂର୍ବୋକ୍ତ ୧୬ଶ ଶ୍ଳୋକରୁ ଦ୍ରଷ୍ଟବ୍ୟ ।

ହେ ଉଦ୍ଧବ ! ଯଥା ସୁସମୃଦ୍ଧାର୍ଚ୍ଚିଃ—ସୁସମୃଦ୍ଧ ଅର୍ଚ୍ଚିଃ ଯସ୍ୟସଃ, ଅଗ୍ନିଃ ଏଧାଂସି—କାଷ୍ଠାନି, ଭସ୍ମସାତ୍ କରୋତି ତଥା ମଦ୍‌ବିଷୟାଭକ୍ତିଃ କୃତ୍ସ୍ନଶଃ—ସର୍ବାଣି ଏନାଂସି—ପାପାନି ପ୍ରାରବ୍ଧ ପର୍ଯ୍ୟନ୍ତାନି ନାଶୟତି । ୧୮ଶ ଶ୍ଳୋକଃ ।

ଚତୁର୍ବିଧ ପାପ ଇତି । ପାତକୋପପାତକାତିପାତକମହାପାତକ ଇତି ଚତୁର୍ବିଧଂ । ବି, ଚ, ୪୧ ।

---

ଗୋପୀମାନେ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ହେ ପ୍ରିୟ ଶ୍ରୀକୃଷ୍ଣ ! ତୁମ୍ଭର ମଧୁରପଦଯୁକ୍ତ ଅର୍ଦ୍ଧମୂର୍ଚ୍ଛନାଯୁକ୍ତ ବେଣୁଗୀତ ଶ୍ରବଣ କରି ଏବଂ ତୁମ୍ଭର ତ୍ରୈଲୋକ୍ୟସୁନ୍ଦର ଏହି ରୂପ ଦର୍ଶନ କରି ଗୋ, ପକ୍ଷୀ, ବୃକ୍ଷ ଓ ମୃଗ ପ୍ରଭୃତି ପୁଲକିତ ହୁଅନ୍ତି । ତ୍ରୈଲୋକ୍ୟ ମଧ୍ୟରେ ଏପରି କେଉଁ ସ୍ତ୍ରୀ ଅଛି ଯେ ସେହି ବେଣୁଗୀତ ଶ୍ରବଣ କରି ଓ ତୁମ୍ଭର ରୂପ ଦର୍ଶନ କରି କୁଳଧର୍ମରୁ ବିଚଳିତ ନ ହୁଏ । ୧୬ଶ ଶ୍ଳୋକାର୍ଥ ।

ଏହି ଦୁଇ ପଦ୍ୟାରଦ୍ୱାରା ଯଥାଯୋଗ୍ୟ ଭାବର ଉଦାହରଣ ଦେଉଅଛନ୍ତି । ୩୮।୩୯ ।

ସର୍ବ ଅମଙ୍ଗଳ ହରେ—ଏହାର ବ୍ୟାଖ୍ୟା କରୁଅଛନ୍ତି ।

ଯୈଛେ ତୈଛେ—ହେଳା ଶ୍ରଦ୍ଧା ବିଦ୍ରୂପ ଆଦି ଭାବରେ ।

ଯୋଇ କୋଇ—ଯେ କୌଣସି ବ୍ୟକ୍ତି ।

ଚାରିବିଧ ପାପ—ପାତକ, ଉପପାତକ, ଅତିପାତକ ଓ ମହାପାତକ । ୪୧ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି—ହେ ଉଦ୍ଧବ ! ପାକାର୍ଥ ପ୍ରଜ୍ୱଳିତ ଅଗ୍ନି ଯେପରି ସମସ୍ତ କାଷ୍ଠକୁ ଭସ୍ମସାତ୍ କରେ ମଦ୍‌ବିଷୟକଭକ୍ତି ସେହିପରି ସମସ୍ତ ପାପକୁ ଭସ୍ମୀଭୂତ କରେ । ୧୮ଶ ଶ୍ଳୋକାର୍ଥ ।

ତବେ କରେ ଭକ୍ତିବାଧକ କର୍ମ ଅବିଦ୍ୟା ନାଶ ।
ଶ୍ରବଣାଦ୍ୟେର ଫଲ 'ପ୍ରେମା' କରୟେ ପ୍ରକାଶ ।
ନାନାଗୁଣେ ତବେ ହରେ ଦେହେନ୍ଦ୍ରିୟ ମନ ।
ଐଛେ କୃପାଲୁ କୃଷ୍ଣ, ଐଛେ ତାଁର ଗୁଣ ।୪୫।
ଚାରି ପୁରୁଷାର୍ଥ ଛଡ଼ାୟ, ଗୁଣେ ହରେ ମନ ।
'ହରି' ଶବ୍ଦେର ଏଇ ମୁଖ୍ୟାର୍ଥ କହିଲ ଲକ୍ଷଣ ।
ଚ, ଅପି, ଦୁଇ ଶବ୍ଦ ଅବ୍ୟୟ ହୟ ।
ଯେଇ ଅର୍ଥେ ଲାଗାଇୟେ, ସେଇ ଅର୍ଥ କହୟ ।
ତଥାପି ଚକାରେର କହେ ମୁଖ୍ୟ ଅର୍ଥ ସାତ ।
'ଅପି' ଶବ୍ଦେର ମୁଖ୍ୟ ଅର୍ଥ ସାତ ବିଖ୍ୟାତ ।୪୬।

ତଥାହି ବିଶ୍ୱପ୍ରକାଶେ—

ଚନ୍ୱାଚୟେ ସମାହାରେଽନ୍ୟୋନ୍ୟାର୍ଥେ ଚ
ସମୁଚ୍ଚୟେ ।
ଯତ୍ନାନ୍ତରେ ତଥା ପାଦପୂରଣେଽପ୍ୟ-
ବଧାରଣେ । ୧୯ ।

ତଥାହି ତତ୍ରୈବ—

ଅପି ସମ୍ଭାବନା-ପ୍ରଶ୍ନ-ଶଙ୍କା-ଗର୍ହା-ସମୁଚ୍ଚୟେ ।
ତଥା ଯୁକ୍ତପଦାର୍ଥେଷୁ କାମଚାରକ୍ରିୟାସୁ ଚ ।୨୦।
ଏଇ ଏକାଦଶ ପଦେର ଅର୍ଥ ନିର୍ଣ୍ଣୟ ।
ଏବେ ଶ୍ଲୋକାର୍ଥ କରି, ଯାହାଁ ଯେ ଲାଗୟ ।୪୭।
'ବ୍ରହ୍ମ'-ଶବ୍ଦେର ଅର୍ଥ—ତତ୍ତ୍ୱ ସର୍ବବୃହତ୍ତମ ।
ସ୍ୱରୂପ ଐଶ୍ୱର୍ଯ୍ୟ କରି ନାହି ଯାର ସମ । ୪୮ ।

ତଥାହି ବିଷ୍ଣୁପୁରାଣେ ( ୧।୧୨।୫୭ ) —

ବୃହତ୍ତ୍ୱାଦ୍ବୃଂହଣତ୍ୱାଚ୍ଚ ତଦ୍ବ୍ରହ୍ମ ପରମଂ
ବିଦୁଃ ।୨୧।

---

ବୃହତ୍ତ୍ୱାତ୍ ଅତିଶୟ ବସ୍ତୁତ୍ୱାତ୍ ବୃଂହଣତ୍ୱାତ୍ ସର୍ବାନୁମାପକତ୍ୱାତ୍ । ୨୧ଶ ଶ୍ଲୋକଃ ।

ଚ ଇତି । ଅନ୍ୱାଚୟେ ଏକତରସ୍ୟ ପ୍ରାଧାନ୍ୟେ । ସମାହାରେ ଏକରୂପେ ଆହରଣ ବିଷୟୈକାକ୍ରିୟା ସମାହାରଃ ତସ୍ମିନ୍ । ୧୯ ବି, ଚ,

ସମ୍ଭାବନା ଅନ୍ୟୈର୍ବାପ୍ତିନବାଇତି ସମୁଚ୍ଚୟେ ନିଶ୍ଚୟାର୍ଥେ । ୨୦ ବି, ଚ,

ସ୍ୱରୂପ ଇତି । ସ୍ୱରୂପୈଶ୍ୱର୍ଯ୍ୟକରଣେ ଯତ୍ର ସମୋନାସ୍ତୀତ୍ୟର୍ଥ । ୪୮ ବି, ଚ,

---

କିପ୍ରକାର ପ୍ରେମରେ ମନୋହରଣ କରନ୍ତି ତାହା ବୁଝାଉଅଛନ୍ତି—ଅମଙ୍ଗଳରୂପ ପାପ, ଭକ୍ତିବାଧକକର୍ମ ଓ ଅନାଦିସଂସ୍କାରରୂପା ଅବିଦ୍ୟା ନାଶ କରି ଶ୍ରବଣକୀର୍ତ୍ତନାଦି ଭକ୍ତିର ସାଧନାଙ୍ଗରେ ରୁଚି ଜନ୍ମାନ୍ତି ଏବଂ ତାହାର ଫଳ ପ୍ରେମ ପ୍ରକାଶ କରନ୍ତି । ୪୬ ।

ଏକତରର ପ୍ରାଧାନ୍ୟ ଏକୀକରଣ, ପରସ୍ପରାର୍ଥ, ପୂର୍ବବାକ୍ୟର ସହିତ ପରବାକ୍ୟର ଅନୁବର୍ତ୍ତନ, ଯତ୍ନବିଶେଷ, ଶ୍ଲୋକର ଚରଣପୂରଣ ଓ ନିଶ୍ଚୟ ଏହି ସାତ ଅର୍ଥରେ ଚ ଶବ୍ଦ ବ୍ୟବହୃତ ହୁଏ । ୧୯ଶ ଶ୍ଲୋକାର୍ଥ ।

ସମ୍ଭାବନା, ପ୍ରଶ୍ନ, ଶଙ୍କା, ନିନ୍ଦା, ସମୁଚ୍ଚୟ, ଯୁକ୍ତ ପଦାର୍ଥ ଏବଂ କାମାଚାରକ୍ରିୟା ଏହି ସାତ ଅର୍ଥରେ ଅପି ଶବ୍ଦ ପ୍ରଯୁକ୍ତ ହୁଏ । ୨୦ଶ ଶ୍ଲୋକାର୍ଥ ।

ଆତ୍ମା ଶବ୍ଦର ୭ ଅର୍ଥ ମଧ୍ୟରୁ ବ୍ରହ୍ମ ଏହି ଅର୍ଥକୁ ଲଗାଇ ଅର୍ଥ କରୁଅଛନ୍ତି ।

ବ୍ରହ୍ମଶବ୍ଦର ଅର୍ଥ ସର୍ବ ବୃହତ୍ତମ ତତ୍ତ୍ୱ ଏବଂ ଅଦ୍ୱିତୀୟ । ସ୍ୱରୂପ ଐଶ୍ୱର୍ଯ୍ୟ ପ୍ରକାଶକାରୀ ଅର୍ଥାତ୍ ସର୍ବବ୍ୟାପକ । ୪୮ ।

ସର୍ବାପେକ୍ଷା ବୃହତ୍ ଓ ସର୍ବବ୍ୟାପକହେତୁ ସେହି ତତ୍ତ୍ୱକୁ ବ୍ରହ୍ମ କୁହାଯାଏ । ୨୧ଶ ଶ୍ଲୋକାର୍ଥ ।

ସେଇ 'ବ୍ରହ୍ମ' ଶବ୍ଦେ କହେ—ସ୍ୱୟଂ ଭଗବାନ ।
ଅଦ୍ୱିତୀୟ ଜ୍ଞାନ ଯାହା ବିନୁ ନାହିଁ ଆନ । ୪୯ ।

ତଥାହି ( ଭାଃ—୧।୨।୧୧ )—
ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍ଜ୍ଞାନମଦ୍ୱୟମ୍ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି
ଶବ୍ଦ୍ୟତେ । ୨୨ ।

ସେଇ ଅଦ୍ୱୟତତ୍ତ୍ୱ—କୃଷ୍ଣ ସ୍ୱୟଂ ଭଗବାନ ।
ଯାହାଁ ବିନୁ କାଳତ୍ରୟେ ବସ୍ତୁ ନାହି ଆନ । ୫୦ ।

ତଥାହି ( ଭାଃ—୨।୯।୩୨ )—
ଅହମେବାସମେବାଗ୍ରେ ନାନ୍ୟଦ୍ୟତ୍ ସଦସତ୍
ପରମ୍ ।
ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟେତ
ସୋଽସ୍ମ୍ୟହମ୍ । ୨୩ ।

'ଆତ୍ମା' ଶବ୍ଦେ କହେ—କୃଷ୍ଣ ବୃହତ୍ତ୍ୱସ୍ୱରୂପ ।
ସର୍ବବ୍ୟାପକ ସର୍ବସାକ୍ଷୀ ପରମ ସ୍ୱରୂପ । ୫୧ ।

ତଥାହି (ଭାଃ ୧୧।୨୪୫) ଭାବାର୍ଥଦୀପିକାୟାମ୍—
ଆତତତ୍ୱାଚ୍ଚ ମାତୃତ୍ୱାଦାତ୍ମା ହି ପରମୋହରିଃ । ୨୪ ।

ସେଇ କୃଷ୍ଣପ୍ରାପ୍ତି ହେତୁ ତ୍ରିବିଧ ସାଧନ—
ଜ୍ଞାନ, ଯୋଗ, ଭକ୍ତି—ତିନେର ପୃଥକ୍ ଲକ୍ଷଣ ।
ତିନ ସାଧନେ ଭଗବାନ୍ ତିନ-ସ୍ୱରୂପେ ଭାସେ ।
ବ୍ରହ୍ମ, ପରମାତ୍ମା, ଭଗବତ୍ତ୍ୱେ ପ୍ରକାଶେ । ୫୩ ।

---

୨୨ଶ ଶ୍ଲୋକର ଅନ୍ୱୟ – ଅଦ: ୨ୟ ପଦ: ୧ ୨ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।
୨୩ଶ ଶ୍ଲୋକର ଅନ୍ୱୟ—ଆଦ: ୧ମ ପଦ: ୨୪ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।
ଆତତତ୍ୱାତ୍— ସ୍ୱରୂପ ବିସ୍ତାରତ୍ୱାତ୍, ମାତୃତ୍ୱାତ୍—ଜଗଦ୍‌ଯୋନିତ୍ୱାତ୍ । ୨୪ ।

---

ସ୍ୱୟଂ ଭଗବାନ—ସ୍ୱୟଂସିଦ୍ଧ, ଅନ୍ୟ ଅପେକ୍ଷା ରହିତ । ଅଦ୍ୱିତୀୟ—ଅଭେଦ, ସ୍ୱଜାତୀୟାଦି ଭେଦରହିତ । ଜ୍ଞାନ—ସତ୍ ବା ଚେତନ । ୪୯ ।

ତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଅଦ୍ୱୟ ( ଦ୍ୱିତୀୟତ୍ୱରହିତ ) ଯେ ଜ୍ଞାନ ତାହାକୁ ତତ୍ତ୍ୱ ବୋଲି ନିର୍ଦ୍ଦେଶ କରନ୍ତି । ଏହି ତତ୍ତ୍ୱକୁ କେହି କେହି ବ୍ରହ୍ମ, କେହି କେହି ପରମାତ୍ମା ଓ କେହି କେହି ଭଗବାନ ବୋଲି କହନ୍ତି । ୨୨ଶ ଶ୍ଲୋକାର୍ଥ ।

କାଳତ୍ରୟ—ସୃଷ୍ଟିର ଆଦ୍ୟ ମଧ୍ୟ ଅନ୍ତ୍ୟ । ୫୦ ।

ଅଗ୍ରେ (ସୃଷ୍ଟି ପୂର୍ବରୁ ଅର୍ଥାତ୍ ମହାପ୍ରଳୟକାଳରେ ) ଏକମାତ୍ର ମୁଁ ଥିଲି । ଅସତ୍-(କାର୍ଯ୍ୟ) ସତ୍ ( କାରଣ ) ( ଏ ଉଭୟର ) ପର (ଅଜ୍ଞାତ ଅର୍ଥାତ୍ ବ୍ରହ୍ମ) ସେ ମୋଠାରୁ ଭିନ୍ନ ନୁହନ୍ତି । ସୃଷ୍ଟି ପରେ ମଧ୍ୟ ମୁଁ ଥାଏଁ, ଏହି ବିଶ୍ୱସଂସାର ମଧ୍ୟ ମୁଁ ଏବଂ ପ୍ରଳୟ ପରେ ଯାହା ଅବଶିଷ୍ଟ ରହେ ତାହା ମଧ୍ୟ ମୁଁ । ୨୩ଶ ଶ୍ଲୋକାର୍ଥ ।

ବ୍ରହ୍ମ ଶବ୍ଦର ଅର୍ଥଦ୍ୱାରା 'ଆତ୍ମା' ଏହି ମୂଳ ଶବ୍ଦର ଅର୍ଥଦ୍ୱାରା ଶ୍ରୀକୃଷ୍ଣ ନିରୂପଣ କରୁଅଛନ୍ତି—ଅର୍ଥାତ୍ ଆତ୍ମାଶବ୍ଦର ଅର୍ଥ ପରମାତ୍ମା, ଯେ କି ସର୍ବବ୍ୟାପକ ଏବଂ ସର୍ବାନ୍ତର୍ଯ୍ୟାମୀ ଅତଏବ ଶ୍ରୀକୃଷ୍ଣ । ୫୧ ।

ସ୍ୱରୂପରେ ଅତି ବୃହତ୍ ଏବଂ ଜଗତର କାରଣହିଁ ପରମାତ୍ମା ଅର୍ଥାତ୍ ଶ୍ରୀକୃଷ୍ଣ । ୨୪ଶ ଶ୍ଲୋକାର୍ଥ ।

ଜ୍ଞାନର ସାଧନ ବ୍ରହ୍ମ, ଯୋଗର ସାଧନ ପରମାତ୍ମା, ଭକ୍ତିର ସାଧନ ଭଗବାନ । ୫୨ ।

ତଥାହି ( ଭାଃ ୧।୨।୧୧ )—

ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍‌ଜ୍ଞାନମଦ୍ୱୟମ୍ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ।୨୫।

'ବ୍ରହ୍ମ ଆତ୍ମା' ଶବ୍ଦେ ଯଦି କୃଷ୍ଣକେ କହୟ ।
ରୂଢ଼ିବୃତ୍ତ୍ୟେ ନିର୍ବିଶେଷ ଅନ୍ତର୍ଯ୍ୟାମୀ କୟ ।୨୪।
ଜ୍ଞାନମାର୍ଗେ ନିର୍ବିଶେଷ ବ୍ରହ୍ମ ପ୍ରକାଶେ ।
ଯୋଗମାର୍ଗେ ଅନ୍ତର୍ଯ୍ୟାମୀ ସ୍ୱରୂପେତେ ଭାସେ ।
ରାଗଭକ୍ତି ବିଧିଭକ୍ତି ହୟ ଦୁଇ ରୂପ ।
ସ୍ୱୟଂ ଭଗବତ୍ତ୍ୱେ, ଭଗବତ୍ତ୍ୱେ—ପ୍ରକାଶ ଦ୍ୱିରୂପ ।
ରାଗଭକ୍ତ୍ୟେ ବ୍ରଜେ ସ୍ୱୟଂ ଭଗବାନ୍ ପାୟ ।
ବିଧିଭକ୍ତ୍ୟେ ପାର୍ଷଦଦେହେ ବୈକୁଣ୍ଠେ ଯାୟ ।୨୬।

ତଥାହି ( ଭାଃ ୧୦।୯।୨୧ )—

ନାୟଂ ସୁଖାପୋ ଭଗବାନ୍ ଦେହିନାଂ ଗୋପିକାସୁତଃ ।
ଜ୍ଞାନିନାଞ୍ଚାତ୍ମଭୂତାନାଂ ଯଥା ଭକ୍ତିମତାମିହ । ୨୭ ।

୨୫ଶ ଶ୍ଳୋକର ଅନ୍ୱୟ— ଆଦି ୨ୟ ପରି: ୧୨ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

୨୭ଶ ଶ୍ଳୋକର ଅନ୍ୱୟ— ମଧ୍ୟ: ୮ମ ପରି: ୫୦ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ବ୍ରହ୍ମଇତି—ଯଦି ବ୍ରହ୍ମାତ୍ମଶବ୍ଦୈ କୃଷ୍ଣଂ ବଦତଃ ତଥାପି ରୂଢ଼ିବୃତ୍ତ୍ୟା ବ୍ରହ୍ମଶବ୍ଦୋ ନିର୍ବିଶେଷଂ ନିରାକାରଂ, ଆତ୍ମଶବ୍ଦୋଽନ୍ତର୍ଯ୍ୟାମିନଂ ବଦତୀତ୍ୟର୍ଥଃ, ରୂଢ଼ିବୃତ୍ତିର୍ଯଥା ମଣ୍ଡପଶବ୍ଦୋ ମଣ୍ଡପାନକର୍ତ୍ତରିମୁକ୍ତ୍ୱା ଗୃହବିଶେଷମଭିଧତ୍ତେ ତଥୈତ୍ୟର୍ଥଃ । ଯଥା ବା ରୂଢ଼ିବୃତ୍ତିଃ ପ୍ରସିଦ୍ଧିବୃତ୍ତିଃ, ଯଥା ପଙ୍କଜଶବ୍ଦେ ପଦ୍ମଇତି ରୂଢ଼ିବୃତ୍ତିଃ, ଶୈବାଳାଦି ଯୋଗବୃତ୍ତିଃ । ୨୪ ବି, ଚ, ।

ତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଅଦ୍ୱୟ ( ଦ୍ୱିତୀୟରହିତ ) ଯେ ଜ୍ଞାନ ତାହାକୁ ତତ୍ତ୍ୱ ବୋଲି ନିର୍ଦ୍ଦେଶ କରନ୍ତି । ଏହି ତତ୍ତ୍ୱକୁ କେହି କେହି ବ୍ରହ୍ମ, କେହି କେହି ପରମାତ୍ମା, କେହି କେହି ଭଗବାନ ବୋଲି କହନ୍ତି । ୨୫ଶ ଶ୍ଳୋକାର୍ଥ ।

ବ୍ରହ୍ମ ଓ ପରମାତ୍ମା ଶବ୍ଦର ଅର୍ଥ ଶ୍ରୀକୃଷ୍ଣ ହେଲେହେଁ ରୂଢ଼ିବୃତ୍ତିଦ୍ୱାରା ବ୍ରହ୍ମଶବ୍ଦର ଅର୍ଥ ନିର୍ବିଶେଷ ବା ନିରାକାର ଏବଂ ଆତ୍ମଶବ୍ଦର ଅର୍ଥ ଅନ୍ତର୍ଯ୍ୟାମୀ । ରୂଢ଼ିବୃତ୍ତି -- ପ୍ରସିଦ୍ଧିବୃତ୍ତି, ଯେପରି ପଙ୍କଜଶବ୍ଦ ଶୈବାଳାଦି ମଧ୍ୟରେ ପଦ୍ମକୁ ବୁଝାଏ । ୨୪ ।

ଶ୍ରୀକୃଷ୍ଣ ଜ୍ଞାନୀମାନଙ୍କ ନିକଟରେ ନିର୍ବିଶେଷ ବ୍ରହ୍ମରୂପରେ ଏବଂ ଯୋଗୀମାନଙ୍କ ନିକଟରେ ଅନ୍ତର୍ଯ୍ୟାମୀ ରୂପରେ ପ୍ରକାଶ ପାଆନ୍ତି । ୨୫ ।

ଶ୍ରୀକୃଷ୍ଣ ରାଗମାର୍ଗର ଭକ୍ତମାନଙ୍କ ନିକଟରେ ସ୍ୱୟଂ ଭଗବାନ ( ଶ୍ରୀବ୍ରଜେନ୍ଦ୍ରନନ୍ଦନ ) ରୂପରେ ଏବଂ ବିଧିମାର୍ଗର ଭକ୍ତମାନଙ୍କ ନିକଟରେ ଭଗବାନ ( ଶ୍ରୀନାରାୟଣ ରୂପରେ ) ପ୍ରକାଶ ପାଆନ୍ତି । ୨୬ ।

ରାଗମାର୍ଗର ଭଜନଶୀଳ ଭକ୍ତମାନେ ଶ୍ରୀବୃନ୍ଦାବନଧାମରେ ସ୍ୱୟଂ ଭଗବାନ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ନିତ୍ୟସେବା ଲାଭ କରନ୍ତି ଏବଂ ବିଧିମାର୍ଗର ଭକ୍ତମାନେ ଶ୍ରୀଭଗବତ୍‌-ପାର୍ଷଦ ଦେହ ଧାରଣ କରି ଶ୍ରୀବୈକୁଣ୍ଠରେ ଶ୍ରୀମନ୍ନାରାୟଣଙ୍କର ସେବା ଲାଭ କରନ୍ତି । ୨୬ ।

ଶ୍ରୀମାନ୍ ଉଦ୍ଧବ ସମ୍ମୁଖରେ ଶ୍ରୀଗୋପୀମାନଙ୍କର ଭାବକୁ ଲକ୍ଷ୍ୟ କରି କହୁଅଛନ୍ତି— ରାସୋତ୍ସବରେ ଶ୍ରୀକୃଷ୍ଣଙ୍କର ଭୁଜଯୁଗଳଦ୍ୱାରା କଣ୍ଠ ଆଲିଙ୍ଗନରୂପ ମନୋରଥଲାଭକାରିଣୀ ଶ୍ରୀବ୍ରଜଦେବୀମାନେ ଶ୍ରୀକୃଷ୍ଣଙ୍କଠାରୁ ଯେଉଁ ଜାତୀୟ କୃପାଲାଭ କରିଥିଲେ, ଶ୍ରୀକୃଷ୍ଣଙ୍କ ସ୍ୱରୂପ ଶ୍ରୀନାରାୟଣଙ୍କ ବୈକୁଣ୍ଠସ୍ଥା ପ୍ରେୟସୀ ଭୂଲୀଳାପ୍ରଭୃତିମାନଙ୍କ ମଧ୍ୟରେ ପରମପ୍ରେମବତୀ ହେତୁ ତାହାଙ୍କର ସର୍ବଦା ବକ୍ଷସ୍ଥଳସ୍ଥିତା ଲକ୍ଷ୍ମୀଦେବୀ ସୁଦ୍ଧା ସେ ଜାତୀୟ କୃପାଲାଭ କରି ନାହାନ୍ତି, ଅନ୍ୟାନ୍ୟ ସ୍ତ୍ରୀମାନଙ୍କ କଥା ଆଉ କଣ କହିବା । ୨୭ଶ ଶ୍ଳୋକାର୍ଥ ।

ତଥାହି ( ଭାଃ ୩।୧୫।୨୫ )--
ଯନ୍ତି ବ୍ରଜନ୍ତ୍ୟନିମିଷାମୃଷଭାନୁବୃତ୍ତ୍ୟା,
ଦୂରେଯମା ହ୍ୟୁପରି ନଃ ସ୍ପୃହଣୀୟଶୀଳାଃ ।
ଭର୍ତ୍ତୁର୍ମିଥଃ ସୁଯଶସଃ କଥନାନୁରାଗ-
ବୈକ୍ଳବ୍ୟବାଷ୍ପକଲୟା ପୁଲକୀକୃତାଙ୍ଗାଃ ।୨୭।
ସେଇ ଉପାସକ ହୟ ତ୍ରିବିଧ ପ୍ରକାର —
ଅକାମ, ମୋକ୍ଷକାମ, ସର୍ବ୍ବକାମ ଆର । ୫୮ ।
ତଥାହି ( ଭାଃ ୨।୩।୧୦ )—
ଅକାମଃ ସର୍ବ୍ବକାମୋ ବା ମୋକ୍ଷକାମ ଉଦାରଧୀଃ ।
ତୀବ୍ରେଣ ଭକ୍ତିଯୋଗେନ ଯଜେତ ପୁରୁଷଂ ପରମ୍ । ୨୮ ।

"ବୁଦ୍ଧିମାନେର" ଅର୍ଥ—ଯଦି ବିଚାରଜ୍ଞ ହୟ ।
ନିଜକାମ ଲାଗି ତବେ କୃଷ୍ଣେରେ ଭଜୟ ।୫୯।
ଭକ୍ତି ବିନୁ କୋନ ସାଧନ ଦିତେ ନାରେ ଫଲ ।
ସବ ଫଲ ଦେୟ ଭକ୍ତି ସ୍ୱତନ୍ତ୍ର ପ୍ରବଲ । ୬୦ ।
ଅଜାଗଲସ୍ତନନ୍ୟାୟ ଅନ୍ୟ ସାଧନ ।
ଅତଏବ ହରି ଭଜେ ବୁଦ୍ଧିମାନଜନ । ୬୧ ।

ଅନିମିଷା ମୃଷଭାନୁବୃତ୍ତ୍ୟା—ଅନିମିଷାଂ—କାଲାନଧୀନାନାଂ ବୃଷଭଃ—ଶ୍ରେଷ୍ଠଃ ହରିଃ ତସ୍ୟ ଅନୁବୃତ୍ତ୍ୟା, ଦୂରେଯମାଃ—ଦୂରେଯମଃ ଯେଷାଂ ତେ, ସ୍ପୃହଣୀୟଶୀଳାଃ—ସ୍ପୃହଣୀୟଂ ଶୀଳଂ ଯେଷାଂ ତେ, ଭର୍ତ୍ତୁଃ—ହରେଃ ଯତ୍ର, ସୁଯଶସଃ (ତସ୍ୟ) ମିଥଃ କଥନାନୁରାଗ ବୈକ୍ଳବ୍ୟବାଷ୍ପକଲୟା—କଥନେନ ଯଃ ଅନୁରାଗଃ ତେନ ବୈକ୍ଳବ୍ୟଂ-ବୈବଶ୍ୟଂ ତେନ ବାଷ୍ପକଲା ତୟା ସହ, ପୁଲକୀକୃତାଙ୍ଗାଃ—ପୁଲକୀକୃତଂ ଅଙ୍ଗଂ ଯେଷାଂ ତେ, ତ, ନଃ—ଅସ୍ମାକଂ ଉପରିସ୍ଥିତଂ ଯତ୍ର (ବୈକୁଣ୍ଠେ) ବ୍ରଜନ୍ତି । ୨୭ଶ ଶ୍ଳୋକଃ ।

ବୁଦ୍ଧିମାନେର ଇତି । ଉଦାରଧୀରିତ୍ୟସ୍ୟ ପର୍ଯ୍ୟାୟପ୍ରାନ୍ତରଂ ବୁଦ୍ଧିମାନିତି ବୁଦ୍ଧିମତ୍ତ୍ୱଶବ୍ଦ ସ୍ୟାୟମର୍ଥଃ ସ ତୁ ଯଦି ବିଚାରଜ୍ଞୋ ଭବେଦିତ୍ୟର୍ଥଃ । ୫୯ ବି, ଚ, ।

ଶ୍ରୀବ୍ରହ୍ମା ଦେବତାମାନଙ୍କୁ କହୁଅଛନ୍ତି—ଯେଉଁମାନେ କାଳପ୍ରଭାବର ଅଧୀନ ନୁହନ୍ତି, ଯମ ନିୟମର ଅଧୀନ ନ ହୋଇ ଶ୍ରୀହରିଙ୍କ ସେବା କରନ୍ତି, ଯେଉଁମାନଙ୍କର କାରୁଣ୍ୟ ସ୍ୱଭାବ ଆମ୍ଭମାନଙ୍କର ବାଞ୍ଛନୀୟ. ଯେଉଁମାନେ ପରସ୍ପର ନିଜ ପ୍ରଭୁ ଭଗବାନଙ୍କର ଉପାଦେୟ ଯଶୋରାଶି ଅନୁରାଗଭରେ କୀର୍ତ୍ତନ କରୁଁ କରୁଁ ବିବଶ ଓ ଅଶ୍ରୁପୁଲକିତାଙ୍ଗ ହୁଅନ୍ତି, ସେମାନେ ଆମ୍ଭମାନଙ୍କର ଉପରିସ୍ଥିତ ଶ୍ରୀବୈକୁଣ୍ଠଧାମକୁ ଗମନ କରନ୍ତି । ୨୭ଶ ଶ୍ଳୋକାର୍ଥ ।

ସେଇ ଉପାସକ—ଉପରୋକ୍ତ ବିଧିମାର୍ଗାବଲମ୍ବୀ । ୫୮ ।

୨୮ଶ ଶ୍ଳୋକର ଅନ୍ୱୟ— ମଧ: ୨୨ପରି: ୧୪ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଶୁକଦେବଗୋସ୍ୱାମୀ କହୁଅଛନ୍ତି । ଅକାମ (ଏକାନ୍ତଭକ୍ତ) ପରମପୁରୁଷ ଭଗବାନଙ୍କୁ ଦୃଢ଼ଭକ୍ତି ଯୋଗରେ ଭଜନ କରନ୍ତି । ସର୍ବ୍ବକାମୀ—(ନାନା ବିଧଫଳାଭିଳାଷୀ) ଏବଂ ମୋକ୍ଷକାମୀ (ମୁକ୍ତିଫଳାଭିଳାଷୀ) ବ୍ୟକ୍ତିମାନେ ଯଦି ସୁବୁଦ୍ଧି ହୁଅନ୍ତି ଅର୍ଥାତ୍ ଭଗବାନ ଏକମାତ୍ର ଭଜନୀୟ ବୋଲି ସେମାନଙ୍କର ବୁଦ୍ଧି ଜାତ ହୁଏ, ତେବେ ସେମାନେ ତତ୍ତତ୍ ଫଳଲାଭାର୍ଥ ତୀବ୍ରଭକ୍ତି-ଯୋଗରେ ଶ୍ରୀଭଗବାନଙ୍କୁ ଭଜନ କରନ୍ତି । ୨୮ଶ ଶ୍ଳୋକାର୍ଥ ।

ଉପରୋକ୍ତ ଶ୍ଳୋକର ଉଦାରଧୀଃ ଅର୍ଥାତ୍ ବୁଦ୍ଧିମାନ ଶବ୍ଦର ଅର୍ଥ ଯଦି ବିଚାରଜ୍ଞ ବୋଲି ଗ୍ରହଣ କରାଯାଏ ତାହାହେଲେ ସର୍ବ୍ବକାମୀ ବା ମୋକ୍ଷକାମୀମାନେ ବିଚାରପୂର୍ବ୍ବକ ଅବଧାରଣ କରନ୍ତି ଯେ—ଅଦ୍ୱୟ ଜ୍ଞାନତତ୍ତ୍ୱ ଶ୍ରୀକୃଷ୍ଣ ସର୍ବ୍ବାଶ୍ରୟ ଓ ସର୍ବ୍ବନିୟନ୍ତା ଏହି ବିଚାରଦ୍ୱାରା ସେମାନେ ଦେବତାନ୍ତର ସାଧନ ଛାଡ଼ି କାମ୍ୟ ଫଳ ଲାଭ ସକାଶେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି । ଶ୍ରୀକୃଷ୍ଣଙ୍କର ଭଜନପ୍ରଣାଳୀ ଅର୍ଥାତ୍ ଭକ୍ତି ସ୍ୱତନ୍ତ୍ର (ସ୍ୱତଃସିଦ୍ଧ) ଏବଂ ପ୍ରବଳ (ସର୍ବ୍ବାଭୀଷ୍ଟପ୍ରଦ)

ତଥାହି ଶ୍ରୀଗୀତାସୁ (୭।୧୬)—
ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ ।
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ।୨୯।
'ଆର୍ତ୍ତ' 'ଅର୍ଥାର୍ଥୀ' ଦୁଇ ସକାମ ଭିତରେ ଗଣି ।
'ଜିଜ୍ଞାସୁ' 'ଜ୍ଞାନୀ' ଦୁଇ ମୋକ୍ଷ କାମ ମାନି । ୬୨।
ଏଇ ଚାରି ସୁକୃତି ହୟେ ମହା ଭାଗ୍ୟବାନ୍ ।
ତତ୍ତତ୍ କାମାଦି ଛାଡି ହୟ ଶୁଦ୍ଧଭକ୍ତିମାନ ।
ସାଧୁସଙ୍ଗ କୃପା କିବା କୃଷ୍ଣେର କୃପାୟ ।
କାମାଦି ଦୁଃସଙ୍ଗ ଛାଡି ଶୁଦ୍ଧଭକ୍ତି ପାୟ । ୬୪ ।
ତଥାହି (ଭାଃ ୧।୧୦।୧୧)—
ସତ୍ସଙ୍ଗାନ୍ମୁକ୍ତ ଦୁଃସଙ୍ଗୋ ହାତୁଂ ନୋତ୍ସହତେ ବୁଧଃ ।
କୀର୍ତ୍ତ୍ୟମାନଂ ଯଶୋ ଯସ୍ୟ ସକୃଦାକର୍ଣ୍ଣ୍ୟ ରୋଚନମ୍ । ୩୦ ।
ଦୁଃସଙ୍ଗ କହି—କୈତବ ଆତ୍ମବଞ୍ଚନା ।
'କୃଷ୍ଣ-କୃଷ୍ଣଭକ୍ତି' ବିନୁ ଅନ୍ୟ କାମନା । ୬୫ ।

---

ହେ ଭରତର୍ଷଭ ! ହେ ଅର୍ଜୁନ ! ସୁକୃତିନଃ ଜନାଃ ମାଂ ଭଜନ୍ତେ, ତେ ଚ ଚତୁର୍ବିଧାଃ ଅର୍ତ୍ତଃ—ଶତ୍ରୁକ୍ଳେଶାଦ୍ୟାପଦ୍‌ଗ୍ରସ୍ତଃ, ଦ୍ବିଜନାଶେଚ୍ଛୁଃ ଗଜେନ୍ଦ୍ରାଦଃ, ଜିଜ୍ଞାସୁଃ—ବିବିକ୍ତାତ୍ମସ୍ୱରୂପ ଜ୍ଞାନେଚ୍ଛୁଃ ଶୌନକାଦଃ, ଅର୍ଥାର୍ଥୀ—ରାଜ୍ୟାଦି ସମ୍ପଦିଚ୍ଛୁଃ ଧ୍ରୁବାଦଃ, ଜ୍ଞାନୀ—ଶେଷତ୍ରୟେନ ସ୍ୱାତ୍ମାନଂ, ଶେଷିତ୍ୱେନ—ପରମାତ୍ମାନଞ୍ଚ ମାଂ ଜ୍ଞାତବାନ୍ ଶୁକାଦିଶ୍ଚ । ୨୯ଶ ଶ୍ଳୋକ ।

ସତ୍ସଙ୍ଗାତ୍ (ହେତୋଃ) ମୁକ୍ତଦୁଃସଙ୍ଗଃ—ମୁକ୍ତଃ ପୁତ୍ରାଦିବିଷୟେ ଦୁଃସଙ୍ଗଃ ଯେନ ସଃ, ବୁଧଃ (ପଣ୍ଡିତଃ) କୀର୍ତ୍ତ୍ୟମାନଂ ରୋଚନଂ—ରୁଚିକରଂ ଯସ୍ୟ ଯଶଃ ସକୃତ୍ ଆକର୍ଣ୍ଣ୍ୟ ହାତୁଂ ନଉତ୍ସହତେ । ୩୦ଶ ଶ୍ଳୋକଃ ।

---

ତେଣୁ ଭକ୍ତିଦେବୀ ଶ୍ରୀକୃଷ୍ଣ ଭକ୍ତମାନଙ୍କର ସର୍ବବିଧ କାମନାର ଫଳପ୍ରଦ କରନ୍ତି । ଅନ୍ୟ ଦେବଦେବୀ ସାଧନଦ୍ୱାରା ଫଳଲାଭର ଅନୁମାନ ହୁଏ କିନ୍ତୁ ପ୍ରକୃତରେ ଫଳଲାଭ ହୁଏ ନାହିଁ, ଏହିହେତୁ ସେ ସମସ୍ତ ସାଧନାକୁ ଅଜାଗଳସ୍ତନର (ଛେଳିର ଗଳଦେଶରେ ଝୁଲୁଥିବା ସ୍ତନତୁଲ୍ୟ ଚର୍ମବିଶେଷ) ସହିତ ତୁଳନା କରିଅଛନ୍ତି ।

ଏହାର ଭାବ ଏହି ଯେ—ଶ୍ରୀକୃଷ୍ଣ ସର୍ବନିୟନ୍ତା ହେତୁ ତାହାଙ୍କର ଅଂଶ କଳା ଶକ୍ତି ଆଦିରୂପରେ ତାହାଙ୍କର କୃପାସାଧକମାନଙ୍କର ଅଭୀଷ୍ଟ ସିଦ୍ଧ କରନ୍ତି । ୫୯।୬୦।୬୧ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ଅର୍ଜୁନ ! ବିପନ୍ନ, ତତ୍ତ୍ୱଜିଜ୍ଞାସୁ, ଅର୍ଥକାମୀ ଏବଂ ଜ୍ଞାନୀ ଏହି ଚାରିପ୍ରକାର ପୁଣ୍ୟାତ୍ମାମାନେ ମୋତେ ଭଜନ କରନ୍ତି । ୨୯ଶ ଶ୍ଳୋକାର୍ଥ ।

ଉପରୋକ୍ତ ଆର୍ତ୍ତ ପ୍ରଭୃତି ସକାମଭକ୍ତମାନେ କିପ୍ରକାର ଶୁଦ୍ଧଭକ୍ତିମାନ୍ (ନିଷ୍କାମଭକ୍ତ) ହୁଅନ୍ତି ତାହାର ପ୍ରକରଣ କହୁଅଛନ୍ତି—ଶ୍ରୀକୃଷ୍ଣଙ୍କର ଏକାନ୍ତ ଭକ୍ତମାନଙ୍କର କୃପାଦ୍ୱାରା ସେହି ଭକ୍ତମାନଙ୍କର କାମାଦି ହୃଦ୍‌ରୋଗ ଦୂରୀଭୂତ ହୁଏ ଏବଂ ଶ୍ରୀକୃଷ୍ଣଙ୍କର ଶୁଦ୍ଧଭକ୍ତି ଲାଭ ହୁଏ । ୬୪ ।

ଶ୍ରୀସୂତ ଶୌନକାଦିମାନଙ୍କୁ କହୁଅଛନ୍ତି—ଯେଉଁ ବ୍ୟକ୍ତି ସତ୍ସଙ୍ଗ ପ୍ରଭାବରୁ ଦୁର୍ବାସନା ତ୍ୟାଗ କରିଅଛନ୍ତି, ସେ ସାଧୁମାନଙ୍କଦ୍ୱାରା କୀର୍ତ୍ତିତ ରୁଚିକର ଶ୍ରୀଭଗବଦ୍‌ଯଶ ଥରେ ମାତ୍ର ଶ୍ରବଣ କରି ଆଉ ସେମାନଙ୍କ ସଙ୍ଗ ଛାଡ଼ି ପାରନ୍ତି ନାହିଁ । ୩୦ଶ ଶ୍ଳୋକାର୍ଥ ।

ଉପରୋକ୍ତ ଶ୍ଳୋକସ୍ଥ ଦୁଃସଙ୍ଗ ଶବ୍ଦର ଅର୍ଥ କରୁଅଛନ୍ତି—ଦୁଃସଙ୍ଗ—କୈତବ,କାପଟ୍ୟ, ଆତ୍ମବଞ୍ଚନା, କୃଷ୍ଣ ଓ କୃଷ୍ଣଭକ୍ତିବ୍ୟତୀତ ଅପରାପର ସମସ୍ତ କାମନାହିଁ ଆତ୍ମବଞ୍ଚନା ।

ତଥାହି ( ଭାଃ ୧।୧।୨ )—

ଧର୍ମଃ ପ୍ରୋଜ୍‌ଝିତକୈତବୋଽତ୍ର ପରମୋ
ନିର୍ମତ୍ସରାଣାଂ ସତାଂ,
ବେଦ୍ୟଂ ବାସ୍ତବମତ୍ର ବସ୍ତୁ ଶିବଦଂ
ତାପତ୍ରୟୋନ୍ମୂଳନମ୍ ।
ଶ୍ରୀମଦ୍‌ଭାଗବତେ ମହାମୁନିକୃତେ କିଂବା
ପରୈରୀଶ୍ୱରଃ,
ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ
ଶୁଶ୍ରୂଷୁଭିସ୍ତତ୍‌କ୍ଷଣାତ୍ । ୩୧ ।

'ପ୍ର' ଶବ୍ଦେ ମୋକ୍ଷ ବାଞ୍ଛା—କୈତବ ପ୍ରଧାନ ।
ଏଇ ଶ୍ଳୋକେ ଶ୍ରୀଧରସ୍ୱାମୀ କରିଯାଛେନ
ବ୍ୟାଖ୍ୟାନ । ୭୬ ।
'ସକାମଭକ୍ତ ଅଜ୍ଞ' ଜାନି ଦୟାଲୁ ଭଗବାନ୍ ।
ସ୍ୱଚରଣ ଦିୟା କରେ ଇଚ୍ଛାର ପିଧାନ । ୭୭ ।

ତଥାହି ( ଭାଃ ୫।୧୯।୨୮ )—

ସତ୍ୟଂ ଦିଶତ୍ୟର୍ଥିତମର୍ଥିତୋ ନୃଣାଂ,
ନୈବାର୍ଥଦୋ ଯତ୍ ପୁନରର୍ଥିତା ଯତଃ ।
ସ୍ୱୟଂ ବିଧତ୍ତେ ଭଜତାମନିଚ୍ଛତା-
ମିଚ୍ଛାପିଧାନଂ ନିଜପାଦପଲ୍ଲବମ୍ । ୩୨ ।

---

୩୧ ଶ୍ଳୋକର ଅନ୍ୱୟ—ଆଦି: ୧ମପରିଃ ୩୮ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ମହାମୁନି ଶ୍ରୀମନ୍ନାରାୟଣକୃତ ଏହି ଶ୍ରୀମଦ୍‌ଭାଗବତରେ ସର୍ବଜୀବରେ ଦୟାଳୁ ଅହିଂସକ ସାଧୁମାନଙ୍କର ଅନୁଷ୍ଠେୟ ମୋକ୍ଷପର୍ଯ୍ୟନ୍ତ ଫଳାଭିସନ୍ଧି ଲକ୍ଷଣଯୁକ୍ତ କପଟ ଧର୍ମର ନିରାଶକାରକ ପରମଧର୍ମ (ବିଶୁଦ୍ଧଭକ୍ତିଧର୍ମ) ନିରୂପିତ ହୋଇଅଛି, ଏଥିରେ ତ୍ରିତାପନାଶକ ପରମାନନ୍ଦପ୍ରଦ ପରମାର୍ଥ (ବସ୍ତୁର ରୂପଗୁଣବିଶିଷ୍ଟ) ବିଷୟ ବର୍ଣ୍ଣିତ ହୋଇଅଛି । ଅପର ଶାସ୍ତ୍ର ଆଲୋଚନାଦ୍ୱାରା ଈଶ୍ୱର (ସଚ୍ଚିଦାନନ୍ଦବିଗ୍ରହ) ଶୀଘ୍ର ହୃଦୟରେ ଅନୁଭୂତ ହୁଅନ୍ତି ନାହିଁ କିନ୍ତୁ ଏହି ଶ୍ରୀମଦ୍‌ଭାଗବତ ଆଲୋଚନାଦ୍ୱାରା ଶ୍ରବଣେଚ୍ଛୁ ଭକ୍ତମାନଙ୍କର ହୃଦୟରେ ସେ ତତ୍‌କ୍ଷଣାତ୍ ଅନୁଭୂତ ହୁଅନ୍ତି । ୩୧ଶ ଶ୍ଳୋକାର୍ଥ ।

ଶ୍ରୀଧରସ୍ୱାମୀ ଉପରୋକ୍ତ ଶ୍ଳୋକର "ପ୍ରୋଜ୍‌ଝିତ" ପଦର ଅନ୍ତର୍ଗତ ପ୍ର ଶବ୍ଦର ଅର୍ଥଦ୍ୱାରା ମୋକ୍ଷବାଞ୍ଛା କୈତବର ଅନ୍ତର୍ଭୁକ୍ତ କହିଅଛନ୍ତି—ଅତଏବ ଭୁକ୍ତି, ସିଦ୍ଧି ଓ ମୁକ୍ତି କାମନାକାରୀମାନଙ୍କର ଶ୍ରୀକୃଷ୍ଣଭଜନ ସକାମଭଜନ ବା କୈତବଭଜନ ଅଟେ । ୭୬ ।

କାମନାର ସହିତ ଯେଉଁମାନେ ଶ୍ରୀକୃଷ୍ଣଭଜନ କରନ୍ତି ସେମାନେ ଅଜ୍ଞ, ତାହାର କାରଣ ଏହି ଯେ—ଜୀବ ସ୍ୱରୂପତଃ ଶ୍ରୀକୃଷ୍ଣଙ୍କର ନିତ୍ୟଦାସ, ଅତଏବ ଶ୍ରୀକୃଷ୍ଣଙ୍କର ଚରଣସେବା ପ୍ରାପ୍ତିହିଁ ଜୀବର ଏକମାତ୍ର କାମ୍ୟବସ୍ତୁ । ତଦ୍‌ବ୍ୟତୀତ ଅନ୍ୟ କାମନା କରି ଜୀବର ସ୍ୱରୂପ ଅନଭିଜ୍ଞତାର ପରିଚୟ, ଏହିପରି ଅଜ୍ଞଜୀବ ଯଦି ଅନ୍ୟ କାମନାରେ ଶ୍ରୀକୃଷ୍ଣ ଭଜନ କରେ, ଶ୍ରୀକୃଷ୍ଣ ତାହାର ସେହି କାମାଭିଳାଷକୁ ଅପସାରିତ କରି ନିଜର ଶ୍ରୀଚରଣସେବା (ଅର୍ଥାତ୍ ଜୀବର ସ୍ୱରୂପଗତ ନିତ୍ୟ କର୍ତ୍ତବ୍ୟ) ଦିଅନ୍ତି । ୭୭ ।

୩୨ଶ ଶ୍ଳୋକର ଅନ୍ୱୟ—ମଧ: ୨୨ଶ ପରି: ୧୫ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ ଦେବତାମାନେ କହୁଅଛନ୍ତି—ଭଗବାନ ! ଆପଣ ଫଳକାମୀ ବ୍ୟକ୍ତିମାନଙ୍କର କାମ୍ୟଫଳ ଦାନ କରନ୍ତି, ଏହା ସତ୍ୟ, କିନ୍ତୁ ତାହା ଲାଭ କରି କାମନାଶୀଳ ବ୍ୟକ୍ତିର ପ୍ରାର୍ଥନା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୁଏ ବୋଲି ଆପଣ ଅର୍ଥଦ ହେତୁ ସେହି ଅନର୍ଥ କାମ୍ୟଫଳ ଦାନ ନ କରି ସେମାନେ ପ୍ରାର୍ଥନା ନ କଲେ ସୁଦ୍ଧା ସର୍ବ କାମନାର ଆଚ୍ଛାଦକ ଆପଣଙ୍କର ଶ୍ରୀଚରଣକମଳ କୃପାପୂର୍ବକ ସ୍ୱୟଂ ଦାନ କରନ୍ତି । ୩୨ଶ ଶ୍ଳୋକାର୍ଥ ।

ସାଧୁସଙ୍ଗ, କୃଷ୍ଣକୃପା, ଭକ୍ତିର ସ୍ୱଭାବ ।
ଏ ତିନେ ସବ ଛଡ଼ାୟ—କରେ କୃଷ୍ଣେ ଭାବ ।
ଆଗେ ଯତ ଯତ ଅର୍ଥ ବ୍ୟାଖ୍ୟାନ କରିବ ।
କୃଷ୍ଣଗୁଣାସ୍ୱାଦେର ଏଇ ହେତୁ ଜାନିବ । ୬୯ ।
ଶ୍ଲୋକ ବ୍ୟାଖ୍ୟା ଲାଗି ଏଇ କରିଲ ଆଭାସ ।
ଏବେ ଶ୍ଲୋକେର କରି ମୂଲ-ଅର୍ଥ ପ୍ରକାଶ ।
ଜ୍ଞାନମାର୍ଗେ ଉପାସକ ଦୁଇ ତ ପ୍ରକାର—
କେବଲ ବ୍ରହ୍ମୋପାସକ, ମୋକ୍ଷାକାଙ୍କ୍ଷୀ ଆର ।
କେବଲ ବ୍ରହ୍ମୋପାସକ ତିନ ଭେଦ ହୟ—
ସାଧକ, ବ୍ରହ୍ମମୟ, ଆର ପ୍ରାପ୍ତ ବ୍ରହ୍ମ ଲୟ । ୭୧ ।
ଭକ୍ତି ବିନୁ କେବଲ ଜ୍ଞାନେ ମୁକ୍ତି ନାହି ହୟ ।
ଭକ୍ତି ସାଧନ କରେ ଯେଇ ପ୍ରାପ୍ତବ୍ରହ୍ମଲୟ ।
ଭକ୍ତିର ସ୍ୱଭାବ—ବ୍ରହ୍ମ ହୈତେ କରେ ଆକର୍ଷଣ ।
ଦିବ୍ୟଦେହ ଦିୟା କରାୟ କୃଷ୍ଣେର ଭଜନ । ୭୪ ।
ଭକ୍ତଦେହ ପାଇଲେ ହୟ ଗୁଣେର ସ୍ମରଣ ।
ଗୁଣାକୃଷ୍ଟ ହୈୟା କରେ ନିର୍ମଲ ଭଜନ । ୭୫ ।
ତଥାହି ଭାବାର୍ଥଦୀପିକାୟାଂ (ଭାଃ ୧୦।୮୭।୨୧)
ଧୃତଂ ଶାଙ୍କରଭାଷ୍ୟମ୍ (ନୃସିଂହତାପନୀ ୨।୫।୧୬)
ମୁକ୍ତା ଅପି ଲୀଲୟା ବିଗ୍ରହଂ କୃତ୍ୱା
ଭଗବନ୍ତଂ ଭଜନ୍ତେ । ୩୩ । ଇତ୍ୟାଦି

---

ମୁକ୍ତାଃ ପ୍ରାପ୍ତବ୍ରହ୍ମସାୟୁଜ୍ୟାଃ ଲୀଲୟା ଭକ୍ତିକୃପୟେତ୍ୟର୍ଥଃ । କୃତ୍ୱା ଇତି ଅନ୍ତର୍ଭୂତଣିଜର୍ଥତ୍ୱେନ କାରୟିତ୍ୱେତ୍ୟର୍ଥ । ୩୩ଶ ଶ୍ଲୋକଃ । ବି, ଚ,

ବ୍ରହ୍ମମୟ ଇତି ସର୍ବ୍ବ ବ୍ରହ୍ମମୟସ୍ଫୂର୍ତ୍ତିତ୍ୱେନ ବ୍ରହ୍ମମୟତ୍ୱଂ ନ ତୁ ବ୍ରହ୍ମତାଦାତ୍ମ୍ୟଂ ତତ୍ତ୍ୱେ ପ୍ରାପ୍ତବ୍ରହ୍ମଲୟେନ ଭେଦୋନସ୍ୟାତ୍ । ୭୨ ବି, ଚ,

---

ସାଧୁସଙ୍ଗ, କୃଷ୍ଣକୃପା ଏବଂ ଶ୍ରୀକୃଷ୍ଣଙ୍କଠାରେ ଭକ୍ତି, ଏ ତିନହେଁ ଜୀବର ଅନ୍ୟାନ୍ୟ କାମନା ତ୍ୟାଗ କରାଇ ଜୀବକୁ ଶ୍ରୀକୃଷ୍ଣଙ୍କ ସେବାରେ ଆସକ୍ତ କରାନ୍ତି । ୬୮ ।

ଏଇହେତୁ ଜାନିବ—ସାଧୁସଙ୍ଗ, କୃଷ୍ଣକୃପା ଓ ଭକ୍ତି । ୬୯ ।

ଆଭାସ—ଅବତରଣିକା । ୭୦ ।

ଉପରୋକ୍ତ ୫୩ ପୟାରୋକ୍ତ ବ୍ରହ୍ମ ଶବ୍ଦର ବ୍ରହ୍ମ ପରମାତ୍ମା ଭଗବାନ୍, ଏହି ତିନି ମଧ୍ୟରୁ ବ୍ରହ୍ମୋପାସକମାନଙ୍କୁ ଅବଲମ୍ବନ କରି ଶ୍ଲୋକର ଅର୍ଥ କରୁଅଛନ୍ତି । ୭୧ ।

ସାଧକ—ଜ୍ଞାନ ସାଧନପରାୟଣ ।

ବ୍ରହ୍ମମୟ—ଯାହାଙ୍କର ସର୍ବ୍ବତ୍ର ବ୍ରହ୍ମସ୍ଫୂର୍ତ୍ତି ହୁଏ ।

ପ୍ରାପ୍ତବ୍ରହ୍ମଲୟ—ଯେ ବ୍ରହ୍ମସାୟୁଜ୍ୟ ପାଇଅଛନ୍ତି ।

ପ୍ରାପ୍ତବ୍ରହ୍ମଲୟ ( ବ୍ରହ୍ମସାୟୁଜ୍ୟମୁକ୍ତ ) କେବଳ ଜ୍ଞାନରେ ହୁଏ ନାହିଁ । ଭକ୍ତିସାଧନଦ୍ୱାରା ହୋଇଥାଏ, କିନ୍ତୁ ଭକ୍ତିର ପ୍ରଭାବ ଏରୂପ ଯେ ତାହା ସାୟୁଜ୍ୟ ମୁକ୍ତଜୀବକୁ ସାୟୁଜ୍ୟ ମୁକ୍ତିରୁ ବାହାର କରି ଆଣି ଦିବ୍ୟଦେହ ଦାନ କରି ଶ୍ରୀକୃଷ୍ଣଙ୍କ ଭଜନ ପରାୟଣ କରାନ୍ତି । ୭୩।୭୪ ।

ଭକ୍ତ ଦେହରେ ଶ୍ରୀକୃଷ୍ଣଙ୍କ ଗୁଣ ସ୍ମରଣ ହୁଏ ଏବଂ ଭକ୍ତ ଗୁଣାକୃଷ୍ଟ ହୋଇ ଶ୍ରୀକୃଷ୍ଣଙ୍କୁ ଅକୈତବଭାବରେ ଭଜନ କରନ୍ତି । ଏହିହେତୁ ମୁକ୍ତ ପୁରୁଷମାନେ ଭକ୍ତଦେହ ଧାରଣ କରି ଶ୍ରୀକୃଷ୍ଣଙ୍କୁ ଭଜନ୍ତି । ୭୫ ।

ମୁକ୍ତ ବ୍ୟକ୍ତିମାନେ ସ୍ୱୟଂ ଭକ୍ତିଦେବୀଙ୍କ କୃପାରୁ ଦେହ ପ୍ରାପ୍ତ ହୋଇ ଭଗବାନଙ୍କୁ ଭଜନା କରନ୍ତି । ୩୩ଶ ଶ୍ଲୋକାର୍ଥ ।

ଜନ୍ମ ହୋଇଛେ ଶୁକ ସନକାଦି ବ୍ରହ୍ମମୟ ।
କୃଷ୍ଣଗୁଣାକୃଷ୍ଟ ହୋଇଣ କୃଷ୍ଣେରେ ଭଜୟ । ୭୬ ।
ସନକାଦ୍ୟେର କୃଷ୍ଣକୃପାଯ୍ ସୌରଭେ ହରେ ମନ ।
ଗୁଣାକୃଷ୍ଟ ହଞା କରେ ନିର୍ମ୍ମଳ ଭଜନ । ୭୭ ।
ତଥାହି ( ଭାଃ ୩।୧୫।୪୩ )—
ତସ୍ୟାରବିନ୍ଦନୟନସ୍ୟ ପଦାରବିନ୍ଦ-
କିଞ୍ଜଲ୍କମିଶ୍ରତୁଲସୀମକରନ୍ଦବାୟୁଃ
ଅନ୍ତର୍ଗତଃ ସ୍ୱବିବରେଣ ଚକାର ତେଷାଂ,
ସଂକ୍ଷୋଭମକ୍ଷରଜୁଷାମପି ଚିତ୍ତତନ୍ୱୋଃ । ୩୪ ।

ବ୍ୟାସକୃପାଯ୍ ଶୁକଦେବେର ଲୀଳାଦି ଶ୍ରବଣ ।
କୃଷ୍ଣଗୁଣାକୃଷ୍ଟ ହଞା କରେନ ଭଜନ । ୭୮ ।
ତଥାହି ( ଭାଃ ୧।୭।୧୧ )—
ହରେର୍ଗୁଣାକ୍ଷିପ୍ତମତିର୍ଭଗବାନ୍ ବାଦରାୟଣିଃ ।
ଅଧ୍ୟଗାନ୍ମହଦାଖ୍ୟାନଂ ନିତ୍ୟଂ ବିଷ୍ଣୁଜନପ୍ରିୟଃ ।୩୫।
ନବ ଯୋଗୀଶ୍ୱର ଜନ୍ମହୋଇଛେ ସାଧକ ଜ୍ଞାନୀ ।
ବିଧି-ଶିବ-ନାରଦ ମୁଖେ କୃଷ୍ଣଗୁଣ ଶୁନି । ୭୯ ।
ଗୁଣାକୃଷ୍ଟ ହଞା କରେ କୃଷ୍ଣେର ଭଜନ ।
ଏକାଦଶସ୍କନ୍ଧେ ତାଁର ଭକ୍ତିବିବରଣ । ୮୦ ।

---

୩୪ଶ ଶ୍ଲୋକର ଅନ୍ୱୟ—ମଧ୍ୟ ୧୭ଶ ପରିଃ ୯ମ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ତମେବାର୍ଥଂ ଶ୍ରୀଶୁକସ୍ୟାପି ଅନୁଭବେନ ସମ୍ବାଦୟତି ହରେରିତି । ଶ୍ରୀବ୍ୟାସଦେବଃ ଯତ୍ତୁ କାଷ୍ଣୁ ଛୁତେନ ଗୁଣେନ ପୂର୍ବମାକ୍ଷିପ୍ତମତିଃ— ବ୍ରହ୍ମାନନ୍ଦାନୁଭବୋ ଯସ୍ୟସଃ, ତସ୍ମାତ୍ ଅଧ୍ୟଗାତ୍ । ମହତ୍ତ୍ୱ ବିସ୍ତୀର୍ଣ୍ଣମପି, ତତଶ୍ଚ ତତ୍ର ସଙ୍କଥା ସୌହାର୍ଦ୍ଦେନ ନିତ୍ୟଂ ବିଷ୍ଣୁଜନାଃ ପ୍ରିୟାଃ ଯସ୍ୟ ତଥାଭୂତୋ ବା ତେଷାଂ ପ୍ରିୟୋ ବା ସ୍ୱୟମଭବଦିତ୍ୟର୍ଥଃ, ଅୟମ୍ଭାବଃ—ବ୍ରହ୍ମବୈବର୍ତ୍ତାନୁସାରେଣ ପୂର୍ବଂ ତାବଦୟଂ ଗର୍ଭମାରଭ୍ୟ ଶ୍ରୀକୃଷ୍ଣସ୍ୟ ସ୍ୱୈରିତୟା ମାୟା ନିବାରକତ୍ୱଂ ଜ୍ଞାତବାନ୍, ତତଃ ସ୍ୱନିୟୋଜନୟା ଶ୍ରୀବ୍ୟାସଦେବେନାନୀତସ୍ୟ ତସ୍ୟ ଦର୍ଶନାତ୍ତ ନିବାରଣେ ସତି କୃତାର୍ଥମନ୍ୟତୟା ସ୍ୱୟମେକାନ୍ତମେବ ଗତବାନ୍ । ତତ୍ର ଶ୍ରୀବ୍ୟାସଦେବସ୍ତୁତଂ ବଶୀକର୍ତ୍ତୁଂ ବେଦନାନ୍ୟ ସାଧନଂ ଶ୍ରୀଭଗବତମେବ ଜ୍ଞାତ୍ୱା ତଦ୍‌ଗୁଣାତିଶୟ ପ୍ରକାଶମୟାନ୍ କେଚିତ୍ ପଦ୍ୟବିଶେଷାନ୍ କଥଂଚିତ୍ ଶ୍ରାବୟିତ୍ୱା ତେନ ତମାକ୍ଷିପ୍ତମତିଂ କୃତ୍ୱା ତଦେବ ପୂର୍ଣ୍ଣମଧ୍ୟାପୟାମାସେତି ଶ୍ରୀଭାଗବତମହିମାତିଶୟଃ ପ୍ରୋକ୍ତଃ । ୩୫ଶ ଶ୍ଲୋକଃ ।

---

୭୬ ପୟାରସ୍ଥ ବ୍ରହ୍ମମୟ ପଦର ଉଦାହରଣ ଦେଉଅଛନ୍ତି । ୭୬ ।

ସନକାଦ୍ୟେର— ଚତୁଃସନଙ୍କର (ସନକ, ସନନ୍ଦ, ସନାତନ ଓ ସନତ୍କୁମାର) ।୭୭।

ଶ୍ରୀବ୍ରହ୍ମା ଦେବତାମାନଙ୍କୁ କହୁଅଛନ୍ତି— ସନକାଦି ଋଷିମାନେ ବ୍ରହ୍ମାନନ୍ଦାନୁଭବୀ ହେଲେହେଁ ସେହି କମଳନୟନ ଶ୍ରୀକୃଷ୍ଣଙ୍କର ଶ୍ରୀଚରଣପିଠ ପଦ୍ମକେଶରମିଶ୍ରିତ ତୁଳସୀର ସୁଗନ୍ଧ-ଯୁକ୍ତ ବାୟୁ ସେମାନଙ୍କର ନାସାବିବରରେ ପ୍ରବେଶ କରି ସେମାନଙ୍କର ଚିତ୍ତ ଏବଂ ଦେହକୁ ସଂକ୍ଷୋଭିତ କରିଥିଲା, ଅର୍ଥାତ୍ ସେମାନଙ୍କର ଚିତ୍ତରେ ଅତିଶୟ ହର୍ଷ ଓ ଦେହରେ ରୋମାଞ୍ଚ ଜାତ କରାଇଥିଲା । ୩୪ଶ ଶ୍ଲୋକାର୍ଥ ।

ଶ୍ରୀସୂତ କହୁଅଛନ୍ତି— ନିତ୍ୟ ବୈଷ୍ଣବଜନପ୍ରିୟ ଭଗବାନ ଶୁକଦେବ ଶ୍ରୀକୃଷ୍ଣ ଗୁଣ ଶ୍ରବଣ କରି ସମାଧିରୁ ଆକୃଷ୍ଟ ହୋଇ ଏହି ମହତ୍ ଆଖ୍ୟାନ ଶ୍ରୀମଦ୍‌ଭାଗବତ ଅଧ୍ୟୟନ କରିଥିଲେ । ୩୫ଶ ଶ୍ଲୋକାର୍ଥ ।

୭୬ ପୟାରସ୍ଥ ସାଧକର ଉଦାହରଣ ଦେଉଅଛନ୍ତି ।

ନବଯୋଗୀଶ୍ୱର— କବି, ହବି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପଳାୟନ, ଆବିର୍ହୋତ୍ର, ଦ୍ରୁମିଳ, ଚମସ, କରଭାଜନ । ୭୯ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୩।୧।୭ ) —

ମହୋପନିଷଦ୍‌ବଚନମ୍—

ଅକ୍ଲେଶାଂ କମଲଭୁବଃ ପ୍ରବିଶ୍ୟ ଗୋଷ୍ଠୀଂ,
କୁର୍ବନ୍ତଃ ଶ୍ରୁତିଶିରସାଂ ଶ୍ରୁତିଂ ଶ୍ରୁତଜ୍ଞାଃ ।
ଉତ୍ତୁଙ୍ଗଂ ଯଦୁପୁରସଙ୍ଗମାୟ ରଙ୍ଗଂ,
ଯୋଗୀନ୍ଦ୍ରାଃ ପୁଲକଭୃତୋ ନବାପ୍ୟବାପୁଃ । ୩୬ ।

ମୋକ୍ଷାକାଙ୍କ୍ଷୀ ଜ୍ଞାନୀ ହୟ ତିନ ପ୍ରକାର—
ମୁମୁକ୍ଷୁ, ଜୀବନ୍ମୁକ୍ତ, ପ୍ରାପ୍ତସ୍ୱରୂପ ଆର । ୮୧ ।
ମୁମୁକ୍ଷୁ—ଜଗତେ ଅନେକ ସାଂସାରିକଜନ ।
ମୁକ୍ତି-ଲାଗି ଭକ୍ତ୍ୟେ କରେ କୃଷ୍ଣେର ଭଜନ ।

ତଥାହି ( ଭାଃ ୧।୨।୨୬ )—

ମୁମୁକ୍ଷବୋ ଘୋରରୂପାନ୍ ହିତ୍ୱା ଭୂତପତୀନଥ ।
ନାରାୟଣକଲାଃ ଶାନ୍ତା ଭଜନ୍ତି ହ୍ୟନସୂୟବଃ । ୩୭ ।
ସେଇସବେ ସାଧୁସଙ୍ଗେ ଗୁଣ ସ୍ଫୁରାୟ ।
କୃଷ୍ଣଭଜନ କରାୟ, ମୁମୁକ୍ଷା ଛଡ଼ାୟ । ୮୩ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୩।୨।୨୦ )—

ହରିଭକ୍ତିସୁଧୋଦୟବଚନମ୍ ( ୧।୧୪ )—

ଅହୋ ମହାତ୍ମନ୍ ବହୁଦୋଷଦୁଷ୍ଟୋ-
ଽପ୍ୟେକେନ ଭାତ୍ୟେଷ ଭବେ ଗୁଣେନ ।
ସତ୍ସଙ୍ଗମାଖ୍ୟେନ ସୁଖାବହେନ,
କୃତାଦ୍ୟ ନୋ ଯେନ କୃଶା ମୁମୁକ୍ଷା । ୩୮ ।

ଶ୍ରୁତଜ୍ଞାଃ—ବେଦପାରଗାଃ ନବଯୋଗୀନ୍ଦ୍ରାଃ— ଋଷଭତନୟା କମଲଭୁବଃ ବ୍ରହ୍ମଣଃ ଅକ୍ଲେଶାଂ ଗୋଷ୍ଠୀଂ ସଭାଂ ପ୍ରବିଶ୍ୟ ଶ୍ରୁତିଶିରସାଂ ଶ୍ରୁତିଂ— ଶ୍ରବଣଂ କୁର୍ବନ୍ତଃ ଅପି, ଯଦୁପୁରସଙ୍ଗମାୟ— ମଥୁରାଗମନାୟ ପୁଲକଭୃତଃ (ସନ୍ତଃ) ଉତ୍ତୁଙ୍ଗରଙ୍ଗଃ— ଉତ୍କଣ୍ଠାଂ ଅବାପୁଃ । ୩୬ଶ ଶ୍ଲୋକଃ ।

ଅଥ ମୁମୁକ୍ଷବଃ (ଜନାଃ) ଅନସୂୟବଃ (ସନ୍ତଃ) ଘୋରରୂପାନ୍ ଭୂତପତୀନ୍ ହିତ୍ୱା ଶାନ୍ତାଃ ନାରାୟଣକଲାଃ ଭଜନ୍ତି ହି । ୩୭ଶ ଶ୍ଲୋକଃ ।

ହେ ମହାତ୍ମନ୍ ? ଅହୋ ଏଷଃ ଭବଃ-ସଂସାରଃ ବହୁଦୋଷଦୁଷ୍ଟଃ ଅପି ସୁଖାବହେନ ସତ୍ସଙ୍ଗମାଖ୍ୟେନ ଏକେନ ଗୁଣେନ ଭାତି, ଯେନଗୁଣେନ ଅଦ୍ୟ ନଃ-ଅସ୍ମାକଂ ମୁମୁକ୍ଷା-ମୁକ୍ତୀଚ୍ଛା କୃଶା-କ୍ଷୀଣା କୃତା । ୩୮ । ଶ୍ଲୋକ ।

ବେଦଜ୍ଞ ନବଯୋଗେନ୍ଦ୍ର ବ୍ରହ୍ମାଙ୍କର ସୁଖମୟ ସଭାରେ ପ୍ରବେଶ କରି ଉପନିଷଦ୍‌ମାନଙ୍କଠାରୁ ଶ୍ରୀକୃଷ୍ଣଙ୍କର ଗୁଣାଦି ଶ୍ରବଣ କରି ପୁଲକିତ ହୋଇ ମଥୁରା ଗମନ ନିମିତ୍ତ ଉତ୍କଣ୍ଠା ଅନୁଭବ କରିଥିଲେ । ୩୬ଶ ଶ୍ଲୋକାର୍ଥ ।

୬୧ ପୟାରସ୍ଥ ମୋକ୍ଷାକାଂକ୍ଷୀ ବିଷୟ କୁହାଉଅଛନ୍ତି । ୮୧ ।
ଜୀବନ୍ମୁକ୍ତ—ଏହି ଦେହରେ ମୁକ୍ତ ଅଭିମାନୀ ।
ପ୍ରାପ୍ତସ୍ୱରୂପ—ବିଶୁଦ୍ଧ ଜୀବ ସ୍ୱରୂପପ୍ରାପ୍ତ । ୮୧ ।
ମୁମୁକ୍ଷୁ ବିଷୟ କହୁଅଛନ୍ତି । ୮୨ ।

ଶ୍ରୀସୂତ କହୁଅଛନ୍ତି—ମୁକ୍ତିକାମୀ ବ୍ୟକ୍ତିମାନେ ଭୂତପତି ଭୈରବାଦି ଦେବତାମାନଙ୍କୁ ତ୍ୟାଗ କରି ଓ ଦେବତାନ୍ତର ନିନ୍ଦା ପରିହାରପୂର୍ବକ ଶ୍ରୀମନ୍‌ନାରାୟଣଙ୍କର ଭିନ୍ନ ଭିନ୍ନ ଶାନ୍ତମୂର୍ତ୍ତି ଭଜନ କରନ୍ତି । ୩୭ଶ ଶ୍ଲୋକାର୍ଥ ।

ସାଧୁସଙ୍ଗଦ୍ୱାରା ସେହି ମୁମୁକ୍ଷୁମାନଙ୍କର ଶ୍ରୀକୃଷ୍ଣଗୁଣ ସ୍ଫୂର୍ତ୍ତି ହୁଏ । ସେମାନେ ମୋକ୍ଷବାଞ୍ଛା ପରିତ୍ୟାଗ କରି ଶ୍ରୀକୃଷ୍ଣଙ୍କର ନିର୍ମଳ ଭଜନ କରନ୍ତି । ୮୩ ।

ଶ୍ରୀଶୌନକ ସୂତଙ୍କୁ କହୁଅଛନ୍ତି-ହେ ମହାତ୍ମନ୍ ? ଏହି ସଂସାର ବହୁ ଦୋଷରେ ଦୂଷିତ ହେଲେହେଁ ସତ୍ସଙ୍ଗନାମକ ଗୋଟିଏ ସୁଖାବହଗୁଣ ଏଥିରେ ଦେଦୀପ୍ୟମାନ, ଯେ ଗୁଣ ଆଜି ଆମ୍ଭମାନଙ୍କର ମୁକ୍ତି ଇଚ୍ଛାକୁ ଶୁଷ୍କ କଲା । ୩୮ । ଶ୍ଲୋକାର୍ଥ ।

ନାରଦେର ସଙ୍ଗେ ଶୌନକାଦି ମୁନିଗଣ ।
ମୁମୁକ୍ଷା ଛାଡ଼ିୟା କୈଲ କୃଷ୍ଣେର ଭଜନ । ୮୪ ।
କୃଷ୍ଣେର ଦର୍ଶନେ କାରେ କୃଷ୍ଣେର କୃପାୟ ।
ମୁମୁକ୍ଷା ଛାଡ଼ିୟା ଗୁଣେ ଭଜେ ତାଁର ପାୟ ।
ତଥାହି ଭକ୍ତିରସାମୃତସିନ୍ଧୌ ( ୩।୧।୩ )—
ଅସ୍ମିନ୍ ସୁଖଘନମୂର୍ତ୍ତୌ,
ପରମାତ୍ମନି ବୃଷ୍ଣିପତ୍ତନେ ସ୍ଫୁରତି ।
ଆତ୍ମାରାମତୟା ମେ,
ବୃଥା ଗତୋବତ ଚିରଂ କାଳଃ । ୩୯ ।*
ଜୀବନ୍ମୁକ୍ତ ଅନେକ, ସେ-ଓ ଦୁଇ ଭେଦ ଜାନି ।
ଭକ୍ତ୍ୟେ ଜୀବନ୍ମୁକ୍ତ, ଜ୍ଞାନେ ଜୀବନ୍ମୁକ୍ତ ମାନି ।
ଭକ୍ତ୍ୟେ ଜୀବନ୍ମୁକ୍ତ — ଗୁଣ ଲୁବ୍ଧ କୃଷ୍ଣ ଭଜେ ।
ଶୁଷ୍କଜ୍ଞାନେ ଜୀବନ୍ମୁକ୍ତ — ଅପରାଧେ ଅଧୋ ମଜେ
ତଥାହି ( ଭାଃ ୧୦।୨।୩୨ )—
ଯେଽନ୍ୟେଽରବିନ୍ଦାକ୍ଷ ବିମୁକ୍ତମାନିନ-
ସ୍ତ୍ୱୟ୍ୟସ୍ତ ଭାବାଦବିଶୁଦ୍ଧବୁଦ୍ଧୟଃ
ଆରୁହ୍ୟ କୃଚ୍ଛ୍ରେଣ ପରଂ ପଦଂ ତତଃ,
ପତନ୍ତ୍ୟଧୋ ନାଦୃତଯୁଷ୍ମଦଙ୍ଘ୍ରୟଃ । ୪୦ ।
ତଥାହି ଶ୍ରୀଗୀତାୟାମ୍ ( ୧୮।୫୪ )—
ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍କ୍ଷତି ।
ସମଃ ସର୍ବେଷୁ ଭୂତେଷୁ ମଦ୍ଭକ୍ତିଂ ଲଭତେ
ପରାମ୍ । ୪୧ ।

* ଦୃଷ୍ଟିପତ୍ତନେ — ଯଦୁପୁର୍ଯ୍ୟାଂ ସୁଖଘନମୂର୍ତ୍ତୌ ଅସ୍ମିନ୍ ଶ୍ରୀକୃଷ୍ଣେ ପରମାତ୍ମନି ସ୍ଫୁରତି ସତି, ଆତ୍ମାରାମତୟା (ଇତ୍ୟଭିମାନେନ) ମେ ମମ ଚିରଂକାଳଃ ବୃଥାଗତଃ । ୩୯ଶ ଶ୍ଳୋକ ।
ଅସ୍ମାନଂ ଜୀବନ୍ମୁକ୍ତଂ ମନ୍ୟତେ ଇତି ଜୀବନ୍ମୁକ୍ତମାନୀ ନତୁ ଜୀବନ୍ମୁକ୍ତଃ । ଚ,ଚ, । ୮୬

ଆନନ୍ଦଘନ ମୂର୍ତ୍ତି ଶ୍ରୀକୃଷ୍ଣ ପରମାତ୍ମା, ଦ୍ୱାରକାନଗରୀରେ ବିରାଜମାନ ଥାଉଁ ଥାଉଁ ହିଁ 'ମୁଁ ଆତ୍ମାରାମ' ଏହି ଅଭିମାନଯୁକ୍ତ ମୋର ଚିରକାଳ ବୃଥା ଗତ ହେଲା । ୩୯ଶ ଶ୍ଳୋକାର୍ଥ ।

ଜୀବନ୍ମୁକ୍ତ ବିଷୟ କହୁଅଛନ୍ତି — ଜୀବନ୍ମୁକ୍ତ ଦୁଇପ୍ରକାର,— ଭକ୍ତିଦ୍ୱାରା ଜୀବନ୍ମୁକ୍ତ ଓ ଜ୍ଞାନଦ୍ୱାରା ଜୀବନ୍ମୁକ୍ତ ଅଭିମାନୀ । ୮୬ ।

ଭକ୍ତିଦ୍ୱାରା ଯେଉଁମାନେ ଜୀବନ୍ମୁକ୍ତ ହୁଅନ୍ତି ସେମାନେ ଶ୍ରୀକୃଷ୍ଣଙ୍କ ଗୁଣରେ ଆକୃଷ୍ଟ ହୋଇ କୃଷ୍ଣଭଜନ କରନ୍ତି ଅର୍ଥାତ୍ ଅହୈତୁକୀ ଭକ୍ତି କରନ୍ତି, ଶୁଷ୍କଜ୍ଞାନରେ ଯେଉଁମାନେ ଜୀବନ୍ମୁକ୍ତ ଏହି ଅଭିମାନ କରନ୍ତି ଅର୍ଥାତ୍ ମୁଁ ବ୍ରହ୍ମ ଏହି ଅଭିମାନରେ ଶ୍ରୀକୃଷ୍ଣଙ୍କର ପ୍ରଭୁତ୍ୱ ସ୍ୱୀକାର କରନ୍ତି ନାହିଁ, ସେମାନେ ଏହି ଅପରାଧରେ ନରକଗାମୀ ହୁଅନ୍ତି । ୮୭ ।

୪୦ଶ ଶ୍ଳୋକର ଅନ୍ୱୟ— ମଧ୍ୟ ୨୨ ପର, ୧୦ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କ ପ୍ରତି ଦେବସ୍ତୁତି— ହେ ପଦ୍ମପଲାଶଲୋଚନ ଶ୍ରୀକୃଷ୍ଣ ! ଆପଣଙ୍କଠାରେ ଭକ୍ତି ଅଭାବରୁ ଯେଉଁମାନେ ଅଶୁଦ୍ଧବୁଦ୍ଧି ଅଥଚ ଆପଣାକୁ ଜୀବନ୍ମୁକ୍ତ ବୋଲି ଅଭିମାନ କରନ୍ତି, ସେମାନେ ବହୁକଷ୍ଟସାଧ୍ୟ ମୁକ୍ତିର ସନ୍ନିକଟ ପଦ ଲାଭ କରିଥିଲେ ସୁଦ୍ଧା ଆପଣଙ୍କ ଶ୍ରୀଚରଣାରବିନ୍ଦର ଅନାଦର ଦୋଷରୁ ଅଧଃପତିତ ହୁଅନ୍ତି । ୪୦ଶ ଶ୍ଳୋକାର୍ଥ ।

୪୧ଶ ଶ୍ଳୋକର ଅନ୍ୱୟ—ମଧ୍ୟ ୮ମ ପର, ୮ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନ୍ ଅର୍ଜୁନଙ୍କୁ କହୁଅଛନ୍ତି —ବ୍ରହ୍ମରେ ଅବସ୍ଥିତ ପ୍ରସନ୍ନଚିତ୍ତବ୍ୟକ୍ତିମାନେ ନଷ୍ଟ ବସ୍ତୁର ଶୋକ ଓ ଲବ୍ଧ ବସ୍ତୁରେ ଆକାଂକ୍ଷା କରନ୍ତି ନାହିଁ । ସର୍ବପ୍ରାଣୀରେ ସମଦର୍ଶୀ ହେବାରୁ ଏବଂ ରାଗଦ୍ୱେଷାଦିକୃତ ବିକ୍ଷେପ ନ ଥିବାରୁ ସର୍ବଭୂତରେ ଭାବଲକ୍ଷଣଯୁକ୍ତ ମୋର ପରମଭକ୍ତି ଲାଭ କରନ୍ତି । ୪୧ଶ ଶ୍ଳୋକାର୍ଥ ।

ତଥାହି ଭକ୍ତିରସାମୃତସିନ୍ଧୌ (୩।୧।୨୦)—

ଅଦ୍ୱୈତବୀଥୀପଥିକୈରୁପାସ୍ୟାଃ,
ସ୍ୱାନନ୍ଦସିଂହାସନଲବ୍ଧଦୀକ୍ଷାଃ ।
ଶଠେନ କେନାପି ବୟଂ ହଠେନ,
ଦାସୀକୃତା ଗୋପବଧୂବିଟେନ ।୪୨।

ଭକ୍ତିବଳେ ପ୍ରାପ୍ତସ୍ୱରୂପ ଦିବ୍ୟ ଦେହ ପାୟ ।
କୃଷ୍ଣଗୁଣାକୃଷ୍ଟ ହୟେ ଭଜେ କୃଷ୍ଣପାୟ ।୮।

ତଥାହି (ଭାଃ ୨।୧୦।୬)—
ମୁକ୍ତିର୍ହିତ୍ୱାନ୍ୟଥାରୂପଂ ସ୍ୱରୂପେଣ ବ୍ୟବସ୍ଥିତିଃ ।୪୩।
କୃଷ୍ଣବହିର୍ମୁଖ ଦୋଷେ ମାୟା ହୈତେ ଭୟ ।
କୃଷ୍ଣୋନ୍ମୁଖ ଭକ୍ତି ହୈତେ ମାୟାମୁକ୍ତ ହୟ ।୯।

ତଥାହି (ଭାଃ ୧୧।୨।୩୭)—
ଭୟଂ ଦ୍ୱିତୀୟାଭିନିବେଶତଃ ସ୍ୟା-
ଦୀଶାଦପେତସ୍ୟ ବିପର୍ଯ୍ୟୟୋଽସ୍ମୃତିଃ ।
ତନ୍ମାୟୟାତୋ ବୁଧ ଆଭଜେତ୍ତଂ,
ଭକ୍ତ୍ୟୈକୟେଶଂ ଗୁରୁଦେବତାତ୍ମା ।୪୪।

---

ଅନ୍ୟଥା ରୂପଂ ମାୟିକଂ ସ୍ଥୂଲସୂକ୍ଷ୍ମରୂପ ଦେହଦ୍ୱୟଂ ହିତ୍ୱା ସ୍ୱରୂପେଣ ଶୁଦ୍ଧଜୀବ ସ୍ୱରୂପେଣ କେଷାଂଚିତ୍ତୁ ଭଗବତ୍ପାର୍ଷଦରୂପେଣ ଚ ବ୍ୟବସ୍ଥିତିଃ ଇତି ମୁକ୍ତିରିତି । ୪୩ଶ ଶ୍ଲୋକଃ ।

---

୪୨ ଶ୍ଲୋକର ଅନ୍ୱୟ— ମଧ୍ୟ ୧୦ମ ପରି, ୬ଷ୍ଠ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଆମ୍ଭେମାନେ ଅଦ୍ୱୈତମାର୍ଗର ଉପାସକମାନଙ୍କର ଉପାସ୍ୟ ଅର୍ଥାତ୍ ଗୁରୁ ଥିଲୁଁ ଏବଂ ସ୍ୱାନନ୍ଦରୂପ ସିଂହାସନରେ ବସି ପୂଜିତ ହେଉଥିଲୁଁ । ଅଧୁନା କୌଣସି ଏକ ଗୋପବଧୂ ଲମ୍ପଟ ଶଠଦ୍ୱାରା ଆମ୍ଭେମାନେ ବଳପୂର୍ବକ ଗୋପୀମାନଙ୍କର ଅନୁଗତ ହେଲୁଁ । ୪୨ଶ ଶ୍ଲୋକାର୍ଥ ।

ପ୍ରାପ୍ତସ୍ୱରୂପ ବିଷୟ କହୁଅଛନ୍ତି — ପ୍ରାପ୍ତସ୍ୱରୂପ ଜୀବ ଭକ୍ତି ବଳରେ ପାର୍ଷଦ ଦେହ ପ୍ରାପ୍ତ ହୋଇ ଶ୍ରୀକୃଷ୍ଣଙ୍କର କୌଣସି ଗୁଣରେ ଆକୃଷ୍ଟ ହୋଇ ତାହାଙ୍କୁ ଭଜନ କରନ୍ତି ।୮।

ମାୟାକୃତ ସ୍ଥୂଳ ସୂକ୍ଷ୍ମ ଦେହଦ୍ୱୟ ପରିତ୍ୟାଗ ପୂର୍ବକ ଶୁଦ୍ଧ ଜୀବ ସ୍ୱରୂପରେ ବା ଭଗବତ୍ପାର୍ଷଦରୂପରେ ଅବସ୍ଥାନହିଁ ମୁକ୍ତି । ୪୩ଶ ଶ୍ଲୋକାର୍ଥ ।

ଜୀବ ସ୍ୱରୂପତଃ ନିତ୍ୟ କୃଷ୍ଣଦାସ, ସେ ଶ୍ରୀକୃଷ୍ଣସେବାରୂପ ନିଜ କର୍ତ୍ତବ୍ୟରୁ ବହିର୍ମୁଖ ହେଲେ ମାୟାବଦ୍ଧ ହୁଅନ୍ତି । ଏହି ମାୟାବଦ୍ଧ ଅବସ୍ଥାରେ ମାୟାକୁ ଭୟ କରିବାକୁ ହୁଏ । କାରଣ ବହିର୍ମୁଖତା ଦୋଷରୁ ଶ୍ରୀକୃଷ୍ଣଦାସୀ ମାୟା ସେହି ବହିର୍ମୁଖ ଜୀବକୁ ଦଣ୍ଡପ୍ରଦାନ କରନ୍ତି । କିନ୍ତୁ ଯେଉଁ ଜୀବ ଭକ୍ତିଦେବୀଙ୍କ କୃପାରୁ କୃଷ୍ଣଙ୍କୁ ଭଜନ କରନ୍ତି, ମାୟା ସେମାନଙ୍କୁ ବନ୍ଧନରୁ ମୁକ୍ତି ଦିଅନ୍ତି ।୯।

୪୪ଶ ଶ୍ଲୋକର ଅନ୍ୱୟ— ମଧ୍ୟ ୨୦ଶ ପରିଚ୍ଛେଦ, ୧୪ଶ ଶ୍ଲୋକ ଦ୍ରଷ୍ଟବ୍ୟ ।

ଶ୍ରୀଜନକ ପ୍ରତି କବି ବାକ୍ୟ— ଭଗବତ୍ ବହିର୍ମୁଖ ଜୀବର ସ୍ୱରୂପବିସ୍ମୃତି ଜନ୍ମେ ଏବଂ ସେହି ହେତୁ ଦେହକର ଆତ୍ମଭିମାନ ହୁଏ । ଦ୍ୱିତୀୟ ବସ୍ତୁରେ ( ଦେହରେ ) ଅଭିନିବେଶ ହେତୁ ଭୟ ଜନ୍ମେ, ଅତଏବ ଜ୍ଞାନବ୍ୟକ୍ତି ଗୁରୁଙ୍କୁ ଈଶ୍ୱର ଓ ଶ୍ରେଷ୍ଠଦୃଷ୍ଟି ପୂର୍ବକ ( ଶ୍ରୀଗୁରୁ ପଦାଶ୍ରୟରେ ) ଐକାନ୍ତିକ ଭକ୍ତିରେ ଶ୍ରୀଭଗବାନଙ୍କୁ ଭଜନ କରିବ । ୪୪ଶ ଶ୍ଲୋକାର୍ଥ ।

ତଥାହି ଶ୍ରୀଗୀତାୟାମ୍ ( ୭।୧୪ )—

ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ
ତରନ୍ତି ତେ । ୪୫ ।

ଭକ୍ତି ବିନୁ ମୁକ୍ତି ନାହିଁ, ଭକ୍ତ୍ୟେ ସେ ମୁକ୍ତି ହୟ ।
ଭକ୍ତ୍ୟେ ମୁକ୍ତି ପାଇଲେହୋ ଅବଶ୍ୟ କୃଷ୍ଣେରେ
ଭଜୟ । ୯୦ ।

ତଥାହି ( ଭାଃ ୧୦।୧୪।୪ )—

ଶ୍ରେୟଃସୃତିଂ ଭକ୍ତିମୁଦସ୍ୟ ତେ ବିଭୋ,
କ୍ଲିଶ୍ୟନ୍ତି ଯେ କେବଳବୋଧଲବ୍ଧୟେ ।
ତେଷାମସୌ କ୍ଲେଶଳ ଏବ ଶିଷ୍ୟତେ,
ନାନ୍ୟଦ୍ୟଥା ସ୍ଥୂଲତୁଷାବଘାତିନାମ୍ । ୪୬ ।

ତଥାହି ( ଭାଃ ୧୦।୨।୩୨ )—

ଯେଽନ୍ୟେଽରବିନ୍ଦାକ୍ଷ ବିମୁକ୍ତମାନିନ-
ସ୍ତ୍ୱୟ୍ୟସ୍ତଭାବାଦବିଶୁଦ୍ଧବୁଦ୍ଧୟଃ ।
ଆରୁହ୍ୟ କୃଚ୍ଛ୍ରେଣ ପରଂ ପଦଂ ତତଃ,
ପତନ୍ତ୍ୟଧୋ ନାଦୃତଯୁଷ୍ମଦଙ୍ଘ୍ରୟଃ । ୪୭ ।

ତଥାହି ( ଭାଃ ୧୧।୫।୨ )—

ମୁଖବାହୂରୁପାଦେଭ୍ୟଃ ପୁରୁଷସ୍ୟାଶ୍ରମୈଃ ସହ ।
ଚତ୍ୱାରୋ ଜଜ୍ଞିରେ ବର୍ଣ୍ଣା ଗୁଣୈର୍ବିପ୍ରାଦୟଃ
ପୃଥକ୍ । ୪୮ ।

୪୫ଶ ଶ୍ଲୋକର ଅନ୍ୱୟ—ମଧ୍ୟ ୨୦ଶ ପରି, ୧୫ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନ୍ ଅର୍ଜ୍ଜୁନଙ୍କୁ କହୁଅଛନ୍ତି—ମୋର ( ପରମେଶ୍ୱରଙ୍କର ) ଏହି ଅତ୍ୟଦ୍ଭୁତ ଏବଂ ତ୍ରିଗୁଣାତ୍ମିକା ଶକ୍ତି (ମାୟା) ଦୁସ୍ତରଣୀୟା ଏହା ପ୍ରସିଦ୍ଧ, ତଥାପି ଯେଉଁ ବ୍ୟକ୍ତି ଐକାନ୍ତିକୀ ଭକ୍ତି ପୂର୍ବକ ମୋତେ ଭଜେ ସେ ଏହି ଦୁସ୍ତର ମାୟାକୁ ପାର ହୁଏ । ୪୫ଶ ଶ୍ଲୋକାର୍ଥ ।

ଅବଶ୍ୟ କୃଷ୍ଣରେ ଭଜୟ—ଭକ୍ତିଦ୍ୱାରା ମୁକ୍ତିଲାଭ କଲେ ସ୍ୱଦା ଭକ୍ତ ଭଜନ ସାଧନ ଦେହ ଅବଲମ୍ବନ କରି ଶ୍ରୀକୃଷ୍ଣଙ୍କୁ ଅକୈତବ ଭଜନ କରନ୍ତି, ଏହାହିଁ ଭକ୍ତିଦେବୀଙ୍କର ପ୍ରଭାବ । ୯୦ ।

ଭକ୍ତ୍ୟେ ଭକ୍ତିସାଧନଦ୍ୱାରା । ୯୦ ।

୪୬ଶ ଶ୍ଲୋକର ଅନ୍ୱୟ—ମଧ୍ୟ ୨୨ଶ ପରି, ୬ଷ୍ଠ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ହେ ପ୍ରଭୋ ! ସମସ୍ତ ମଙ୍ଗଳମାନଙ୍କର ଉତ୍ସସ୍ୱରୂପ ଆପଣଙ୍କର ଭକ୍ତି ପରିତ୍ୟାଗ କରି ଯେଉଁମାନେ ଅଭେଦ ବ୍ରହ୍ମଜ୍ଞାନ ଲାଭ ସକାଶେ ଶାସ୍ତ୍ରାଭ୍ୟାସାଦିରେ ଶ୍ରମ କରନ୍ତି, ଯେଉଁମାନେ ଧାନକୁ ତ୍ୟାଗ କରି ସାରଲାଭାର୍ଥ ଅନ୍ତଃସାରଶୂନ୍ୟ ଧାନତୁଷ ପ୍ରଭୃତିମାନ ଅଘାତକୁ କୁଟନ୍ତି, ସେମାନଙ୍କର ଯେପରି ସାରଲାଭ ହୁଏ ନା କେବଳ କ୍ଲେଶମାତ୍ର ଲାଭ ହୁଏ, କେବଳ ଜ୍ଞାନଲାଭଲାଷୀ ବ୍ୟକ୍ତିମାନଙ୍କର ଶ୍ରମ ଏହି ଅଘାତକୁଟା ପରି କ୍ଲେଶଦମାତ୍ର ହୁଏ ଅର୍ଥାତ୍ ମୁକ୍ତିଲାଭ ହୁଏ ନାହିଁ । ୪୬ଶ ଶ୍ଲୋକାର୍ଥ ।

୪୭ଶ ଶ୍ଲୋକାନ୍ୱୟ—ମଧ୍ୟ ୨୨ଶ ପରି, ୧୦ମ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ ପ୍ରତି ବେଦସ୍ତୁତି—ହେ ପଦ୍ମପଲାଶଲୋଚନ ଶ୍ରୀକୃଷ୍ଣ ! ଆପଣଙ୍କଠାରେ ଭକ୍ତି ଅଭାବରୁ ଯେଉଁମାନେ ଅଶୁଦ୍ଧବୁଦ୍ଧି ଅଥଚ ଆପଣଙ୍କୁ ଜୀବନ୍ମୁକ୍ତବୋଲି ଅଭିମାନ କରନ୍ତି, ସେମାନେ ବହୁଜନ୍ମର ଆୟାସଲବ୍ଧ ମୁକ୍ତିର ସନ୍ନିକଟସ୍ଥ ପଦ ଲାଭ କରିଥିଲେ ସୁଦ୍ଧା ଆପଣଙ୍କର ଶ୍ରୀଚରଣାରବିନ୍ଦର ଅନାଦର ଦୋଷରୁ ଅଧଃପତିତ ହୁଅନ୍ତି । ୪୭ଶ ଶ୍ଲୋକାର୍ଥ ।

୪୮ଶ ଶ୍ଲୋକର ଅନ୍ୱୟ—ମଧ୍ୟ ୨୨ଶ ପରି, ୮ମ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଗୁଣର ତାରତମ୍ୟ ଅନୁସାରେ ଚାରି ଆଶ୍ରମସହ ବ୍ରାହ୍ମଣାଦି ଚାରିବର୍ଣ୍ଣ ଜନ୍ମି ଅଛନ୍ତି । ୪୮ଶ ଶ୍ଲୋକାର୍ଥ ।

ତଥାହି ଭାବାର୍ଥଦୀପିକାୟାଂ ( ଭାଃ ୧ ।୮।୬।୨୧ )
ଧୃତଂ ଶାଙ୍କରଭାଷ୍ୟମ୍ (ନୃସିଂହତାପନୀ ୨।୫।୧୬)

ମୁକ୍ତା ଅପି ଲୀଳୟା ବିଗ୍ରହଂ କୃତ୍ୱା
ଭଗବନ୍ତଂ ଭଜନ୍ତେ । ୪୯ । *

ଏଇ ଛଅ ଆତ୍ମାରାମ କୃଷ୍ଣେରେ ଭଜୟ ।
ପୃଥକ୍ ପୃଥକ୍ ଚକାର ଇହାଁ ଅପିର ଅର୍ଥ କୟ ।
'ଆତ୍ମାରାମା ଅପି' କରେ କୃଷ୍ଣେ ଅହୈତୁକୀ ଭକ୍ତି
'ମୁନୟଃ ସନ୍ତଃ' ଇତି - କୃଷ୍ଣମନନେ ଆସକ୍ତି ॥
'ନିର୍ଗ୍ରନ୍ଥାଃ' ଅବିଦ୍ୟାହୀନ—କେହୋ ବିଧିହୀନ ।
ଯାହାଁ ଯେଇ ଯୁକ୍ତ—ସେଇ ଅର୍ଥେର ଅଧୀନ ।୯୩।

---

ସାଧକାଃ ବ୍ରହ୍ମମୟାଃ ପ୍ରାପ୍ତବ୍ରହ୍ମଲୟାଃ, ମୁମୁକ୍ଷଃ ଜୀବନ୍ମୁକ୍ତାଃ, ପ୍ରାପ୍ତସ୍ୱରୂପାଃ ଇତି ଷଡ଼୍‌ବିଧାଃ ଆତ୍ମାରାମାଃ । ପୃଥକ୍ ପୃଥକ୍ ଇତ୍ୟସ୍ୟ ପୂର୍ବଚରଣେନ ସମ୍ବନ୍ଧଃ । ତଥାହି ଏତେ ଷଡ଼ାତ୍ମାରାମାଃ ପୃଥକ୍ ପୃଥକ୍ ସ୍ୱଭାବାନୁସାରେଣ କୃଷ୍ଣଂ ଭଜନ୍ତି ଇତ୍ୟର୍ଥଃ । ଯଦ୍ୱା ଇହ ଅପ୍ୟର୍ଥଶ୍ଚକାରଃ ପୃଥକ୍ ପୃଥକ୍ ଅର୍ଥଃ ନତୁ ବିଶେଷଣ ବିଶେଷ୍ୟଭାବଃ । ୯୧ ବି, ନ,

---

୪୯ଶ ଶ୍ଳୋକର ଅନ୍ୱୟ—ଏହି ପରିଚ୍ଛେଦରେ ୭୩ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ମୁକ୍ତ ବ୍ୟକ୍ତିମାନେ ସ୍ୱଦା ଭକ୍ତିଦେବୀଙ୍କ କୃପାରୁ ଦେହ ପ୍ରାପ୍ତ ହୋଇ ଭଗବାନଙ୍କୁ ଭଜନ କରନ୍ତି । ୪୯ଶ ଶ୍ଳୋକାର୍ଥ ।

ଏଇଛଅ—ପୂର୍ବକଥିତ କେବଳ ବ୍ରହ୍ମଉପାସକ, ଅର୍ଥାତ୍ ସାଧକ, ବ୍ରହ୍ମମୟ, ପ୍ରାପ୍ତବ୍ରହ୍ମଲୟ, ଏ ତିନି ଓ ମୋକ୍ଷାକାଂକ୍ଷୀ, ଅର୍ଥାତ୍ ମୁମୁକ୍ଷୁ, ଜୀବନ୍ମୁକ୍ତ, ପ୍ରାପ୍ତସ୍ୱରୂପ ଏ ତିନି ଏରୂପ ମୋଟରେ ଛପ୍ରକାର ବ୍ରହ୍ମଉପାସକ ହୁଅନ୍ତି । ୯୧ ।

ପୃଥକ୍ ପୃଥକ୍—ଏହି ଛ ଆତ୍ମାରାମ ପୃଥକ୍ ପୃଥକ୍ ଭାବରେ ।

ଚକାର—( ଆତ୍ମାରାମଶ୍ଚ ) ଏହି ପଦର ଚକାର ।

ଇହାଁ ଅପିର ଅର୍ଥ କୟ—ଉପରୋକ୍ତ ଚକାରର ଏଠାରେ ଅର୍ଥ ଅପି, ଏହି ୬ ପ୍ରକାର ଆତ୍ମାରାମମାନେ ପୃଥକ୍ ପୃଥକ୍ ସ୍ୱଭାବାନୁସାରେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି । ୯୧ ।

ଆସକ୍ତି—ଆସକ୍ତ ହୋଇ । ୯୨ ।

ନିର୍ଗ୍ରନ୍ଥା ଶବ୍ଦର ଏଠାରେ ଉପରୋକ୍ତ ଛ ମଧ୍ୟରୁ କେହି ଅବିଦ୍ୟାହୀନ, ଯଥା—ପ୍ରାପ୍ତବ୍ରହ୍ମଲୟ, କେହି ବିଧିହୀନ, ଯଥା ମୁମୁକ୍ଷୁ ।

ଏଠାରେ ଏହି ଅର୍ଥ ହେଲା ଯେ ସାଧକ ବ୍ରହ୍ମୋପାସକମାନେ ବିଧିହୀନ ହୋଇ ଶ୍ରୀକୃଷ୍ଣ ମନନରେ ଆସକ୍ତ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କ ଗୁଣ ଏହି ପ୍ରକାର ।

ପ୍ରାପ୍ତବ୍ରହ୍ମଲୟ ବ୍ରହ୍ମୋପାସକମାନେ ଅବିଦ୍ୟାହୀନ ହୋଇ ଶ୍ରୀକୃଷ୍ଣ ମନନରେ ଆସକ୍ତ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କ ଗୁଣ ଏହି ପ୍ରକାର । ୯୩ ।

ଏହିପରି ବ୍ରହ୍ମମୟ, ମୁମୁକ୍ଷୁ, ଜୀବନ୍ମୁକ୍ତ ଓ ପ୍ରାପ୍ତସ୍ୱରୂପମାନଙ୍କୁ ଲଗାଇ ଭିନ୍ନ ଭିନ୍ନ ଅର୍ଥ କହିବାକୁ ହେବ । ୯୩ ।

'ଚ'-ଶବ୍ଦେ କର ଯଦି—'ଇତରେତର' ଅର୍ଥ ।
ଆର ଏକ ଅର୍ଥ କହ୍ୟ—ପରମ ସମର୍ଥ । ୯୪ ।
'ଆତ୍ମାରାମାଶ୍ଚ ଆତ୍ମାରାମାଶ୍ଚ' କରି ବାର ଛୟ ।
ପଞ୍ଚ 'ଆତ୍ମାରାମ' ଛୟ-ଚକାରେ ଲୁପ୍ତ ହୟ । ୯୫ ।
ଏକ 'ଆତ୍ମାରାମ'-ଶବ୍ଦ ଅବଶେଷେ ରହେ ।
ଏକ 'ଆତ୍ମାରାମ'-ଶବ୍ଦେ ଛୟ-ଜନେ କହେ ।
ତଥାହି ପାଣିନିଃ (୧।୨।୬୪),—
ସିଦ୍ଧାନ୍ତକୌମୁଦ୍ୟାମ୍ ।
ଅଜନ୍ତପୁଂଲିଙ୍ଗାଶବ୍ଦପ୍ରକରଣେ,—
"ସରୂପାଣାମେକଶେଷ ଏକବିଭକ୍ତୌ"

ଉକ୍ତାର୍ଥାନାମପ୍ରୟୋଗଃ ।
ରାମଶ୍ଚ ରାମଶ୍ଚ ରାମଶ୍ଚ ରାମା ଇତିବତ୍ । ୮୦ ।
ତବେ ଯେ ଚକାର, ସେଇ 'ସମୁଚ୍ଚୟ' କୟ ।
'ଆତ୍ମାରାମାଶ୍ଚ ମୁନୟଶ୍ଚ' କୃଷ୍ଣେରେ ଭଜୟ । ୯୬ ।
'ନିର୍ଗ୍ରନ୍ଥା ଅପି' ଏଇ 'ଅପି' ସମ୍ଭାବନେ ।
ଏଇ ସାତ ଅର୍ଥ ପ୍ରଥମ କରିଲ ବ୍ୟାଖ୍ୟାନେ ।
ଅନ୍ତର୍ଯ୍ୟାମି ଉପାସକ—'ଆତ୍ମାରାମ' କୟ ।
ସେଇ ଆତ୍ମାରାମ-ଯୋଗୀ ଦୁଇବିଧ ହୟ—
'ସଗର୍ଭ, ନିର୍ଗର୍ଭ' ଏଇ ହୟ ଦୁଇ ଭେଦ ।
ଏକ-ଏକ ତିନଭେଦେ ଛୟବିଧ ଭେଦ । ୯୯-୧୦୦

ଏକ ବିଭକ୍ତୌ ସରୂପାଣାମେକଶେଷଃ (ଯାନି ସମାନ ରୂପାଣିଦୃଷ୍ଟାନି, ତେଷାଂ ଏକ ଏବ ଶିଷ୍ୟତେ) ଉକ୍ତାର୍ଥାନାଂ ଅପ୍ରୟୋଗଃ ରାମାଃ ଇତିବତ୍ । ୮୦ ଶ୍ଳୋକଃ ।

ଚଶବ୍ଦସ୍ୟ ଯଦି "ଇତରେତରଭ୍ରା" ଇତ୍ୟର୍ଥଃ କ୍ରିୟତେ ତଦାଅନ୍ୟାର୍ଥୋ ଭବେତ୍ । ୯୪ ବ, ଚ, ।

ଚକାର—ପଦ୍ୟସ୍ଥ ଚକାର ଇତ୍ୟର୍ଥଃ । ୯୬ ବ, ଚ, ।

ଆତ୍ମାରାମଶବ୍ଦେନ ଅନ୍ତର୍ଯ୍ୟାମ୍ୟୁପାସକଶ୍ଚ କଥ୍ୟତେ । ସେଇ ସୋଽପି ଆତ୍ମାରାମୋଯୋଗୀ-ତ୍ରେୟକ ଭେଦଃ । ନିଜାନ୍ତଃକରଣେଯୋଗଃ ସଗର୍ଭଯୋଗଃ, ଭଗବତ୍ତ ମନଃସଂଯୋଗଃ ନିର୍ଗର୍ଭ-ଯୋଗଃ । ୯୯ ବ, ଚ, ।

ଚଶବ୍ଦର ଯଦି ଇତରେତର-ସମାସନିଷ୍ପନ୍ନ ଅର୍ଥ କରାଯାଏ ତେବେ ସେହି ଶ୍ଳୋକର ଅର୍ଥ ଅନ୍ୟ ପ୍ରକାର ହୁଏ । ୯୪ ।

ଇତରେତର ସମାସର ପ୍ରକରଣ କହୁଅଛନ୍ତି । ୯୫ ।

ଏକଶେଷ ସମାସରେ ସ୍ୱରୂପମାନଙ୍କର ଏକଶେଷ ଓ ଏକବିଭକ୍ତିରେ ଯେଉଁମାନଙ୍କର ଅର୍ଥ ଉକ୍ତ ହୁଏ ସେଠାରେ ଏକ ସ୍ୱରୂପ ରହେ । ଅନ୍ୟ ସମସ୍ତ ସ୍ୱରୂପର ପ୍ରୟୋଗ ହୁଏ ନା, ଯଥା— ରାମାଶ୍ଚ ରାମାଶ୍ଚ, ରାମାଶ୍ଚ ପରିବର୍ତ୍ତରେ ରାମାଃ ରହେ । ୮୦ଶ ଶ୍ଳୋକାର୍ଥ ।

ଇତରେତର ସମାସଦ୍ୱାରା ଶ୍ଳୋକର ଅର୍ଥ ଏହି ଯେ ଷଡ଼୍‌ବିଧ ଆତ୍ମାରାମମାନେ ଓ ମୁନିମାନେ ଅବିଦ୍ୟାହୀନ ଓ ବିଧିହୀନ ହେତୁ ଶ୍ରୀକୃଷ୍ଣ ଭଜନରେ ସେମାନଙ୍କର ଫଳାଭିସନ୍ଧି ନଥିଲେ ସୁଦ୍ଧା, ସେମାନେ ଶ୍ରୀକୃଷ୍ଣଙ୍କୁ ଅହୈତୁକୀ ଭକ୍ତି କରନ୍ତି, ଶ୍ରୀକୃଷ୍ଣଙ୍କର ଏହିପ୍ରକାର ଗୁଣର ବିଶେଷତ୍ୱ, ଏହା ସପ୍ତମ ଅର୍ଥ । ୯୬।୯୮ ।

ଉପରୋକ୍ତ ୭ମ ପର୍ଯ୍ୟାୟୋକ୍ତ ପରମାତ୍ମା ଉପାସକମାନଙ୍କୁ ଅବଲମ୍ବନ କରି ଅର୍ଥ କରୁଅଛନ୍ତି ।

ଅନ୍ତର୍ଯ୍ୟାମୀ ପରମାତ୍ମା ଉପାସକମାନଙ୍କୁ ଆତ୍ମାରାମ କୁହାଯାଏ । ସେହି ଆତ୍ମାରାମ ଯୋଗୀ ଦୁଇ ପ୍ରକାର, ସଗର୍ଭ—( ଯେଉଁମାନେ ନିଜ ଅନ୍ତଃକରଣରେ ଯୋଗ କରନ୍ତି ) ନିର୍ଗର୍ଭ ( ଯେଉଁମାନେ ଶ୍ରୀଭଗବାନଙ୍କଠାରେ ମନଃସଂଯୋଗ କରନ୍ତି ) ଏମାନେ ପ୍ରତ୍ୟେକ ତିନ ତିନ ଭେଦରେ ଛଅପ୍ରକାର । ୯୯।୧୦୦ ।

ତଥାହି ( ଭାଃ ୨।୨।୮ )—
କେଚିତ୍ ସ୍ୱଦେହାନ୍ତର୍ହୃଦୟାବକାଶେ,
ପ୍ରାଦେଶମାତ୍ରଂ ପୁରୁଷଂ ବସନ୍ତମ୍ ।
ଚତୁର୍ଭୁଜଂ କଞ୍ଜରଥାଙ୍ଗଶଙ୍ଖ-
ଗଦାଧରଂ ଧାରଣୟା ସ୍ମରନ୍ତି । *୧ ।

ତଥାହି ( ଭାଃ ୩।୨୮।୩୪ )—
ଏବଂ ହରୌ ଭଗବତି ପ୍ରତିଲବ୍ଧଭାବୋ,
ଭକ୍ତ୍ୟା ଦ୍ରବଦ୍ଧୃଦୟ ଉତ୍ପୁଲକଃ ପ୍ରମୋଦାତ୍ ।
ଔତ୍କଣ୍ଠ୍ୟବାଷ୍ପକଲୟା ମୁହୁରର୍ଦ୍ଦ୍ୟମାନ-
ସ୍ତଚ୍ଚାପି ଚିତ୍ତବଡ଼ିଶଂ ଶନକୈର୍ବିୟୁଙ୍କ୍ତେ । *୨ ।

ଯୋଗାରୁରୁକ୍ଷୁ, ଯୋଗାରୂଢ଼, ପ୍ରାପ୍ତସିଦ୍ଧି ଆର ।
ଦୋହେ ଏଇ ତିନଭେଦେ ହୟ ଛୟପ୍ରକାର ॥

ତଥାହି ଶ୍ରୀଗୀତାୟାମ୍ ( ୬।୩,୪ )—
ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମ କାରଣମୁଚ୍ୟତେ ।
ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣ-
ମୁଚ୍ୟତେ । *୩ ।
ଯଦା ହି ନେନ୍ଦ୍ରିୟାର୍ଥେଷୁ ନ କର୍ମସ୍ୱନୁଷଜ୍ଜତେ ।
ସର୍ବସଙ୍କଳ୍ପସନ୍ନ୍ୟାସୀ ଯୋଗାରୂଢ଼-
ସ୍ତଦୋଚ୍ୟତେ । *୪

---

କେଚିତ୍ ସ୍ୱଦେହାନ୍ତର୍ହୃଦୟାବକାଶେ ବସନ୍ତଂ ପ୍ରାଦେଶମାତ୍ରଂ ଚତୁର୍ଭୁଜଂ କଞ୍ଜରଥାଙ୍ଗ-ଶଙ୍ଖ ଗଦାଧରଂ ପୁରୁଷଂ ଧାରଣୟା ସ୍ମରନ୍ତି । *୧ ଶ୍ଲୋକ ।

ଏବଂ ( ଧ୍ୟାନମାର୍ଗେଣ ) ଭଗବତି ହରୌ ପ୍ରତିଲବ୍ଧଭାବଃ, ଭକ୍ତ୍ୟା — ଶ୍ରବଣାଦିନା, ଦ୍ରବଦ୍ଧୃଦୟଃ — ଦ୍ରବତ୍-ହୃଦୟଂ ଯସ୍ୟ ସଃ, ପ୍ରମୋଦାତ୍ ଉତ୍ପୁଲକଃ—ଉଦ୍‌ଗତାନି ପୁଲକାନି ଯସ୍ୟ, ଔତ୍କଣ୍ଠ୍ୟ ବାଷ୍ପକଲୟା ମୁହୁଃ ଅର୍ଦ୍ଦ୍ୟମାନଃ, ଆନନ୍ଦସମ୍ପ୍ଲବେ ନିମଜ୍ଜ୍ୟମାନଃ, ତ ତତ୍ (ଦୁର୍ଗ୍ରହସ୍ୟ ଭଗବତଃ ଗ୍ରହଣେ, ବଡ଼ିଶଂ ମତ୍ସ୍ୟବେଧନମିବ ଉପାୟଭୂତଂ, ଚିତ୍ତଂ ଧେୟାତ୍, ଶନକୈଃ ବିୟୁଙ୍କ୍ତେ-ଉତ୍ତାରଣେ ଶିଥିଳ ପ୍ରୟତ୍ନଃ ଭବତି । *୨ ଶ୍ଲୋକ ।

ଯୋଗଂ — ଧ୍ୟାନନିଷ୍ଠାଂ ଆରୁରୁକ୍ଷୋଃ ମୁନେଃ କର୍ମ ( ଏବ ) କରଣଂ ଉଚ୍ୟତେ, ତସ୍ୟ —ଯୋଗାରୂଢ଼ସ୍ୟ—ଧ୍ୟାନନିଷ୍ଠସ୍ୟ ଶମ ଏବ କାରଣଂ ଉଚ୍ୟତେ । ଯଦା ଆତ୍ମାନନ୍ଦରସିକଃସନ୍ ଇନ୍ଦ୍ରିୟାର୍ଥେଷୁ—ଶବ୍ଦାଦିଷୁ ତତ୍ ସାଧନେଷୁ କର୍ମସୁ ନ ଅନୁଷଜ୍ଜତେ ସର୍ବସଙ୍କଳ୍ପ ସନ୍ନ୍ୟାସୀ ତଦା ତତ୍ ଯୋଗାରୂଢ଼ଃ ଉଚ୍ୟତେ । *୩।*୪ ଶ୍ଲୋକଃ ।

---

ଶ୍ରୀଶୁକଦେବ କହୁଅଛନ୍ତି—ଯୋଗୀମାନଙ୍କ ମଧ୍ୟରୁ କେହି କେହି ବ୍ୟକ୍ତି ନିଜଦେହର ଅଭ୍ୟନ୍ତରସ୍ଥ ହୃଦୟାବକାଶରେ ପ୍ରାଦେଶପରିମିତ (ବୃଦ୍ଧଅଙ୍ଗୁଳି ଓ ତର୍ଜନୀ ବିସ୍ତାର ପରିମାଣ ) ପଦ୍ମ, ଚକ୍ର, ଶଙ୍ଖ ଓ ଗଦାଧାରୀ ଚତୁର୍ଭୁଜ ପୁରୁଷଙ୍କୁ ଧାରଣାଦ୍ୱାରା ସ୍ମରଣ କରନ୍ତି । *୧ ଶ୍ଲୋକାର୍ଥ ।

ଶ୍ରୀକପିଳଦେବ କହୁଅଛନ୍ତି—ଏହିପରି ଧ୍ୟାନଦ୍ୱାରା ଯେ ଭଗବାନ୍ ଶ୍ରୀହରିଙ୍କଠାରେ ଭାବ ଲାଭ କରିଅଛନ୍ତି, ଶ୍ରବଣ କୀର୍ତ୍ତନଦ୍ୱାରା ଯାହାଙ୍କର ଚିତ୍ତ ଦ୍ରବୀଭୂତ ଓ ଆନନ୍ଦରେ ଯେ ପୁଲକିତାଙ୍ଗ ଉତ୍କଣ୍ଠାବଶତଃ ଯେ ନେତ୍ରଜଳଦ୍ୱାରା ଆନନ୍ଦସାଗରରେ ନିମଗ୍ନ, ଏପ୍ରକାର ଯୋଗୀଙ୍କର ତାଦୃଶଚିତ୍ତରୂପ ବଡ଼ିଶକୁ ମଧ୍ୟ ସେ କ୍ରମେ କ୍ରମେ ଧ୍ୟେୟ ଭଗବତ୍ ରୂପରୁ ବିଯୁକ୍ତ କରନ୍ତି । *୨ ଶ୍ଲୋକାର୍ଥ ।

ଦୋହେଁ—ସଗର୍ଭ, ନିର୍ଗର୍ଭ । ୧୦୧ ।

ଶ୍ରୀଭଗବାନ୍ କହୁଅଛନ୍ତି — ହେ ଅର୍ଜୁନ ? ଯୋଗାରୋହଣରେ ଇଚ୍ଛୁକ ଋଷିଙ୍କର କର୍ମହିଁ ସାଧନ ବୋଲି କଥିତ । ଯୋଗାରୂଢ଼ ସେହି ଋଷିଙ୍କର ଶମହିଁ ( ଇନ୍ଦ୍ରିୟନିଗ୍ରହ ) କାରଣ ବୋଲି କଥିତ । ଯେହେତୁ ଯେଉଁ ସମୟରେ ସାଧକ ଇନ୍ଦ୍ରିୟ ବିଷୟକ କର୍ମ ସମୂହରେ ଅନୁରକ୍ତ

ଏଇ ଛୟ ଯୋଗୀ ସାଧୁସଙ୍ଗାଦି ହେତୁ ପାଞା ।
କୃଷ୍ଣ ଭଜେ କୃଷ୍ଣଗୁଣେ ଆକୃଷ୍ଟ ହଇଞା । ୧୦୨ ।
'ଚ'-ଶବ୍ଦେ ଅପି-ଅର୍ଥ ଇହାଓ କହୟ ।
'ମୁନି, ନିର୍ଗ୍ରନ୍ଥ'-ଶବ୍ଦେର ପୂର୍ବବତ୍ ଅର୍ଥ ହୟ ।
'ଉରୁକ୍ରମ, ଅହୈତୁକୀ' କାହାଁ କୋନ ଅର୍ଥ ।
ଏଇ ତେର ଅର୍ଥ କୈଲ ପରମସମର୍ଥ । ୧୦୪ ।
ଏଇ ସବ ଶାନ୍ତ ଯବେ ଭଜେ ଭଗବାନ୍ ।
'ଶାନ୍ତଭକ୍ତ' କରି ତବେ କହି ତାର ନାମ ।
'ଆତ୍ମା'-ଶବ୍ଦେ 'ମନ' କହେ, ମନେ ଯେଇ ରମେ,
ସାଧୁସଙ୍ଗେ ସେହ ଭଜେ ଶ୍ରୀକୃଷ୍ଣଚରଣେ ।୧୦୬।

---

'ଏଇସାତ' ଇତ୍ୟନେନ ସପ୍ତ, ଅନ୍ତର୍ଯ୍ୟାମ୍ୟୁପାସକାଃ ଷଟ୍ ଇତ୍ୟେବଂ ତ୍ରୟୋଦଶ ଭେଦାଃ । ୯୮ରୁ ୧୦୦ ଶ, ଚ, ।

---

ନ ହୁଅନ୍ତି ତେତେବେଳେ ସର୍ବ ସଙ୍କଳ୍ପ ସହିତ ସେହି ସାଧକଙ୍କୁ ଯୋଗାରୂଢ଼ କୁହାଯାଏ । ୭୩,୭୪ ଶ୍ଳୋକାର୍ଥ ।

ଏଇଛୟ—ସଗର୍ଭ ୩ ଓ ନିର୍ଗର୍ଭ ୩ ।

ସାଧୁସଙ୍ଗାଦି—ସାଧୁସଙ୍ଗ, ଭକ୍ତି କୃପା ଓ କୃଷ୍ଣକୃପା । ୧୦୨ ।

ଏଠାରେ ଚ, ଅପି, ମୁନି ନିର୍ଗ୍ରନ୍ଥ ଶବ୍ଦମାନଙ୍କର ୯୧,୯୨, ୯୩ ପୟାରୋକ୍ତ ଅର୍ଥପରି ଅର୍ଥ କରିବାକୁ ହେବ । ୧୦୩।୧୦୪ ।

ଯୋଗାରୁରୁକ୍ଷୁ ଆତ୍ମାରାମ ବଧୂଷ୍ଟୀନ ହୋଇ ଶ୍ରୀକୃଷ୍ଣ ମନନରେ ଆସକ୍ତ ହୋଇ ଶ୍ରୀକୃଷ୍ଣଙ୍କ ଠାରେ ଅହୈତୁକୀ ଭକ୍ତି କରନ୍ତି ।

ଅନ୍ୟ ପକ୍ଷରେ ଏହି ପ୍ରକାର ଅର୍ଥ କରିବାକୁ ହେବ, କାହାରପକ୍ଷରେ ବଧୂଷ୍ଟୀନ କାହାରପକ୍ଷରେ ଅବଦ୍ୟାସ୍ଥୀନ ପ୍ରୟୋଗ ହେବ । ୧୦୩।୧୦୪ ।

ପୂର୍ବୋକ୍ତ ବ୍ରହ୍ମୋପାସକ ୭, ଉପରୋକ୍ତ ଅନ୍ତର୍ଯ୍ୟାମ୍ୟୁପାସକ ୬ ଏହିରୂପ ୧୩ । ୧୦୪ ।

ଏହି ୧୩ପ୍ରକାର ବ୍ରହ୍ମ ଓ ଅନ୍ତର୍ଯ୍ୟାମ୍ୟୁପାସକମାନେ ସାଧନବଳରେ ଶୋକ ମୋହାଦି-ରହିତ ହେତୁ ପ୍ରସନ୍ନାତ୍ମା ଅର୍ଥାତ୍ ଶାନ୍ତ, ଏମାନେ ଯେତେବେଳେ ସାଧୁ କୃଷ୍ଣ ବା ଭକ୍ତିଦେବୀଙ୍କ କୃପାରୁ ଶ୍ରୀକୃଷ୍ଣଙ୍କୁ ଭଜନ୍ତି ତେତେବେଳେ ସେମାନଙ୍କୁ ରାଗମାର୍ଗର ପଞ୍ଚବିଧ ଭକ୍ତମାନଙ୍କ ମଧ୍ୟରେ ଶାନ୍ତ ଭକ୍ତ କୁହାଯାଏ । ୧୦୫ ।

ଆତ୍ମାର ଅପର ଅର୍ଥ ମନ, ଏହି ଅର୍ଥଲଗାଇ ଅର୍ଥ କରୁଅଛନ୍ତି । ୧୦୬ ।

ତଥାହି (ଭାଃ ୧୦।୮୭।୧୮)—

ଉଦରମୁପାସତେ ଯ ଋଷିବର୍ତ୍ମସୁ କୂର୍ପଦୃଶଃ,
ପରିସରପଦ୍ଧତିଂ ହୃଦୟମାରୁଣୟୋ ଦହରମ୍ ।
ତତ ଉଦଗାଦନନ୍ତ ତବ ଧାମ ଶିରଃ ପରମଂ,
ପୁନରିହ ଯତ୍ସମେତ୍ୟ ନ ପତନ୍ତି
କୃତାନ୍ତମୁଖେ । ୫୫ ।

ଏହୋ କୃଷ୍ଣଗୁଣାକୃଷ୍ଟ ମହାମୁନି ହୈଞା ।
ଅହୈତୁକୀ ଭକ୍ତି କରେ ନିର୍ଗ୍ରନ୍ଥ ହଇୟା ।୧୦୭।
'ଅପି' ଶବ୍ଦେ 'ଯତ୍ନ' କହେ, ଯତ୍ନ କରିୟା ।
'ମୁନୟୋଽପି' କୃଷ୍ଣ ଭଜେ ଗୁଣାକୃଷ୍ଟ ହୈଞା ॥

---

ଋଷିବର୍ତ୍ମସୁ—ଋଷୀଣାଂ ସମ୍ପ୍ରଦାୟେଷୁ, ଯେ କୂର୍ପଦୃଶଃ—କୂର୍ପଂ ଶର୍କରାରଜଃ—ଦୃଷ୍ଟୁ ଅକ୍ଷିଷୁ ଯେଷାଂ ତେ, ରଜଃପିହିତଦୃଷ୍ଟୟଃ ଶର୍କରାକ୍ଷାଃ, ଉଦରସ୍ଥଂ—ବଣ୍ଟେନ୍ଦ୍ରିତ ମଣିପୂରସ୍ଥଂ ବ୍ରହ୍ମ ବୈଶ୍ୱାନରାଖ୍ୟଂ—ବୈଶ୍ୱାନରାନ୍ତର୍ଯ୍ୟାମିନଂ କ୍ରିୟାଶକ୍ତିଦାୟକଂ ବା ଯଦ୍ୱା ଉଦରଂ ବୈରାଜସ୍ୟ ନାଭିପଦ୍ମେବର ବଶିଷ୍ଟଂ ନବସ୍ଥଲଂ ଉପାସତେ—ଧ୍ୟାୟନ୍ତି । ଅରୁଣୟଃ—ଅରୁଣସ୍ୟ ଅପତ୍ୟାନି ଅରୁଣାଖ୍ୟାଃ ଋଷୟସ୍ତୁ ପରିସରପଦ୍ଧତିଂ—ପରିତଃ ସରନ୍ତି—ପ୍ରସର୍ପନ୍ତି ଇତି ପରିସରାଃ—ନାଡ୍ୟଃ ତାସାଂ ପଦ୍ଧତିଂ—ପ୍ରସରଣସ୍ଥାନଂ ସାକ୍ଷାତ୍ ହୃଦୟସ୍ଥଂ, ଦହରଂ—ଦହରାକାଶାଖ୍ୟଂ ଦହରାକାଶସ୍ଥ-ଜୀବାନ୍ତର୍ଯ୍ୟାମିଣଂ ଜ୍ଞାନଶକ୍ତିଦାୟକଂ ବା, ଯଦ୍ୱାଦହରଂ—ଦୁର୍ଗମଂ ହୃଦୟଂ ବୈରାଜସ୍ୟ ଉଦରସ୍ଥ ସୂକ୍ଷ୍ମଂ ଜ୍ୟୋତିର୍ମୟଂ ବ୍ରହ୍ମ ଉପାସତେ, ପରିସରପଦ୍ଧତିଂ— ଉର୍ଦ୍ଧ୍ୱଂ ପ୍ରାପକଂ ହେ ଅନନ୍ତ ! ତତଃ—ହୃଦୟାତ୍, ତବଧାମ— ଉପଲବ୍ଧିସ୍ଥାନଂ ସୁଷୁମ୍ନାଖ୍ୟଂ, ପରମଂ—ଶ୍ରେଷ୍ଠଂ ଜ୍ୟୋତିର୍ମୟଂ, ଶିରଃମୂର୍ଦ୍ଧାନଂ ପ୍ରତି ଉଦଗାତ୍- ଉଜ୍ଜଗାମ ଯତ୍ସମେତ୍ୟ—ପ୍ରାପ୍ୟ ପୁନରିହ କୃତାନ୍ତମୁଖେ କୃତାନ୍ତସ୍ୟ— କାଳସ୍ୟ ମୁଖେ—ସଂସାରେ ନ ପତନ୍ତି । ୫୫ ଶ୍ଳୋକଃ ।

ଏତତ୍ତ୍ୱପକ୍ଷେ ଅପ୍ୟର୍ଥ ଯତ୍ନେ ବମତେ ଯତ୍ନେ ଚତୁଶ୍ଚାର୍ଥ ଏତଦର୍ଥମାହ ଯତ୍ନ କରିୟା ଇତି । ୧୦୮ ବ, ଚ, ।

---

ଶ୍ରୁତିମାନେ ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ଋଷି ସମ୍ପ୍ରଦାୟ ମଧ୍ୟରେ ସ୍ଥୂଳଦର୍ଶୀ ଋଷିମାନେ ଉଦର ମଧ୍ୟଗତ ମଣିପୁରସ୍ଥ ବ୍ରହ୍ମଙ୍କୁ ଉପାସନା କରନ୍ତି ଓ ଅରୁଣିମାନେ ହୃଦୟ ମଧ୍ୟସ୍ଥ ନାଡ଼ିମାର୍ଗରେ ସୂକ୍ଷ୍ମରୂପ ବ୍ରହ୍ମଙ୍କୁ ଉପାସନା କରନ୍ତି ହେ ଅନନ୍ତ ! ପରେ ସେମାନେ ହୃଦୟରୁ ଆପଣଙ୍କର ଉପଲବ୍ଧିର ପରମସ୍ଥାନ ମସ୍ତକ ପ୍ରତି ଉଦ୍ଗତ ହୁଅନ୍ତି । ଯେଉଁ ସ୍ଥାନକୁ ଗମନ କଲେ ଆଉ କୃତାନ୍ତମୁଖରେ ପତିତ ହେବାକୁ ହୁଏ ନା ।୫୫ ଶ୍ଳୋକାର୍ଥ ।

ମନୋରମୀ ଅପ୍ରାରାମ ଅବଦ୍ୟାହୀନ ମହାମୁନି ହୋଇ ସୁଦ୍ଧା ଶ୍ରୀକୃଷ୍ଣଙ୍କର ଗୁଣାକୃଷ୍ଟ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି ଏହା ୧୪ ଅର୍ଥ ।୧୦୭।

ଆତ୍ମାରାମର ଯତ୍ନ ଅର୍ଥ କରି ଶ୍ଳୋକର ଅର୍ଥ କରୁଅଛନ୍ତି —

ଯତ୍ନକରିୟା— ଶ୍ରୀକୃଷ୍ଣଙ୍କ ଭଜନରେ ଯତ୍ନେରତ ।

ତଥାହି ( ଭାଃ ୧।୫।୧୮ )—

ତସ୍ୟୈବ ହେତୋଃ ପ୍ରଯତେତ କୋବିଦୋ,
ନ ଲଭ୍ୟତେ ଯଦ୍‌ଭ୍ରମତାମୁପର୍ଯ୍ୟଧଃ ।
ତଲ୍ଲଭ୍ୟତେ ଦୁଃଖବଦନ୍ୟତଃ ସୁଖଂ,
କାଳେନ ସର୍ବତ୍ର ଗଭୀରରଂହସା । ୫୭ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୧।୩୭ )
ସର୍ବଥୈବ ଦୁରୂହୋଽୟମଭକ୍ତୈର୍ଭଗବଦ୍ରସଃ ।
ଅତଏବ ସର୍ବାର୍ଥଃ ସିଦ୍ଧତ୍ୟେଷ ମଣିଶ୍ଚିତଃ ।୫୭

'ଚ'-ଶବ୍ଦ—'ଅପି'-ଅର୍ଥେ, 'ଅପି—ଅବଧାରଣେ
ଯତ୍ନ ଗ୍ରହ ବିନା ଭକ୍ତି ନା ଜନ୍ମାୟ ପ୍ରେମେ ।୧୦୯

ତଥାହି ତତ୍ରୈବ ( ୧।୨।୨୨ )—

ସାଧନୌଘୈରନାସଙ୍ଗୈରଲଭ୍ୟା ସୁଚିରାଦପି ।
ହରିଣା ଚାଶ୍ୱଦେୟେତି ଦ୍ୱିଧା ସା ସ୍ୟାତ୍
ସୁଦୁର୍ଲ୍ଲଭା । ୫୮ ।

ଉପର୍ଯ୍ୟଧଃ-ଆବ୍ରହ୍ମଲୋକ ସ୍ଥାବର ପର୍ଯ୍ୟନ୍ତଂ, ଭ୍ରମତାଂ ଭ୍ରମଦ୍ଭିଃଲୋକୈଃ ଯତ୍ତୁ ନଲଭ୍ୟତେ, କୋବିଦଃ—ବିବେକୀ ତସ୍ୟୈବ ହେତୋଃ ପ୍ରଯତେତ-ଯତ୍ନଂକୁର୍ଯ୍ୟାତ୍, ଗଭୀରରଂହସାକାଳେନ ଦୁଃଖବତ୍ ତତ୍—ବିଷୟସୁଖଂ, ଅନ୍ୟତଃ ଏବ-ପ୍ରାଚୀନ-ସ୍ୱକର୍ମ୍ମଣା, ସର୍ବତ୍ର-ନରକାଦୌଅପି, ଲଭ୍ୟତେ । ୫୭ ଶ୍ଳୋକଃ ।

ଅନାସଙ୍ଗୈଃ ସାଧନୌଘୈଃ-ନାନା ସାଧନୈଃ, ସୁଚିରାତ୍ ଅପି ଅଲଭ୍ୟା-ହରିଣା ଆଶୁ ଅଦେୟା ଚ ଇତି ସା-ଭକ୍ତିଃ ସୁଦୁର୍ଲଭା ଦ୍ୱିଧା ସ୍ୟାତ୍ । ୫୮ । ଶ୍ଳୋକଃ ।

ଶ୍ରୀ ନାରଦ ବ୍ୟାସଦେବଙ୍କୁ କହୁଅଛନ୍ତି-ବ୍ରହ୍ମଯୋନିଠାରୁ ସ୍ଥାବର ଯୋନିପର୍ଯ୍ୟନ୍ତ ଭ୍ରମଣକାରୀ ଜୀବମାନେ ଯାହା ଲାଭକରି ପାରନ୍ତି ନାହିଁ, ପଣ୍ଡିତମାନେ ସେହି ଭକ୍ତି ଲାଭ ସକାଶେ ବିଶେଷରୂପେ ଯତ୍ନ କରିବେ । କାରଣ-କାଳର ଦୁର୍ବିବେଗାହ୍ୟ ପ୍ରଭାବରୁ ବିଷୟ ସୁଖ ଦୁଃଖପରି ଅନାୟାସରେ ସର୍ବତ୍ର ଲାଭ ହୁଏ । ୫୭ ଶ୍ଳୋକାର୍ଥ ।

ଏହାର ଭାବ ଏହି ଯେ—କେହି ଦୁଃଖଲାଭ କରିବା ସକାଶେ ଯତ୍ନ ନ କଲେ ମଧ୍ୟ ତାହା ଜୀବ ପୂର୍ବସଞ୍ଚିତ କର୍ମ ହେତୁ ଲାଭ କରେ, ସେହିପରି ବିଷୟ ସୁଖ ମଧ୍ୟ ପୂର୍ବସଞ୍ଚିତ କର୍ମ ହେତୁ ବିନାଯତ୍ନରେ ଲାଭ ହୁଏ । କିନ୍ତୁ ଶ୍ରୀକୃଷ୍ଣଙ୍କ ଚରଣରେ ଭକ୍ତିସୁଖ ସ୍ୱଧର୍ମ ଅନୁଷ୍ଠାନ କର୍ମଦ୍ୱାରା ଲାଭ ହୁଏ ନା, ତାହା ଆସକ୍ତି ପୂର୍ବକ ଅତିଶୟ ଯତ୍ନଦ୍ୱାରା ଲାଭ ହୁଏ ।

୫୭ ଶ୍ଳୋକର ଅନୁବାଦ-ମଧ୍ୟ: ୨୦ଶ ପରି! ୭ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଭଗବତ୍ ଧର୍ମର ବିଷୟ ଅବଗତ ହେବା ନିମିତ୍ତ ଯେଉଁମାନଙ୍କର ମନ ଅତିଶୟ ଆଗ୍ରହଯୁକ୍ତ ହୁଏ, ସେମାନଙ୍କର ଅଭିଲଷିତ ସମସ୍ତ ବିଷୟ ଅବିଳମ୍ବରେ ସିଦ୍ଧ ହୁଏ । ୫୭ ଶ୍ଳୋକାର୍ଥ ।

ଅବଧାରଣ—ସ୍ଥିରୀକରଣ । ଯତ୍ନାଗ୍ରହ-( ଯତ୍ନ-ଉଦ୍‌ଯୋଗ, ଅଗ୍ରହ, ଆସକ୍ତି) । ନାଜନ୍ମାୟ ପ୍ରେମେ-ପ୍ରେମଜାତ କରେନା ।

ଅସ୍ମାର ଯତ୍ନ ଅର୍ଥରେ ଶ୍ଳୋକର ଅର୍ଥ ଏହି ରୂପ-ଭକ୍ତି ସୁଖ ଲାଭ ସକାଶେ ଯତ୍ନପୂର୍ବକ ଶ୍ରୀକୃଷ୍ଣ ଭଜନ କରିବା ଅବଶ୍ୟ କର୍ତ୍ତବ୍ୟ, ଏହା ଅବଧାରଣ କରି ମୁନିମାନେ ମଧ୍ୟ ଆଗ୍ରହ ସହିତ ଯତ୍ନପୂର୍ବକ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ ଏହିପରି । ଏ ୧୫ ଅର୍ଥ ।

ଭକ୍ତି ଦୁଇପ୍ରକାରେ ସୁଦୁର୍ଲଭ ଅର୍ଥାତ୍ ଅନାସକ୍ତଭାବରେ ସାଧନ ସମୂହଦ୍ୱାରା ବହୁକାଳରେ ମଧ୍ୟ ଲାଭ ହୁଅନ୍ତି ନାହିଁ ଏବଂ ଭକ୍ତିରେ ଆସକ୍ତି ହେଲେ ମଧ୍ୟ ହରି ଶୀଘ୍ର ତାହା ଦିଅନ୍ତି ନାହିଁ, ବିନା ଯତ୍ନ ଓ ଅଗ୍ରହରେ କେବଳ ଅହୈତୁକୀ ସାଧନଦ୍ୱାରା ପ୍ରେମଭକ୍ତି ଲାଭ ହୁଏ ନା । ୫୮ । ଶ୍ଳୋକାର୍ଥ ।

ତଥାହି ଶ୍ରୀଗୀତାୟାମ୍ ( ୧୦।୧୦ )—
ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ । ୫୯ ।

'ଅମ୍ବା'-ଶବ୍ଦେ—'ଧୃଷ୍ଟ' କହେ ଧୈର୍ଯ୍ୟ ଯେଇ ଜନେ ।
'ଧୈର୍ଯ୍ୟବନ୍ତ ଏବ' ହଞା କରୟେ ଭଜନେ ।୧୧୦

'ମୂକ'-ଶବ୍ଦେ—ପକ୍ଷୀ ଭୃଙ୍ଗ, 'ନିର୍ଗ୍ରନ୍ଥ'—ମୂର୍ଖଜନ ।
କୃଷ୍ଣକୃପାୟ ସାଧୁକୃପାୟ ଦୋହାର ଭଜନ ।

ତଥାହି ( ଭାଃ ୧୦।୨୧।୧୪ )—
ପ୍ରାୟୋ ବତାମ୍ବ ମୁନୟୋ ବିହଗା ବନେଽସ୍ମିନ୍,
କୃଷ୍ଣେକ୍ଷିତଂ ତଦୁଦିତଂ କଳବେଣୁଗୀତମ୍ ।
ଆରୁହ୍ୟ ଯେ ଦ୍ରୁମଭୁଜାନ୍ ରୁଚିରପ୍ରବାଳାନ୍,
ଶୃଣ୍ୱନ୍ତି ମୀଲିତଦୃଶୋ ବିଗତାନ୍ୟବାଚଃ ।୬୦

ବତ ଇତି ଖେଦେ, ଅମ୍ବ ! —ହେ ମାତଃ । ଅସ୍ମିନ୍ ବନେ ଯେ ବିହଗାଃ (ତେ) ପ୍ରାୟଃ ମୁନୟଃ ଯେ— ବିହଗାଃ କୃଷ୍ଣେକ୍ଷିତଂ (ଯଥା ତଥା) ରୁଚିର ପ୍ରବାଳାନ୍—ଦ୍ରୁମ ଭୁଜାନ୍ ଆରୁହ୍ୟ ମୀଲିତଦୃଶଃ ବିଗତାନ୍ୟବାଚଃ (ସନ୍ତଃ) ତଦୁଦିତଂ—କଳବେଣୁଗୀତଂ ଶୃଣ୍ୱନ୍ତି ଇତ୍ୟନ୍ୱୟଃ ।

ଭୋ ଅମ୍ବ ! —ମାତଃ ! ଅସ୍ମିନ୍ ବନେ ଯେ ବିହଗାଃ —ପକ୍ଷିଣଃ ତେ ପ୍ରାୟଃ ମୁନୟୋ-ଭବନ୍ତୁମର୍ହନ୍ତି । କୁତଃ ! କୃଷ୍ଣେକ୍ଷିତଂ କୃଷ୍ଣଦର୍ଶନଂ ପ୍ରତ୍ୟଫଲାଦ୍ୟନ୍ତରଂ ବିନା ଯଥାଭବତି ତଥା ରୁଚିରାଃପ୍ରବାଳାଃଯେଷାଂତାନ୍‌ଦ୍ରୁମଭୁଜାନ୍—ବୃକ୍ଷାଣାଂ ଶାଖା ଆରୁହ୍ୟ ତେନ ଶ୍ରୀକୃଷ୍ଣେନ ଉଦିତଂ—ପ୍ରକଟିତଂ, କଳ ବେଣୁଗୀତଂ କେନାପି ସୁଖେନ ମୀଲିତଦୃଶଃ ତ୍ୟକ୍ତାନ୍ୟବାଚଃ ସନ୍ତଃ ଯେ—ଶୃଣ୍ୱନ୍ତୀତି । ତଥାହି ମୁନୟଃ ଶ୍ରୀକୃଷ୍ଣଦର୍ଶନଂ ଯଥା ଭବତି ତଥା ଦେହାନ୍ତକର୍ମଫଳ ତ୍ୟାଗେନ ବେଦଦ୍ରୁମଶାଖାରୂଢ଼ା ରୁଚିର ପ୍ରବାଳ ସ୍ଥାନୀୟାନି କର୍ମାଣ୍ୟେବୋପାଦଦାନାଃ ସ୍ୱଖିନଃସନ୍ତଃ ଶ୍ରୀକୃଷ୍ଣଗୀତମେବ ଶୃଣ୍ୱନ୍ତି ଅତସ୍ତ ଏବୈତେ ଭବିତୁମର୍ହନ୍ତୀତି । ୬୦ଶ ଶ୍ଳୋକଃ ।

୫୯ ଶ୍ଳୋକର ଅନ୍ୱୟ ଆଦି ୧ମ ପରି: ୨୦ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ହେ ପ୍ରଭୋ ! ବ୍ରହ୍ମବିଦ୍‌ମାନେ ବ୍ରହ୍ମାଙ୍କର ପରମାୟୁ ଲାଭକରି ମଧ୍ୟ ପରମାନନ୍ଦ ଲାଭଦ୍ୱାରା ଆପଣଙ୍କକୃତ ଉପକାରଋଣରୁ ମୁକ୍ତ ହୋଇପାରନ୍ତି ନାହିଁ, କାରଣ ଆପଣ ଜୀବର ସର୍ବପ୍ରକାର ଅମଙ୍ଗଳ ଦୂର କରିବା ଅଭିପ୍ରାୟରେ ବାହାରେ ଗୁରୁ ରୂପରେ ( ଭକ୍ତ ଶ୍ରେଷ୍ଠ ରୂପରେ ଦୃଷ୍ଟାନ୍ତ ଓ ଉପଦେଶଦ୍ୱାରା ) ଏବଂ ଅନ୍ତଃକରଣରେ ଅନ୍ତର୍ଯ୍ୟାମୀରୂପରେ ( ସଦସତ୍-ବୁଦ୍ଧିର ପ୍ରେରଣାଦ୍ୱାରା ) ତତ୍ତ୍ୱଜ୍ଞାନ ଓ ଭକ୍ତିଶିକ୍ଷା ଦେଇ ନିଜକୁ ପରିଚିତ କରାନ୍ତି । ୫୯ ଶ୍ଳୋକାର୍ଥ ।

ଏହାର ଭାବ ଏହି ଯେ ଅଗ୍ରହ ପୂର୍ବକ ଯତ୍ନଦ୍ୱାରା ଅର୍ଥାତ୍ ପ୍ରୀତିପୂର୍ବକ ଶ୍ରୀକୃଷ୍ଣଙ୍କୁ ଭଜନ କଲେ ପ୍ରେମଭକ୍ତି ଶୀଘ୍ର ଲାଭ ହୁଏ ।

ଅମ୍ବାଶବ୍ଦର ଅର୍ଥ ଧୃଷ୍ଟ ଏହି ଅର୍ଥ ଲଗାଇ ଶ୍ଳୋକର ଅର୍ଥ କରୁଅଛନ୍ତି । ଅମ୍ବାରାମାଃ ଏହାର ଅର୍ଥ ଧୈର୍ଯ୍ୟବନ୍ତ ଏ ବ ହ ଯ୍ୟଁ" । ୧୧୦ ।

ମୂକ ଶବ୍ଦର ଏକ ଅର୍ଥ ମୌନ । ପକ୍ଷୀ ଓ ଭୃଙ୍ଗମାନେ ମୌନ ହୋଇଥିବାରୁ ସେମାନଙ୍କୁ ମୂକ କୁହା ଯାଇଅଛି ।

ନିର୍ଗ୍ରନ୍ଥ-ମୂର୍ଖବ୍ୟକ୍ତିମାନେ ଯେଉଁମାନେ ଶାସ୍ତ୍ରଜ୍ଞାନ ବର୍ଜିତ । ପକ୍ଷୀ ଓ ଭୃଙ୍ଗାଦି ମୂକମାନେ, କିରାତ ହୂଣାଦି ନିର୍ଗ୍ରନ୍ଥମାନେ ମୂଢ଼ା ଧୈର୍ଯ୍ୟବନ୍ତ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ—ଏହିପ୍ରକାର । ଏହା ୧୬ ଅର୍ଥ ।

ଗୋପୀମାନେ ପରସ୍ପରକୁ କହୁଅଛନ୍ତି— ହେ ସଖି ! ପୁଣି ବିସ୍ମୟର ବିଷୟ ଦେଖ, ଏହି ବୃନ୍ଦାବନରେ ଯେଉଁ ପକ୍ଷୀମାନେ ଅଛନ୍ତି । ସେମାନେ ପ୍ରାୟ ମୁକ ହେଲେଣି, କାରଣ

ତଥାହି ( ଭାଃ ୧୦।୧୫।୬ ୭ )
ଏତେଽଲିନସ୍ତବ ଯଶୋଽଖିଲଲୋକତୀର୍ଥଂ,
ଗାୟନ୍ତ ଆଦିପୁରୁଷାନୁପଥଂ ଭଜନ୍ତେ ।
ପ୍ରାୟୋ ଅମୀ ମୁନିଗଣା ଭବଦୀୟମୁଖ୍ୟା,
ଗୂଢଂ ବନେଽପି ନ ଜହତ୍ୟନଘାତ୍ମଦୈବମ୍ । ୭୧ ।
ନୃତ୍ୟନ୍ତ୍ୟମୀ ଶିଖିନ ଈଡ୍ୟ ମୁଦା ହରିଣ୍ୟଃ,
କୁର୍ବନ୍ତି ଗୋପ୍ୟ ଇବ ତେ ପ୍ରିୟମୀକ୍ଷଣେନ ।
ସୂକ୍ତୈଶ୍ଚ କୋକିଳଗଣା ଗୃହମାଗତାୟ,
ଧନ୍ୟା ବନୌକସ ଇୟାନ୍ ହି ସତାଂ ନିସର୍ଗଃ ।୭୨।

ତଥାହି ( ଭାଃ ୧୦।୩୫।୭ )—
ସରସି ସାରସହଂସବିହଙ୍ଗା-
ଶ୍ଚାରୁଗୀତହୃତଚେତସ ଏତ୍ୟ ।
ହରିମୁପାସତ ତେ ଯତଚିତ୍ତା,
ହନ୍ତମୀଲିତଦୃଶୋ ଧୃତମୌନାଃ । ୭୩ ।

---

ହେ ଆଦିପୁରୁଷ ! ଏତେ ଅଲୟଃ ଅଖିଲଲୋକତୀର୍ଥଂ ( ସର୍ବଲୋକଶୋଧକଂ) ତେ—ତବ ଯଶଃ ଗାୟନ୍ତଃ ସନ୍ତଃ, ଅନୁପଥଂ—ପଥିପଥି ତ୍ୱାଂ ଭଜନ୍ତେ, ହେ ଅନଘ ! ଅମୀ ପ୍ରାୟଃ ଭବଦୀୟ ମୁଖ୍ୟାଃ ମୁନିଗଣାଃ ବନେ ଗୂଢମପି ଆତ୍ମଦୈବଂ ତ୍ୱାଂ ନଜହାତି । ହେ ଈଡ୍ୟ ! ଅମୀଶିଖିନଃ—ମୟୂରାଃ ମୁଦା ନୃତ୍ୟନ୍ତି, ନୃତ୍ୟେନ ଗୃହଂ ଆଗତାୟ ତେ—ତୁଭ୍ୟଂ ପ୍ରିୟଂ କୁର୍ବନ୍ତି । (ତଥା) ହରିଣ୍ୟଃଗୋପ୍ୟ ଇବ ଈକ୍ଷଣେନ କୋକିଳଗଣ ସୂକ୍ତୈଃ—ସ୍ତୋତ୍ରରୂପୈଃ ମଧୁରଶବ୍ଦୈଃ ତୁଭ୍ୟଂ ପ୍ରିୟଂ କୁର୍ବନ୍ତି, ଅତଏବ ଏତେବନୌକସଃ ଧନ୍ୟାଃ, ସତାଂ ଇୟାନ୍ ନିସର୍ଗଃ । ୭୧।୭୨ ଶ୍ଲୋକଃ ।

ସରସି ଯେ ଚାରୁଗୀତହୃତଚେତସଃ ଯତଚିତ୍ତାଃ ସାରସହଂସବିହଙ୍ଗାଃ ତେ ଏତ୍ୟ ତଦ୍‌ଗୀତାଭିମୁଖମାଗତ୍ୟ ଧୃତମୌନାଃ ମୀଲିତଦୃଶଶ୍ଚସନ୍ତଃ ହରିଂ ଉପାସତେ । ୭୩ ଶ୍ଲୋକଃ ।

---

ସେମାନେ ଶ୍ରୀକୃଷ୍ଣଦର୍ଶନାର୍ଥ ତାଳପତ୍ର ବ୍ୟବଧାନ ରହିତ ସୁନ୍ଦର ବୃକ୍ଷଶାଖାରେ ବସି ନିମୀଳିତ ନୟନରେ ଓ ନିଃଶବ୍ଦରେ ଶ୍ରୀକୃଷ୍ଣଙ୍କ ପ୍ରକଟିତ ମଧୁର ବେଣୁଗୀତ ଶୁଣୁଅଛନ୍ତି । ୭୦ ଶ୍ଲୋକାର୍ଥ ।

ଶ୍ରୀକୃଷ୍ଣ ବଳଦେବଙ୍କୁ କହୁଅଛନ୍ତି—ହେ ଆଦିପୁରୁଷ ଜଗଦ୍‌ଗୁରୋ ! ଏହି ସମସ୍ତ ଭ୍ରମରମାନେ ଆପଣଙ୍କର ଅଖିଳଲୋକପାବନ ଯଶ ଗାନ କରି କରି ଆପଣଙ୍କର ଅନୁବର୍ତ୍ତୀ ହୋଇଅଛନ୍ତି । ହେ ଅନଘ (ଭକ୍ତର ଅପରାଧ ଅଗ୍ରହଣକାରୀ) ଅର୍ଥାତ୍ ପରମ କାରୁଣିକ, ମୋର ଅନୁମାନ ହୁଏ ଏମାନେ ନିଜର ଇଷ୍ଟଦେବତା ଆପଣଙ୍କର ସଙ୍ଗ ତ୍ୟାଗ କରୁ ନାହାନ୍ତି । ଅର୍ଥାତ୍ ଏମାନେ ମଧ୍ୟ ଗୂଢ଼ବେଶ ଧାରଣ କରିଅଛନ୍ତି ।

ହେ ଈଡ୍ୟ (ସ୍ତବନୀୟ) ଏହି ମୟୂରମାନେ ଆପଣଙ୍କୁ ଅବଲୋକନ କରି ହର୍ଷରେ ନୃତ୍ୟ କରୁଅଛନ୍ତି, ଏହି ହରିଣୀମାନେ ଗୋପୀମାନଙ୍କ ତୁଲ୍ୟ ଈକ୍ଷଣ ଦ୍ୱାରା ଏବଂ ଏହି କୋକିଳମାନେ ମଧୁର ରବଦ୍ୱାରା ଆପଣଙ୍କର ପ୍ରିୟ ସାଧନ କରୁଅଛନ୍ତି । ଅତଏବ ଏହି ବନବାସୀମାନେ ଧନ୍ୟ, ସାଧୁମାନଙ୍କର ସ୍ୱଭାବ ଏହି ଯେ—ସେମାନେ ଆଗ୍ରହ ସହିତ ଗୃହାଗତ ଅଭ୍ୟାଗତଙ୍କୁ ସମୁଦାୟ ଅର୍ପଣ କରନ୍ତି । ୭୧।୭୨ ଶ୍ଲୋକାର୍ଥ ।

ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି—ସରୋବରସ୍ଥ ସାରସହଂସାଦି ପକ୍ଷୀମାନେ ଶ୍ରୀକୃଷ୍ଣଙ୍କର ମନୋହର ବଂଶୀଗାନଦ୍ୱାରା ଆକୃଷ୍ଟ ଚିତ୍ତ ଓ ତଦ୍‌ଗୀତାଭିମୁଖୀ ହୋଇ ସଂଯତମନରେ ନୟନ ନିମୀଳିତ କରି ଓ ମୌନାବଲମ୍ବନ କରି ଶ୍ରୀକୃଷ୍ଣଙ୍କର ଉପାସନା କରୁଅଛନ୍ତି । ୭୩ ଶ୍ଲୋକାର୍ଥ ।

ତଥାହି ( ଭାଃ ୨।୪।୧୭ )—

କିରାତହୂଣାନ୍ଧ୍ରପୁଲିନ୍ଦପୁକ୍କଶା,
ଆଭୀରକଙ୍କା ଯବନାଃ ଖସାଦୟଃ ।
ଯେଽନ୍ୟେ ଚ ପାପା ଯଦପାଶ୍ରୟାଶ୍ରୟାଃ,
ଶୁଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ । ୭୪ ।

କିଂବା 'ଧୃତି' ଶବ୍ଦେ—ପୂର୍ଣ୍ଣତାଜ୍ଞାନ କୟ ।
ଦୁଃଖାଭାବେ ଉତ୍ତମପ୍ରାପ୍ତ୍ୟେ ମହାପୂର୍ଣ୍ଣ ହୟ ।୧୧୨

ତଥାହି ଭକ୍ତିରସାମୃତସିନ୍ଧୌ ( ୨।୪।୭୫ )—

ଧୃତିଃ ସ୍ୟାତ୍ ପୂର୍ଣ୍ଣତାଜ୍ଞାନଦୁଃଖାଭାବୋତ୍ତମାପ୍ତିଭିଃ ।
ଅପ୍ରାପ୍ତାତୀତନଷ୍ଟାର୍ଥାନଭିସଂଶୋଚନାଦିକୃତ୍ । ୭୫
କୃଷ୍ଣଭକ୍ତ ଦୁଃଖହୀନ ବାଞ୍ଛାନ୍ତରହୀନ ।
କୃଷ୍ଣପ୍ରେମସେବା ପୂର୍ଣ୍ଣାନନ୍ଦ ପ୍ରବୀଣ । ୧୧୩ ।

---

କିରାତ ହୂଣାନ୍ଧ୍ର ପୁଲିନ୍ଦପୁକ୍କଶାଃ ଆଭୀରକଙ୍କାଃ ଯବନାଃଖସାଦୟଃ ଅନ୍ୟେ ଯେ (କର୍ମତଃପାପରୂପାଃ) ଯଦପାଶ୍ରୟାଶ୍ରୟାଃ—ଯଦପାଶ୍ରୟାଃ—ଭଗବତାଃ ତଦାଶ୍ରୟାଃ ସନ୍ତଃ, ଶୁଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ । ୭୪ ଶ୍ଲୋକଃ ।

ଜ୍ଞାନଦୁଃଖାଭାବୋତ୍ତମାପ୍ତିଭିଃ—ଜ୍ଞାନେନ—ଭଗବଦନୁଭବେନ, ତଥା ଭଗବତଃ ସମ୍ବନ୍ଧେନ ଯଃ ଦୁଃଖାଭାବଃ ତେନ ତଥା ଉତ୍ତମସ୍ୟ ଭଗବତ୍ତ ସମ୍ବନ୍ଧିନୋ ପରମପୁରୁଷାର୍ଥସ୍ୟ ପ୍ରେମ୍ନଃ ପ୍ରାପ୍ତ୍ୟାଚ ଯା, ପୂର୍ଣ୍ଣତା— ମନସଃ ଅଚାଞ୍ଚଲ୍ୟଂ ସା ଧୃତିଃ ସ୍ୟାତ୍, ଅପ୍ରାପ୍ତାତୀତ ନଷ୍ଟାର୍ଥାନଭିସଂଶୋଚନାଦି କୃତ୍—ଅପ୍ରାପ୍ତସ୍ୟ ଅତୀତସ୍ୟ ନଷ୍ଟସ୍ୟ ଚ ବିଷୟସ୍ୟ ଅନଭିଶୋଚନଂ କରୋତୀତି । ୭୫ ଶ୍ଲୋକ ।

---

ଶୁକଦେବ କହୁଅଛନ୍ତି—କିରାତ, ହୂଣ, ଅନ୍ଧ୍ର, ପୁଲିନ୍ଦ, ପୁକ୍କଶ, ଆଭୀର, କଙ୍କ, ଯବନ, ଖସ ପ୍ରଭୃତି ପାପଜାତିମାନେ ଏବଂ ଅନ୍ୟାନ୍ୟ ପାପ କର୍ମୀମାନେ ଯାହାଙ୍କ ଆଶ୍ରିତମାନଙ୍କର (ଭକ୍ତମାନଙ୍କର) ଆଶ୍ରୟ ଗ୍ରହଣ କରି ପବିତ୍ର ହୁଅନ୍ତି, ସେହି ପ୍ରଭାବଶାଳୀ ଶ୍ରୀକୃଷ୍ଣଙ୍କୁ ନମସ୍କାର । ୭୪ ଶ୍ଲୋକାର୍ଥ ।

ଜ୍ଞାନ— ଭଗବତ୍ତ ଅନୁଭବ ରୂପ ଜ୍ଞାନ ।

ଦୁଃଖାଭାବ—ଭଗବତ୍ତ ସମ୍ପର୍କରୁ ଦୁଃଖର ଅଭାବ ।

ଉତ୍ତମ ପ୍ରାପ୍ତି—ଭଗବତ୍ତ ସମ୍ବନ୍ଧରୁ ପରମପୁରୁଷାର୍ଥ ପ୍ରେମପ୍ରାପ୍ତି ।

ପୂର୍ଣ୍ଣତା—ମନର ଅଚାଞ୍ଚଲ୍ୟ । ୧୧୨ ।

ଜ୍ଞାନ ଓ ଦୁଃଖାଭାବ ହେତୁ ମନର ପୂର୍ଣ୍ଣତା (ନିଶ୍ଚଳତା) ଓ ପ୍ରେମଲାଭ ହେତୁ ମନର ମହାପୂର୍ଣ୍ଣତାକୁ ଧୃତି ବୋଲଯାଏ । ୧୧୨ ।

ଭଗବତ୍ତ ଅନୁଭବରୂପ ଜ୍ଞାନ, ଭଗବତ୍ତ ସମ୍ବନ୍ଧରୂପ ଦୁଃଖାଭାବ ଏବଂ ଭଗବତ୍ତ ସମ୍ବନ୍ଧୀୟ ପ୍ରେମଲାଭ ହେତୁ ମନର ଅଚାଞ୍ଚଲ୍ୟକୁ ଧୃତି କୁହାଯାଏ । ଅପ୍ରାପ୍ତ, ଅତୀତ ଓ ନଷ୍ଟବିଷୟରେ ଶୋକ ନ କରିବା ତାହାର ଲକ୍ଷଣ । ୭୫ଶ ଶ୍ଲୋକାର୍ଥ ।

ବାଞ୍ଛାନ୍ତର— କୃଷ୍ଣସେବା ବ୍ୟତୀତ ଅନ୍ୟ ବାଞ୍ଛା କୈତବ । ୧୧୩ ।

ପ୍ରବୀଣ—ଶ୍ରେଷ୍ଠ । ୧୧୩ ।

ତଥାହି ( ଭାଃ ୧।୧୮।୬୭ ) –

ମତ୍ସେବୟା ପ୍ରତୀତଂ ତେ ସାଲୋକ୍ୟାଦି-
ଚତୁଷ୍ଟୟମ୍ ।
ନେଚ୍ଛନ୍ତି ସେବୟା ପୂର୍ଣ୍ଣାଃ କୁତୋଽନ୍ୟତ୍-
କାଲବିପ୍ଲୁତମ୍ । ୬୬ ।

ତଥା ଗୋସ୍ୱାମିପାଦୋକ୍ତଶ୍ଳୋକଃ

ହୃଷୀକେଶେ ହୃଷୀକାଣି ଯସ୍ୟ ସ୍ଥୈର୍ଯ୍ୟଗତାନି ହି ।
ସ ଏବ ଧୈର୍ଯ୍ୟମାପ୍ନୋତି ସଂସାରେ ଜୀବଚଞ୍ଚଳେ ॥

'ଚ' ଅବଧାରଣେ ଇହାଁ 'ଅପି'—ସମୁଚ୍ଚୟେ ।
ଧୃତିମନ୍ତ ହଞା ଭଜେ ପକ୍ଷି-ମୂର୍ଖଚୟେ । ୧୧୪ ।
'ଆତ୍ମା'-ଶବ୍ଦେ 'ବୁଦ୍ଧି' କହେ ବୁଦ୍ଧିବିଶେଷ ।
ସାମାନ୍ୟ ବୁଦ୍ଧିଯୁକ୍ତ ଯତ ଜୀବ ଅବଶେଷ । ୧୧୫ ।
ବୁଦ୍ଧ୍ୟେ ରମେ 'ଆତ୍ମାରାମ' ଦୁଇ ତ ପ୍ରକାର ।
ପଣ୍ଡିତ ମୁନିଗଣ, ନିର୍ଗ୍ରନ୍ଥ ମୂର୍ଖ ଆର । ୧୧୬ ।
କୃଷ୍ଣ କୃପାୟ ସାଧୁସଙ୍ଗେ ରତିବୁଦ୍ଧି ପାୟ ।
ସବ ଛାଡ଼ି ଶୁଦ୍ଧଭକ୍ତି କରେ କୃଷ୍ଣ ପାୟ । ୧୧୭ ।

---

ଯସ୍ୟ ହୃଷୀକାଣି—ଇନ୍ଦ୍ରିୟାଣି, ହୃଷୀକେଶେ—ଭଗବତିରତାନି, ସ ଏବ ଜୀବଃ ଚଞ୍ଚଳେ—କ୍ଷଣଭଙ୍ଗୁରେ ସଂସାରେ ଧୈର୍ଯ୍ୟମାପ୍ନୋତି । ୬୭ ।

---

୬୬ଶ ଶ୍ଳୋକର ଅନ୍ୱୟ—ଆଦିଃ ୪ର୍ଥ ପରିଃ ୩୮ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ପ୍ରେମିକ ଭକ୍ତମାନଙ୍କର ହୃଦୟ ସର୍ବଦା ଭଗବତ୍ ସେବାନନ୍ଦରେ ପୂର୍ଣ୍ଣ । ସେମାନେ ଭଗବତ୍ ସେବା କାର୍ଯ୍ୟରେ ସହାୟକରୂପେ ଚତୁର୍ବିଧ ମୁକ୍ତିକୁ ପାଇଲେ ହିଁ ତାହା ଆନନ୍ଦଦାୟକ ବୋଲି ଗ୍ରହଣ କରନ୍ତି ନାହିଁ । କେବଳ ସେବାର ସହାୟ ବୋଲି ଅର୍ଥାତ୍ ଗ୍ରହଣ ନକଲେ ନଚଳେ ଏହିହେତୁ ତୁଚ୍ଛ ବସ୍ତୁବତ୍ ଗ୍ରହଣ କରନ୍ତି । ଏ ପ୍ରକାର ଭକ୍ତମାନଙ୍କ ନିକଟ ସ୍ୱର୍ଗାଦି ଭୋଗ ଯେ କେତେ ଅକିଞ୍ଚିତ୍କର, ତାହା ସହଜରେ ଅନୁମେୟ । ୬୬ଶ ଶ୍ଳୋକାର୍ଥ ।

ଯାହାଙ୍କର ଇନ୍ଦ୍ରିୟଗଣ ଶ୍ରୀଭଗବାନଙ୍କଠାରେ ସ୍ଥିରତ୍ୱ ପ୍ରାପ୍ତ ହୋଇଅଛି, ସେହି ବ୍ୟକ୍ତି ଚଞ୍ଚଳ (ଅସ୍ଥିର) ସଂସାରରେ ଧୈର୍ଯ୍ୟ ପାଇଅଛନ୍ତି । ୬୭ଶ ଶ୍ଳୋକାର୍ଥ ।

ପକ୍ଷୀ, ଭୃଙ୍ଗ ଓ ମୂର୍ଖବ୍ୟକ୍ତିମାନେ ଶ୍ରୀକୃଷ୍ଣଙ୍କ କୃପାରୁ କିମ୍ବା ସାଧୁ କୃପାରୁ ଭଗବତ ଅନୁଭବରୂପ ପୂର୍ଣ୍ଣଜ୍ଞାନ ସହିତ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ ଏହିପ୍ରକାର । ଏହା ଆତ୍ମାରାମଶ୍ଳୋକର ୧୨ଶ ଅର୍ଥ ।

ବୁଦ୍ଧି ୨ ପ୍ରକାର ଯଥା—ବିଶେଷ ବୁଦ୍ଧି ଓ ସାମାନ୍ୟ ବୁଦ୍ଧି ।

ବିଶେଷ ବୁଦ୍ଧି—ଶ୍ରୀକୃଷ୍ଣଙ୍କ ଶ୍ରୀଚରଣରେ ରତି ବୁଦ୍ଧି ।

ସାମାନ୍ୟ ବୁଦ୍ଧି—ଦେହଦୈହିକ ପ୍ରାକୃତ ବୁଦ୍ଧି । ୧୧୫ ।

ବୁଦ୍ଧ୍ୟେରମେ—ବିଶେଷ ବୁଦ୍ଧିରେ ରମଣକାରୀ, ଏହା ଦ୍ୱିବିଧ, ମୁନିମାନେ ଓ ନିର୍ଗ୍ରନ୍ଥମାନେ ।

ମୁନିଗଣ—ପଣ୍ଡିତଗଣ, ନିର୍ଗ୍ରନ୍ଥ—ମୂର୍ଖ । ୧୧୬ ।

ରତିବୁଦ୍ଧିପାୟ—ଶ୍ରୀକୃଷ୍ଣଙ୍କ ଶ୍ରୀଚରଣାରବିନ୍ଦରେ ନିଷ୍ଠାଯୁକ୍ତ ହୁଅନ୍ତି, ଅର୍ଥାତ୍ ପଣ୍ଡିତ-ବ୍ୟକ୍ତିମାନେ ଶ୍ରୀକୃଷ୍ଣଙ୍କ କୃପାରୁ ଏବଂ ସାଧୁକୃପାରୁ ଜ୍ଞାନଦ୍ୱାରା ଶ୍ରୀକୃଷ୍ଣ ଯେ ଅଦ୍ୱୟଜ୍ଞାନତତ୍ତ୍ୱ ଓ ସର୍ବସେବ୍ୟ ଏହା ନିରୂପଣ କରି ନିଷ୍ଠା ଓ ଯତ୍ନ ସହିତ ଶ୍ରୀକୃଷ୍ଣ ଭଜନ କରନ୍ତି ।

ସବଛାଡ଼ି—ବାଞ୍ଛାନ୍ତର ପରିତ୍ୟାଗ କରି ।

ଶୁଦ୍ଧଭକ୍ତି—ଅହୈତୁକୀ ଭକ୍ତି । ୧୧୭ ।

ତଥାହି ଶ୍ରୀଗୀତାୟାମ୍ (୧୦।୮)

ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ
ପ୍ରବର୍ତ୍ତତେ ।
ଇତି ମତ୍ୱା ଭଜନ୍ତେ ମାଂ ବୁଧା
ଭାବସମନ୍ୱିତାଃ ।୬୮।

ତଥାହି (ଭାଃ ୨।୭।୪୬)—

ତେ ବୈ ବିଦନ୍ତ୍ୟତିତରନ୍ତି ଚ
ଦେବମାୟାଂ,
ସ୍ତ୍ରୀଶୂଦ୍ରହୂଣଶବରା ଅପି ପାପଜୀବାଃ ।
ଯଦ୍ୟଦ୍ଭୁତକ୍ରମପରାୟଣଶୀଲଶିକ୍ଷା-
ସ୍ତିର୍ଯ୍ୟଗ୍ଜନା ଅପି କିମୁ ଶ୍ରୁତଧାରଣା ଯେ ।
ବିଚାର କରିୟା ଯବେ ଭଜେ କୃଷ୍ଣ ପାୟ ।
ସେଇ ବୁଦ୍ଧି ଦେନ ତାଁରେ ଯାତେ ତାଁକେ
ପାୟ । ୧୧୮ ।

ତଥାହି ଶ୍ରୀଗୀତାୟାମ୍ (୧୦।୧୦)—

ତେଷାଂ ସତତଯୁକ୍ତାନାଂ ଭଜତାଂ
ପ୍ରୀତିପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗଂ ତଂ ଯେନ
ମାମୁପଯାନ୍ତି ତେ । ୭୦ ।

---

ଅହଂ ସର୍ବସ୍ୟ ପ୍ରଭବଃ, ମତ୍ତଃ ସର୍ବଂ ପ୍ରବର୍ତ୍ତତେ—ମଦଧୀନ ପ୍ରବୃତ୍ତିକଂ, ଇତି ମତ୍ୱା ବୁଧାଃ ଭାବସମନ୍ୱିତାଃ— ସଦ୍‌ଗୁରୁମୁଖାତ୍ ନିଷ୍ଠିତ୍ୟ ଭାବେନ ପ୍ରେମ୍ଣା ସମନ୍ୱିତାଃ ସନ୍ତଃ, ମାଂ ଭଜନ୍ତେ ୬୮ ଶ୍ଲୋକଃ ।

ସ୍ତ୍ରୀଶୂଦ୍ରହୂଣଶବରାଃ ପାପଜୀବାଃ ଅପି ତିର୍ଯ୍ୟକ୍ ଜନା ଅପି ଅଦ୍ଭୁତକ୍ରମପରାୟଣ ଶୀଲଶିକ୍ଷାଃ (ଭବନ୍ତି) ତଦା ତେ ବୈ ଦେବମାୟାଂ ବିଦନ୍ତି ଚ ଅତିତରନ୍ତି, କିଂ ଯେ ଶ୍ରୁତଧାରଣାଃ । ଇତ୍ୟନ୍ୱୟଃ । ୬୯ଶ ଶ୍ଲୋକଃ ।

କିଂ ବହୁନା ସର୍ବତୋଭାବେନ ସର୍ବେ ବିଦନ୍ତି ଇତ୍ୟାହ "ତେ ବୈ" ଇତି ।— ୬୯ ବି, ଚ,

ଅଦ୍ଭୁତାଃ କ୍ରମାଃ— ପାଦନ୍ୟାସାଃ ଯସ୍ୟ ହରେଃ ତତ୍ପରାୟଣାଃ ତଦ୍‌ଭକ୍ତାଃ ତେଷାଂ ଶୀଲେ ଶିକ୍ଷିତା ଯେଷାଂ ତେ ତଥା ଯଦି ଭବନ୍ତି ତର୍ହି ତେଽପି ବିଦନ୍ତୀତ୍ୟର୍ଥଃ । ଶ୍ରୁତେ ଭଗବତୋ-ରୂପେ ଧାରଣା ମନୋନିୟମନଂ ଯେଷାଂ ତେ ବିଦନ୍ତୀତି କିମୁ ବକ୍ତବ୍ୟଂ । ଇତି ଶ୍ରୀସ୍ୱାମୀ । ୬୯ ଶ୍ଲୋକଃ ।

---

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଅଛନ୍ତି—ମୁଁ ସମସ୍ତଙ୍କର ଉତ୍ପତ୍ତି ସ୍ଥାନ, ମୋଠାରୁ ସମସ୍ତ ବିଷୟ ପ୍ରବର୍ତ୍ତିତ ହୁଏ । ଏହା ଜାଣି ପଣ୍ଡିତ ବ୍ୟକ୍ତିମାନେ ପ୍ରୀତିର ସହିତ ମୋର ଭଜନ କରନ୍ତି । ୬୮ ଶ୍ଲୋକାର୍ଥ ।

ନାରଦଙ୍କ ପ୍ରତି ବ୍ରହ୍ମାଙ୍କ ବାକ୍ୟ—ଏପରି କି ସ୍ତ୍ରୀ, ଶୂଦ୍ର, ହୂଣ ଶବର ପ୍ରଭୃତି ପାପ ଜାତିମାନେ ଏବଂ ପଶୁ ପକ୍ଷୀ ପ୍ରଭୃତି ତିର୍ଯ୍ୟକ୍ ଜୀବମାନେ ସୁଦ୍ଧା ଯଦି ଭଗବତ୍ ପରାୟଣ ଜନ-ମାନଙ୍କର ଶ୍ରବଣ କୀର୍ତ୍ତନାଦି ସ୍ୱଭାବ ଶିକ୍ଷା କରନ୍ତି ତାହା ହେଲେ ସେମାନେ ମଧ୍ୟ ଦେବମାୟାକୁ ଜାଣିପାରନ୍ତି ଓ ସେଥିରୁ ମଧ୍ୟ ପାର ହୁଅନ୍ତି । ଏପରି ସ୍ଥଳେ ଯେଉଁମାନେ ଭଗବାନ୍‌ଙ୍କ ନାମ ରୂପାଦି ହୃଦୟରେ ଧାରଣ କରନ୍ତି ସେମାନଙ୍କ କଥା କଅଣ କହିବି । ୬୯ ।

୭୦ ଶ୍ଲୋକର ଅନ୍ୱୟ—ଆଦି ୧ମ ପରିଃ ୬୦ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନ୍ ଅର୍ଜୁନଙ୍କୁ କହୁଅଛନ୍ତି— ହେ ଅର୍ଜୁନ ! ଯେଉଁମାନେ ନିରନ୍ତର ମୋଠାରେ ଚିତ୍ତ ସମର୍ପଣ କରନ୍ତି ଓ ମୋତେ ପ୍ରୀତିପୂର୍ବକ ଭଜନ୍ତି ମୁଁ ସେମାନଙ୍କୁ ସେହିପରି ବୁଦ୍ଧିଯୋଗ ଦିଏ, ଯଦ୍ଦ୍ୱାରା ସେମାନେ ମୋତେ ପ୍ରାପ୍ତ ହୁଅନ୍ତି । ୭୦ ଶ୍ଲୋକାର୍ଥ ।

ସତ୍ସଙ୍ଗ, କୃଷ୍ଣସେବା, ଭାଗବତ, ନାମ ।
ବ୍ରଜେ ବାସ,—ଏଇ ପଞ୍ଚ ସାଧନ ପ୍ରଧାନ ॥
ଏଇ ପଞ୍ଚ ମଧ୍ୟେ ଏକ ସ୍ୱଳ୍ପ କରୟ ।
ସଦ୍‌ବୁଦ୍ଧି ଜନେର ହୟ କୃଷ୍ଣପ୍ରେମୋଦୟ ॥

ତଥାହି ଭକ୍ତିରସ ମୃତସିନ୍ଧୌ (୧।୨।୧୧୦)—
ଦୁରୂହାଦ୍ଭୁତବୀର୍ଯ୍ୟେଽସ୍ମିନ୍ ଶ୍ରଦ୍ଧା ଦୂରେଽସ୍ତୁ ପଞ୍ଚକେ ।
ଯତ୍ର ସ୍ୱଳ୍ପୋଽପି ସମ୍ବନ୍ଧଃ ସଦ୍ଧିୟାଂ ଭାବଜନ୍ମନେ । ୭୧ ।

ଉଦାର ମହତ୍ତ ଯାର ସର୍ବୋତ୍ତମା ବୁଦ୍ଧି ।
ନାନା କାମେ ଭଜେ, ତବୁ ପାୟ ଭକ୍ତି ସିଦ୍ଧି ॥

ତଥାହି (ଭାଃ ୨।୩।୧୦)—
ଅକାମଃ ସର୍ବକାମୋ ବା ମୋକ୍ଷକାମ ଉଦାରଧୀଃ ।
ତୀବ୍ରେଣ ଭକ୍ତିଯୋଗେନ ଯଜେତ ପୁରୁଷଂ ପରମ୍ । ୭୨ ।

ଭକ୍ତିପ୍ରଭାବେ ସେଇ କାମ ଛାଡ଼ାଇୟା ।
କୃଷ୍ଣପଦେ ଭକ୍ତି କରାୟ ଗୁଣେ ଆକର୍ଷିୟା ॥

ତଥାହି (ଭାଃ ୧।୭।୧୦)—
ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ । ୭୩ ।

---

ସତ୍ସଙ୍ଗ— ସାଧୁସଙ୍ଗ । ଭାଗବତ—ଶ୍ରୀମଦ୍ଭାଗବତ ଶ୍ରବଣ କୀର୍ତ୍ତନ । ନାମ—ଶ୍ରୀହରିର ନାମ ଶ୍ରବଣ, କୀର୍ତ୍ତନ, ସ୍ମରଣ । ୧୧୯ ।

ଏହି ପାଞ୍ଚ ଅଙ୍ଗରୁ କୌଣସି ଏକ ଅଙ୍ଗର ଯଦି ଅଳ୍ପ ମାତ୍ର ସେବା କରାଯାଏ । ୧୨୦ ।

୭୧ ଶ୍ଳୋକର ଅନ୍ୱୟ— ମଧ୍ୟ ୨୦ ପରି ୫୭ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଦୁରୂହ ଅଦ୍ଭୁତ ବୀର୍ଯ୍ୟଶାଳୀ ଏହି ପାଞ୍ଚ ଅଙ୍ଗରେ ଶ୍ରଦ୍ଧା ଦୂରେଥାଉ, ଅଣୁମାତ୍ର କୌଣସି ପ୍ରକାରରେ ସମ୍ବନ୍ଧ ଘଟିଲେ ନିରପରାଧଚିତ୍ତ ବ୍ୟକ୍ତିମାନଙ୍କର ଅନ୍ତଃକରଣରେ ଭାବ ଜାତ ହୁଏ । ୭୧ ଶ୍ଳୋକାର୍ଥ ।

ଭକ୍ତିସିଦ୍ଧି—ଭକ୍ତିର ପରିପକ୍ୱତା ଅର୍ଥାତ୍ ପ୍ରେମଭକ୍ତି ।

୭୨ ଶ୍ଳୋକାନ୍ୱୟ—ମଧ୍ୟ ୨୨ ପରି ୧୪ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀ ଶୁକଦେବ ଗୋସ୍ୱାମୀ କହୁଅଛନ୍ତି— ଅକାମ (ଏକାନ୍ତ ଭକ୍ତ) ପରମପୁରୁଷ ଭଗବାନଙ୍କୁ ଦୃଢ଼ଚିତ୍ତରେ ଭଜନ କରନ୍ତି । ସର୍ବକାମୀ ଏବଂ ମୁକ୍ତକାମୀ ବ୍ୟକ୍ତିମାନେ ଯଦି ସୁବୁଦ୍ଧି ହୁଅନ୍ତି ଅର୍ଥାତ୍ ଭଗବାନ୍ ଏକମାତ୍ର ଭଜନୀୟ ବୋଲି ସେମାନଙ୍କର ବୁଦ୍ଧି ଜାତହୁଏ ତେବେ ସେମାନେ ତତ୍ତତ୍ଫଳଲାଭାର୍ଥ ତୀବ୍ରଭକ୍ତିରେ ଭଗବାନଙ୍କୁ ଭଜନ କରନ୍ତି । ୭୨ ଶ୍ଳୋକାର୍ଥ ।

୭୩ ଶ୍ଳୋକାନ୍ୱୟ—ଏହି ପରିଚ୍ଛେଦର ୨ୟ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀ ସୂତ ଶୌନକ ପ୍ରଭୃତିଙ୍କୁ କହିଲେ— ସର୍ବଚିତ୍ତାକର୍ଷକ ଶ୍ରୀହରିଙ୍କ ଅଦ୍ଭୁତ ଗୁଣ କଥା ଆଉ କଣ କହିବା, ସେ ଆତ୍ମାରାମ ମୁନିମାନଙ୍କୁ ସୁଦ୍ଧା ଆକର୍ଷଣ କରନ୍ତି, ଯେହେତୁ ମାୟାବନ୍ଧଛେଦନକାରୀ ବା ଅହଙ୍କାରଶୂନ୍ୟ ବ୍ରହ୍ମାନନ୍ଦାନୁଭବୀ ମୁନିମାନଙ୍କର କୌଣସି ଆକାଂକ୍ଷା ନ ଥିଲେହେଁ ସେମାନେ ସୁଦ୍ଧା ବହୁବିକର୍ମା ଭଗବାନ୍‌ଙ୍କୁ ଫଳାଭିସନ୍ଧିରହିତ ଭକ୍ତି କରନ୍ତି । ୭୩ ଶ୍ଳୋକାର୍ଥ ।

ତଥାହି (ଭାଃ ୫।୧୯।୨୭)—
ସତ୍ୟଂ ଦିଶତ୍ୟର୍ଥିତମର୍ଥିତୋ ନୃଣାଂ,
ନୈବାର୍ଥଦୋ ଯତ୍ପୁନରର୍ଥିତା ଯତଃ ।
ସ୍ୱୟଂ ବିଧତ୍ତେ ଭଜତାମନିଚ୍ଛତା-
ମିଚ୍ଛାପିଧାନଂ ନିଜପାଦପଲ୍ଲବମ୍ ।୨୪।

'ଆତ୍ମା'-ଶବ୍ଦେ 'ସ୍ୱଭାବ' କହେ, ତାତେ ଯେଇ ରମେ ।
'ଆତ୍ମାରାମ' ଜୀବ ଯତ ସ୍ଥାବର ଜଙ୍ଗମେ ।୧୨୨।
ଜୀବେର ସ୍ୱଭାବ—କୃଷ୍ଣଦାସ-ଅଭିମାନ ।
ଦେହେ 'ଆତ୍ମ'-ଜ୍ଞାନେ ଆଚ୍ଛାଦିତ ସେଇ ଜ୍ଞାନ ।
କୃଷ୍ଣକୃପାଦି-ହେତୁ ହୈତେ ସ୍ୱଭାବ-ଉଦୟ ।
କୃଷ୍ଣଗୁଣାକୃଷ୍ଟ ହଞା କୃଷ୍ଣେରେ ଭଜୟ ।୧୨୪।
'ଚ' ଶବ୍ଦ ଏବ-ଅର୍ଥେ—'ଅପି' ସମୁଚ୍ଚୟେ ।
'ଆତ୍ମାରାମ ଏବ' ହଞା ଶ୍ରୀକୃଷ୍ଣ ଭଜୟେ ।୧୨୫।
ଏଇ ଜୀବ ସନକାଦି ସବ ମୁନିଜନ ।
'ନିର୍ଗ୍ରନ୍ଥ'—ମୂର୍ଖ ନୀଚ ସ୍ଥାବର ପଶୁଗଣ ।୧୨୬।
ବ୍ୟାସ-ଶୁକ-ସନକାଦ୍ୟେର ପ୍ରସିଦ୍ଧ ଭଜନ ।
ନିର୍ଗ୍ରନ୍ଥ-ସ୍ଥାବରାଦ୍ୟେର ଶୁନ ବିବରଣ ।୧୨୭।
କୃଷ୍ଣକୃପାଦି-ହେତୁ ହୈତେ ସ୍ୱଭାବ-ଉଦୟ ।
କୃଷ୍ଣଗୁଣାକୃଷ୍ଟ ହଞା ତାଁହାରେ ଭଜୟ ।୧୨୮।

---

୨୪ ଶ୍ଲୋକାନ୍ୱୟ—ମଧ୍ୟଖଣ୍ଡ ୨୨ ପରିଚ୍ଛେଦ ୧୫ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଦେବତାମାନେ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ଭଗବନ୍ ! ଆପଣ ଫଳକାମୀ ବ୍ୟକ୍ତିମାନଙ୍କର କାମ୍ୟଫଳ ଦାନ କରନ୍ତି ଏହା ସତ୍ୟ; କିନ୍ତୁ ତାହା ଲାଭକରି କାମନାଶୀଳ ବ୍ୟକ୍ତିର ପ୍ରାର୍ଥନା ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହୁଏ ବୋଲି ଆପଣ ଅର୍ଥଦ ହେତୁ ସେହି ଅନର୍ଥ ଦାନ ନ କରି ସେମାନେ ପ୍ରାର୍ଥନା ନ କଲେ ସୁଦ୍ଧା ସବୁ କାମନାର ଆଚ୍ଛାଦକ ଆପଣଙ୍କର ଶ୍ରୀଚରଣକମଳ କୃପାପୂର୍ବକ ସ୍ୱୟଂ ଦାନ କରନ୍ତି । ୨୪ ଶ୍ଲୋକାର୍ଥ ।

ମୁନିମାନେ ଓ ନିର୍ଗ୍ରନ୍ଥମାନେ ଶ୍ରୀକୃଷ୍ଣ ବା ସାଧୁଙ୍କ କୃପାରୁ ସଦ୍‌ବୁଦ୍ଧିଯୁକ୍ତ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି, ଶ୍ରୀକୃଷ୍ଣଙ୍କ ଗୁଣ ଏହିପ୍ରକାର । ଏହା ୧୮ଶ ଅର୍ଥ ।

ଆତ୍ମା ଶବ୍ଦର ସ୍ୱଭାବ ଅର୍ଥ ଲଗାଇ ଅର୍ଥ କରୁଅଛନ୍ତି । ୧୨୨ ।

ଜୀବେର ସ୍ୱଭାବ—ସେହିଙ୍କ ଜୀବଙ୍କର ସ୍ୱଭାବ ।

ଦେହେ ଆତ୍ମଜ୍ଞାନେ—ବଦ୍ଧଜୀବ ଆପଣା ଦେହକୁ ଆତ୍ମା ବୋଲି ଜ୍ଞାନ କରନ୍ତି; ଏହି ଭ୍ରମଦ୍ୱାରା ଜୀବ ଯେ ନିତ୍ୟ କୃଷ୍ଣଦାସ ଏହି ଜ୍ଞାନ ଆଚ୍ଛାଦିତ ହୁଏ । ୧୨୩ ।

କୃଷ୍ଣ କୃପାଦି— କୃଷ୍ଣକୃପା, ସାଧୁକୃପା, ଭକ୍ତିକୃପା । ସ୍ୱଭାବ—କୃଷ୍ଣ ଦାସତ୍ୱରୂପ ମୌଳିକ ସ୍ୱଭାବ । ୧୨୪ ।

ମୁନି, ସ୍ଥାବର ଜଙ୍ଗମାଦି ମୂର୍ଖ ଓ ନୀଚ ଜୀବମାନେ କୃଷ୍ଣକୃପାଦି ହେତୁ ନିଜର ନିତ୍ୟ କୃଷ୍ଣଦାସ ସ୍ୱଭାବ ଲାଭକରି ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କ ଗୁଣ ଏହି ପ୍ରକାର ଏହା ୧୯ ଅର୍ଥ ।

ତଥାହି (ଭାଃ ୧୦।୧୫।୮)

ଧନ୍ୟେୟମଦ୍ୟ ଧରଣୀ ତୃଣବୀରୁଧସ୍ତ୍ୱତ୍‌
ପାଦସ୍ପୃଶୋ ଦ୍ରୁମଲତାଃ କରଜାଭିମୃଷ୍ଟାଃ
ନଦ୍ୟୋଽଦ୍ରୟଃ ଖଗମୃଗାଃ ସଦୟାବଲୋକୈ-
ର୍ଗୋପ୍ୟୋଽନ୍ତରେଣ ଭୁଜୟୋରପି ଯତ୍‌ସ୍ପୃହା ଶ୍ରୀଃ ।

ତଥାହି (ଭା ୧୦।୨୧।୧୯)

ଗା ଗୋପକୈରନୁବନଂ ନୟତୋରୁଦାର-
ବେଣୁସ୍ୱନୈଃ କଳପଦୈସ୍ତନୁଭୃତ୍ସୁ ସଖ୍ୟଃ ।
ଅସ୍ପନ୍ଦନଂ ଗତିମତାଂ ପୁଲକସ୍ତରୂଣାଂ
ନିର୍ଯୋଗପାଶକୃତଲକ୍ଷଣୟୋର୍ବିଚିତ୍ରମ୍ । ୭୬ ।

ତଥାହି (ଭାଃ ୧୦।୩୫।୯)

ବନଲତାସ୍ତରବ ଆତ୍ମନି ବିଷ୍ଣୁଂ
ବ୍ୟଞ୍ଜୟନ୍ତ୍ୟ ଇବ ପୁଷ୍ପଫଲାଢ୍ୟାଃ ।
ପ୍ରଣତଭାରବିଟପା ମଧୁଧାରାଃ
ପ୍ରେମହୃଷ୍ଟତନବୋ ବବୃଷୁଃ ସ୍ମ । ୭୭ ।

---

ଅଦ୍ୟ ତବ ପାଦସ୍ପର୍ଶାତ୍ ଇୟଂ ଧରଣୀ ଧନ୍ୟା ତଥା ତୃଣ ପାଦସ୍ପୃଶଃ—ତ୍ୱତ୍ପାଦୌ, ସ୍ପୃଶନ୍ତୀତି, ତୃଣବୀରୁଧଃ, କରଜାଭିମୃଷ୍ଟାଃ-ନଖସ୍ପୃଷ୍ଟାଃ, ଦ୍ରୁମଲତାଃ ସଦୟାବଲୋକୈଃ ନଦ୍ୟଃ ଅଦ୍ରୟଃ, ଖଗମୃଗାଃ, ଭୁଜୟୋଃ ଅନ୍ତରେଣ କୃତ୍ୱା ଭୁଜମଧ୍ୟେ ବକ୍ଷଃସ୍ଥଳେ ଆଲିଙ୍ଗନଂ ପ୍ରାପ୍ୟ ଶ୍ରୀଃ ଯତ୍ସ୍ପୃହାଲକ୍ଷ୍ମୀରପି ଯସ୍ୟାଲିଙ୍ଗନସ୍ୟ ସ୍ପୃହାବତୀ ଭବତି ତତ୍ ଆଲିଙ୍ଗନଂ ଲବ୍ଧ୍ୱା ଗୋପ୍ୟ ଅପି ଧନ୍ୟାଃ ( ଚ ) । ୭୫ ଶ୍ଳୋକଃ ।

ହେ ସଖ୍ୟ ! ଗୋପକୈଃ ( ସହ ) ଅନୁବନଂ—ପ୍ରତିବନଂ, ଗାଃ ନୟତୋଃ ପ୍ରାପୟତୋଃ, ନିର୍ଯୋଗପାଶକୃତଲକ୍ଷଣୟୋଃ—ନିର୍ଯୋଗାଃ-ଦୋହନବେଳାୟାଂ ଗବାଂ ପାଦ-ବନ୍ଧନାର୍ଥାଃ ରଜ୍ଜବଃ, ପାଶାଃ-ଦୁଷ୍ଟଗବାଂ – ଆକର୍ଷଣାର୍ଥାଃ ରଜ୍ଜବଃ ତୈଃ କୃତଂ , ଲକ୍ଷଣଂ-ଚିହ୍ନଂ ଯୟୋଃ ତୟୋଃ ରାମକୃଷ୍ଣୟୋଃ କଳପଦୈଃ ଉଦାରବେଣୁସ୍ୱନୈଃ ଶ୍ରବଣାନନ୍ଦଦାୟକୈଃ ବେଣୁ-ସ୍ୱନୈଃ, ତନୁଭୃତ୍ସୁ-ଶରୀରିଷୁ, ଗତିମତାଂ-ଅସ୍ପନ୍ଦନଂ— ସ୍ଥାବର ଧର୍ମଃ, ତଥା, ତରୂଣାଂ ପୁଲକଃ — ଜଙ୍ଗମଧର୍ମଃ ଇତ୍ୟେତଂ ବିଚିତ୍ରଂ । ୭୬ ଶ୍ଳୋକଃ ।

---

ଶ୍ରୀକୃଷ୍ଣ ବଳରାମଙ୍କୁ କହୁଅଛନ୍ତି—ଅଦ୍ୟ ଏହି ବୃନ୍ଦାବନଭୂମି ଓ ଅଙ୍କୁର ତୃଣ ଲତା-ମାନେ ଧନ୍ୟ ହେଲେ, ଯେହେତୁ ଆପଣଙ୍କର ଶ୍ରୀଚରଣଯୁଗଳ ସ୍ପର୍ଶଲାଭ କଲେ । ବୃକ୍ଷ ଲତାମାନେ ଆପଣଙ୍କର ନଖସ୍ପୃଷ୍ଟ ହୋଇ ଧନ୍ୟ ହେଲେ । ନଦୀ, ପର୍ବତ, ପକ୍ଷୀ ଓ ମୃଗମାନେ ଆପଣଙ୍କର ସଦୟ ଅବଲୋକନ ଲାଭ କରି ଧନ୍ୟ ହେଲେ ଏବଂ ଲକ୍ଷ୍ମୀଙ୍କର ସ୍ପୃହଣୀୟ ଯେ ଆପଣଙ୍କର ଭୁଜ ଯୁଗଳ ମଧ୍ୟସ୍ଥ ବକ୍ଷସ୍ଥଳ ତାହା ଲାଭ କରି ଗୋପୀମାନେ ଧନ୍ୟ ହେଲେ । ୭୫ ଶ୍ଳୋକାର୍ଥ ।

ସଖୀମାନଙ୍କୁ କୌଣସି ଗୋପୀ କହୁଅଛନ୍ତି—ହେ ସଖୀଗଣ ! ରାମକୃଷ୍ଣ ଗୋପଗଣଙ୍କ ସଙ୍ଗେ ବନେ ବନେ ଗୋଚାରଣ କରୁଅଛନ୍ତି । ମସ୍ତକରେ ଛାନ୍ଦଦଉଡ଼ି ବାନ୍ଧିଅଛନ୍ତି । କାନ୍ଧରେ ପଘା ପକାଇ ଅଛନ୍ତି ଓ ମଧୁର ପଦଯୁକ୍ତ ବେଣୁନାଦ କରୁଅଛନ୍ତି । ଯାହା ଶୁଣି ଜଙ୍ଗମଦେହମାନେ ଅସ୍ପନ୍ଦନରୂପ ସ୍ଥାବରଧର୍ମ ଏବଂ ସ୍ଥାବର ତରୁମାନେ ପୁଲକରୂପ ଜଙ୍ଗମଧର୍ମ ପାଇଅଛନ୍ତି । ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ । ୭୬ ଶ୍ଳୋକାର୍ଥ ।

୭୭ ଶ୍ଳୋକାନ୍ୱୟ—ମଧ୍ୟ ୮ ପରି ୬୩ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି ଗୋପୀମାନେ କହୁଅଛନ୍ତି—ଫଳପୁଷ୍ପପରିପୂର୍ଣ୍ଣ ନମ୍ରଶାଖା ଏବଂ ପ୍ରେମପୁଲକିତ ଦେହ ବନଲତା ସମସ୍ତ ନିଜ ନିଜ ମଧ୍ୟରେ ବିଷ୍ଣୁ ବିରାଜ କରୁଅଛନ୍ତି, ଏହି କଥା ପ୍ରକାଶ କରି ଅବା ଆନନ୍ଦରେ ମଧୁଧାରା ବର୍ଷଣ କରୁଅଛନ୍ତି ଏବଂ ସେହି ଲତାମାନଙ୍କର ପତି ତରୁଗଣ ମଧ୍ୟ ଲତାଙ୍କୁଳି ଆନନ୍ଦ ପ୍ରକାଶ କରୁଅଛନ୍ତି । ୭୭ ଶ୍ଳୋକାର୍ଥ ।

ତଥାହି (ଭାଃ ୨।୪।୧୮)

କିରାତହୂଣାନ୍ଧ୍ରପୁଲିନ୍ଦପୁଲ୍କଶା
ଆଭୀରକଙ୍କା ଯବନାଃ ଖସାଦୟଃ ।
ଯେଽନ୍ୟେ ଚ ପାପା ଯଦପାଶ୍ରୟାଶ୍ରୟାଃ
ଶୁଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ । ୭୮ ।

ଆଗେ ତେର ଅର୍ଥ କୈଲ, ଆର ଛୟ ଏଇ ।
ଊନବିଂଶତି ଅର୍ଥ ହୈଲ-ମିଲି ଏଇ ଦୁଇ ।୧୨୯
ଏଇ ଊନଇଶ ଅର୍ଥ କୈଲ, ଆଗେ ଶୁନ ଆର ।
'ଆତ୍ମା' ଶବ୍ଦେ 'ଦେହ' କହେ, ଚାରି ଅର୍ଥ ତାର ।
'ଦେହାରାମୀ' ଦେହ ଭଜେ-ଦେହୋପାଧି-ବ୍ରହ୍ମ ।
ସତ୍‌ସଙ୍ଗେ ସେହୋ କରେ କୃଷ୍ଣେର ଭଜନ ।

ତଥାହି (ଭାଃ ୧୦।୮୭।୧୮)

ଉଦରମୁପାସତେ ଯ ଋଷିବର୍ତ୍ମସୁ କୂର୍ପଦୃଶଃ ।
ପରିସରପଦ୍ଧତିଂ ହୃଦୟମାରୁଣୟୋ ଦହରମ୍ ।
ତତ ଉଦଗାଦନନ୍ତ ତବ ଧାମ ଶିରଃ ପରମଂ ।
ପୁନରିହ ଯତ୍ ସମେତ୍ୟ ନ ପତନ୍ତି କୃତାନ୍ତମୁଖେ ।
'ଦେହାରାମୀ'-କର୍ମନିଷ୍ଠ ଯାଜ୍ଞିକାଦି ଜନ ।
ସତ୍‌ସଙ୍ଗେ କର୍ମ ତ୍ୟଜି କରୟେ ଭଜନ । ୧୩୨।

ତଥାହି (ଭାଃ ୧।୧୮।୧୨)

କର୍ମଣ୍ୟସ୍ମିନ୍ନନାଶ୍ୱାସେ ଧୂମଧୂମ୍ରାତ୍ମନାଂ ଭବାନ୍ ।
ଆପାୟୟତି ଗୋବିନ୍ଦପାଦପଦ୍ମାସବଂ ମଧୁ । ୮୦ ।

ନନୁକଟମୁନଙ୍କଂ ଶଙ୍କିତ୍ୱଂ ମନଆଦି ଭେଦମିଳନେ ଅଷ୍ଟାଦଶତ୍ୱଂ ଭବତୁ ମର୍ହିତତ୍ତ୍ୱାହ "ମିଲି ଏ ଦୁଇ" ଇତି । ମନୋଯଜ୍ଞାଧିଷ୍ଠ ବୁଦ୍ଧି ଏତଦ୍ୱାଚକତ୍ୱେନ ଚତୁର୍ଭେଦାଃ ସ୍ୱଭାବସ୍ୟ ସ୍ଥାବର ଜଙ୍ଗମରୂପେଣ ଭେଦଦ୍ୱୟସ୍ୟ ମନେନ ଭେଦଦ୍ୱୟେନ ମିଳିତ୍ୱା ଇତ୍ୟର୍ଥଃ । ୧୨୯ । ବ, ଚ,

ଧୂମଧୂମ୍ରାତ୍ମନାଂ—ଧୂମେନ ଧୂମ୍ରୌ ବର୍ଣ୍ଣଚ୍ଛବୀ ଅତ୍ମା—ଶରୀରଂଚଃଃ ଯେଷାଂ ତେଷାଂ ଅସ୍ମାକଂ ଅସ୍ମିନ୍ ଅନାଶ୍ୱାସେ—ଅବିଶ୍ୱସନୀୟେ କର୍ମଣି ଭବାନ୍ ମଧୁ - ମଧୁରଂ ଗୋବିନ୍ଦପାଦପଦ୍ମାସବଂ—ପାଦପଦ୍ମସ୍ୟ ଯଶୋରୂପଂ ଆସବଂ ମକରନ୍ଦଂ, ଆପାୟୟତି । ୮୦ଶ୍ଲୋକଃ ।

୭୮ ଶ୍ଲୋକାନ୍ୱୟ—ଏହି ପରିଚ୍ଛେଦର ୬୪ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଶୁକ କହୁଅଛନ୍ତି—କିରାତ, ହୂଣ, ଆନ୍ଧ୍ର, ପୁଲ୍କଶ, ଅଭୀର, କଙ୍କ, ଯବନ, ଖସ ପ୍ରଭୃତି ପାପଜାତିମାନେ ଏବଂ ଅନ୍ୟାନ୍ୟ ପାପକର୍ମମାନେ ଯାହାଙ୍କର ଆଶ୍ରିତର (ଭକ୍ତର) ଆଶ୍ରୟଗ୍ରହଣ କରି ପବିତ୍ର ହୁଅନ୍ତି, ସେହି ପ୍ରଭାବଶାଳୀ ଶ୍ରୀକୃଷ୍ଣଙ୍କୁ ନମସ୍କାର । ୭୮ ଶ୍ଲୋକାର୍ଥ ।

ଏହି ଦୁଇ—ପ୍ରଥମୋକ୍ତ ୧୩, ତତ୍ପରେ ୬ ଏହା ମିଳି ୧୯ ।

ଦେହ ମଧ୍ୟରେ ବ୍ରହ୍ମଉପାସକ ଦେହାରାମୀ ମୁନିମାନେ ନିର୍ଗ୍ରନ୍ଥ ହୋଇ ମଧ୍ୟ ସାଧୁ-କୃପାରୁ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି, ଶ୍ରୀକୃଷ୍ଣଙ୍କର ଗୁଣ ଏହି ପ୍ରକାର । ଏହା ୨୦ ଅର୍ଥ ।

୭୯ ଶ୍ଲୋକର ଅନ୍ୱୟ ଏହି ପରିଚ୍ଛେଦର ୫୫ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୁତିମାନେ ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ଋଷି ସମ୍ପ୍ରଦାୟ ମଧ୍ୟରେ ସ୍ଥୂଳଦର୍ଶୀ ଋଷିମାନେ ଉଦରମଧ୍ୟଗତ ମଣିପୁରସ୍ଥ ବ୍ରହ୍ମଙ୍କୁ ଉପାସନା କରନ୍ତି ଓ ଆରୁଣୀମାନେ ହୃଦୟମଧ୍ୟସ୍ଥ ନାଡ଼ିମାର୍ଗରେ ସୂକ୍ଷ୍ମରୂପ ବ୍ରହ୍ମଙ୍କୁ ଉପାସନା କରନ୍ତି । ହେ ଅନନ୍ତ ! ପରେ ସେମାନେ ହୃଦୟରୁ ଆପଣଙ୍କର ଉପଲବ୍ଧିର ପରମସ୍ଥାନ ମସ୍ତକପ୍ରତି ଉଦ୍ଗତ ହୁଅନ୍ତି । ଯେଉଁ ସ୍ଥାନକୁ ଗମନ କଲେ ଆଉ କୃତାନ୍ତମୁଖରେ ପତିତ ହେବାକୁ ହୁଏ ନାହିଁ । ୭୯ ଶ୍ଲୋକାର୍ଥ ।

କର୍ମନିଷ୍ଠ ଯାଜ୍ଞିକାଦି ଦେହାରାମୀ ମୁନିମାନେ ଧନୀ ବା ନିର୍ଦ୍ଧନ ହୋଇ ମଧ୍ୟ ସାଧୁକୃପାରୁ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କ ଗୁଣ ଏହି ପ୍ରକାର । ୨୦ ଅର୍ଥ ୧୩୨ ।

ଶ୍ରୀଶୌନକାଦି ଋଷିମାନେ ସୂତଙ୍କୁ କହୁଅଛନ୍ତି—ହେ ସୂତ ! ଏହି ଅବିଶ୍ୱସନୀୟ ଯଜ୍ଞର ଧୂମ ସେବନରେ ଯେଉଁମାନଙ୍କର ଶରୀର ବିବର୍ଣ୍ଣ ହୋଇଅଛି ସେହି ଆମ୍ଭମାନଙ୍କୁ ଆପଣ ଶ୍ରୀଗୋବିନ୍ଦଙ୍କ ପାଦପଦ୍ମ ସୁମଧୁର ମକରନ୍ଦ ପାନ କରାଇ ଆଶ୍ୱାସିତ କଲେ । ୮୦ ଶ୍ଲୋକାର୍ଥ ।

ତପସ୍ୱି ପ୍ରଭୃତି ଯତ 'ଦେହାରାମୀ' ହୟ ।
ସାଧୁ ସଙ୍ଗେ ତପ ଛାଡ଼ି ଶ୍ରୀକୃଷ୍ଣ ଭଜୟ ॥ ୧୩୩ ॥

ତଥାହି (ଭାଃ ୪।୨୧।୩୧)
ଯତ୍ପାଦସେବାଭିରୁଚିସ୍ତପସ୍ୱିନା-
ମଶେଷଜନ୍ମୋପଚିତଂ ମଳଂ ଧିୟଃ ।
ସଦ୍ୟଃ କ୍ଷିଣୋତ୍ୟନ୍ୱହମେଧତୀ ସତୀ ।
ଯଥା ପଦାଙ୍ଗୁଷ୍ଠବିନିଃସୃତା ସରିତ୍ । ୮୧ ।

'ଦେହାରାମୀ' ସର୍ବକାମ, ସବ 'ଆତ୍ମାରାମ ।'
କୃଷ୍ଣକୃପାୟ କୃଷ୍ଣ ଭଜେ ଛାଡ଼ି ସବ କାମ ॥ ୧୩୪ ॥

ତଥାହି ହରିଭକ୍ତି ସୁଧୋଦୟେ (୭।୨୮)
ସ୍ଥାନାଭିଲାଷୀ ତପସି ସ୍ଥିତୋଽହଂ ।
ତ୍ୱାଂ ପ୍ରାପ୍ତବାନ୍ ଦେବମୁନୀନ୍ଦ୍ରଗୁହ୍ୟମ୍ ।
କାଚଂ ବିଚିନ୍ୱନ୍ନପି ଦିବ୍ୟରତ୍ନଂ ।
ସ୍ୱାମିନ୍ କୃତାର୍ଥୋଽସ୍ମି ବରଂ ନ ଯାଚେ । ୮୨ ।

ଏଇ ତେର ଅର୍ଥ କହ ହେଲ ତେଇଶ ଅର୍ଥ ।
ଆର ତିନ ଅର୍ଥ ଶୁନ ପରମ-ସମର୍ଥ ॥ ୧୩୫ ॥
'ଚ'-ଶବ୍ଦେ ସମୁଚ୍ଚୟେ ଆର ଅର୍ଥ କୟ ।
'ଆତ୍ମାରାମଶ୍ଚ ମୁନୟଶ୍ଚ' କୃଷ୍ଣେରେ ଭଜୟ ॥ ୧୩୬ ॥
'ନିର୍ଗ୍ରନ୍ଥାଃ' ହଇୟା ଇହାଁ 'ଅପି'- ନିର୍ଦ୍ଧାରଣେ ।
'ରାମଶ୍ଚ କୃଷ୍ଣଶ୍ଚ ଯଥା ବିହରୟେ ବନେ ।' ୧୩୭

---

ଯଥା ପାଦାଙ୍ଗୁଷ୍ଠବିନିଃସୃତା ସରିତ୍—ଗଙ୍ଗା ତଥା ଯତ୍ପାଦସେବାଭିରୁଚିଃ ଅନ୍ୱହଂ—ଅହନି ଅହନି ଏଧତୀ—ବର୍ଦ୍ଧମାନା, ସତୀ ତପସ୍ୱିନାଂ—ସଂସାରତାପତପ୍ତାନାଂ ଅଶେଷ ଜନ୍ମୋପଚିତଂ—ଅଶେଷୈଃ ଜନ୍ମଭିଃ ସଦ୍ଭୃତଂ ଧିୟଃ ମଳଂ ସଦ୍ୟଃ କ୍ଷିଣୋତି । ୮୧ ଶ୍ଳୋକଃ

---

ତପସ୍ୱୀ ପ୍ରଭୃତି ଦେହାରାମୀ ମୁନିମାନେ ବିଧିନିଷେଧର ଅତୀତ ହୋଇ ସୁଦ୍ଧା ସାଧୁ କୃପାରୁ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ ଏହିପ୍ରକାର । ଏହା ୨୨ ଅର୍ଥ । ୧୩୩ ।

ସଭ୍ୟମାନଙ୍କୁ ପୃଥୁ କହୁଅଛନ୍ତି—ହେ ସଭ୍ୟମାନେ ! ନିଜ ପଦାଙ୍ଗୁଷ୍ଠବିନିଃସୃତା ଗଙ୍ଗାଙ୍କ ସଦୃଶ ଯାହାଙ୍କ ଶ୍ରୀଚରଣସେବା ଅଭିଳାଷ ପ୍ରତିଦିନ ବୃଦ୍ଧିପ୍ରାପ୍ତ ହୋଇ ତପସ୍ୱୀମାନଙ୍କର ଅଶେଷ ଜନ୍ମୋପାର୍ଜ୍ଜିତ ବୁଦ୍ଧିର ମଳ ନିଃଶେଷରେ କ୍ଷୟ କରନ୍ତି ସେହି ହରିଙ୍କୁ ଭଜନ କରିବା ଉଚିତ । ୮୧ ଶ୍ଳୋକାର୍ଥ ।

ନାନାକାମପର ଦେହାରାମୀ ମୁନିମାନେ ଶ୍ରୀକୃଷ୍ଣ କୃପାରୁ ଅବିଦ୍ୟାରହିତ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି ଶ୍ରୀକୃଷ୍ଣଙ୍କ ଗୁଣ ଏହିପ୍ରକାର । ଏହା ୨୩ ଅର୍ଥ ।

୮୨ ଶ୍ଳୋକର ଅନ୍ୱୟ—ମଧ. ୨୨ ପରି. ୧୫ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନଙ୍କୁ ଧ୍ରୁବ କହୁଅଛନ୍ତି—ହେ ପ୍ରଭୋ ! ଯେପରି କାଚ ଅନ୍ୱେଷଣ କରୁ କରୁ କେହି ଦିବ୍ୟରତ୍ନ ଲାଭ କରେ, ସେହିପରି ମୁଁ ରାଜ୍ୟଲାଭ ସକାଶେ ତପସ୍ୟା କରି ଦେବ ମୁନୀନ୍ଦ୍ରମାନଙ୍କର ଦୁଷ୍ପ୍ରାପ୍ୟ ଆପଣଙ୍କୁ ଲାଭ କରିଅଛି । ଅତଏବ ମୁଁ କୃତାର୍ଥ ହୋଇଅଛି । ମୋର ବର ଆବଶ୍ୟକ ନାହିଁ । ୮୨ ଶ୍ଳୋକାର୍ଥ ।

ଚ ଶବ୍ଦର ସମୁଚ୍ଚୟ ଅର୍ଥ ଲଗାଇ ଅପର ଅର୍ଥ କରୁଅଛନ୍ତି । ୧୩୬ ଯଥା—ଆତ୍ମାରାମମାନେ ଓ ମୁନିମାନେ ନିର୍ଗ୍ରନ୍ଥ ହୋଇ ସୁଦ୍ଧା ଶ୍ରୀକୃଷ୍ଣଙ୍କ ଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ ଏହିପ୍ରକାର । ଏହା ୨୪ ଅର୍ଥ । ୧୩୭ ।

'ଚ' ଶବ୍ଦ—'ଅନ୍ୱାଚୟେ' ଅର୍ଥ କହେ ଆର ।
'ବଟୋ ଭିକ୍ଷାମଟ ଗାଞ୍ଚାନୟ' ଯୈଛେପ୍ରକାର ।
କୃଷ୍ଣମନନ 'ମୁନି' କୃଷ୍ଣେ ସର୍ବଦା ଭଜୟ ।
'ଆତ୍ମାରାମା ଅପି' ଭଜେ ଗୌଣ ଅର୍ଥ କୟ ।
'ଚ' ଏବାର୍ଥେ, 'ମୁନୟ ଏବ' କୃଷ୍ଣ ଭଜୟ ।
'ଆତ୍ମାରାମା' 'ଅପି'—'ଅପି'– ଗର୍ହା-ଅର୍ଥ କୟ । ୧୪୦ ।
'ନିର୍ଗ୍ରନ୍ଥା ହଇୟା' ଏଇ ଦୋଁହାର ବିଶେଷଣ ।
ଆର ଅର୍ଥ ଶୁନ ଯୈଛେ ସାଧୁର ସଙ୍ଗମ ।୧୪୧।
'ନିର୍ଗ୍ରନ୍ଥ'-ଶବ୍ଦେ କହେ ବ୍ୟାଧ ନିର୍ଧନ ।
ସାଧୁସଙ୍ଗେ ସେହୋ କରେ ଶ୍ରୀକୃଷ୍ଣ ଭଜନ ।
'କୃଷ୍ଣାରାମଶ୍ଚ ଏବ' ହୟ କୃଷ୍ଣମନନ ।
ବ୍ୟାଧ ହଞା ହୟ ପୂଜ୍ୟ ଭାଗବତୋତ୍ତମ ।୧୪୩।
ଏକ ଭକ୍ତ ବ୍ୟାଧେର କଥା ଶୁନ ସାବଧାନେ ।
ଯାହା ହୈତେ ହୟ ସତ୍ ସଙ୍ଗମହିମା ଜ୍ଞାନେ ।୧୪୪।
ଏକଦିନ ଶ୍ରୀନାରଦ ଦେଖି ନାରାୟଣ ।
ତ୍ରିବେଣୀସ୍ନାନେ ପ୍ରୟାଗ କରିଲା ଗମନ ।୧୪୫।
ବନପଥେ ଦେଖେ ମୃଗ ଅଛେ ଭୂମି ପଡ଼ି ।
ବାଣବିଦ୍ଧ ଭଗ୍ନପାଦ କରେ ଧଡ଼ଫଡ଼ି । ୧୪୬ ।
ଆର କଥୋଦୂରେ ଏକ ଦେଖେନ ଶୂକର ।
ତୈଛେ ବିଦ୍ଧ ଭଗ୍ନପାଦ କରେ ଧଡ଼ଫଡ଼ ।
ଐଛେ ଏକ ଶଶକ ଦେଖେ ଆର କଥୋଦୂରେ
ଜୀବେର ଦୁଃଖ ଦେଖି ନାରଦ ବ୍ୟାକୁଲ ଅନ୍ତରେ । ୧୪୮ ।
କଥୋଦୂରେ ଦେଖେ ବ୍ୟାଧ ବୃକ୍ଷେ ଓତ ହୈୟା
ମୃଗ ମାରିବାରେ ଆଛେ ବାଣ ଯୁଡ଼ିୟା ।୧୪୯।
ଶ୍ୟାମବର୍ଣ୍ଣ ରକ୍ତନେତ୍ର ମହା ଭୟଙ୍କର ।
ଧନୁର୍ବାଣ ହସ୍ତେ ଯେନ ଯମଦଣ୍ଡଧର । ୧୫୦ ।
ପଥ ଛାଡ଼ି ନାରଦ ତାର ନିକଟେ ଚଲିଲ ।
ନାରଦ ଦେଖିୟା ସବ ମୃଗ ପଳାଇଲ । ୧୫୧ ।
କ୍ରୁଦ୍ଧ ହଞା ବ୍ୟାଧ ତାରେ ଗାଲି ଦିତେ ଚାୟ ।
ନାରଦ ପ୍ରଭାବେ ଗାଲି ମୁଖେ ନା ବାହିରାୟ ।
'ଗୋସାଞି ! ପ୍ରୟାଣପଥ ଛାଡ଼ି କେନେ ଆଇଲା ?
ତୋମା ଦେଖି ମୋର ଲକ୍ଷ୍ୟ ମୃଗ ପଳାଇଲା ।'
ନାରଦ କହେ ପଥ ଭୁଲି ଆଇଲାଙ୍ ପୁଛିତେ
ମନେ ଏକ ସଂଶୟ ହୟ, ତାହା ଖଣ୍ଡାଇତେ ।

ଚ ଶବ୍ଦର ଅନ୍ୱାଚୟ ( ଏକତରର ପ୍ରାଧାନ୍ୟ ) ଅର୍ଥ ଲଗାଇ ଅର୍ଥ କରୁଅଛନ୍ତି । ଏକତରର ପ୍ରାଧାନ୍ୟର ଉଦାହରଣ ଦେଉଅଛନ୍ତି—ବଟୋ ଭିକ୍ଷା ମଟ ଗାଞ୍ଚାନୟ ଅର୍ଥାତ୍ ହେ ବ୍ରାହ୍ମଣବାଳକ ! ଭିକ୍ଷା କରି ଆଣ, ଗୋରୁଟିଏ ପାଇଲେ ମଧ୍ୟ ଆଣ, ଏଠାରେ ଭିକ୍ଷା କରିବା ପ୍ରଧାନ କାର୍ଯ୍ୟ, ଗୋରୁ ଆଣିବା ଅନୁଷଙ୍ଗିକ, ସେହିପରି ଶ୍ଳୋକର ଅର୍ଥ ଯଥା— ମୁନି (କୃଷ୍ଣ-ମନନଶୀଳ) ନିର୍ଗ୍ରନ୍ଥ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଆତ୍ମାରାମମାନେ ମଧ୍ୟ ସେହିପରି କରନ୍ତି । ଏଠାରେ କୃଷ୍ଣମନନଶୀଳ ହେତୁ ମୁନିମାନଙ୍କର ଭଜନ ସ୍ୱତଃସିଦ୍ଧ ଅତଏବ ପ୍ରଧାନ ଏବଂ ଆତ୍ମାରାମମାନେ ସାଧୁସଙ୍ଗାଦି ହେତୁ ପାଇ ଭଜନ କରନ୍ତି । ଅତଏବ ଏ ଅର୍ଥ ଅପ୍ରସିଦ୍ଧ ବା ଗୌଣ, ଏଠାରେ ଚ ଶବ୍ଦଦ୍ୱାରା ମୁନିମାନଙ୍କର ପ୍ରାଧାନ୍ୟ ପ୍ରକାଶ ହେଲା ଓ ଆତ୍ମାରାମ-ମାନଙ୍କର ଗର୍ହା ଅର୍ଥାତ୍ ଅପ୍ରାଧାନ୍ୟ ପ୍ରକାଶ ହେଲା । ୧୩୮।୧୪୧ । ଏହା ୨୫ ଅର୍ଥ ।

ଏଠାରେ ନିର୍ଗ୍ରନ୍ଥ ପଦକୁ ବିଶେଷ୍ୟ ପଦ କରି ଅର୍ଥ କରୁଅଛନ୍ତି—ନିର୍ଗ୍ରନ୍ଥ (ନିର୍ଦ୍ଧନ ବ୍ୟାଧ) ସାଧୁକୃପାରୁ କୃଷ୍ଣାରାମ ଓ କୃଷ୍ଣମନନଶୀଳ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ ଏହିପ୍ରକାର । ଏହା ୨୬ ଅର୍ଥ । ୧୪୨।୧୪୩ ।

ବ୍ୟାଧଙ୍କର କୃଷ୍ଣଭକ୍ତି ସମ୍ବନ୍ଧରେ ଉଦାହରଣ ଦେଉଅଛନ୍ତି—ନାରାୟଣ—ବଦରିକା-ଶ୍ରମରେ ଶ୍ରୀନରନାରାୟଣ । ତ୍ରିବେଣୀ—ପ୍ରୟାଗ, ଗଙ୍ଗା, ଯମୁନା ଓ ସରସ୍ୱତୀଙ୍କର ସଙ୍ଗମ ସ୍ଥାନ ।୧୪୫

ପଥେ ଯେ ଶୂକର ମୃଗ, ଜାନି ତୋମାର ହୟ ?
ବ୍ୟାଧ କହେ—ଯେଇ କହ, ସେଇ ତ ନିଶ୍ଚୟ ।
ନାରଦ କହେ—ଯଦି ଜୀବେ ମାର ତୁମି ବାଣ ।
ଅର୍ଦ୍ଧମାରା କର କେନେ ନା ଲଓ ପରାଣ ?
ବ୍ୟାଧ କହେ—ଶୁନ ଗୋସାଞି ! 'ମୃଗାରି' ମୋର ନାମ ।
ପିତାର ଶିକ୍ଷାତେ ଆମି କରି ଐଛେ କାମ ।୧୫୬।
ଅର୍ଦ୍ଧମାରା ଜୀବ ଯଦି ଧଡ଼ଫଡ଼ କରେ ।
ତବେ ତ ଆନନ୍ଦ ମୋର ବାଢ଼ୟେ ଅନ୍ତରେ ।
ନାରଦ କହେ—ଏକ ବସ୍ତୁ ମାଗି ତୋମାର ସ୍ଥାନେ ।
ବ୍ୟାଧ କହେ—ମୃଗାଦି ଲେହ ଯେଇ ତୋମାର ମନେ ।୧୫୯।
ମୃଗଛାଲ ଚାହ ଯଦି, ଆଇସ ମୋର ଘରେ ।
ଯେଇ ଚାହ, ତାହା ଦିବ—ମୃଗ-ବ୍ୟାଘ୍ରାମ୍ବରେ ।
ନାରଦ କହେ—ଇହା ଆମି କିଛୁଇ ନା ଚାଇ ।
ଆର ଏକ ଦାନ ଆମି ମାଗି ତୋମାର ଠାଞି ।
କାଲିହୈତେ ତୁମି ଯେଇ ମୃଗାଦି ମାରିବେ ।
ପ୍ରଥମେଇ ମାରିବେ, ଅର୍ଦ୍ଧମାରା ନା କରିବେ ।
ବ୍ୟାଧ କହେ—କିବା ଦାନ ମାଗିଲେ ଆମାରେ ?
ଅର୍ଦ୍ଧ ମାରିଲେ କିବା ହୟ, ତାହା କହ ମୋରେ ? ।୧୬୩।
ନାରଦ କହେ—ଅର୍ଦ୍ଧ ମାରିଲେ ଜୀବ ପାୟ ବ୍ୟଥା ।
ଜୀବେ ଦୁଃଖ ଦିଛ, ତୋମାର ହଇବେ ଅବସ୍ଥା ।
ବ୍ୟାଧ ! ତୁମି ଜୀବ ମାର, ଏ ଅଳ୍ପ ପାପ ତୋମାର ।
କଦର୍ଥନା ଦିୟା ମାର ଏ ପାପ ଅପାର ।୧୬୫।
କଦର୍ଥିୟା ତୁମି ଯତ ମାରିୟାଛ ଜୀବେରେ ।
ତାରା ତୈଛେ ତୋମା ମାରିବେ ଜନ୍ମଜନ୍ମାନ୍ତରେ ।

ନାରଦେର ସଙ୍ଗେ ବ୍ୟାଧେର ମନ ପ୍ରସନ୍ନ ହୈଲ ।
ତାଁର ବାକ୍ୟ ଶୁନି ମନେ ଭୟ ଉପଜିଲ ।୧୬୬।
ବ୍ୟାଧ କହେ—ବାଲ୍ୟ ହୈତେ ଏଇ ଆମାର କର୍ମ ।
କେମନେ ତରିମୁ ମୁଞି ପାମର ଅଧମ ? ।୧୬୮।
ଏଇ ପାପ ଯାୟ ମୋର କେମନ ଉପାୟ ?
ନିସ୍ତାର କରହ ମୋରେ, ପଡ଼ୋଁ ତୋମାର ପାୟ ।୧୬୯।
ନାରଦ କହେ—ଯଦି ଧର ଆମାର ବଚନ ।
ତବେ ସେ କରିତେ ପାରି ତୋମାର ମୋଚନ ।
ବ୍ୟାଧ କହେ—ଯେଇ କହ, ସେଇ ତ କରିବ
ନାରଦ କହେ—ଧନୁକ ଭଙ୍ଗ, ତବେ ସେ କହିବ ।୧୭୧।
ବ୍ୟାଧ କହେ—ଧନୁକ ଭାଙ୍ଗିଲେ ବର୍ତ୍ତିବ କେମନେ ?
ନାରଦ କହେ—ଆମି ଅନ୍ନ ଦିବ ପ୍ରତିଦିନେ ।
ଧନୁକ ଭାଙ୍ଗି ବ୍ୟାଧ ତାଁର ଚରଣେ ପଡ଼ିଲ ।
ତାରେ ଉଠାଇୟା ନାରଦ ଉପଦେଶ କୈଲ ।
ଘରେ ଗିୟା ବ୍ରାହ୍ମଣେ ଦେହ ଯତ ଆଛେ ଧନ ।
ଏକ ଏକ ବସ୍ତ୍ର ପରି ବାହିର ହଓ ଦୁଇଜନ ।
ନଦୀତୀରେ ଏକଖାନି କୁଟୀର କରିୟା ।
ତାର ଆଗେ ଏକ ପିଣ୍ଡି ତୁଳସୀ ରୋପିୟା ।୧୭୫
ତୁଳସୀପରିକ୍ରମା କର ତୁଳସୀ ସେବନ ।
ନିରନ୍ତର କର କୃଷ୍ଣନାମସଂକୀର୍ତ୍ତନ ।୧୭୬।
ଆମି ତୋମାର ବହୁ ଅନ୍ନ ପାଠାଇବ ଦିନେ ଦିନେ ।
ସେଇ ଅନ୍ନ ଲବ, ଯତ ଖାଅ ଦୁଇଜନେ ।୧୭୭

ଓତ୍ତଦୟା—ଛିପିକରି ।୧୪୯। ପ୍ରମାଣ—ପ୍ରସିଦ୍ଧ ।୧୫୩। ଅବସ୍ଥା—ଦୁର୍ଗତି ।୧୬୪। କଦର୍ଥନା—ଦୁଃଖ ।୧୬୫। ବର୍ତ୍ତିବ କେମନେ—ଜୀଇବ କିପରି ।୧୭୧। ଉପଦେଶ—ମନ୍ତ୍ର ଉପଦେଶ ।୧୭୩। ଦୁଇ ଜନ—ସ୍ୱାମୀ ଓ ସ୍ତ୍ରୀ ।୧୭୪। ତୁମ୍ଭ ଦୁହଙ୍କର ଯେତିକି ପ୍ରୟୋଜନ ସେତିକି ନିଅ ଅର୍ଥାତ୍ ବେଶି ନୁହେ ।୧୭୭।

ତବେ ସେଇ ତିନ ମୃଗ ନାରଦ ସୁସ୍ଥ କୈଲ ।
ସୁସ୍ଥ ହଞା ତିନ ମୃଗ ଧାଞା ପଲାଇଲ । ୧୭୮ ।
ଦେଖିଯା ବ୍ୟାଧେର ମନେ ହୈଲ ଚମତ୍କାର ।
ଘରେ ଗେଲା ବ୍ୟାଧ ଗୁରୁକେ କରି ନମସ୍କାର ।
ଯଥାସ୍ଥାନେ ନାରଦ ଗେଲା, ବ୍ୟାଧ ଆଇଲା ଘର
ନାରଦେର ଉପଦେଶ କରିଲ ସକଲ ।୧୮୦ ।
ଗ୍ରାମେ ଧ୍ୱନି ହୈଲ—'ବ୍ୟାଧ ବୈଷ୍ଣବ ହଇଲା ।'
ଗ୍ରାମେର ଲୋକ ସବ ଅନ୍ନ ଆନି ଦିତେ
ଲାଗିଲା । ୧୮୧ ।
ଏକଦିନେ ଅନ୍ନ ଆନେ ଦଶ ବିଶ ଜନେ ।
ଦିଲେ ତତ ଲୟ, ଯତ ଖାୟ ଦୁଇଜନେ ।୧୮୨
ଏକଦିନ କହିଲ ନାରଦ—ଶୁନହ ପର୍ବତେ !
ଆମାର ଏକ ଶିଷ୍ୟ ଆଛେ, ଚଲହ ଦେଖିତେ ।
ତବେ ଦୁଇ ଋଷି ଆଇଲା ସେଇ ବ୍ୟାଧସ୍ଥାନେ ।
ଦୂରେ ହୈତେ ବ୍ୟାଧ ପାଇଲ ଗୁରୁର ଦର୍ଶନେ ।
ଆସ୍ତେବ୍ୟସ୍ତେ ଧାଞା ଆଇସେ—ପଥ ନାହି ପାୟ
ପଥେ ପିପୀଲିକା ଇତଉତ ଧରେ ପାୟ । ୧୮୪ ।
ଦଣ୍ଡବତ ସ୍ଥାନେ ପିପୀଲିକାରେ ଦେଖିଯା ।
ବସ୍ତ୍ରେ ସ୍ଥାନ ଝାଡ଼ି, ପଡ଼େ ଦଣ୍ଡବତ ହଞା ।
ନାରଦ କହେ—ବ୍ୟାଧ ! ଏଇ ନା ହୟ ଆଶ୍ଚର୍ଯ୍ୟ ।
ହରିଭକ୍ତ୍ୟେ ହିଂସାଶୂନ୍ୟ ହୟ ସାଧୁବର୍ଯ୍ୟ ।୧୮୬ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୬୮)
ସ୍କାନ୍ଦବଚନମ୍—

ଏତେ ନ ହ୍ୟଦ୍ଭୁତା ବ୍ୟାଧ ତବାହିଂସାଦୟୋ ଗୁଣାଃ
ହରିଭକ୍ତୌ ପ୍ରବୃତ୍ତା ଯେ ନ ତେ ସ୍ୟୁଃ
ପରତାପିନଃ । ୮୩

ତବେ ସେଇ ବ୍ୟାଧ ଦୋଁହା ଅଙ୍ଗନେ ଆନିଲ ।
କୁଶାସନ ଆନି ଦୋଁହା ଭକ୍ତ୍ୟେ ବସାଇଲ ।
ଜଲ ଆନି ଭକ୍ତ୍ୟେ ଦୋଁହାର ପାଦ ପ୍ରକ୍ଷାଲିଲ ।
ସେଇ ଜଲ ସ୍ତ୍ରୀ ପୁରୁଷେ ପିଯା ଶିରେ ନିଲ ।
କମ୍ପପୁଲକାଶ୍ରୁ ହୟ କୃଷ୍ଣଗୁଣ ଗାଞା ।
ଊର୍ଦ୍ଧ୍ୱବାହୁ ନୃତ୍ୟ କରେ ବସ୍ତ୍ର ଉଡ଼ାଇଯା ।୧୯୦।
ଦେଖିଯା ବ୍ୟାଧେର ପ୍ରେମ ପର୍ବତ ମହାମୁନି ।
ନାରଦେରେ କହେ—ତୁମି ହଓ ସ୍ପର୍ଶମଣି ।

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୩।୧୦ )
ସ୍କାନ୍ଦବଚନମ୍—

ଅହୋ ଧନ୍ୟୋଽସି ଦେବର୍ଷେ କୃପୟା ଯସ୍ୟ
ତତ୍କ୍ଷଣାତ୍ ।
ନୀଚୋଽପ୍ୟୁତ୍ପୁଲକୋ ଲେଭେ ଲୁବ୍ଧକୋ
ରତିମଚ୍ୟୁତେ । ୮୪ ।

ହେ ଦେବର୍ଷେ ! ଅହୋ, ଧନ୍ୟଃ ଅସି, ଯସ୍ୟ ତବ କୃପୟା ନୀଚଃ-ଲୁବ୍ଧକଃ ବ୍ୟାଧଃ ଉତ୍ପୁଲକଃ ସନ୍ ଅଚ୍ୟୁତେ ରତିଂଲେଭେ । ୮୪ ଶ୍ଳୋକଃ ।

୧୦।୧୨ ଜଣଙ୍କର ଅନ୍ନ ଆଣିଲେ ମଧ୍ୟ ଏ ଦୁଇ ଜଣଙ୍କର ପ୍ରୟୋଜନୀୟ ଅନ୍ନ ନିଅନ୍ତି । ୧୮୨ । ପର୍ବତ—ତନ୍ନାମା ମୁନି । ୧୮୩ । ଇତଉତଧରେ ପାୟ—ଏ ପାଖ ସେ ପାଖ ଯେଉଁଠାରେ ପିମ୍ପୁଡ଼ି ନ ଥାନ୍ତି ସେଠାରେ ପାଦ ପକାନ୍ତି । ୧୮୪ ।

୮୩ ଶ୍ଳୋକର ଅନ୍ୱୟ ମଧ୍ୟ: ୨୨ ପରଃ ୭୫ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଋଷି ବ୍ୟାଧକୁ କହିଲେ—ହେ ବ୍ୟାଧ ! ତୁମ୍ଭର ଏପ୍ରକାର ଅହିଂସାଦି ଗୁଣସମୂହ ଅତ୍ୟାଶ୍ଚର୍ଯ୍ୟ ନୁହେ, କାରଣ—ଯେଉଁ ବ୍ୟକ୍ତି ଶ୍ରୀହରିଙ୍କ ଭକ୍ତିରେ ପ୍ରବୃତ୍ତ ହୁଅନ୍ତି, ସେମାନେ କଦାପି ଅପରକୁ ଦୁଃଖ ଦିଅନ୍ତି ନାହିଁ । ୮୩ ଶ୍ଳୋକାର୍ଥ ।

ହେ ଦେବର୍ଷେ ! ଆପଣ ଧନ୍ୟ, ଯେହେତୁ ଆପଣଙ୍କ କୃପାରୁ ଅତି ନୀଚ ବ୍ୟାଧ ସୁଦ୍ଧା ପୁଲକିତ ହୋଇ ଶ୍ରୀକୃଷ୍ଣଙ୍କ ରତିଲକ୍ଷଣା ଭକ୍ତି ଲାଭ କରିଅଛି । ୮୪ ଶ୍ଳୋକାର୍ଥ ।

ନାରଦ କହେ–ବୈଷ୍ଣବ ! ତୋମାର ଅନ୍ନ କିଛୁ ଆଛେ ?
ବ୍ୟାଧ କହେ-ଯାରେ ପାଠାଓ, ସେଇ ଦିଯା ଯାଏ ॥
ଏତ ଅନ୍ନ ନା ପାଠାଓ, କିଛୁ କାର୍ଯ୍ୟ ନାହି ।
ସବେ ଦୁଇ ଜନାର ଯୋଗ୍ୟ ଭକ୍ଷ୍ୟମାତ୍ର ଚାଇ ।
ନାରଦ କହେ- ଐଛେ ରହ ତୁମି ଭାଗ୍ୟବାନ ।
ଏତ ବଲି ଦୁଇ ଜନ କୈଲା ଅନ୍ତର୍ଦ୍ଧାନ ।୧୯୪।
ଏଇ ତ କହିଲ ତୋମାର ବ୍ୟାଧେର ଆଖ୍ୟାନ ।
ଯା ଶୁନିଲେ ହୟ ସାଧୁସଙ୍ଗ-ପ୍ରଭାବ ଜ୍ଞାନ ।୧୯୫।
ଏଇ ଆର ତିନ ଅର୍ଥ ଗଣନାତେ ପାଇଲ ।
ଏଇ ଦୁଇ ମିଲି ଛବିଶ ଅର୍ଥ ହଇଲ । ୧୯୬ ।
ଆର ଅର୍ଥ ଶୁନ, ଯାହା ଅର୍ଥେର ଭାଣ୍ଡାର ।
ସ୍ଥୂଲେ ଦୁଇ ଅର୍ଥ, ସୂକ୍ଷ୍ମେ ବତ୍ରିଶ ପ୍ରକାର । ୧୯୭
'ଆତ୍ମା'-ଶବ୍ଦେ କହେ-ସର୍ବବିଧ ଭଗବାନ ।
ଏକ ସ୍ୱୟଂ ଭଗବାନ, ଆର ଭଗବାନାଖ୍ୟାନ ।
ତାଁତେ ଯେଇ ରମେ, ସେଇ ସବ 'ଆତ୍ମାରାମ ।'
ବିଧିଭକ୍ତ, ରାଗଭକ୍ତ—ଦୁଇବିଧ ନାମ । ୧୯୯ ।
ଦୁଇବିଧ ଭକ୍ତ ହୟ—ଚାରି ଚାରି ପ୍ରକାର—
ପାରିଷଦ, ସାଧନସିଦ୍ଧ, ସାଧକଗଣ ଆର ।୨୦୦।
ଜାତାଜାତ ରତିଭେଦେ ସାଧକ ଦୁଇ ଭେଦ ।
ବିଧି ରାଗମାର୍ଗେ ଚାରି ଚାରି-ଅଷ୍ଟ ଭେଦ ।୨୦୧।
ବିଧିଭକ୍ତେ ନିତ୍ୟସିଦ୍ଧ 'ପାରିଷଦ'-ଦାସ ।
ସଖା, ଗୁରୁ, କାନ୍ତାଗଣ—ଚାରି ତ ପ୍ରକାଶ ॥

---

'ବିଧି' ଇତି, ବିଧିଭକ୍ତୌ ନିତ୍ୟସିଦ୍ଧପାର୍ଷଦାନାଂ ଦାସସଖାଗୁରୁକାନ୍ତାଗଣରୂପେଣ ଚତ୍ୱାରୋ ଭେଦାଃ ଏବଂ ସାଧନସିଦ୍ଧାନାମପି । ୧୯୯।ଵି, ଚ ।

ଷୋଳଭେଦ ଇତି । ସାଧନସିଦ୍ଧଦାସାନାଂ ଚତୁର୍ଣ୍ଣାଂ ପ୍ରଥମାବସ୍ଥାମବଲମ୍ବ୍ୟ ସାଧକତ୍ୱଯୋଃ ଜାତାଜାତ ରତିଭେଦେନ ସାଧନ ସିଦ୍ଧାବସ୍ଥାୟାଂ ଦାସାଦୟଶ୍ଚତ୍ୱାରୋଭେଦା ଜାତାଜାତ ରତିଭେ ଚତ୍ୱାରୋ ଇତି ଦ୍ୱାଦଶପାର୍ଷଦସ୍ୟ ଚତ୍ୱାରୋଭେଦା ମିଳିତ୍ୱା ଷୋଡ଼ଶ ଇତି ସମ୍ପ୍ରସିଃ ।୨୦୧। ଵି,ଚ,

---

ଐଛେ ରହ – ଏହିପରି ଅହଂସ୍ପୃହା ନିଷ୍କୋଭ ଭଜନପରାୟଣ ହୋଇ ରହ । ୧୯୪ ।

ସ୍ଥୂଲେ ଦୁଇ ଅର୍ଥ—ସାଧାରଣତଃ ଦୁଇ, ବିଧିଭକ୍ତ ଓ ରାଗଭକ୍ତ ।

ସୂକ୍ଷ୍ମେ ୩୨ ପ୍ରକାର—ବିଶେଷରୂପେ ୩୨ ପ୍ରକାର ଅର୍ଥାତ୍ ବିଧି ୧୬ ଓ ରାଗ ୧୬ ଯାହା ପରେ ବର୍ଣ୍ଣିତ ହୋଇଅଛି । ୧୯୭ ।

ତାଁତେ — ସ୍ୱୟଂ ଭଗବାନଙ୍କଠାରେ ଏବଂ ତାହାଙ୍କ ପ୍ରକାଶ ବିଳାସ ଅବତାରମାନଙ୍କଠାରେ । ୧୯୯ । ଚାରି ଚାରି ପ୍ରକାର—ଆଠ ପ୍ରକାର ।

ବିଧିଭକ୍ତିର—୧ ପାର୍ଷଦ ( ନିତ୍ୟସିଦ୍ଧ ) । ୨ ସାଧନସିଦ୍ଧ, ୩ ଜାତରତି ସାଧକ, ୪ ଅଜାତରତି ସାଧକ ।

ରାଗଭକ୍ତିର—୧ ପାର୍ଷଦ (ରାଗାତ୍ମିକା ବା ନିତ୍ୟସିଦ୍ଧ) ୨ ସାଧନସିଦ୍ଧ, ୩ ଜାତରତି ୪ ଅଜାତରତି । ୨୦୦, ୨୦୧ । ବିଧିର ନିତ୍ୟସିଦ୍ଧ ପୁଣି ଚାରି ପ୍ରକାର । ଯଥା—୧ଦାସ, ୨ୟ ସଖା, ୩ୟ ଗୁରୁ ୪ର୍ଥରେ କାନ୍ତା ।

'ସାଧନସିଦ୍ଧ'— ଦାସ, ସଖା, ଗୁରୁ କାନ୍ତାଗଣ ।
'ଜାତରତି ସାଧକ'-ଭକ୍ତ ଚାରି ବିଧ ଜନ ।
'ଅଜାତରତି ସାଧକ'—ଭକ୍ତ ଏ ଚାରି ପ୍ରକାର ।
ବିଧିମାର୍ଗେ ଭକ୍ତ ଷୋଡ଼ଶ ଭେଦ ପ୍ରଚାର ।୨୦୪।
ରାଗମାର୍ଗେ ଐଛେ ଭକ୍ତ ଷୋଡ଼ଶ-ବିଭେଦ ।
ଦୁଇ ମାର୍ଗେ 'ଆତ୍ମାରାମ' ବତ୍ରିଶ-ବିଭେଦ ।୨୦୫।
'ମୁନି, ନିର୍ଗ୍ରନ୍ଥ, ଚ, ଅପି ଚାରି ଶବ୍ଦେର ଅର୍ଥ ।
ଯାହାଁ ଯେଇ ଲାଗେ, ତାହାଁ କରୟେ ସମର୍ଥ ।୨୦୬।
ବତ୍ରିଶେ ଛବିଶେ ମେଲି ଅଷ୍ଟ ପଞ୍ଚାଶ ।
ଆର ଏକ ଭେଦ ଶୁନ ଅର୍ଥେର ପ୍ରକାଶ ।
ଇତରେତର 'ଚ' ଦିୟା ସମାସ କରିୟେ ।
ଆଠାଇବାର 'ଆତ୍ମାରାମ' ନାମ ଲଇୟେ ।
'ଆତ୍ମାରାମାଶ୍ଚ ଆତ୍ମାରାମାଶ୍ଚ' ଆଠାଇବାର ।
ଶେଷେ ସବ ଲୋପ କରି, ରାଖି ଏକବାର ।୨୦୭।
ତଥାହି ପାଣିନିଃ ( ୧।୨।୬୪ )—
ସିଦ୍ଧାନ୍ତକୌମୁଦ୍ୟାମ୍ ଅଜନ୍ତପୁଂଲିଙ୍ଗଶବ୍ଦ-
ପ୍ରକରଣେ—

"ସରୂପାଣାମେକଶେଷ ଏକବିଭକ୍ତୌ"
ଉକ୍ତାର୍ଥାନାମପ୍ରୟୋଗ ଇତି ।୮୫।
ଆଠାଇଶ ଚକାରେର ସବ ଲୋପ ହୟ ।
ଏକ 'ଆତ୍ମାରାମ' ଶବ୍ଦେ ଆଠାଇଶ ଅର୍ଥ କୟ ।୨୧୦।
ତଥାହି ପାଣିନିଃ ( ୧।୨।୬୪ )—
ସିଦ୍ଧାନ୍ତକୌମୁଦ୍ୟାମ୍ ଅଜନ୍ତପୁଂଲିଙ୍ଗ-
ଶବ୍ଦପ୍ରକରଣେ—
ଅଶ୍ୱତ୍ଥବୃକ୍ଷାଶ୍ଚ ବଟବୃକ୍ଷାଶ୍ଚ କପିତ୍ଥବୃକ୍ଷାଶ୍ଚ
ଆମ୍ରବୃକ୍ଷାଶ୍ଚ – ବୃକ୍ଷାଃ ।୮୬।
'ଅସ୍ମିନ ବନେ ବୃକ୍ଷାଃ ଫଲନ୍ତି' ଯୈଛେ ହୟ ।
ତୈଛେ ସବ 'ଆତ୍ମାରାମ' କୃଷ୍ଣେ ଭକ୍ତି କରୟ ।
'ଆତ୍ମାରାମାଶ୍ଚ ସମୁଚ୍ଚୟେ କହିୟେ ଚକାର ।
'ମୁନୟଶ୍ଚ ଭକ୍ତି କରେ— ଏଇ ଅର୍ଥ ତାର ।୨୧୨
'ନିର୍ଗ୍ରନ୍ଥା ଏବ ହଞା, 'ଅପି— ନିର୍ଦ୍ଧାରଣେ ।
ଏଇ ଊନଷଷ୍ଟି ଅର୍ଥ କରିଲ ବ୍ୟାଖ୍ୟାନେ ।
ସର୍ବସମୁଚ୍ଚୟେ ଆର ଏକ ଅର୍ଥ ହୟ—
ଆତ୍ମାରାମାଶ୍ଚ ମୁନୟଶ୍ଚ ନିର୍ଗ୍ରନ୍ଥାଶ୍ଚ ଭଜୟ ।୨୧୪

---

ସାଧନସିଦ୍ଧ ପୁଣି ଚାରି ପ୍ରକାର— ୧ ଦାସ, ୨ ସଖା, ୩ ଗୁରୁ, ୪ କାନ୍ତା । ଜାତରତି ସାଧକ ଚାରିପ୍ରକାର—୧ ଦାସ, ୨ ସଖା, ୩ ଗୁରୁ, ୪ କାନ୍ତା । ଅଜାତରତି ସାଧକ ଚାରିପ୍ରକାର – ୧ ଦାସ, ୨ ସଖା, ୩ ଗୁରୁ, ୪ କାନ୍ତା । ମୋଟରେ ବିଧିଭକ୍ତ ୧୬ ଏହିପରି ରାଗଭକ୍ତ ୧୬ ପ୍ରକାର । ସର୍ବମୋଟ ୩୨ପ୍ରକାର ଆତ୍ମାରାମ । ଏହି ଅନୁସାରେ ଆତ୍ମାରାମ ଶ୍ଳୋକର ଅର୍ଥ ଏହିରୂପ ହୁଏ ଯଥା—

( ୧ ) ନିତ୍ୟସିଦ୍ଧ, ବିଧିଭକ୍ତ, ଆତ୍ମାରାମ, ଶ୍ରୀଭାଗବତ ମନନଶୀଳ, ଅବିଦ୍ୟାରହିତ ହୋଇ ଶ୍ରୀଭଗବାନଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀଭଗବାନଙ୍କର ଗୁଣ ଏହିପ୍ରକାର ।

( ୨ ) ଜାତରତି, ରାଗଭକ୍ତ, ଆତ୍ମାରାମ, ଶ୍ରୀକୃଷ୍ଣମନନଶୀଳ ଓ ବିଧିନିଷେଧର ଅତୀତ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କ ଗୁଣ ଏହିପ୍ରକାର । ଉପରୋକ୍ତ ଅନୁସାରେ ବିଧି ଓ ରାଗମାର୍ଗର ଭକ୍ତ ୩୨ ଭେଦରେ ଶ୍ଳୋକର ୩୨ ଅର୍ଥ କରିବାକୁ ହେବ । ୨୦୨-୨୦୬ ପୂର୍ବୋକ୍ତ ୨୬ ଓ ଉପରୋକ୍ତ ୩୨ ଏରୂପ ୫୮ ଅର୍ଥ ହେଲା । ୨୦୬ ।

୮୬ ଶ୍ଳୋକର ଅନ୍ୱୟ—ଏହି ପରିଚ୍ଛେଦର ୫୦ ଶ୍ଳୋକରେ ଦ୍ରଷ୍ଟବ୍ୟ

ଇତରେତର ସମାସଦ୍ୱାରା ଏହି ଅର୍ଥ ବୁଝା ହୁଏ । ଯଥା—୫୮ ପ୍ରକାର ଆତ୍ମାରାମମାନେ ଓ ମୁନିମାନେ ନିର୍ଗ୍ରନ୍ଥ ହୋଇ ସୁଦ୍ଧା ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି । ଶ୍ରୀକୃଷ୍ଣଙ୍କର ଗୁଣ ଏହି ପ୍ରକାର । ଏହା । ୫୯ ଅର୍ଥ । ୨୧୩ ।

ଏକଶେଷ ସମାସରେ ସରୂପମାନଙ୍କର ଏକଶେଷ ଓ ଏକ ବିଭକ୍ତିରେ ଯେଉଁମାନଙ୍କର ଅର୍ଥ ଉକ୍ତ ହୁଏ ସେଠାରେ ଏକସରୂପ ରଖାଯାଏ, ଅନ୍ୟ ସମସ୍ତ ସରୂପ ପ୍ରୟୋଗ ହୁଏ ନାହିଁ । ଯଥା—ରାମାଶ୍ଚ ରାମାଶ୍ଚ ରାମାଶ୍ଚ ରାମାଃ ।

'ଅପି' ଶବ୍ଦ ଅବଧାରଣେ, ସେହୋ ଚ୍ଚରବାର ।
ଚ୍ଚର ଶବ୍ଦ ସଙ୍ଗେ 'ଏବେର କରିବେ ଉଚ୍ଚାର ।
ତଥାହି ଶ୍ରୀପ୍ରଭୁପାଦୋକ୍ତ ବ୍ୟାଖ୍ୟା,—
ଉରୁକ୍ରମ ଏବ, ଭକ୍ତିମେବ,
ଅହୈତୁକୀମେବ, କୁର୍ବନ୍ତ୍ୟେବ । ୮୭ ।
ଏଇ ତ କହିଲ ଶ୍ଳୋକେର ଷାଠିସଂଖ୍ୟା ଅର୍ଥ ।
ଆର ଏକ ଅର୍ଥ ଶୁନ, ପ୍ରମାଣେ ସମର୍ଥ । ୨୧୬ ।
'ଆତ୍ମ'-ଶବ୍ଦେ କହେ — କ୍ଷେତ୍ରଜ୍ଞ ଜୀବଲକ୍ଷଣ ।
ବ୍ରହ୍ମାଦି କୀଟପର୍ଯ୍ୟନ୍ତ ତାର ଶକ୍ତିତେ ଗଣନ ।
ତଥାହି ବିଷ୍ଣୁପୁରାଣେ ( ୬।୭।୬୧ )—
ବିଷ୍ଣୁଶକ୍ତିଃ ପରା ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥାପରା ।
ଅବିଦ୍ୟାକର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ । ୮୮ ।

ତଥା ଚ ଅମରକୋଷେ ସ୍ୱର୍ଗବର୍ଗେ ( ୨ )—
କ୍ଷେତ୍ରଜ୍ଞ ଆତ୍ମା ପୁରୁଷଃ । ୮୯ ।
ଭ୍ରମିତେ ଭ୍ରମିତେ ଯଦି ସାଧୁସଙ୍ଗ ପାୟ ।
ସବ ତ୍ୟଜି ତବେ ତିହେଁ କୃଷ୍ଣେରେ ଭଜୟ । ୨୧୮ ।
ଷାଠି ଅର୍ଥ କହିଲ—ଯେ କୃଷ୍ଣେର ଭଜନ ।
ସେଇ ଅର୍ଥ ହୟ ସବ ଅର୍ଥେର ଉଦାହରଣ ।
ଏକଷଷ୍ଟି ଅର୍ଥ ଏବେ ସ୍ଫୁରିଲ ତୋମାର ସଙ୍ଗେ ।
ତୋମାର ଭକ୍ତିବଲେ ଉଠେ ଅର୍ଥେର ତରଙ୍ଗେ ।
ତଥାହି ପ୍ରାଚୀନ ଶ୍ଳୋକଃ—
ଭକ୍ତ୍ୟା ଭଗବତଂ ଗ୍ରାହ୍ୟଂ ନ ବୁଦ୍ଧ୍ୟା ନ ଚ ଟୀକୟା । ୯୦ ।

---

ଭାଗବତଂ (ଶାସ୍ତ୍ରଂ) ଭକ୍ତ୍ୟାଗ୍ରାହ୍ୟଂ ବୁଦ୍ଧ୍ୟା ନ ଟୀକୟା ଚ ନ (ଗ୍ରାହ୍ୟଂ) । ୯୦ଶ୍ଳୋକଃ ।

---

କି ଆତ୍ମାରାମମାନେ, କି ମୁନିମାନେ, କି ନିର୍ଗ୍ରନ୍ଥମାନେ ସମସ୍ତେ ଶ୍ରୀକୃଷ୍ଣଙ୍କ ଗୁଣରେ ଆକୃଷ୍ଟ ହୋଇ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି, ଶ୍ରୀକୃଷ୍ଣଙ୍କ ଗୁଣ ଏହି ପ୍ରକାର ( ଏହା ଷଷ୍ଠିତମ ଅର୍ଥ । ୨୧୪ ।

ବ୍ରହ୍ମାଙ୍କଠାରୁ କୀଟ ପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କର କ୍ଷେତ୍ରଜ୍ଞାଖ୍ୟାଶକ୍ତିର ଅନ୍ତର୍ଭୂତ । ୨୧୭ ।

୮୮ ଶ୍ଳୋକର ଅନ୍ୱୟ ଆଦିଲୀଳା ୭ମ ପରିଚ୍ଛେଦର ୭ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ବିଷ୍ଣୁଙ୍କର ତିନିଗୋଟି ଶକ୍ତି ଉପଲବ୍ଧି ହୁଏ, ସେହିମାନଙ୍କରୁ ପରା ( ସର୍ବଶ୍ରେଷ୍ଠା ) ଚିତ୍-ସ୍ୱରୂପା ( ଅନ୍ତରଙ୍ଗାଶକ୍ତି ) ପ୍ରଥମ; ଅପରା ( ଅନ୍ତରଙ୍ଗାଶକ୍ତିଠାରୁ ପୃଥକ ) କ୍ଷେତ୍ରଜ୍ଞାନାମ୍ନୀ ଶକ୍ତି ( ଜୀବଶକ୍ତି ) ଦ୍ୱିତୀୟ ଏବଂ ଅନ୍ୟା ( ଅନ୍ତରଙ୍ଗା ଓ କ୍ଷେତ୍ରଜ୍ଞା ବ୍ୟତୀତ ଅନ୍ୟା ) କର୍ମସଂଜ୍ଞା-ନାମ୍ନୀ ଅବିଦ୍ୟା ( ମାୟା ବା ବହିରଙ୍ଗା ) ଶକ୍ତି ତୃତୀୟ । ୮୮ ଶ୍ଳୋକାର୍ଥ ।

୮୯ ଶ୍ଳୋକ— ଅମରକୋଷ ଅଭିଧାନ ଅନୁସାରେ କ୍ଷେତ୍ରଜ୍ଞ ଶବ୍ଦର ଅର୍ଥ ଆତ୍ମା-ପୁରୁଷ ବ୍ରହ୍ମାଙ୍କଠାରୁ କୀଟ ପର୍ଯ୍ୟନ୍ତ ଜୀବମାନେ ଏହି ସଂସାର ସରଣିରେ ଭ୍ରମଣ କରୁ କରୁ ସୌଭାଗ୍ୟକ୍ରମେ ସାଧୁ ସଙ୍ଗରୁ ସାଧୁ କୃପା ଲାଭ କଲେ, ସେମାନେ ଦୁର୍ବାସନା ଆଦି ତ୍ୟାଗ କରି ନିତ୍ୟସେବ୍ୟ ପ୍ରଭୁ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି । ଏହା ଏକଷଷ୍ଠିତମ ଅର୍ଥ । ୨୧୮ ।

କୃଷ୍ଣ ଭଜନକର ଜୀବର ଅବଶ୍ୟ କର୍ତ୍ତବ୍ୟ ଏହାହିଁ ଆତ୍ମାରାମ ଶ୍ଳୋକର ଅର୍ଥ । ଯେ ୬୦ ପ୍ରକାର ଅର୍ଥ କରାଗଲା ସେମାନେ ଏହି ଅର୍ଥର ଉଦାହରଣ । ୨୧୯ ।

ଭଗବାନ ଭକ୍ତିଗ୍ରାହ୍ୟ ଏବଂ ତୁମ୍ଭେ ଭକ୍ତ, ସୁତରାଂ ତୁମ୍ଭର ସଙ୍ଗ ହେତୁ ଆଉ ଏକ ଅର୍ଥ ସ୍ଫୁର୍ତ୍ତି ହେଲା । ଏହିପରି ଅର୍ଥ ଭକ୍ତ ସଙ୍ଗରେ ଭକ୍ତିବଳରେ ସ୍ଫୁର୍ତ୍ତି ହୋଇଥାଏ । ୨୨୦ । କେବଳ ଭକ୍ତିଦ୍ୱାରା ଶ୍ରୀମଦ୍ଭାଗବତର ଅର୍ଥ ଗ୍ରହଣୀୟ ହୁଏ ; ଅର୍ଥାତ୍ ଜଣାଯାଏ, କିନ୍ତୁ ବୁଦ୍ଧିଦ୍ୱାରା ବା ଟୀକାଦ୍ୱାରା ବୋଧ ହୁଏ ନାହିଁ । ୯୦ ଶ୍ଳୋକାର୍ଥ ।

ଅର୍ଥ ଶୁନି ସନାତନ ବିସ୍ମିତ ହଇଯା ।
ମହାପ୍ରଭୁରେ ସ୍ତୁତି କରେ ଚରଣେ ଧରିୟା—
ସାକ୍ଷାତ୍ ଈଶ୍ୱର ତୁମି ବ୍ରଜେନ୍ଦ୍ରନନ୍ଦନ ।
ତୋମାର ନିଶ୍ୱାସେ ସବ ବେଦପ୍ରବର୍ତ୍ତନ ।୨୨
ତୁମି ବକ୍ତା ଭାଗବତେର— ତୁମି ଜାନ ଅର୍ଥ ।
ତୋମା ବିନୁ ଅନ୍ୟ ଜାନିତେ ନାହିକ ସମର୍ଥ ।

ତଥାହି ଶ୍ରୀସର୍ବେଶ୍ୱରବାକ୍ୟମ୍—

ଅହଂ ବେତ୍ତି ଶୁକୋ ବେତ୍ତି ।
ବ୍ୟାସୋ ବେତ୍ତି ନ ବେତ୍ତି ବା । ୯୧ ।

ପ୍ରଭୁ କହେ—କେନେ କର ଆମାର ସ୍ତବନ ?
ଭାଗବତେର ସ୍ୱରୂପ କେନେ ନା କର ବିବରଣ ?
କୃଷ୍ଣତୁଲ୍ୟ ଭାଗବତ—ବିଭୁ ସର୍ବାଶ୍ରୟ ।
ପ୍ରତିଶ୍ଳୋକେ ପ୍ରତ୍ୟକ୍ଷରେ ନାନା ଅର୍ଥ କୟ ।୨୪
ପ୍ରଶ୍ନୋତ୍ତରେ ଭାଗବତେ କହିୟାଛେ ନିର୍ଦ୍ଧାର ।
ଯାହାର ଶ୍ରବଣେ ଲୋକେ ଲାଗେ ଚମତ୍କାର ।

ତଥାହି ଶୌନକପ୍ରଶ୍ନ ( ଭାଃ ୧।୧।୨୩ )—

ବ୍ରୂହି ଯୋଗେଶ୍ୱରେ କୃଷ୍ଣେ ବ୍ରହ୍ମଣ୍ୟେ
ଧର୍ମବର୍ମଣି ।
ସ୍ୱାଂ କାଷ୍ଠାମଧୁନୋପେତେ ଧର୍ମଃ କଂ
ଶରଣଂ ଗତଃ । ୯୨

---

ଅହଂ ( ମାଂ ଶିବଂ ଅତଦାଥ୍ୟ ଇତି ଅହଂ, ଇତ ନାମଧାତୋର୍କ୍ୱିପ୍, ତତଃ କୃତକ୍ୱିପ୍ ଅହଂ ନାରାୟଣଃ ) ବେତ୍ତି, ଶୁକୋବେତ୍ତି, ବ୍ୟାସବେତ୍ତି, ( ଅନ୍ୟେ ) ନ ବେତ୍ତି । ୯୧ ଶ୍ଳୋକଃ ।

ଯୋଗେଶ୍ୱରେ ବ୍ରହ୍ମଣ୍ୟେ ଧର୍ମବର୍ମଣି କୃଷ୍ଣେ ସ୍ୱାଂ କାଷ୍ଠାଂ (ସ୍ୱରୂପଂ) ଉପେତେ (ପ୍ରାପ୍ତେ) ଅଧୁନାଧର୍ମଃ କଂ ଶରଣଂ ଗତଃ ( ତଦପି ) ବ୍ରୂହି । ୯୨ ଶ୍ଳୋକଃ ।

---

ତୁମିବକ୍ତା— ଶ୍ରୀମନ୍ ନାରାୟଣ ଚତୁଃ ଶ୍ଳୋକୀଦ୍ୱାରା ଆଦିକବି ବ୍ରହ୍ମାଙ୍କୁ ଶ୍ରୀମଦ୍ଭାଗବତ ଶିକ୍ଷା ଦେଇଥିବାରୁ ପୁନରାୟ ଶ୍ରୀମଦ୍ଭାଗବତ ବ୍ୟାସଙ୍କର ସମାଧିଲବ୍ଧ ହୋଇଥିବାରୁ ସ୍ୱୟଂ ଭଗବାନ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣହିଁ ଶ୍ରୀମଦ୍ଭାଗବତର ବକ୍ତା । ୨୨୩ ।

ଶ୍ରୀମଦ୍ଭାଗବତର ଅର୍ଥ "ଅହଂ"ର ଅସ୍ପଦ ଅର୍ଥାତ୍ ଶିବଙ୍କର ଗୁରୁ ଶ୍ରୀମନ୍ନାରାୟଣ ଜାଣନ୍ତି, ଶ୍ରୀଶୁକଦେବ ଜାଣନ୍ତି, ଶ୍ରୀବ୍ୟାସଦେବ ଜାଣନ୍ତି, ଅନ୍ୟ କେହି ଜାଣନ୍ତି ନାହିଁ । ୯୧ ଶ୍ଳୋକାର୍ଥ ।

ଶ୍ରୀଶୌନକାଦି ଋଷିମାନେ ଶ୍ରୀସୂତଙ୍କୁ ପ୍ରଶ୍ନ କରୁଅଛନ୍ତି । ହେସୂତ ! ଯୋଗେଶ୍ୱର ବ୍ରହ୍ମଣ୍ୟଦେବ ଓ ଧର୍ମ ରକ୍ଷକ ଶ୍ରୀକୃଷ୍ଣ ନିଜର ନିତ୍ୟଧାମକୁ ଗମନ କରିଅଛନ୍ତି, ବର୍ତ୍ତମାନ ଧର୍ମ କାହାର ଶରଣାଗତ ଆମ୍ଭମାନଙ୍କୁ [illegible] । ୯୨ ଶ୍ଳୋକାର୍ଥ ।

ତଥାହି ଶ୍ରୀମଦ୍ଭାଗବତେ (୧।୩।୪୩)—
କୃଷ୍ଣେ ସ୍ୱଧାମୋପଗତେ ଧର୍ମଜ୍ଞାନାଦିଭିଃ ସହ ।
କଲୌ ନଷ୍ଟଦୃଶାମେଷ ପୁରାଣାର୍କୋଽ-
ଧୁନୋଦିତଃ । ୯୩ ।
ଏଇତ କହିଲ ଏକ ଶ୍ଳୋକେର ବ୍ୟାଖ୍ୟାନ ।
ବାତୁଲେର ପ୍ରଳାପ' କରି—କେ କରେ
ପ୍ରମାଣ ? ୨୨୭ ।
ଆମାହେନ ଯେବା କେହୋ ବାତୁଲ ହୟ ।
ଏଇଦୃଷ୍ଟେ ଭାଗବତେର ଅର୍ଥ ଜାନୟ । ୨୨୮ ।
ପୁନ ସନାତନ କହେ ଯୁଡ଼ି ଦୁଇ କରେ—।
ପ୍ରଭୁ ! ଆଜ୍ଞା ଦିଲେ ବୈଷ୍ଣବସ୍ମୃତି
କରିବାରେ । ୨୨୯ ।
ମୁଞି ନୀଚଜାତି କିଛୁ ନା ଜାନୋଁ ଆଚାର ।
ମୋ-ହୈତେ କୈଛେ ହୟ ସ୍ମୃତିପରଚାର ?
ସୂତ୍ର କରି ଦିଶା ଯଦି କର ଉପଦେଶ ।
ଆପନେ କରହ ଯଦି ହୃଦୟେ ପ୍ରବେଶ ।୨୩୧।
ତବେ ତାର ଦିଶା ସ୍ଫୁରେ ମୋ-ନୀଚେର ହୃଦୟ ।
ଈଶ୍ୱର ତୁମି ଯେ କରାହ, ସେଇ ସିଦ୍ଧ ହୟ ।
ପ୍ରଭୁ କହେ—ଯେ କରିତେ କରିବେ ତୁମି ମନ ।
କୃଷ୍ଣ ସେଇ-ସେଇ ତୋମା କରାବେ ସ୍ଫୁରଣ ।
ତଥାପି ସୂତ୍ରରୂପ ଶୁନ ଦିଗ୍‌ଦରଶନ—।
ସକାରଣ ଲିଖି ଆଦୌ ଗୁରୁ-ଆଶ୍ରୟଣ ।୨୩୪।
ଗୁରୁଲକ୍ଷଣ, ଶିଷ୍ୟଲକ୍ଷଣ, ଦୋଁହାର ପରୀକ୍ଷଣ ।
ସେବ୍ୟ ଭଗବାନ୍, ସବ-ମନ୍ତ୍ରବିଚାରଣ । ୨୩୫ ।
ମନ୍ତ୍ର-ଅଧିକାରୀ, ମନ୍ତ୍ରସିଦ୍ଧ୍ୟାଦି-ଶୋଧନ ।
ଦୀକ୍ଷା, ପ୍ରାତଃସ୍ମୃତି କୃତ୍ୟ, ଶୌଚ ଆଚମନ ।
ଦନ୍ତଧାବନ, ସ୍ନାନ, ସନ୍ଧ୍ୟାଦିବନ୍ଦନ ।
ଗୁରୁସେବା, ଊର୍ଦ୍ଧ୍ୱପୁଣ୍ଡ୍ର-ଚକ୍ରାଦି-ଧାରଣ ।୨୩୬

---

ଧର୍ମ ଜ୍ଞାନାଦିଭିଃସହ କୃଷ୍ଣେ ସ୍ୱଧାମଉପଗତେ (ସତି) କଲୌନଷ୍ଟଦୃଶାଂ ଏଷଃ ପୁରାଣାର୍କଃ ଅଧୁନାଉଦିତଃ । ଇତ୍ୟନ୍ୱୟ । ୯୩ ଶ୍ଳୋକଃ ।

ତଦିଦଂ ପୁରାଣଂ ନତୁଶାସ୍ତ୍ରାନ୍ତର ତୁଲ୍ୟଂ କିନ୍ତୁ ଶ୍ରୀକୃଷ୍ଣ ପ୍ରତିନିଧି ରୂପ ମେବେତ୍ୟାହ କୃଷ୍ଣ ଇତି । ସ୍ୱସ୍ୟ କୃଷ୍ଣ ରୂପସ୍ୟଧାମ ନିତ୍ୟଲୀଳାସ୍ଥାନ ମୁପଗତେସତି ଶ୍ରୀକୃଷ୍ଣେ ତଦ ତ ଧର୍ମ ପ୍ରୋକ୍ତଶ୍ଚେତ୍ୟତ୍ର ପ୍ରୋକ୍ତତ୍ୱେନ କୈତବୋଽହେତ ନୈଷ୍କର୍ମ୍ୟ ମପ୍ୟଚ୍ୟୁତ ଭାବବର୍ଜିତ ମିତିଗ୍ରନ୍ଥମୁକ୍ତ୍ୟ ପରମପ୍ରକୃଷ୍ଟତ୍ୱା ଅବଗତୈଃ ଭାଗବତଧର୍ମ ଭଗବତ୍ଜ୍ଞାନାଦିଭିରପି ସହ ସ୍ୱଧାମୋପଗତେ ସତି କଲୌନଷ୍ଟଦୃଶାଂ ତାଦୃଶଧର୍ମ ଜ୍ଞାନ ବିବେକରହିତାନାଂ କୃତେ ତଦିଦଂ ପୁରାଣ ମେବାର୍କଃ । ନ ତୁ ଶାସ୍ତ୍ରାନ୍ତରବଦୀପସ୍ଥାନୀୟଂ ଯତ୍ତ୍ୱାବଧୋଽସ୍ୟଂ ପୁରାଣାର୍କ ଉଦିତଃ । ୯୩ ଶ୍ଳୋକଃ ।

---

ଉପରୋକ୍ତ ଶ୍ଳୋକର ପ୍ରଶ୍ନ ଅନୁସାରେ ଶ୍ରୀସୂତ କହୁଅଛନ୍ତି । ଧର୍ମ ଓ ଜ୍ଞାନାଦିର ସହିତ ଶ୍ରୀକୃଷ୍ଣ ନିଜ ଧାମକୁ ଗମନ କଲା ଉତ୍ତାରୁ କଳିର ଅନ୍ଧକାରାଚ୍ଛନ୍ନ ଲୋକମାନଙ୍କ ସମ୍ବନ୍ଧେ ଏହି ଶ୍ରୀମଦ୍‌ଭାଗବତ ରୂପ ସୂର୍ଯ୍ୟ ଉଦିତ ହୋଇଅଛନ୍ତି ଅର୍ଥାତ୍ ଶ୍ରୀମଦ୍‌ଭାଗବତ ଶ୍ରୀକୃଷ୍ଣଙ୍କ ପ୍ରତିନିଧି-ରୂପେ ଆବିର୍ଭାବ ହୋଇଅଛନ୍ତି ଏବଂ ଧର୍ମ ଏହାଙ୍କୁ ଆଶ୍ରୟ କରିଅଛନ୍ତି । ୯୩ ଶ୍ଳୋକାର୍ଥ ।

ଏକ ଶ୍ଳୋକ—ଆତ୍ମାରାମ ଶ୍ଳୋକ । ୨୨୭ ।

ଦିଶା—ଦିଗ୍‌ଦର୍ଶନ, ସୂତ୍ର କରି—ସଂକ୍ଷେପ କରି । ୨୩୧ ।

ଆଦୌ—ସର୍ବ ପ୍ରଥମେ, ଏହି ସମସ୍ତ ଶ୍ରୀହରିଭକ୍ତିବିଳାସରେ ଦ୍ରଷ୍ଟବ୍ୟ ।

ବିଦ୍ଧା—ପୂର୍ବ ବିଦ୍ଧା ଏକାଦଶୀ ସମ୍ବନ୍ଧରେ ଦଶମୀବିଦ୍ଧା । ଅଷ୍ଟମୀ ସମ୍ବନ୍ଧରେ ସପ୍ତମୀ ବିଦ୍ଧା ଇତ୍ୟାଦି । ୨୩୪ ।

ଗୋପୀଚନ୍ଦନ-ମାଲ୍ୟଧୃତ, ତୁଳସୀ-ଆହରଣ ।
ବସ୍ତ୍ର-ପୀଠ-ଗୃହ-ସଂସ୍କାର, କୃଷ୍ଣପ୍ରବୋଧନ । ୧୩୮ ।
ପଞ୍ଚ-ଷୋଡ଼ଶ-ପଞ୍ଚାଶତ-ଉପଚାରେ ଅର୍ଚ୍ଚନ ।
ପଞ୍ଚକାଳପୂଜା, ଆରତି, କୃଷ୍ଣେର ଭୋଜନ
ଶୟନ । ୧୩୯ ।
ଶ୍ରୀମୂର୍ତ୍ତିଲକ୍ଷଣ, ଶାଳଗ୍ରାମେର ଲକ୍ଷଣ ।
କୃଷ୍ଣକ୍ଷେତ୍ର-ଯାତ୍ରା, କୃଷ୍ଣମୂର୍ତ୍ତି-ଦରଶନ । ୧୪୦ ।
ନାମମହିମା, ନାମାପରାଧ ଦୂରେ ବର୍ଜନ ।
ବୈଷ୍ଣବଲକ୍ଷଣ, ସେବା-ଅପରାଧ-ଖଣ୍ଡନ । ୧୪୧ ।
ଶଙ୍ଖ-ଜଳ-ଗନ୍ଧ-ପୁଷ୍ପ-ଧୂପାଦିଲକ୍ଷଣ ।
ଜପ, ସ୍ତୁତି, ପରିକ୍ରମା, ଦଣ୍ଡବତ୍ ବନ୍ଦନ । ୧୪୨ ।
ପୁରଶ୍ଚରଣବିଧି, କୃଷ୍ଣପ୍ରସାଦଭୋଜନ ।
ଅନିବେଦିତତ୍ୟାଗ, ବୈଷ୍ଣବ ନିନ୍ଦାଦି-ବର୍ଜନ ।
ସାଧୁଲକ୍ଷଣ, ସାଧୁସଙ୍ଗ, ସାଧୁର ସେବନ ।
ଅସତ୍‌ସଙ୍ଗ-ତ୍ୟାଗ, ଶ୍ରୀଭାଗବତ ଶ୍ରବଣ । ୧୪୪ ।
ଦିନକୃତ୍ୟ, ପକ୍ଷକୃତ୍ୟ, ଏକାଦଶ୍ୟାଦିବିବରଣ ।
ମାସକୃତ୍ୟ, ଜନ୍ମାଷ୍ଟମ୍ୟାଦିବିଧି-ବିଚାରଣ । ୧୪୫ ।
ଏକାଦଶୀ, ଜନ୍ମାଷ୍ଟମୀ, ବାମନଦ୍ୱାଦଶୀ ।
ଶ୍ରୀରାମନବମୀ, ଆର ନୃସିଂହଚତୁର୍ଦ୍ଦଶୀ । ୧୪୬ ।
ଏଇ ସବେର ବିଦ୍ଧା-ତ୍ୟାଗ ଅବିଦ୍ଧା-କରଣ ।
ଅକରଣେ ଦୋଷ, କୈଲେ ଭକ୍ତିର ଲମ୍ଭନ ॥
ଏ ସବ ପ୍ରମାଣ ଦିବେ ପୁରାଣବଚନ ।
ଶ୍ରୀମୂର୍ତ୍ତି-ବିଷ୍ଣୁମନ୍ଦିର-କରଣ ଲକ୍ଷଣ । ୧୪୮ ।
ସାମାନ୍ୟ ସଦାଚାର, ବୈଷ୍ଣବ ଆଚାର ।
କର୍ତ୍ତବ୍ୟାକର୍ତ୍ତବ୍ୟ ସ୍ମାର୍ତ୍ତ ବ୍ୟବହାର । ୧୪୯ ।
ଏଇ ସଂକ୍ଷେପେ ସୂତ୍ର କୈଲ ଦିଗ୍‌ଦରଶନ ।
ଯବେ ତୁମି ଲିଖ କୃଷ୍ଣ କରାବେନ ସ୍ଫୁରଣ । ୧୫୦ ।
ଏଇ ତ କହିଲ ପ୍ରଭୁର ସନାତନେ ପ୍ରସାଦ ।
ଯାହାର ଶ୍ରବଣେ ଚିତ୍ତେର ଖଣ୍ଡେ ଅବସାଦ ।
ନିଜଗ୍ରନ୍ଥେ କର୍ଣ୍ଣପୂର ବିସ୍ତାର କହିଯା ।
ସନାତନେ ପ୍ରଭୁର ପ୍ରସାଦ ରାଖିଯାଛେ ଲିଖିଯା ।

ତଥାହି ଶ୍ରୀଚୈତନ୍ୟଚନ୍ଦ୍ରୋଦୟନାଟକେ (୯।୪୫)-

ଗୌଡ଼େନ୍ଦ୍ରସ୍ୟସଭାବିଭୂଷଣମଣିସ୍ତ୍ୟକ୍ତ୍ୱା ଯ
ଋଦ୍ଧାଂ ଶ୍ରିୟଂ,
ରୂପସ୍ୟାଗ୍ରଜ ଏଷ ଏବ ତରୁଣୀଂ ବୈରାଗ୍ୟ-
ଲକ୍ଷ୍ମୀଂ ଦଧେ
ଅନ୍ତର୍ଭକ୍ତିରସେନ ପୂର୍ଣ୍ଣହୃଦୟୋ ବାହ୍ୟେଽ-
ବଧୂତାକୃତିଃ
ଶୈବାଲୈଃ ପିହିତଂ ମହାସର ଇବ ପ୍ରୀତି-
ପ୍ରଦସ୍ତଦ୍ୱିଦାମ୍ ।

---

ଗୌଡ଼େନ୍ଦ୍ରସ୍ୟ ସଭାବିଭୂଷଣମଣିଃ ( ସଭାୟାଂ ବିଭୂଷଣେ ଅଲଙ୍କରଣେ ମଣିଃ ) ଯଃ ରୂପସ୍ୟ ଅଗ୍ରଜଃ ଏଷଃ ( ସନାତନଃ ) ଏବ ଋଦ୍ଧାଂ ( ସମୃଦ୍ଧାଂ ) ଶ୍ରିୟଂ ତ୍ୟକ୍ତ୍ୱା ତରୁଣୀଂ ( ନବୀନାଂ ) ବୈରାଗ୍ୟଲକ୍ଷ୍ମୀଂ ( ସମ୍ପତ୍ତିଂ ) ଦଧେ । ଶୈବାଲୈଃପିହିତଂ ମହାସର ଇବ ଅନ୍ତର୍ଭକ୍ତିରସେନ ପୂର୍ଣ୍ଣହୃଦୟଃ ବାହ୍ୟେ ଅବଧୂତାକୃତିଃ ତଦ୍‌ବିଦାଂ ( ଭକ୍ତିତତ୍ତ୍ୱବିଦାଂ ) ପ୍ରୀତିପ୍ରଦଃ ( ଅଭୂତ୍ ) । ୯୪ ଶ୍ଲୋକ ।

ଗୌଡ଼େନ୍ଦ୍ରସ୍ୟ ଗୌଡ଼ରାଜସ୍ୟ ଋଦ୍ଧାଂ ପୂର୍ଣ୍ଣାଂ ୯୪ । ବି, ଚ,

---

ନିଜଗ୍ରନ୍ଥେ – ଶ୍ରୀକବିକର୍ଣ୍ଣପୂର କୃତ ଶ୍ରୀଚୈତନ୍ୟଚନ୍ଦ୍ରୋଦୟ ନାଟକରେ । ୧୫୨ ।

ଗୌଡ଼େଶ୍ୱରଙ୍କର ସଭା ବିଭୂଷଣର ମଣିସ୍ୱରୂପ ଶ୍ରୀରୂପଗୋସ୍ୱାମୀଙ୍କର ଜ୍ୟେଷ୍ଠ ଭ୍ରାତା ଶ୍ରୀସନାତନଗୋସ୍ୱାମୀ ପୂର୍ଣ୍ଣୈଶ୍ୱର୍ଯ୍ୟ ଲକ୍ଷ୍ମୀଙ୍କୁ ତ୍ୟାଗ କରି ନୂତନ ବୈରାଗ୍ୟ ଲକ୍ଷ୍ମୀଙ୍କୁ ଆଶ୍ରୟ କରି ଶୈବାଳାଚ୍ଛାଦିତ ମହାସରୋବର ତୁଲ୍ୟ ଅନ୍ତରରେ ଭକ୍ତିରସ ପୂର୍ଣ୍ଣ ଓ ବାହ୍ୟରେ ଅବଧୂତାକୃତି ହୋଇ ଭକ୍ତିତତ୍ତ୍ୱଜ୍ଞମାନଙ୍କର ପ୍ରୀତିପ୍ରଦ ହୋଇଅଛନ୍ତି । ୯୪ ଶ୍ଲୋକାର୍ଥ ।

ତଥାହି ତତ୍ରୈବ (୯।୪୭)—

ତଂ ସନାତନମୁପାଗତମକ୍ଷ୍ଣୋ-
ର୍ଦୃଷ୍ଟିମାତ୍ରମତିମାତ୍ରଦୟାର୍ଦ୍ରଃ ।
ଆଲିଲିଙ୍ଗ ପରିଘାୟତଦୋର୍ଭ୍ୟାଂ,
ସାନୁକମ୍ପମଥ ଚମ୍ପକଗୌରଃ । ୯୫ ।

ତଥାହି ତତ୍ରୈବ ( ୯।୪୮ )—

କାଲେନ ବୃନ୍ଦାବନକେଳିବାର୍ତ୍ତା,
ଲୁପ୍ତେତି ତାଂ ଖ୍ୟାପୟିତୁଂ ବିଶିଷ୍ୟ ।
କୃପାମୃତେନାଭିଷିଷେଚ ଦେବ-
ସ୍ତତ୍ରୈବ ରୂପଞ୍ଚ ସନାତନଞ୍ଚ । ୯୬ ।

ଏଇ ତ କହିଲ ସନାତନେ ପ୍ରଭୁର ପ୍ରସାଦ ।
ଯାହାର ଶ୍ରବଣେ ଚିତ୍ତେ ଯାଇ ଅବସାଦ । ୨୫୩ ।
କୃଷ୍ଣେର ସ୍ୱରୂପଗଣେର ସବ ହୈଲ ଜ୍ଞାନ ।
ବିଧି ରାଗମାର୍ଗେ ସାଧନଭକ୍ତିର ବିଧାନ । ୨୫୪ ।
କୃଷ୍ଣପ୍ରେମ ଭକ୍ତିରସ ଭକ୍ତିର ସିଦ୍ଧାନ୍ତ ।
ଇହାର ଶ୍ରବଣେ ଭକ୍ତ ଜାନେ ସବ ଅନ୍ତ । ୨୫୫ ।
ଶ୍ରୀଚୈତନ୍ୟ-ନିତ୍ୟାନନ୍ଦ ଅଦ୍ୱୈତଚରଣ ।
ଯାର ପ୍ରାଣଧନ ସେଇ ପାୟ ଏଇ ଧନ । ୨୫୬ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୨୫୭ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
ଆତ୍ମାରାମଶ୍ଲୋକବ୍ୟାଖ୍ୟାୟାଂ
ସନାତନାନୁଗ୍ରହୋ ନାମ
ଚତୁର୍ବିଂଶ ପରିଚ୍ଛେଦଃ ।



ଅତିମାତ୍ର ଦୟାର୍ଦ୍ରଃ ଚମ୍ପକଗୌରଃ ଅକ୍ଷ୍ଣୋର୍ଦୃଷ୍ଟିମାତ୍ରଂ ଉପାଗତଂ ( ସ୍ଥାନବେଶେନ ଆଯାତଂ ) ତଂ ( ସନାତନଂ ) ପରିଘାୟତଦୋର୍ଭ୍ୟାଂ ସାନୁକମ୍ପଂ ( ଯଥାସ୍ୟାତ୍ତଥା ) ଆଲିଲିଙ୍ଗ । ୯୫ । ଶ୍ଳୋକଃ ।

ଦୃଷ୍ଟପୂର୍ବ୍ବଂ ଦୃଷ୍ଟଂ ଦର୍ଶନଂ ପୂର୍ବ୍ବଂ ପ୍ରଥମଂ ଯସ୍ୟ । ୯୫ । ବି. ନ.

ପରମଦୟାଳୁ ଚମ୍ପକଗୌର ଶ୍ରୀଗୌରଚନ୍ଦ୍ର ସନାତନଗୋସ୍ୱାମୀଙ୍କୁ ଦେଖିବାମାତ୍ର କୃପା ପୂର୍ବ୍ବକ ଦୁଇ ବାହୁ ବିସ୍ତାର କରି ଆଲିଙ୍ଗନ କରିଥିଲେ । ୯୫ ଶ୍ଳୋକାର୍ଥ ।

୯୬ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୧୯ଶ ପରିଚ୍ଛେଦର ୧୧ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

କାଳପ୍ରଭାବରୁ ଶ୍ରୀବୃନ୍ଦାବନ ସମ୍ବନ୍ଧୀୟ ଶ୍ରୀକୃଷ୍ଣ ଲୀଳା କଥା ଲୁପ୍ତପ୍ରାୟ ହୋଇଥିଲା, ସେହି କଥା ଜଗତରେ ପ୍ରକାଶ କରିବା କାରଣ ଶ୍ରୀମନ୍ମହାପ୍ରଭୁ ଶ୍ରୀରୂପ ଓ ଶ୍ରୀସନାତନଙ୍କୁ ଉପଯୁକ୍ତପାତ୍ର ବିବେଚନା କରି ସେହି ସ୍ଥାନରେ ( ପ୍ରୟାଗ ଓ କାଶୀଧାମରେ ) କୃପାମୃତଦ୍ୱାରା ଅଭିଷିକ୍ତ କରି-ଅଛନ୍ତି । ୯୬ ଶ୍ଳୋକାର୍ଥ ।

ଚତୁର୍ବିଂଶ ପରିଚ୍ଛେଦ ସମାପ୍ତ ।



## ପଞ୍ଚବିଂଶ ପରିଚ୍ଛେଦ ।



ବୈଷ୍ଣବୀକୃତ୍ୟ ସନ୍ନ୍ୟାସିମୁଖାନ୍ କାଶୀନିବାସିନଃ ।
ସନାତନଂ ସୁସଂସ୍କୃତ୍ୟ ପ୍ରଭୁର୍ନୀଳାଦ୍ରିମାଗମତ୍ ॥ ୧ ॥

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ ॥ ୧ ॥
ଏଇମତ ମହାପ୍ରଭୁ ଦୁଇମାସ ପର୍ଯ୍ୟନ୍ତ ।
ଶିଖାଇଲା ତାଁରେ ଭକ୍ତିସିଦ୍ଧାନ୍ତେର ଅନ୍ତ ॥ ୨ ॥
ପରମାନନ୍ଦ କୀର୍ତ୍ତନୀୟା— ଶେଖରେର ସଙ୍ଗୀ ।
ପ୍ରଭୁକେ କୀର୍ତ୍ତନ ଶୁନାୟ— ଅତି ବଡ଼ ରଙ୍ଗୀ ॥
ସନ୍ନ୍ୟାସୀର ଗଣେ ପ୍ରଭୁ ଯଦି ଉପେକ୍ଷିଲ ।
ଭକ୍ତଦୁଃଖ ଖଣ୍ଡାଇତେ ତାରେ କୃପା କୈଲ ॥୪॥
ସନ୍ନ୍ୟାସୀରେ କୃପା ପୂର୍ବେ ଲିଖିୟାଛି ବିସ୍ତାରିୟା ।
ଉଦ୍ଦେଶ କରିୟେ ଇହାଁ ସଂକ୍ଷେପ କରିୟା ॥ ୫ ॥
ଯାହାଁତାହାଁ ପ୍ରଭୁର ନିନ୍ଦା କରେ ସନ୍ନ୍ୟାସୀରଗଣ
ଶୁନି ଦୁଃଖେ ମହାରାଷ୍ଟ୍ରି କରୟେ ଚିନ୍ତନ ॥ ୬ ॥
ପ୍ରଭୁର ସ୍ୱଭାବ— ଯେ ତାଁରେ ଦେଖେ ସନ୍ନିଧାନେ
ସ୍ୱରୂପ ଅନୁଭବି ତାଁରେ 'ଈଶ୍ୱର' କରି ମାନେ ।
କୋନପ୍ରକାରେ ପାରୋଁ ଯଦି ଏକତ୍ର କରିତେ ।
ଇହାରେ ଦେଖି ସନ୍ନ୍ୟାସୀଗଣ ହବେ ଇହାର
ଭକ୍ତେ ॥ ୮ ॥
ବାରାଣସୀବାସ ଆମାର ହୟେ ସର୍ବକାଲେ ।
ସର୍ବକାଳ ଦୁଃଖ ପାବ, ଇହା ନା କରିଲେ ॥୯॥

---

## ପଞ୍ଚବିଂଶ ପରିଚ୍ଛେଦ ।



ପ୍ରଭୁଃ ସନାତନଂ ସୁସଂସ୍କୃତ୍ୟ କାଶୀନିବାସିନଃ ସନ୍ନ୍ୟାସିମୁଖାନ୍ ବୈଷ୍ଣବୀକୃତ୍ୟ ନୀଳାଦ୍ରିଂ ଆଗମତ୍ । ଇତ୍ୟନ୍ୱୟ ୧ମ ଶ୍ଲୋକଃ ।

ଅବୈଷ୍ଣବାନ୍ ବୈଷ୍ଣବାନ୍ କୃତ୍ୱା ଇତି ବୈଷ୍ଣବୀକୃତ୍ୟ । ସନ୍ନ୍ୟାସିମୁଖାନ୍ ସନ୍ନ୍ୟାସାଦୀନ୍ । ସୁସଂସ୍କୃତ୍ୟଶୋଭନଂ ସଂସ୍କାରବନ୍ତଂ କୃତ୍ୱା ୧ମ ଶ୍ଲୋକ । ବ. ଚ.

---

ଶ୍ରୀମନ୍ମହାପ୍ରଭୁ ଶ୍ରୀସନାତନଗୋସ୍ୱାମୀଙ୍କୁ ଭକ୍ତିସିଦ୍ଧାନ୍ତ ଶିକ୍ଷା ଦେଇ ଏବଂ ସନ୍ନ୍ୟାସୀଆଦି ଅବୈଷ୍ଣବ କାଶୀବାସୀମାନଙ୍କୁ ବୈଷ୍ଣବ କରି ଶ୍ରୀନୀଳାଚଳକୁ ଆଗମନ କରିଥିଲେ । ୧ମ ଶ୍ଲୋକାର୍ଥ

ତାଁରେ—ଶ୍ରୀସନାତନ ଗୋସ୍ୱାମୀଙ୍କୁ । ୨ । ଶେଖରେର— ଶ୍ରୀଚନ୍ଦ୍ରଶେଖରଙ୍କର । ୩ ।

ତାଁରେ— ସନ୍ନ୍ୟାସିମାନଙ୍କୁ । ୪ । ପୂର୍ବେ— ଆଦିଲୀଳା ସପ୍ତମ । ୫ ।

ମହାରାଷ୍ଟ୍ରୀ— ମହାରାଷ୍ଟ୍ରୀ ବିପ୍ର । ୬ ।

ଏକତ୍ର କରିତେ—ସନ୍ନ୍ୟାସିମାନଙ୍କୁ ମହାପ୍ରଭୁଙ୍କ ସହ ମିଳନ କରାଇ ପାରେଁ । ୮ ।

ଇହା ନା କରିଲେ—ଅର୍ଥାତ୍ ନ ମିଳାଇଲେ ଏ ସନ୍ନ୍ୟାସୀମାନେ ମହାପ୍ରଭୁଙ୍କ ସର୍ବଦା ନିନ୍ଦା କରିବେ ଏବଂ ତାହା ମୋତେ ସର୍ବଦା ଶୁଣିବାକୁ ହେବ । ୯ ।

ଏତ ଚିନ୍ତି ନିମନ୍ତ୍ରିଲ ସନ୍ନ୍ୟାସୀର ଗଣେ ।
ତବେ ସେଇ ବିପ୍ର ଆଇଲ ମହାପ୍ରଭୁର ସ୍ଥାନେ ।
ହେନକାଳେ ନିନ୍ଦା ଶୁନି ଶେଖର ତପନ ।
ଦୁଃଖ ପାଞା ପ୍ରଭୁପଦେ କୈଲ ନିବେଦନ ।୧୧।
ଭକ୍ତଦୁଃଖ ଦେଖି ପ୍ରଭୁ ମନେତ ଚିନ୍ତିଲ ।
ସନ୍ନ୍ୟାସୀର ମନ ଫିରାଇତେ ମନ ହୈଲ ।୧୨।
ହେନକାଳେ ବିପ୍ର ଆସି କୈଲ ନିମନ୍ତ୍ରଣ ।
ଅନେକ ଦୈନ୍ୟାଦି କରି ଧରିଲ ଚରଣ ।୧୩।
ତବେ ମହାପ୍ରଭୁ ତାର ନିମନ୍ତ୍ରଣ ମାନିଲା ।
ଆରଦିନ ମଧ୍ୟାହ୍ନ କରି ତାର ଘରେ ଗେଲା ।
ତାହାଁ ଯୈଛେ କୈଲ ସନ୍ନ୍ୟାସୀର ନିସ୍ତାର ।
ପଞ୍ଚତତ୍ତ୍ୱାଖ୍ୟାନେ ତାହା କରିୟାଛି ବିସ୍ତାର ।୧୪।
ଗ୍ରନ୍ଥ ବାଢ଼େ—ପୁନରୁକ୍ତ ହୟେ ତ କଥନ ।
ତାହାଁ ଯେ ନା ଲିଖିଲ, ତାହା କରିୟେ ଲିଖନ ।
ଯେ ଦିବସେ ପ୍ରଭୁ ସନ୍ନ୍ୟାସୀରେ କୃପା କୈଲ ।
ସେ ଦିବସ ହୈତେ ଗ୍ରାମେ କୋଳାହଳ ହୈଲ ।
ଲୋକେର ସଂଘଟ୍ଟ ଆଇସେ ପ୍ରଭୁରେ ଦେଖିତେ ।
ନାନାଶାସ୍ତ୍ରେ ପଣ୍ଡିତ ଆଇସେ ଶାସ୍ତ୍ର
ବିଚାରିତେ ।୧୮
ସର୍ବଶାସ୍ତ୍ର ଖଣ୍ଡି ପ୍ରଭୁ 'ଭକ୍ତି' କରେ ସାର ।
ସଯୁକ୍ତି ବାକ୍ୟେ ମନ ଫିରାୟେ ସଭାର ।୧୯।
ଉପଦେଶ ଲଞା କରେ କୃଷ୍ଣସଂକୀର୍ତ୍ତନ ।
ସର୍ବଲୋକ ହାସେ ଗାୟ କରୟେ নର୍ତ୍ତନ ।୨୦।

ପ୍ରଭୁକେ ପ୍ରଣତ ହୈଲ ସନ୍ନ୍ୟାସୀର ଗଣ ।
ଆତ୍ମମଧ୍ୟେ ଗୋଷ୍ଠୀ କରେ ଛାଡ଼ି ଅଧ୍ୟୟନ ।୨୧।
ପ୍ରକାଶାନନ୍ଦେର ଶିଷ୍ୟ ଏକ—ତାହାର ସମାନ ।
ସଭାମଧ୍ୟେ କହେ ପ୍ରଭୁର କରିୟା ସମ୍ମାନ—୨୨।
ଶ୍ରୀକୃଷ୍ଣଚୈତନ୍ୟ ହୟ 'ସାକ୍ଷାତ୍ ନାରାୟଣ ।'
ବ୍ୟାସସୂତ୍ରେର ଅର୍ଥ କରେ ଅତି ମନୋରମ ।୨୩।
ଉପନିଷଦେର କରେ ମୁଖ୍ୟାର୍ଥ-ବ୍ୟାଖ୍ୟାନ ।
ଶୁନି ପଣ୍ଡିତ-ଲୋକେର ଜୁଡ଼ାୟ ମନ-କାଣ ।
ସୂତ୍ର ଉପନିଷଦେର ମୁଖ୍ୟାର୍ଥ ଛାଡ଼ିୟା ।
ଆଚାର୍ଯ୍ୟ କଳ୍ପନା କରେ ଆଗ୍ରହ କରିୟା ।୨୪।
ଆଚାର୍ଯ୍ୟ-କଳ୍ପିତ ଅର୍ଥ ପଣ୍ଡିତ ଯେ ଶୁନେ ।
ମୁଖେ 'ହୟ ହୟ' କରେ, ହୃଦୟେ ନା ମାନେ ।
ଶ୍ରୀକୃଷ୍ଣଚୈତନ୍ୟ-ବାକ୍ୟ ଦୃଢ଼ ସତ୍ୟ ମାନି ।
କଳିକାଳେ ସନ୍ନ୍ୟାସେ ସଂସାର ନାହି ଜିନି ।୨୭।
'ହରେର୍ନାମ'-ଶ୍ଲୋକେର ଯେଇ କରିଲ ବ୍ୟାଖ୍ୟାନ
ସେଇ ସତ୍ୟ ସୁଖଦାର୍ଥ ପରମ ପ୍ରମାଣ ।୨୮।
'ଭକ୍ତି ବିନା ମୁକ୍ତି ନହେ'—ଭାଗବତେ କୟ ।
କଳିକାଳେ ନାମାଭାସେ ସୁଖେ ମୁକ୍ତି ହୟ ।୨୯।

ତଥାହି (ଭାଃ ୧୦।୧୪।୪)—

ଶ୍ରେୟଃସୃତିଂ ଭକ୍ତିମୁଦସ୍ୟ ତେ ବିଭୋ,
କ୍ଲିଶ୍ୟନ୍ତି ଯେ କେବଳବୋଧଲବ୍ଧୟେ ।
ତେଷାମସୌ କ୍ଲେଶଳ ଏବ ଶିଷ୍ୟତେ,
ନାନ୍ୟଦ୍ୟଥା ସ୍ଥୂଳତୁଷାବଘାତିନାମ୍ ।୨।

ଶେଖର—ଶ୍ରୀଚନ୍ଦ୍ରଶେଖର, ତପନ—ଶ୍ରୀତପନମିଶ୍ର ।୧୧।

ଗ୍ରାମେ—ଶ୍ରୀକାଶୀଧାମରେ ।୧୭।

ସନ୍ନ୍ୟାସୀମାନେ ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ ବେଦାନ୍ତ ଅଧ୍ୟୟନ ତ୍ୟାଗ କରି ସମସ୍ତେ ମିଳି ଶ୍ରୀକୃଷ୍ଣାନୁଶୀଳନ କରିବାକୁ ଲାଗିଲେ ।୨୧।

ସାକ୍ଷାତ୍ ନାରାୟଣ—ସ୍ୱୟଂ ନାରାୟଣ ।୨୩। ଆଚାର୍ଯ୍ୟ—ଶ୍ରୀଶଙ୍କରାଚାର୍ଯ୍ୟ ।୨୪।

କେବଳ ସନ୍ନ୍ୟାସ ଆଶ୍ରମ ଅବଲମ୍ବନ କରି ମାୟାସଂସାରରୁ ଉଦ୍ଧାର ହୋଇ ପାରି ଯାଏ ନାହିଁ ।୨୭। ନାମାଭାସ—ଶ୍ରୀହରି ନାମର ସ୍ମରଣ ବା ଉଚ୍ଚାରଣ ମାତ୍ର ।୨୯

୨ୟ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୨ଶ ପରିଚ୍ଛେଦର ୬ଷ୍ଠ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ହେ ପ୍ରଭୋ ! ସମସ୍ତ ମଙ୍ଗଳମାନଙ୍କର ଉତ୍ସସ୍ୱରୂପ ଆପଣଙ୍କର ଭକ୍ତିକୁ ପରିତ୍ୟାଗ କରି ଯେଉଁମାନେ ଅଭେଦ ବ୍ରହ୍ମଜ୍ଞାନ ଲାଭ ସକାଶେ [illegible]

ତଥାହି ( ଭାଃ ୧୦।୨।୩୨ )—

ଯେଽନ୍ୟେଽରବିନ୍ଦାକ୍ଷ ବିମୁକ୍ତମାନିନ-
ସ୍ତ୍ୱୟ୍ୟସ୍ତଭାବାଦବିଶୁଦ୍ଧବୁଦ୍ଧୟଃ ।
ଆରୁହ୍ୟ କୃଚ୍ଛ୍ରେଣ ପରଂ ପଦଂ ତତଃ,
ପତନ୍ତ୍ୟଧୋ ଽନାଦୃତଯୁଷ୍ମଦଙ୍ଘ୍ରୟଃ । ୩ ।

'ବ୍ରହ୍ମ' ଶବ୍ଦେ କହେ—ଷଡ଼୍ଐଶ୍ୱର୍ଯ୍ୟପୂର୍ଣ୍ଣ ଭଗବାନ୍
ତାଁରେ 'ନିର୍ବିଶେଷ' ସ୍ଥାପି 'ପୂର୍ଣ୍ଣତା' ହୟ ହାନ ।
ଶ୍ରୁତିପୁରାଣ କହେ— କୃଷ୍ଣେର ଚିଚ୍ଛକ୍ତି ବିଳାସ ।
ତାହା ନାହି ମାନ ପଣ୍ଡିତ କରେ ଉପହାସ ।୩୦।
ଚିଦାନନ୍ଦ କୃଷ୍ଣେର ବିଗ୍ରହ 'ମାୟିକ' କରି ମାନେ
ଏଇ ବଡ଼ ପାପ, ସତ୍ୟ ଚୈତନ୍ୟେର ବାଣୀ ।

ତଥାହି ( ଭାଃ ୩।୯।୩ ) —

ନାତଃ ପରଂ ପରମ ଯଦ୍ଭବତଃ ସ୍ୱରୂପ-
ମାନନ୍ଦମାତ୍ରମବିକଳ୍ପମବିଦ୍ଧବର୍ଚ୍ଚଃ ।
ପଶ୍ୟାମି ବିଶ୍ୱସୃଜମେକମବିଶ୍ୱମାତ୍ମନ୍,
ଭୂତେନ୍ଦ୍ରିୟାତ୍ମକମଦସ୍ତ ଉପାଶ୍ରିତୋଽସ୍ମି ।୪।

---

ହେ ପରମ ଅବିଦ୍ଧବର୍ଚ୍ଚଃ ଅନାବୃତପ୍ରକାଶଂ ଅତଃ ଅବିକଳ୍ପଂ ନିର୍ଭେଦଂ ଅତଏବାନନ୍ଦମାତ୍ରଂ ଏବମ୍ଭୂତଂ ଯଦ୍ଭବତଃ ସ୍ୱରୂପଂ ତତ୍ ଅତୋ ରୂପାତ୍ପରଂ ଭିନ୍ନଂ ନ ପଶ୍ୟାମି କିନ୍ତୁ ଇଦମେବ ତତ୍ ଅତଃକାରଣାତ୍ ତବ ଅଦଃ ଇଦଂ ରୂପଂ ଉପାଶ୍ରିତୋଽସ୍ମି ଯୋଗ୍ୟତ୍ୱାଦପି ଚ ଯାହି ଏକମୁପାସ୍ୟେଷୁ ମୁଖ୍ୟଂ ଯତଃ ବିଶ୍ୱସୃଜଂ ତେଷଂ ସୃଜତି ଅତଏବ ଅବିଶ୍ୱଂ ବିଶ୍ୱସ୍ମାଦନ୍ୟତ୍ କାର୍ଯ୍ୟଭୂତେନ୍ଦ୍ରିୟାତ୍ମକଂ ଭୂତାନାମିନ୍ଦ୍ରିୟାଣାଞ୍ଚାତ୍ମାନଂ କାରଣମିତ୍ୟର୍ଥଃ । ୪ର୍ଥ ଶ୍ଳୋକଃ ।

---

ଶୂନ୍ୟ ଧାନତୁଲ୍ୟ ପ୍ରତାପ୍ୟମାନ ଅଗାଡ଼ିକୁ କୁଟନ୍ତି, ସେମାନଙ୍କର ଯେପରି ସାର ଲାଭ ହୁଏ ନାହିଁ, କେବଳ କ୍ଳେଶ ମାତ୍ର ଲାଭ ହୁଏ । କେବଳ ଜ୍ଞାନଲାଭଶୀଳ ବ୍ୟକ୍ତିମାନଙ୍କର ଶ୍ରମ ଏହି ଅଗାଡ଼ିକୁଟା ବ୍ୟକ୍ତିମାନଙ୍କ ପରି କ୍ଳେଶଦ ମାତ୍ର ହୁଏ ଅର୍ଥାତ୍ ମୁକ୍ତିଲାଭ ହୁଏ ନାହିଁ । ୨ୟ ଶ୍ଳୋକାର୍ଥ ।

୩ୟ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୨ଶ ପରିଚ୍ଛେଦର ୧୦ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କ ପ୍ରତି ବେଦସ୍ତୁତି—ହେ ପଦ୍ମପଳାଶଲୋଚନ ଶ୍ରୀକୃଷ୍ଣ ! ଆପଣଙ୍କଠାରେ ଭକ୍ତି ଅଭାବରୁ ଯେଉଁମାନେ ଅଶୁଦ୍ଧବୁଦ୍ଧି ଅଥଚ ଆପଣାକୁ ଜୀବନ୍ମୁକ୍ତ ବୋଲି ଅଭିମାନ କରନ୍ତି, ସେମାନେ ବହୁଜନ୍ମର ଆୟାସଲବ୍ଧ ମୁକ୍ତିର ସନ୍ନିକଟସ୍ଥ ପଦ ଲାଭ କରିଥିଲେ ହେଁ ଆପଣଙ୍କର ଶ୍ରୀଚରଣାରବିନ୍ଦ ଅନାଦର ଦୋଷରୁ ଅଧଃପତିତ ହୁଅନ୍ତି । ୩ୟ ଶ୍ଳୋକାର୍ଥ ।

ଏହା ଆଦିଲୀଳା ୭ମ ପରିଚ୍ଛେଦରେ ପ୍ରକାଶାନନ୍ଦଙ୍କ ସହ ମହାପ୍ରଭୁଙ୍କ ବିଚାରରେ ବିସ୍ତୃତ ହୋଇଅଛି । ୩୦—୩୨ ।

ଶ୍ରୀବ୍ରହ୍ମା ଶ୍ରୀମନ୍ନାରାୟଣଙ୍କୁ ସ୍ତୁତିପୂର୍ବକ କହୁଅଛନ୍ତି—ହେ ପରମେଶ୍ୱର ! ଆପଣଙ୍କର ଯେଉଁ ସ୍ୱରୂପଟି ଆନନ୍ଦମାତ୍ର, ଭେଦଶୂନ୍ୟ ଓ ଅନାବୃତ ପ୍ରକାଶ ସେଥିରୁ ଏହି ରୂପକୁ ଭିନ୍ନ ଦେଖୁ ନାହିଁ । ହେ ଆତ୍ମନ୍ ! ଆପଣଙ୍କର ଏହି ରୂପ ବିଶ୍ୱସୃଷ୍ଟିକାରୀ, ଅତଏବ ବିଶ୍ୱଠାରୁ ଭିନ୍ନ ଏବଂ ଭୂତ ଓ ଇନ୍ଦ୍ରିୟଗଣର ଆତ୍ମା ଓ ଉପାସ୍ୟ ମଧ୍ୟରେ ପ୍ରଧାନ । ଆପଣଙ୍କର ଏହି ରୂପର ଆଶ୍ରୟ ଗ୍ରହଣ କଲି । ୪ର୍ଥ ଶ୍ଳୋକାର୍ଥ ।

ତଥାହି (ଭାଃ ୧୦।୪୬।୪୩)—
ଦୃଷ୍ଟଂ ଶ୍ରୁତଂ ଭୂତଭବଦ୍‌ଭବିଷ୍ୟତ୍,
ସ୍ଥାସ୍ନୁ ଶ୍ଚରିଷ୍ଣୁର୍ମହଦଲ୍ପକଂ ବା ।
ବିନାଚ୍ୟୁତାଦ୍‌ବସ୍ତୁ ତରାଂ ନ ବାଚ୍ୟଂ,
ସ ଏବ ସର୍ବ୍ବଂ ପରମାତ୍ମଭୂତଃ । ୫ ।

ତଥାହି (ଭାଃ ୩।୯।୪)—
ତଦ୍ୱା ଇଦଂ ଭୁବନମଙ୍ଗଳ ମଙ୍ଗଳାୟ,
ଧ୍ୟାନେ ସ୍ମ ନୋ ଦର୍ଶିତଂ ତ ଉପାସକାନାମ୍ ।
ତସ୍ମୈ ନମୋ ଭଗବତେଽନୁବିଧେମ ତୁଭ୍ୟଂ,
ଯୋ ନାଦୃତୋ ନରକଭାଗ୍‌ଭିରସତ୍ପ୍ରସଙ୍ଗୈଃ ।୬।

ତଥାହି ଶ୍ରୀଗୀତାୟାମ୍ (୯।୧୧)—
ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍
ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍ ।୭।

---

ଦୃଷ୍ଟଂ ଶ୍ରୁତଂ ଭୂତଭବଦ୍‌ଭବିଷ୍ୟତ୍ ସ୍ଥାସ୍ନୁଃ ଚରିଷ୍ଣୁଃ ମହତ୍ ଅଲ୍ପକଂ ବା ବସ୍ତୁତରାଂ (ବସ୍ତୁମାତ୍ରଂ) ଅଚ୍ୟୁତାତ୍ ବିନା (ଭିନ୍ନତୟା) ନ ବାଚ୍ୟଂ । ପରମାତ୍ମଭୂତ ସ ଏବ ସର୍ବ୍ବଂ । ୫ମ ଶ୍ଳୋକଃ ।

ଭୁବନମଙ୍ଗଳ ହେ ! ଉପାସକାନାଂ ନଃ ( ଅସ୍ମାକଂ) ମଙ୍ଗଳାୟ ଧ୍ୟାନେ ତେ (ତ୍ୱୟା) (ଯତ୍) ଦର୍ଶିତଂ ସ୍ମ ତତ୍ ବୈ ଇଦଂ ତସ୍ମୈ ଭଗବତେ ତୁଭ୍ୟଂ ନମଃ ଅନୁବିଧେମ, ଅସତ୍ ପ୍ରସଙ୍ଗୈଃ ନରକଭାଗ୍‌ଭିଃ ଯଃ ( ତ୍ୱଂ ) ନ ଆଦୃତଃ । ୬ଷ୍ଠ ଶ୍ଳୋକ ଇତ୍ୟନ୍ୱୟଃ ।

ନନ୍ୱେବମପି ସୋପାଧିକମେତଦବାଗୀନମେବେତ୍ୟାଶଙ୍କ୍ୟାହ ତଦ୍ୱୈ ଇଦଂ । ହେ ଭୁବନମଙ୍ଗଳ ଯତ୍ତ୍ୱୟାଽସ୍ମାକମୁପାସକାନାଂ ମଙ୍ଗଳାୟ ଧ୍ୟାନେନ ଦର୍ଶିତଂ । ନ ତୁ ଅବ୍ୟକ୍ତବର୍ତ୍ମାପି ନବେଣିତ ଚରୂନାମସ୍ମାକଂ ତ୍ୱୟା ସୋପାଧିକଦର୍ଶନଂ ଦାତୁଂ ଯୁକ୍ତମିତିଭାବଃ ଅତସ୍ତୁଭ୍ୟଂ ନମୋଽନୁବିଧେମ ଅନୁବୃତ୍ତ୍ୟା କରୟାମ । ତର୍ହିକିମିତିକେଚନ୍ନାଂ ନାଦ୍ରିୟନ୍ତେ ତତ୍ରାହ ଯୋ ଅନାଦୃତ ଇତି ଅସତ୍ପ୍ରସଙ୍ଗୈଃ ନିରୀଶ୍ୱର କୁତର୍କନିଷ୍ଠୈଃ । ଇତି ।

ଭୂତମହେଶ୍ୱରଂ (ସର୍ବ୍ବଭୂତାନାଂ ମହାନ୍ତମୀଶ୍ୱରଂ) ମମ ପରମଂ ( ପ୍ରକୃଷ୍ଟଂ ) ଭାବଂ (ତତ୍ତ୍ୱଂ) ଅଜାନନ୍ତଃ ( ନୋପଲଭନ୍ତଃ ) ମୂଢ଼ାଃ (ଅବିବେକିନଃ) ମାନୁଷୀଂ (ମନୁଷ୍ୟତୁଲ୍ୟାଂ) ତନୁଂ ( ଶରୀରଂ ) ଆଶ୍ରିତଂ (ଗୃହୀତବନ୍ତଂ) ମାଂ ଅବଜାନନ୍ତି (ନିନ୍ଦନ୍ତି) ୭ମ ଶ୍ଳୋକଃ ।

---

ଶ୍ରୀମନ୍ ଉଦ୍ଧବ ଶ୍ରୀନନ୍ଦମହାରାଜାଙ୍କୁ କହୁଅଛନ୍ତି– ଦୃଷ୍ଟ, ଶ୍ରୁତ, ବର୍ତ୍ତମାନ, ଭୂତ, ଭବିଷ୍ୟତ୍, ସ୍ଥାବର, ଜଙ୍ଗମ, ମହତ୍ ବା ଅଳ୍ପ ବସ୍ତୁମାତ୍ର ଅଚ୍ୟୁତଙ୍କଠାରୁ ଭିନ୍ନ ନୁହନ୍ତି । ପରମାତ୍ମଭୂତସ୍ୱରୂପ ସେହି ଅଚ୍ୟୁତହିଁ ଏ ସମସ୍ତ । ୫ମ ଶ୍ଳୋକାର୍ଥ ।

ଶ୍ରୀବ୍ରହ୍ମା କହୁଅଛନ୍ତି, ହେ ଭୁବନମଙ୍ଗଳ ! ଆପଣଙ୍କ ଚିନ୍ମୟ ରୂପରେ ଜନିଷ୍ଟତରୁ ହେତୁ ଆପଣଙ୍କର ଉପାସକ ଆମ୍ଭମାନଙ୍କୁ ଧ୍ୟାନରେ ଯେଉଁ ରୂପଦର୍ଶନ କରାଇଅଛନ୍ତି, ତାହା ଏହି ରୂପ ଅର୍ଥାତ୍ ଏ ରୂପ ଚିନ୍ମୟରୂପ, ମାୟିକ ନୁହେ । ହେ ପ୍ରଭୋ ! ପରିଚର୍ଯ୍ୟା କରିବାକୁ ଅକ୍ଷମ ହେତୁ ଆପଣଙ୍କୁ କେବଳ ପ୍ରଣାମ ! ଅସତ୍‌ସଙ୍ଗୀ ନାରକୀ ବ୍ୟକ୍ତିମାନେ ଆପଣଙ୍କର ଏହି ରୂପକୁ ଆଦର କରନ୍ତି ନାହିଁ । ଅର୍ଥାତ୍ ମାୟିକ ବୋଲି ସ୍ୱୀକାରପୂର୍ବ୍ବକ ପ୍ରଣାମ କରନ୍ତି ନାହିଁ । । ୬ଷ୍ଠ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ଶ୍ରୀଅର୍ଜ୍ଜୁନଙ୍କୁ କହୁଅଛନ୍ତି—ମୁଁ ଭୂତସମୂହର ମହେଶ୍ୱର, ମୋର ଏହି ପରମତତ୍ତ୍ୱ ନ ଜାଣି ମୂଢ଼ବ୍ୟକ୍ତିମାନେ ମୋର ଏହି ପ୍ରକଟିତ ମନଷ୍ୟ ଦେହକୁ ମନଷ୍ୟ ଜ୍ଞାନରେ ଅବମାନନା କରନ୍ତି । ୭ମ ଶ୍ଳୋକାର୍ଥ ।

ତଥାହି ତତ୍ରୈବ (୧୬।୧୯)—
ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍।
କ୍ଷିପାମ୍ୟଜସ୍ରମଶୁଭାନାସୁରୀଷ୍ୱେବ ଯୋନିଷୁ ॥ ୮ ॥
ସୂତ୍ରେର 'ପରିଣାମବାଦ— ତାହା ନା ମାନିଲ।
'ବିବର୍ତ୍ତବାଦ' ସ୍ଥାପେ—'ବ୍ୟାସ ଭ୍ରାନ୍ତ' ବଲିଲ॥
ଏଇତ କଳ୍ପିତ ଅର୍ଥ ମନେ ନାହି ଭାୟ।
'ଶାସ୍ତ୍ର' ଛାଡି କୁକଳ୍ପନା 'ପାଷଣ୍ଡ' ବୁଝାୟ ॥୩୪॥
ପରମାର୍ଥବିଚାର ଗେଲ, କରି ମାତ୍ର ବାଦ।
କାହାଁ ମୁକ୍ତି ପାବ, କାହାଁ କୃଷ୍ଣେର ପ୍ରସାଦ ॥୩୫॥
ବ୍ୟାସସୂତ୍ରେର ଅର୍ଥ ଆଚାର୍ଯ୍ୟ କରି ଆଚ୍ଛାଦନ।
ଏଇ ସତ୍ୟ ହୟ ଶ୍ରୀକୃଷ୍ଣଚୈତନ୍ୟ ବଚନ ॥୩୬॥
ଚୈତନ୍ୟଗୋସାଞି ଯେଇ କହେ, ସେଇ ମତ ସାର।
ଆର ଯତ ମତ—ସେଇ ସବ ଛାରଖାର ॥୩୭॥
ଏତ କହି ସେଇ କରେ କୃଷ୍ଣସଂକୀର୍ତ୍ତନ।
ଶୁନି ପ୍ରକାଶାନନ୍ଦ କିଛୁ କହେନ ବଚନ ॥୩୮॥
ଆଚାର୍ଯ୍ୟେର ଆଗ୍ରହ—'ଅଦ୍ୱୈତବାଦ' ସ୍ଥାପିତେ।
ତାତେ ସୂତ୍ରାର୍ଥବ୍ୟାଖ୍ୟା କରେ ଅନ୍ୟମତେ ॥

---

ଅହଂ ଦ୍ୱିଷତଃ (ଦ୍ୱେଷଂ କୁର୍ବତଃ) କ୍ରୂରାନ୍ (ହିଂସାପରାନ୍) ନରାଧମାନ୍ (ଅତିନିନ୍ଦିତାନ୍) ଅଶୁଭାନ୍ (ଅଶୁଭକର୍ମକାରିଣଃ) ତାନ୍ (ଅସୁରାନ୍) ସଂସାରେଷୁ ଆସୁରୀଷୁ (କ୍ରୂରସ୍ୱଭାବ ବ୍ୟାଘ୍ରସର୍ପାଦିଷୁ) ଯୋନିଷୁ ଏବ ଅଜସ୍ରଂ (ନିରନ୍ତରଂ) କ୍ଷିପାମି (ଭ୍ରାମୟାମି) ୮ମ ଶ୍ଲୋକଃ ।

ଯତ୍ର ମୁକ୍ତିସ୍ତତ୍ର କିଂ କୃଷ୍ଣପ୍ରସାଦଃ ପ୍ରାପ୍ୟତେ । ୩୫ ବି. ଚ,

---

ଶ୍ରୀକୃଷ୍ଣ ଶ୍ରୀଅର୍ଜ୍ଜୁନଙ୍କୁ କହୁଅଛନ୍ତି—ମଦ୍ଦ୍ୱେଷକାରୀ ହିଂସାପରାୟଣ ଅଶୁଭକର୍ମକାରୀ ସେହି ସମସ୍ତ ନରାଧମମାନଙ୍କୁ ସଂସାରରେ ଆସୁରୀ ଯୋନିରେ ଅନବରତ ନିକ୍ଷେପ କରେଁ । ୮ମ ଶ୍ଲୋକାର୍ଥ ।

ସୂତ୍ରେର—ବେଦାନ୍ତ ସୂତ୍ରର ।

ପରିଣାମବାଦ, ବିବର୍ତ୍ତବାଦ ଓ ବ୍ୟାସଭ୍ରାନ୍ତ ଏ ଶବ୍ଦମାନଙ୍କର ବ୍ୟାଖ୍ୟା ଆଦିଲୀଳା ୭ମ ପରିଚ୍ଛେଦ ୧୧୪ ପୟାର ଓ ତତ୍ପରବର୍ତ୍ତୀ ପୟାରମାନଙ୍କ ବ୍ୟାଖ୍ୟାରେ ଦ୍ରଷ୍ଟବ୍ୟ ।

ସ୍ଥାପେ—ଶ୍ରୀମତ୍ ଶ୍ରୀଶଙ୍କରାଚାର୍ଯ୍ୟ ସ୍ଥାପନ କରିଅଛନ୍ତି । ୩୩ ।

ଏଇତ—ବିବର୍ତ୍ତବାଦ, କଳ୍ପିତଅର୍ଥ—ବେଦାନ୍ତସୂତ୍ରର ଲକ୍ଷଣାବୃତ୍ତିର ଅର୍ଥ । ମନେ ନାହିଁ ଭାୟ-ମନକୁ ଆସୁ ନାହିଁ ।

ଶାସ୍ତ୍ରର ମୁଖ୍ୟାର୍ଥ ଛାଡି ପାଷଣ୍ଡମାନଙ୍କୁ ବୁଝାଇବାକୁ କଳ୍ପିତ ଅର୍ଥ କରିଅଛନ୍ତି । ୩୪ ।

ଏହି କଳ୍ପିତ ଅର୍ଥଦ୍ୱାରା କେବଳ ତର୍କ କରିବାକୁ ହୁଏ । ଏହି ପ୍ରକାର ତର୍କଦ୍ୱାରା ସମୟ ଚାଲିଯାଏ, ବାସ୍ତବିକ ସେଥିରେ ପରମାର୍ଥ ମିଳେ ନାହିଁ । ସୁତରାଂ ଶ୍ରୀକୃଷ୍ଣଙ୍କ କୃପା କିମ୍ବା ତଦନୁଗାମୁକ୍ତି ଏଥିରୁ କୌଣସିଟି ଲାଭ ହୁଏ ନାହିଁ । ୩୫ ।

ଶ୍ରୀକୃଷ୍ଣଚୈତନ୍ୟ କହୁଅଛନ୍ତି ଯେ ଶଙ୍କରାଚାର୍ଯ୍ୟ ବ୍ୟାସ ସୂତ୍ରର ମୁଖ୍ୟାର୍ଥ ଆଚ୍ଛାଦନ କରି ପାଷଣ୍ଡମାନଙ୍କୁ ବୁଝାଇବାକୁ ତାହାର କଳ୍ପିତ ଅର୍ଥ କରିଅଛନ୍ତି, ତାହା ସତ୍ୟ । ୩୬ ।

ଶ୍ରୀମନ୍ମହାପ୍ରଭୁଙ୍କର ପ୍ରବର୍ତ୍ତିତ ମତହିଁ ଏକମାତ୍ର ଅବଲମ୍ବନୀୟ, ଯେହେତୁ ତାହା ସାର ଏବଂ ଶ୍ରୀଶଙ୍କରାଚାର୍ଯ୍ୟ କିମ୍ବା ଅପରଙ୍କ ମତ ଅସାର, ତେଣୁ ତ୍ୟାଜ୍ୟ । ୩୭ ।

ସେଇ—ଶ୍ରୀପ୍ରକାଶାନନ୍ଦଙ୍କର ଅନ୍ୟ ତୁଲ୍ୟ ଶିଷ୍ୟ । ୩୮ । ଆଚାର୍ଯ୍ୟେର—ଶ୍ରୀଶଙ୍କରାଚାର୍ଯ୍ୟଙ୍କର । ଅଦ୍ୱୈତବାଦ- ଜୀବ ବ୍ରହ୍ମବାଦ । ଅନ୍ୟମତେ—ଅନ୍ୟ ପ୍ରଣାଳୀରେ । ୩୯ ।

'ଭଗବତ୍ତା' ମାନିଲେ—'ଅଦ୍ୱୈତ' ନା ଯାୟ ସ୍ଥାପନ ।
ଅତଏବ ସବଶାସ୍ତ୍ର କରଯେ ଖଣ୍ଡନ । ୪୦ ।
ଯେଇ ଗ୍ରନ୍ଥକର୍ତ୍ତା ଚାହେ ସ୍ୱମତ ସ୍ଥାପିତେ ।
ସହଜ ଶାସ୍ତ୍ରେର ଅର୍ଥ ନା ହୟ ତାହା ହୈତେ ।
ମୀମାଂସକ କହେ—ଈଶ୍ୱର ହୟ କର୍ମେର ଅଙ୍ଗ ।
ସାଙ୍ଖ୍ୟ କହେ—ଜଗତେର ପ୍ରକୃତିକାରଣ ପ୍ରସଙ୍ଗ । ୪୧ ।
ନ୍ୟାୟ କହେ—ପରମାଣୁ ହୈତେ ବିଶ୍ୱ ହୟ ।
ମାୟାବାଦୀ—'ନିର୍ବିଶେଷ ବ୍ରହ୍ମ ହେତୁ' କୟ ।
ପାତଞ୍ଜଲ କହେ—ଈଶ୍ୱର ହୟ ସ୍ୱରୂପ ଜ୍ଞାନ ।
ବେଦମତେ କହେ—ତେଁହୋ ସ୍ୱୟଂ ଭଗବାନ ।
ଛୟେର ଛୟ ମତ ବ୍ୟାସ କୈଲ ଅବର୍ତ୍ତନ ।
ସେଇ ସବ ସୂତ୍ର ଲୈୟା—ବେଦାନ୍ତ ବର୍ଣ୍ଣନ ।
ବେଦାନ୍ତମତେ ବ୍ରହ୍ମ—ସାକାର ନିରୂପଣ ।
ନିର୍ଗୁଣ ବ୍ୟତିରେକେ ତେଁହୋ ହୟ ତ ସଗୁଣ ।
ପରମକାରଣ ଈଶ୍ୱର—କେହୋ ନାହି ମାନେ ।
ସ୍ୱ ସ୍ୱ ମତ ସ୍ଥାପେ ପରମତେର ଖଣ୍ଡନେ ।୪୭।
ତାତେ ଛୟଦର୍ଶନ-ହୈତେ ତତ୍ତ୍ୱ ନାହି ଜାନି ।
ମହାଜନ ଯେଇ କହେ ସେଇ ସତ୍ୟ ମାନି ।

ତଥାହି ମହାଭାରତେ, ବନପର୍ବଣି (୩୧୩।୧୧୭)

ତର୍କୋଽପ୍ରତିଷ୍ଠଃ ଶ୍ରୁତୟୋ ବିଭିନ୍ନା,
ନାସୌ ମୁନିର୍ଯସ୍ୟ ମତଂ ନ ଭିନ୍ନମ୍ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ,
ମହାଜନୋ ଯେନ ଗତଃ ସ ପନ୍ଥାଃ ।୯।

ଶ୍ରୀକୃଷ୍ଣଚୈତନ୍ୟବାଣୀ ଅମୃତ ଆଧାର ।
ତେଁହୋ ଯେ କହେନ ବସ୍ତୁ ସେଇ ତତ୍ତ୍ୱ ସାର ।
ଏ ସବ ବୃତ୍ତାନ୍ତ ଶୁନି ମହାରାଷ୍ଟ୍ରି ବ୍ରାହ୍ମଣ ।
ପ୍ରଭୁକେ କହିତେ ସୁଖେ କରିଲା ଗମନ ।୫୦।
ହେନକାଲେ ପ୍ରଭୁ ପଞ୍ଚନଦେ ସ୍ନାନ କରି ।
ଦେଖିତେ ଚଲିୟାଛେନ ବିନ୍ଦୁମାଧବ ହରି ।୫୧।

---

ବ୍ରହ୍ମ ଯେ ଷଡୈଶ୍ୱର୍ଯ୍ୟପୂର୍ଣ୍ଣ ଭଗବାନ ଏହା ସ୍ୱୀକାର କଲେ ଜୀବକୁ ବ୍ରହ୍ମ ବୋଲି ସ୍ଥାପନ କରାଯାଇ ପାରେ ନାହିଁ । ୪୦ ।

ପୂର୍ବ ମୀମାଂସା ମତରେ କର୍ମହିଁ ଈଶ୍ୱର, ସାଙ୍ଖ୍ୟ ମତରେ ପ୍ରକୃତି (ପ୍ରଧାନ) ଜଗତର କାରଣ ବା ଈଶ୍ୱର, ନ୍ୟାୟ ମତରେ ବିଶ୍ୱର ଉପାଦାନ ପରମାଣୁ, ଅତଏବ ପରମାଣୁହିଁ ଈଶ୍ୱର । ମାୟାବାଦୀ (ଶ୍ରୀଶଙ୍କରାଚାର୍ଯ୍ୟଙ୍କ) ମତରେ ନିର୍ବିଶେଷ ବ୍ରହ୍ମହିଁ ଜଗତର କାରଣ । ୪୩ ।

ପାତଞ୍ଜଳୀଙ୍କ ମତରେ ଜ୍ଞାନହିଁ ଈଶ୍ୱର ବେଦମତରେ ଈଶ୍ୱର ସ୍ୱୟଂ ଭଗବାନ । ୪୪ ।

ବ୍ୟାସଦେବ ଷଡ଼ଦର୍ଶନକୁ ମନ୍ଥନ କରି ସେଥିରୁ ସୂତ୍ରମାନ ଆହରଣ କରି ବେଦାନ୍ତ ଦର୍ଶନ ରଚନା କଲେ ଏବଂ ସେ ତହିଁରେ ବ୍ରହ୍ମଙ୍କୁ ସାକାର ବୋଲି ନିରୂପଣ କଲେ । ୪୫ ।

ସେ ବ୍ରହ୍ମ ସ୍ୱାଭାବିକ ସଗୁଣ କିନ୍ତୁ ବ୍ୟତିରେକ ପ୍ରମାଣରେ ପ୍ରାକୃତ ଗୁଣାତୀତରୂପ ନିର୍ଗୁଣ । ୪୬ । କେହୋ—ଷଡ଼ଦର୍ଶନ ବେତ୍ତାମାନେ । ୪୭ ।

୯ମ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୧୭ଶ ପରିଚ୍ଛେଦର ୧୧ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ତର୍କର ମର୍ଯ୍ୟାଦା ନାହିଁ । ଶ୍ରୁତିମାନେ ଭିନ୍ନ ଭିନ୍ନମତାବଲମ୍ବୀ । ପ୍ରତ୍ୟେକ ଋଷିଙ୍କର ମତ ଭିନ୍ନ । ଧର୍ମର ତତ୍ତ୍ୱ (ଯାଥାର୍ଥ) ଗୁହାରେ ନିହିତ ଅର୍ଥାତ୍ ଅତି ଗୁହ୍ୟ । ଅତଏବ ସାଧୁ ଯେଉଁ ମାର୍ଗ ଅନୁସରଣ କରନ୍ତି ତାହାହିଁ ଅଣୁସରଣୀୟ । ୯ମ ଶ୍ଳୋକ ।

ବିନ୍ଦୁମାଧବ—କାଶୀଧାମସ୍ଥ ଶ୍ରୀ ନାରାୟଣବିଗ୍ରହ । ୫୧ ।

ମଠେ ସେଇ ବିପ୍ର ସବ ବୃତ୍ତାନ୍ତ କହିଲ ।
ଶୁନି ମହାପ୍ରଭୁ ଈଷତ୍ ହାସିତେ ଲାଗିଲ । ୫୨ ।
ମାଧବ-ସୌନ୍ଦର୍ଯ୍ୟ ଦେଖି ଆବିଷ୍ଟ ହଇଲା ।
ଅଙ୍ଗନେତେ ଆସି ପ୍ରେମେ ନାଚିତେ ଲାଗିଲା ।
ଶେଖର, ପରମାନନ୍ଦ, ତପନ, ସନାତନ ।
ଚାରିଜନ ମେଲି କରେ ନାମସଂକୀର୍ତ୍ତନ । ୫୪ ।
ତଥାହି ଭକ୍ତକୃତଂ ସଂକୀର୍ତ୍ତନମ୍—
'ହରୟେ ନମଃ କୃଷ୍ଣ ଯାଦବାୟ ନମଃ ।
ଗୋପାଳ ଗୋବିନ୍ଦ ରାମ ଶ୍ରୀମଧୁସୂଦନ ।୧୦।'
ଗୌଦିଗେ ଲୋକ ଲକ୍ଷ ବୋଲେ 'ହରି ହରି ।'
ଉଠିଲ ମଙ୍ଗଳଧ୍ୱନି ସ୍ୱର୍ଗ ମର୍ତ୍ତ୍ୟ ଭରି । ୫୫ ।
ନିକଟେଇ ଧ୍ୱନି ଶୁନି ପ୍ରକାଶାନନ୍ଦ ।
ଦେଖିତେ କୌତୁକେ ଆଇଲ ଲଞା
ଶିଷ୍ୟବୃନ୍ଦ । ୫୬ ।
ଦେଖିୟା ପ୍ରଭୁର ନୃତ୍ୟ—ଦେହେର ମାଧୁରୀ ।
ଶିଷ୍ୟଗଣ-ସଙ୍ଗେ ସେଇ ବୋଲେ 'ହରି ହରି' ।
କମ୍ପ ସ୍ୱରଭଙ୍ଗ ସ୍ୱେଦ ବୈବର୍ଣ୍ଣ୍ୟ ସ୍ତମ୍ଭ ।
ଅଶ୍ରୁଧାରାୟ ଭିଜେ ଲୋକ—ପୁଲକକଦମ୍ବ ।

ହର୍ଷ-ଦୈନ୍ୟ-ଚାପଲ୍ୟାଦି ସଞ୍ଚାରି-ବିକାର ।
ଦେଖି କାଶୀବାସୀଲୋକେର ହୈଲ ଚମତ୍କାର ॥
ଲୋକସଂଘଟ୍ଟ ଦେଖି ପ୍ରଭୁର ବାହ୍ୟ ହୈଲ ।
ସନ୍ନ୍ୟାସୀର ଗଣ ଦେଖି ନୃତ୍ୟ ସମ୍ବରିଲ ।୬୦।
ପ୍ରକାଶାନନ୍ଦେର କୈଲ ପ୍ରଭୁ ଚରଣ ବନ୍ଦନ ।
ପ୍ରକାଶାନନ୍ଦ ଆସି ତାଁର ଧରିଲ ଚରଣ । ୬୧ ।
ପ୍ରଭୁ କହେ—ତୁମି ଜଗଦ୍‌ଗୁରୁ ପୂଜ୍ୟତମ ।
ଆମି ତୋମାର ନା ହଇ ଶିଷ୍ୟେର ଶିଷ୍ୟସମ ।୬୨।
ଶ୍ରେଷ୍ଠ ହୈୟା କେନେ କର ହୀନେର ବନ୍ଦନ ?
ଆମାର ସର୍ବନାଶ ହୟ, ତୁମି ବ୍ରହ୍ମସମ । ୬୩ ।
ଯଦ୍ୟପି ତୋମାରେ ସବ ବ୍ରହ୍ମମୟ ଭାସେ ।
ଲୋକ ଶିକ୍ଷାଲାଗି ଐଛେ କରିତେ ନା
ଆଇସେ । ୬୪ ।
ତେँହୋ କହେ—ତୋମାର ପୂର୍ବେ ନିନ୍ଦା
ଅପରାଧ ଯେ କରିଲ ।
ତୋମାର ଚରଣସ୍ପର୍ଶେ ସବ କ୍ଷୟ ହୈଲ । ୬୫ ।
ତଥାହି ବାସନାଭାଷ୍ୟଧୃତ-ପରିଶିଷ୍ଟବଚନମ୍ ।—
ଜୀବନ୍ମୁକ୍ତା ଅପି ପୁନର୍ଯାନ୍ତି ସଂସାରବାସନାମ୍ ।
ଯଦ୍ୟଚିନ୍ତ୍ୟମହାଶକ୍ତୌ ଭଗବତ୍ୟପରାଧିନଃ ।୧୧।

---

ଅଚିନ୍ତ୍ୟ ମହାଶକ୍ତୌ ଭଗବତି ଯଦି ଅପରାଧିନଃ (ସ୍ୟୁଃ ତର୍ହି) ଜୀବନ୍ମୁକ୍ତାଃ ଅପି ପୁନଃ ସଂସାରବାସନାଂ (ଯାନ୍ତି) ଲଭନ୍ତେ । ୧୧ ଶ୍ଲୋକଃ ।

---

ସେଇ—ଶ୍ରୀପ୍ରକାଶାନନ୍ଦ । ୫୬ ।

ମହାପ୍ରଭୁ ଆବିଷ୍ଟଭାବରେ ନୃତ୍ୟ କରୁଥିବାରୁ ତାହାଙ୍କ ଶ୍ରୀଅଙ୍ଗରେ କମ୍ପ ଆଦି ସାତ୍ତ୍ୱିକ ଓ ସଞ୍ଚାରୀ ଭାବମାନ ଦେଖି କାଶୀବାସିମାନେ ଚମତ୍କୃତ ହେଲେ । ୫୮ ।

ଯଦି ଆପଣ ବ୍ରହ୍ମମୟ ଜଗତ୍ ଏହି ଜ୍ଞାନରେ ଜଗତର ଯାବତୀୟ ବସ୍ତୁକୁ ବ୍ରହ୍ମ ବୋଲି ଜ୍ଞାନ କରନ୍ତି ଏବଂ ସେହି ଜ୍ଞାନରେ ଆପଣ ମୋର ପାଦଧାରଣ ଅନୁଚିତ ମନେ କରନ୍ତି ନାହିଁ, ତଥାପି ଆପଣ ଜଗଦ୍‌ଗୁରୁ ଓ ପୂଜ୍ୟତମ ହେତୁ ଲୋକଶିକ୍ଷା ସକାଶେ ଆପଣଙ୍କର ଏପରି କରିବା ଉଚିତ ହୋଇ ନାହିଁ । ୬୪ ।

ଶ୍ରୀପ୍ରକାଶାନନ୍ଦ ମହାପ୍ରଭୁଙ୍କ ଉପରୋକ୍ତ ବଚନର ଉତ୍ତରରେ କହିଲେ, ମୁଁ ଭଗବାନ ସ୍ୱୀକାର ନ କରି ଅଥବା ଆପଣଙ୍କୁ ଭଗବାନ ବୋଲି ନ ଜାଣି ନିର୍ବିଶେଷବାଦଦ୍ୱାରା ଅଥବା ସାକ୍ଷାତରେ ଆପଣଙ୍କୁ ନିନ୍ଦା କରିବାଦ୍ୱାରା ଯେଉଁ ଅପରାଧ କରିଅଛି ତାହା ଆପଣଙ୍କର ଚରଣ ସ୍ପର୍ଶଦ୍ୱାରା କ୍ଷୟ ହେଲା । ୬୫ ।

ଯଦି ଅଚିନ୍ତ୍ୟ ମହାଶକ୍ତିଶାଳୀ ଭଗବାନଙ୍କଠାରେ ଅପରାଧ ହୁଏ ତେବେ ଜୀବନ୍ମୁକ୍ତମାନେ ସୁଦ୍ଧା ପୁନରାୟ ସଂସାର ବାସନା ଲାଭ କରନ୍ତି । ୧୧ ଶ୍ଲୋକାର୍ଥ ।

ତଥାହି (ଭାଃ ୧୦।୩୪।୨)—

ସ ବୈ ଭଗବତଃ ଶ୍ରୀମତ୍ପାଦସ୍ପର୍ଶହତାଶୁଭଃ ।
ଭେଜେ ସର୍ପବପୁର୍ହିତ୍ୱା ରୂପଂ ବିଦ୍ୟାଧରାର୍ଚ୍ଚିତମ୍ ।୧୨।

ପ୍ରଭୁ କହେ—ବିଷ୍ଣୁ ବିଷ୍ଣୁ, ଆମି କ୍ଷୁଦ୍ରଜୀବ ହୀନ ।
ଜୀବେ 'ବିଷ୍ଣୁ' ମାନି—ଏଇ ଅପରାଧ ଚିହ୍ନ ।
ଜୀବେ ବିଷ୍ଣୁବୁଦ୍ଧି ଦୂରେ, ଯେଇ ରୁଦ୍ରବ୍ରହ୍ମସମ—
ନାରାୟଣେ ମାନେ, ତାର ପାଷଣ୍ଡୀତେ ଗଣନ ।

ତଥାହି ହରିଭକ୍ତିବିଲାସେ (୧।୭୩)
ପାଦ୍ମୋତ୍ତରଖଣ୍ଡବଚନମ୍, (୭୩।୧୨)—

ଯସ୍ତୁ ନାରାୟଣଂ ଦେବଂ ବ୍ରହ୍ମରୁଦ୍ରାଦିଦୈବତୈଃ
ସମତ୍ୱେନୈବ ବୀକ୍ଷେତ ସ ପାଷଣ୍ଡୀ ଭବେତ୍ସଦା ।

ପ୍ରକାଶାନନ୍ଦ କହେ—ତୁମି ସାକ୍ଷାତ୍ ଭଗବାନ୍ ।
ତଭୁ ଯଦି କର ତାର ଦାସ ଅଭିମାନ ।୬୮।
ତଭୁ ପୂଜ୍ୟ ହଓ ତୁମି ବଡ଼ ଆମା ହୈତେ ।
ସର୍ବନାଶ ହୟ ମୋର ତୋମାର ନିନ୍ଦାତେ ।୬୯।

ତଥାହି (ଭାଃ ୬।୧୪।୫)—

ମୁକ୍ତାନାମପି ସିଦ୍ଧାନାଂ ନାରାୟଣପରାୟଣଃ ।
ସୁଦୁର୍ଲଭଃ ପ୍ରଶାନ୍ତାତ୍ମା କୋଟିଷ୍ୱପି ମହାମୁନେ ।୧୪।

---

ସଃ ବୈ (ସ ସର୍ପଃ) ଭଗବତଃ ଶ୍ରୀମତ୍ପାଦସ୍ପର୍ଶହତାଶୁଭଃ (ଶ୍ରୀମତଃ ଭକ୍ତମନୋରଥ-ପୂରକ ସମ୍ପଦ୍ୱତଃ ପାଦସ୍ୟ ସ୍ପର୍ଶେନ ହତଂ ଅଶୁଭଂ ସର୍ପତ୍ୱାପାଦକଂ ଶାପରୂପଂ ଯସ୍ୟ ତଥାଭୂତଃ (ସନ୍) ସର୍ପବପୁଃ ହିତ୍ୱା ବିଦ୍ୟାଧରାର୍ଚ୍ଚିତଂ ରୂପଂ ଭେଜେ (ପ୍ରାପ) । ୧୨ଶ ଶ୍ଲୋକଃ ।

---

ଶ୍ରୀଶୁକଦେବ କହୁଅଛନ୍ତି—ସେହି ସର୍ପ ଶ୍ରୀଭଗବାନ ଶ୍ରୀକୃଷ୍ଣଙ୍କରି ଭକ୍ତମନୋରଥ ପୂରକ ସମ୍ପଦବିଶିଷ୍ଟ ଶ୍ରୀଚରଣାରବିନ୍ଦ ସ୍ପର୍ଶମାତ୍ର ତାହାର ସମୁଦାୟ ଅଶୁଭ ବିନଷ୍ଟ ହେବାରୁ ସେ ସର୍ପ ଶରୀର ତ୍ୟାଗ କରି ବିଦ୍ୟାଧର ଶ୍ରେଷ୍ଠରୂପ ଧାରଣ କଲା । ୧୨ଶ ଶ୍ଲୋକାର୍ଥ ।

ମହାପ୍ରଭୁ କହୁଅଛନ୍ତି—ମୁଁ କ୍ଷୁଦ୍ର ଜୀବ, ମୋତେ ବିଷ୍ଣୁ ବୋଲି କହିବାଦ୍ୱାରା ମୋର ଅପରାଧ ହେଉଅଛି । ଜୀବକୁ ବିଷ୍ଣୁଙ୍କର ସମାନ କହିବା ତ ଦୂରର କଥା, ଯେଉଁମାନେ ବ୍ରହ୍ମା ଓ ରୁଦ୍ରଙ୍କୁ ବିଷ୍ଣୁଙ୍କର ସମାନ ବୋଲି ସ୍ୱୀକାର କରନ୍ତି ସେମାନେ ପାଷଣ୍ଡ ଅର୍ଥାତ୍ ସେମାନେ ବିଷ୍ଣୁଙ୍କ ତତ୍ତ୍ୱ ଜାଣନ୍ତି ନାହିଁ । ୬୭ ।

୧୩ଶ ଶ୍ଲୋକର ଅନ୍ୱୟ ମଧ୍ୟଲୀଳା ୧୮ଶ ପରିଚ୍ଛେଦର ୯ମ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଯେଉଁ ବ୍ୟକ୍ତି ବ୍ରହ୍ମା, ରୁଦ୍ରାଦି ଦେବତାମାନଙ୍କ ସହିତ ନାରାୟଣଦେବଙ୍କୁ ସମାନ ଦେଖନ୍ତି ସେହି ବ୍ୟକ୍ତି ନିଶ୍ଚୟ ପାଷଣ୍ଡ । ୧୩ଶ ଶ୍ଲୋକାର୍ଥ ।

ପ୍ରକାଶାନନ୍ଦ କହିଲେ ଆପଣ ସ୍ୱୟଂ ଭଗବାନ ହୋଇ ଭକ୍ତଭାବ ଗ୍ରହଣ କରିଥିବାରୁ ଭକ୍ତ ହେଲେ ସୁଦ୍ଧା ମୋର ପୂଜ୍ୟ, କାରଣ ମୁଁ ଅଭକ୍ତ ? ଆପଣଙ୍କର ଏହି ଭକ୍ତଭାବକୁ ମୁଁ ଯେ ନିନ୍ଦା କରିଅଛି ସେଥିରେ ମୋର ଅପରାଧ ହୋଇଅଛି । ୬୮ ।

୧୪ଶ ଶ୍ଲୋକର ଅନ୍ୱୟ ମଧ୍ୟଲୀଳା ୧୯ଶ ପରିଚ୍ଛେଦର ୧୯ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀପରୀକ୍ଷିତମହାରାଜ ଶ୍ରୀଶୁକଦେବଗୋସ୍ୱାମୀଙ୍କୁ କହୁଅଛନ୍ତି—ହେ ମହାମୁନେ ! କୋଟି କୋଟି ଜୀବନ୍ମୁକ୍ତ ଓ ସାଲୋକ୍ୟାଦି ମୁକ୍ତିପ୍ରାପ୍ତ ପୁରୁଷ ମଧ୍ୟରେ ସର୍ବ ଉପଦ୍ରବ ରହିତ ଶ୍ରୀନାରାୟଣଙ୍କ ସେବାମାତ୍ରାକାଙ୍କ୍ଷୀ ସୁଦୁର୍ଲ୍ଲଭ । ୧୪ ଶ୍ଲୋକାର୍ଥ ।

ତଥାହି ( ଭାଃ ୧୦।୪।୪୬ )—

ଆୟୁଃ ଶ୍ରିୟଂ ଯଶୋ ଧର୍ମ୍ମଂ ଲୋକାନାଶିଷ ଏବ ଚ।
ହନ୍ତି ଶ୍ରେୟାଂସି ସର୍ବାଣି ପୁଂସୋ ମହଦତିକ୍ରମଃ ॥

ତଥାହି ( ଭାଃ ୭।୫।୩୨ )—

ନୈଷାଂ ମତିସ୍ତାବଦୁରୁକ୍ରମାଙ୍ଘ୍ରିଂ,
ସ୍ପୃଶତ୍ୟନର୍ଥାପଗମୋ ଯଦର୍ଥଃ ।
ମହୀୟସାଂ ପାଦରଜୋଽଭିଷେକଂ ।
ନିଷ୍କିଞ୍ଚନାନାଂ ନ ବୃଣୀତ ଯାବତ୍ ।୧୬।

ଏବେ ତୋମାର ପାଦାବ୍ଜେ ମୋର ଉପଜିବେ ଭକ୍ତି
ତାର ନିମିତ୍ତେ କରି ତୋମାର ଚରଣେ ପ୍ରଣତି ॥
ଏତ ବଲି ପ୍ରଭୁ ଲଞା ତାହାଁଙ୍କୁ ବସିଲା ।।
ପ୍ରଭୁକେ ପ୍ରକାଶାନନ୍ଦ ପୁଚ୍ଛିତେ ଲାଗିଲା । ୭୧ ।
ମାୟାବାଦେ କୈଲ ଯତ ଦୋଷେର ଆଖ୍ୟାନ ।
ସବେ ଜାନି ଆଚାର୍ଯ୍ୟେର କଳ୍ପିତ ବ୍ୟାଖ୍ୟାନ ॥
ସୂତ୍ରେର କରିଲେ ତୁମି ମୁଖ୍ୟାର୍ଥବିବରଣ ।
ତାହା ଶୁନି ସଭାର ହୈଲ ଚମତ୍କାର ମନ । ୭୩
ତୁମି ତ ଈଶ୍ୱର ତୋମାର ଆଛେ ସର୍ବଶକ୍ତି ।
ସଂକ୍ଷେପରୂପେ କହ ତୁମି, ଶୁନିତେ ହୟ ମତି ॥
ପ୍ରଭୁ କହେ—ଆମି ଜୀବ ଅତି ତୁଚ୍ଛଜ୍ଞାନ ।
ବ୍ୟାସସୂତ୍ରେର ଗମ୍ଭୀରାର୍ଥ,—ବ୍ୟାସ ଭଗବାନ ।୭୫
ତାଁର ସୂତ୍ରେର ଅର୍ଥ କୋନ ଜୀବ ନାହିଁ ଜାନେ ।
ଅତଏବ ଆପନ ସୂତ୍ରେର କରିୟାଛେ
ବ୍ୟାଖ୍ୟାନେ ।
ଯେ ସୂତ୍ରକର୍ତ୍ତା, ସେ ଯଦି କରୟେ ବ୍ୟାଖ୍ୟାନ ।
ତବେ ସୂତ୍ରେର ମୂଳ ଅର୍ଥ ଲୋକେର ହୟ ଜ୍ଞାନ ।
ପ୍ରଣବେର ଯେଇ ଅର୍ଥ, ଗାୟତ୍ରୀତେ ସେଇ ହୟ ।
ସେଇ ଅର୍ଥ ଚତୁଃଶ୍ଲୋକୀତେ ବିବରିୟା କୟ ।

---

୧୫ଶ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୧୫ଶ ପରିଚ୍ଛେଦର ୮ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଶୁକଦେବ ଶ୍ରୀପରୀକ୍ଷିତଙ୍କୁ କହୁଅଛନ୍ତି—ମହତ୍‌ବ୍ୟକ୍ତିଙ୍କୁ ଅନାଦର କଲେ ପୁରୁଷର ଆୟୁଃ, ଶ୍ରୀ, ଯଶ, ଧର୍ମ, ସ୍ୱର୍ଗାଦିଲୋକ ଓ ଉନ୍ନତି ପ୍ରଭୃତି ସକଳ କଲ୍ୟାଣ ନଷ୍ଟ ହୁଏ । ୧୫ ଶ୍ଳୋକାର୍ଥ ।

୧୬ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୨ ପରିଚ୍ଛେଦର ୨୨ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ପ୍ରହ୍ଲାଦ ନିଜ ଗୁରୁପୁତ୍ରଙ୍କୁ କହୁଅଛନ୍ତି—ଯେପର୍ଯ୍ୟନ୍ତ ବିଷୟ ଅଭିମାନରହିତ ଭଗବତ ଭକ୍ତମାନଙ୍କର ଶ୍ରୀଚରଣଧୂଳିଦ୍ୱାରା ସଂସାରୀ-ବ୍ୟକ୍ତିମାନେ ଅଭିଷିକ୍ତ ନ ହୁଅନ୍ତି ସେପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କର ପାଦପଦ୍ମରେ ସେମାନଙ୍କର ମତି ହୁଏ ନାହିଁ । ଶ୍ରୀକୃଷ୍ଣଙ୍କର ପାଦପଦ୍ମରେ ମତି ଜନ୍ମିଲେ ସମସ୍ତ ଅନର୍ଥ ନିବୃତ୍ତି ହୁଏ । ୧୬ ଶ୍ଳୋକାର୍ଥ ।

ଆମ୍ଭେମାନେ ସମସ୍ତେ ଜାଣୁ ଯେ ଶଙ୍କରାଚାର୍ଯ୍ୟଙ୍କର ବେଦାନ୍ତ ନିର୍ବିଶେଷବାଦବ୍ୟାଖ୍ୟା ଲକ୍ଷଣାର୍ଥ । ୭୨ ।

ଶ୍ରୀବ୍ୟାସଦେବ ଶ୍ରୀଭଗବତ୍ ଅବତାର ହେତୁ ବ୍ୟାସସୂତ୍ର ଶ୍ରୀଭଗବତ୍‌ବଚନ ଏବଂ ତାହାର ଅର୍ଥ ମଧ୍ୟ ଗମ୍ଭୀର ଅର୍ଥାତ୍ ପୂର୍ଣ୍ଣ ଜ୍ଞାନମୟ । ତାହା ସ୍ୱଳ୍ପଜ୍ଞାନ ଜୀବ ପକ୍ଷରେ ଅଧିଗମ୍ୟ ହୋଇ ପାରେ ନାହିଁ । ଏଣୁ ବ୍ୟାସଦେବ ନିଜେ ତାଙ୍କ ସୂତ୍ରର ବ୍ୟାଖ୍ୟା କରିଅଛନ୍ତି । ୭୫ ।

ପ୍ରଣବ ଓଁକାର ଯାହା କି ବେଦର ମୂଳ ତାହାର ଅର୍ଥ ଗାୟତ୍ରୀରୂପରେ ପ୍ରକାଶ । ଗାୟତ୍ରୀ ବେଦମାତା ହେତୁ ସମସ୍ତ ବେଦର ଅର୍ଥ ଗାୟତ୍ରୀରେ ପ୍ରକାଶ । ଶ୍ରୀମଦ୍ଭାଗବତର ୨ୟ ସ୍କନ୍ଧ ନବମ ଅଧ୍ୟାୟ ୩୨, ୩୩, ୩୪, ୩୫ ଶ୍ଳୋକ ଏହି ଚତୁଃଶ୍ଳୋକୀରେ ସମଗ୍ର ବେଦାର୍ଥ ପ୍ରକାଶିତ ହୋଇ ଅଛି । ୭୮ ।

ବ୍ରହ୍ମାରେ ଈଶ୍ୱର ଚତୁଃଶ୍ଳୋକୀ ଯେ କହିଲ ।
ବ୍ରହ୍ମା ନାରଦେରେ ସେଇ ଉପଦେଶ କୈଲ ।୭୯
ସେଇ ଅର୍ଥ ନାରଦ ବ୍ୟାସେରେ କହିଲ ।
ଶୁନି ବେଦବ୍ୟାସ ମନେ ବିଚାର କରିଲ । ୮୦ ।
ଏଇ ଅର୍ଥ—ଆମାର ସୂତ୍ରେର ବ୍ୟାଖ୍ୟାରୂପ ।
ଶ୍ରୀଭାଗବତ କରି ସୂତ୍ରେର ଭାଷ୍ୟସ୍ୱରୂପ ।
ଚାରିବେଦ ଉପନିଷଦ—ଯତ କିଛୁ ହୟ ।
ତାର ଅର୍ଥ ଲଞା ବ୍ୟାସ କରିଲ ସଞ୍ଚୟ । ୮୧ ।
ଯେଇ ସୂତ୍ରେ ଯେଇ ଋଗ୍‌ବିଷୟ ବଚନ ।
ଭାଗବତେ ସେଇ ଋକ୍—ଶ୍ଳୋକନିବନ୍ଧନ ।
ଅତଏବ ସୂତ୍ରେର ଭାଷ୍ୟ—ଶ୍ରୀଭାଗବତ ।
ଭାଗବତଶ୍ଳୋକ ଉପନିଷଦ—କହେ ଏକ ଅର୍ଥ ।
ତଥାହି ( ଭାଃ—୮।୧।୧୦ )—
ଆତ୍ମାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚିଜ୍ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ
ଏଇ ଶ୍ଳୋକ ଦେଖାଇୟା କୈଲ ବିଚାରଣ ।
ଏଇ ମତ ଭାଗବତ ଶ୍ଳୋକ ଋଗ୍‌ସମ । ୮୫।
ଭାଗବତେର ସମ୍ବନ୍ଧାଭିଧେୟ-ପ୍ରୟୋଜନ ।
ଚତୁଃଶ୍ଳୋକୀତେ ପ୍ରକଟ ତାର କରିୟାଛେ ଲକ୍ଷଣ ।

---

ଜଗତ୍ୟାଂ (ଲୋକେ) ଯତ୍ କିଞ୍ଚିତ୍ ଜଗତ୍ ( ଭୂତଜାତଂ ) ଇଦଂ ସର୍ବଂ ଆତ୍ମାବାସ୍ୟଂ ( ଆତ୍ମନା ଈଶ୍ୱରେଣ ଅବାସ୍ୟଂ ସତ୍ତାଚୈତନ୍ୟାଭ୍ୟାଂ ବ୍ୟାପ୍ୟ ) ତେନ ( ହେତୁନା ) ତ୍ୟକ୍ତେନ ( ଈଶ୍ୱରାର୍ପଣେନୈବ ) ଭୁଞ୍ଜୀଥାଃ ( ସ୍ୱାର୍ଥଂ ) କସ୍ୟଚିତ୍ ( ଅପି ) ଧନଂ ମାଗୃଧଃ ( ଅଭିକାଙ୍କ୍ଷୀଃ ) ୧୭ ଶ୍ଳୋକଃ ।

---

ଶ୍ରୀମନ୍ନାରାୟଣ ପ୍ରଣବର ଅର୍ଥରୂପ ଚତୁଃଶ୍ଳୋକୀ ଶ୍ରୀମଦ୍‌ଭାଗବତ ବ୍ରହ୍ମାଙ୍କୁ ଉପଦେଶ କଲେ । ବ୍ରହ୍ମା ତାହା ନାରଦଙ୍କୁ ଉପଦେଶ କଲେ । ଶ୍ରୀନାରଦ ତାହାର ଅର୍ଥ ଶ୍ରୀବ୍ୟାସଦେବଙ୍କୁ ଉପଦେଶ କଲେ । ବ୍ୟାସଦେବ ନାରଦଙ୍କଠାରୁ ଯେଉଁ ଉପଦେଶ ପାଇଲେ ତାହା ତାହାଙ୍କ କୃତ ବ୍ରହ୍ମସୂତ୍ରର ବ୍ୟାଖ୍ୟା ବୋଲି ଗ୍ରହଣ କରି ବ୍ରହ୍ମସୂତ୍ରର ଭାଷ୍ୟରୂପ ଶ୍ରୀମଦ୍‌ଭାଗବତ ପ୍ରକାଶ କଲେ । ଚାରିବେଦ ଓ ସମସ୍ତ ଉପନିଷଦର ସାର ସଂଗ୍ରହ କରି ବ୍ୟାସଦେବ ବ୍ରହ୍ମସୂତ୍ର ସଂକଳନ କଲେ । ପ୍ରତ୍ୟେକ ସୂତ୍ର ବେଦର ଯେଉଁ ଯେଉଁ ଋକ୍ (ମନ୍ତ୍ର) କୁ ଅବଲମ୍ବନ କରି ଲେଖା ହୋଇ ଅଛି ଶ୍ରୀମଦ୍‌ଭାଗବତରେ ଶ୍ଳୋକରୂପରେ ତାହାହିଁ ଲେଖିଅଛନ୍ତି । ଏହିହେତୁ ଶ୍ରୀମଦ୍‌ଭାଗବତ ବ୍ରହ୍ମସୂତ୍ରର ଭାଷ୍ୟ ଏବଂ ଭାଗବତର ଶ୍ଳୋକର ଯେଉଁ ଅର୍ଥ, ଉପନିଷଦର ସେହି ଅର୍ଥ । ୭୯ । ୮୪ ।

ଶ୍ରୀମନ୍ କହୁଅଛନ୍ତି—ଜଗତରେ ଯାହା କିଛି ବସ୍ତୁ ଦେଖାଯାଏ, ସେ ସମସ୍ତରେ ଈଶ୍ୱର ନିଜ ସତ୍ତା ଏବଂ ଚେତନାଦ୍ୱାରା ବ୍ୟାପିଅଛନ୍ତି । ସେହି ସମସ୍ତ ବସ୍ତୁ ଈଶ୍ୱରଙ୍କର । ଅତଏବ ଈଶ୍ୱରାର୍ପଣପୂର୍ବକ ଧନ ଭୋଗ କର । ଆପଣା ନିମନ୍ତେ କାହାରି ଧନ ଆକାଙ୍କ୍ଷା କର ନାହିଁ । ଅଥବା ଜଗତରେ ଈଶ୍ୱର ବ୍ୟତୀତ କାହାର ଧନ ଅଛି ଯେ ଆକାଙ୍କ୍ଷା କରିବ । ୧୭ ଶ୍ଳୋକାର୍ଥ ।

ଏହି ଶ୍ଳୋକର ଅନୁରୂପ ଋକ୍ ଈଶୋପନିଷଦ୍‌ରେ ଯଥା—ଈଶାବାସ୍ୟମିଦଂ, ସର୍ବଂ ଯତ୍କିଞ୍ଚିତ୍ ଜଗତ୍ୟାଂ ଜଗତ୍ ତେନ ତ୍ୟକ୍ତେନ ଭୁଞ୍ଜୀଥା ମାଗୃଧଃ କସ୍ୟସ୍ୱିଦ୍ଧନଂ । ୧୭ ଶ୍ଳୋକାର୍ଥ ।

ଉପରଲିଖିତ ଈଶୋପନିଷଦର ଋକ୍ ଓ ଉପରୋକ୍ତ ଶ୍ରୀମଦ୍‌ଭାଗବତର ଶ୍ଳୋକ ସମାନ । ଏହିପରି ଶ୍ରୀମଦ୍‌ଭାଗବତର ଶ୍ଳୋକମାନ ବେଦ ଓ ଉପନିଷଦର ଋକ୍‌ମାନଙ୍କ ଅନୁରୂପ ଅଟନ୍ତି । ୮୫

ଆମି 'ସମ୍ବନ୍ଧତତ୍ତ୍ୱ', ଆମାର ଜ୍ଞାନବିଜ୍ଞାନ ।
ଆମା ପାଇତେ ସାଧନ ଭକ୍ତି ଅଭିଧେୟ ନାମ ।
ସାଧନେର ଫଲ ପ୍ରେମ—ମୂଲ 'ପ୍ରୟୋଜନ' ।
ସେଇ ପ୍ରେମେ ପାୟ ଜୀବ—ଆମାର ସେବନ ॥
ତଥାହି ( ଭାଃ ୨।୯।୩୦ )—
ଜ୍ଞାନଂ ପରମଗୁହ୍ୟଂ ମେ ଯଦ୍‌ବିଜ୍ଞାନସମନ୍ୱିତମ୍ ।
ସରହସ୍ୟଂ ତଦଙ୍ଗଞ୍ଚ ଗୃହାଣ ଗଦିତଂ ମୟା । ୧୮ ।
ଏଇ ତିନ ତତ୍ତ୍ୱ ଆମି କହିଲ ତୋମାରେ ।
ଜୀବ ତୁମି, ଏଇ ତିନ ନାରିବେ ଜାନିବାରେ ।୮୯
ଯେଁଛେ ଆମାର ସ୍ୱରୂପ, ଯେଁଛେ ଆମାର ସ୍ଥିତି ।
ଯେଁଛେ ଆମାର ଗୁଣ କର୍ମ୍ମ ଷଡ଼ୈଶ୍ୱର୍ଯ୍ୟ ଶକ୍ତି ।
ଆମାର କୃପାୟ ସ୍ଫୁରୁକ ଏ ସବ ତୋମାରେ ।
ଏତ ବଲି ତିନ ତତ୍ତ୍ୱ କହିଲ ତାହାଁରେ । ୯୧
ତଥାହି ( ଭାଃ ୨।୯।୩୧ )—
ଯାବାନହଂ ଯଥାଭାବୋ ଯଦ୍‌ରୂପଗୁଣକର୍ମ୍ମକଃ ।
ତଥୈବ ତତ୍ତ୍ୱବିଜ୍ଞାନମସ୍ତୁ ତେ ମଦନୁଗ୍ରହାତ୍ । ୧୯
ସୃଷ୍ଟିର ପୂର୍ବ୍ବେ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଆମି ହଇୟେ ।
ପ୍ରପଞ୍ଚ ପ୍ରକୃତି ପୁରୁଷ ଆମାତେଇ ଲୟେ । ୯୨ ।
ସୃଷ୍ଟି କରି ତାର ମଧ୍ୟେ ଆମି ପ୍ରବେଶିୟେ ।
ପ୍ରପଞ୍ଚ ଯେ କିଛୁ ଦେଖ, ସେଇ ଆମି ହଇୟେ ।

ବେଦ ଉପନିଷଦୋକ୍ତ ସମ୍ବନ୍ଧ ଅଭିଧେୟ ପ୍ରୟୋଜନ ତତ୍ତ୍ୱ ଶ୍ରୀମଦ୍ଭାଗବତର ଚତୁଃଶ୍ଲୋକୀରେ ପ୍ରକାଶ ହୋଇଅଛି । ୮୬ ।

ଚତୁଃଶ୍ଲୋକୀରେ ଶ୍ରୀମନ୍ନାରାୟଣ ବ୍ରହ୍ମାଙ୍କୁ କହିଅଛନ୍ତି ଯେ ମୁଁ ସମ୍ବନ୍ଧତତ୍ତ୍ୱ, ମୋର ପ୍ରାପ୍ତ୍ୟୁପାୟରୂପ ସାଧନଭକ୍ତି ଅଭିଧେୟ ତତ୍ତ୍ୱ ଓ ସେହି ସାଧନଭକ୍ତିର ଫଳ ପ୍ରେମ ପ୍ରୟୋଜନ-ତତ୍ତ୍ୱ । ୮୭ । ୮୮ ।

୧୮ଶ ଶ୍ଲୋକ ଅନ୍ୱୟ ଆଦିଲୀଳା ୧ମ ପରିଚ୍ଛେଦର ୨୨ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନ ବ୍ରହ୍ମାଙ୍କୁ କହିଲେ, ବ୍ରହ୍ମଜ୍ଞାନଠାରୁ ସବୁ ଗୁହ୍ୟତମ ଯେ ମୋର ଭଗବତ୍ ସ୍ୱରୂପ ଜ୍ଞାନ ତାହା ଅନୁଭବର ସହିତ ଗ୍ରହଣ କର ଏବଂ ତାହାଁଠାରୁ ଗୁହ୍ୟତମ ଯେ ପ୍ରେମଭକ୍ତି ଏବଂ ତାହାର ଶ୍ରବଣ କୀର୍ତ୍ତନାଦିରୂପ ସାଧନ ଏମାନ ମୁଁ ଦେଉଅଛି, ଗ୍ରହଣ କର । ୧୮ ଶ୍ଲୋକାର୍ଥ ।

ଉପରୋକ୍ତ ଶ୍ଲୋକରେ ଶ୍ରୀମନ୍ନାରାୟଣ ବ୍ରହ୍ମାଙ୍କୁ ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନ ତତ୍ତ୍ୱ ସୂତ୍ରରୂପରେ କହିଲେ । ଯଥା - ଜ୍ଞାନ, ବିଜ୍ଞାନ ମୋର ଅତଏବ ମୁଁ ସମ୍ବନ୍ଧ ତତ୍ତ୍ୱ; ତଦଙ୍ଗଦ୍ୱାରା ସାଧନ ଅଙ୍ଗ ବା ଅଭିଧେୟତତ୍ତ୍ୱ ଓ ସରହସ୍ୟଦ୍ୱାରା ପ୍ରେମ ବା ପ୍ରୟୋଜନତତ୍ତ୍ୱ ବ୍ୟକ୍ତ କଲେ । କିନ୍ତୁ ବ୍ରହ୍ମା ଜୀବ ହେତୁ ତାହା ବୁଝିବାକୁ ଅକ୍ଷମ ଜାଣି କୃପାପୂର୍ବ୍ବକ ଶକ୍ତିଯୁକ୍ତ କରି ଆଜ୍ଞା କଲେ ମୋର ସ୍ୱରୂପ, ମୋର ସ୍ଥିତି, ମୋର ଗୁଣ କର୍ମ ଷଡ଼ୈଶ୍ୱର୍ଯ୍ୟଶକ୍ତି ଯେପ୍ରକାର ତାହା ମୋର କୃପାରୁ ତୁମ୍ଭର ସ୍ଫୂର୍ତ୍ତି ହେଉ । ୮୯।୯୦।୯୧ ।

୧୯ଶ ଶ୍ଲୋକର ଅନ୍ୱୟ ଆଦିଲୀଳା ୧ମ ପରିଚ୍ଛେଦରେ ୨୩ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ମୁଁ ସ୍ୱରୂପତଃ ଯେପରି, ମୋର ଭାବ ( ଲକ୍ଷଣ ) ଯେରୂପ, ମୋର ରୂପ ଯେରୂପ ( ଶ୍ୟାମ ଚତୁର୍ଭୁଜାଦି ) ମୋର ଗୁଣ ( ଭକ୍ତ ବାତ୍ସଲ୍ୟାଦି ) ଯେରୂପ ମୋର କର୍ମ ( ଲୀଳା ) ଯେରୂପ ସେ ସମସ୍ତ ମୋର ଅନୁଗ୍ରହରୁ ତୁମ୍ଭର ଯଥାର୍ଥ ଅନୁଭବ ହେଉ । ଏତଦ୍ୱାରା ନିର୍ବିଶେଷବାଦ ଖଣ୍ଡନ କରା ହୋଇଅଛି । ୧୯ ଶ୍ଲୋକାର୍ଥ ।

ଲୟେ—ପ୍ରପଞ୍ଚ, ପ୍ରକୃତି ଓ ପୁରୁଷ ମୋର ଅନ୍ତର୍ଭୁକ୍ତ ଥାଆନ୍ତି । ୯୨ । ତାର—ପ୍ରପଞ୍ଚ, ପ୍ରକୃତି ଓ ପୁରୁଷ ମଧ୍ୟରେ । ୯୩ ।

ପ୍ରଳୟେର ଅବଶିଷ୍ଟ ଆମି ପୂର୍ଣ୍ଣ ହଇୟେ ।
ପ୍ରାକୃତ ପ୍ରପଞ୍ଚ ପାୟ ଆମାତେଇ ଲୟେ ।

ତଥାହି ( ଭାଃ ୨।୯।୩୨ )—

ଅହମେବାସମେବାଗ୍ରେ ନାନ୍ୟଦ୍ ଯତ୍ ସଦସତ୍ ପରମ୍ ।
ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟେତ ସୋଽସ୍ମ୍ୟହମ୍

'ଅହମେବ ଅହମେବ' ଶ୍ଲୋକେ ତିନବାର ।
ପୂର୍ଣ୍ଣୈଶ୍ୱର୍ଯ୍ୟ ଶ୍ରୀବିଗ୍ରହ-ସ୍ଥିତିର ନିର୍ଦ୍ଧାର । ୯୫ ।
ଶ୍ରୀବିଗ୍ରହ ଯେ ନା ମାନେ, ନିରାକାର ମାନେ ।
ତାରେ ତିରସ୍କରିବାରେ କୈଲ ନିର୍ଦ୍ଧାରଣେ । ୯୬ ।
ଏଇ ଶ୍ଲୋକେ କହେ ଜ୍ଞାନ-ବିଜ୍ଞାନ-ବିବେକ ।
ମାୟାକାର୍ଯ୍ୟ ଆମା ହୈତେ ଆମି ବ୍ୟତିରେକ ।
ଯୈଛେ ସୂର୍ଯ୍ୟାଭାବସ୍ଥାନେ ଭାସୟେ ଆଭାସ ।
ସୂର୍ଯ୍ୟବିନୁ ସ୍ୱତନ୍ତ୍ର ତାର ନା ହୟ ପ୍ରକାଶ । ୯୮ ।
ମାୟାତୀତ ହୈଲେ ହୟ ଆମାର ଅନୁଭବ ।
ଏଇ ସମ୍ବନ୍ଧତତ୍ତ୍ୱ କହିଲ, ଶୁନ ଆର ସବ । ୯୯ ।

ତଥାହି ( ଭାଃ ୨।୯।୩୩ )—

ଋତେଽର୍ଥଂ ଯତ୍ ପ୍ରତୀୟେତ ନ ପ୍ରତୀୟେତ ଚାତ୍ମନି
ତଦ୍ୱିଦ୍ୟାଦାତ୍ମନୋ ମାୟାଂ ଯଥାଭାସୋ ଯଥା ତମଃ

---

୨୦ ଶ୍ଲୋକର ଅନ୍ୱୟ ଆଦିଲୀଳା ୧ମ ପରିଚ୍ଛେଦର ୨୪ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଅଗ୍ରେ ( ସୃଷ୍ଟିର ପୂର୍ବରୁ ଅର୍ଥାତ୍ ମହା ପ୍ରଳୟକାଳରେ) ଏକମାତ୍ର ମୁଁ ଥିଲି; ସତ୍ (କାର୍ଯ୍ୟ) ଅସତ୍ ( କାରଣ ) ଏ ଉଭୟର ପର ( ଅତୀତ ଯେ ବ୍ରହ୍ମ ) ସେ ମୋଠାରୁ ଭିନ୍ନ ନୁହନ୍ତି, ସୃଷ୍ଟିର ପରେ ( ଜଗତର ସ୍ଥିତିକାଳରେ ) ମଧ୍ୟ ମୁଁ ଥାଏଁ । ଏହି ବିଶ୍ୱସଂସାର ମଧ୍ୟ ମୁଁ ଏବଂ ପ୍ରଳୟ ପର ଯାହା ଅବଶିଷ୍ଟ ରହେ ତାହା ମଧ୍ୟ ମୁଁ । ୨୧ ଶ୍ଲୋକାର୍ଥ ।

ଉପରୋକ୍ତ ଶ୍ଲୋକରେ ଅହଂ ଶବ୍ଦ ତିନି ଥର କହିବାଦ୍ୱାରା ଏହା ପ୍ରକାଶ ହେଉଅଛି । ସୃଷ୍ଟିର ପୂର୍ବରୁ ଜଗତର ସ୍ଥିତିକାଳରେ ଓ ଜଗତର ପ୍ରଳୟର ପର, ଶ୍ରୀଭଗବାନ ପୂର୍ଣ୍ଣୈଶ୍ୱର୍ଯ୍ୟବିଗ୍ରହରେ ଅବସ୍ଥାନ କରନ୍ତି ଅର୍ଥାତ୍ ଭଗବାନ ସର୍ବଦା ପୂର୍ଣ୍ଣୈଶ୍ୱର୍ଯ୍ୟ ବିଗ୍ରହରେ ଅବସ୍ଥାନ କରନ୍ତି ଏହାହିଁ ନିର୍ଦ୍ଧାରିତ ହୋଇଅଛି । ଏତଦ୍ୱାରା ନିରାକାରବାଦୀମାନଙ୍କୁ ତିରସ୍କାର କରା ଯାଇଅଛି । ୯୫।୯୬ ।

ବ୍ୟତିରେକ ମୁଖରେ ସମ୍ବନ୍ଧତତ୍ତ୍ୱ ବୁଝାଇବାକୁ ଯାଇ ମାୟାର ଲକ୍ଷଣ କହୁଅଛନ୍ତି— ମାୟା ମୋତେ ଅବଲମ୍ବନ କରି ତାଙ୍କର କାର୍ଯ୍ୟ କରନ୍ତି, କିନ୍ତୁ ମୁଁ ମାୟାର ଅତୀତ । ତାହାର ଉଦାହରଣ ଯଥା—ଯେଉଁ ସ୍ଥାନରେ ଖରା ପଡିଅଛି ସେଠାରେ ସୂର୍ଯ୍ୟ ସ୍ୱୟଂ ନ ଥିଲେ ସୁଦ୍ଧା ସେ ଖରା ସୂର୍ଯ୍ୟଙ୍କ ବିନା ସେଠାରେ ସ୍ୱତନ୍ତ୍ର ପ୍ରକାଶ ପାଇ ପାରେ ନାହିଁ ଅର୍ଥାତ୍ ଖରା ସୂର୍ଯ୍ୟଙ୍କୁ ଅବଲମ୍ବନ କରି ଆତ୍ମ ପ୍ରକାଶ କରେ । କିନ୍ତୁ ସୂର୍ଯ୍ୟ ଖରାର ଅତୀତ । ୯୭।୯୮ ।

ମାୟାର ଆବରଣରୁ ଅତୀତ ନ ହେଲେ ଭଗବତ ଅନୁଭବ ହୁଏ ନାହିଁ । ୯୯ ।

୨୧ଶ ଶ୍ଲୋକର ଅନ୍ୱୟ ଆଦିଲୀଳା ୧ମ ପରିଚ୍ଛେଦର ୨୫ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ପରମପୁରୁଷାର୍ଥଭୂତ ଅର୍ଥାତ୍ ପରମାତ୍ମା (ମୁଁ) ବ୍ୟତୀତ ଯାହା ପ୍ରତୀତ ହୁଏ, ଅଥଚ ମୋର ବ୍ୟତିରେକେ ଯାହା ସ୍ୱତଃ ପ୍ରତୀତ ହୁଏ ନାହିଁ, ତାହାକୁ ମୋର ମାୟା ବୋଲି ଜାଣିବ । ଏହି ମାୟା ଉପମାଦ୍ୱାରା ଆଭାସ ଓ ଅନ୍ଧକାର ସଦୃଶ ଅଟେ । ୨୧ ଶ୍ଲୋକାର୍ଥ ।

ଅଭିଧେୟ-ସାଧନଭକ୍ତିର ଶୁନହ ବିଚାର ।
ସର୍ବଜନ-ଦେଶ-କାଳ-ଦଶାତେ ବ୍ୟାପ୍ତି ଯାର ॥
ଧର୍ମାଦିବିଷୟେ ଯୈଛେ ଏ ଚାରିବିଚାର ।
ସାଧନଭକ୍ତି ଏଇ-ଚାରି-ବିଚାରେର ପାର ॥ ୧୦୧ ॥
ସର୍ବଦେଶେ କାଳେ ଦଶାୟ ଜନେର କର୍ତ୍ତବ୍ୟ
ଗୁରୁପାଶେ ସେଇ ଭକ୍ତି ପ୍ରଷ୍ଟବ୍ୟ ଶ୍ରୋତବ୍ୟ ॥

ତଥାହି (ଭାଃ ୨।୯।୩୫)—

ଏତାବଦେବ ଜିଜ୍ଞାସ୍ୟଂ ତତ୍ତ୍ୱଜିଜ୍ଞାସୁନାତ୍ମନଃ ।
ଅନ୍ୱୟବ୍ୟତିରେକାଭ୍ୟାଂ ଯତ୍ ସ୍ୟାତ୍ ସର୍ବତ୍ର ସର୍ବଦା ।୨୨।

ଆମାତେ ଯେ ପ୍ରୀତି—ସେଇ ପ୍ରେମ 'ପ୍ରୟୋଜନ' ।
କାର୍ଯ୍ୟଦ୍ୱାରେ କହି ତାର 'ସ୍ୱରୂପଲକ୍ଷଣ' ॥
ପଞ୍ଚଭୂତ ଯୈଛେ ଭୂତେର ଭିତର-ବାହିରେ ।
ଭକ୍ତଗଣେ ସ୍ଫୁରି ଆମି ବାହିରେ-ଅନ୍ତରେ ॥

ବେଦୋକ୍ତ ଅଭିଧେୟ ତତ୍ତ୍ୱ ତାହା ଯେ ସାଧନଭକ୍ତି ଏହା ବୁଝାଉଅଛନ୍ତି— ଯାହା ସର୍ବଜନ, ସର୍ବଦେଶ, ସର୍ବକାଳ ଓ ସର୍ବଅବସ୍ଥାକୁ ବ୍ୟାପି ରହିଅଛି ଅଥଚ ଧର୍ମ ଅର୍ଥ କାମ ମୋକ୍ଷର ସର୍ବଜନାଦି ଉପରୋକ୍ତ ଚାରିଙ୍କର ବିଚାରାଧୀନ ନୁହେ ତାହା ସାଧନଭକ୍ତି । ସର୍ବଦେଶ, ସର୍ବକାଳ ସର୍ବ ଅବସ୍ଥାରେ ମନୁଷ୍ୟର କର୍ତ୍ତବ୍ୟ ଏହି ଯେ ସେ ଗୁରୁଙ୍କୁ ଭକ୍ତିର ବିଷୟ ପ୍ରଶ୍ନ କରିବେ ଓ ଉପଦେଶ ଶ୍ରବଣ କରିବେ । ଏହାର ଭାବ ଏହି ଯେ ଧର୍ମାଦିସାଧନ ବିଷୟରେ ଜନଭେଦ ରହିଅଛି ଅର୍ଥାତ୍ ବ୍ରାହ୍ମଣ ଏହି ଧର୍ମ ଆଚରଣ କରିବେ ଓ ଶୂଦ୍ର ଏହି ଧର୍ମ ଆଚରଣ କରିବେ, ସନ୍ନ୍ୟାସୀ ଏହି ଧର୍ମ ଆଚରଣ କରିବେ, ଗୃହୀ ଏହି ଧର୍ମ ଆଚରଣ କରିବେ ଇତ୍ୟାଦି । ଦେଶଭେଦ ରହିଅଛି । ଯଥା—ଶୌଚ ପ୍ରଦେଶରେ ଏହି ଧର୍ମ ଆଚରଣୀୟ ଓ ଅଶୌଚ ପ୍ରଦେଶରେ ନୁହେ କିମ୍ବା ଗୋମୟ-ଯୁକ୍ତ ନିର୍ମଳ ସ୍ଥାନରେ ଏହା କରଣୀୟ, ଅପବିତ୍ର ସ୍ଥାନରେ ନୁହେ, କାଳଭେଦ ରହିଅଛି । ଯଥା— ବସନ୍ତକାଳରେ ଏହା କରଣୀୟ, ବର୍ଷାକାଳରେ ନୁହେ କିମ୍ବା ବ୍ରାହ୍ମ ମୁହୂର୍ତ୍ତରେ ଏହା କରଣୀୟ, ରାତ୍ରି ମଧ୍ୟଭାଗରେ ନୁହେ । ଦଶାଭେଦ ରହିଅଛି— ବାଲ୍ୟ ଅବସ୍ଥାରେ ଏହା କରଣୀୟ । ଯୌବନା-ବସ୍ଥାରେ ନୁହେ କିମ୍ବା ଦେହେ ସୁସ୍ଥତାରେ ଏହା କର୍ତ୍ତବ୍ୟ, ରୁଗ୍ଣାବସ୍ଥାରେ ନୁହେ କିନ୍ତୁ ଶ୍ରବଣ, କୀର୍ତ୍ତନାଦି ଭକ୍ତିସାଧନ ସର୍ବଜନ, ସର୍ବ କାଳ, ସର୍ବ ଦେଶ, ସର୍ବ ଅବସ୍ଥାରେ କରଣୀୟ ହେତୁ ଏହି ଚାରିକୁ ସେ ବ୍ୟାପି ରହିଅଛନ୍ତି ଅଥଚ ଏହି ଚାରିଙ୍କର ଅଧୀନ ସେ ନୁହନ୍ତି ଅର୍ଥାତ୍ ବ୍ରାହ୍ମଣ, ଶୂଦ୍ର ବା ଅନ୍ୟ କାହିଁ ଶ୍ରୀନାମକୀର୍ତ୍ତନ ଅବାଧରେ କରି ପାରନ୍ତି । ଶ୍ରୀହରିକୀର୍ତ୍ତନ ଶୌଚ ଅଶୌଚ ଦେଶରେ, ଶୌଚ ଅଶୌଚ ସ୍ଥାନରେ, ଶୌଚ ଅଶୌଚ କାଳରେ ଏବଂ ବାଲ୍ୟ ରୋଗଗ୍ରସ୍ତାଦି ଏବଂ ଅନ୍ୟ ଜରାଦି ସର୍ବ ଅବସ୍ଥାରେ କରାଯାଇ ପାରେ । ଏହି ସାଧନଭକ୍ତି ଶ୍ରୀଗୁରୁ ଚରଣାଶ୍ରୟରେ ଲବ୍ଧ ହୁଏ । ୧୦୦।୧୦୧।୧୦୨।

୨୨ ଶ୍ଳୋକର ଅନ୍ୱୟ ଅନୁବାଦ ୧ମ ପରିଚ୍ଛେଦର ୫୬ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଯେଉଁ ଏକବସ୍ତୁ ( ପରମତତ୍ତ୍ୱବସ୍ତୁ ) ସର୍ବ ଦେଶରେ, କାଳରେ, ବିଧି ଓ ନିଷେଧ ଦ୍ୱାରା ନିରୂପିତ ହୁଅନ୍ତି, ମୋହର ତତ୍ତ୍ୱ ଅନୁଭବ ଅଭିଳାଷୀ ବ୍ୟକ୍ତି ଶ୍ରୀଗୁରୁଙ୍କ ଆଶ୍ରୟରେ ତାହା ଶିକ୍ଷା କରିବେ ଅର୍ଥାତ୍ ଯେଉଁ ବ୍ୟକ୍ତି ଶ୍ରୀଭଗବାନଙ୍କର ସ୍ୱରୂପ ଜାଣିବାକୁ ଓ ଅନୁଭବ କରିବାକୁ ଇଚ୍ଛୁକ ସେ ଶ୍ରୀଗୁରୁଙ୍କ ଚରଣାଶ୍ରୟ କରି ତାଙ୍କଠାରୁ ସେ ବିଷୟ ଶିକ୍ଷା କରିବେ । ୨୨ ଶ୍ଳୋକାର୍ଥ ।

ଯେପରି କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ, ସ୍ଥାବର ଜଙ୍ଗମାତ୍ମିକା ଜୀବସୃଷ୍ଟିର ଉପାଦାନ ହୋଇ ସେମାନଙ୍କର ବାହାରେ ମଧ୍ୟ ବିଦ୍ୟମାନ ହୋଇଅଛନ୍ତି । ଯଥା— ଘଟାକାଶ, ମହା-କାଶ ଇତ୍ୟାଦି ସେପରି ମୁଁ ଲୋକାତୀତ ବୈକୁଣ୍ଠଧାମରେ ଅର୍ଥାତ୍ ସୃଷ୍ଟିର ବାହାରେ ରହି ମଧ୍ୟ ଭକ୍ତମାନଙ୍କ ହୃଦୟରେ ସ୍ଫୁରିତ ହୁଏଁ । ୧୦୪ ।

ତଥାହି (ଭାଃ ୭।୧।୩୪)—

ଯଥା ମହାନ୍ତି ଭୂତାନି ଭୂତେଷୂଚ୍ଚାବଚେଷ୍ୱନୁ ।
ପ୍ରବିଷ୍ଟାନ୍ୟପ୍ରବିଷ୍ଟାନି ତଥା ତେଷୁ
ନତେଷ୍ୱହମ୍ । ୨୩ ।

ଭକ୍ତ ଆମା ପ୍ରେମେ ବାନ୍ଧିଯାଛେ ହୃଦୟ
ଭିତରେ ।
ଯାହାଁ ନେତ୍ର ପଡ଼େ, ତାହାଁ ଦେଖୟେ
ଆମାରେ । ୧୦୫ ।

ତଥାହି ( ଭାଃ ୧୧।୨।୫୫ )—
ବିସୃଜତି ହୃଦୟଂ ନ ଯସ୍ୟ ସାକ୍ଷା-
ଦ୍ଧରିରବଶାଭିହିତୋଽପ୍ୟଘୌଘନାଶଃ ।
ପ୍ରଣୟରସନୟା ଧୃତାଙ୍ଘ୍ରିପଦ୍ମଃ,
ସ ଭବତି ଭାଗବତପ୍ରଧାନ ଉକ୍ତଃ । ୨୪ ।

ତଥାହି (ଭାଃ ୧୧।୨।୪୫)—
ସର୍ବଭୂତେଷୁ ଯଃ ପଶ୍ୟେଦ୍ଭଗବଦ୍ଭାବମାତ୍ମନଃ ।
ଭୂତାନି ଭଗବତ୍ୟାତ୍ମନ୍ୟେଷ
ଭାଗବତୋତ୍ତମଃ । ୨୫ ।

୨୩ ଶ୍ଳୋକର ଅନ୍ୱୟ ଆଦିଲୀଳା ୧ମ ପରିଚ୍ଛେଦର ୨୬ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଅବଶାତ୍ ଅଭିହିତଃ ଅପି ଅଘୌଘନାଶଃ ହରିଃ (ଏବ) ସାକ୍ଷାତ୍ ଯସ୍ୟ ହୃଦୟଂ ନ ବିସୃଜତି (ମୁଞ୍ଚତି) ପ୍ରଣୟରସନୟା ଧୃତାଙ୍ଘ୍ରିପଦ୍ମଃ ସଃ ଭାଗବତପ୍ରଧାନଃ (ଇତି) ଉକ୍ତଃ ଭବତି । ୨୪ ଶ୍ଳୋକଃ ।

୨୫ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୮ମ ପରିଚ୍ଛେଦର ୫୨ ଶ୍ଳୋକରେ ଦ୍ରଷ୍ଟବ୍ୟ ।

---

ଯେପରି ମହାଭୂତମାନେ ( ପଞ୍ଚ ମହାଭୂତ ) ସ୍ୱତନ୍ତ୍ରଭାବରେ ବିଦ୍ୟମାନ ଥିଲେ ହେଁ ସର୍ବ ଶରୀରରେ ବିଦ୍ୟମାନ ଥାନ୍ତି, ମୁଁ ( ଶ୍ରୀଭଗବାନ ) ସେହିପରି ମୋର ସ୍ୱରୂପରେ ବର୍ତ୍ତମାନ ଥାଇ ସୁଦ୍ଧା ଭୂତ ଭୌତିକ ଦେହରେ ଅନୁପ୍ରବିଷ୍ଟ ଥାଏ ଅର୍ଥାତ୍ ଅନ୍ତର୍ଯାମୀରୂପରେ ବିଦ୍ୟମାନ ଥାଏ । ସେମାନଙ୍କ ମଧ୍ୟରେ ଯେଉଁମାନେ ମୋଠାରେ ପ୍ରଣତ ଅର୍ଥାତ୍ ମୋର ଭକ୍ତ ସେମାନଙ୍କୁ ମୁଁ ପ୍ରକଟରୂପରେ ବାହାରେ ଦର୍ଶନ ଦିଏ ଏବଂ ସେମାନଙ୍କ ଅନ୍ତଃକରଣରେ ମଧ୍ୟ ଦର୍ଶନ ଦିଏଁ । ୨୩ ଶ୍ଳୋକାର୍ଥ ।

ଭକ୍ତ ହୃଦୟରେ ମୁଁ ଆବଦ୍ଧ ଥାଏ ଏବଂ ଭକ୍ତ ପ୍ରେମବଶତଃ ସର୍ବତ୍ର ସ୍ଥାବର ଓ ଜଙ୍ଗମରେ ହୃଦୟସ୍ଥ ଅଭୀଷ୍ଟଦେବଙ୍କୁ ଦର୍ଶନ କରେ । ୧୦୫ ।

ଶ୍ରୀଜନକଙ୍କୁ ଶ୍ରୀହବି କହୁଅଛନ୍ତି—ଯେକୌଣସିରୂପେ ଯାହାଙ୍କର ନାମ ଉଚ୍ଚାରିତ ହେଲେ ଜୀବର ସମସ୍ତ ପାପ ଦୂର ହୁଏ, ସେହି ହରି ସ୍ୱୟଂ ଯାହାଙ୍କ ହୃଦୟ ତ୍ୟାଗ କରନ୍ତି ନାହିଁ ଅର୍ଥାତ୍ ପ୍ରେମରଜ୍ଜୁଦ୍ୱାରା ବଦ୍ଧପାଦ ହୋଇ ଅବସ୍ଥିତ କରନ୍ତି, ସେହି ବ୍ୟକ୍ତି ଭାଗବତ ପ୍ରଧାନ ବା ଶ୍ରେଷ୍ଠ ଭକ୍ତ । ୨୪ ଶ୍ଳୋକାର୍ଥ ।

ଶ୍ରୀଜନକଙ୍କୁ ଶ୍ରୀହବି କହୁଅଛନ୍ତି—ଯେଉଁ ବ୍ୟକ୍ତି ସ୍ଥାବର, ଜଙ୍ଗମାଦି ସମସ୍ତ ପଦାର୍ଥରେ ଅନ୍ତର୍ଯାମୀରୂପେ ଶ୍ରୀହରିଙ୍କର ଜଡ଼ିତସ୍ଥ ଐଶ୍ୱର୍ଯ୍ୟ ଦର୍ଶନ କରନ୍ତି ଅର୍ଥାତ୍ ପଦାର୍ଥବିଶେଷର ତାରତମ୍ୟ ଦେଖନ୍ତି ନାହିଁ ଏବଂ ଶ୍ରୀହରିଙ୍କଠାରେ ସମସ୍ତ ପଦାର୍ଥ ଦେଖନ୍ତି ସେ ପରମ ଭାଗବତ । ୨୫ ଶ୍ଳୋକାର୍ଥ ।

ତଥାହି (ଭାଃ ୧୦।୩୦।୪) -

ଗାୟନ୍ତ୍ୟ ଉଚ୍ଚୈରମୁମେବ ସଂହତା,
ବିଚିକ୍ୟୁରୁନ୍ମତ୍ତକବଦ୍ବନାଦ୍ବନମ୍ ।
ପପ୍ରଚ୍ଛୁରାକାଶବଦନ୍ତରଂ ବହି-
ର୍ଭୂତେଷୁ ସନ୍ତଂ ପୁରୁଷଂ ବନସ୍ପତୀନ୍ । ୨୬ ।

ଅତଏବ ଭାଗବତେ ଏଇ ତିନ କୟ ।
ସମ୍ବନ୍ଧ, ଅଭିଧେୟ, ପ୍ରୟୋଜନମୟ । ୧୦୬ ।

ତଥାହି (ଭାଃ ୧।୨।୧୧)—
ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍ଜ୍ଞାନମଦ୍ୱୟମ୍ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି
ଶବ୍ଦ୍ୟତେ । ୨୭

ତଥାହି (ଭାଃ ୩।୨।୧୩)—
ଭଗବାନେକ ଆସେଦମଗ୍ର ଆତ୍ମାତ୍ମନାଂ ବିଭୁଃ ।
ଆତ୍ମେଚ୍ଛାନୁଗତାବାତ୍ମା ନାନାମତ୍ୟୁପ
ଲକ୍ଷଣଃ । ୨୮ ।

---

ସଂହତାଃ (ମିଳିତାଃ) ଉଚ୍ଚୈଃ ଗାୟନ୍ତ୍ୟଃ ବନାତ୍ ବନଂ (ଗଚ୍ଛନ୍ତ୍ୟଃ) ଅମୁଂ ଶ୍ରୀକୃଷ୍ଣଂ ଏବ ଉନ୍ମତ୍ତକବତ୍ ବିଚିକ୍ୟୁଃ ( ଅମୃଗୟନ୍ ) ଆକାଶବତ ଭୂତେଷୁ ( ଚରାଚରେଷୁ ) ବହିଃ ଅନ୍ତରଂ (ଚ ବ୍ୟାପ୍ୟ) ସନ୍ତଂ ( ବର୍ତ୍ତମାନଂ ଅତଏବ ) ପୁରୁଷଂ ( ପୂର୍ଣ୍ଣମପି ଶ୍ରୀକୃଷ୍ଣଂ ) ବନସ୍ପତୀନ୍ ପପ୍ରଚ୍ଛୁଃ । ୨୬ ଶ୍ଲୋକଃ ।

୨୭ ଶ୍ଲୋକର ଅନ୍ୱୟ ଅଦିଲୀଳା ୨ୟ ପରିଚ୍ଛେଦର ୧୧ଶ ଶ୍ଲୋକରେ ଦ୍ରଷ୍ଟବ୍ୟ ।

ଅଗ୍ରେ ( ସୃଷ୍ଟେଃ ପୂର୍ବଂ ) ଆତ୍ମେଚ୍ଛାନୁଗତୌ ( ଆତ୍ମେଚ୍ଛା ସୃଷ୍ଟ୍ୟାଦିଚ୍ଛା ତସ୍ୟା ଅନୁଗତୌ ଲୀନତାୟାଂ ସତ୍ୟାଂ )· ଇଦଂ ( ବିଶ୍ୱଂପୁରୁଷାଦପାର୍ଥିବ ପର୍ଯ୍ୟନ୍ତଂ ତଦାନୀଂ ଏକାକାରାସ୍ଥିତେନ ଭଗବତା ସହୈକୀଭୂୟାସୀତ୍ ଯତଃ ) ଆତ୍ମାତ୍ମନାଂ ( ଆତ୍ମନାଂ ଶୁଦ୍ଧ ଜୀବାନାମପି ରଶ୍ମିସ୍ଥାନୀୟାନାଂ ଆତ୍ମା ମଣ୍ଡଳ ସ୍ଥାନୀୟଂ ପରମସ୍ୱରୂପଂ) ବିଭୁଃ ( ସ୍ୱାମୀ ) ଏକ (ଏବ) ଆତ୍ମା (ସ୍ୱୟଂ ସିଦ୍ଧସ୍ୱରୂପଃ) ନାନା ମତ୍ୟୁପଲକ୍ଷଣଃ ( ବୈକୁଣ୍ଠାଦି ନାନା ମତ୍ୟାପି ସଏବୈକ ଉପଲକ୍ଷିତ ଇତି ) ଭଗବାନ୍ ଆସ ( ଆସୀତ୍) ୨୮ ଶ୍ଲୋକଃ ।

---

ଶ୍ରୀଶୁକଦେବ କହୁଅଛନ୍ତି – ହେ ମହାରାଜ୍ ! ଗୋପୀମାନେ ସମବେତ ହୋଇ ଉଚ୍ଚ-ସ୍ୱରରେ ଶ୍ରୀକୃଷ୍ଣଙ୍କର ଲୀଳାଗାନ କରି କରି ଏକ ବନରୁ ଅନ୍ୟ ବନକୁ ଯାଇ ଉନ୍ମତ୍ତପରି ତାହାଙ୍କୁ ଅନ୍ୱେଷଣ କଲେ । ଯେ ପୂର୍ଣ୍ଣପୁରୁଷ ଶ୍ରୀକୃଷ୍ଣ ଆକାଶତୁଲ୍ୟ ଭୂତମାନଙ୍କର ଅନ୍ତରରେ ଓ ବାହାରରେ ଅବସ୍ଥିତ ତାହାଙ୍କର କଥା ବୃକ୍ଷମାନଙ୍କ ନିକଟ ପ୍ରଶ୍ନ କରିବାକୁ ଲାଗିଲେ । ୨୬ଶ ଶ୍ଲୋକାର୍ଥ ।

ଶ୍ରୀମଦ୍ଭାଗବତର ସ୍ୱରୂପ ଚତୁଃଶ୍ଲୋକୀରେ ସମ୍ବନ୍ଧ, ଅଭିଧେୟ, ପ୍ରୟୋଜନ ତତ୍ତ୍ୱର ସୂତ୍ରାର୍ଥ ବୁଝାଇ ଶ୍ରୀମଦ୍ଭାଗବତର ଅଖ୍ୟାୟିକାରେ ବର୍ଣ୍ଣିତ ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନତତ୍ତ୍ୱର ବିଷୟ କହୁଅଛନ୍ତି । ୧୦୬ ।

ତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଅଦ୍ୱୟ ( ଦ୍ୱିତୀୟରହିତ ) ଯେ ଜ୍ଞାନ ତାହାକୁ ତତ୍ତ୍ୱ ବୋଲି ନିର୍ଦ୍ଦେଶ କରନ୍ତି । ଏହି ତତ୍ତ୍ୱକୁ କେହି କେହି ବ୍ରହ୍ମ, କେହି କେହି ପରମାତ୍ମା, ଓ କେହି କେହି ଭଗବାନ ବୋଲି କହନ୍ତି । ୨୭ଶ ଶ୍ଲୋକାର୍ଥ ।

ଶ୍ରୀମୈତ୍ରେୟ ମୁନି ଶ୍ରୀବିଦୁରଙ୍କୁ କହୁଅଛନ୍ତି—ଶୁଦ୍ଧଜୀବମାନଙ୍କର ପରମସ୍ୱରୂପ ସମସ୍ତଙ୍କର ସ୍ୱାମୀ, ସ୍ୱୟଂସିଦ୍ଧରୂପ ଏବଂ ବୈକୁଣ୍ଠାଦି ନାନା ବୈଭବଦ୍ୱାରା ଏକମାତ୍ର ଉପଲକ୍ଷିତ ଏକ-ମାତ୍ର ଭଗବାନ୍ ସୃଷ୍ଟି ପୂର୍ବେ ଥିଲେ । ସେତେବେଳେ ସୃଷ୍ଟ୍ୟାଦି ଇଚ୍ଛା ତାହାଙ୍କଠାରେ ଲୀନ ଥିଲା ଓ ପୁରୁଷଠାରୁ ପାର୍ଥିବାଦି ପର୍ଯ୍ୟନ୍ତ ଏହି ବିଶ୍ୱ ତାହାଙ୍କ ସହିତ ଏକୀଭୂତ ହୋଇ ରହିଥିଲା । ୨୮ଶ ଶ୍ଲୋକାର୍ଥ ।

ତଥାହି ( ଭାଃ ୧।୩।୨୮ )—
ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରାରିବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ । ୨୯ ।
ଏଇ ତ 'ସମ୍ବନ୍ଧ', ଶୁନ 'ଅଭିଧେୟ' ଭକ୍ତି ।
ଭାଗବତେ ପ୍ରତି ଶ୍ଳୋକେ ବ୍ୟାପେ ଯାର ସ୍ଥିତି ।
ତଥାହି (ଭାଃ ୧୧।୧୪।୨୧) —
ଭକ୍ତ୍ୟାହମେକୟା ଗ୍ରାହ୍ୟଃ ଶ୍ରଦ୍ଧୟାତ୍ମା ପ୍ରିୟଃ ସତାମ୍ ।
ଭକ୍ତିଃ ପୁନାତି ମନ୍ନିଷ୍ଠା ଶ୍ୱପାକାନପି ସମ୍ଭବାତ୍ । ୩୦ ।

ତଥାହି ( ଭାଃ—୧୧।୧୪।୨୦ )—
ନ ସାଧୟତି ମାଂ ଯୋଗୋ ନ ସାଂଖ୍ୟଂ ଧର୍ମ ଉଦ୍ଧବ ।
ନ ସ୍ୱାଧ୍ୟାୟସ୍ତପସ୍ତ୍ୟାଗୋ ଯଥା ଭକ୍ତିର୍ମମୋର୍ଜ୍ଜିତା । ୩୧ ।

ତଥାହି ( ଭାଃ ୧୧।୨।୩୭ ) —
ଭୟଂ ଦ୍ୱିତୀୟାଭିନିବେଶତଃ ସ୍ୟାଦ୍,
ଈଶାଦପେତସ୍ୟ ବିପର୍ଯ୍ୟୟୋଽସ୍ମୃତିଃ ।
ତନ୍ମାୟୟାତୋ ବୁଧ ଆଭଜେତ୍ତଂ,
ଭକ୍ତ୍ୟୈକୟେଶଂ ଗୁରୁଦେବତାତ୍ମା । ୩୨ ।

---

୨୯ ଶ ଶ୍ଳୋକର ଅନ୍ୱୟ ଆଦିଲୀଳା ୨ୟ ପରିଚ୍ଛେଦର ୧୨ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଅଦ୍ୱୟ ( ଦ୍ୱିତୀୟରହିତ ) ଯେ ଜ୍ଞାନ ତାହାକୁ ତତ୍ତ୍ୱ ବୋଲି ନିର୍ଦ୍ଦେଶ କରନ୍ତି । ଏହି ତତ୍ତ୍ୱକୁ କେହି କେହି ବ୍ରହ୍ମ, କେହି କେହି ପରମାତ୍ମା ଓ କେହି କେହି ଭଗବାନ ବୋଲି କହନ୍ତି । ୨୯ଶ ଶ୍ଳୋକାର୍ଥ ।

ଶୁନ—ଅଭିଧେୟ ତତ୍ତ୍ୱ ଅର୍ଥାତ୍ ଭକ୍ତିର ବିଷୟ ଶ୍ରୀମଦ୍ଭାଗବତର ପ୍ରତ୍ୟେକ ଶ୍ଳୋକରେ ଥିଲେହେଁ ଉଦାହରଣସ୍ୱରୂପ ନିମ୍ନଲିଖିତ ୩ ଶ୍ଳୋକ ଦେଖାଇଅଛନ୍ତି । ୧୦୨ ।

୩୦ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୦ଶ ପରିଚ୍ଛେଦର ୧୨ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି—ସାଧୁମାନଙ୍କର ଅତି ପ୍ରିୟ ଆତ୍ମସ୍ୱରୂପ ଯେ ମୁଁ (ସେହି ମୁଁ ) ଏକ-ମାତ୍ର ଶ୍ରଦ୍ଧାପୂର୍ବିକାଭକ୍ତିଦ୍ୱାରା କ୍ରମେ ବଶୀଭୂତ ହୁଏ । ମୋଠାରେ ଦୃଢ଼ାଭକ୍ତି ଚଣ୍ଡାଳମାନଙ୍କୁ ଜାତି ଦୋଷରୁ ସୁଦ୍ଧା ପବିତ୍ର କରେ । ୩୦ଶ ଶ୍ଳୋକାର୍ଥ ।

୩୧ ଶ୍ଳୋକର ଅନ୍ୱୟ ଆଦିଲୀଳା ୧୨ଶ ପରିଚ୍ଛେଦର ୭ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣ କହୁଅଛନ୍ତି—ହେ ଉଦ୍ଧବ ! ମୋ ପ୍ରତି ସାଧନାତ୍ମିକାଭକ୍ତି ଯେପରି ମୋତେ ବଶୀଭୂତ କରେ ସେପରି ଅଷ୍ଟାଙ୍ଗଯୋଗ, ସାଂଖ୍ୟଜ୍ଞାନ, ଧର୍ମ, ବେଦାଧ୍ୟୟନ, ତପସ୍ୟା ଓ ସନ୍ନ୍ୟାସ କରି ପାରେ ନାହିଁ । ୩୧ଶ ଶ୍ଳୋକାର୍ଥ ।

୩୨ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୦ଶ ପରିଚ୍ଛେଦର ୧୪ଶ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଜନକ ପ୍ରତି ଶ୍ରୀ କବିବାକ୍ୟ—ଭଗବତ ବହିର୍ମୁଖଜୀବର ସ୍ୱରୂପ ବିସ୍ମୃତି ଜନ୍ମେ ଏବଂ ସେହିହେତୁ ଲୋକର ଆତ୍ମାଭିମାନ ହୁଏ, ଦ୍ୱିତୀୟ ବସ୍ତୁରେ ( ଦେହରେ ) ଅଭିନିବେଶ ହେତୁ ଭୟ ଜନ୍ମେ । ଅତଏବ ଜ୍ଞାନୀବ୍ୟକ୍ତି ଗୁରୁଙ୍କୁ ଈଶ୍ୱର ଓ ଶ୍ରେଷ୍ଠଦୃଷ୍ଟି ପୂର୍ବକ ଶ୍ରୀଗୁରୁ ପଦାଶ୍ରୟରେ ଐକାନ୍ତିକ ଭକ୍ତିରେ ଶ୍ରୀଭଗବାନଙ୍କୁ ଭଜନ କରିବେ । ୩୨ଶ ଶ୍ଳୋକାର୍ଥ ।

ଏବେ ଶୁନ ପ୍ରେମ, ଯେଇ ମୂଳ ପ୍ରୟୋଜନ ।
ପୁଲକାଶ୍ରୁ ନୃତ୍ୟ ଗୀତ ଯାହାର ଲକ୍ଷଣ । ୧୦୮ ।

ତଥାହି (ଭାଃ ୧୧।୩।୩୨)—

ସ୍ମରନ୍ତଃ ସ୍ମାରୟନ୍ତଶ୍ଚ ମିଥୋଽଘୌଘହରଂ ହରିମ୍ ।
ଭକ୍ତ୍ୟା ସଞ୍ଜାତୟା ଭକ୍ତ୍ୟା ବିଭ୍ରତ୍ୟୁତ୍ପୁଲକାଂ ତନୁମ୍ ॥

ତଥାହି ( ଭାଃ ୧୧।୨।୪୦ )—

ଏବଂ ବ୍ରତଃ ସ୍ୱପ୍ରିୟନାମକୀର୍ତ୍ତ୍ୟା, ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ ।
ହସତ୍ୟଥୋ ରୋଦିତି ରୌତି ଗାୟ-ତ୍ୟୁନ୍ମାଦବନ୍ନୃତ୍ୟତି ଲୋକବାହ୍ୟଃ । ୩୪ ।

ଅତଏବ ଭାଗବତ ସୂତ୍ରେର ଅର୍ଥରୂପ ।
ନିଜକୃତ ସୂତ୍ରେର ନିଜଭାଷ୍ୟସ୍ୱରୂପ । ୧୦୯ ।

---

ଏବଂ ଭକ୍ତ୍ୟା ( ସାଧନଭକ୍ତ୍ୟା ) ସଞ୍ଜାତୟା ( ପ୍ରେମଲକ୍ଷଣୟା ) ଭକ୍ତ୍ୟା ଅଘୌଘ ହରଂ ହରିଂ ସ୍ମରନ୍ତଃ ମିଥଃ ସ୍ମାରୟନ୍ତଃ ଚ ଉତ୍ପୁଲକଂ ( ରୋମୋଦ୍ଗମଯୁକ୍ତାଂ ) ତନୁଂ ବିଭ୍ରତି ୩୩ଶ ଶ୍ଳୋକଃ ।

---

ଶ୍ରୀମଦ୍ଭାଗବତରୁ ସମ୍ବନ୍ଧ ଓ ଅଭିଧେୟଲକ୍ଷଣ ଶ୍ଳୋକମାନ ଦର୍ଶାଇ ପ୍ରୟୋଜନ ତତ୍ତ୍ୱର ଲକ୍ଷଣଯୁକ୍ତ ଶ୍ଳୋକମାନ ଦର୍ଶାଉଅଛନ୍ତି । ୧୦୮ ।

ମୂଳ ପ୍ରୟୋଜନ— ପ୍ରଧାନ ପ୍ରୟୋଜନ ଅର୍ଥାତ୍ ପ୍ରେମ ପଞ୍ଚମ ପୁରୁଷାର୍ଥ ହେତୁ ଇତର ପୁରୁଷାର୍ଥ ଅପେକ୍ଷା ଶ୍ରେଷ୍ଠ ହେଣୁ ମୂଳ ପ୍ରୟୋଜନ । ଧର୍ମାଦି ଇତରପୁରୁଷାର୍ଥ ଗୌଣ ପ୍ରୟୋଜନ । ଯାହାର—ପ୍ରେମର । ୧୦୮ ।

ଶ୍ରୀପ୍ରବୁଦ୍ଧ ଶ୍ରୀଜନକଙ୍କୁ କହୁଅଛନ୍ତି— ସର୍ବପାପବିନାଶକ ହରିଙ୍କୁ ନିଜେ ସ୍ମରଣ କରି ଓ ଅପରକୁ ସ୍ମରଣ କରାଇ ସାଧନଭକ୍ତି ଦ୍ୱାରା ଲବ୍ଧ ପ୍ରେମଲକ୍ଷଣାଭକ୍ତି ଦ୍ୱାରା ଭକ୍ତ ପୁଲକିତ ତନୁ ଧାରଣ କରନ୍ତି । ୩୩ଶ ଶ୍ଳୋକାର୍ଥ ।

୩୪ ଶ୍ଳୋକର ଅନ୍ୱୟ ଆଦିଲୀଳା ୭ମ ପରିଚ୍ଛେଦର ୪ର୍ଥ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଜନକମହାରାଜାଙ୍କୁ ନବଯୋଗେନ୍ଦ୍ରଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀକବି କହୁଅଛନ୍ତି—ହେ ମହାତ୍ମନ୍ ! ଏହିପ୍ରକାରେ ଶ୍ରୀହରିଭକ୍ତଜନ ଶ୍ରୀକୃଷ୍ଣଙ୍କ ନାମମାନଙ୍କ ମଧ୍ୟରୁ ନିଜର ପ୍ରିୟ ନାମମାନ କୀର୍ତ୍ତନାଦିଦ୍ୱାରା ତାଙ୍କ ଚରଣରେ ମହାପ୍ରେମ ଉଦୟମାତ୍ର ଚିତ୍ତଦ୍ରବୀଭୂତବଶତଃ ସେ ଲୋକାପେକ୍ଷା ରହିତ ଉନ୍ମାଦବତ୍ କେତେବେଳେ ହାସ୍ୟ, କେତେବେଳେ ରୋଦନ, କେତେବେଳେ ଚିତ୍କାର, କେତେବେଳେ ଗାନ, କେତେବେଳେ ବା ନୃତ୍ୟ କରନ୍ତି ଅର୍ଥାତ୍ ଶ୍ରୀକୃଷ୍ଣପ୍ରେମ-ଲାଭରେ ଭକ୍ତଙ୍କର ଏହି ଦଶା ହୁଏ । ୩୪ଶ ଶ୍ଳୋକାର୍ଥ ।

ସୂତ୍ର— ବେଦାନ୍ତ ଦର୍ଶନ । ନିଜକୃତ— ଶ୍ରୀବ୍ୟାସଙ୍କ କୃତ । ୧୦୯ ।

ତଥାହି ହରିଭକ୍ତିବିଳାସେ (୧୦।୨୮୩)—
ଗାରୁଡ଼ବଚନମ୍,—

ଅର୍ଥୋଽୟଂ ବ୍ରହ୍ମସୂତ୍ରାଣାଂ ଭାରତାର୍ଥବିନିର୍ଣ୍ଣୟଃ ।
ଗାୟତ୍ରୀଭାଷ୍ୟରୂପୋଽସୌ ବେଦାର୍ଥ-
ପରିବୃଂହିତଃ । ୩୫ ।
ପୁରାଣାନାଂ ସାମରୂପଃ ସାକ୍ଷାଦ୍ଭଗବତୋଦିତଃ ।
ଦ୍ୱାଦଶସ୍କନ୍ଧଯୁକ୍ତୋଽୟଂ ଶତବିଚ୍ଛେଦସଂଯୁତଃ
ଗ୍ରନ୍ଥୋଽଷ୍ଟାଦଶସାହସ୍ରଃ ଶ୍ରୀମଦ୍ଭାଗବତାଭିଧଃ ।

ତଥାହି (ଭାଃ ୧।୩।୪୨)—

ସର୍ବବେଦେତିହାସାନାଂ ସାରଂ ସାରଂ
ସମୁଦ୍ଧୃତମ୍ । ୩୭ ।

ତଥାହି (ଭାଃ ୧୨।୧୩।୧୫)—

ସର୍ବବେଦାନ୍ତସାରଂ ହି ଶ୍ରୀଭାଗବତମିଷ୍ୟତେ ।
ତଦ୍ରସାମୃତତୃପ୍ତସ୍ୟ ନାନ୍ୟତ୍ର ସ୍ୟାଦ୍ରତିଃ
କ୍ୱଚିତ୍ । ୩୮ ।

---

ଅୟଂ ଶ୍ରୀମଦ୍ଭାଗବତାଭିଧଃ ଗ୍ରନ୍ଥଃ ବ୍ରହ୍ମସୂତ୍ରାଣାଂ (ବେଦାନ୍ତସୂତ୍ରାଣାଂ) ଅର୍ଥଃ (ଅଭିଧେୟରୂପଃ) ଭାରତାର୍ଥବିନିର୍ଣ୍ଣୟଃ (ମହାଭାରତସ୍ୟ ଅର୍ଥାନାଂ ନିର୍ଣ୍ଣୟଃ ନିଶ୍ଚୟଃ ଯସ୍ମିନ୍ ତଥାବିଧଃ) ଅସୌ (ଶ୍ରୀଭାଗବତଶାସ୍ତ୍ରଃ) ଗାୟତ୍ରୀଭାଷ୍ୟରୂପଃ (ଗାୟତ୍ର୍ୟାଃ ବ୍ୟାଖ୍ୟାରୂପଃ) ବେଦାର୍ଥପରିବୃଂହିତ-(ବେଦାର୍ଥୈଃ ବର୍ଦ୍ଧିତଃ) ପୁରାଣାନାଂ (ମଧ୍ୟେ) ସାମରୂପଃ (ଅୟଂ ଗ୍ରନ୍ଥଃ) ଦ୍ୱାଦଶସ୍କନ୍ଧଯୁକ୍ତଃ ଶତବିଚ୍ଛେଦସଂଯୁତଃ (ଶତୈଃ ବିଚ୍ଛେଦୈଃ ପ୍ରକରଣୈଃ ସଂଯୁତଃ) ଅଷ୍ଟାଦଶସାହସ୍ରଃ (ଅଷ୍ଟାଦଶସହସ୍ରୈଃ ଶ୍ଲୋକୈଃ ସଂଖ୍ୟାତଃ) ସାକ୍ଷାତ୍ ଭଗବତୋଦିତଃ (ଭଗବତାଭିହିତଃ କଥିତଃ) ୩୫ । ୩୬ଶ ଶ୍ଲୋକଃ ।

ସର୍ବବେଦେତିହାସାନାଂ ସାରଂ ସାରଂ (ଉପାଦେୟଂ ଭାଗଂ) ସମୁଦ୍ଧୃତଂ (ଇଦଂ ଶ୍ରୀଭାଗବତଂ) ୩୭ ଶ୍ଲୋକଃ ।

ସର୍ବବେଦାନ୍ତସାରଂ ହି ଶ୍ରୀଭାଗବତଂ ଇଷ୍ୟତେ । ତଦ୍ରସାମୃତତୃପ୍ତସ୍ୟ (ତସ୍ୟ ଭାଗବତସ୍ୟ ରସ ଏବ ଅମୃତଂ ତେନ ତୃପ୍ତସ୍ୟ ଜନସ୍ୟ) ଅନ୍ୟତ୍ର (ଶାସ୍ତ୍ରେ) କ୍ୱଚିତ୍ ରତିଃ ନ ସ୍ୟାତ୍ । ୩୮ ଶ୍ଲୋକଃ ।

ଅୟଂ ଶ୍ରୀଭାଗବତଗ୍ରନ୍ଥଃ, ଭାରତାର୍ଥସ୍ୟ ବିନିର୍ଣ୍ଣୟୋ ଯତ୍ର । ଭାଷ୍ୟରୂପଃ ଅର୍ଥ ସ୍ୱରୂପଃ । ୩୫ ଶ୍ଲୋକଃ । ବି. ଚ.

---

ଏହି ଶ୍ରୀମଦ୍ଭାଗବତ ଗ୍ରନ୍ଥ ବେଦାନ୍ତ ସୂତ୍ରର ଅର୍ଥ, ମହାଭାରତର ଅର୍ଥନିର୍ଣ୍ଣାୟକ, ଗାୟତ୍ରୀର ଭାଷ୍ୟରୂପ, ନିଖିଳ ବେଦର ଅର୍ଥପ୍ରକାଶକ, ବେଦମାନଙ୍କ ମଧ୍ୟରେ ସାମବେଦତୁଲ୍ୟ, ପୁରାଣମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ସାକ୍ଷାତ୍ ଶ୍ରୀଭଗବାନଙ୍କଦ୍ୱାରା କଥିତ । ଏହା ଦ୍ୱାଦଶସ୍କନ୍ଧଯୁକ୍ତ, ଶତପ୍ରକରଣ ସମନ୍ୱିତ ଏବଂ ଅଷ୍ଟାଦଶ ସହସ୍ର ଶ୍ଲୋକବିଶିଷ୍ଟ । ୩୫ । ୩୬ ଶ୍ଲୋକାର୍ଥ ।

ବେଦବ୍ୟାସ ସମଗ୍ର ବେଦ ଏବଂ ଇତିହାସରୁ ସାରଭାଗ ଉଦ୍ଧାର କରି ଏହି ଶ୍ରୀମଦ୍ଭାଗବତ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ୩୭ ଶ୍ଲୋକାର୍ଥ ।

ଶ୍ରୀମଦ୍ଭାଗବତ ସମସ୍ତ ବେଦାନ୍ତର ସାର । ଯେଉଁ ବ୍ୟକ୍ତି ଶ୍ରୀମଦ୍ଭାଗବତର ରସାମୃତରେ ପରିତୃପ୍ତ ତାହାଙ୍କର ଆଉ ଅନ୍ୟ ଶାସ୍ତ୍ରରେ କଦାପି ରତି ହୁଏ ନାହିଁ । ୩୮ ଶ୍ଲୋକାର୍ଥ ।

ଗାୟତ୍ରୀର ଅର୍ଥେ ଏଇ ଗ୍ରନ୍ଥ-ଆରମ୍ଭଣ ।
'ସତ୍ୟଂପରଂ' — ସମ୍ବନ୍ଧ, 'ଧୀମହି'—
ସାଧନପ୍ରୟୋଜନ । ୧୧୦ ।
ତଥାହି ( ଭାଃ ୧।୧।୧।୨ )—
ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେ-
ଷ୍ୱଭିଜ୍ଞଃ ସ୍ୱରାଟ୍,
ତେନେ ବ୍ରହ୍ମ ହୃଦା ଯ ଆଦିକବୟେ ମୁହ୍ୟନ୍ତି
ଯତ୍ ସୂରୟଃ ।
ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର
ତ୍ରିସର୍ଗୋ ମୃଷା
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ-
ଧୀମହି । ୩୯ ।
କୃଷ୍ଣଭକ୍ତିରସସ୍ୱରୂପ ଶ୍ରୀଭାଗବତ ।
ତାତେ ବେଦଶାସ୍ତ୍ର ହୈତେ ପରମମହତ୍ତ୍ୱ । ୧୧୧ ।

ଶ୍ରୀମଦ୍ଭାଗବତର ପ୍ରଥମ ଶ୍ଳୋକକୁ ଲକ୍ଷ୍ୟ କରି କହୁଅଛନ୍ତି— ଶ୍ରୀମଦ୍ଭାଗବତ ଗାୟତ୍ରୀର ଅର୍ଥସ୍ୱରୂପ ଆରମ୍ଭ ହୋଇଅଛି । ଶ୍ଳୋକୋକ୍ତ "ସତ୍ୟଂପରଂ" ଶବ୍ଦଦ୍ୱାରା ସମ୍ବନ୍ଧତତ୍ତ୍ୱ ପ୍ରକାଶ, "ଧୀମହି" ଦ୍ୱାରା ସାଧନ ଅର୍ଥାତ୍ ଅଭିଧେୟ ଏବଂ ପ୍ରୟୋଜନ (ପ୍ରେମ) ଉଭୟ ପ୍ରକାଶ । ୧୧୦ ।

୩୯ ଶ୍ଳୋକର ଅନ୍ୱୟ—ମଧ୍ୟଲୀଳା ୮ମ ପରିଚ୍ଛେଦର ୫୧ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଯେ ନିତ୍ୟବସ୍ତୁମାନଙ୍କରେ ସତ୍ସ୍ୱରୂପରେ ବର୍ତ୍ତମାନ ଅଛନ୍ତି ବୋଲି ତାହାର ଅସ୍ତିତ୍ୱ ପ୍ରତୀତ ହେଉଅଛି ଏବଂ ଅବସ୍ତୁ ଅର୍ଥାତ୍ ଆକାଶକୁସୁମାଦି ଅଳୀକ ପଦାର୍ଥରେ ଯାହାଙ୍କର ସମ୍ବନ୍ଧ ନାହିଁ ବୋଲି ସେମାନଙ୍କର ଉପଲବ୍ଧି ହେଉ ନାହିଁ ସୁତରାଂ ଯେ ଏହିପରି ଦୃଶ୍ୟମାନ ଜଗତର ସୃଷ୍ଟି, ସ୍ଥିତି ଏବଂ ପ୍ରଳୟର କାରଣ ଯେ ସର୍ବଜ୍ଞ ଓ ସ୍ୱତଃସିଦ୍ଧ ଜ୍ଞାନସ୍ୱରୂପ ଏବଂ ଯେ ବେଦରେ ଜ୍ଞାନିମାନେ ମଧ୍ୟ ମୁଗ୍ଧ ହୁଅନ୍ତି ସେହି ବେଦ ଯେ ଆଦିକବି ବ୍ରହ୍ମାଙ୍କ ହୃଦୟରେ ସଙ୍କଳ୍ପମାତ୍ର ପ୍ରକାଶ କରିଅଛନ୍ତି ଏବଂ ତେଜ ଜଳ ଓ ମୃତ୍ତିକାଦିର ବିକାରସ୍ୱରୂପ କାଚାଦି ଏକ ବସ୍ତୁରେ ଅନ୍ୟ ବସ୍ତୁର ଭ୍ରମ ଯେରୂପ ଅଧିଷ୍ଠାନର ସତ୍ୟତ୍ୱ ହେତୁ ସତ୍ୟ ବୋଲି ପ୍ରତୀତ ହୁଏ ତଦ୍ରୂପ ଯାହାଙ୍କର ସତ୍ୟତାରେ ସତ୍ୟ, ରଜ ଏବଂ ତମ ଏହି ତିନିଗୁଣର ସୃଷ୍ଟି, ଭୂତ, ଇନ୍ଦ୍ରିୟ ଏବଂ ଦେବତା ବସ୍ତୁତଃ ମିଥ୍ୟା ହୋଇ ମଧ୍ୟ ସତ୍ୟରୂପେ ପ୍ରତୀତ ହେଉଅଛନ୍ତି । ଅଥବା ତେଜରେ ଜଳଭ୍ରମାଦି ଯେରୂପ ବସ୍ତୁତଃ ମିଥ୍ୟା ତଦ୍ରୂପ ଯାହାଙ୍କ ବ୍ୟତୀତ ଗୁଣତ୍ରୟର ସୃଷ୍ଟି ସମସ୍ତ ମିଥ୍ୟା । ଯାହାଙ୍କର ପରମାର୍ଥ ସତ୍ୟତ୍ୱ ପ୍ରତିପାଳନ ନିମିତ୍ତ ଆଦ୍ୟନ୍ତଯୁକ୍ତ ଅପାର ବିଶ୍ୱର ବସ୍ତୁତଃ ମିଥ୍ୟାତ୍ୱ ନ ହେଲେହେଁ ମିଥ୍ୟାତ୍ୱ ଉକ୍ତ ହୋଇଅଛି ଏବଂ ନିଜର ତେଜପ୍ରଭାବରେ ଯାହାଙ୍କଠାରେ କୁହକ ଅର୍ଥାତ୍ ମାୟିକଉପାଧି ସମ୍ବନ୍ଧ ନିରସ୍ତ ହୋଇଅଛି ସେହି ସତ୍ୟସ୍ୱରୂପ ପରମେଶ୍ୱରଙ୍କୁ ଧ୍ୟାନ କରୁଁ । ୩୯ ଶ୍ଳୋକାର୍ଥ ।

ଗାୟତ୍ରୀ ବେଦମାତା; ଗାୟତ୍ରୀର ଅର୍ଥ ବେଦରେ ପ୍ରକାଶ ଓ ତାହା ମଧ୍ୟ ଶ୍ରୀମଦ୍ଭାଗବତରେ ପ୍ରକାଶ । ଏଣୁ କେହି ଶ୍ରୀମଦ୍ଭାଗବତକୁ ବେଦର ସାମ୍ୟ ମନେ କରନ୍ତି । ତାହା ଖଣ୍ଡନପୂର୍ବକ କହୁଅଛନ୍ତି—ଶ୍ରୀମଦ୍ଭାଗବତ କେବଳ ଗାୟତ୍ରୀର ଅର୍ଥପ୍ରକାଶକ ନୁହେ ଅଧିକନ୍ତୁ ଭକ୍ତିରସମୟ ଏବଂ ଏହି ହେତୁ ବେଦ ଓ ଅନ୍ୟାନ୍ୟ ଶାସ୍ତ୍ର ଅପେକ୍ଷା ଶ୍ରେଷ୍ଠ । ୧୧୧ ।

ଧର୍ମଃ ପ୍ରୋଜ୍ଝିତକୈତବୋଽତ୍ର ପରମୋ
ନିର୍ମତ୍ସରାଣାଂ ସତାଂ,
ବେଦ୍ୟଂ ବାସ୍ତବମତ୍ର ବସ୍ତୁ ଶିବଦଂ
ତାପତ୍ରୟୋନ୍ମୂଳନମ୍ ।
ଶ୍ରୀମଦ୍ଭାଗବତେ ମହାମୁନିକୃତେ କିମ୍ବା
ପରୈରୀଶ୍ୱରଃ,
ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ
ଶୁଶ୍ରୂଷୁଭିସ୍ତତ୍କ୍ଷଣାତ୍ । ୪୦ ।

ତଥାହି ( ଭାଃ ୧।୧।୩ )—
ନିଗମକଳ୍ପତରୋର୍ଗଳିତଂ ଫଳଂ,
ଶୁକମୁଖାଦମୃତଦ୍ରବସଂଯୁତମ୍ ।
ପିବତ ଭାଗବତଂ ରସମାଳୟଂ,
ମୁହୁରହୋ ରସିକା ଭୁବି ଭାବୁକାଃ । ୪୧ ।

ତଥାହି ତତ୍ରୈବ (୧।୧।୧୯)—
ବୟନ୍ତୁ ନ ବିତୃପ୍ୟାମ ଉତ୍ତମଃଶ୍ଲୋକବିକ୍ରମେ ।
ଯଚ୍ଛୃଣ୍ୱତାଂ ରସଜ୍ଞାନାଂ ସ୍ୱାଦୁ ସ୍ୱାଦୁ ପଦେ
ପଦେ । ୪୨

---

ଅହୋ ଭାବୁକାଃ ରସବିଶେଷ ଭାବନ ଚତୁରାଃ ରସିକାଃ ଭଗବତ୍ ସେବାରସଜ୍ଞାଃ ନିଗମକଳ୍ପତରୋଃ ବେଦରୂପକଳ୍ପବୃକ୍ଷସ୍ୟ ଶୁକମୁଖାତ୍ ଭୁବିଗଳିତଂ ଅମୃତଦ୍ରବସଂଯୁତଂ ରସଂ ଫଳଂ ଭାଗବତଂ ଆଲୟଂ ଲୟସମ୍ଭାବ୍ୟ ମୁହୁଃ ପିବତ । ୪୧ ଶ୍ଲୋକଃ ।

ଯଚ୍ଛୃଣ୍ୱତାଂ ରସଜ୍ଞାନାଂ ପଦେ ପଦେ ପ୍ରତିକ୍ଷଣଂ ସ୍ୱାଦୁ ସ୍ୱାଦୁ ସ୍ୱାଦୁତୋପି ସ୍ୱାଦୁ ତସ୍ମିନ୍ ଉତ୍ତମଃଶ୍ଲୋକ ବିକ୍ରମେ କୃଷ୍ଣସ୍ୟ ବିକ୍ରମେ ବୟଂ ତୁ ନ ବିତୃପ୍ୟାମଃ ବିଶେଷେଣ ନତୃପ୍ୟାମଃ ଅନ୍ୟେତୁତୃପ୍ୟନ୍ତୁ ନାମ ବୟନ୍ତୁ ନ । ୪୨ ଶ୍ଲୋକଃ ।

---

୪୦ ଶ୍ଲୋକର ଅନୁବାଦ ଆଦିଲୀଳା ୩୮ ଶ୍ଲୋକ ପ୍ରଥମ ପରିଚ୍ଛେଦରେ ଦ୍ରଷ୍ଟବ୍ୟ ।

ମହାମୁନି ଶ୍ରୀମନ୍ନାରାୟଣକୃତ ଏହି ଶ୍ରୀମଦ୍ଭାଗବତରେ ସର୍ବଶ୍ରେଷ୍ଠରେ ଦମ୍ଭାଦି ଅହଂକୃତ ସାଧୁମାନଙ୍କର ଅନୁଷ୍ଠେୟ ମୋକ୍ଷପର୍ଯ୍ୟନ୍ତ ଫଳାଭିସନ୍ଧି ଲକ୍ଷଣଯୁକ୍ତ କପଟଧର୍ମର ନିରାଶକାରକ ପରମଧର୍ମ (ବିଶୁଦ୍ଧ ଭକ୍ତିଧର୍ମ) ନିରୂପିତ ହୋଇଅଛି । ଏଥିରେ ତ୍ରିତାପନାଶକ ପରମାନନ୍ଦପ୍ରଦ ପରମାର୍ଥ ବସ୍ତୁର ରୂପଗୁଣବିଶିଷ୍ଟ ବିଷୟ ବର୍ଣ୍ଣିତ ହୋଇଅଛି । ଅପର ଶାସ୍ତ୍ର ଆଲୋଚନାଦ୍ୱାରା ଈଶ୍ୱର (ସଚ୍ଚିଦାନନ୍ଦବିଗ୍ରହ) ଶୀଘ୍ର ହୃଦୟରେ ଅନୁଭୂତ ହୁଅନ୍ତି ନାହିଁ କିନ୍ତୁ ଏହି ଶ୍ରୀମଦ୍ଭାଗବତ ଆଲୋଚନାଦ୍ୱାରା ଶ୍ରବଣେଚ୍ଛୁ ଭକ୍ତମାନଙ୍କର ହୃଦୟରେ ସେ ତତ୍କ୍ଷଣାତ୍ ଅନୁଭୂତ ହୁଅନ୍ତି । ୪୦ ଶ୍ଲୋକାର୍ଥ ।

ଶ୍ରୀସୂତଶୌନକାଦି ଋଷିମାନଙ୍କୁ କହୁଅଛନ୍ତି—ଏହି ଶ୍ରୀମଦ୍ଭାଗବତ ବେଦରୂପ କଳ୍ପବୃକ୍ଷର ଫଳ । ଏହା ଶୁକରୂପୀ ଭଗବାନଙ୍କର ମୁଖରୁ ବିଗଳିତ ହୋଇ ଅଖଣ୍ଡରୂପେ ପୃଥିବୀରେ ଅବତୀର୍ଣ୍ଣ ହୋଇଅଛନ୍ତି । ଅତଏବ ରସବିଶେଷ ଭାବନାଚତୁର ରସଜ୍ଞ ବ୍ୟକ୍ତିମାନେ ଅମୃତଦ୍ରବସଂଯୁତ ଏହି ରସମୟ ଫଳ ମୋକ୍ଷପ୍ରାପ୍ତ ହେଲେ ସୁଦ୍ଧା ବାରମ୍ବାର ପାନ କରନ୍ତୁ । ୪୧ ଶ୍ଲୋକାର୍ଥ ।

ତାତ୍ପର୍ଯ୍ୟ—ଶ୍ରୀକୃଷ୍ଣଙ୍କର ଲୀଳାରସ ନିର୍ଯାସରୂପ ଏହି ଶ୍ରୀମଦ୍ଭାଗବତ ଗ୍ରନ୍ଥ । ଏହା ବ୍ରହ୍ମାନନ୍ଦଠାରୁ ଅତି ଉତ୍କୃଷ୍ଟ ଆନନ୍ଦପ୍ରଦ । ଏଣୁ ଏହା ବ୍ରହ୍ମାନୁଭବୀ ଶ୍ରୀଶୁକଦେବ ପ୍ରଭୃତି ନିତ୍ୟ ଆସ୍ୱାଦନ କରନ୍ତି । କାରଣ ଶ୍ରୀକୃଷ୍ଣଙ୍କର ସେବାନନ୍ଦ ବ୍ରହ୍ମାନନ୍ଦକୁ ତୁଚ୍ଛୀକୃତ କରେ । ଏଣୁ ଶ୍ରୀମଦ୍ଭାଗବତ ଗ୍ରନ୍ଥାସ୍ୱାଦନ ଚତୁର୍ବର୍ଗାଭିଳାଷୀମାନଙ୍କର ଅବଶ୍ୟ ସେବନୀୟ । ଯେହେତୁ ଏହା ପଞ୍ଚମପୁରୁଷାର୍ଥପ୍ରଦ ।

ଶ୍ରୀଶୌନକାଦିଋଷିମାନେ ଶ୍ରୀସୂତଙ୍କୁ କହୁଅଛନ୍ତି—ଯେଉଁ ଉତ୍ତମଶ୍ଲୋକ ଶ୍ରୀକୃଷ୍ଣଙ୍କର ଲୀଳାଚରିତ ଶ୍ରବଣ କରି ରସଜ୍ଞ ବ୍ୟକ୍ତିମାନେ ପଦେ ପଦେ ଉତ୍ତରୋତ୍ତର ଅଧିକ ସ୍ୱାଦୁ

ଅତଏବ ଭାଗବତ କରହ ବିଚାର ।
ଇହା ହୈତେ ପାବେ ସୂତ୍ର ଶ୍ରୁତିର ଅର୍ଥ ସାର ।
ନିରନ୍ତର କର କୃଷ୍ଣନାମସଂକୀର୍ତ୍ତନ ।
ହେଲାୟ ମୁକ୍ତି ପାବେ, ପାବେ କୃଷ୍ଣପ୍ରେମଧନ ।

ତଥାହି ଶ୍ରୀଗୀତାୟାମ୍ (୧୮।୫୪) —
ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଂକ୍ଷତି ।
ସମଃ ସର୍ବେଷୁ ଭୂତେଷୁ ମଦ୍ଭକ୍ତିଂ ଲଭତେ ପରାମ୍ ॥ ୪୩ ।

ତଥାହି ଭାବାର୍ଥଦୀପିକାୟାଂ (ଭାଃ ୧୦।୮୭।୨୧)
ଧୃତଂ ଶାଙ୍କରଭାଷ୍ୟମ୍ (ନୃସିଂହ ତାପନୀ ୨।୨।୧୬)—
ମୁକ୍ତା ଅପି ଲୀଲୟା ବିଗ୍ରହଂ କୃତ୍ୱା ଭଗବନ୍ତଂ ଭଜନ୍ତେ ।୪୪।

ତଥାହି (ଭାଃ ୨।୧।୯)—
ପରିନିଷ୍ଠିତୋଽପି ନୈର୍ଗୁଣ୍ୟେ ଉତ୍ତମଃ-ଶ୍ଳୋକଲୀଲୟା ।
ଗୃହୀତଚେତା ରାଜର୍ଷେ ଆଖ୍ୟାନଂ ଯଦଧୀତବାନ୍ । ୪୫

---

ଅନୁଭବ କରନ୍ତି ଅର୍ଥାତ୍ ସେଥିରେ ତୃପ୍ତ ହୁଅନ୍ତି ନାହିଁ ଆମ୍ଭେମାନେ ଯାଜ୍ଞିକ ହୋଇ ସୁଦ୍ଧା ସେହି ଲୀଳା ଶ୍ରବଣରେ ତୃପ୍ତ ହେଉ ନାହୁଁ । ୪୨ ଶ୍ଳୋକାର୍ଥ ।

ଏହି ଶ୍ରୀମଦ୍ଭାଗବତକୁ ବିଚାର କଲେ ଏଥିରୁ ବେଦାନ୍ତସୂତ୍ରର ଏବଂ ଶ୍ରୁତିର ସାର ଅର୍ଥ ଲାଭ କରିବ । ୧୧୨ ।

ଆପଣମାନେ ମୁକ୍ତିଲାଭ କରିବା ସକାଶେ ସର୍ବଦା ବେଦାନ୍ତ ଅଧ୍ୟୟନ କରନ୍ତି । ନିରନ୍ତର ଶ୍ରୀକୃଷ୍ଣ ନାମସଂକୀର୍ତ୍ତନ କଲେ ମୁକ୍ତି ଅନାୟାସରେ ଲାଭ ହୁଏ ଏବଂ ପରମଫଳ ଶ୍ରୀକୃଷ୍ଣଙ୍କର ପ୍ରେମଧନ ଲାଭ ହୁଏ । ଅତଏବ ଆପଣମାନେ ନିରନ୍ତର ଶ୍ରୀକୃଷ୍ଣଙ୍କର ନାମସଂକୀର୍ତ୍ତନ କରନ୍ତୁ । ତଦ୍ୱାରା ବେଦାନ୍ତ ଅଧ୍ୟୟନର ସାଧ୍ୟ ମୁକ୍ତି ସହଜରେ ପାଇ ପାରିବେ ଏବଂ ସେଥିର ଅସାଧ୍ୟ ନିତ୍ୟସିଦ୍ଧ କୃଷ୍ଣପ୍ରେମ ଲାଭ କରିବେ । ୧୧୩ ।

୪୩ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୮ମ ପରିଚ୍ଛେଦର ୮ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଭଗବାନ ଅର୍ଜୁନଙ୍କୁ କହିଲେ — ବ୍ରହ୍ମରେ ଅବସ୍ଥିତ, ପ୍ରସନ୍ନଚିତ୍ତ ବ୍ୟକ୍ତି ନଷ୍ଟବସ୍ତୁର ଶୋକ ଓ ଲବ୍ଧବସ୍ତୁର ଆକାଂକ୍ଷା କରନ୍ତି ନାହିଁ । ସର୍ବ ପ୍ରାଣୀରେ ସମଦର୍ଶୀ ହେବାରୁ ଏବଂ ରାଗ ଦ୍ୱେଷାଦି କୃତ ବିକ୍ଷେପ ନ ଥିବାରୁ ସର୍ବଭୂତରେ ଭାବଲକ୍ଷଣଯୁକ୍ତ ମୋର ପରମଭକ୍ତି ଲାଭ କରନ୍ତି । ୪୩ ଶ୍ଳୋକାର୍ଥ ।

୪୪ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୪ ପରିଚ୍ଛେଦର ୩୩ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ମୁକ୍ତବ୍ୟକ୍ତିମାନେ ସୁଦ୍ଧା ଭକ୍ତିଦେବୀଙ୍କ କୃପାରୁ ଦେହପ୍ରାପ୍ତ ହୋଇ ଭଗବାନଙ୍କୁ ଭଜନ କରନ୍ତି । ୪୪ ଶ୍ଳୋକାର୍ଥ ।

୪୫ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୨୪ ପରିଚ୍ଛେଦର ୧୧ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀଶୁକଦେବଗୋସ୍ୱାମୀ ଶ୍ରୀପରୀକ୍ଷିତଙ୍କୁ କହୁଅଛନ୍ତି — ହେ ରାଜର୍ଷେ ! ମୁଁ ମୋର ଅନ୍ତଃକରଣର ସମସ୍ତ ନିର୍ଗୁଣ ବ୍ରହ୍ମରେ ଲୀନ କରିଥିଲି ସତ୍ୟ କିନ୍ତୁ ଶ୍ରୀକୃଷ୍ଣଙ୍କ ଲୀଳାମାଧୁରୀ ମୋର ଚିତ୍ତକୁ ବଳପୂର୍ବକ ଆକର୍ଷଣ କରିବାରୁ ଶ୍ରୀମଦ୍ଭାଗବତ ଆଖ୍ୟାନ ମୁଁ ପିତାଙ୍କ ନିକଟରେ ଅଧ୍ୟୟନ କଲି । ୪୫ ଶ୍ଳୋକାର୍ଥ ।

( ତଥାହି ଭାଃ ୩।୧୫।୪୩) —
ତସ୍ୟାରବିନ୍ଦନୟନସ୍ୟ ପଦାରବିନ୍ଦ-
କିଞ୍ଜଲ୍କ ମିଶ୍ରତୁଳସୀ ମକରନ୍ଦବାୟୁଃ ।
ଅନ୍ତର୍ଗତଃ ସ୍ୱବିବରେଣ ଚକାର ତେଷାଂ,
ସଂକ୍ଷୋଭମକ୍ଷରଜୁଷାମପି ଚିତ୍ତତନ୍ୱୋଃ । ୪୬ ।

ତଥାହି ତତ୍ରୈବ (୧।୭।୧୦)—
ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ
ହରିଃ । ୪୭ ।

ହେନକାଳେ ସେଇ ମହାରାଷ୍ଟ୍ରୀ ବ୍ରାହ୍ମଣ ।
ସଭାତେ କହିଲ ଏଇ ଶ୍ଳୋକବିବରଣ । ୧୧୪ ।
ଏଇ ଶ୍ଳୋକେର ଅର୍ଥ ପ୍ରଭୁ ଏକଷଷ୍ଟି ପ୍ରକାର ।
କରିଯାଛେନ, ଯାହା ଶୁନି ଲୋକେ ଚମତ୍କାର ।
ତବେ ସବ ଲୋକ ଶୁନିତେ ଆଗ୍ରହ କରିଲ ।
ପ୍ରଭୁ ଏକଷଷ୍ଟି ଅର୍ଥ ବିବରି କହିଲ । ୧୧୬ ।
ଶୁନିଞା ଲୋକେର ବଡ଼ ହୈଲ ଚମତ୍କାର ।
'ଚୈତନ୍ୟଗୋସାଞି କୃଷ୍ଣ' କରିଲ ନିର୍ଦ୍ଧାର ।
ଏତ କହି ଉଠିଯା ଚଲିଲା ଗୌରହରି ।
ନମସ୍କାର କରେ ଲୋକ ହରିଧ୍ୱନି କରି ।୧୧୮।
ସବ କାଶୀବାସୀ କରେ ନାମସଙ୍କୀର୍ତ୍ତନ ।
ପ୍ରେମେ ହାସେ କାନ୍ଦେ ଗାୟ କରଯେ
ନର୍ତ୍ତନ । ୧୧୯ ।
ସନ୍ନ୍ୟାସୀ ପଣ୍ଡିତ କରେ ଭାଗବତବିଚାର ।
ବାରାଣସୀଦେଶ ପ୍ରଭୁ କରିଲ ନିସ୍ତାର । ୧୨୦ ।
ନିଜଗଣ ଲୈଯା ପ୍ରଭୁ ଆଇଲା ବାସାଘର ।
ବାରାଣସୀ ହୈଲ ଦ୍ୱିତୀୟ ନଦୀୟାନଗର । ୧୨୧ ।
ନିଜଗଣ ଲୈଯା ପ୍ରଭୁ କହେ ହାସ୍ୟ କରି—
କାଶୀତେ ବେଚିତେ ଆମି ଆଇଲୁ ଭାବକାଲି ॥
କାଶୀତେ ଗ୍ରାହକ ନାହି, ବସ୍ତୁ ନା ବିକାୟ ।
ପୁନରପି ବହି ଦେଶେ ଲଞା ନାହି ଯାୟ ।
'ଆମି ବୋଝା ବହିବ' ତୋମାସଭାର ଦୁଃଖ
ହୈଲ ।
ତୋମାସଭାର ଇଚ୍ଛାୟ ବିନାମୂଲ୍ୟେ ବିଲାଇଲ ॥
ସଭେ କହେ—ଲୋକ ତାରିତେ ତୋମାର
ଅବତାର ।
ପୂର୍ବ ଦକ୍ଷିଣ ପଶ୍ଚିମ କରିଲେ ନିସ୍ତାର । ୧୨୫ ।
ଏକ ବାରାଣସୀ ଛିଲ ତୋମାତେ ବିମୁଖ ।
ତାହା ନିସ୍ତାରିଯା କୈଲେ ଆମାସଭାର ସୁଖ ।
ବାରାଣସୀଗ୍ରାମେ ଯଦି କୋଲାହଲ ହୈଲ ।
ଶୁନି ଗ୍ରାମୀ ଦେଶୀ ଲୋକ ଆସିତେ ଲାଗିଲ ।

---

୪୬ ଶ୍ଳୋକର ଅନ୍ୱୟ ମଧ୍ୟଲୀଳା ୧୭ ପରିଚ୍ଛେଦର ୯ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀବ୍ରହ୍ମା ଦେବତାମାନଙ୍କୁ କହୁଅଛନ୍ତି—ସନକାଦି ଋଷିମାନେ ବ୍ରହ୍ମାନନ୍ଦାନୁଭବୀ ହୋଇଲେହେଁ ସେହି କମଳନୟନ ଶ୍ରୀକୃଷ୍ଣଙ୍କର ଶ୍ରୀଚରଣାର୍ପିତ ପଦ୍ମକେଶରମିଶ୍ରିତ ତୁଳସୀର ସୁଗନ୍ଧ-ଯୁକ୍ତ ବାୟୁ ସେମାନଙ୍କର ନାସାବିବରରେ ପ୍ରବେଶ କରି ସେମାନଙ୍କର ଚିତ୍ତ ଏବଂ ଦେହକୁ ସଂକ୍ଷୋଭିତ କରିଥିଲା ଅର୍ଥାତ୍ ସେମାନଙ୍କର ଚିତ୍ତରେ ଅତିଶୟ ହର୍ଷ ଓ ଦେହରେ ରୋମାଞ୍ଚ ଜାତ କରାଇଥିଲା । ୪୬ ଶ୍ଳୋକାର୍ଥ ।

୪୭ ଶ୍ଳୋକର ଟୀକା ମଧ୍ୟଲୀଳା ୬ଷ୍ଠ ପରିଚ୍ଛେଦର ୧୭ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଶ୍ରୀସୂତ ଶୌନକାଦି ଋଷିଙ୍କୁ କହିଲେ—ସର୍ବଚିତ୍ତାକର୍ଷକ ଶ୍ରୀହରିଙ୍କର ଅଦ୍ଭୁତଗୁଣର କଥା ଆଉ କଣ କହିବି ଯେ ସେ ଆତ୍ମାରାମ ମୁନିମାନଙ୍କୁ ସୁଦ୍ଧା ଆକର୍ଷଣ କରନ୍ତି, ଯେହେତୁ ମାୟାବନ୍ଧନଚ୍ଛେଦନକାରୀ ବା ଅହଂକାରଶୂନ୍ୟ ବ୍ରହ୍ମାନନ୍ଦ ଅନୁଭବୀ ମୁନିମାନଙ୍କର କୌଣସି ଆକାଙ୍କ୍ଷା ନ ଥିଲେହେଁ ସେମାନେ ସୁଦ୍ଧା ବିଚିତ୍ରକର୍ମା ଭଗବାନଙ୍କୁ ଫଳାଭିସନ୍ଧିରହିତ ଭକ୍ତି କରନ୍ତି । ୪୭ ଶ୍ଳୋକାର୍ଥ ।

ଲକ୍ଷକୋଟି ଲୋକ ଆଇସେ ନାହିଁକ ଗଣନା ।
ସଙ୍କୀର୍ଣ୍ଣ ସ୍ଥାନେ, ପ୍ରଭୁର ନା ଯାଏ ଦର୍ଶନ ।୧୨୯।
ପ୍ରଭୁ ଯବେ ସ୍ନାନେ ଯାନ ବିଶ୍ୱେଶ୍ୱର ଦର୍ଶନେ ।
ଦୁଇଦିଗେ ଲୋକ କରେ ପ୍ରଭୁବିଲୋକନେ ॥
ବାହୁ ତୁଲି ପ୍ରଭୁ କହେ 'ବୋଲ କୃଷ୍ଣ ହରି' ।
ଦଣ୍ଡବତ ପଡ଼େ ଲୋକ ହରିଧ୍ୱନି କରି ।୧୩୦।
ଏଇମତ ଦିନ ପଞ୍ଚ ଲୋକ ନିସ୍ତାରିୟା ।
ଆରଦିନ ଚଳିଲା ପ୍ରଭୁ ଉଦ୍‌ବିଗ୍ନ ହଇୟା ।୧୩୧।
ରାତ୍ର୍ୟେ ଉଠି ପ୍ରଭୁ ଯଦି କରିଲ ଗମନ ।
ପାଛେ ଲାଗ ନିଲ ତବେ ଭକ୍ତ ପଞ୍ଚଜନ ।୧୩୨।
ତପନମିଶ୍ର ରଘୁନାଥ ମହାରାଷ୍ଟ୍ରୀ ବ୍ରାହ୍ମଣ ।
ଚନ୍ଦ୍ରଶେଖର କୀର୍ତ୍ତନୀୟା ପରମାନନ୍ଦ ଜନ ।୧୩୩।
ସଭେ ଚାହେ ପ୍ରଭୁସଙ୍ଗେ ନୀଳାଚଳ ଯାଇତେ ।
ସଭାରେ ବିଦାୟ ଦିଲ ପ୍ରଭୁ ଯତ୍ନସହିତେ ।
ଯାର ଇଚ୍ଛା—ପାଛେ ଆଇସ ଆମାରେ ଦେଖିତେ ।
ଏବେ ଆମି ଏକା ଯାବ ଝାଡ଼ିଖଣ୍ଡପଥେ ।୧୩୫।
ସନାତନେ କହିଲ— ତୁମି ଯାହ ବୃନ୍ଦାବନ ।
ତୋମାର ଦୁଇ ଭାଇ ତଥା କରିୟାଛେ ଗମନ ।୧୩୬।
କାଁଥା କରଙ୍ଗିୟା ମୋର କାଙ୍ଗାଲ ଭକ୍ତଗଣ ।
ବୃନ୍ଦାବନେ ଆଇଲେ ତାର କରିହ ପାଳନ ।
ଏତ ବଲି ଚଳିଲା ପ୍ରଭୁ ସଭା ଆଲିଙ୍ଗିୟା ।
ସଭେଇ ପଡ଼ିଲ ତାଁହା ମୂର୍ଚ୍ଛିତ ହଇୟା ।୧୩୮।
କଥୋକ୍ଷଣେ ଉଠି ସଭେ ଦୁଃଖେ ଘର ଆଇଲା ।
ସନାତନଗୋସାଞି ବୃନ୍ଦାବନେରେ ଚଳିଲା ॥
ଏଥା ରୂପଗୋସାଞି ମଥୁରା ଆଇଲା ।
ଧ୍ରୁବଘାଟେ ତାଁରେ ସୁବୁଦ୍ଧି ରାୟ ମିଳିଲା ।୧୪୦।
ପୂର୍ବେ ଯବେ ସୁବୁଦ୍ଧି ରାୟ ଛିଲା ଗୌଡ଼ ଅଧିକାରୀ ।
ହୁସେନଖାଁ ସୈୟଦ କରେ ତାହାର ଚାକରୀ ।
ଦୀଘୀ ଖୋଦାଇତେ ତାରେ ମନସୀବ କୈଲ ।
ଛିଦ୍ର ପାଞ୍ଜା ରାୟ ତାରେ ଚାବୁକ ମାରିଲ ।୧୪୨।
ପାଛେ ଯବେ ହୁସେନ ଖାଁ ଗୌଡ଼େର ରାଜା ହୈଲ ।
ସୁବୁଦ୍ଧି ରାୟେରେ ତେହୋ ବହୁ ବାଢ଼ାଇଲ ।
ତାଁର ସ୍ତ୍ରୀ ତାଁର ଅଙ୍ଗେ ଦେଖେ ମାରଣେର ଚିହ୍ନେ ।
ସୁବୁଦ୍ଧି ରାୟେ ମାରିବାରେ କହେ ରାଜାସ୍ଥାନେ ।
ରାଜା କହେ—ଆମାର ପୋଷ୍ଟା ରାୟ ହୟ ପିତା ।
ତାହାରେ ମାରିବ ଆମି ଭାଲ ନହେ କଥା ।
ସ୍ତ୍ରୀ କହେ — ଜାତି ଲହ ଯଦି ପ୍ରାଣେ ନା ମାରିବେ ।
ରାଜା କହେ—ଜାତି ନିଲେ ଇହୋ ନାହି ଜୀବେ ।୧୪୬।
ସ୍ତ୍ରୀ ମରିତେ ଚାହେ, ରାଜା ସଙ୍କଟେ ପଡ଼ିଲା ।
କରୋୟାର ପାନି ତାର ମୁଖେ ଦେୟାଇଲା ।୧୪୭
ତବେ ସୁବୁଦ୍ଧି ରାୟ ସେଇ ଛଦ୍ମ ପାଇୟା ।
ବାରାଣସୀ ଆଇଲା ସବ-ବିଷୟ ଛାଡ଼ିୟା ।୧୪୮।

---

ରଘୁନାଥ— ଶ୍ରୀତପନ ମିଶ୍ରଙ୍କ ପୁତ୍ର ଶ୍ରୀରଘୁନାଥ ଭଟ୍ଟ । ଗୋସ୍ୱାମୀ—ଷଡ଼୍‌ଗୋସ୍ୱାମୀଙ୍କ ମଧ୍ୟରୁ ଅନ୍ୟତମ । ୧୩୩ । ଦୁଇଭାଇ—ଶ୍ରୀରୂପଗୋସ୍ୱାମୀ ଓ ଶ୍ରୀ ଅନୁପମ । ୧୩୬ । ଗୌଡ଼େ ଅଧିକାରୀ—ଗୌଡ଼ନଗରର ଶାସନକର୍ତ୍ତା । ୧୪୧ । ମନସୀବ—ମୁତସୁଦ୍ଦି, ଭାର ଦେଲେ । ୧୪୨ । ଛିଦ୍ରପାଞ୍ଜା—ଅପରାଧ ଦେଖି । ରାୟ—ସୁବୁଦ୍ଧିରାୟ । ତାରେ—ହୋସେନଖାଁକୁ । ୧୪୨ । ବହୁବାଢ଼ାଇଲ—ଉଚ୍ଚପଦ ଦେଲେ । ୧୪୩ । ତାଁର ସ୍ତ୍ରୀ—ହୁସେନଖାଁଙ୍କ ସ୍ତ୍ରୀ । ୧୪୪ । ନାହିଁ ଜୀବେ—ବଞ୍ଚିବେ ନାହିଁ । ୧୪୬ । କରୋୟାର ପାନି—ମୁସଲମାନ ଫକୀରମାନଙ୍କ କମଣ୍ଡଳୁ ପାଣି । ୧୪୭ । ତାର ମୁଖେ—ସୁବୁଦ୍ଧି ରାୟଙ୍କ ମୁଖରେ । ଛଦ୍ମ—ଛଳ । ୧୪୮ ।

ପ୍ରାୟଶ୍ଚିତ୍ତ ପୁଚ୍ଛିଲ ତେଁହୋ ପଣ୍ଡିତେର ସ୍ଥାନେ ।
ତାଁରା କହେନ—ତପ୍ତଘୃତ ଖାଞା ଛାଡ଼ ପ୍ରାଣେ । ୧୪୯ ।
କେହୋ କହେ-ଏଇ ନହେ ଅଳ୍ପ ଦୋଷ ହୟ ।
ଶୁନିଞା ରହିଲ ରାୟ କରିୟା ସଂଶୟ । ୧୫୦ ।
ତବେ ଯଦି ମହାପ୍ରଭୁ ବାରାଣସୀ ଆଇଲା ।
ତାଁରେ ମିଲି ରାୟ ଆପନ ବୃତ୍ତାନ୍ତ କହିଲ ।
ପ୍ରଭୁ କହେ ଇହା ହୈତେ ଯାହ ବୃନ୍ଦାବନ ।
ନିରନ୍ତର କର କୃଷ୍ଣନାମସଙ୍କୀର୍ତ୍ତନ । ୧୫୨ ।
ଏକ ନାମାଭାସେ ତୋମାର ପାପଦୋଷ ଯାବେ ।
ଆର ନାମ ହୈତେ କୃଷ୍ଣଚରଣ ପାଇବେ । ୧୫୩ ।
ରାୟ ଆଜ୍ଞା ପାଞା ବୃନ୍ଦାବନେରେ ଚଲିଲା ।
ପ୍ରୟାଗ ଅଯୋଧ୍ୟା ହୟା ନୈମିଷାରଣ୍ୟେ ଆଇଲା । ୧୫୪ ।
କତୋଦିନ ତେଁହୋ ନୈମିଷାରଣ୍ୟେ ରହିଲା ।
ତାବତ୍ ବୃନ୍ଦାବନ ଦେଖି ପ୍ରଭୁ ପ୍ରୟାଗ ଆଇଲା ।
ମଥୁରା ଆସିୟା ରାୟ ପ୍ରଭୁବାର୍ତ୍ତା ପାଇଲ ।
ପ୍ରଭୁର ଲାଗ ନା ପାଇୟା ମନେ ଦୁଃଖୀ ହୈଲ । ୧୫୬ ।
ରାୟ ଶୁଷ୍କକାଷ୍ଠ ଆନି ବେଚେନ ମଥୁରାତେ ।
ପାଁଚ ଛୟ ପୈଛା ପାୟ ଏକେକ ବୋଝାତେ ।
ଆପନେ ରହେ ଏକ ପୈଛାର ଚାନା ଖାଇୟା ।
ଆର ପୈଛା ବାଣିୟା ସ୍ଥାନେ ରାଖେନ ଧରିୟା ।
ଦୁଃଖୀ ବୈଷ୍ଣବ ଦେଖି ତାରେ କରାନ ଭୋଜନ
ଗୌଡ଼ିୟା ଆଇଲେ ଦଧିଭାତ ତୈଲମର୍ଦ୍ଦନ ।
ରୂପଗୋସାଞି ଆଇଲେ ତାଁରେ ବହୁ ପ୍ରୀତ କୈଲ ।
ଆପନ ସଙ୍ଗେ ଲଞା ଦ୍ୱାଦଶବନ ଦେଖାଇଲ । ୧୬୦

ମାସମାତ୍ର ରୂପଗୋସାଞି ରହିଲା ବୃନ୍ଦାବନେ ।
ଶୀଘ୍ର ଚଲି ଆଇଲ ସନାତନାନୁସନ୍ଧାନେ । ୧୬୧ ।
'ଗଙ୍ଗାତୀରପଥେ ପ୍ରଭୁ ପ୍ରୟାଗେରେ ଗେଲା ।'
ଇହା ଶୁନି ଦୁଇ ଭାଇ ସେଇ ପଥେ ଚଲିଲା ।
ଏଥା ସନାତନଗୋସାଞି ପ୍ରୟାଗେ ଆସିୟା ।
ମଥୁରା ଆଇଲା ସରାନ ରାଜପଥ ଦିୟା । ୧୬୩ ।
ମଥୁରାତେ ସୁବୁଦ୍ଧିରାୟ ତାହାରେ ମିଲିଲା ।
ରୂପ-ଅନୁପମ-କଥା ସକଲି କହିଲା । ୧୬୪ ।
ଗଙ୍ଗାପଥେ ଦୁଇ ଭାଇ, ରାଜପଥେ ସନାତନ ।
ଅତଏବ ତାଁହା ସନେ ନା ହୈଲ ମିଲନ । ୧୬୫ ।
ସୁବୁଦ୍ଧିରାୟ ବହୁ ସ୍ନେହ କରେ ସନାତନେ ।
ବ୍ୟବହାର ସ୍ନେହ ସନାତନ ନାହି ମାନେ । ୧୬୬
ମହା ବିରକ୍ତ ସନାତନ ଭ୍ରମେ ବନେ ବନେ ।
ପ୍ରତି ବୃକ୍ଷେ ପ୍ରତି କୁଞ୍ଜେ ରହେ ରାତ୍ରିଦିନେ । ୧୬୭
'ମଥୁରାମାହାତ୍ମ୍ୟ' ଶାସ୍ତ୍ର ସଂଗ୍ରହ କରିୟା ।
ଲୁପ୍ତତୀର୍ଥ ପ୍ରକଟ କୈଲ ବନେତେ ଭ୍ରମିୟା ।
ଏଇମତ ସନାତନ ବୃନ୍ଦାବନେ ରହିଲା ।
ରୂପଗୋସାଞି ଦୁଇ ଭାଇ କାଶୀତେ ଆଇଲା ।
ମହାରାଷ୍ଟ୍ରୀ ଦ୍ୱିଜ, ଶେଖର, ମିଶ୍ର ତପନ ।
ତିନଜନ ସହ ରୂପ କରିଲା ମିଲନ । ୧୭୦ ।
ଶେଖରେର ଘରେ ବାସା, ମିଶ୍ରଘରେ ଭିକ୍ଷା ।
ମିଶ୍ରମୁଖେ ଶୁନେ—ସନାତନେ ପ୍ରଭୁର ଶିକ୍ଷା ।
କାଶୀତେ ପ୍ରଭୁର ଚରିତ ଶୁନି ତିନେର ମୁଖେ ।
ସନ୍ନ୍ୟାସୀରେ କୃପା ଶୁନି ପାଇଲ ବଡ଼ ସୁଖେ ।
ମହାପ୍ରଭୁର ଉପର ଲୋକେର ପ୍ରଣତି ଦେଖିୟା ।
ସୁଖୀ ହୈଲା ଲୋକମୁଖେ କୀର୍ତ୍ତନ ଶୁନିୟା ।
ଦିନ ଦଶ ରହି ରୂପ ଗୌଡ଼େ ଯାତ୍ରା କୈଲ ।
ସନାତନ-ରୂପେର ଏଇ ଚରିତ କହିଲ । ୧୭୪ ।
ଏଥା ମହାପ୍ରଭୁ ଯଦି ନୀଲାଦ୍ରି ଚଲିଲା ।
ନିର୍ଜ୍ଜନ ବନପଥେ ଯାଇତେ ମହାସୁଖ ପାଇଲା ।

ଏଇ ନହେ—ପ୍ରାଣତ୍ୟାଗ କରିବାର ଉଚିତ ନୁହେ । ୧୫୦ । ଲାଗ—ଭେଟ, ଦର୍ଶନ । ୧୫୬ ।
ପୈଛା—ପଇସା । ୧୫୭ । ଧରିୟା—ଜମାକରି । ୧୫୮ । ସରାନ—ସରଳ । ୧୬୩ ।
ବ୍ୟବହାରସ୍ନେହ—ବୈଷୟିକ ସ୍ନେହ । ୧୬୬ । ପ୍ରତି ବୃକ୍ଷେ—ବୃକ୍ଷତଳରେ । ୧୬୭ ।
କହିଲ—ଗ୍ରନ୍ଥକର୍ତ୍ତା କହୁଅଛନ୍ତି । ୧୭୪ ।

ସୁଖେ ଚଳି ଆଇସେ ପ୍ରଭୁ ବଳଭଦ୍ର ସଙ୍ଗେ ।
ପୂର୍ବବତ୍ ମୃଗାଦ୍ୟସଙ୍ଗେ କୈଲ ନାନାରଙ୍ଗେ ।
ଅଠାରନାଲାତେ ଆଯେ ଭଟ୍ଟାଚାର୍ଯ୍ୟ ବ୍ରାହ୍ମଣେ ।
ପାଠାଇୟା ବୋଲାଇଲ ନିଜଭକ୍ତଗଣେ ।୧୭୭।
ଶୁନି ଯେନ ଭକ୍ତଗଣ ପୁନରପି ଜୀଲା ।
ଦେହେ ପ୍ରାଣ ଆଇଲେ ଯେନ ଇନ୍ଦ୍ରିୟ
ଉଠିଲା ।୧୭୮।
ଆନନ୍ଦେ ବିହ୍ୱଲ ଭକ୍ତ ଧାଇୟା ଆଇଲା ।
ନରେନ୍ଦ୍ର ଆସିୟା ସଭେ ପ୍ରଭୁରେ ମିଳିଲା ।୧୭୯
ପୁରୀ-ଭାରତୀର କୈଲ ପ୍ରଭୁ ଚରଣବନ୍ଦନ ।
ଦୋହେଁ ମହାପ୍ରଭୁରେ କୈଲ ପ୍ରେମ-ଆଲିଙ୍ଗନ ।
ଦାମୋଦର ସ୍ୱରୂପ, ପଣ୍ଡିତ ଗଦାଧର ।
ଜଗଦାନନ୍ଦ, କାଶୀଶ୍ୱର, ଗୋବିନ୍ଦ, ବକ୍ରେଶ୍ୱର ।
କାଶୀମିଶ୍ର, ପ୍ରଦ୍ୟୁମ୍ନମିଶ୍ର, ପଣ୍ଡିତ ଦାମୋଦର ।
ହରିଦାସ ଠାକୁର, ଆର ପଣ୍ଡିତ ଶଙ୍କର ।୧୮୨।
ଆର ସବ ଭକ୍ତ ପ୍ରଭୁର ଚରଣେ ପଡ଼ିଲା ।
ସଭା ଆଲିଙ୍ଗିୟା ପ୍ରଭୁ ପ୍ରେମାବିଷ୍ଟ ହୈଲା ॥
ଆନନ୍ଦ-ସମୁଦ୍ରେ ମଗ୍ନେ ସବ ଭକ୍ତଗଣେ ।
ସଭା ଲଞା ଚଲିଲା ପ୍ରଭୁ ଜଗନ୍ନାଥ-ଦର୍ଶନେ ॥
ଜଗନ୍ନାଥ ଦେଖି ପ୍ରଭୁ ପ୍ରେମାବିଷ୍ଟ ହୈଲା ।
ଭକ୍ତସଙ୍ଗେ ବହୁକ୍ଷଣ ନୃତ୍ୟଗୀତ କୈଲା ।୧୮୩।
ଜଗନ୍ନାଥସେବକ ଆନି ମାଲ୍ୟ ପ୍ରସାଦ ଦିଲା ।
ତୁଳସୀପଡ଼ିଛା ଆସି ଚରଣ ବନ୍ଦିଲା ।୧୮୪।
ମହାପ୍ରଭୁ ଆଇଲା—ଗ୍ରାମେ କୋଲାହଲ ହୈଲ ।
ସାର୍ବଭୌମ ରାମାନନ୍ଦ ବାଣୀନାଥ ମିଲିଲା ସକଲ ।
ସଭା ସଙ୍ଗେ ଲଞା ପ୍ରଭୁ ମିଶ୍ରବାସା ଆଇଲା ।
ସାର୍ବଭୌମ ପଣ୍ଡିତଗୋସାଞି ନିମନ୍ତ୍ରଣ କୈଲା ।
ପ୍ରଭୁ କହେ—ମହାପ୍ରସାଦ ଆନ ଏଇସ୍ଥାନେ ।
ସଭାସଙ୍ଗେ ଇହାଁ ଆଜ କରିବ ଭୋଜନେ ।

ତବେ ଦୋହେଁ ଜଗନ୍ନାଥପ୍ରସାଦ ଆନିଲ ।
ସଭାସଙ୍ଗେ ମହାପ୍ରଭୁ ଭୋଜନ କରିଲ ।୧୯୦।
ଏଇ ତ କହିଲ ପ୍ରଭୁ ଦେଖି ବୃନ୍ଦାବନ ।
ପୁନରପି କୈଲ ଯୈଛେ ନୀଲାଦ୍ରି ଗମନ ।୧୯୧।
ଇହା ଯେଇ ଶ୍ରଦ୍ଧା କରି କରଯେ ଶ୍ରବଣ ।
ଅଚିରାତେ ପାୟ ସେଇ ଚୈତନ୍ୟଚରଣ ।୧୯୨।
ମଧ୍ୟଲୀଲାର ଏଇ କୈଲ ଦିଗ୍‌ଦରଶନ ।
ଛୟବତ୍ସର କୈଲ ଯୈଛେ ଗମନାଗମନ ।୧୯୩।
ଶେଷ ଅଷ୍ଟାଦଶବତ୍ସର ନୀଳାଚଳେ ବାସ ।
ଭକ୍ତଗଣ-ସଙ୍ଗେ କରେ କୀର୍ତ୍ତନବିଲାସ ।୧୯୪।
ମଧ୍ୟଲୀଲାର କ୍ରମ ଏବେ କରି ଅନୁବାଦ ।
ଅନୁବାଦ କୈଲେ ହୟ କଥାର (ଲୀଲାର)
ଆସ୍ୱାଦ ।
ପ୍ରଥମପରିଚ୍ଛେଦେ ଶେଷଲୀଲାର ସୂତ୍ରଗଣ ।
ତହିଁ ମଧ୍ୟେ କୋନ ଭାଗେର ବିସ୍ତାରବର୍ଣ୍ଣନ ।୧୯୫।
ଦ୍ୱିତୀୟପରିଚ୍ଛେଦେ ପ୍ରଭୁର ପ୍ରଲାପବର୍ଣ୍ଣନ ।
ତହିଁ ମଧ୍ୟେ ନାନା ଭାବେର ଦିଗ୍‌ଦରଶନ ।
ତୃତୀୟ ପରିଚ୍ଛେଦେ ପ୍ରଭୁର କହିଲ ସନ୍ନ୍ୟାସ ।
ଆଚାର୍ଯ୍ୟେର ଘରେ ଯୈଛେ କରିଲା ବିଲାସ ।
ଚତୁର୍ଥେ ମାଧବପୁରୀର ଚରିତ୍ର-ଆସ୍ୱାଦନ ।
ଗୋପାଳ ସ୍ଥାପନ କ୍ଷୀରଚୁରିର ବର୍ଣ୍ଣନ ।୧୯୯।
ପଞ୍ଚମେ ସାକ୍ଷିଗୋପାଳ ଚରିତ୍ରବର୍ଣ୍ଣନ ।
ନିତ୍ୟାନନ୍ଦ କହେ, ପ୍ରଭୁ କରେ ଆସ୍ୱାଦନ ।
ଷଷ୍ଠେ ସାର୍ବଭୌମେର କରିଲ ଉଦ୍ଧାରଣ ।
ସପ୍ତମେ ତୀର୍ଥଯାତ୍ରା ବାସୁଦେବବିମୋଚନ ।୨୦୧।
ଅଷ୍ଟମେ ରାମାନନ୍ଦସମ୍ବାଦ ବିସ୍ତାର ।
ଆପନେ ଶୁନିଲ ସବ ସିଦ୍ଧାନ୍ତେର ସାର ।୨୦୨।
ନବମେ କହିଲ ଦକ୍ଷିଣତୀର୍ଥଭ୍ରମଣ ।
ଦଶମେ କହିଲ ସର୍ବବୈଷ୍ଣବ-ମିଳନ ।୨୦୩।

ଭଟ୍ଟାଚାର୍ଯ୍ୟ ବ୍ରାହ୍ମଣେ — ଶ୍ରୀଶ୍ରୀବଳଭଦ୍ର ଭଟ୍ଟାଚାର୍ଯ୍ୟଙ୍କ ସଙ୍ଗେ ଥିବା ବ୍ରାହ୍ମଣଙ୍କୁ । ୧୭୭ । ପୁରୀଭାରତୀ—ଶ୍ରୀପରମାନନ୍ଦପୁରୀ ଓ ବ୍ରହ୍ମାନନ୍ଦଭାରତୀ । ୧୮୦ । ମିଶ୍ରବାସା—ଶ୍ରୀକାଶୀ ମିଶ୍ରଙ୍କ ଘର (ବର୍ତ୍ତମାନ ଗମ୍ଭୀରା) । ୧୮୮ । ପଣ୍ଡିତଗୋସାଇଁ—ଶ୍ରୀଗଦାଧର ପଣ୍ଡିତ । ୧୮୯ । କହିଲ—ବର୍ଣ୍ଣିତ ହେଲା । ୨୦୩ ।

ଏକାଦଶେ ଶ୍ରୀମନ୍ଦିରେ ବେଢ଼ାସଂକୀର୍ତ୍ତନ ।
ଦ୍ୱାଦଶେ ଗୁଣ୍ଡିଚାମନ୍ଦିର-ମାର୍ଜ୍ଜନ-କ୍ଷାଳନ ।
ତ୍ରୟୋଦଶେ ରଥ-ଆଗେ ପ୍ରଭୁର ନର୍ତ୍ତନ ।
ଚତୁର୍ଦ୍ଦଶେ ହୋରାପଞ୍ଚମୀଯାତ୍ରା-ଦରଶନ ॥
ତାର ମଧ୍ୟେ ବ୍ରଜଦେବୀର ଭାବେର ଶ୍ରବଣ ।
ସ୍ୱରୂପ କହେନ, ପ୍ରଭୁ କରେ ଆସ୍ୱାଦନ ।
ପଞ୍ଚଦଶେ ଭକ୍ତେର ଗୁଣ ଶ୍ରୀମୁଖେ କହିଲ ।
ସାର୍ବଭୌମ ଘରେ ଭିକ୍ଷା, ଅମୋଘ ତାରିଲ ।
ଷୋଡ଼ଶେ ବୃନ୍ଦାବନଯାତ୍ରା ଗୌଡ଼ଦେଶପଥେ ।
ପୁନ ନୀଳାଚଳ ଆଇଲା ନାଟଶାଲା ହୈତେ ॥
ସପ୍ତଦଶେ ବନପଥେ ମଥୁରା-ଗମନ ।
ଅଷ୍ଟାଦଶେ ବୃନ୍ଦାବନବିହାରବର୍ଣ୍ଣନ । ୨୦୯ ।
ଊନବିଂଶେ ମଥୁରା ହୈତେ ପ୍ରୟାଗେ ଗମନ ।
ତାର ମଧ୍ୟେ ଶ୍ରୀରୂପେରେ ଶକ୍ତିସଞ୍ଚାରଣ ।୨୧୦।
ବିଂଶତି ପରିଚ୍ଛେଦେ ସନାତନେର ମିଲନ ।
ତାର ମଧ୍ୟେ ଭଗବାନେର ସ୍ୱରୂପବର୍ଣ୍ଣନ ।
ଏକବିଂଶେ କୃଷ୍ଣୈଶ୍ୱର୍ଯ୍ୟ ମାଧୁର୍ଯ୍ୟ-ବର୍ଣ୍ଣନ ।
ଦ୍ୱାବିଂଶେ ଦ୍ୱିବିଧ ସାଧନଭକ୍ତିବିବରଣ ।୨୧୧।
ତ୍ରୟୋବିଂଶେ ପ୍ରେମଭକ୍ତିରସେର କଥନ ।
ଚତୁର୍ବିଂଶେ ଆତ୍ମାରାମଶ୍ଳୋକାର୍ଥବିବରଣ ॥
ପଞ୍ଚବିଂଶେ କାଶୀବାସୀବୈଷ୍ଣବକରଣ ।
କାଶୀ ହୈତେ ପୁନ ନୀଳାଚଳେ ଆଗମନ ॥
ପଞ୍ଚବିଂଶତି ପରିଚ୍ଛେଦେର ଏଇ କୈଲ ଅନୁବାଦ ।
ଯାହାର ଶ୍ରବଣେ ହୟ ଗ୍ରନ୍ଥାର୍ଥ-ଆସ୍ୱାଦ ॥

ସଂକ୍ଷେପେ କହିଲ ଏଇ ମଧ୍ୟଲୀଳା ସାର ।
କୋଟି ଗ୍ରନ୍ଥେ ବର୍ଣ୍ଣନ ନା ଯାୟ ଇହାର ବିସ୍ତାର ।
ଜୀବ ନିସ୍ତାରିତେ ପ୍ରଭୁ ଭ୍ରମିଲା ଦେଶେ ଦେଶେ ।
ଆପନେ ଆସ୍ୱାଦି ଭକ୍ତି କରିଲ ପ୍ରକାଶେ ॥
କୃଷ୍ଣତତ୍ତ୍ୱ ଭକ୍ତିତତ୍ତ୍ୱ ପ୍ରେମତତ୍ତ୍ୱ ସାର ।
ଭାବତତ୍ତ୍ୱ ରସତତ୍ତ୍ୱ ଲୀଲାତତ୍ତ୍ୱ ଆର ॥
ଭାଗବତତତ୍ତ୍ୱରସ କରିଲ ପ୍ରଚାର ।
'କୃଷ୍ଣତୁଲ୍ୟ ଭାଗବତ' ଜାନାଇଲ ସଂସାର ।
ଭକ୍ତ ଲାଗି ବିସ୍ତାରିଲ ଆପନ ବଦନେ ।
କାହାଁ ଭକ୍ତମୁଖେ କହାଇ ଶୁନିଲା ଆପନେ ।
ଚୈତନ୍ୟସମାନ ଆର କୃପାଲୁ ବଦାନ୍ୟ ।
ଭକ୍ତବତ୍ସଲ ନାହି ଆର ବିଜଗତେ ଅନ୍ୟ ।
ଶ୍ରଦ୍ଧା କରି ଏଇ ଲୀଲା ଶୁନ ଭକ୍ତଗଣ ।
ଇହାର ପ୍ରସାଦେ ପାବେ ଚୈତନ୍ୟଚରଣ ॥
ଇହାର ପ୍ରସାଦେ ପାବେ କୃଷ୍ଣତତ୍ତ୍ୱସାର ।
ସର୍ବଶାସ୍ତ୍ରସିଦ୍ଧାନ୍ତେର ଇହାଁ ପାଇବେ ପାର ॥

ଯଥାରାଗ :—

କୃଷ୍ଣଲୀଲାମୃତସାର ତାରି ଶତ ଶତ ଧାର,
ଦଶଦିଗେ ବହେ ଯାହା ହୈତେ ।
ସେ ଚୈତନ୍ୟଲୀଲା ହୟ ସରୋବର ଅକ୍ଷୟ
ମନ-ହଂସ ଚରାହ ତାହାତେ । ୨୧୪ ।
ଭକ୍ତଗଣ ! ଶୁନ ମୋର ଦୈନ୍ୟବଚନ ।
ତୋମାସଭାର ପଦଧୂଲି, ଅଙ୍ଗେ ବିଭୂଷଣ କରି
କିଛୁ ମୁଞି କରୋଁ ନିବେଦନ । ଧ୍ରୁ ।

ଶ୍ରୀଗ୍ରନ୍ଥକାର ରୂପକଭାବରେ କହୁଅଛନ୍ତି—ଶ୍ରୀଚୈତନ୍ୟଲୀଳାମୃତ ଗୋଟିଏ ଅକ୍ଷୟ ସରୋବର । ତାହା ଶ୍ରୀକୃଷ୍ଣଲୀଳାମୃତରେ ପୂର୍ଣ୍ଣ । ସେହି ଅକ୍ଷୟ ସରୋବରରୁ କୃଷ୍ଣଲୀଳାମୃତର ଶତ ଶତ ଧାରା ଦଶଦିଗକୁ ପ୍ରବାହିତ ହେଉଅଛି । ଏହାର ଭାବ ଏହି ଯେ ଶ୍ରୀକୃଷ୍ଣଙ୍କର ପୁରଲୀଳା ଓ ବ୍ରଜଲୀଳା ଏ ଉଭୟ ଅମୃତ । ଏହି ଉଭୟ ମଧ୍ୟରେ ଶ୍ରୀବ୍ରଜଲୀଳାହିଁ ଭକ୍ତମାନଙ୍କର ପରମ ରସାୟନ ହେତୁ ସାରବସ୍ତୁ । ଶ୍ରୀଚୈତନ୍ୟଲୀଳାରେ ଶ୍ରୀମନ ମହାପ୍ରଭୁ ଏହି ବ୍ରଜରସସାର ନିଜେ ଆସ୍ୱାଦନ କରି ବ୍ରଜଭାବର ଚତୁର୍ବିଧ ଭକ୍ତମାନଙ୍କୁ ଆସ୍ୱାଦ କରାଇଛନ୍ତି । ଏଣୁ ଶ୍ରୀଚୈତନ୍ୟଲୀଳାରେ ଶ୍ରୀକୃଷ୍ଣଲୀଳା ଓତପ୍ରୋତଭାବରେ ଜଡ଼ିତ ହୋଇଅଛି । ଶ୍ରୀଚୈତନ୍ୟଲୀଳା ଆସ୍ୱାଦ ବ୍ୟତୀତ ଶ୍ରୀକୃଷ୍ଣଙ୍କର, ଶ୍ରୀବୃନ୍ଦାବନଲୀଳା ସମ୍ୟକ ଆସ୍ୱାଦ ହୋଇପାରେନା ବୋଲି ଗ୍ରନ୍ଥକାର ଭକ୍ତମାନଙ୍କୁ ଚୈତନ୍ୟଲୀଳାରୂପ ଅକ୍ଷୟ ସରୋବରରେ ନିମଗ୍ନ ହେବାକୁ କହୁଅଛନ୍ତି । ୨୧୪ । ୨୧୫ ।

କୃଷ୍ଣଭକ୍ତି ସିଦ୍ଧାନ୍ତଗଣ, ଯାହେ ପ୍ରଫୁଲ୍ଲ ପଦ୍ମବନ
ତାର ମଧୁ କର ଆସ୍ୱାଦନ ।
ପ୍ରେମରସ-କୁମୁଦବନେ, ପ୍ରଫୁଲ୍ଲିତ ରାତ୍ରି-ଦିନେ
ତାହେ ଚରାଓ ମନଭୃଙ୍ଗଗଣ ।୨୨୬।
ନାନାଭାବେ ଭକ୍ତଜନ, ହଂସ-ଚକ୍ରବାକଗଣ,
ଯାହେ ସଭେ କରେନ ବିହାର ।
କୃଷ୍ଣକେଳି ସୁମୃଣାଲ, ଯାହାଁ ପାଇ ସର୍ବକାଲ
ଭକ୍ତହଂସ କରୟେ ଆହାର ।୨୨୭।

ସେଇ ସରୋବରେ ଗିୟା, ହଂସ ଚକ୍ରବାକ ହୈୟା,
ସଦା ତାହାଁ କରହ ବିଲାସ ।
ଖଣ୍ଡିବେ ସକଲ ଦୁଃଖ, ପାଇବେ ପରମସୁଖ,
ଅନାୟାସେ ହବେ ପ୍ରେମୋଲ୍ଲାସ ।୨୨୮।
ଏଇ ଅମୃତ ଅନୁକ୍ଷଣ, ସାଧୁ ମହାନ୍ତ ମେଘଗଣ,
ବିଶ୍ୱୋଦ୍ୟାନେ କରେ ବରିଷଣ ।
ତାହେ ଫଲେ ପ୍ରେମଫଳ, ଭକ୍ତ ଖାୟ ନିରନ୍ତର,
ତାର ଶେଷେ ଜୀୟେ ଜଗଜନ

---

ସରୋବରରେ ପଦ୍ମ, କୁମୁଦ ପ୍ରଭୃତି ପୁଷ୍ପଆଦି, ଭୃଙ୍ଗ, ହଂସ, ଚକ୍ରବାକାଦି ବାସକରନ୍ତି ଏହି ଶ୍ରୀଚୈତନ୍ୟଲୀଳାମୃତ ଅକ୍ଷୟସରୋବରରେ ଶ୍ରୀକୃଷ୍ଣଭକ୍ତି ସିଦ୍ଧାନ୍ତମାନ ପଦ୍ମପୁଷ୍ପ ତୁଲ୍ୟ । ତାହାର ମଧୁ ମନଭୃଙ୍ଗଦ୍ୱାରା ଆସ୍ୱାଦନ କର । ସେଠାରେ ମଧୁରାଦି ପ୍ରେମରସ କୁମୁଦପୁଷ୍ପ ତୁଲ୍ୟ କିନ୍ତୁ କୁମୁଦ କେବଳ ରାତ୍ରିରେ ପ୍ରଫୁଲ୍ଲିତ ହେଲେହେଁ ଏ କୁମୁଦର ବିଶେଷତ୍ୱ ଏହିଯେ ଏହା ଦିବାରାତ୍ରି ସର୍ବଦା ପ୍ରଫୁଲ୍ଲିତ ହୋଇ ଅଛି ସେଥିରେ ମନୋଭୃଙ୍ଗକୁ ସର୍ବଦା ଚରାଅ ।

ତାତ୍ପର୍ଯ୍ୟ— ଗୌରଲୀଳା ଅନ୍ତର୍ଗତ ଶ୍ରୀକୃଷ୍ଣପ୍ରେମରସରେ ସର୍ବଦା ନିମଗ୍ନ ରୁହ । ୨୨୬ । ସେହି ସରୋବରରେ ହଂସ, ଚକ୍ରବାକ ସ୍ୱରୂପ ଦାସ୍ୟାଦି ନାନା ଭାବର ଭକ୍ତମାନେ ବିହାର କରନ୍ତି ଏବଂ ସେମାନେ ଶ୍ରୀକୃଷ୍ଣଲୀଳାରୂପ ମୃଣାଳ ଆହାର କରନ୍ତି । ଏହାର ଭାବ ଏହିଯେ ଭକ୍ତମାନେ ଶ୍ରୀଚୈତନ୍ୟଲୀଳା ଆନୁଗତ୍ୟରେ ଶ୍ରୀକୃଷ୍ଣଭକ୍ତିରସ ଆସ୍ୱାଦନକରି ପରମାନନ୍ଦଲାଭ କରନ୍ତି । ଅତଏବ ଯେଉଁମାନେ ଶ୍ରୀଚୈତନ୍ୟ ଆନୁଗତ୍ୟ ଗ୍ରହଣ କରିନାହାନ୍ତି ସେମାନେ ଶ୍ରୀଚୈତନ୍ୟଲୀଳାରୂପ ଅକ୍ଷୟ ସରୋବରରେ ଭକ୍ତରୂପ ହଂସ ଚକ୍ରବାକହୋଇ ସର୍ବଦା ବିହାର କରନ୍ତୁ । ତାହାହେଲେ ଆନୁସଙ୍ଗରେ ପ୍ରାରବ୍ଧାପ୍ରାରବ୍ଧ ଦୁଃଖ ନାଶହେବ ଏବଂ ଶ୍ରୀଚୈତନ୍ୟଙ୍କ କୃପାରୁ ଅନାୟାସରେ ପ୍ରେମୋଲ୍ଲାସରୂପ ପରମ ସୁଖଲାଭ ହେବ ।

ତାତ୍ପର୍ଯ୍ୟ——ସୁଦୃଢବିଶ୍ୱାସରେ ଶ୍ରୀଚୈତନ୍ୟ ଚରିତାମୃତ ଆସ୍ୱାଦକର ଏବଂ ଶ୍ରୀମନ୍ ମହାପ୍ରଭୁଙ୍କର ଅନୁଗମନରେ ଭକ୍ତିସାଧନକର, ତାହାହେଲେ ସର୍ବଦୁଃଖ ନାଶ ହୋଇ ପରମ ପ୍ରେମ ଲାଭ ହେବ । ୨୨୮ ।

ଯେଉଁମାନେ ଯେ ସରୋବର ଲାଭ କରି ନ ପାରନ୍ତି ସେମାନଙ୍କ ପ୍ରତି କୃପା ପୂର୍ବକ ସାଧୁମହାନ୍ତମାନେ ମେଘରୂପ ହୋଇ ବିଶ୍ୱରୂପ ଉଦ୍ୟାନରେ ସେ ସରୋବର ବାରି ବୃଷ୍ଟିକରନ୍ତି । ସେ ବାରି ବର୍ଷଣରୁ ବିଶ୍ୱଉଦ୍ୟାନରେ ପ୍ରେମଫଳ ଫଳେ ତାହାକୁ ଭକ୍ତମାନେ ନିରନ୍ତର ଭକ୍ଷଣ କରନ୍ତି ଏବଂ ସେମାନଙ୍କ ଭୁକ୍ତାବଶେଷ ଦ୍ୱାରା ଅପର ଜଗତବାସୀ ମନୁଷ୍ୟମାନେ ଜୀବନଧାରଣ କରନ୍ତି । ଏହାର ଭାବ ଏହି ଯେ ସାଧୁମହାନ୍ତମାନେ ଜଗତରେ ଚୈତନ୍ୟ ଲୀଳା ପ୍ରଚାରକରନ୍ତି । ଯେଉଁମାନେ ବିଷ୍ଣୁଭକ୍ତ ସେମାନେ ଏହି ମହାନ୍ତମାନଙ୍କ ଗୋଷ୍ଠୀରେ ଶ୍ରୀଚୈତନ୍ୟଲୀଳାରସ ଆସ୍ୱାଦ କରନ୍ତି । ଅପରାପରବ୍ୟକ୍ତିମାନେ ଏହି ଗୋଷ୍ଠୀର ସଂସର୍ଗରେ ଶ୍ରୀଚୈତନ୍ୟ ଭକ୍ତହୋଇ ଶ୍ରୀକୃଷ୍ଣ ପ୍ରେମ ଲାଭପୂର୍ବକ ଭକ୍ତଜୀବନ ଲାଭକରନ୍ତି । ୨୨୯ ।

ଚୈତନ୍ୟଲୀଳାମୃତପୂର କୃଷ୍ଣଲୀଳା ସୁକର୍ପୂର,
ଦୋହେଁ ମେଳି ହୁଏ ସୁମାଧୁର୍ଯ୍ୟ ।
ସାଧୁଗୁରୁପ୍ରସାଦେ, ତାହା ଯେଇ ଆସ୍ୱାଦେ,
ସେଇ ଜାଣେ ମାଧୁର୍ଯ୍ୟପ୍ରାଚୁର୍ଯ୍ୟ ।୧୩୦।
ଯେ ଲୀଳା-ଅମୃତ ବିନେ ଖାୟ ଯଦି ଅନ୍ନପାନେ
ତବେ ଭକ୍ତେର ଦୁର୍ବଳ ଜୀବନ ।
ଯାର ଏକବିନ୍ଦୁ-ପାନେ ଉତ୍ଫୁଲ୍ଲିତ ତନୁ-ମନେ
ହାସେ ଗାୟ କରୟ ନର୍ତ୍ତନ ।୧୩୧।
ଏ ଅମୃତ କର ପାନ ଯାର ସମ ନାହିଁ ଆନ,
ଚିତ୍ତେ କରି ସୁଦୃଢ ବିଶ୍ୱାସ ।
ନା ପଡ଼ କୁତର୍କଗର୍ତ୍ତେ ଅମେଧ୍ୟ କର୍କଶାବର୍ତ୍ତେ
ଯାତେ ପଡ଼ିଲେ ହୟ ସର୍ବନାଶ ।୧୩୨।

---

ଅନ୍ୟପ୍ରକାରରେ କହୁଅଛନ୍ତି—ପିଠା ଭିତରେ ଯେଉଁ ପୂର ଦିଆଯାଏ ତାହା ସୁବାସିତ ଓ ସ୍ୱାଦୁ କରିବା କାରଣ ସେଥିରେ କିଛି ଉତ୍କୃଷ୍ଟ କର୍ପୂର ସଂଯୋଗ କରାଯାଏ । ଏହି ପ୍ରକାର କର୍ପୂରଯୁକ୍ତ ପୂର ଘ୍ରାଣ ଓ ରସନେନ୍ଦ୍ରିୟର ପରମ ଉପାଦେୟ । ଶ୍ରୀଚୈତନ୍ୟଲୀଳାମୃତ ଶ୍ରୀକୃଷ୍ଣଲୀଳା ରସପାନଯୁକ୍ତ ହେତୁ ସୁକର୍ପୂରଯୁକ୍ତ ପୂରତୁଲ୍ୟ ଭକ୍ତମାନଙ୍କର ପରମ ଆସ୍ୱାଦ୍ୟ । ବୈଷ୍ଣବ ଓ ଗୁରୁଙ୍କ ପ୍ରସାଦରୁ ଯେଉଁମାନେ ଏରୂପ ଚୈତନ୍ୟଲୀଳାରସ ଆସ୍ୱାଦନ କରି ଅଛନ୍ତି ସେମାନେ ତାହାର ପରମ ମାଧୁର୍ଯ୍ୟ ଅବଗତ ହୋଇଅଛନ୍ତି । ୧୩୦ ।

ସେହି ଚୈତନ୍ୟଲୀଳା ପୂରରୂପ ଅମୃତକୁ ଛାଡ଼ି ଯଦି ଅନ୍ନପାନରୂପ (ସୁକର୍ପୂରରୂପ) କେବଳ ଶ୍ରୀକୃଷ୍ଣଲୀଳାରସ ଭକ୍ତମାନେ ଆସ୍ୱାଦନ କରନ୍ତି ତାହାହେଲେ ସେମାନଙ୍କର ଜୀବନ ରୂପ ଭକ୍ତି ଦୁର୍ବଳ ହେବ । କାରଣ ସବାନ୍ଧବର ପରଶୁପୂଜାରୂପ ହାସ୍ୟ, କୀର୍ତ୍ତନ ନର୍ତ୍ତନାଦି ସାତ୍ତ୍ୱିକ ବିକାର ସେମାନେ ସହଜେ ଲାଭ କରି ପାରନ୍ତି ନାହିଁ । କିନ୍ତୁ ସ୍ୱଳ୍ପମାତ୍ର ଚୈତନ୍ୟଲୀଳାମୃତ ଆସ୍ୱାଦନରେ ତାମାନ ଲାଭ ହୁଏ । ଏହାର ଭାବ ଏହି ଯେ ଶ୍ରୀଶ୍ରୀକୃଷ୍ଣଲୀଳାରସସାର ଆସ୍ୱାଦନ ଭକ୍ତମାନଙ୍କପକ୍ଷରେ ଦୁର୍ଲଭ ହେବାରୁ କରୁଣାମୟ ଶ୍ରୀକୃଷ୍ଣ ଭକ୍ତଭାବ ଗ୍ରହଣ କରି ଶ୍ରୀଚୈତନ୍ୟ ରୂପରେ ଅବତୀର୍ଣ୍ଣ ହୋଇ ନିଜର ଶ୍ରୀକୃଷ୍ଣଲୀଳାରସ ଆପେ ଆସ୍ୱାଦନ କରି ଅଛନ୍ତି ଏବଂ ସେହି ଆସ୍ୱାଦନ କରିବାର ପ୍ରଣାଳୀ ଭକ୍ତଜୀବମାନଙ୍କୁ ଶିକ୍ଷା ଦେଇ ଅଛନ୍ତି । ଅତଏବ ଶ୍ରୀକୃଷ୍ଣଲୀଳା ଓ ଶ୍ରୀଚୈତନ୍ୟଲୀଳା ଦ୍ୱୟ ହୋଇ ମଧ୍ୟ ଏକାଧାରରେ ପ୍ରକାଶ । ଯେଉଁମାନେ ଶ୍ରୀକୃଷ୍ଣଲୀଳାରସ ଆସ୍ୱାଦନ କରିବାକୁ ଇଚ୍ଛୁକ ସେମାନେ ଶ୍ରୀଚୈତନ୍ୟଙ୍କର ଶ୍ରୀଚରଣାଶ୍ରୟରେ ସାଧନ କଲେ ତାହା ସହଜରେ ଲାଭ କରି ପାରିବେ । କିନ୍ତୁ ଶ୍ରୀଚୈତନ୍ୟ ଚରଣାଶ୍ରୟ ବ୍ୟତୀତ ଯଦି କେହି ଶ୍ରୀକୃଷ୍ଣଲୀଳାରସସାର ଆସ୍ୱାଦନ କରିବାକୁ ଚେଷ୍ଟା କରନ୍ତି ସେମାନଙ୍କର ସେ ପ୍ରକାର ଚେଷ୍ଟା ସହଜରେ ସଫଳ ହେବ ନାହିଁ ।୧୩୧।

ଏ ଅମୃତ (ଶ୍ରୀଚୈତନ୍ୟଲୀଳାମୃତ) ତୁଲ୍ୟ ଆଉ କିଛି ନାହିଁ । ଅତଏବ ସୁଦୃଢ଼ ବିଶ୍ୱାସର ସହ ଏହା ପାନ କର । ଏଥିରେ ଅବିଶ୍ୱାସୀ ହୋଇ ଅର୍ଥାତ୍ ଏଥିରେ କୁତର୍କ ଉତ୍ଥାପନ କରି ମଳିନ କଠୋର ସଦାବର୍ତ୍ତରେ ପତିତ ହୁଅ ନାହିଁ । ତାହାହେଲେ ସର୍ବନାଶ ହେବ । ଅର୍ଥାତ୍ କୃଷ୍ଣ ପ୍ରେମାମୃତ ଲାଭ ହେବ ନାହିଁ ।

ଏହାର ଭାବ ଏହିଯେ ଶ୍ରୀଚୈତନ୍ୟଚରିତାମୃତରେ ଅବିଶ୍ୱାସ କରି ଚର୍ଚ୍ଚା କଲେ କିଛି ଲାଭ ହେବ ନାହିଁ । ଅର୍ଥାତ୍ ଶ୍ରୀକୃଷ୍ଣଲୀଳା ଓ ଶ୍ରୀଚୈତନ୍ୟଲୀଳା ଭେଦଦର୍ଶୀମାନଙ୍କର ସର୍ବନାଶ ହୁଏ । ୧୩୨ ।

ଶ୍ରୀଚୈତନ୍ୟ ନିତ୍ୟାନନ୍ଦ, ଅଦ୍ୱୈତାଦି ଭକ୍ତବୃନ୍ଦ,
ଆଉ ଯେତେ ଶ୍ରୋତା ଭକ୍ତଗଣ ।
ତୋମାସଭାର ଶ୍ରୀଚରଣ, କରି ଶିରେ ବିଭୂଷଣ,
ଯାହା କହିଲେ ଅଶୁଦ୍ଧମୁକ୍ତଣ ।୨୩୩।

ଶ୍ରୀରୂପ ସନାତନ, ରଘୁନାଥ-ଜୀବ-ଚରଣ,
ଶିରେ ଧରି, ଯାର କରେଁ ଆଶ ।
କୃଷ୍ଣଲୀଳାମୃତାନ୍ୱିତ, ଚୈତନ୍ୟଚରିତାମୃତ,
କହେ କିଛୁ ଦୀନ କୃଷ୍ଣଦାସ ।୨୩୪।

ଶ୍ରୀମନ୍ମଦନଗୋପାଲ ଗୋବିନ୍ଦଦେବତୁଷ୍ଟୟେ ।
ଚୈତନ୍ୟାର୍ପିତମସ୍ତ୍ୱେତଚ୍ଚୈତନ୍ୟଚରିତାମୃତମ୍ ।
ତଦିଦମତିରହସ୍ୟଂ ଗୌରଲୀଳାମୃତଂ ଯତ୍,
ଖଲସମୁଦୟକୋଲୈର୍ନାଦୃତଂ ତୈରଲଭ୍ୟମ୍ ।
କ୍ଷତିରିୟମିହ କା ମେ ସ୍ୱାଦିତଂ ଯନ୍ତୁ ସମନ୍ତାତ୍,
ସହୃଦୟସୁମନୋଭିର୍ମୋଦମେଷାଂ ତନୋତି ।
ଇତି ଶ୍ରୀଚୈତନ୍ୟଚରିତାମୃତେ ମଧ୍ୟଖଣ୍ଡେ
କାଶୀବାସିବୈଷ୍ଣବକରଣପୁନର୍ନୀଳାଚଳଗମନଂ
ନାମ ପଞ୍ଚବିଂଶପରିଚ୍ଛେଦଃ ।

---

ଏତତ୍ତୁ ଶ୍ରୀଚୈତନ୍ୟଚରିତାମୃତଂ ଶ୍ରୀମନ୍ମଦନଗୋପାଲସ୍ୟ ଗୋବିନ୍ଦଦେବସ୍ୟ ଚ ତୁଷ୍ଟୟେ ଅସ୍ତୁ ଏବଂ ଶ୍ରୀଚୈତନ୍ୟାର୍ପିତଂ ଅସ୍ତୁ । ୪୮ ଶ୍ଳୋକ । ବି, ଚ

ଯତ୍ ଗୌରଲୀଳାମୃତଂ ତଦିଦମତିରହସ୍ୟଂ ତତ୍ତୁ କିଂ ଯଦମୃତଂ ଖଲସମୁଦୟକୋଲୈଃ ଖଲସମୂହରୂପଶୂକରୈର୍ନାଦୃତମତଏବ ତୈରଲଭ୍ୟଂ ଇୟଂ ଅତ୍ର ମେ ମମ କା କ୍ଷତିଃ ଯନ୍ତୁ ଯତଃ ସହୃଦୟସୁମନୋଭିଃ ଧାର୍ମିକଶ୍ରେଷ୍ଠୈଃ ସ୍ୱାଦିତଂ ସତ୍ ଏଷାଂ ମୋଦଂ ହର୍ଷଂ ତନୋତି ବିସ୍ତାରୟତି ।୪୯। ବି, ଚ,

---

ଶ୍ରୀକୃଷ୍ଣଲୀଳାମୃତାନ୍ୱିତ ଶ୍ରୀଚୈତନ୍ୟଚରିତାମୃତ—ଶ୍ରୀଚୈତନ୍ୟଚରିତାମୃତ ଶ୍ରୀକୃଷ୍ଣ-ଲୀଳାର ସହିତ ଅଭିନ୍ନରୂପେ ମିଳିତ । ୨୩୪ ।

ଏହି ଶ୍ରୀଚୈତନ୍ୟଚରିତାମୃତ ଶ୍ରୀମାନ ମଦନଗୋପାଳ ଦେବ ଓ ଶ୍ରୀମନ୍ ଗୋବିନ୍ଦ ଦେବଙ୍କର ତୁଷ୍ଟିର ନିମିତ୍ତ ହୋଇ ଶ୍ରୀଚୈତନ୍ୟଙ୍କଠାରେ ଅର୍ପିତ ହେଉ । ୪୮ ଶ୍ଳୋକାର୍ଥ ।

ଏହି ଶ୍ରୀଗୌରଲୀଳାମୃତ ଅତି ଗୂଢ଼ ବା ପରମ ପ୍ରେମମୟ । ତାହା ଖଳରୂପ ଶୂକରମାନେ ଆଦର କରନ୍ତି ନାହିଁ । ତେଣୁ ସେମାନଙ୍କର ତାହା ଲାଭ ହୁଏ ନାହିଁ । ସେଥିରେ ମୋର ବା କ୍ଷତି କଅଣ, ଯେ ହେତୁ ସହୃଦୟ ପଣ୍ଡିତ ବ୍ୟକ୍ତିମାନଙ୍କ ଦ୍ୱାରା ଏହା ଆସ୍ୱାଦିତ ହୋଇ ସେମାନଙ୍କର ଆନନ୍ଦ ବିସ୍ତାର କରୁଅଛି । ୪୯ ଶ୍ଳୋକାର୍ଥ ।

ଇତି ଶ୍ରୀଚୈତନ୍ୟଚରିତାମୃତ ମଧ୍ୟଲୀଳା ପଞ୍ଚବିଂଶ ପରିଚ୍ଛେଦ ସମାପ୍ତ ।

---

Printed by V. Kar, at the Utkal Sahitya Press, Cuttack.